# ବିଶ୍ୱଇତିହାସ

[ ଦ୍ୱିତୀୟ ଖଣ୍ଡ ]

ପଣ୍ଡିତ ଜବାହରଲାଲ ନେହରୁ
ଅନୁବାଦ : ସୁରେନ୍ଦ୍ରନାଥ ଦ୍ୱିବେଦୀ

ଗ୍ରନ୍ଥମନ୍ଦିର

GLIMPSES OF WORLD HISTORY—Vol.-II

By Pandit Jawaharlal Nehru

Translated by Surendranath Dwivedy

Published by Grantha Mandir, Cuttack-2, Orissa.

Reprinted—January 1939 : 1100 copies

Library Edition : Rs. 54-00

Paper-back : Rs. 49-00



ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ : ଜୟରାମ ମହାପାତ୍ର
ଗ୍ରନ୍ଥପ୍ରକାଶିନୀ, ଚୂଡ଼ାହାଟ, କଟକ

ପୁନର୍ମୁଦ୍ରଣ : ଜାନୁଆରୀ, ୧୯୮୯
୧୧୦୦ ବହି

ମୂଲ୍ୟ : ପାଠାଗାର ସଂସ୍କରଣ ଟ ୫୪-୦୦
ପେପରବ୍ୟାକ୍ ଟ ୪୯-୦୦

# ସୂଚୀପତ୍ର

---

# ୭୪ : ମଙ୍ଗୋଲ ସାମ୍ରାଜ୍ୟ ଭାଙ୍ଗି ପଡ଼ିଲା

ଜୁଲାଇ ୯, ୧୯୩୨

ମୁଁ ତୋତେ ମଧ୍ୟଯୁଗ ଅତିକ୍ରମ ହୋଇଯାଇଥିବା କଥା ଓ ଇଉରୋପରେ ନୂତନ ଭାବର ଜାଗରଣ ଏବଂ ନୂତନ ଶକ୍ତି ଉପରେ ଅନେକ ବାଟରେ ପ୍ରକାଶିତ ହେଲା—ଏହିସବୁ ବିଷୟରେ ଲେଖିଛି । ଇଉରୋପ ନୂତନ କାର୍ଯ୍ୟ ଓ ସୃଜନକ୍ଷମ ପ୍ରଚେଷ୍ଟାରେ ବ୍ୟସ୍ତ ଥିଲାପରି ମନେ ହେଲା । ଇଉରୋପର ଲୋକେ ଶତାବ୍ଦୀ ଶତାବ୍ଦୀ ଧରି ନିଜର କ୍ଷୁଦ୍ର ରାଜ୍ୟଗୁଡ଼ିକରେ ସଙ୍କୁଚିତ ହୋଇ ରହିଥିଲେ । ପରେ ହଠାତ୍ ବାହାରିପଡ଼ିଲେ ଏବଂ ବିସ୍ତୃତ ସାଗର ଅତିକ୍ରମ କଲେ ଓ ପୃଥିବୀର କୋଣ କୋଣକୁ ଗଲେ । ସେମାନେ ବିଜେତା ରୂପେ ନିଜର ଶକ୍ତିରେ ବିଶ୍ୱାସ ପୋଷଣ କରିଯାଇଥିଲେ । ଏହି ବିଶ୍ୱାସ ହିଁ ସେମାନଙ୍କୁ ସାହସ ଦାନ କଲା ଏବଂ ଏହାଦ୍ୱାରା ସେମାନେ ଅଦ୍ଭୁତ କାର୍ଯ୍ୟ ସମ୍ପନ୍ନ କରିପାରିଲେ ।

କିନ୍ତୁ କିପରି ଏହି ହଠାତ୍ ପରିବର୍ତ୍ତନ ହେଲା ଭାବିଲେ ଆଶ୍ଚର୍ଯ୍ୟ ହୋଇଥିବୁ । ୧୩ଶ ଶତାବ୍ଦୀର ମଧ୍ୟଭାଗରେ ମଙ୍ଗୋଲମାନେ ଏସିଆ ଓ ଇଉରୋପରେ ପ୍ରାଧାନ୍ୟ ଲାଭ କରୁଥିଲେ । ପୂର୍ବ ଇଉରୋପ ତାଙ୍କ ଦଖଲରେ ଥିଲା । ପଶ୍ଚିମ-ଇଉରୋପ ଏହି ମହାନ୍ ଓ ଅଜେୟ ଯୋଦ୍ଧାମାନଙ୍କ ସମକ୍ଷରେ ଥରହର ହୋଇଥିଲା । ମହାନ ଖାଁଙ୍କର ଜଣେ ସେନାପତି ସହିତ ଇଉରୋପର ରାଜା ଓ ସମ୍ରାଟମାନଙ୍କୁ ତୁଳନା କଲେ କିପରି ତୁଚ୍ଛ ମନେ ହେଉ ନଥିଲେ !

୨୦୦ ବର୍ଷ ପରେ ଅଟୋମାନ ତୁର୍କମାନେ ବିରାଟ କନ୍‌ଷ୍ଟାଣ୍ଟିନୋପଲ ନଗର ଏବଂ ଦକ୍ଷିଣ-ପୂର୍ବ ଇଉରୋପର କେତେକାଂଶ ଦଖଲ କଲେ । ମୁସଲମାନ ଓ ଖ୍ରୀଷ୍ଟୀୟଙ୍କ ମଧ୍ୟରେ ୮୦୦ ଦିନ ଯୁଦ୍ଧ ପରେ ଯେଉଁ ଲାଭ ଆଶାରେ ଆରବ ଓ ସେଲଯୁକମାନେ ଲାଗିପଡ଼ିଥିଲେ ତାହା ଅଟୋମାନଙ୍କ ହାତରେ ପଡ଼ିଲା । ଏଥିରେ ସନ୍ତୁଷ୍ଟ ନ ହୋଇ ଅଟୋମାନ ସୁଲତାନ କ୍ଷୁଧିତ ଦୃଷ୍ଟିରେ ପଶ୍ଚିମ ଆଡ଼କୁ ଏପରିକି ରୋମ ଉପରକୁ ନଜର ପକାଇଲେ । ସେମାନେ ଜର୍ମାନ (ପବିତ୍ର ରୋମାନ୍) ସାମ୍ରାଜ୍ୟ ଏବଂ ଇଟାଲୀକୁ ଧମକ ଦେଲେ । ସେମାନେ ହଙ୍ଗେରୀ ଜୟ କଲେ ଏବଂ ଭିଏନାର ପ୍ରାଚୀର ଓ ଇଟାଲୀର ସୀମାନ୍ତରେ ପହଞ୍ଚିଲେ ।

ପୂର୍ବରେ ବାଗଦାଦ ଓ ଦକ୍ଷିଣରେ ଇଜିପ୍ଟ ତାଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ୧୬ଶ ଶତାବ୍ଦୀର ମଧ୍ୟଭାଗରେ ସୁଲତାନ ସୁଲେମାନ ଏହି ବିରାଟ ତୁର୍କୀ ସାମ୍ରାଜ୍ୟ ଉପରେ ଶାସନ କରୁଥିଲେ । ଏପରିକି ସମୁଦ୍ରରେ ତାଙ୍କର ନୌସେନା ସର୍ବେସର୍ବା ଥିଲା ।

ତାହାହେଲେ ଏହି ସବୁ ପରିବର୍ତ୍ତନ କିପରି ହେଲା ? ମଙ୍ଗୋଲଆତଙ୍କରୁ ଇଉରୋପ କିପରି ରକ୍ଷା ପାଇଲା ? ତୁର୍କ ବିପଦରୁ ନିଜକୁ କିପରି ବଞ୍ଚାଇଲା ? ଖାଲି ଯେ ନିଜକୁ ବଞ୍ଚାଇଲା ତାହା ନୁହେଁ; ମାତ୍ର ନିଜେ ଆକ୍ରମଣଶୀଳ ହେଲା ଏବଂ ଅନ୍ୟମାନଙ୍କର ଆତଙ୍କର କାରଣ ହୋଇଉଠିଲା ।

ମଙ୍ଗୋଲମାନେ ଦୀର୍ଘକାଳ ପର୍ଯ୍ୟନ୍ତ ଇଉରୋପକୁ ଭୟଭୀତ କରି ନ ଥିଲେ । ସେମାନେ ନିଜେ ନୂତନ ଖାଁ ନିର୍ବାଚନ ପାଇଁ ଚାଲିଗଲେ ଏବଂ ଆଉ ଫେରି ନଥିଲେ । ତାଙ୍କର ବାସସ୍ଥଳୀ ମଙ୍ଗୋଲିଆରୁ ପଶ୍ଚିମ ଇଉରୋପ ବହୁତ ଦୂରରେ ଥିଲା । ସମ୍ଭବତଃ ଏହା ଏକ ଜଙ୍ଗଲୀ ରାଜ୍ୟ ଥିବାରୁ ଏବଂ ସେମାନେ ବିସ୍ତୃତ ଉନ୍ମୁକ୍ତ ସମତଳ ଭୂମି ଓ ପ୍ରାନ୍ତରରେ ଅଭ୍ୟସ୍ତ ହୋଇପଡ଼ିଥିବାରୁ ପଶ୍ଚିମ ଇଉରୋପ ପ୍ରତି ସେମାନେ ଆକୃଷ୍ଟ ହୋଇ ନଥିଲେ । ସେ ଯାହାହେଉ, ପଶ୍ଚିମ-ଇଉରୋପ ନିଜର କୌଣସି ଗୌରବ ଯୋଗୁଁ ନୁହେଁ, ମାତ୍ର ମଙ୍ଗୋଲମାନଙ୍କର ଉଦାସୀନତା ହେତୁ ଓ ସେମାନେ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ଏହି ମଙ୍ଗୋଲଙ୍କଠାରୁ ଆପଣାକୁ ରକ୍ଷା କରିପାରିଥିଲା । ପୂର୍ବ ଇଉରୋପରେ କ୍ରମେ ମଙ୍ଗୋଲ ଶକ୍ତି ଭାଙ୍ଗିଯିବା ପର୍ଯ୍ୟନ୍ତ ସେମାନେ କେତେକ କାଳ ଲାଗି ରହିଥିଲେ ।

୧୪୫୩ରେ ତୁର୍କମାନଙ୍କଦ୍ୱାରା କନ୍‌ଷ୍ଟାଣ୍ଟିନୋପଲ ଦଖଲ ଇଉରୋପ ଇତିହାସରେ ଏକ ଗାଣ୍ଟିସ୍ଥଳ ବୋଲି ଧରାଯାଏ । ଏ କଥା ମୁଁ ତୋତେ ଆଗରୁ କହିଛି । ସୁବିଧା ନିମନ୍ତେ ଏହାହିଁ ମଧ୍ୟଯୁଗର ଶେଷ ଓ ନୂତନ ଯୁଗର ଆଗମନ, ପୁନର୍ଜାଗରଣ, ଯାହାକି ବିଭିନ୍ନ ବାଟରେ ଆତ୍ମପ୍ରକାଶ କରିଥିଲା, ତାହା ଏହିଠାରୁ ଆରମ୍ଭ ବୋଲି ଧରାଯାଏ । ତେଣୁ ବିଚିତ୍ର କଥା ଠିକ୍ ଯେତେବେଳେ ତୁର୍କମାନେ ଇଉରୋପକୁ ଭୟ ଦେଖାଉଥିଲେ ଏବଂ ତୁର୍କମାନଙ୍କର ସଫଳତା ଲାଭ କରିବାର ଭଲ ସୁଯୋଗ ଥିଲା ପରି ମନେ ହେଉଥିଲା ଇଉରୋପ ନିଜର ବଳ ବୃଦ୍ଧିପାଇ ଶକ୍ତିବୃଦ୍ଧି କରୁଥିଲା । କିଛିକ୍ଷଣ ନିମନ୍ତେ ତୁର୍କମାନେ ପଶ୍ଚିମକୁ ଅଗ୍ରସର ହେବାକୁ ଲାଗିଲେ । ସେମାନେ ଅଗ୍ରସର ହେଉଥିବାବେଳେ ଇଉରୋପୀୟ ଆବିଷ୍କାରକମାନେ ପୃଥିବୀର ଚତୁର୍ଦ୍ଦିଗରେ ପର୍ଯ୍ୟଟନ କରି ନୂତନ ସାଗର ଓ ରାଜ୍ୟମାନ ଆବିଷ୍କାର କରୁଥିଲେ । ୧୫୨୦ରୁ ୧୫୬୬ ପର୍ଯ୍ୟନ୍ତ ସୁଲେମାନ ରାଜତ୍ୱ କଲେ । ତାଙ୍କ ଅଧୀନରେ ତୁର୍କୀସାମ୍ରାଜ୍ୟ ଭିଏନାରୁ ବାଗଦାଦ ଓ କାଏରୋ ପର୍ଯ୍ୟନ୍ତ ବିସ୍ତାର ଲାଭକଲା; କିନ୍ତୁ ତା'ପରେ ଆଉ ଅଗ୍ରସର ହୋଇ ନ ଥିଲେ । ଗ୍ରୀକ୍‌ମାନଙ୍କର କନଷ୍ଟାଣ୍ଟିନୋପଲର ପୁରାତନ ଦୁର୍ବଳତା ଓ ଦୂଷିତ ପରମ୍ପରାର କବଳରେ ତୁର୍କମାନେ ପଡ଼ିଲେ । ଏଣେ ଇଉରୋପର କ୍ଷମତା ବୃଦ୍ଧି ହେଉଥିବାବେଳେ ତୁର୍କମାନେ ତାଙ୍କର ପୁରାତନ ତେଜ ହରାଇଲେ ଓ ଦୁର୍ବଳ ହୋଇ ପଡ଼ିଲେ ।

ଆମର ଅତୀତ ଯୁଗର ଅନୁସନ୍ଧାନର ଗତିରେ ଆମେ ଏସିଆ ଇଉରୋପ ଉପରେ ଅନେକ ଆକ୍ରମଣ କରିଥିବାର ଦେଖୁଁ; କିନ୍ତୁ ଏଗୁଡ଼ିକ ଅଳ୍ପ ସମୟ ପାଇଁ । ଆଲେକ୍‌ଜାଣ୍ଡର ଏସିଆ ମଧ୍ୟଦେଇ ଚାଲିକି ଆସିଥିଲେ, ଏଥିରେ ବିଶେଷ କିଛି ଫଳଲାଭ ହେଲି ନାହିଁ । ରୋମାନମାନେ କେବେହେଲେ ମେସୋପୋଟାମିଆ ପାର ହୋଇ ଯାଇନାହାନ୍ତି । ଅନ୍ୟପକ୍ଷରେ ଇଉରୋପ ଆଦିମ କାଳରୁ ବାରମ୍ବାର ଏସିଆର ଜାତିମାନଙ୍କଦ୍ୱାରା ଆକ୍ରାନ୍ତ ହୋଇଥିଲା । ଏହି ଏସିଆବାସୀଙ୍କ ଆକ୍ରମଣ ଭିତରେ ଅଟୋମାନ ଆକ୍ରମଣହିଁ ଇଉରୋପରେ ଶେଷ ଆକ୍ରମଣ ଥିଲା । କ୍ରମେ ଗତି ବଦଳି ଗଲା ଏବଂ ଇଉରୋପ ଆକ୍ରମଣଶୀଳ ହେଲା । ୧୭ଶ ଶତାବ୍ଦୀର ମଧ୍ୟଭାଗରେ ଏହି ପରିବର୍ତ୍ତନ ଘଟିଥିବାର ଦେଖାଯାଏ । ନୂତନ ଆବିଷ୍କୃତ ଆମେରିକା ଇଉରୋପ କବଳରେ ଶୀଘ୍ର ପଡ଼ିଗଲା । ଏସିଆ ଅଧିକ କଷ୍ଟକର ସମସ୍ୟା ଥିଲା । ୨୦୦ ବର୍ଷକାଳ ଇଉରୋପୀୟମାନେ ଏସିଆ ମହାଦେଶର ବିଭିନ୍ନ ଅଞ୍ଚଳରେ ପାଦ ପକାଇବାକୁ ଚେଷ୍ଟା କରିଥିଲେ ଏବଂ ୧୮ଶ ଶତାବ୍ଦୀର ମଧ୍ୟଭାଗରେ ସେମାନେ ଏସିଆର କେତେକ ଅଂଶରେ ପ୍ରାଧାନ୍ୟ ଲାଭ କରିବାକୁ ଆରମ୍ଭ କଲେ । ଏହା ସ୍ମରଣ ରଖିବା ଭଲ; କାରଣ ଇତିହାସ ବିଷୟରେ ଅନଭିଜ୍ଞ କେତେକ ଲୋକ ଅନୁମାନ କରନ୍ତି ଯେ ଇଉରୋପ ସର୍ବଦା ଏସିଆ ଉପରେ ପ୍ରଭୁତ୍ୱ କରିଆସିଛି । ଆମେ ଦେଖିବା, ଇଉରୋପର ଏହି ନୂତନ ପ୍ରଭୁତ୍ୱ ଖୁବ୍ ନିକଟର କଥା ଏବଂ ପରିସ୍ଥିତିର ପରିବର୍ତ୍ତନ ହେଉଛି ଓ ତାଙ୍କର କାର୍ଯ୍ୟ ଅଚଳ ଧରିବାକୁ ବସିଲାଣି । ସମସ୍ତ ପ୍ରାଚ୍ୟ ଦେଶଗୁଡ଼ିକରେ ନୂତନ ଭାବଧାରା ଜାଗ୍ରତ ହୋଇଛି ଏବଂ ସ୍ୱାଧୀନତା ଲକ୍ଷ୍ୟ ପୋଷଣ କରି ଶକ୍ତିଶାଳୀ ଆନ୍ଦୋଳନ ସବୁ ଇଉରୋପର ପ୍ରାଧାନ୍ୟକୁ ଆହ୍ୱାନ (ଚ୍ୟାଲେଞ୍ଜ) ଦେଉଛି ଓ କୋହଲାଇ ଦେଉଛି । ଏହି ସବୁ ଜାତୀୟତାବାଦୀ ଭାବଧାରା ଅପେକ୍ଷା ନୂତନ ସାମାଜିକ ସାମ୍ୟଭାବ ଆହୁରି ବ୍ୟାପକ ଓ ଗଭୀର; ଏହା ସକଳ ପ୍ରକାର ସାମ୍ରାଜ୍ୟବାଦ ଓ ଶୋଷଣ ଲୋପ କରିବାକୁ ଚାହେଁ । ଭବିଷ୍ୟତରେ ଇଉରୋପର ଏସିଆ ଉପରେ କର୍ତ୍ତୃତ୍ୱ କରିବା ବା ଏସିଆ ଇଉରୋପ ଉପରେ କର୍ତ୍ତୃତ୍ୱ କରିବା କିମ୍ବା କୌଣସି ଦେଶ ଅନ୍ୟ ଦେଶ ଉପରେ ଶୋଷଣ କରିବା ପ୍ରଶ୍ନ ଆଦୌ ଉଠିବ ନାହିଁ ।

ମୁଁ ଏକ ଦୀର୍ଘ ମୁଖବନ୍ଧ ଲେଖିଗଲି । ଆମେ ମଙ୍ଗୋଲଙ୍କ କଥା ଆଲୋଚନା କରିବା ଓ କ୍ଷଣକାଳ ନିମନ୍ତେ ତାଙ୍କର ଭାଗ୍ୟ ବିଷୟ ଆଲୋଚନା କରିବା ଏବଂ ସେମାନଙ୍କର ଦଶା କଣ ହେଲା ଦେଖିବା । ତୋର ମନେ ଥିବ, କୁବଲାଇ ଖାଁ ଶେଷ ପ୍ରଧାନ ଖାଁ ଥିଲେ । ୧୨୯୨ରେ ତାଙ୍କ ମୃତ୍ୟୁ ପରେ ଯେଉଁ ବିଶାଳ ସାମ୍ରାଜ୍ୟ ସମଗ୍ର ଏସିଆ ଦେଇ କୋରିଆଠାରୁ ଇଉରୋପରେ ପୋଲାଣ୍ଡ ଓ ହଙ୍ଗେରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ତାହା ପାଞ୍ଚୋଟି ସାମ୍ରାଜ୍ୟରେ ବିଭକ୍ତ ହୋଇଗଲା । ପ୍ରକୃତରେ ଏହି ପାଞ୍ଚ ସାମ୍ରାଜ୍ୟ ଭିତରୁ ପ୍ରତ୍ୟେକଟିହିଁ ଗୋଟିଏ ଲେଖାଏଁ ଅତି ବଡ଼ ସାମ୍ରାଜ୍ୟ ହେଲା । ପୂର୍ବର ଏକ ଚିଠିରେ (୬୮ ନମ୍ବର) ଏହି ପାଞ୍ଚଟିର ନାମ ମୁଁ ଦେଇଛି ।

ଏମାନଙ୍କ ମଧ୍ୟରେ ଚୀନସାମ୍ରାଜ୍ୟ ପ୍ରଧାନ ଥିଲା । ମାଞ୍ଚୁରିଆ, ମଙ୍ଗୋଲିଆ, ତିବ୍ବତ, କୋରିଆ, ଆନାମ, ଟାଂକିଂ ଓ ବର୍ମାର ଏକାଂଶ ଏହାର ଅନ୍ତର୍ଗତ ଥିଲା । କୁବଲାଇଙ୍କ ବଂଶଧର ଓ୍ୟାନ୍‌ବଂଶ ଏହାର ଉତ୍ତରାଧିକାରୀ ହେଲେ; କିନ୍ତୁ ଦୀର୍ଘକାଳ ଲାଗି ନୁହେଁ । ଅତିଶୀଘ୍ର ଦକ୍ଷିଣରେ କ୍ଷୁଦ୍ର ରାଜ୍ୟସବୁ ଖସିଗଲା ଏବଂ ତୋତେ ମୁଁ ଯାହା କହୁଛି, ୧୩୬୮ରେ କୁବଲାଇଙ୍କ ମୃତ୍ୟୁର ଠିକ୍ ୭୬ ବର୍ଷ ପରେ ତାଙ୍କ ବଂଶର ପତନ ହେଲା ଓ ମଙ୍ଗୋଲମାନଙ୍କୁ ତଡ଼ି ଦିଆଯାଇଥିଲା ।

ସୁଦୂର ପଶ୍ଚିମରେ 'ସୁବର୍ଣ୍ଣରଙ୍ଗୀ ଜାତି'ମାନଙ୍କର ସାମ୍ରାଜ୍ୟ ଥିଲା । ଏହି ଲୋକମାନଙ୍କର କିପରି ମନୋମୁଗ୍ଧକର ନାମ ! କୁବଲାଇଙ୍କ ମୃତ୍ୟୁପରେ ପ୍ରାୟ ଦୁଇଶହ ବର୍ଷ ପର୍ଯ୍ୟନ୍ତ ରୁଷ ସାମନ୍ତମାନେ ଏହାକୁ ରାଜସ୍ୱ ଦେଉଥିଲେ । ଏହିକାଳ ପୂରିଗଲାବେଳକୁ (୧୪୮୦) ସାମ୍ରାଜ୍ୟ ଟିକିଏ ଦୁର୍ବଳ ହୋଇପଡ଼ିଥିଲା ଏବଂ ମସ୍କୋର ପ୍ରଧାନ ସାମନ୍ତରାଜା (ଗ୍ରାଣ୍ଡ ଡ୍ୟୁକ) ରୁଷ ସାମନ୍ତମାନଙ୍କର ମୁଖିଆ ହୋଇ ରାଜସ୍ୱ ଦେବାକୁ ଅସ୍ୱୀକାର କଲେ । ଏହି ପ୍ରଧାନ ସାମନ୍ତରାଜାଙ୍କୁ (ଗ୍ରାଣ୍ଡ ଡ୍ୟୁକ) ଆଇଭାନ ମହାପୁରୁଷ ବୋଲି କହନ୍ତି । ରୁଷର ଉତ୍ତରରେ ପୁରାତନ ନଭ୍‌ଗୋରୋଡ଼ ପ୍ରଜାତନ୍ତ୍ର ଥିଲା । ବଣିକ ଓ ବେପାରୀମାନେ ଏହା ନିୟନ୍ତ୍ରଣ କରୁଥିଲେ । ଆଇଭାନ୍ ଏହି ପ୍ରଜାତନ୍ତ୍ରକୁ ପରାସ୍ତ କଲେ ଓ ତାଙ୍କ ରାଜ୍ୟରେ ମିଶାଇ ଦେଲେ । ଇତ୍ୟବସରରେ ତୁର୍କମାନଙ୍କ ହାତରେ କନଷ୍ଟାଣ୍ଟିନୋପଲ ପଡ଼ିଥିଲା ଏବଂ ପୁରାତନ ସମ୍ରାଟଙ୍କ ପରିବାରକୁ ବାହାର କରିଦିଆଯାଇଥିଲା । ଏହି ପୁରାତନ ରାଜକୀୟ ପରିବାରର ଏକ କନ୍ୟାକୁ ଆଇଭାନ୍ ବିବାହ କଲେ ଏବଂ ଏହିରୂପେ ପୁରାତନ ବିଜାଣ୍ଟିଅନ୍ ବଂଶର ଉତ୍ତରାଧିକାରୀ ବୋଲି ଦାବୀ କଲେ । ଯେଉଁ ରୁଷସାମ୍ରାଜ୍ୟ ୧୯୧୭ର ବିପ୍ଳବରେ ଶେଷ ପାଇଯାଇଥିଲା, ତାହା ମହାପୁରୁଷ ଆଇଭାନଙ୍କ ଅଧୀନରେ ଏହିରୂପେ ଆରମ୍ଭ ହେଲା । ତାଙ୍କର ନାତି ଅତି ନିଷ୍ଠୁର ଥିଲେ; ତେଣୁ ତାଙ୍କୁ ପ୍ରଚଣ୍ଡ ଆଇଭାନ୍ ବୋଲି ଡକାଯାଉଥିଲା । ସେ ନିଜକୁ ଜାର ଉପାଧି ଦେଲେ । ଏହା ସିଜର ବା ସମ୍ରାଟ ଉପାଧି ସହିତ ସମାନ ।

ଏହିରୂପ ମଙ୍ଗୋଲମାନେ ଚିରଦିନ ପାଇଁ ୟୁରୋପରୁ ଅପସରି ଗଲେ । ସୁବର୍ଣ୍ଣ-ରଙ୍ଗୀ ଜାତି ବା ମଧ୍ୟଏସିଆର ଅନ୍ୟ ମଙ୍ଗୋଲ ସାମ୍ରାଜ୍ୟର ଅବଶେଷ ସମ୍ବନ୍ଧରେ ଆମର ଅଧିକ ବ୍ୟସ୍ତ ହେବାର ଦରକାର ନାହିଁ । ଏହା ଛଡ଼ା ମୁଁ ସେସବୁ ସମ୍ବନ୍ଧରେ ବିଶେଷ କିଛି ଜାଣେ ନାହିଁ; କିନ୍ତୁ ଗୋଟିଏ ଲୋକ ମୋର ଦୃଷ୍ଟି ଆକର୍ଷଣ କରେ ।

ଏହି ବ୍ୟକ୍ତି ହେଉଛନ୍ତି ତୈମୁର । ସେ ଦ୍ୱିତୀୟ ଚେଙ୍ଗିଜ୍‌ଖାଁ ହେବାକୁ ଚାହୁଁଥିଲେ । ସେ ଚେଙ୍ଗିଜ୍‌ଙ୍କ ବଂଶଧର ବୋଲି ଦାବୀ କରୁଥିଲେ; କିନ୍ତୁ ପ୍ରକୃତରେ ତୁର୍କ ଥିଲେ । ସେ ଛୋଟା ଥିଲେ; ତେଣୁ ତାଙ୍କୁ ଛୋଟା ତୈମୁର' ବା 'ତୈମୁ ଲେନ' ବୋଲି କହନ୍ତି । ସେ ତାଙ୍କ ପିତାଙ୍କର ଉତ୍ତରାଧିକାରୀ ହେଲେ ଏବଂ ୧୩୬୯ରେ ସମରକନ୍ଦର ଶାସକ ହେଲେ ।

ଅଳ୍ପଦିନ ପରେ ସେ ତାଙ୍କର ବିଜୟ ଓ କରତାର କାର୍ଯ୍ୟକାଳ ଆରମ୍ଭ କଲେ । ସେ ଜଣେ ପ୍ରଧାନ ସେନାପତି ଥିଲେ; କିନ୍ତୁ ସମ୍ପୂର୍ଣ୍ଣ ବର୍ବର ଥିଲେ । ଏଥି ଭିତରେ ମଧ୍ୟଏସିଆର ମଙ୍ଗୋଲମାନେ ମୁସଲମାନ ହୋଇଯାଇଥାଆନ୍ତି ଏବଂ ତୈମୁର ନିଜେ ମୁସଲମାନ ଥିଲେ; କିନ୍ତୁ ମୁସଲମାନମାନଙ୍କ ସହିତ ଯୁଦ୍ଧ ଆଦି କରିବାକୁ ପଡ଼ୁଚି ବୋଲି ଟିକିଏ ହେଲେ ତାଙ୍କର ହୃଦୟ କୋମଳ ହୋଇ ନ ଥିଲା । ସେ ଯେଉଁଠାକୁ ଗଲେ ସେଠାରେ ହତାଶା, ଉତ୍ପୀଡ଼ନ ଏବଂ ଅସମ୍ଭବ ଦୁର୍ଦ୍ଦଶା ବ୍ୟାପିଗଲା । ମସ୍ତକମାନଙ୍କ ପ୍ରକାଣ୍ଡ ପୀରାମିଡ଼ ନିର୍ମାଣ ତାଙ୍କର ମୁଖ୍ୟ ଆମୋଦଦାୟକ ବସ୍ତୁ ଥିଲା । ପୂର୍ବରେ ଦିଲ୍ଲୀଠାରୁ ପଶ୍ଚିମରେ ଏସିଆ ମାଇନର ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ବ୍ୟକ୍ତିଙ୍କୁ ହତ୍ୟା କରାଇଲେ ଏବଂ ପୀରାମିଡ୍ ଆକାରରେ ସେମାନଙ୍କର ମୁଣ୍ଡ ସବୁ ସଜାଡ଼ି ରଖିଥିଲେ ।

ଚେଙ୍ଗିଜଖାଁ ଓ ତାଙ୍କର ମଙ୍ଗୋଲମାନେ ନିଷ୍ଠୁର ଓ ଧ୍ୱଂସକାରୀ ଥିଲେ; କିନ୍ତୁ ସେକାଳର ଅନ୍ୟ ଲୋକମାନଙ୍କ ପରି ସେ ଥିଲେ । ମାତ୍ର ତୈମୁର ଅତ୍ୟଧିକ ଅଧିକ ଖରାପ ଥିଲେ । ସେ ଅତ୍ୟନ୍ତ ଅନାବଶ୍ୟକ ଓ ନୃଶଂସ ନିଷ୍ଠୁରତାରେ ଅଦ୍ୱିତୀୟ । କଥିତ ଅଛି, ଏକ ସ୍ଥାନରେ ସେ ଦୁଇ ହଜାର ଜୀଅନ୍ତା ଲୋକଙ୍କର ଦୁର୍ଗ ଠିଆ କରାଇଲେ ଏବଂ ଇଟା ଓ ଗୋଡ଼ି ଦେଇ ତାହା ପୋଡ଼ାଇ ପକାଇଥିଲେ ।

ଭାରତର ସମ୍ପଦ ପ୍ରତି ଏହି ବର୍ବର ଆକୃଷ୍ଟ ହୋଇଥିଲେ । ଭାରତ ଆକ୍ରମଣ କରିବା ପ୍ରସ୍ତାବରେ ତାଙ୍କର ସେନାପତି ଓ ସାମନ୍ତମାନଙ୍କୁ ସମ୍ମତ କରାଇବାରେ ତାଙ୍କୁ ଟିକିଏ କଷ୍ଟ ପଡ଼ିଥିଲା । ସମରକନ୍ଦରେ ମହାନ୍ କାଉନ୍‌ସିଲ ଥିଲା ଏବଂ ଭାରତର ଅଧିକ ଉତ୍ତାପ ହେଉ ସାମନ୍ତମାନେ ଭାରତକୁ ଯିବାକୁ ଆପତ୍ତି ଉଠାଇଲେ । ଶେଷରେ ତୈମୁର ପ୍ରତିଶ୍ରୁତି ଦେଲେ ଯେ ସେ ଭାରତରେ ରହିବେ ନାହିଁ, ସେ କେବଳ ଲୁଣ୍ଠନ ଓ ଧ୍ୱଂସ କରି ଫେରି ଆସିବେ । ସେ ତାଙ୍କର କଥା ରକ୍ଷା କରିଥିଲେ ।

ତୋର ମନେଥିବ, ସେତେବେଳେ ଉତ୍ତର-ଭାରତ ମୁସଲମାନ ଶାସନାଧୀନରେ ଥିଲା । ଦିଲ୍ଲୀରେ ଜଣେ ସୁଲତାନ ଥିଲେ । କିନ୍ତୁ ଏହି ମୁସଲମାନ ରାଷ୍ଟ୍ର ଦୁର୍ବଳ ଥିଲା ଏବଂ ସୀମାନ୍ତରେ ଅବିରତ ମଙ୍ଗୋଲମାନଙ୍କ ସହିତ ଯୁଦ୍ଧ କରି ଏହାର ମେରୁଦଣ୍ଡ ଭାଙ୍ଗି ଯାଇଥିଲା । ତେଣୁ ତୈମୁର ଯେତେବେଳେ ମଙ୍ଗୋଲ ସେନା ନେଇ ଆସିଲେ, ତାଙ୍କୁ ବିଶେଷ ପ୍ରତିରୋଧ କରାଯାଇ ନଥିଲା । ସେ ଉଲ୍ଲାସ ମନରେ ତାଙ୍କର ହତ୍ୟାକାଣ୍ଡ ଓ ପିରାମିଡ଼ କରି ଚାଲିଲେ । ହିନ୍ଦୁ ଓ ମୁସଲମାନ ଉଭୟେ ନିହତ ହେଲେ । କୌଣସି ପ୍ରକାର ପାର୍ଥକ୍ୟ କରାଯାଇ ନଥିଲା । ବନ୍ଦୀମାନେ ବହୁତ ବେଶି ହେବାରୁ ସେ ସମସ୍ତଙ୍କୁ ବଧ କରିବା ନିମନ୍ତେ ହୁକୁମ ଦେଲେ ଏବଂ ଏକଲକ୍ଷ ଲୋକଙ୍କୁ ହତ୍ୟା କରାଗଲା । କଥିତ ଅଛି, ଏକ ସ୍ଥାନରେ ହିନ୍ଦୁ ଓ ମୁସଲମାନ ଉଭୟେ ମିଳିତ ହୋଇ ରାଜପୁତଙ୍କ ଜହ୍ଲୋର ଅର୍ଥାତ୍ ଯୁଦ୍ଧରେ ମୃତ୍ୟୁବରଣ କରିବା ଉତ୍ସବ ପାଳନ କରିଥିଲେ । କିନ୍ତୁ ମୁଁ କାହିଁକି ବା ଏହି ଆତଙ୍କ କାହାଣୀ ସବୁ ବାରମ୍ବାର ବର୍ଣ୍ଣନା କରିବି ? ସର୍ବତ୍ର ଏହା ସମାନ । ତୈମୁରଙ୍କ

ସେନାଙ୍କ ପରେ ଦୁର୍ଭିକ୍ଷ ଓ ରୋଗ ଆସିଲା । ସେ ପନ୍ଦରଦିନ ପର୍ଯ୍ୟନ୍ତ ଦିଲ୍ଲୀରେ ରହିଥିଲେ ଏବଂ ଏହି ମହାନଗରୀକୁ କଂସେଇଖାନାରେ ପରିଣତ କଲେ । ସେ ବାଟରେ କାଶ୍ମୀର ଲୁଣ୍ଠନ କରି ସମରକନ୍ଦକୁ ଫେରିଗଲେ ।

ତୈମୁର ବର୍ବର ଥିଲେ ସୁଦ୍ଧା ସମରକନ୍ଦ ଓ ମଧ୍ୟ-ଏସିଆର ଅନ୍ୟ ସ୍ଥାନମାନଙ୍କରେ ସୁନ୍ଦର କୋଠା ନିର୍ମାଣ କରିବାକୁ ଚାହୁଁଥିଲେ । ତେଣୁ ତାଙ୍କ ପୂର୍ବରୁ ସୁଲତାନ ମାମୁଦ ଯେପରି କରିଥିଲେ, ସେ ସେହିପରି ଭାରତରୁ କାରିଗର, ନିପୁଣ ଶିଳ୍ପକାର ଓ ରାଜମିସ୍ତ୍ରୀ ସବୁ ସଂଗ୍ରହ କରି ସାଙ୍ଗରେ ନେଇଗଲେ । ଏମାନଙ୍କ ଭିତରୁ ଓସ୍ତାଦ ମିସ୍ତ୍ରୀ ଓ ଶିଳ୍ପୀ-ମାନଙ୍କୁ ସେ ନିଜର ରାଜକୀୟ କାର୍ଯ୍ୟରେ ନିଯୁକ୍ତ କଲେ । ଅନ୍ୟମାନେ ପଶ୍ଚିମ-ଏସିଆର ମୁଖ୍ୟ ନଗରମାନଙ୍କୁ ପଠାଗଲେ । ଏହି ରୂପେ ଏକ ନୂତନ ଧରଣର କାରୁକାର୍ଯ୍ୟ ବୃଦ୍ଧି ପାଇଲା ।

ତୈମୁରଙ୍କ ପ୍ରତ୍ୟାବର୍ତ୍ତନ ପରେ ଦିଲ୍ଲୀ ଏକ ମୃତ ସହର ହୋଇଗଲା । ଦୁର୍ଭିକ୍ଷ ଓ ସଂକ୍ରାମକ ରୋଗ ବ୍ୟାପିଗଲା, ଉପଶମର ଉପାୟ ନ ଥିଲା । ଦୁଇ ମାସ ପର୍ଯ୍ୟନ୍ତ କୌଣସି ରାଜା ବା ସଂଗଠନ ବା ଶୃଙ୍ଖଳା ନଥିଲା । ଅଳ୍ପ କେତେକ ଅଧିବାସୀ ରହିଥିଲେ, ଏପରିକି ତୈମୁର ଯାହାଙ୍କୁ ଦିଲ୍ଲୀର ରାଜପ୍ରତିନିଧି ରୂପେ ନିଯୁକ୍ତ କରିଥିଲେ, ସେ ମୁଲତାନକୁ ଚାଲିଗଲେ ।

ତୈମୁର ତା'ପରେ ଇରାନ୍ ଓ ଇରାକ ପାର ହୋଇ ଧ୍ୱଂସ ବିସ୍ତାର କରି ପଶ୍ଚିମ ଆଡ଼କୁ ଚାଲିଲେ । ୧୪୦୨ରେ ଆଙ୍ଗୋରାରେ ଅଟୋମାନ ତୁର୍କମାନଙ୍କର ଏକ ବିରାଟ ସେନାର ସମ୍ମୁଖୀନ ହେଲେ । ବିଚକ୍ଷଣ ସମରକୌଶଳରେ ସେ ତୁର୍କମାନଙ୍କୁ ପରାସ୍ତ କରିଥିଲେ । କିନ୍ତୁ ସମୁଦ୍ର ତାଙ୍କ ପକ୍ଷରେ ବଡ଼ କଷ୍ଟକର ବୋଧହେଲା ଓ ସେ ବସଫରସ୍ ଅତିକ୍ରମ କରିପାରି ନଥିଲେ । ତେଣୁ ଇଉରୋପ ତାଙ୍କ ହାତରୁ ରକ୍ଷାପାଇଗଲା ।

ତିନିବର୍ଷ ପରେ ୧୪୦୫ରେ ଚୀନ ଆଡ଼କୁ ଯାତ୍ରା କରୁଥିବାବେଳେ ତୈମୁର ମରିଗଲେ । ତାଙ୍କର ମୃତ୍ୟୁ ସହିତ ପ୍ରାୟ ସମଗ୍ର ପଶ୍ଚିମ-ଏସିଆବ୍ୟାପୀ ତାଙ୍କର ବିରାଟ ସାମ୍ରାଜ୍ୟର ବି ପତନ ହେଲା । ଅଟୋମାନ୍‌ଗଣ, ଇଜିପ୍ଟ ଓ ସୁବର୍ଣ୍ଣଚରଣୀମାନେ ତାଙ୍କୁ ରାଜସ୍ୱ ଦେଉଥିଲେ । କିନ୍ତୁ ତାଙ୍କର ବାସ୍ତବିକ ଅଲୌକିକ ରଣକୌଶଳ ଥିଲା ଏବଂ ଏଥିରେ ହିଁ ସେ ଲାଗିପଡ଼ିଥିଲେ । ସାଇବେରିଆର ତୁଷାର ଭିତରେ ତାଙ୍କର କେତେକ ଅଭିଯାନ ଅସାଧାରଣ ଥିଲା; ମାତ୍ର ସେ ଜଣେ ଅସଭ୍ୟ ଯାଯାବର ଥିଲେ ଏବଂ ସେ କୌଣସି ସଂଗଠନ କରି ନଥିଲେ ଓ ନିଜର ସାମ୍ରାଜ୍ୟ ଚଳାଇବା ନିମନ୍ତେ ଚେଙ୍ଗିଜଙ୍କ ପରି କୌଣସି ଦକ୍ଷ ଲୋକ ରଖିଯାଇ ନଥିଲେ । ତେଣୁ ତାଙ୍କ ସଙ୍ଗେ ସଙ୍ଗେ ତୈମୁର ସାମ୍ରାଜ୍ୟ ଶେଷ ପାଇଗଲା ଓ କେବଳ ହତ୍ୟା ଏବଂ ଧ୍ୱଂସର ସ୍ମୃତି ରହିଗଲା । ମଧ୍ୟ-ଏସିଆରେ ଯେତେ ସଂଖ୍ୟକ ଦୁଃସାହସିକ ବିଜେତା ଆସିଥିଲେ, ତାଙ୍କ ମଧ୍ୟରେ ସିକନ୍ଦର

ବା ଆଲେକ୍‌ଜାଣ୍ଡର, ସୁଲତାନ ମାମୁଦ, ଚେଙ୍ଗିଜଖାଁ ଓ ତୈମୁର ଏହି ଗୃଣଜଣଙ୍କ ନାମ ଏବେ ସୁଦ୍ଧା ସ୍ମରଣ ରହିଛି ।

ତୈମୁର ଅଟୋମାନ ତୁର୍କମାନଙ୍କୁ ପରାସ୍ତ କରି ଦୋହଲାଇ ଦେଲେ । କିନ୍ତୁ ସେମାନେ ଶୀଘ୍ର ଠାଣୁଆ ହୋଇଗଲେ ଏବଂ ତୁ କାଳୁ, ଅଧିକ ୫୦ ବର୍ଷ ଭିତରେ (୧୪୫୩) ସେମାନେ କନ୍‌ଷ୍ଟାଣ୍ଟିନୋପଲ ଦଖଲ କଲେ ।

ଆମେ ଏବେ ମଧ୍ୟ-ଏସିଆରୁ ବିଦାୟ ନେବା । ଏହା ସଭ୍ୟତା ମାନରେ ତଳେ ପଡ଼ିଗଲା ଏବଂ କେଉଁ ଅତଳ ଗର୍ଭରେ ଲୁଚିଗଲା । ଦୃଷ୍ଟି ଆକର୍ଷଣ କଲା ପରି କୌଣସି ଉଲ୍ଲେଖଯୋଗ୍ୟ ଘଟଣା ଘଟିନାହିଁ । ମନୁଷ୍ୟଦ୍ୱାରା ଧ୍ୱଂସ ପାଇଥିବା ପୁରାତନ ସଭ୍ୟତା ଅବଶେଷରେ ସ୍ତୂପୀକୃତ ହୋଇ ରହିଛି । ପ୍ରକୃତିର କ୍ରୂର ଦୃଷ୍ଟି ଏହା ଉପରେ ପଡ଼ିଛି ଏବଂ କ୍ରମେ ଏହାର ଜଳବାୟୁ ଶୁଷ୍କତର ହୋଇପଡ଼ିଛି ଓ ଲୋକ ବାସୋପଯୋଗୀ ହୋଇନାହିଁ ।

ଆମେ ମଧ୍ୟ ମଙ୍ଗୋଲମାନଙ୍କଠାରୁ ବିଦାୟ ନେବା । ପରେ ସେମାନଙ୍କର ଗୋଟିଏ ଶାଖା ଭାରତକୁ ଆସିଲା ଓ ଏକ ବିଶାଳ ଏବଂ ବିଖ୍ୟାତ ସାମ୍ରାଜ୍ୟ ଏଠାରେ ନିର୍ମାଣ କରିଥିଲା । କିନ୍ତୁ ଚେଙ୍ଗିଜଖାଁ ଓ ତାଙ୍କର ବଂଶଧରମାନେ ଭାଙ୍ଗିପଡ଼ିଲେ ଓ ମଙ୍ଗୋଲମାନେ ତାଙ୍କର ଛୋଟ ଛୋଟ ସାମନ୍ତ ଓ ପାହାଡ଼ିଆ ଅଭ୍ୟାସକୁ ପୁଣି ଫେରିଗଲେ ।

## ୭୫ : ଭାରତ ଏକ କଠିନ ସମସ୍ୟା ସମାଧାନ କରିବାକୁ ଆରମ୍ଭ କଲା ।

ଜୁଲାଇ ୧୨, ୧୯୩୨

ମୁଁ ତୋତେ ତୈମୁର, ତାଙ୍କର ହତ୍ୟାକାଣ୍ଡ ଏବଂ ମନୁଷ୍ୟମସ୍ତକର ବିଶାଳ ସ୍ତୂପ ସମ୍ବନ୍ଧରେ ଲେଖିଛି । ଏମାନ୍ତା କପରି ପ୍ରଚଣ୍ଡ ଓ ବର୍ବର ମନେ ହୁଏ ! ଆମର ସଭ୍ୟ ଯୁଗରେ ଏପରି ଜିନିଷ ଘଟିପାରନ୍ତା ନାହିଁ; କିନ୍ତୁ ଏ ବିଷୟରେ ଖୁବ୍ ନିଶ୍ଚିତ ବି ହୋଇ ପାରିବା ନାହିଁ । ଆମର ନିଜ ଅମଳରେ ବି କଣ ହୋଇଛି ଓ ହୋଇପାରେ ତାହା ଆମେ ଅତି ନିକଟରେ ଦେଖିଥାଉଁ ଓ ଶୁଣିଥାଉଁ । ଚେଙ୍ଗିଜଖାଁ ବା ତୈମୁରଙ୍କ କୃତ ଜୀବନ ଓ ସମ୍ପତ୍ତିର ଧ୍ୱଂସଲୀଳା ବିରାଟ ହୋଇଥିଲେ ସୁଦ୍ଧା ୧୯୧୪-୧୮ର ମହାସମର ବେଳେ ହୋଇଥିବା ଧ୍ୱଂସ ସହିତ ତୁଳନା କଲେ ଅତି ନଗଣ୍ୟ ପରି ମନେ ହୁଏ ।

ଆଧୁନିକ ଆତଙ୍କ ସୃଷ୍ଟିର ଦୃଷ୍ଟାନ୍ତ ସବୁ ମଙ୍ଗୋଲମାନଙ୍କର ନୃଶଂସତାଠାରୁ ଆହୁରି ଅଧିକ ।

ତଥାପି ଏଥିରେ ସନ୍ଦେହ ନାହିଁ ଯେ ଚେଙ୍ଗିଜ ବା ତୈମୁରଙ୍କ ଅମଳରୁ ଆମେ ଶହ ଶହ ବାଟ ଆଗେଇ ଆସିଛୁ । ଜୀବନ ଯେ କେବଳ ଅଧିକ ଭାବରେ ଜଟିଳ ହୋଇଛି ତାହା ନୁହେଁ; ଏହା ସମୃଦ୍ଧିସମ୍ପନ୍ନ ହୋଇଛି ଏବଂ ପ୍ରକୃତିର ଅନେକ ଶକ୍ତି ଆବିଷ୍କୃତ ହୋଇଛି । ଲୋକେ ତାହା ବ୍ୟବହାର କରି ନିଜ ବ୍ୟବହାରରେ ଲଗାଇ ପାରୁଛନ୍ତି । ନିଶ୍ଚୟ ଦୁନିଆ ଆଜି ଅଧିକ ସଭ୍ୟ ଓ ସଂସ୍କୃତ । ତାହାହେଲେ ଯୁଦ୍ଧବେଳେ ଆମେ କାହିଁକି ବର୍ବରତାକୁ ଫେରିଯାଉଁ ? କାରଣ ଯୁଦ୍ଧ ହିଁ ସଭ୍ୟତାର ଓ ସଂସ୍କୃତିର ନାସ୍ତିସୂଚକ ଓ ବିରୋଧୀ କାର୍ଯ୍ୟ । କେବଳ ସଭ୍ୟ ମସ୍ତିଷ୍କ ଅଧିକରୁ ଅଧିକ ଶକ୍ତିଶାଳୀ ଓ ପ୍ରଚଣ୍ଡ ଅସ୍ତ୍ର ଆବିଷ୍କାର କରିବାରେ ନିୟୋଜିତ ହୁଏ । ଯୁଦ୍ଧ ଆଗମନରେ ଯେଉଁସବୁ ଲୋକ ଏହି କାର୍ଯ୍ୟରେ ବ୍ୟାପୃତ ଥାଆନ୍ତି, ସେମାନେ ଏକ ଭୀଷଣ ଉତ୍ତେଜନାପୂର୍ଣ୍ଣ ଅବସ୍ଥାରେ ରହନ୍ତି; ସଭ୍ୟତାରୁ ଶିକ୍ଷା ପାଇଥିବା ଅନେକ କଥା ଭୁଲିଯାଆନ୍ତି; ସତ୍ୟ ଓ ଜୀବନର ସୌନ୍ଦର୍ଯ୍ୟକୁ ପାସୋରି ପକାନ୍ତି ଏବଂ ନିଜର କେତେ ସହସ୍ର ବର୍ଷ ପୂର୍ବର ଅସଭ୍ୟ ପୂର୍ବପୁରୁଷଙ୍କ ବର୍ବରତା ତାଙ୍କଠାରେ ପ୍ରତିବିମ୍ବିତ ହୁଏ । ତେଣୁ ଯୁଦ୍ଧ ଆରମ୍ଭ ହେଲେ ଏପରି ନୃଶଂସ କାର୍ଯ୍ୟ ହେବାରେ ବିଚିତ୍ର କଣ ?

ଯୁଦ୍ଧକାଳ ଭିତରେ ଯଦି କୌଣସି ଅପରିଚିତ ବ୍ୟକ୍ତି ଆମ ଦେଶ ପରିଦର୍ଶନ କରନ୍ତି ତେବେ ସେ କ'ଣ କହନ୍ତି ? ଧର ସେ ଆମକୁ ଶାନ୍ତ କାଳରେ ନ ଦେଖି କେବଳ ସେତିକ ବେଳେ ଦେଖନ୍ତି । ସେ କେବଳ ଯୁଦ୍ଧ ଦ୍ୱାରାହିଁ ଆମକୁ ବିଚାର କରନ୍ତି ଏବଂ ସିଦ୍ଧାନ୍ତରେ ପହଞ୍ଚନ୍ତି ଯେ ଆମେ ନିଷ୍ଠୁର, ନିର୍ଦ୍ଦୟ ଓ ବର୍ବର—ବେଳେ ବେଳେ ଯାହା ସାହସ ଓ ତ୍ୟାଗ ଦେଖାଉଛୁ ସେତିକି । କିନ୍ତୁ ମୋଟାମୋଟି କେତେକ ଭଲ ଲକ୍ଷଣ ଗୁଡ଼ିକ ରହିଲେ ସୁଦ୍ଧା, ବଡ଼ ପ୍ରବୃତ୍ତି ହେଉଛି ପରସ୍ପରକୁ ହତ୍ୟା ଓ ଧ୍ୱଂସ କରିବା । ସେ ଆମକୁ ଭୁଲ ବୁଝିବ ଏବଂ ଆମର ବିକୃତ ଦୁନିଆର ଚିତ୍ର ଅଙ୍କିନେବ; କାରଣ ସେ ଏକ ବିଶେଷ ଅଥଚ ଅତି ଅଶୋଭନୀୟ ଅବସ୍ଥାରେ ଆମର ଏକ ଦିଗ କେବଳ ଦେଖିଥିବ ।

ତେଣୁ ଆମେ ଯଦି କେବଳ ଯୁଦ୍ଧ ଓ ହତ୍ୟାକାଣ୍ଡ ଦୃଷ୍ଟିରୁ ପୁରାତନ ଦୁନିଆକୁ ବିଚାର କରି ବସିବା, ତାହାହେଲେ ଏହାକୁ ଭୁଲ ବୁଝିବା । ଦୁର୍ଭାଗ୍ୟବଶତଃ ଯୁଦ୍ଧ ଓ ହତ୍ୟାକାଣ୍ଡ ବହୁ ପରିମାଣରେ ଲୋକଦୃଷ୍ଟି ଆକର୍ଷଣ କରିଥାଏ । ଲୋକମାନଙ୍କର ଦୈନନ୍ଦିନ ଜୀବନ ଏକ ପ୍ରକାର ନୀରସ । ଐତିହାସିକ ଏ ବିଷୟରେ କ'ଣ କହିବ ? ତେଣୁ ଐତିହାସିକ ଏକ ଯୁଦ୍ଧ ବା ସଂଗ୍ରାମ କାହାଣୀ ଖୋଜି ତାହା ବିଶେଷ ଭାବରେ ବର୍ଣ୍ଣନା କରେ । ଅବଶ୍ୟ ଆମେ ଏପରି ଯୁଦ୍ଧଗୁଡ଼ିକୁ ପାସୋରି ପାରିବା ନାହିଁ କିମ୍ବା ଅବହେଳା ଦେଖାଇ ପାରିବା ନାହିଁ; କିନ୍ତୁ ସେଗୁଡ଼ିକର ଯାହା ଗୁରୁତ୍ୱ ତାହା ଅପେକ୍ଷା ଅଧିକ ଗୁରୁତ୍ୱ କେବେହେଁ ଦେବା ଉଚିତ ନୁହେଁ । ତେଣୁ ଚାଲ ବର୍ତ୍ତମାନ ଦୃଷ୍ଟିରେ ଅତୀତକୁ ଚିନ୍ତା କରିବା ଏବଂ

ଆମର ନିଜ ଦୃଷ୍ଟିରେ ସେ କାଳର ବିଚାର କରିବା । ତାହାହେଲେ ଆମେ ଅଧିକ ମାନବିକ ଦୃଷ୍ଟିରୁ ସେମାନଙ୍କୁ ଦେଖିପାରିବା ଏବଂ ସାମୟିକ ଯୁଦ୍ଧ ଛଡ଼ା ସେ କାଳର ଲୋକମାନଙ୍କର ଦୈନନ୍ଦିନ ଜୀବନ ଓ ଚଳାଚଳିରେ ପ୍ରକୃତ କ'ଣ କାର୍ଯ୍ୟ କରୁଥିଲା, ତାହା ଉପଲବ୍‌ଧି କରିପାରିବା । ଏହା ସ୍ମରଣ ରଖିବା ଭଲ; କାରଣ ଆମର ଇତିହାସ ପୁସ୍ତକମାନଙ୍କରେ କେବଳ ଏହି ସବୁ କାହାଣୀ ସୃଷ୍ଟି ହୋଇଥିବାର ଭୁ ଦେଖିବୁ । ଏପରିକି ମୋର ଏହି ଚିଠିଗୁଡ଼ିକ ମଧ୍ୟ ସେ ଦିଗରେ ଗୁଳିଥିବା ସ୍ୱାଭାବିକ । ଏହି ଅସୁବିଧାର ପ୍ରଧାନ କାରଣ ହେଉଛି ଅତୀତ କାଳର ଦୈନନ୍ଦିନ ଜୀବନ ବିଷୟରେ ଲେଖିବା ବଡ଼ ଅସୁବିଧା । ମୁଁ ସେ ବିଷୟରେ ବିଶେଷ କିଛି ଜାଣେ ନାହିଁ ।

ଆମେ ଦେଖିଲେ ତୈମୁର ଭାରତ ଉପରେ ଏକ ମହା ସଙ୍କଟ ପଡ଼ିଲା ପରି କାର୍ଯ୍ୟ କଲେ । ସେ ଯେଉଁଠିକୁ ଯାଇଥିଲେ ସେଠାରେ ତାଙ୍କ ପଶ୍ଚାତ୍ତରେ ଆତଙ୍କ ଚିହ୍ନ ରଖି ଯାଇଥିଲେ ତା ଭାବିଲେ ହୃତ୍‌କମ୍ପ ହୁଏ । ତଥାପି ଦକ୍ଷିଣ ଭାରତ ତଥା ପୂର୍ବ, ପଶ୍ଚିମ ଓ ମଧ୍ୟ-ଭାରତରେ ତାଙ୍କର ପ୍ରଭାବ ଆଦୌ ପଡ଼ି ନ ଥିଲା । ଏପରିକି ଦିଲ୍ଲୀ ଓ ମୀରଟ ନିକଟରେ କେବଳ ଉତ୍ତରରେ ସାମାନ୍ୟ ଅଂଶ ଛଡ଼ା ବର୍ତ୍ତମାନର ଯୁକ୍ତପ୍ରଦେଶ କାର୍ଯ୍ୟତଃ ତାଙ୍କ କବଳରୁ ରକ୍ଷା ପାଇଥିଲା । ଦିଲ୍ଲୀ ସହର ଛଡ଼ା ପଞ୍ଜାବ ପ୍ରଦେଶ ତୈମୁରଙ୍କ ଆକ୍ରମଣରେ ଅଧିକ କଷ୍ଟ ଭୋଗିଥିଲା । ପଞ୍ଜାବରେ ବି ତୈମୁର ଯେଉଁ ରାସ୍ତା ଦେଇ ଯାଇଥିଲେ ତାହାର ପାର୍ଶ୍ୱବର୍ତ୍ତୀ ଲୋକ ବେଶୀ କଷ୍ଟ ଭୋଗିଥିଲେ । ପଞ୍ଜାବର ଅଧିକାଂଶ ଲୋକ ବିନା କୌଣସି ହସ୍ତକ୍ଷେପରେ ତାଙ୍କର ସାଧାରଣ କାର୍ଯ୍ୟ ଚଳାଇଥିଲେ । ତେଣୁ ଏହି ସବୁ ଯୁଦ୍ଧ ଓ ଆକ୍ରମଣର ଗୁରୁତ୍ୱ ବିଷୟରେ ଆମେ ଯେପରି ଅତିରଞ୍ଜିତ ନ କରୁ ସେଥିପାଇଁ ସାବଧାନ ହେବା ଦରକାର ।

୧୪ଶ ଓ ୧୫ଶ ଶତାବ୍ଦୀର ଭାରତ ପ୍ରତି ଦୃଷ୍ଟି ନିକ୍ଷେପ କରିବା । ଦିଲ୍ଲୀ ସୁଲତାନ ରାଜୁତି ମଉଳି ପଡ଼ିଲା, ଶେଷରେ ତୈମୁରଙ୍କ ଆଗମନରେ ଏହା ଲୋପ ପାଇଗଲା । ସମଗ୍ର ଭାରତରେ ଅଧିକ ସଂଖ୍ୟକ ସ୍ୱତନ୍ତ୍ର ରାଷ୍ଟ୍ର ଥିଲା । ଏଥିଭିତରୁ ଅଧିକାଂଶ ହେଉଛି ମୁସଲମାନ ଶାସିତ; କିନ୍ତୁ ଦକ୍ଷିଣରେ ବିଜୟ ନଗରହିଁ ଏକ ଶକ୍ତିଶାଳୀ ହିନ୍ଦୁ ରାଜ୍ୟ ଥିଲା । ଇସଲାମ ଆଉ ଭାରତରେ ଅପରିଚିତ ବା ନୂତନ ଆଗନ୍ତୁକ ହୋଇନାହିଁ । ଏହା ଏଠାରେ ସୁପ୍ରତିଷ୍ଠିତ ହୋଇଛି । ପ୍ରଥମ ଆଫଗାନ ଆକ୍ରମଣକାରୀ ଓ ଦାସ ରାଜାମାନଙ୍କର ନୃଶଂସତା ଏବଂ କ୍ରୂରତା କମ୍ ହୋଇଯାଇଛି । ମୁସଲମାନ ରାଜାମାନେ ହିନ୍ଦୁମାନଙ୍କ ପରି ଭାରତୀୟ ହୋଇଛନ୍ତି । ସେମାନଙ୍କର କୌଣସି ବାହାର ସମ୍ପର୍କ ନାହିଁ । ବିଭିନ୍ନ ରାଜ୍ୟ ଭିତରେ ଯୁଦ୍ଧ ହେଉଛି; କିନ୍ତୁ ସେଗୁଡ଼ିକ ରାଜନୈତିକ କାରଣରୁ, ଧାର୍ମିକ କାରଣରୁ ନୁହେଁ । ବେଳେବେଳେ ମୁସଲମାନ ରାଷ୍ଟ୍ରରେ ହିନ୍ଦୁ ସେନା ନିଯୁକ୍ତ ହୁଅନ୍ତି ଏବଂ ହିନ୍ଦୁ ରାଷ୍ଟ୍ରରେ ମୁସଲମାନ ସେନା ବି ନିଯୁକ୍ତ ହୁଅନ୍ତି । ମୁସଲମାନ ରଜାମାନେ ଅନେକ ସମୟରେ ହିନ୍ଦୁ ନାରୀ ବିବାହ କରନ୍ତି ଏବଂ ହିନ୍ଦୁମାନେ ଅନେକ ସମୟରେ ମୁସଲମାନ ରଜାମାନଙ୍କ

ଦ୍ୱାରା ମନ୍ତ୍ରୀ ଓ ଉଚ୍ଚ କର୍ମଚାରୀ ଭାବରେ ନିଯୁକ୍ତ ହୁଅନ୍ତି । ଏଥିରେ ବିଜିତ ଓ ବିଜେତା ବା ଶାସକ ଓ ଶାସିତର ଭାବ ନାହିଁ । ବାସ୍ତବିକ ଅନେକ ମୁସଲମାନ ଶାସକ ହେଉଛନ୍ତି ଇସଲାମ ଧର୍ମରେ ଦୀକ୍ଷିତ ଭାରତୀୟ । ସେମାନଙ୍କ ଭିତରୁ ଅନେକେ ରାଜାର ଅନୁଗ୍ରହ କିମ୍ବା ଆର୍ଥିକ ସୁବିଧା ଆଶାରେ ଧର୍ମ ଗ୍ରହଣ କରିଥିଲେ ଏବଂ ଧର୍ମ ପରିବର୍ତ୍ତନ ସତ୍ତ୍ୱେ ସେମାନେ ତାଙ୍କର ଅଧିକାଂଶ ପୁରାତନ ପ୍ରଥା ଧରି ବସିଥିଲେ । କେତେକ ମୁସଲମାନ ଶାସକ ଧର୍ମରେ ଦୀକ୍ଷିତ କରାଇବା ନିମନ୍ତେ ବଳପ୍ରୟୋଗ ପନ୍ଥା ଅବଲମ୍ବନ କରିଥିଲେ; କିନ୍ତୁ ଏଥିରୁ ଅଧିକ ପରିମାଣରେ ରାଜନୀତିକ ଉଦ୍ଦେଶ୍ୟରେ ହୋଇଥିଲା । କାରଣ ମନେ କରାଯାଉଥିଲା ଯେ ଧର୍ମ ଗ୍ରହଣ କଲେ ଜନତା ଅଧିକ ରାଜଭକ୍ତ ପ୍ରଜା ହେବେ । କିନ୍ତୁ ବଳପୂର୍ବକ ଧର୍ମଗ୍ରହଣ ଅଧିକ ହୋଇପାରେ ନାହିଁ । ଅର୍ଥନୀତିହିଁ ଅଧିକ ଫଳଦାୟକ ପନ୍ଥା । ଅମୁସଲମାନଙ୍କୁ ଜିଜିୟା ନାମକ କର ଦେବାକୁ ପଡ଼ୁଥିଲା ଏବଂ ତାଙ୍କ ଭିତରୁ ଅନେକେ ଏଥିରୁ ମୁକ୍ତି ପାଇବା ନିମନ୍ତେ ମୁସଲମାନ ହୋଇଗଲେ ।

କିନ୍ତୁ ଏସବୁ ସହରରେ ହେଉଥିଲା । ଗ୍ରାମରେ ଏହାର ପ୍ରଭାବ ପଡ଼ି ନ ଥିଲା ଏବଂ ଲକ୍ଷ ଲକ୍ଷ ଗ୍ରାମବାସୀ ପୁରୁଣା ଢଙ୍ଗରେ ଚଳୁଥିଲେ । ଏହା ସତ୍ୟ ଯେ ରାଜାର କର୍ମଚାରୀମାନେ ଗ୍ରାମ୍ୟ ଜୀବନରେ ଅଧିକ ହସ୍ତକ୍ଷେପ କରୁଥିଲେ । ଗ୍ରାମ ପଞ୍ଚାୟତର କ୍ଷମତା ପୂର୍ବାପେକ୍ଷା ଏବେ କମ୍ ହୋଇଗଲା; କିନ୍ତୁ ପଞ୍ଚାୟତଗୁଡ଼ିକ ଚାଲିଥିଲା ଏବଂ ଗ୍ରାମ୍ୟ ଜୀବନର କେନ୍ଦ୍ର ଓ ମେରୁଦଣ୍ଡ ହୋଇଥିଲା । ସାମାଜିକ ଭାବରେ ଏବଂ ଧର୍ମ ଓ ପ୍ରଚଳିତ ପ୍ରଥା ବ୍ୟାପାରରେ ଗ୍ରାମଗୁଡ଼ିକରେ ପ୍ରାୟ ପରିବର୍ତ୍ତନ ହୋଇ ନ ଥିଲା । ତୁ ଜାଣୁ ଏବେ ସୁଦ୍ଧା ଭାରତରେ ଲକ୍ଷ ଲକ୍ଷ ଗ୍ରାମ ରହିଛି । ସହର ଓ ନଗର ସବୁ ଉପର ସ୍ତରରେ ବସିଛି; କିନ୍ତୁ ପ୍ରକୃତ ଭାରତ ହେଉଛି ଗ୍ରାମ୍ୟ ଭାରତ ଓ ତାହା ସେହିପରି ରହିଛି । ଇସଲାମ ଦ୍ୱାରା ଏହି ଗ୍ରାମ୍ୟ ଭାରତର ବିଶେଷ ପରିବର୍ତ୍ତନ ହୋଇ ନ ଥିଲା ।

ଇସଲାମ ଆଗମନରେ ହିନ୍ଦୁଧର୍ମ ଦୁଇ ଦିଗରେ ଦୋହଲିଗଲା; ବିଚିତ୍ର କଥା, ଏହି ଦୁଇଟିଯାକ ଦିଗ ପରସ୍ପରର ବିପରୀତ । ଏକ ପକ୍ଷରେ ଏହା ରକ୍ଷଣଶୀଳ ହୋଇଥିଲା; ଏହା ଉପରେ ହୋଇଥିବା ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ ଏକ ସଙ୍କୀର୍ଣ୍ଣତା ଭିତରେ ଆବଦ୍ଧ ଓ କଠିନ ହୋଇଗଲା । ଜାତି ପ୍ରଥା ଅଧିକ କଠୋର ଏବଂ ସମ୍ପର୍କହୀନ ହୋଇଗଲା; ପରଦା ଓ ନାରୀମାନଙ୍କର ନିଭୃତବାସ ଏକ ସାଧାରଣ କଥା ହୋଇଗଲା । ଅନ୍ୟ ପକ୍ଷରେ ଜାତି ଓ ଅତ୍ୟଧିକ ଉତ୍ସବ ବିରୁଦ୍ଧରେ ଏକ ପ୍ରକାର ଆଭ୍ୟନ୍ତରୀଣ ବିଦ୍ରୋହ ଘଟିଲା । ଏହାକୁ ସଂସ୍କାର କରିବା ନିମନ୍ତେ ଅନେକ ଉଦ୍ୟମ ହେଲା ।

ଅବଶ୍ୟ ଅନ୍ତିମ କାଳରୁ ଇତିହାସ ସାରା ହିନ୍ଦୁଧର୍ମରେ ସଂସ୍କାରକମାନେ ଦେଖା ଦେଇଛନ୍ତି, ସେମାନେ ଏହାର ଦୋଷ ଦୂର କରିବା ନିମନ୍ତେ ଚେଷ୍ଟା କରିଛନ୍ତି । ଏମାନଙ୍କ ମଧ୍ୟରେ ବୁଦ୍ଧ ହେଉଛନ୍ତି ସର୍ବଶ୍ରେଷ୍ଠ । ମୁଁ ମଧ୍ୟ ତୋତେ ଶଙ୍କରାଚାର୍ଯ୍ୟଙ୍କ ବିଷୟ କହିଛି । ସେ ଅଷ୍ଟମ ଶତାବ୍ଦୀରେ ବାସ କରୁଥିଲେ । ୩୦୦ ବର୍ଷ ପରେ ଏକାଦଶ

ଶତାବ୍ଦୀରେ ଚୋଲ ସାମ୍ରାଜ୍ୟର ଦକ୍ଷିଣରେ ଶଙ୍କରଙ୍କ ଚିନ୍ତାର ବିରୋଧୀ ନେତା ରୂପେ ଏକ ମହାନ ସଂସ୍କାରକ ବାସ କରୁଥିଲେ । ତାଙ୍କ ନାମ ହେଉଛି ରାମାନୁଜ । ଶଙ୍କର ଜଣେ ଶୈବ ଥିଲେ ଏବଂ ବିଚକ୍ଷଣ ଚିନ୍ତାଶୀଳ ଲୋକ ଥିଲେ । ରାମାନୁଜ ବୈଷ୍ଣବ ଥିଲେ ଏବଂ ବିଶ୍ୱାସଭକ୍ତି ତାଙ୍କର ପ୍ରଧାନ କଥା ଥିଲା । ରାମାନୁଜଙ୍କ ପ୍ରଭାବ ସମଗ୍ର ଭାରତରେ ବିସ୍ତାର କଲା । କିପରି ଇତିହାସ ସାରା ଭାରତ ରାଜନୀତିକକ୍ଷେତ୍ରରେ ଅନେକଗୁଡ଼ିଏ ଯୁଦ୍ଧରତ ରାଜ୍ୟରେ ବିଭକ୍ତ ହୋଇଥିଲେ ମଧ୍ୟ ସଂସ୍କୃତି ଦୃଷ୍ଟିରେ ଏକନିଷ୍ଠ ଥିଲା, ସେକଥା ମୁଁ ତୋତେ କହିଛି । ଯେତେବେଳେ କୌଣସି ମହାପୁରୁଷ ଜନ୍ମ ହୋଇଛନ୍ତି, ସେତେବେଳେ ବିରାଟ ଆନ୍ଦୋଳନ ହୋଇଛି ଓ ରାଜନୀତିକ ସୀମାକୁ ନ ମାନି ଏହା ସମଗ୍ର ଭାରତରେ ପ୍ରସାର ଲଭିଛି ।

ଭାରତରେ ଇସଲାମ ପ୍ରତିଷ୍ଠିତ ହେଲା ପରେ ହିନ୍ଦୁ ତଥା ମୁସଲମାନଙ୍କ ଭିତରେ ଏକ ନୂତନ ଧରଣର ସଂସ୍କାରକ ବାହାରିଲେ । ସେ ଦୁଇଧର୍ମର ସାଧାରଣ ଲକ୍ଷଣ ସବୁ ଉପରେ ଜୋରଦେଇ ଏବଂ ସେଗୁଡ଼ିକର ପ୍ରଚଳିତ ପ୍ରଥା ଓ ରୀତିନୀତି ଉପରେ ଆକ୍ରମଣ କରି ଉଭୟଙ୍କୁ ପରସ୍ପର ନିକଟତର କରିବା ନିମନ୍ତେ ଚେଷ୍ଟା କରୁଥିଲେ । ତେଣୁ ଦୁହିଁଙ୍କ ଭିତରେ ଏକପ୍ରକାର ସମନ୍ୱୟ ଆଣିବାର ପ୍ରଚେଷ୍ଟା ହୋଇଥିଲା; ଅର୍ଥାତ୍ ଦୁହିଁଙ୍କର ଏକପ୍ରକାର ମିଶ୍ରଣ । ଏହା ଏକ କଷ୍ଟକର କାର୍ଯ୍ୟ, ଯେହେତୁ ଦୁଇ ପକ୍ଷରେ ଅନେକ ଖରାପ ଭାବ ଓ ବିରୁଦ୍ଧ ଭାବଥିଲା; କିନ୍ତୁ ଆମେ ଦେଖିବା ଶତାବ୍ଦୀ ପରେ ଶତାବ୍ଦୀ ଏହା ହୋଇ ଆସିଥିଲା । ଏପରିକି କେତେକ ମୁସଲମାନ ଶାସକ ଯାହାଙ୍କ ଭିତରେ ମହାନ ଆକବର ହିଁ ଉଲ୍ଲେଖଯୋଗ୍ୟ ଏବଂ ସେ ଏହି ସମନ୍ୱୟ ଆଣିବା ନିମନ୍ତେ ଚେଷ୍ଟା କରିଥିଲେ ।

ରାମାନନ୍ଦ ୧୪ଶ ଶତାବ୍ଦୀରେ ଦକ୍ଷିଣରେ ବାସ କରୁଥିଲେ, ଏହି ସମନ୍ୱୟ ପ୍ରଚାର କରିବା ଦିଗରେ ସେ ପ୍ରଥମ ସୁପରିଚିତ ନିର୍ଦ୍ଦେଶକ ଥିଲେ । ସେ ଜାତି ବିରୁଦ୍ଧରେ ପ୍ରଚାର କଲେ ଏବଂ ତାକୁ ଅବଜ୍ଞା କଲେ । ତାଙ୍କର ଶିଷ୍ୟଙ୍କ ଭିତରେ କବୀର ନାମରେ ଜଣେ ମୁସଲମାନ ତନ୍ତୀ ଥିଲେ । ପରେ ସେ ଅଧିକ ପ୍ରସିଦ୍ଧ ହୋଇଥିଲେ । କବୀର ଖୁବ୍ ଲୋକପ୍ରିୟ ଥିଲେ । ତୁ ବୋଧହୁଏ ଜାଣୁ ତାଙ୍କର ହିନ୍ଦି ଭଜନ ସବୁ ଆଜି ମଧ୍ୟ ଉତ୍ତର ଭାରତର ସୁଦୂର ଗ୍ରାମମାନଙ୍କରେ ଭଲଭାବରେ ପ୍ରଚଳିତ । ସେ ହିନ୍ଦୁ ନଥିଲେ କି ମୁସଲମାନ ନଥିଲେ, ସେ ଉଭୟ ଥିଲେ । ଅଥବା ଏହି ଦୁଇ ଧର୍ମର ମଝିରେ କିଛିଥିଲେ ଏବଂ ତାଙ୍କର ଅନୁଚରମାନେ ଉଭୟ ଧର୍ମ ଓ ସବୁ ଜାତିରୁ ହେଉଥିଲେ । ଏକ କାହାଣୀ ପ୍ରଚଳିତ ଅଛି ଯେ ସେ ମଲାବେଳେ ତାଙ୍କ ଶରୀରକୁ ଏକ ଚଦରଦ୍ୱାରା ଆଚ୍ଛାଦିତ କରାଯାଇଥିଲା । ତାଙ୍କର ହିନ୍ଦୁ ଶିଷ୍ୟମାନେ ତାଙ୍କୁ ପୋଡ଼ିବା ଲାଗି ନେବାକୁ ଚାହୁଁଥିଲେ; ମୁସଲମାନ ଶିଷ୍ୟମାନେ କବର ଦେବାକୁ ଚାହୁଁଥିଲେ । ତେଣୁ ସେମାନେ ନିଜ ଭିତରେ ତର୍କ ଓ କଳହ କଲେ । କିନ୍ତୁ ଯେତେବେଳେ ଚଦରଟି ଉଠାଇଲେ ଦେଖିଲେ ଯେ ଯେଉଁ

ଶିଖାଇବାକୁ ନେବାକୁ ସେମାନେ କଳହ କରୁଥିଲେ, ତାହା ଅନ୍ତର୍ଦ୍ଧାନ ହୋଇଯାଇଛି ଏବଂ ତାହା ସ୍ଥାନରେ କେତେକ ତଟକା ଫୁଲ ରହିଛି । ଏହି କାହାଣୀ ସମ୍ପୂର୍ଣ୍ଣ କାଳ୍ପନିକ ହୋଇ ପାରିଥାଏ; ମାତ୍ର ଏହା ଗୋଟିଏ ସୁନ୍ଦର ଗପ ।

କବୀରଙ୍କ ପରେ ଉତ୍ତରରେ ଆଉ ଜଣେ ବୃହତ୍ ସଂସ୍କାରକ ଓ ଧାର୍ମିକ ନେତା ବାହାରିଲେ; ଏ ହେଉଛନ୍ତି ଗୁରୁ ନାନକ । ସେ ଶିଖ ଧର୍ମର ପ୍ରତିଷ୍ଠାତା । ତାଙ୍କ ପରେ ଗୋଟିଏ ପରେ ଗୋଟିଏ ଦଶୋଟି ଶିଖ ଗୁରୁ ଆସିଲେ; ସେମାନଙ୍କ ଭିତରେ ଶେଷ ହେଉଛନ୍ତି ଗୁରୁ ଗୋବିନ୍ଦ ସିଂହ ।

ଭାରତର ଧାର୍ମିକ ଓ ସାଂସ୍କୃତିକ ଇତିହାସରେ ପ୍ରସିଦ୍ଧ ଆଉ ଏକ ବ୍ୟକ୍ତିଙ୍କ ନାମ ଏଠାରେ ମୁଁ ଉଲ୍ଲେଖ କରିବାକୁ ଚାହେଁ । ସେ ହେଉଛନ୍ତି ଚୈତନ୍ୟ; ୧୬ଶ ଶତାବ୍ଦୀର ପ୍ରଥମ ଭାଗରେ ବଙ୍ଗଳାର ଜଣେ ଖ୍ୟାତନାମା ପଣ୍ଡିତ । ସେ ହଠାତ୍ ସ୍ଥିର କଲେ ଯେ ତାଙ୍କର ବିଦ୍ୟାଧ୍ୟୟନର କୌଣସି ମୂଲ୍ୟ ନାହିଁ ଏବଂ ସେ ତାହା ଛାଡ଼ିଦେଇ ଧର୍ମବିଶ୍ୱାସ ପଥ ଗ୍ରହଣ କଲେ । ସେ ଜଣେ ଶ୍ରେଷ୍ଠ ଭକ୍ତ ପାଲଟିଲେ । ତାଙ୍କର ଶିଷ୍ୟମାନଙ୍କ ସହିତ ସମଗ୍ର ବଙ୍ଗଳାରେ ସେ ଭଜନ ଗାଇ ଗାଇ ବୁଲିଲେ । ସେ ମଧ୍ୟ ଏକ ବୈଷ୍ଣବ ସମ୍ପ୍ରଦାୟ ପ୍ରତିଷ୍ଠା କଲେ ଏବଂ ଆଜିସୁଦ୍ଧା ବଙ୍ଗଳାରେ ତାଙ୍କର ଖୁବ୍ ପ୍ରଭାବ ରହିଛି ।

ଧାର୍ମିକ ସଂସ୍କାର ଓ ସମନ୍ୱୟ ସମ୍ବନ୍ଧରେ ଏତିକି । ଜୀବନର ସବୁ ବିଭାଗରେ ବି ଏହିପରି ସମନ୍ୱୟ ଚାଲିଥିଲା । କେତେବେଳେ ଜ୍ଞାତସାରରେ ଏବଂ ଅନେକ ସମୟରେ ଅଜ୍ଞାତ-ସାରରେ ଏହା ହେଉଥିଲା । ଏକ ନୂତନ ସଂସ୍କୃତି, ଏକ ନୂତନ କାରୁକାର୍ଯ୍ୟ ଓ ଏକ ନୂତନ ଭାଷା ଗଢ଼ି ଉଠିଥିଲା । କିନ୍ତୁ ମନେରଖ ଯେ ଏସବୁ ଗ୍ରାମ ଅପେକ୍ଷା ସହରଗୁଡ଼ିକରେ ଅଧିକ ଭାବରେ ହେଉଥିଲା ଏବଂ ବିଶେଷ ଭାବରେ ରାଜଧାନୀ ଦିଲ୍ଲୀ ଓ ଅନ୍ୟ ପ୍ରଦେଶ ଏବଂ ଦେଶୀୟ ରାଜ୍ୟଗୁଡ଼ିକର ରାଜଧାନୀରେ ହେଉଥିଲା । ଉପରେ ରାଜା ପୂର୍ବାପେକ୍ଷା ଅଧିକ ଏକଛତ୍ର ଥିଲେ । ପୁରାତନ ଭାରତୀୟ ଶାସକମାନଙ୍କର ଏକଛତ୍ରାଧିକାରକୁ ରୋକିବା ନିମନ୍ତେ କେତେକ ରୀତିନୀତି ଓ ପ୍ରଚଳିତ ପ୍ରଥା ଥିଲା । ନୂତନ ମୁସଲମାନ ଶାସକଙ୍କର ଏହା ବି ନ ଥିଲା । ଯଦିଓ ତଥ୍ୟ ହିସାବରେ ଇସଲାମରେ ଅଧିକ ସମ୍ଭାବନା ଅଛି ଏବଂ ଆମେ ତ ଦେଖିଛେ ଯେ ଦାସ ବି ସୁଲତାନ ହୋଇ ପାରୁଥିଲା, ତଥାପି ରାଜାଙ୍କ ଏକଛତ୍ର ଓ ଅପ୍ରତିହତ କ୍ଷମତା ବୃଦ୍ଧି ପାଇଲା । ଯେଉଁ ଉନ୍ମତ୍ତ ଟୋଗଲକ ଦିଲ୍ଲୀରୁ ଦୌଲତାବାଦକୁ ରାଜଧାନୀ ଉଠାଇ ନେଇଥିଲେ, ତାଙ୍କ ଅପେକ୍ଷା ଆଉ ଅଧିକ ବିଚିତ୍ର ଦୃଷ୍ଟାନ୍ତ କ'ଣ ବା ଅଛି ?

ଦାସ ରଖିବାର ପ୍ରଚଳନ ବିଶେଷତଃ ସୁଲତାନମାନଙ୍କଦ୍ୱାରା ବୃଦ୍ଧି ପାଇଲା । ଯୁଦ୍ଧବେଳେ ଏମାନଙ୍କୁ ଧରିବା ସକାଶେ ବିଶେଷ ଚେଷ୍ଟା ହେଲା । ଏମାନଙ୍କ ଭିତରେ

କାରିଗରମାନଙ୍କୁ ବିଶେଷ ମୂଲ୍ୟ ଦିଆଯାଇଥିଲା । ଅନ୍ୟମାନଙ୍କୁ ସୁଲତାନଙ୍କ ପ୍ରହରୀରୂପେ ନିଯୁକ୍ତ କରାଯାଉଥିଲା ।

ନାଳନ୍ଦା ଓ ତକ୍ଷଶୀଳାର ମହାନ ବିଶ୍ୱବିଦ୍ୟାଳୟରେ କ'ଣ ହେଉଥିଲା ? ଦୀର୍ଘକାଳରୁ ସେଗୁଡ଼ିକର ଅସ୍ତିତ୍ୱ ଲୋପ ପାଇଥିଲା; ମାତ୍ର ନୂତନ ଧରଣର ଅନେକ ନୂତନ ବିଶ୍ୱ-ବିଦ୍ୟାଳୟ କେନ୍ଦ୍ର ଜାଗ୍ରତ ହେଲା । ଏଗୁଡ଼ିକୁ ଟୋଲ୍ କୁହାଯାଉଥିଲା । ଏଥିରେ ପୁରାତନ ସଂସ୍କୃତ ଶିକ୍ଷାଦାନ କରାଗଲା । ଏଗୁଡ଼ିକ ଆଧୁନିକ କାଳୋପଯୋଗୀ ନ ଥିଲା । ସେଗୁଡ଼ିକ ଅତୀତକୁ ଧରି ରହିଥିଲେ ଏବଂ ସମ୍ଭବତଃ ଏକ ପ୍ରତିକ୍ରିୟାଭାବ ସେଥିରେ ରହିଥିଲା । କାଶୀ ସର୍ବଦା ଏହି କେନ୍ଦ୍ରମାନଙ୍କ ଭିତରେ ଏକ ବିଶାଳ କେନ୍ଦ୍ର ହୋଇ ରହିଛି ।

ମୁଁ କବୀରଙ୍କ ହିନ୍ଦି ଭଜନ ବିଷୟରେ ଉପରେ କହିଛି । ସୁତରାଂ ପଞ୍ଚଦଶ ଶତାବ୍ଦୀରେ ଆଗରୁ ହିନ୍ଦି କେବଳ ଲୋକପ୍ରିୟ ନୁହେଁ, ଏକ ସାହିତ୍ୟିକ ଭାଷାରୂପେ ପ୍ରଚଳିତ ଥିଲା । ଦୀର୍ଘକାଳରୁ ସଂସ୍କୃତ ଆଉ ଜୀବନ୍ତ ଭାଷା ହୋଇ ରହି ନ ଥିଲା । ଏପରି କି କାଳିଦାସ ଓ ଗୁପ୍ତ ରାଜାଙ୍କ କାଳରେ ସଂସ୍କୃତ ଶିକ୍ଷିତ ଲୋକଙ୍କ ଭିତରେ ସୀମାବଦ୍ଧ ଥିଲା । ସାଧାରଣ ଲୋକେ ସଂସ୍କୃତର ଭିନ୍ନ ପ୍ରକାର ଏକ ପ୍ରାକୃତ ଭାଷାରେ କଥାବାର୍ତ୍ତା କରୁଥିଲେ । ଧୀରେ ଧୀରେ ସଂସ୍କୃତର ଅନ୍ୟ କନ୍ୟା ସବୁ; ଯଥା—ହିନ୍ଦି, ବଙ୍ଗଳା, ମରହଟ୍ଟୀ ଓ ଗୁଜୁରାଟୀ ବୃଦ୍ଧି ପାଇଲା । ଅନେକ ମୁସଲମାନ କବି ଓ ଲେଖକ ହିନ୍ଦିରେ ଲେଖିଥିଲେ । ୧୫ଶ ଶତାବ୍ଦୀରେ ଜୌନପୁରର ଜଣେ ମୁସଲମାନ ରାଜା ମହାଭାରତ ଓ ଭାଗବତକୁ ସଂସ୍କୃତରୁ ବଙ୍ଗଳାରେ ଅନୁବାଦ କରାଇଥିଲେ । ଦକ୍ଷିଣରେ ବିଜାପୁରର ମୁସଲମାନ ଶାସକମାନଙ୍କର ହିସାବପତ୍ର ମରହଟ୍ଟୀରେ ରଖାଯାଉଥିଲା । ତେଣୁ ଆମେ ଦେଖିବା ଯେ, ଆଗରୁ ୧୫ଶ ଶତାବ୍ଦୀରେ ଏହି ସଂସ୍କୃତ-ଜାତ ଭାଷାଗୁଡ଼ିକର ପ୍ରଚୁର ପ୍ରଚଳନ ଥିଲା । ଅବଶ୍ୟ ଦକ୍ଷିଣରେ ଦ୍ରାବିଡ଼ ଭାଷା; ଯଥା—ତାମିଲ, ତେଲଗୁ, ମାଲୟାଲମ ଓ କାନାଡ଼ୀ ଆହୁରି ଆଗରୁ ପ୍ରଚଳିତ ଥିଲା ।

ମୁସଲମାନ କଚେରୀରେ ପାର୍ସି ଭାଷା ବ୍ୟବହୃତ ହେଉଥିଲା । କଚେରୀ ବା ସରକାରୀ ଅଫିସ ସହିତ କୌଣସି ପ୍ରକାର ସମ୍ପର୍କରେ ଆସିବାକୁ ହେଲେ ଅଧିକାଂଶ ଶିକ୍ଷିତ ଲୋକଙ୍କୁ ପାର୍ସି ଶିଖିବାକୁ ପଡୁଥିଲା । ସୁତରାଂ ବହୁସଂଖ୍ୟକ ହିନ୍ଦୁ ପାର୍ସି ଶିଖିଲେ । କ୍ରମେ ଶିବିର ଓ ବଜାରମାନଙ୍କରେ ଏକ ନୂତନ ଭାଷା ପ୍ରଚଳିତ ହେଲା । ଏହା ହେଉଛି 'ଉର୍ଦ୍ଦୁ'; ଏହାର ଅର୍ଥ 'ଶିବିର' । ବାସ୍ତବରେ ଏହା ଏକ ନୂତନ ଭାଷା ନ ଥିଲା । ଏହା ହିନ୍ଦି, କେବଳ ସାମାନ୍ୟ ଭାବରେ ପୃଥକ ପୋଷାକ ପିନ୍ଧିଥିଲା । ଏଥିରେ ଅଧିକ ପାର୍ସି ଶବ୍ଦ ରହିଲା; ମାତ୍ର ଅନ୍ୟଥା ଏହା ହିନ୍ଦି ଅଟେ । ଏହି ହିନ୍ଦି ଉର୍ଦ୍ଦୁ ଭାଷା ଅଥବା ଯାହାକୁ ବେଳେବେଳେ ହିନ୍ଦୁସ୍ଥାନୀ କୁହାଯାଏ, ସମଗ୍ର ଉତ୍ତର ଓ ମଧ୍ୟଭାରତରେ ବିସ୍ତାର ପାଇଲା । ଆଜି ସାମାନ୍ୟ ପାର୍ଥକ୍ୟ ସହିତ ପ୍ରାୟ ୧୫,୦୦,୦୦,୦୦୦ ଲୋକ ଏହି ଭାଷା କହୁଛନ୍ତି ଏବଂ ଆହୁରି ଅଧିକ

ସଂଖ୍ୟକ ଲୋକ ଏହି ଭାଷା ବୁଝିପାରୁଛନ୍ତି । ତେଣୁ ସଂଖ୍ୟାଦୃଷ୍ଟିରୁ ଏହା ପୃଥିବୀର ପ୍ରଧାନ ଭାଷା ଭିତରୁ ଗୋଟିଏ ।

ନୂତନ ଢଙ୍ଗର କାରୁକାର୍ଯ୍ୟ ବୃଦ୍ଧି ପାଇଲା ଓ ଅନେକ ବିଶାଳ କୋଠା ନିର୍ମିତ ହେଲା —ଦକ୍ଷିଣରେ ବିଜୟନଗର ଓ ବିଜାପୁରରେ, ଗୋଲକୁଣ୍ଡାରେ, ଅହମଦାବାଦରେ ଏହା ସେତେବେଳେ ଏକ ବିଶାଳ ସୁନ୍ଦର ନଗରୀ ଥିଲା ଏବଂ ଯୌନପୁରରେ ଖୁବ ସୁନ୍ଦର କୋଠା ହେଲା । ଏହା ଏଲାହାବାଦରୁ ବେଶୀ ଦୂର ନୁହେଁ; ହାଇଦ୍ରାବାଦ ନିକଟରେ ଗୋଲକୁଣ୍ଡାର ପୁରାତନ ଧ୍ୱଂସାବଶେଷ ଆମେ ଯେ ଦେଖିଥିଲେ ତୋର ମନେ ଅଛି ତ ? ଆମେ ସେ ବୃହତ ଦୁର୍ଗ ଉପରକୁ ଯାଇଥିଲେ ଏବଂ ତଳେ ପ୍ରାସାଦ ଓ ବଜାର ଥିବା ପୁରାତନ ନଗରଟି ବିସ୍ତୃତ ହୋଇଥିବାର ଦେଖିଥିଲେ—ଏହା ଏବେ ଧ୍ୱଂସ ହୋଇଯାଇଛି ।

ତେଣୁ ଯେତେବେଳେ ରାଜାମାନେ ନିଜ ଭିତରେ କଳହ କରି ପରସ୍ପରକୁ ଧ୍ୱଂସ କରିବାରେ ଲାଗିଥିଲେ, ସେତେବେଳେ ଭାରତରେ ନୀରବ ଶକ୍ତିଗୁଡ଼ିକ ଅବିଶ୍ରାନ୍ତ ଭାବରେ ଏକ ସମନ୍ୱୟ ଲାଗି କାର୍ଯ୍ୟ କରୁଥିଲା, ଯଦ୍ୱାରା ଭାରତର ଲୋକେ ଏକତ୍ର ଆନନ୍ଦରେ ବାସ କରିବେ ଏବଂ ପ୍ରଗତି ଓ ଉନ୍ନତି ନିମନ୍ତେ ନିଜର ଶକ୍ତି ମିଳିତରୂପେ ନିୟୋଗ କରିବେ । କେତେ ଶତାବ୍ଦୀ ଚେଷ୍ଟା ଫଳରେ ସେମାନେ ପ୍ରଚୁର ପରିମାଣରେ ସଫଳତା ଲାଭ କରିଥିଲେ । କିନ୍ତୁ ତାଙ୍କର କାର୍ଯ୍ୟ ସମାପ୍ତ ହେବା ପୂର୍ବରୁ ଆଉ ଏକ ବିପର୍ଯ୍ୟୟ ହେଲା ଏବଂ ଆମେ ଯେତେଦୂର ଆସିଥିଲୁ ତାର ଏକାଂଶ ପୁଣି ପଛୁଇବାକୁ ପଡ଼ିଲା । ଆଜି ପୁନର୍ବାର ଆମକୁ ସେହି ପଥରେ ଯିବାକୁ ହେଉଛି ଏବଂ ସମସ୍ତଙ୍କର ହିତଦାୟକ ସମନ୍ୱୟ ଲାଗି କାର୍ଯ୍ୟ କରିବାକୁ ପଡ଼ୁଛି । ମାତ୍ର ଏଥରକ ଏହା ନିର୍ଦ୍ଦିଷ୍ଟ ଭିତ୍ତି ଉପରେ ଅବଶ୍ୟ କରାଯିବ । ଏହା ଅବଶ୍ୟ ସ୍ୱାଧୀନତା ଓ ସମାନତା ଉପରେ ପ୍ରତିଷ୍ଠିତ ହେବ ଏବଂ ଉନ୍ନତ ବିଶ୍ୱବ୍ୟବସ୍ଥା ସହିତ ଖାପ ଖାଇବ । କେବଳ ଏଥିରେ ହିଁ ଏହା ତିଷ୍ଠିପାରିବ ।

ଅନେକ ବର୍ଷ ହେଲା ଧର୍ମ ଓ ସଂସ୍କୃତିର ସମସ୍ୟା ଭାରତର ପ୍ରଗତିଶୀଳ ମନୋଭାବାପନ୍ନ ଲୋକଙ୍କ ମନ ଚଞ୍ଚଳ କରିଛି । ଏହା ଏପରି ଭାବରେ ଆଚ୍ଛନ୍ନ କରି ରହିଛି ଯେ ରାଜନୈତିକ ଓ ସାମାଜିକ ସ୍ୱାଧୀନତା ପାସୋରି ହୋଇଯାଏ ଏବଂ ଠିକ୍ ଇଉରୋପ ଯେତେବେଳେ କେତେ ବିଭିନ୍ନ ଦିଗରେ ଅଗ୍ରସର ହୋଇ ଚାଲିଛି, ସେତେବେଳେ ଭାରତ ଅପ୍ରଗତିଶୀଳ ଓ ଅଙ୍କୁରିତ ଅବସ୍ଥାରେ ପଛରେ ପଡ଼ିରହିଛି ।

ମୁଁ ତୋତେ ଆଗରୁ କହିଛି ଯେ ଏପରି ବେଳ ଥିଲା ଯେତେବେଳେ ଭାରତ ରସାୟନ ବିଦ୍ୟା, ରଙ୍ଗ ତିଆରି ଓ ଇସ୍ପାତ ତରଳାଇବାରେ ଏତେ ଉନ୍ନତି କରିଥିଲା ଏବଂ ଅନ୍ୟ ଅନେକ କାରଣରୁ ବିଦେଶୀ ବଜାରକୁ ନିୟନ୍ତ୍ରଣ କରୁଥିଲା । ଭାରତୀୟ ଜାହାଜଗୁଡ଼ିକ

ସୁଦୂର ଦେଶମାନଙ୍କୁ ବାଣିଜ୍ୟ ପଦାର୍ଥ ବୋହି ନେଉଥିଲେ । ଆମେ ଯେଉଁ ସମୟର କଥା କହୁଛେ ଭାରତ ତାର ବହୁ ଆଗରୁ ଏହି କର୍ତ୍ତୃତ୍ୱ ହରାଇଥିଲା । ୧୬ଶ ଶତାବ୍ଦୀରେ ନଦୀ ପୂର୍ବଦଗକୁ ଉଜାଣି ବୋହିବାକୁ ଆରମ୍ଭ କଲା । ଆରମ୍ଭ ବେଳେ ଏହା କ୍ଷୀଣ ଧାର ମାତ୍ର ଥିଲା । ଏହା କ୍ରମେ ବୃଦ୍ଧି ପାଇ ଏକ ବିରାଟ ସ୍ରୋତରେ ପରିଣତ ହେଲା ।

# ୭୭ : ଦକ୍ଷିଣ ଭାରତର ରାଜ୍ୟସମୂହ

ଜୁଲାଇ ୧୪, ୧୯୩୨

ଆମେ ଭାରତ ପ୍ରତି ଆଉ ଏକ ଦୃଷ୍ଟି ନିକ୍ଷେପ କରିବା ଏବଂ ଏଠାକାର ରାଜ୍ୟ ଓ ସାମ୍ରାଜ୍ୟଗୁଡ଼ିକର ବାରମ୍ବାର ଏକଡ଼ ସେକଡ଼ ହେଉଥିବାର ଚିତ୍ର ଦେଖିବା । ଏହା ଏକ ପ୍ରକାର ମହାନ ଓ ଅପରନ୍ତୁ ନୀରବ ଚଳଚ୍ଚିତ୍ର ପରି ଗୋଟିକ ପରେ ଗୋଟିଏ ଆସୁଥାଏ ।

ବୋଧହୁଏ ତୋର ମନେଥିବ, କିପରି ପାଗଳ ସୁଲତାନ ମହମ୍ମଦ ତୋଗଲକ ଦିଲ୍ଲୀ ସାମ୍ରାଜ୍ୟ ଭାଙ୍ଗିଦେବାରେ କୃତକାର୍ଯ୍ୟ ହୋଇଥିଲେ । ଦକ୍ଷିଣରେ ବଡ଼ ପ୍ରଦେଶଗୁଡ଼ିକର ପତନ ହେଲା ଏବଂ ଯେ ନୂତନ ରାଷ୍ଟ୍ରସବୁ ଉଦ୍ଭବ ହେଲା, ସେଗୁଡ଼ିକ ମଧ୍ୟରେ ହିନ୍ଦୁ ରାଜ୍ୟ ବିଜୟନଗର ଏବଂ ମୁସଲମାନ ରାଜ୍ୟ ଗୁଲବର୍ଗା ପ୍ରଧାନ । ପୂର୍ବକୁ ଗୌଡ଼ ପ୍ରଦେଶରେ ବଙ୍ଗଳା ଓ ବିହାର ଅନ୍ତର୍ଗତ ଥିଲା, ଏହା ଏକ ମୁସଲମାନ ଶାସକଙ୍କ ଅଧୀନରେ ସ୍ୱାଧୀନ ହୋଇଗଲା ।

ମହମ୍ମଦଙ୍କ ପରେ ତାଙ୍କ ପୁତୁରା ଫିରୋଜ ସାହା ଉତ୍ତରାଧିକାରୀ ହେଲେ । ସେ ତାଙ୍କ ଖୁଡ଼ୁତାଙ୍କ ଅପେକ୍ଷା ଅଧିକ ବୁଦ୍ଧିମାନ ଓ ଦୟାଶୀଳ ଥିଲେ; କିନ୍ତୁ ଅସହିଷ୍ଣୁ ଥିଲେ । ଫିରୋଜ ଜଣେ ଦକ୍ଷ ଶାସକ ଥିଲେ ଏବଂ ସେ ତାଙ୍କ ଶାସନରେ ଅନେକ ସଂସ୍କାର ପ୍ରବର୍ତ୍ତନ କରିଥିଲେ । ସେ ଦକ୍ଷିଣ ବା ପୂର୍ବରେ ହରାଇଥିବା ପ୍ରଦେଶ ଫେରି ପାଇପାରିଲେ ନାହିଁ; କିନ୍ତୁ ସାମ୍ରାଜ୍ୟ ଭାଙ୍ଗିଯିବା ପ୍ରକ୍ରିୟା ରୋକି ପାରିଥିଲେ । ସେ ବିଶେଷ ଭାବରେ ନୂତନ ନଗର, ପ୍ରାସାଦ, ମସଜିଦ ଓ ସଜ୍ଜିତ ଉଦ୍ୟାନମାନ ନିର୍ମାଣ କରିବାର ପ୍ରିୟ ଥିଲେ । ଦିଲ୍ଲୀ ନିକଟସ୍ଥ ଫିରୋଜାବାଦ ଏବଂ ଏଲାହାବାଦର ଅନତିଦୂରସ୍ଥ ଜୌନପୁର ତାଙ୍କଦ୍ୱାରା ସ୍ଥାପିତ ହୋଇଥିଲା । ସେ ମଧ୍ୟ ଯମୁନାରେ ଏକ ବୃହତ କେନାଲ ତିଆରି କରିଥିଲେ ଏବଂ ଭାଙ୍ଗି ପଡ଼ୁଥିବା ଅନେକ ପୁରାତନ କୋଠା ମରାମତି କରିଥିଲେ । ତାଙ୍କର ଏହିସବୁ କାର୍ଯ୍ୟ ନିମନ୍ତେ ସେ ଅତ୍ୟନ୍ତ ଗର୍ବ ଅନୁଭବ କରୁଥିଲେ ଏବଂ ଯେଉଁସବୁ ନୂତନ କୋଠା ସେ

ନିର୍ମାଣ କରୁଥିଲେ ଓ ପୁରାତନ କୋଠାଗୁଡ଼ିକ ମରାମତି କରୁଥିଲେ, ତାହାର ଏକ ଦୀର୍ଘ ତାଲିକା ରଖି ଯାଇଥିଲେ ।

ଫିରୋଜ ସାହାଙ୍କ ମାତା ଜଣେ ରାଜପୁତ ରମଣୀ ଓ ଜଣେ ବଡ଼ ସାମନ୍ତଙ୍କର କନ୍ୟା; ତାଙ୍କର ନାମ ହେଉଛି ବିବି ନୈଲା । କଥିତ ଅଛି ଯେ, ପ୍ରଥମେ ଫିରୋଜଙ୍କ ପିତାଙ୍କ ସହିତ ତାଙ୍କୁ ବିବାହ ଦେବା ନିମନ୍ତେ ଅସ୍ୱୀକାର କରାଯାଇଥିଲା; ତେଣୁ ଯୁଦ୍ଧ ହେଲା । ନୈଲାଙ୍କ ରାଜ୍ୟ ଆକ୍ରମଣ କରାଯାଇ ଧ୍ୱଂସ କରି ଦିଆଗଲା । ବିବି ନୈଲା ତାଙ୍କ ହେତୁ ନିଜ ରାଜ୍ୟର ଲୋକଙ୍କ ଏପରି କଷ୍ଟଭୋଗର ସମ୍ବାଦ ପାଇ ଅତ୍ୟନ୍ତ ଅଧୀର ହୋଇପଡ଼ିଲେ ଏବଂ ଫିରୋଜସାହାଙ୍କ ପିତାଙ୍କ ନିକଟରେ ନିଜକୁ ସମର୍ପଣ କରି ନିଜ ପ୍ରଜାଙ୍କୁ ରକ୍ଷା କଲେ ଓ ଏହି ଅଧ୍ୟାୟ ଶେଷ କରି ଦେଲେ; ତେଣୁ ଫିରୋଜ ସାହାଙ୍କ ଦେହରେ ରାଜପୁତ ରକ୍ତ ପ୍ରବାହିତ ହେଉଥିଲା । ତୁ ଦେଖିବୁ ଯେ ମୁସଲମାନ ଶାସକ ଓ ରାଜପୁତ ରମଣୀଙ୍କ ମଧ୍ୟରେ ଏପରି ଅନ୍ତର୍ବିବାହ ବହୁତ ହେଉଥିଲା ଏବଂ ଏହା ଏକ ଜାତୀୟତା ଭାବ ବୃଦ୍ଧିରେ ଅବଶ୍ୟ ଖୁବ୍ ସାହାଯ୍ୟ କରିଥିବ ।

୩୭ ବର୍ଷ କାଳ ଦୀର୍ଘ ରାଜତ୍ୱ କଲା ପରେ ୧୩୮୮ରେ ଫିରୋଜ ମଲେ । ତାହା ସଙ୍ଗେ ସଙ୍ଗେ ଦିଲ୍ଲୀ ସାମ୍ରାଜ୍ୟରେ ସେ ଯାହା ଗଠନ କରିଥିଲେ, ତାହା ଖଣ୍ଡ ଖଣ୍ଡ ହୋଇଗଲା । କୌଣସି କେନ୍ଦ୍ର ଶାସନ ନ ଥିଲା ଏବଂ କ୍ଷୁଦ୍ର ଶାସକମାନେ ସବୁଠି ପ୍ରାଧାନ୍ୟ କଲେ । ଏହି ବିଶୃଙ୍ଖଳା ଓ ଦୁର୍ବଳତା ପୂର୍ଣ୍ଣ କାଳରେ ତୈମୁର ଉତ୍ତରରୁ ଭାରତକୁ ଆସିଲେ । ଏହା ଠିକ୍ ଫିରୋଜସାହାଙ୍କ ମୃତ୍ୟୁର ଦଶ ବର୍ଷ ପରେ । ସେ ପ୍ରାୟ ଦିଲ୍ଲୀକୁ ବିନାଶ କଲେ । ଧୀରେ ଧୀରେ ଏହି ନଗରଟି ଉଠିଲା ଏବଂ ୫୦ ବର୍ଷ ପରେ ଏହା ପୁନର୍ବାର ଏକ କେନ୍ଦ୍ର ଶାସନର ରାଜଧାନୀ ହେଲା । ଜଣେ ସୁଲତାନ ଏଥିରେ ମୁଖିଆ ଥିଲେ । କିନ୍ତୁ ଏହା କ୍ଷୁଦ୍ର ରାଜ୍ୟ ଥିଲା ଏବଂ ଦକ୍ଷିଣ-ପଶ୍ଚିମ ବା ପୂର୍ବର ବିଶାଳ ରାଜ୍ୟ ସହିତ ତୁଳନା କରାଯାଇପାରେ ନାହିଁ । ସୁଲତାନ ଆଫଗାନ ଥିଲେ । ସେମାନେ ଖୁବ୍ ଦରିଦ୍ର ଥିଲେ ଓ ଏପରିକି ତାଙ୍କର ନିଜର ଆଫଗାନ ସାମନ୍ତମାନେ ଶେଷରେ ତାଙ୍କ ଉପରେ ବିରକ୍ତ ହୋଇଗଲେ ଏବଂ ଅତ୍ୟନ୍ତ ବିରକ୍ତ ହୋଇ ବିଦେଶୀ ଆସି ତାଙ୍କ ଉପରେ ଶାସନ କରିବାକୁ ନିମନ୍ତ୍ରଣ କଲେ । ଏହି ବିଦେଶୀ ହେଉଛନ୍ତି ବାବର । ସେ ଜଣେ ମଙ୍ଗୋଲ ଅଥବା ଭାରତରେ ସେମାନେ ବସତି କଲା ପରେ ତାଙ୍କୁ ମୋଗଲ ବୋଲି କୁହାଯାଉ ଥିବାରୁ ଆମେ ଏଣିକି ସେହି ନାମ ଦେବା । ସେ ତୈମୁରଙ୍କ ପ୍ରତ୍ୟକ୍ଷ ବଂଶଧର ଥିଲେ ଏବଂ ତାଙ୍କର ମାତା ଚେଙ୍ଗିଜ ଖାଁଙ୍କ ବଂଶଧର ଥିଲେ । ସେତେବେଳେ ସେ କାବୁଲର ଶାସକ ଥିଲେ । ସେ ଭାରତକୁ ଆସିବା ନିମନ୍ତ୍ରଣ ଖୁସିରେ ଗ୍ରହଣ କଲେ; ତଥାପି ନିମନ୍ତ୍ରଣ ନ ପାଇଥିଲେ ବି ବୋଧହୁଏ ସେ ଆସିଥାନ୍ତେ । ୧୫୨୬ରେ ଦିଲ୍ଲୀ ନିକଟସ୍ଥ ପାନିପଥ ସମତଳ ଭୂମିରେ ବାବର ହିନ୍ଦୁସ୍ଥାନ ସାମ୍ରାଜ୍ୟ ଜୟ କଲେ । ପୁନର୍ବାର ଏକ ବିଶାଳ ସାମ୍ରାଜ୍ୟ ଉଦିତ ହେଲା । ଏହା ଭାରତର ମୋଗଲ ସାମ୍ରାଜ୍ୟ ନାମରେ ପରିଚିତ । ଦିଲ୍ଲୀ ପୁନର୍ବାର

ପ୍ରାଧାନ୍ୟ ଲାଭ କଲା ଓ ଏହି ସାମ୍ରାଜ୍ୟର ରାଜଧାନୀ ହେଲା; କିନ୍ତୁ ଆମେ ଏହା ବିଷୟରେ ବିଚାର କରିବା ପୂର୍ବରୁ ଭାରତର ଅନ୍ୟ ଅଂଶ ପ୍ରତି ଅବଶ୍ୟ ନଜର ପକାଇବା ଏବଂ ୫୦ ବର୍ଷକାଳ ଦିଲ୍ଲୀର ପତନ ଅବସ୍ଥାରେ ଏଠାରେ କ'ଣ ଘଟିଥିଲା ଦେଖିବା ।

ଏହି କାଳରେ ଗ୍ରେଟ ବଡ଼ ଅନେକଗୁଡ଼ିଏ ରାଜ୍ୟ ଭାରତରେ ଥିଲା । ନୂତନ ସ୍ଥାପିତ ଜୌନପୁରରେ ସାର୍କି ରାଜାଙ୍କ ଦ୍ୱାରା ଶାସିତ ଏକ କ୍ଷୁଦ୍ର ମୁସଲମାନ ରାଜ୍ୟ ଥିଲା । ଏହା ବୃହତ୍ ବା ପ୍ରଭାବଶାଳୀ ରାଜ୍ୟ ନ ଥିଲା ଏବଂ ରାଜନୈତିକ ଦୃଷ୍ଟିରେ ଏହାର ମହତ୍ତ୍ୱ ନ ଥିଲା; ମାତ୍ର ୧୫ଶ ଶତାବ୍ଦୀରେ ପ୍ରାୟ ୧୦୦ ବର୍ଷ ପର୍ଯ୍ୟନ୍ତ ଏହା ସଂସ୍କୃତି ଓ ଧର୍ମ ସହିଷ୍ଣୁତାର ପ୍ରଧାନ କେନ୍ଦ୍ର ଥିଲା । ଜୌନପୁରର ମୁସଲମାନ କଲେଜଗୁଡ଼ିକ ଏହି ସହନଶୀଳ ଭାବ ପ୍ରସାର କରିଥିଲା ଏବଂ ଜଣେ ଶାସକ ଏପରିକି ହିନ୍ଦୁ ଓ ମୁସଲମାନଙ୍କ ଭିତରେ ସମନ୍ୱୟ ଆଣିବାର ଚେଷ୍ଟା କରିଥିଲେ । ଏହି ସମ୍ବନ୍ଧରେ ଗତ ଚିଠିରେ ମୁଁ ଲେଖିଛି । କଳା ଓ ସୁନ୍ଦର ପ୍ରାସାଦ ନିର୍ମାଣକୁ ଉତ୍ସାହିତ କରାଗଲା ଏବଂ ସେହିପରି ହିନ୍ଦି ଓ ବଙ୍ଗଳା ଆଦି ବର୍ଦ୍ଧିଷ୍ଣୁ ପ୍ରଚଳିତ ଦେଶୀୟ ଭାଷାଗୁଡ଼ିକୁ ଉତ୍ସାହ ଦିଆଗଲା । ପ୍ରକୃତ ଭାବରେ ଅସହିଷ୍ଣୁତା ମଧ୍ୟରେ କ୍ଷୁଦ୍ର ଓ କ୍ଷଣସ୍ଥାୟୀ ଜୌନପୁର ରାଜ୍ୟଟି ସଂସ୍କୃତି ତା'ର କେନ୍ଦ୍ର ହୋଇଥିଲା ।

ପୂର୍ବଦିଗକୁ ପ୍ରାୟ ଏଲାହାବାଦ ପର୍ଯ୍ୟନ୍ତ ଗୌଡ଼ରାଜ୍ୟ ବିସ୍ତୃତ ଥିଲା । ବିହାର ଓ ବଙ୍ଗଳା ଏହାର ଅନ୍ତର୍ଗତ ଥିଲା । ଗୌଡ଼ ନଗରଟି ଏକ ସମୁଦ୍ର ବନ୍ଦର । ଭାରତର ଉପକୂଳବର୍ତ୍ତୀ ସହରମାନଙ୍କ ସହିତ ସମୁଦ୍ରଦ୍ୱାରା ସମ୍ପର୍କ ସ୍ଥାପନ ହେଲା । ମଧ୍ୟ-ଭାରତର ଏଲାହାବାଦର ପଶ୍ଚିମକୁ ପ୍ରାୟ ଗୁଜରାଟ ପର୍ଯ୍ୟନ୍ତ ମାଲୱା ଥିଲା; ମାଣ୍ଡୁ ଏହାର ରାଜଧାନୀ ଥିଲା । ଏହା ଏକ ନଗର ଓ ଦୁର୍ଗ ମଧ୍ୟ ଥିଲା । ମାଣ୍ଡୁଠାରେ ଅନେକ ସୁନ୍ଦର ଓ ଅପୂର୍ବ କୋଠାମାନ ଗଢ଼ି ଉଠିଲା ଏବଂ ସେଗୁଡ଼ିକର ଧ୍ୱଂସାବଶେଷ ଆଜି ସୁଦ୍ଧା ଦର୍ଶକମାନଙ୍କୁ ଆକୃଷ୍ଟ କରେ ।

ମାଲୱାର ଉତ୍ତର-ପଶ୍ଚିମକୁ ଥିଲା ରାଜପୁତାନା । ଏଥିରେ ଅନେକ ରାଜପୁତ ରାଜ୍ୟ ବିଶେଷତଃ ଚିତୋର ଥିଲା । ଚିତୋର, ମାଲୱା ଗୁଜରାଟ ମଧ୍ୟରେ ଅନବରତ ଯୁଦ୍ଧ ଲାଗୁଥିଲା । ଏହି ଦୁଇ ଶକ୍ତିଶାଳୀ ରାଜ୍ୟ ତୁଳନାରେ ଚିତୋର ଏକ କ୍ଷୁଦ୍ର ରାଜ୍ୟ ଥିଲା; କିନ୍ତୁ ରାଜପୁତମାନେ ସର୍ବଦା ସାହସୀ ଯୋଦ୍ଧା ରୂପେ ପରିଚିତ । ସେମାନଙ୍କର ସଂଖ୍ୟା ଅଳ୍ପଥିବା ସତ୍ତ୍ୱେ ସେମାନେ ବେଳେ ବେଳେ ଜିତୁଥିଲେ । ଚିତୋରର ରାଣାଙ୍କ ଏହିପରି ଏକ ମାଲୱା ବିଜୟ ଲାଭ ଉତ୍ସବ ପାଳନ ନିମନ୍ତେ ତାଙ୍କ କୋଠା ଉପରେ ଚିତୋରର ଏକ ବିଜୟଦୁର୍ଗ ବା ଜୟସ୍ତମ୍ଭ ନିର୍ମିତ ହୋଇଥିଲା । ମାଣ୍ଡୁର ସୁଲତାନ ପଛରେ ନ ପଡ଼ିବା ପାଇଁ ମାଣ୍ଡୁଠାରେ ଆଉ ଏକ ଉଚ୍ଚ ସ୍ତମ୍ଭ ନିର୍ମାଣ କରିଥିଲେ । ଚିତୋର ସ୍ତମ୍ଭ ଏ ପର୍ଯ୍ୟନ୍ତ ରହିଛି; ମାଣ୍ଡୁ ସ୍ତମ୍ଭଟି ନଷ୍ଟ ହୋଇଯାଇଛି ।

ମାଳୱାର ପଶ୍ଚିମକୁ ଗୁଜରାଟ । ଏଠାରେ ଏକ ଶକ୍ତିଶାଳୀ ରାଜ୍ୟ ସ୍ଥାପିତ ହୋଇଥିଲା ଏବଂ ଏହା ସୁଲତାନ ଅହମ୍ମଦ ସାହାଙ୍କ ଦ୍ୱାରା ସ୍ଥାପିତ । ଏହାର ରାଜଧାନୀ ଅହମଦାବାଦ, ଏକ ବିରାଟ ନଗର ହୋଇଥିଲା । ସେଥିରେ ପ୍ରାୟ ୧୦ ଲକ୍ଷ ଲୋକ ବାସ କରୁଥିଲେ । ଏହି ନଗରରେ ସୁନ୍ଦର ସୁନ୍ଦର କୋଠାମାନ ନିର୍ମିତ ହୋଇଥିଲା ଏବଂ କଥିତ ଅଛି ଯେ ୧୫ଶଠାରୁ ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ୩୦୦ ବର୍ଷ କାଳ ଅହମଦାବାଦ ପୃଥିବୀର ସୁନ୍ଦର ନଗରମାନଙ୍କ ମଧ୍ୟରେ ଏକତମ ଥିଲା । ବିଚିତ୍ର କଥା ଯେ ଏହି ନଗରରେ ଥିବା ବିରାଟ ଯାମୀ ମସଜିଦର ଠିକ୍ ସେହି ସମୟରେ ଚିତୋରର ରାଣାଙ୍କ ନିର୍ମିତ ରଣପୁରର ଜୈନମନ୍ଦିର ସହିତ ସାମଞ୍ଜସ୍ୟ ରହିଛି । ଏଥିରୁ ଦେଖାଯାଉଛି ଯେ ପୁରାତନ ଭାରତୀୟ ଶିଳ୍ପୀମାନେ କିପରି ନୂତନ ଭାବରେ ପ୍ରଭାବିତ ହେଉଥିଲେ ଏବଂ ଏକ ନୂଆ କାରୁକାର୍ଯ୍ୟ ସୃଷ୍ଟି କରୁଥିଲେ । ଏଠାରେ ପୁଣି କଳାକ୍ଷେତ୍ରରେ ସମନ୍ୱୟ ଦେଖାଯାଏ, ଏକଥା ମୁଁ ତୋତେ ଆଗରୁ କହିଛି । ଏବେ ସୁଦ୍ଧା ଅହମଦାବାଦର ଅନେକ ପୁରୁଣା ସୁନ୍ଦର କୋଠାରେ ଏହି ସବୁ ଅଦ୍ଭୁତ ପ୍ରସ୍ତରଖୋଦିତ ଚିତ୍ର ରହିଛି; କିନ୍ତୁ ଏଠାରେ ଯେଉଁ ନୂତନ ଔଦ୍ୟୋଗିକ ସହର ଗଢ଼ିଉଠିଛି, ତାହା ଆଦୌ ସୁନ୍ଦର ନୁହେଁ ।

ଏହି ସମୟ ବେଳକୁ ପର୍ତ୍ତୁଗୀଜମାନେ ଭାରତରେ ପହଞ୍ଚିଥିଲେ । ତୋର ମନେଥିବ ଯେ ପ୍ରଥମେ ଭାସ୍କୋଡ଼ାଗାମା ଉତ୍ତମାଶା ଅନ୍ତରୀପ ଦେଇ ଆସିଥିଲେ । ସେ ୧୪୯୮ରେ କାଲିକଟରେ ପହଞ୍ଚିଲେ । ଅବଶ୍ୟ ଅନେକ ଇଉରୋପୀୟ ଲୋକ ଭାରତ ପରିଦର୍ଶନ କରିଥିଲେ; କିନ୍ତୁ ସେମାନେ ବେପାର ବା କେବଳ ଦର୍ଶକ ଭାବରେ ଆସିଥିଲେ । ପର୍ତ୍ତୁଗୀଜମାନେ ଏବେ ପୃଥକ ଧାରଣା ନେଇ ଆସିଲେ । ସେମାନଙ୍କ ଭିତରେ ଗର୍ବ ଓ ଆତ୍ମବିଶ୍ୱାସ ପୂରିଥିଲା । ଧର୍ମଯାଜକ ତାଙ୍କୁ ପୂର୍ବ ଜଗତ ଦାନ କରିଥିଲେ । ସେମାନେ ଦଖଲ କରିବା ମତଲବରେ ଆସିଲେ । ଆରମ୍ଭବେଳେ ସେମାନଙ୍କର ସଂଖ୍ୟା କମ୍ ଥିଲା; କିନ୍ତୁ ଅଧିକରୁ ଅଧିକ ଜାହାଜ ଆସିଲା ଏବଂ କେତେକ ଉପକୂଳବର୍ତ୍ତୀ ସହର ସେମାନେ ଦଖଲ କଲେ; ଗୋଆ ସେଥିଭିତରୁ ଉଲ୍ଲେଖଯୋଗ୍ୟ । ପର୍ତ୍ତୁଗୀଜମାନେ ଭାରତରେ କେବେହେଁ କିଛି କରି ନ ଥିଲେ । ସେମାନେ କେବେହେଲେ ଭିତରେ ପ୍ରବେଶ କରିନାହାନ୍ତି; କିନ୍ତୁ ଇଉରୋପୀୟଙ୍କ ଭିତରୁ ଭାରତ ଆକ୍ରମଣ କରିବା ନିମନ୍ତେ ସେମାନେ ପ୍ରଥମେ ସମୁଦ୍ରରେ ଆସିଥିଲେ । ତାଙ୍କର ଅନେକ ଦିନ ପରେ ଫରାସୀ ଓ ଇଂରେଜ-ମାନେ ଆସିଥିଲେ । ସୁତରାଂ ସମୁଦ୍ରପଥ ଖୋଲିହେବା ଦ୍ୱାରା ସମୁଦ୍ରରେ ଭାରତର ଦୁର୍ବଳତା ପ୍ରକାଶ ପାଇଲା । ଦକ୍ଷିଣ-ଭାରତର ପୁରାତନ ଶକ୍ତିସବୁର ବଳ କ୍ଷୟ ହୋଇ-ଯାଇଥିଲା ଏବଂ ସ୍ଥଳଭାଗର ବିପଦ ପ୍ରତି ତାଙ୍କର ଅଧିକ ଦୃଷ୍ଟି ପଡ଼ିଥିଲା ।

ଗୁଜରାଟର ସୁଲତାନମାନେ ପର୍ତ୍ତୁଗୀଜମାନଙ୍କ ସହିତ ସମୁଦ୍ରରେ ଲଢ଼ିଥିଲେ । ସେମାନେ ଅଟୋମାନ ତୁର୍କଙ୍କ ସହ ମିତ୍ରତା ବାନ୍ଧିଲେ ଏବଂ ପର୍ତ୍ତୁଗୀଜ ନୌବାହିନୀକୁ ପରାସ୍ତ କଲେ; କିନ୍ତୁ ପରେ ପର୍ତ୍ତୁଗୀଜମାନେ ଜୟଲାଭ କଲେ ଓ ସମୁଦ୍ର ଉପରେ ଆଧିପତ୍ୟ

କରିଥିଲେ । ଠିକ୍ ଏତିକି ବେଳକୁ ଦିଲ୍ଲୀର ମୋଗଲମାନଙ୍କ ଭୟ ହେତୁ ଗୁଜରାଟ ସୁଲତାନମାନେ ସନ୍ଧି କରିବାକୁ ଚାହିଁଥିଲେ; କିନ୍ତୁ ପର୍ତ୍ତୁଗୀଜମାନେ ତାଙ୍କୁ ଠକିଥିଲେ ।

ଦକ୍ଷିଣ-ଭାରତରେ ୧୪ଶ ଶତାବ୍ଦୀ ପ୍ରଥମ ଭାଗରୁ ଦୁଇଟି ବିଶାଳ ରାଜ୍ୟ ଦେଖା ଦେଇଥିଲା, ଗୁଲବର୍ଗା; ଏହାକୁ ବାହାମନୀ ରାଜ୍ୟ କହନ୍ତି ଏବଂ ଏହାର ଦକ୍ଷିଣକୁ ଥିଲା ବିଜୟ ନଗର । ବାହାମନୀ ରାଜ୍ୟ ସମଗ୍ର ମହାରାଷ୍ଟ୍ର ଅଞ୍ଚଳରେ ଓ ଆଂଶିକ ଭାବରେ କର୍ଣ୍ଣାଟକରେ ବିସ୍ତାର ଲଭିଥିଲା । ଏହା ୧୫୦ ବର୍ଷରୁ ଅଧିକ କାଳ ରହିଥିଲା; କିନ୍ତୁ ଏହାର କାର୍ଯ୍ୟକଳାପ ବଡ଼ ନୀଚ ଢଙ୍ଗର ଥିଲା । ଅସହିଷ୍ଣୁତା, ହିଂସା ଓ ହତ୍ୟା ଚାଲିଥିଲା ଏବଂ ଲୋକଙ୍କର ଚରମ ଦୁର୍ଦ୍ଦଶା ସଙ୍ଗେ ସଙ୍ଗେ ସୁଲତାନ ଓ ସାମନ୍ତମାନେ ବିଳାସରେ ଥିଲେ । ୧୬ଶ ଶତାବ୍ଦୀର ପ୍ରଥମ ଭାଗରେ କେବଳ ନିଜର ଅଯୋଗ୍ୟତା ହେତୁ ବାହମନୀ ରାଜ୍ୟର ପତନ ହେଲା ଏବଂ ଏହା ବିଜାପୁର, ଅହମଦନଗର, ଗୋଲକୁଣ୍ଡା, ବିଦର ଓ ବେରାର ଏହି ପାଞ୍ଚୋଟି ରାଜ୍ୟରେ ବିଭକ୍ତ ହୋଇଗଲା । ଏଥିଭିତରେ ବିଜୟନଗର ରାଜ୍ୟ ୨୦୦ ରୁ ଅଧିକ କାଳ ପର୍ଯ୍ୟନ୍ତ ଚାଲି ଆସିଥିଲା ଏବଂ ତଥାପି ସମୃଦ୍ଧିଶାଳୀ ଥିଲା । ଏହି ଛଅଟି ରାଜ୍ୟ ଭିତରେ ଅନବରତ ଯୁଦ୍ଧ ଲାଗିଥିଲା । ପ୍ରତ୍ୟେକେ ଦକ୍ଷିଣରେ ପ୍ରଭୁତ୍ୱ କରିବାକୁ ଚେଷ୍ଟା କରୁଥିଲେ । ସେମାନଙ୍କ ଭିତରେ ସକଳ ପ୍ରକାରର ମିଳନ ହେଉଥିଲା ଏବଂ ତାହା ସବୁ ବେଳେ ବେଳେ ବଦଳୁଥିଲା । ବେଳେ ବେଳେ ମୁସଲମାନ ରାଜ୍ୟ ହିନ୍ଦୁ ରାଜ୍ୟ ସହିତ ଯୁଦ୍ଧ କରୁଥିଲେ । ବେଳେ ବେଳେ ମୁସଲମାନ ଓ ହିନ୍ଦୁରାଜ୍ୟ ମିଳିତ ଭାବରେ ଆଉ ଏକ ମୁସଲମାନ ରାଜ୍ୟ ସହିତ ଯୁଦ୍ଧ କରୁଥିଲେ । ଏହିସବୁ ଯୁଦ୍ଧ ସମ୍ପୂର୍ଣ୍ଣ ଭାବରେ ରାଜନୀତିକ ଥିଲା ଏବଂ ଯେତେବେଳେ କୌଣସି ଏକ ରାଜ୍ୟ ଅଧିକ ଶକ୍ତିଶାଳୀ ବୋଧ ହେଉଥିଲା, ସେତେବେଳେ ଅନ୍ୟମାନେ ତା ବିରୁଦ୍ଧରେ ମିଳିଯାଉଥିଲେ । ଶେଷରେ ବିଜୟନଗରର ଶକ୍ତି ଓ ସମ୍ପଦ ଯୋଗୁଁ ମୁସଲମାନ ରାଜ୍ୟଗୁଡ଼ିକ ଏହା ବିରୁଦ୍ଧରେ ମିଳିତ ହେଲେ ଏବଂ ୧୫୬୫ରେ ତାଲିକୋଟା ଯୁଦ୍ଧରେ ସେମାନେ ଏହାକୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରିବାରେ କୃତକାର୍ଯ୍ୟ ହେଲେ । ବିଜୟନଗର ସାମ୍ରାଜ୍ୟ ଅଢ଼ାଇ ଶତାବ୍ଦୀ ପରେ ଶେଷ ହୋଇଗଲା ଏବଂ ବୃହତ୍ ଓ ଅପୂର୍ବ ନଗରଟି ସମ୍ପୂର୍ଣ୍ଣ ରୂପେ ଧ୍ୱଂସ ପାଇଗଲା ।

ଅଳ୍ପକ୍ଷଣ ପରେ ବିଜୟୀ ମିତ୍ରମାନଙ୍କ ଭିତରେ କଳହ ଲାଗିଲା ଏବଂ ସେମାନେ ପରସ୍ପର ସହିତ ଲଢ଼ିଲେ ଓ ଦିଲ୍ଲୀରେ ମୋଗଲ ସାମ୍ରାଜ୍ୟର ପ୍ରତିଷ୍ଠାପାତରେ ଏଗୁଡ଼ିକର ଶୀଘ୍ର ପତନ ହୋଇଗଲା । ପର୍ତ୍ତୁଗୀଜମାନେ ଖ୍ରୀ ୧୫୧୦ରେ ଗୋଆ ଦଖଲ୍ କରି ତାଙ୍କୁ ହିଗରାଣ କରିଥିଲେ । ଏହା ଥିଲା ବିଜାପୁର ରାଜ୍ୟରେ । ସେମାନଙ୍କୁ ତଡ଼ିବା ନିମନ୍ତେ ସକଳ ପ୍ରଚେଷ୍ଟା ସତ୍ତ୍ୱେ ପର୍ତ୍ତୁଗୀଜମାନେ ଗୋଆରେ ରହିଲେ ଏବଂ ତାଙ୍କର ନେତା ଆଲ୍‌ବୁକେର୍କ ଅତ୍ୟନ୍ତ ନିନ୍ଦନୀୟ ନିଷ୍ଠୁରତା କରିଥିଲେ । ପୂର୍ବରେ 'ଭାଇସରୟ' ନାମକ ଗୋଟିଏ ସୁନ୍ଦର ଉପାଧି ଥିଲା । ପର୍ତ୍ତୁଗୀଜମାନେ ନରହତ୍ୟା ଚଳାଇଲେ, ଏପରିକି

ସ୍ତ୍ରୀ ପିଲଙ୍କୁ ବାଦ ଦେଲେ ନାହିଁ । ସେହିଦିନଠାରୁ ଆଜିପର୍ଯ୍ୟନ୍ତ ଗୋଆରେ ପର୍ତ୍ତୁଗୀଜ-ମାନେ ରହିଛନ୍ତି ।

ଦକ୍ଷିଣସ୍ଥ ରାଜ୍ୟ ବିଶେଷତଃ ବିଜୟନଗର; ଗୋଲକୁଣ୍ଡା ଓ ବିଜାପୁରରେ ସୁନ୍ଦର କୋଠାମାନ ତିଆରି ହୋଇଥିଲା । ବିଜାପୁରରେ ଏବେ ସୁଦ୍ଧା କେତେକ ସୁନ୍ଦର କୋଠା ରହିଛି । ବିଜୟନଗରକୁ ଧୂଳିରେ ପରିଣତ କରାଗଲା, ଏବେ ଏହାର ସତ୍ତା ନାହିଁ । ଏହି ସମୟ ବେଳକୁ ଗୋଲକୁଣ୍ଡା ନିକଟରେ ହାଇଦ୍ରାବାଦ ନଗର ସ୍ଥାପିତ ହୋଇଥିଲା । ପରେ ଦକ୍ଷିଣର ମିସ୍ତ୍ରୀ ଓ କାରିଗରମାନେ ଉତ୍ତରକୁ ଯାଇଥିଲେ ବୋଲି କଥିତ ଅଛି ଏବଂ ସେମାନେ ଆଗ୍ରାରେ ତାଜମହଲ ନିର୍ମାଣରେ ସାହାଯ୍ୟ କରିଥିଲେ ।

ପରସ୍ପରର ଧର୍ମ ପ୍ରତି ସାଧାରଣ ସହନଶୀଳ ଭାବ ଥିଲେ ସୁଦ୍ଧା ସାମୟିକ ଭାବରେ ଧର୍ମାନ୍ଧତା ଓ ଅସହିଷ୍ଣୁତା ପ୍ରକାଶ ପାଉଥିଲା । ଯୁଦ୍ଧ ପରେ ପରେ ଅନେକ ସମୟରେ ଭୟପ୍ରଦ ହତ୍ୟାକାଣ୍ଡ ଓ ଧ୍ୱଂସ ଲାଗିଥିଲା; ଅଥଚ ଏହା ସ୍ମରଣ କଲେ ଖୁସିଲାଗେ ଯେ ବିଜାପୁରର ମୁସଲମାନ ରାଜ୍ୟରେ ହିନ୍ଦୁ ଅଶ୍ୱାରୋହୀ ସୈନ୍ୟ ଥିଲେ ଏବଂ ବିଜୟନଗରର ହିନ୍ଦୁରାଜ୍ୟରେ କେତେକ ମୁସଲମାନ ସେନା ଥିଲେ । ଏକପ୍ରକାର ଉଚ୍ଚକୋଟିର ସଭ୍ୟତା ଥିଲା ପରି ମନେହୁଏ; ମାତ୍ର ଏହା ଧନୀଲୋକଙ୍କ କାଣ୍ଡ ଏବଂ କ୍ଷେତରେ କାମ କରୁଥିବା ଲୋକ ଏହାର ବାହାରେ ଥିଲା । ସେ ଦରିଦ୍ର ଥିଲା; ଅଥଚ ସବୁବେଳେ ଯେପରି ହୋଇଆସିଛି ଧନୀର ଅତ୍ୟଧିକ ବିଳାସ-ବୋଝ ତାକୁହିଁ ସହ୍ୟ କରିବାକୁ ପଡୁଥିଲା ।

## ୭୭ : ବିଜୟନଗର

ଜୁଲାଇ ୧୫, ୧୯୩୨

ଆମର ଗତ ଚିଠିରେ ଦକ୍ଷିଣରେ ଯେଉଁସବୁ ରାଜ୍ୟ ବିଷୟ ଆମେ ଆଲୋଚନା କଲେ ସେଥିଭିତରେ ବିଜୟନଗରହିଁ ଦୀର୍ଘକାଳ ରହିଥିଲା । ଏପରି ହେଲା ଯେ ଅନେକ ବିଦେଶୀ ଯାତ୍ରୀ ଏଠାକୁ ଆସିଥିଲେ ଏବଂ ସେମାନେ ଏହି ରାଜ୍ୟ ଓ ନଗରର ବିବରଣୀ ଲେଖି ଯାଇଛନ୍ତି । ନିକୋଲକଣ୍ଟି ନାମକ ଜଣେ ଇଟାଲୀୟ ୧୪୨୦ରେ ଆସିଥିଲେ, ୧୪୪୩ରେ ମଧ୍ୟଏସିଆର ପ୍ରଧାନ ଖାଁଙ୍କ ଦରବାରରୁ ହେରାଟର ଅବଦୁଲ ରେଜାକ ଆସିଥିଲେ, ପାଏସ ନାମକ ଜଣେ ପର୍ତ୍ତୁଗୀଜବାସୀ ୧୫୨୨ରେ ଏହି ନଗର ଦର୍ଶନ କରିଥିଲେ ଏବଂ ଆହୁରି ଅନେକ ଲୋକ ବି ଆସିଥିଲେ । ଭାରତରେ ବି ଏକ ଇତିହାସ ରହିଛି ଯେଉଁଥିରେ କି ଦକ୍ଷିଣ-ଭାରତୀୟ ରାଜ୍ୟ ବିଶେଷତଃ ବିଜାପୁରର ବର୍ଣ୍ଣନା ରହିଛି । ଆମେ ଯେଉଁ କାଳ କଥା

ବିଚାର କରୁଛେ, ତାହା ବେଶୀ ଆଗରୁ ନୁହେଁ, ଆକବରଙ୍କ ଅମଳରେ ଫେରିସ୍ତାଙ୍କ ଦ୍ୱାରା ପାର୍ସି ଭାଷାରେ ଏହା ଲିଖିତ ହୋଇଥିଲା । ସମସାମୟିକ ଇତିହାସଗୁଡ଼ିକ ଅନେକ ସମୟରେ ବଡ଼ ଏକପାଖିଆ ଅତିରଞ୍ଜନ ହୋଇଥାଏ; ମାତ୍ର ସେଗୁଡ଼ିକ ବହୁତ ସାହାଯ୍ୟ କରେ । କେବଳ କାଶ୍ମୀରର 'ରାଜତରଙ୍ଗିଣୀ' ଛଡ଼ା ମୁସଲମାନ ଆଗମନର ପୂର୍ବକାଳ ପର୍ଯ୍ୟନ୍ତ ଏ ସମ୍ବନ୍ଧରେ ପ୍ରାପ୍ତ କିଛି ମିଳେ ନାହିଁ; ତେଣୁ ଫିରିସ୍ତାଙ୍କ ଇତିହାସ ଏକ ମହାନ୍ ପରିବର୍ତ୍ତନ । ଅନ୍ୟମାନେ ତାଙ୍କୁ ଅନୁସରଣ କରିଥିଲେ ।

ବିଦେଶୀ ଦର୍ଶକମାନଙ୍କ ବର୍ଣ୍ଣନାରେ ଆମେ ବିଜୟନଗରର ଏକ ଉତ୍ତମ ଓ ନିରପେକ୍ଷ ଚିତ୍ର ପାଉଁ । ବାରମ୍ବାର ଯେଉଁସବୁ ନିର୍ଘାତ ଯୁଦ୍ଧ ଲାଗୁଥିଲା, ତାହା ଛଡ଼ା ସେମାନେ ଆହୁରି ଅନେକ ପଥା ବର୍ଣ୍ଣନା କରିଛନ୍ତି । ଏମାନେ କ'ଣ କହିଛନ୍ତି, ସେ ବିଷୟରେ କିଛି ଟିକିଏ କହିବି ।

ବିଜୟନଗର ୧୩୩୬ ବେଳକୁ ସ୍ଥାପିତ ହୋଇଥିଲା । ଦକ୍ଷିଣ-ଭାରତର କର୍ଣ୍ଣାଟ ଅଞ୍ଚଳ ରୂପେ ପରିଚିତ ସ୍ଥାନରେ ଏହା ଅବସ୍ଥିତ ଥିଲା । ହିନ୍ଦୁ ରାଜ୍ୟ ହୋଇଥିବାରୁ ଦକ୍ଷିଣରେ ମୁସଲମାନ ରାଜ୍ୟମାନଙ୍କରୁ ବହୁ ସଂଖ୍ୟକ ପଳାତକ ଆକୃଷ୍ଟ ହୋଇ ଆସିଥିବା ସ୍ୱାଭାବିକ । ଏହା ଦ୍ରୁତଗତିରେ ବୃଦ୍ଧି ପାଇଲା । କେତେକ ବର୍ଷ ଭିତରେ ଏହି ରାଜ୍ୟ ସମଗ୍ର ଦକ୍ଷିଣରେ ପ୍ରାଧାନ୍ୟ ଲାଭକଲା ଏବଂ ଏହାର ରାଜଧାନୀ ତାହାର ସମୃଦ୍ଧି ଓ ସୌନ୍ଦର୍ଯ୍ୟ ନିମିତ୍ତ ଦୃଷ୍ଟି ଆକର୍ଷଣ କଲା । ବିଜୟନଗର ଦାକ୍ଷିଣାତ୍ୟରେ ପ୍ରଧାନ ଶକ୍ତି ହୋଇପଡ଼ିଲା ।

ଫିରିସ୍ତା କହନ୍ତି—୧୪୦୬ରେ ଏହି ରାଜଧାନୀର ପ୍ରଚୁର ସମୃଦ୍ଧି ଥିଲା । ଏତେବେଳେ ବିଜୟନଗରର ରାଜକୁମାରୀଙ୍କ ସହିତ ବିବାହ ହେବା ନିମନ୍ତେ ଗୁଲବର୍ଗାରୁ ଜଣେ ମୁସଲମାନ ବାହାମନୀ ରାଜା ଏଠାକୁ ଯାଇଥିଲେ । ସେ କହନ୍ତି, ୬ ମାଇଲ ପର୍ଯ୍ୟନ୍ତ ସୁନା, ମଖମଲ ଓ ସେହିପରି ମୂଲ୍ୟବାନ ପଦାର୍ଥ ରାସ୍ତାରେ ବିଛାଇ ଦିଆଯାଇଥିଲା । ଧନର କିପରି ପ୍ରଚଣ୍ଡ ଓ ଅଯଥା ଅପବ୍ୟୟ !

୧୪୨୦ରେ ଇଟାଲୀୟ ନିକୋଲକଣ୍ଟି ଆସିଲେ ଏବଂ ସେ କହନ୍ତି ଯେ ନଗରର କେନ୍ଦ୍ର ରେଖା ୬ ମାଇଲ ଥିଲା । ଏଠାରେ ଅସଂଖ୍ୟ ଉଦ୍ୟାନ ଥିବାରୁ ଏହା ଏପରି ବିଶାଳ ହୋଇଥିଲା । କଣ୍ଟିଙ୍କ ମତରେ ବିଜୟନଗରର ଶାସକଙ୍କୁ ଶାସକ ଅଥବା ରାୟ ବୋଲି କହନ୍ତି । ସେ ସେତେବେଳେ ଭାରତରେ ସର୍ବାପେକ୍ଷା ପ୍ରଭାବଶାଳୀ ଥିଲେ ।

ତା ପରେ ମଧ୍ୟ ଏସିଆରୁ ଅବ୍‌ଦୁଲ ରେଜାକ ଆସିଲେ । ବିଜୟନଗର ଆସିବା ପଥରେ ମାଙ୍ଗାଲୋରଠାରେ ଢଳା ପିତଳରେ ନିର୍ମିତ ଏକ ଅପୂର୍ବ ମନ୍ଦିର ସେ ଦେଖିଥିଲେ । ଏହା ୧୫ ଫୁଟ ଉଚ୍ଚ ଥିଲା ଏବଂ ଏହାର ତଳଭାଗ ଦୀର୍ଘରେ ୩୦ ଫୁଟ ଓ ପ୍ରସ୍ଥରେ ୩୦ ଫୁଟ ଥିଲା । ଆହୁରି ଆଗକୁ ଆସି ବେଲୋରଠାରେ ଆଉ ଏକ ମନ୍ଦିର ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ବାସ୍ତବିକ ସେ ଏହା ବର୍ଣ୍ଣନା କରିବାକୁ ଚେଷ୍ଟା କରିନାହାନ୍ତି, ଯେହେତୁ

ତାଙ୍କର ଭୟ ଯେ ଯଦି ସେ ଏହା କହନ୍ତି, ତେବେ "ଅତିରଞ୍ଜନ କରିଛନ୍ତି ବୋଲି ଅଭିଯୋଗ" ତାଙ୍କ ବିରୁଦ୍ଧରେ ହେବ । ତା ପରେ ସେ ବିଜୟନଗରରେ ପହଞ୍ଚିଲେ ଏବଂ ଏହା ଦେଖି ସେ ଏକପ୍ରକାର ଚକିତ ହୋଇଗଲେ । ସେ କହନ୍ତି, "ଏହି ନଗରଟି ଏପରି ଥିଲା ଯେ ଏହା ଭଳି ସମଗ୍ର ପୃଥିବୀରେ କିଛି କେବେ ଆଖି ଦେଖିନାହିଁ ବା କାନ ଶୁଣିନାହିଁ ।" ସେ ଏଠାରେ ଥିବା ଅନେକ ବଜାରର ବର୍ଣ୍ଣନା କରି କହିଛନ୍ତି—"ପ୍ରତ୍ୟେକ ବଜାରର ମୁଣ୍ଡ ଉପରକୁ ଏକ ଉନ୍ନତ ତୋରଣ ଓ ଚିତ୍ତାକର୍ଷକ ଗ୍ୟାଲେରୀ ଥିଲା; କିନ୍ତୁ ରାଜପ୍ରାସାଦ ଏହି ସମସ୍ତଙ୍କ ଭିତରେ ଅତ୍ୟଧିକ ଆଡ଼ମ୍ବରପୂର୍ଣ୍ଣ ଥିଲା ।" "ବଜାରଗୁଡ଼ିକ ଖୁବ୍ ଲମ୍ବା ଚୌଡ଼ା ଥିଲା;......ସୁଗନ୍ଧଯୁକ୍ତ ପୁଷ୍ପ ସର୍ବଦା ଏହି ନଗରରେ ତଟକା ମିଳୁଥିଲା ଏବଂ ବଞ୍ଚିବା ପାଇଁ ଏଗୁଡ଼ିକ ଆବଶ୍ୟକ ବୋଲି ବିଚାର କରାଯାଉଥିଲା—ଏହା ବିନା ସତେ ଯେପରି ସେମାନେ ବଞ୍ଚିପାରନ୍ତି ନାହିଁ । ପ୍ରତ୍ୟେକ ସ୍ୱତନ୍ତ୍ର ବସ୍ତୁ ବା ଶିଳ୍ପର ବେପାରୀମାନଙ୍କର ଦୋକାନ ପରସ୍ପରର ସଲଗ୍ନ ହୋଇଥିଲା । ବଣିଆମାନେ ବଜାରରେ ପ୍ରକାଶ୍ୟ ଭାବରେ ହୀରା, ମୁକ୍ତା, ମଣି, ମାଳା ବିକ୍ରି କରୁଥିଲେ ।" ଅବ୍ଦୁଲ୍ ରେଜାକ ପୁଣି ବର୍ଣ୍ଣନା କରିଛନ୍ତି ଯେ, "ଏହି ମନୋମୁଗ୍ଧକର ରାଜ୍ୟରେ ରାଜପ୍ରାସାଦ ଭିତରେ ଚକ୍‌ଚକ୍ ଓ ଖଦଖଦିଆ ପଥର କାଟି ଅନେକ କ୍ଷୁଦ୍ର ପ୍ରବାହ ଓ ସ୍ରୋତସବୁ ତାହା ମଧ୍ୟ ଦେଇ ଯାଉଥିଲା । ଏହି ଦେଶରେ ଏତେ ଅଧିକ ଥିଲେ ଯେ, ଏକ ଯୁକ୍ତିଯୁକ୍ତ ସ୍ଥାନ ଭିତରେ ତାର କୌଣସି ଧାରଣା ଆଣିବା ଅସମ୍ଭବ ।" ତେଣୁ ୧୫ଶ ଶତାବ୍ଦୀର ମଧ୍ୟଭାଗରେ ମଧ୍ୟ-ଏସିଆର ଏହି ଯାତ୍ରୀ ବିଜୟନଗରର ଗୌରବଗାଥା ଗାଇ ଯାଇଛନ୍ତି ।

ମନେ କରାଯାଇପାରେ ଯେ ଅବ୍ଦୁଲ୍ ରେଜାକ ଅନେକ ବଡ଼ ସହର ଦେଖି ନ ଥିଲେ; ତେଣୁ ସେ ବିଜୟନଗର ଦେଖି ଏକପ୍ରକାର ମୁଗ୍ଧ ହୋଇଗଲେ; କିନ୍ତୁ ତାଙ୍କ ପରବର୍ତ୍ତୀ ଦର୍ଶକ ଖୁବ୍ ଉତ୍ତମ ରୂପେ ଅନେକ ସ୍ଥାନ ଭ୍ରମଣ କରିଥିଲେ । ସେ ହେଉଛନ୍ତି ପର୍ତ୍ତୁଗୀଜ ପାଏସ ଏବଂ ସେ ୧୫୨୨ରେ ଆସିଥିଲେ । ଠିକ୍ ସେହିକାଳରେ ଇଟାଲୀରେ ପୁନର୍ଜାଗରଣ ହେଉଥାଏ ଏବଂ ଇଟାଲୀ ନଗରମାନଙ୍କରେ ସୁନ୍ଦର କୋଠାସବୁ ନିର୍ମିତ ହେଉଥିଲା । ପାଏସ ଆପାତତଃ ଏହି ଇଟାଲୀୟ ନଗରସବୁ ଦେଖିଥିଲେ ଏବଂ ତାଙ୍କର ବର୍ଣ୍ଣନା ଅତ୍ୟନ୍ତ ମୂଲ୍ୟବାନ । ସେ କହିଛନ୍ତି ଯେ "ବିଜୟନଗର ସହର ରୋମ ପରି ବୃହତ୍ ଏବଂ ଦେଖିବାକୁ ଅତି ସୁନ୍ଦର ।" ସେ ବିସ୍ତୃତ ଭାବରେ ସହରର ଅପୂର୍ବ ଜଳାଶୟ ଏବଂ ଅସଂଖ୍ୟ ହ୍ରଦର, ଜଳପ୍ରପାତ ଓ ଫଳ ବଗିଚାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । ସେ କହନ୍ତି, "ପୃଥିବୀରେ ସବୁ ସହରଠାରୁ ଏହା ଉତ୍ତମ ରୂପେ ବ୍ୟବସ୍ଥିତ ଥିଲା···କାରଣ ଏହି ନଗରର ଅବସ୍ଥା ଅନ୍ୟ ନଗର ପରି ନୁହେଁ । ଏଥିରେ କୌଣସି ସରବରାହ ଓ ଜିନିଷର ଅଭାବ ହେଉ ନ ଥିଲା; କାରଣ ପ୍ରତ୍ୟେକ ଜିନିଷ ପ୍ରଚୁର ପରିମାଣରେ ଥିଲା ।" ଏକ ପ୍ରାସାଦର ଗୋଟିଏ ଗୃହରେ ସେ ଦେଖିଥିଲେ, "ଏହା ହାତୀଦାନ୍ତ ନିର୍ମିତ; ତଳଠୁ ଉପରପର୍ଯ୍ୟନ୍ତ ଘରର କାନ୍ଥ ବି ଏଥିରେ ତିଆରି ଏବଂ ଉପରେ କଡ଼ି ବରଗାକୁ ଭରି ଦେଇ ରଖିଥିବା

ଖୁଣ୍ଟଗୁଡ଼ିକରେ ହାତୀଦାନ୍ତର ପଦ୍ମ ଓ ଗୋଲାପଫୁଲ ହୋଇଥିଲା ଏବଂ ସେଗୁଡ଼ିକ ଏପରି ସୁନ୍ଦରରୂପେ କରାଯାଇଥିଲା ଯେ ତା ଅପେକ୍ଷା ଆଉ କିଛି ଉତ୍ତମ କରାଯାଇପାରେ ନା । ଏହା ଏପରି ସୁନ୍ଦର ଥିଲା ଯେ ଅନ୍ୟ କୌଣସି ସ୍ଥାନରେ ଏପରି ପ୍ରାୟ ଦେଖାଯାଏ ନାହିଁ ।''

ପାଏସ ଆସିଥିଲା ବେଳେ ସେତେବେଳର ବିଜୟନଗରର ଶାସକଙ୍କର ବର୍ଣ୍ଣନା ବି କରିଛନ୍ତି । ଦକ୍ଷିଣ ଭାରତର ଇତିହାସରେ ସେ ପ୍ରଧାନ ଶାସକ ଥିଲେ ଏବଂ ଜଣେ ମହାନ ଯୋଦ୍ଧା ଭାବରେ ତାଙ୍କର ଖ୍ୟାତିଥିଲା ଓ ଶତ୍ରୁମାନଙ୍କ ପ୍ରତି ଉଦାର ଭାବାପନ୍ନ, ସାହିତ୍ୟର ପୃଷ୍ଠପୋଷକ ଓ ଲୋକପ୍ରିୟ ଏବଂ ଉଦାର ରାଜା ଭାବରେ ଏବେ ସୁଦ୍ଧା ତାଙ୍କର ନାମ ପ୍ରଚଳିତ ଅଛି । ତାଙ୍କ ନାମ ହେଉଛି କୃଷ୍ଣ ଦେବରାୟ । ସେ ୧୫୦୯ଠାରୁ ୧୫୨୯ ପର୍ଯ୍ୟନ୍ତ ୨୦ ବର୍ଷ ରାଜୁତି କରିଥିଲେ । ପାଏସ ତାଙ୍କର ଉଚ୍ଚତା, ଆକୃତି ଏବଂ ଏପରିକି ତାଙ୍କର ଚେହେରା ବର୍ଣ୍ଣନା କରି କହିଛନ୍ତି ଯେ ତାହା ସୁନ୍ଦର ଥିଲା, ''ଯେପରି ହେବାର କଥା, ସେହିପରି ସେ ଜଣେ ପୂର୍ଣ୍ଣତାପ୍ରାପ୍ତ ରାଜାଥିଲେ । ଲୋକେ ତାଙ୍କୁ ଅଧିକ ଭୟ କରୁଥିଲେ, ସେ ଖୁବ୍ ଆନନ୍ଦଦାୟକ ରାଜାଥିଲେ ଓ ମଉଜମଜଲିସ କରୁଥିଲେ; ସେ ବିଦେଶୀମାନଙ୍କୁ ସମ୍ମାନ ଦେଖାଉଥିଲେ ଏବଂ ସେମାନଙ୍କର ଅବସ୍ଥା ଯାହା ହେଉନା କାହିଁକି, ତାଙ୍କ ବିଷୟରେ ପ୍ରଶ୍ନ ପଚାରୁଥିଲେ ଏବଂ ବଡ଼ ଦୟାଶୀଳ ଭାବରେ ସେମାନଙ୍କୁ ଗ୍ରହଣ କରୁଥିଲେ ।'' ରାଜାଙ୍କୁ ଅନେକ ଉପାଧି ଦେଇ ପାଏସ କହିଛନ୍ତି, ''ସେ ସବୁଥିରେ ଏପରି ନିର୍ଭୀକ ଓ ପୌରୁଷବାନ ଥିଲେ ଯେ ମନୁଷ୍ୟ ହିସାବରେ ତାଙ୍କ ସହିତ ତୁଳନା କଲା ପରି ଆଉ କେହି ଥିବାର ଜଣାଯାଏ ନାହିଁ ।''

ବାସ୍ତବିକ କେଡ଼େ ପ୍ରଶଂସାର କଥା ! ସେତେବେଳେ ବିଜୟନଗର ସାମ୍ରାଜ୍ୟ ସମଗ୍ର ଦକ୍ଷିଣ ଓ ପୂର୍ବ ଉପକୂଳରେ ବିସ୍ତୃତ ଥିଲା । ମହୀଶୂର, ତ୍ରିବାଙ୍କୁଡ଼ ଓ ବର୍ତ୍ତମାନର ସମଗ୍ର ମାଡ୍ରାଜ ପ୍ରଦେଶ ଏହାର ଅନ୍ତର୍ଗତ ଥିଲା ।

ଆଉ ଗୋଟିଏ କଥା ମୁଁ ଉଲ୍ଲେଖ କରିପାରେ । ୧୪୦୦ ଖ୍ରୀ: ବେଳକୁ ନଗର ଭିତରକୁ ଭଲ ପାଣି ଆଣିବା ନିମନ୍ତେ ଏକ ବିରାଟ ଜଳସେଚନ ବିଭାଗ ତିଆରି କରାହୋଇଥିଲା । ଗୋଟିଏ ନଦୀ ବନ୍ଧା ଗଲା ଏବଂ ଗୋଟିଏ ବଡ଼ ଜଳଭଣ୍ଡାର କରାଗଲା । ଏହି ସ୍ଥାନରୁ ଯଥେଷ୍ଟ ପରିମାଣରେ ସହରକୁ ପାଣି ଆସୁଥିଲା । ଏହି ସମୟରେ କଠିନ ପାହାଡ଼ ଏଥିଲାଗି କଟାଯାଇ ଥିଲା । ପାଣି ୧୫ ମାଇଲ ଦୂରରୁ ଏଠାକୁ ଆସୁଥିଲା ।

ବିଜୟନଗର ଏହିପ୍ରକାର ଥିଲା । ଏହା ନିଜର ସମ୍ପଦ ଓ ସୌନ୍ଦର୍ଯ୍ୟରେ ଉନ୍ନତ ଥିଲା ଏବଂ ନିଜ ଶକ୍ତିରେ ତା'ର ଖୁବ୍ ଭରସା ଥିଲା । କେହି ଭାବି ନ ଥିଲେ ଯେ ଏହି ନଗର ଓ ସାମ୍ରାଜ୍ୟର ପତନ ଏତେ ଏତେ ନିକଟ ହୋଇ ଆସିଲାଣି । ପାଏସ୍‌ଙ୍କ ଆଗମନର ମାତ୍ର ୪୩ ବର୍ଷପରେ ହଠାତ୍ ବିପଦ ଦେଖାଗଲା । ଦାକ୍ଷିଣାତ୍ୟର ଅନ୍ୟ ରାଜ୍ୟଗୁଡ଼ିକ ବିଜୟନଗରର ଯଶରେ ଈର୍ଷାପରାୟଣ ହୋଇ ଏହାର ବିରୁଦ୍ଧରେ ଏକ ମେଣ୍ଟ ଗଢ଼ିଲେ

ଏବଂ ଏହାକୁ ଧ୍ୱଂସ କରିବାକୁ ମନସ୍ଥ କଲେ । ଏତେବେଳେ ସୁଦ୍ଧା ବିଜୟନଗର ନିର୍ବୋଧ ଭାବରେ ନିଜ ଉପରେ ଖୁବ୍ ବିଶ୍ୱାସ ରଖିଥିଲା । ଅତିଶୀଘ୍ର ଏହା ଶେଷ ପାଇଗଲା ଏବଂ ଏହି ଶେଷଟା ଭୀଷଣ ଭାବରେ ଆସିଥିଲା ।

ମୁଁ ତତେ କହିଛି, ୧୫୬୫ରେ ଏହି ରାଜ୍ୟଗୁଡ଼ିକର ମେଣ୍ଟ ବିଜୟନଗରକୁ ପରାସ୍ତ କରିଦେଲା । ଭୀଷଣ ହତ୍ୟାକାଣ୍ଡ ଚାଲିଲା ଏବଂ ବିରାଟ ସହରଟି ଧୂଳିସାତ କରିଦିଆଗଲା । ସମସ୍ତ ସୁନ୍ଦର କୋଠା, ମନ୍ଦିର ଓ ପ୍ରାସାଦଗୁଡ଼ିକ ଧ୍ୱଂସ କରିଦିଆଗଲା । ଅତି ସୁନ୍ଦର ପ୍ରସ୍ତରଖୋଦିତ ଚିତ୍ର ଓ ମୂର୍ତ୍ତିସବୁ ନଷ୍ଟ କରିଦିଆଗଲା ଏବଂ ଯେଉଁସବୁ ଜିନିଷ ପୋଡ଼ା ଯାଉଥିଲା, ତାହା ପୋଡ଼ିବା ପାଇଁ ନିଆଁ ଗଦାମାନ କରାଗଲା । ଶେଷକୁ କେବଳ ପାଉଁଶ-ଗଦା ରହିଲା । ଜଣେ ଇଂରେଜ ଐତିହାସିକ କହିଛନ୍ତି—"ପୃଥିବୀ ଇତିହାସରେ କେବେହେଁ କଦାପି ଏପରି ପୈଶାଚିକ କାଣ୍ଡ ହୋଇନାହିଁ ଏବଂ ଏପରି ଏକ ସମୃଦ୍ଧିଶାଳୀ ସହର ଏତେ ହଠାତ୍ ଶେଷପାଇ ଯାଇ ନାହିଁ; ଯେଉଁ ସହର ଦିନେ ସମ୍ପଦଭରା ଥିଲା, ଅଧିବସାୟୀ ଅଧିବାସୀମାନେ ଦିନେ ଯାହାକୁ ସମୃଦ୍ଧିର ଚରମସ୍ତରରେ ପହଞ୍ଚାଇଥିଲେ, ସେହି ସହର ପରମୂହୂର୍ତ୍ତରେ ଅନ୍ୟମାନେ ଦଖଲ କଲେ, ଧ୍ୱଂସ କଲେ ଏବଂ ଭୂମିସାତ୍ କଲେ । ଯେପରି ବର୍ବର ହତ୍ୟାକାଣ୍ଡ ଓ ଆତଙ୍କର ଦୃଶ୍ୟ ସେଠାରେ ଦେଖାଗଲା, ତାହା ବର୍ଣ୍ଣନାତୀତ ।"

## ୬୮ : ମାଲୟେସିଆର ମାଦ୍ଜାପାହିତ ଓ ମଲକ୍କା ସାମ୍ରାଜ୍ୟ

ଜୁଲାଇ ୧୭, ୧୯୩୨

ମୁଁ ମାଲୟେସିଆର ଓ ପୂର୍ବୀୟ ଦ୍ୱୀପପୁଞ୍ଜ ସମ୍ବନ୍ଧରେ ଟିକିଏ ଅବହେଳା ଦେଖାଇ ଦୀର୍ଘକାଳ ହେଲା ସେ ସମ୍ବନ୍ଧରେ କିଛି ଲେଖି ନାହିଁ । ପଛକୁ ଅନାଇଁ ଦେଖୁଛି ଯେ ଏ ସମ୍ବନ୍ଧରେ ମୋର ଶେଷ ଚିଠି ହେଉଛି ୪୬ ନମ୍ବର; ସେହିଦିନଠାରୁ ୩୧ଟି ଚିଠି ଲେଖା ହୋଇଛି ଏବଂ ବର୍ତ୍ତମାନ ସଂଖ୍ୟା ହେଉଛି ୬୮ । ସବୁ ଦେଶକୁ ଏକ ସଙ୍ଗରେ ରଖି ଆଲୋଚନା କରିବା କଷ୍ଟକର ।

ଠିକ୍ ଦୁଇମାସ ପୂର୍ବେ ଏହି ତାରିଖରେ ମୁଁ ତୋତେ ଯାହା ଲେଖିଥିଲି ତୋର ମନେଅଛି ତ ? କାମ୍ବୋଡ଼ିଆ, ଆଙ୍କୋର, ସୁମାତ୍ରା ଓ ଶ୍ରୀବିଜୟ କଥା ମନେଅଛି ? କିପରି ଭାବରେ ଇଣ୍ଡୋଚୀନ୍‌ରେ ଅନେକ ଶତ ବର୍ଷ ପରେ ପୁରାତନ ଭାରତୀୟ ବସତିଗୁଡ଼ିକ ଏକ ବିଶାଳ ରାଜ୍ୟ—କାମ୍ବୋଡ଼ିଆର ସାମ୍ରାଜ୍ୟ ରୂପେ ବୃଦ୍ଧି ପାଇଲା ? ଏବଂ ତାହାପରେ ପ୍ରକୃତି ହସ୍ତକ୍ଷେପ କଲା ଏବଂ ଅତି କଠୋର ଭାବରେ ଓ ହଠାତ୍ ଏହି ନଗର ଓ ସାମ୍ରାଜ୍ୟ ଲୋପ ହୋଇଗଲା । ଏହା ୧୩୦୦ ଖ୍ରୀ: ବେଳକୁ ଘଟିଥିଲା ।

ପ୍ରାୟ କାମ୍ବୋଡ଼ିଆ ରାଜ୍ୟ ସମସାମୟିକ ରୂପେ ଅର୍ଥାତ୍ ଏହା ଯେଉଁ ସମୟରେ ଥିଲା, ସେହି ସମୟରେ ସମୁଦ୍ର ଆରପାରିରେ ସୁମାତ୍ରା ଦ୍ୱୀପରେ ଆଉ ଏକ ବଡ଼ ରାଜ୍ୟ ଥିଲା; କିନ୍ତୁ ଶ୍ରୀବିଜୟ ସାମ୍ରାଜ୍ୟଭାବରେ ଟିକିଏ ପଛରେ କାର୍ଯ୍ୟ କଲା ଏବଂ କାମ୍ବୋଡ଼ିଆ ତା'ଆଗରୁ ରହିଥିଲା । ଏହା ଏକପ୍ରକାର ହଠାତ୍ ଶେଷ ପାଇଗଲା; କିନ୍ତୁ ଏହି ବିଲୋପ ପ୍ରକୃତିଦ୍ୱାରା ନୁହେଁ, ମଣିଷଦ୍ୱାରା ହୋଇଥିଲା । ୩୦୦ ବର୍ଷ ପର୍ଯ୍ୟନ୍ତ ବୌଦ୍ଧ ଶ୍ରୀବିଜୟ ସାମ୍ରାଜ୍ୟ ବୃଦ୍ଧି ପାଇଥିଲା ଏବଂ ପୂର୍ବର ପ୍ରାୟ ସମସ୍ତ ଦ୍ୱୀପପୁଞ୍ଜକୁ ନିୟନ୍ତ୍ରଣ କରୁଥିଲା ଏବଂ କ୍ଷଣକାଳ ନିମନ୍ତେ ଭାରତ, ସିଂହଳ ଓ ଚୀନରେ ବି ସ୍ଥାନ ପାଇଥିଲା । ଏହା ଏକ ବଣିକ ସାମ୍ରାଜ୍ୟ ଥିଲା ଏବଂ ବେପାରହିଁ ଏହାର ମୁଖ୍ୟ କାର୍ଯ୍ୟ ଥିଲା; କିନ୍ତୁ ତା'ପରେ ନିକଟରେ ଯାଭାଦ୍ୱୀପର ପୂର୍ବାଂଶରେ ଆଉ ଏକ ବଣିକରାଜ୍ୟର ଉଦୟ ହେଲା—ଏହା ଏକ ହିନ୍ଦୁ ରାଷ୍ଟ୍ର, ଶ୍ରୀବିଜୟର ବଶତା ସ୍ୱୀକାର କରିବାକୁ ଅସ୍ୱୀକାର କଲା ।

ନବମ ଶତାବ୍ଦୀର ଆରମ୍ଭରୁ ୪୦୦ ବର୍ଷକାଳ ଶ୍ରୀବିଜୟର କ୍ରମବର୍ଦ୍ଧିଷ୍ଣୁ ଶକ୍ତିଦ୍ୱାରା ଏହି ପୂର୍ବୀୟ ଯାଭାରାଜ୍ୟ ଦୁଃଖ ଭୋଗିକଲା; କିନ୍ତୁ ଏହା ନିଜର ସ୍ୱାଧୀନତା ରକ୍ଷା କରିପାରିଥିଲା ଓ ତାହା ସଙ୍ଗେ ସଙ୍ଗେ ବହୁ ସଂଖ୍ୟକ ସୁନ୍ଦର ପ୍ରସ୍ତର ନିର୍ମାଣ କରିଥିଲା । ଏହି ସମୟର ବୋରୋବଦୁର ମନ୍ଦିର ସବୁ ସର୍ବଶ୍ରେଷ୍ଠ, ତାହା ଏବେସୁଦ୍ଧା ଦେଖାଯାଏ ଏବଂ ବହୁସଂଖ୍ୟକ ଦର୍ଶକ ଦେଖିବାକୁ ଯାଆନ୍ତି । ଶ୍ରୀବିଜୟ କର୍ତ୍ତୃତ୍ୱରୁ ରକ୍ଷା ପାଇ ପୂର୍ବଯାଭା ନିଜେ ଆକ୍ରମଣ-ଶୀଳ ହେଲା ଏବଂ ଏହା ତାହାର ପୁରାତନ ପ୍ରତିଦ୍ୱନ୍ଦ୍ୱୀ ଶ୍ରୀବିଜୟ ପକ୍ଷରେ ଆତଙ୍କ ହୋଇଗଲା । ଉଭୟ ହିଁ ବଣିକ ରାଜ୍ୟ, ବେପାର ନିମନ୍ତେ ସମୁଦ୍ର ପାର ହେଉଥିଲେ ଏବଂ ତେଣୁ ସେମାନେ ପରସ୍ପର ସହିତ ସଂଘର୍ଷରେ ଆସୁଥିଲେ ।

ଯାଭା ଓ ସୁମାତ୍ରାର ଏହି ପ୍ରତିଦ୍ୱନ୍ଦ୍ୱିତା ସହ ଆଧୁନିକ ଶକ୍ତିମାନଙ୍କର ପ୍ରତିଦ୍ୱନ୍ଦ୍ୱିତା, ଯଥା—ଜର୍ମାନୀ ଓ ଇଂଲଣ୍ଡ ସହ ତୁଳନାରେ କରିବାକୁ ମୋର ଆଗ୍ରହ ହେଉଛି । ଶ୍ରୀବିଜୟର ପ୍ରତିରୋଧ କରିବାକୁ ହେଲେ ଓ ନିଜର ବେପାର ବଢ଼ାଇବାକୁ ହେଲେ ନୌଶକ୍ତି ବୃଦ୍ଧି ଏକମାତ୍ର ପନ୍ଥା ବୋଲି ବୋଧ କରି ଯାଭା ଅଧିକ ପରିମାଣରେ ତା'ର ସମୁଦ୍ର ଶକ୍ତି ବୃଦ୍ଧି କରିବାରେ ଲଗିଲା । ବିରାଟ ନୌଅଭିଯାନ ସବୁ ପଠାଗଲା; କିନ୍ତୁ ଅନେକ ସମୟରେ ବର୍ଷ ବର୍ଷ ଧରି ଶତ୍ରୁ ସହିତ ସେମାନଙ୍କର କୌଣସି ପ୍ରକାର ସଂଘର୍ଷ ହୋଇ ନଥିଲା; ତେଣୁ ଯାଭା ବୃଦ୍ଧି ପାଇଲା ଏବଂ ଅଧିକରୁ ଅଧିକ ଆକ୍ରମଣଶୀଳ ହୋଇଗଲା । ୧୩ଶ ଶତାବ୍ଦୀର ଶେଷବେଳକୁ ମାଦ୍‌ଜାପାହିତ ନାମକ ଏକ ନଗର ସ୍ଥାପିତ ହେଲା ଏବଂ ଏହା ଉନ୍ନତ ଯାଭା ରାଜ୍ୟର ରାଜଧାନୀ ହେଲା ।

ଏହି ଯାଭାରାଜ୍ୟ ଏପରି ଗର୍ବୀ ଓ ଉଦ୍ଧତ ହେଲା ଯେ ପ୍ରଧାନ ଖାଁ କୁବଲାଇ ରାଜସ୍ୱ ନେବା ନିମନ୍ତେ ଏଠାକୁ ପଠାଇଥିବା ଦୂତମାନଙ୍କୁ ଏହା ପ୍ରକୃତରେ ଅପମାନିତ କରିଥିଲା । କୌଣସି ପ୍ରକାର କର ତ ଦିଆଗଲା ନାହିଁ; ଅଧିକନ୍ତୁ ଜଣେ ଦୂତଙ୍କ ମସ୍ତକରେ ଏକ ଅପମାନଜନକ ବାର୍ତ୍ତା ଚିତା କୁଟାଇ ଦିଆଯାଇଥିଲା । ମଙ୍ଗୋଲ ଖାଁ ସହିତ ଏପରି ଖେଳ

ଖେଳିବା ଏକ ଅତ୍ୟନ୍ତ ନିର୍ବୋଧ ଓ ବିପଜ୍ଜନକ କାର୍ଯ୍ୟ । ସେହିପରି ଏକ ଅପମାନ ଫଳରେ ଚେଙ୍ଗିଜଖାଁ ମଧ୍ୟଏସିଆ ଧ୍ୱଂସ କରିଥିଲେ ଏବଂ ପରେ ହୁଲାଗୁ ବାଗଦାଦ ଧ୍ୱଂସ କରିଥିଲେ । ଅଥଚ କ୍ଷୁଦ୍ର ଯାଭାଦ୍ୱୀପ ରାଜ୍ୟଟି ଏହା କରିବାକୁ ସାହସ କରିଥିଲା; କିନ୍ତୁ ସୌଭାଗ୍ୟର କଥା ମଙ୍ଗୋଲମାନେ ବହୁ ପରିମାଣରେ ତେଜହୀନ ହୋଇପଡ଼ିଥିଲେ ଓ ବିଜୟ କରିବାର ଅଭିଳାଷ ଆଉ ନ ଥିଲା । ନୌଯୁଦ୍ଧମାନ ମଧ୍ଯ ସେମାନେ ବେଶୀ ପସନ୍ଦ କରୁ ନଥିଲେ; ସ୍ଥଳଭାଗରେ ସେମାନେ ଅଧିକ ବଳଶାଳୀ ବୋଧ କରୁଥିଲେ । ତଥାପି ଦୋଷୀ ଶାସକକୁ ଶାସ୍ତି ଦେବା ନିମନ୍ତେ କୁବଲାଇ ଯାଭାକୁ ଏକ ବାହିନୀ ପ୍ରେରଣ କଲେ । ଚୀନମାନେ ଜାଭାବାସୀଙ୍କୁ ପରାସ୍ତ କଲେ ଏବଂ ରାଜାଙ୍କୁ ବଧ କଲେ । ସେମାନେ ବିଶେଷ କିଛି କ୍ଷତି କରିଥିଲାପରି ବୋଧହୁଏ ନାହିଁ । ଚୀନ ପ୍ରଭାବରେ ମଙ୍ଗୋଲମାନଙ୍କର କିପରି ପରିବର୍ତ୍ତନ ହୋଇଥିଲା ।

ବାସ୍ତବିକ୍ ଚୀନ ଅଭିଯାନର ଶେଷରେ ଯାଭା ବା ଆମେ ଯାହାକୁ ଏବେ ମାଦ୍‌ଜାପାହିତ ସାମ୍ରାଜ୍ୟ ବୋଲି ଲେଖିବା, ତାହା ଶେଷରେ ଅଧିକ ଶକ୍ତିଶାଳୀ ହୋଇଥିଲା ପରି ମନେ ହୁଏ । ଏହାର କାରଣ ହେଉଛି; ଚୀନାମାନେ ଯାଭାରେ ବନ୍ଧୁକ ବ୍ୟବହାର ପ୍ରଚଳନ କରିଥିଲେ ଏବଂ ସମ୍ଭବତଃ ଏହି ବନ୍ଧୁକ ହେତୁ ପରବର୍ତ୍ତୀ ଯୁଦ୍ଧଗୁଡ଼ିକରେ ମାଦ୍‌ଜାପାହିତ ଜୟଯୁକ୍ତ ହୋଇଥିଲା ।

ମାଦ୍‌ଜାପାହିତ ସାମ୍ରାଜ୍ୟ ବିସ୍ତାର ହେବାରେ ଲାଗିଲା । ଏହା ଆକସ୍ମିକ ବା ଅଧା-ପନ୍ତରିଆ ଭାବରେ ହୋଇ ନଥିଲା । ଏହା ଏକ ରାଜ୍ୟଦ୍ୱାରା ସଂଗଠିତ ସାମ୍ରାଜ୍ୟବାଦୀ ବିସ୍ତୃତି ଏବଂ ଏକ ନିପୁଣ ସେନା ଓ ନୌବାହିନୀ ଏହା କରିଥିଲେ । ରାଣୀ ସୁହିତା ନାମକ ଜଣେ ନାରୀ ଏହି ବିସ୍ତୃତି ବେଳର ଏକ ସମୟରେ ଶାସକ ଥିଲେ । ଏହି ଶାସନ ଅତ୍ୟନ୍ତ କୈନ୍ଦ୍ରିକ ଓ ଦକ୍ଷତାପୂର୍ଣ୍ଣ ଥିଲା ପରି ମନେହୁଏ । ପାଶ୍ଚାତ୍ୟ ଐତିହାସିକମାନେ କହନ୍ତି ଯେ ଟିକସ, ଶୁଳ୍କ, ଭଡ଼ା ଓ ଆଭ୍ୟନ୍ତରୀଣ ରାଜସ୍ୱ ପ୍ରଥା ଅତି ଭଲ ଥିଲା । ସରକାରର ଏହିସବୁ ବିଭିନ୍ନ ବିଭାଗ ଥିଲା—ଔପନିବେଶିକ ବିଭାଗ, ବାଣିଜ୍ୟ ବିଭାଗ, ସାଧାରଣ ମଙ୍ଗଳ ଓ ସାଧାରଣ ସ୍ୱାସ୍ଥ୍ୟ ବିଭାଗ, ଆଭ୍ୟନ୍ତରୀଣ ବିଭାଗ ଓ ଯୁଦ୍ଧ ବିଭାଗ । ଗୋଟିଏ ସର୍ବୋଚ୍ଚ ଅଦାଲତ ଥିଲା, ସେଥିରେ ଦୁଇଜଣ ପ୍ରଧାନ ବିଚାରପତି ଓ ସାତଜଣ ବିଚାରପତି ରହୁଥିଲେ । ବ୍ରାହ୍ମଣ ପୁରୋହିତମାନଙ୍କର ପ୍ରଚୁର କ୍ଷମତା ଥିଲା ପରି ଜଣାପଡ଼େ; କିନ୍ତୁ ରାଜା ସେମାନଙ୍କୁ ନିୟନ୍ତ୍ରଣ କରୁଛନ୍ତି ବୋଲି ଧରାଯାଉଥିଲା ।

ଏହିସବୁ ବିଭାଗ ଏବଂ ଏପରିକି ସେଥିରୁ କେତେକ ନାମ ଦେଖି କେତେକ ପରିମାଣରେ 'ଅର୍ଥଶାସ୍ତ୍ର' କଥା ସ୍ମରଣ ହୁଏ; କିନ୍ତୁ ଔପନିବେଶିକ ବିଭାଗଟି ନୂତନ । ଆଭ୍ୟନ୍ତରୀଣ ବିଭାଗର ପରିଚାଳନା ଉଚ୍ଚପଦପ୍ରାପ୍ତ ସଭ୍ୟ, ଯେ କି ଦେଶର ସରୋଇ ବ୍ୟାପାର ବୁଝୁଥିଲେ, ତାଙ୍କୁ ମନ୍ତ୍ରୀ ବୋଲି କୁହାଯାଉଥିଲା । ଏଥିରୁ ଦେଖାଯାଉଛି ଯେ ଦକ୍ଷିଣ-ଭାରତରୁ ପଲ୍ଲବ-ବଂଶର ଲୋକେ ସେଠାରେ ପ୍ରଥମ ବସତି କରିବାର ୧୨୦୦ ବର୍ଷ ପରେ ମଧ୍ଯ ଏହି ଦ୍ୱୀପରେ

ଭାରତୀୟ ପରମ୍ପରା ଓ ସଂସ୍କୃତି ଚଳୁଥିଲା । ସମ୍ବନ୍ଧ ରହିଥିଲେହିଁ ଏପରି ହେବାର ସମ୍ଭବ । ଏଥିରେ ସନ୍ଦେହ ନାହିଁ ଯେ ବେପାର ଦ୍ୱାରା ଏପରି ସମ୍ବନ୍ଧ ରଖାଯାଇଥିଲା ।

ମାଦ୍‌ଜାପାହିତ ଏକ ବେପାରୀ ସାମ୍ରାଜ୍ୟ ଥିବାରୁ ଏହାର ରପ୍ତାନୀ ଓ ଆମଦାନୀ ବେପାର ସହରସହରମାନଙ୍କରେ ସଂଗଠିତ ହୋଇଥିବା ସ୍ୱାଭାବିକ—ଅର୍ଥାତ୍ ଯେଉଁ ଜିନିଷସବୁ ବାହାରକୁ ପଠାଯାଉଥିଲା ଏବଂ ଅନ୍ୟ ଦେଶରୁ ଯାହା ଗୃହୀତ ହେଉଥିଲା, ସେ ସମ୍ପର୍କୀୟ ବେପାରର ସଂଗଠନ । ଏହି ବେପାରସବୁ ମୁଖ୍ୟତଃ ଚୀନ ଏବଂ ଏହାର ନିଜ ଉପନିବେଶଗୁଡ଼ିକ ସହିତ କରାଯାଉଥିଲା । ଯେପର୍ଯ୍ୟନ୍ତ ଶ୍ରୀବିଜୟ ସହିତ ଯୁଦ୍ଧ ଲାଗିଥିଲା, ସେ ପର୍ଯ୍ୟନ୍ତ ଏହା ସହିତ ବା ଏହାର ଉପନିବେଶଗୁଡ଼ିକ ସହିତ ଶାନ୍ତିପୂର୍ଣ୍ଣ ଭାବରେ ବେପାର କରିବା ସମ୍ଭବ ନ ଥିଲା ।

ଜାଭା ରାଜ୍ୟ ଅନେକ ଶହ ବର୍ଷ ପର୍ଯ୍ୟନ୍ତ ତିଷ୍ଠି ରହିଥିଲା ; କିନ୍ତୁ ମାଦ୍‌ଜାପାହିତ ସାମ୍ରାଜ୍ୟ ୧୩୩୫ରୁ ୧୩୮୦ ପର୍ଯ୍ୟନ୍ତ ଠିକ୍ ୪୫ ବର୍ଷ ରହିପାରିଥିଲା । ଏହି କାଳ ଭିତରେ ୧୩୭୭ରେ ଶ୍ରୀବିଜୟକୁ ଶେଷରେ ଦଖଲ କରି ଧ୍ୱଂସ କରାଯାଇଥିଲା । ଆନାମ, ଶ୍ୟାମ ଓ କାମ୍ବୋଡ଼ିଆ ସହିତ ମିତ୍ରତା ଥିଲା ।

ରାଜଧାନୀ ମାଦ୍‌ଜାପାହିତ ନଗର ଏକ ସୁନ୍ଦର ଓ ସମୃଦ୍ଧିଶାଳୀ ନଗର ଥିଲା । ଏହାର କେନ୍ଦ୍ରସ୍ଥଳୀରେ ଏକ ବୃହତ୍ ଶିବମନ୍ଦିର ରହିଥିଲା । ଅନେକ ସୁନ୍ଦର କୋଠା ଥିଲା । ବାସ୍ତବିକ ମାଲୟେସିଆର ସବୁ ଭାରତୀୟ ଉପନିବେଶଗୁଡ଼ିକରେ ସୁନ୍ଦର କୋଠାମାନ ଦେଖାଯାଏ । ଜାଭାରେ ଆହୁରି କେତେକ ବଡ଼ ନଗର ଓ ଅନେକ ବନ୍ଦର ଥିଲା ।

ଏହି ସାମ୍ରାଜ୍ୟବାଦୀ ରାଷ୍ଟ୍ର ତାର ପୁରାତନ ଶତ୍ରୁ ଶ୍ରୀବିଜୟ ପରେ ବେଶୀ ଦିନ ତିଷ୍ଠି-ପାରି ନଥିଲା । ଗୃହଯୁଦ୍ଧ ଓ ଚୀନ ସହିତ ଗୋଳମାଳ ଲାଗିଥିଲା । ଏହାଫଳରେ ଏକ ବୃହତ ଚୀନ ନୌବାହିନୀ ଜାଭାକୁ ଆସିଥିଲା । କ୍ରମେ ଉପନିବେଶଗୁଡ଼ିକ ଚାଲିଗଲା । ୧୪୨୬ରେ ଘୋର ଦୁର୍ଭିକ୍ଷ ପଡ଼ିଲା ଏବଂ ଦୁଇବର୍ଷ ପରେ ମାଦ୍‌ଜାପାହିତ ସାମ୍ରାଜ୍ୟ ଆଉ ରହିଲା ନାହିଁ । ଯାହାହେଉ ଆହୁରି ୫୦ ବର୍ଷ ପର୍ଯ୍ୟନ୍ତ ଏହା ସ୍ୱତନ୍ତ୍ର ରାଷ୍ଟ୍ରରୂପେ ରହିଥିଲା ଓ ଶେଷରେ ମଲାକ୍‌କା ମୁସଲମାନ ରାଷ୍ଟ୍ର ଏହାକୁ ଦଖଲ କରିଥିଲା ।

ମାଲୟେସିଆରେ ପୁରାତନ ଭାରତୀୟ ବସତିରୁ ହୋଇଥିବା ସାମ୍ରାଜ୍ୟଗୁଡ଼ିକର ଏକ-ତୃତୀୟାଂଶ ଏହିରୂପେ ଲୋପ ପାଇଗଲା । ଆମର ଏହି ସଂକ୍ଷିପ୍ତ ଚିଠିଗୁଡ଼ିକରେ ଆମେ ଦୀର୍ଘକାଳର ଘଟଣାମାନ ଆଲୋଚନା କରିଥାଉଁ । ପ୍ରାୟ ଖ୍ରୀଷ୍ଟିୟାନ୍ ଅବ୍ଦର ଆରମ୍ଭରେ ଭାରତରୁ ପ୍ରଥମ ଉପନିବେଶ ବାନ୍ଧିବାକୁ ଲୋକେ ଆସିଥିଲେ ଏବଂ ଆମେ ଏବେ ୧୫ଶ ଶତାବ୍ଦୀରେ ପହଞ୍ଚିଲେଣି । ତେଣୁ ଏହିସବୁ ବସତିର ୧୪୦୦ ବର୍ଷର ଇତିହାସ ଆମେ ଆଲୋଚନା କରିଗଲେ । କାମ୍ବୋଡ଼ିଆ, ଶ୍ରୀବିଜୟ ଓ ମାଦ୍‌ଜାପାହିତ ଏହି ତିନୋଟି ସାମ୍ରାଜ୍ୟର କଥା ଆମେ ଯେ ବିଚାର କଲେ ସେଥିରୁ ପ୍ରତ୍ୟେକେ ପ୍ରାୟ ଶହ ଶହ ବର୍ଷ ଧରି ତିଷ୍ଠି ରହିଥିଲା । ଏହି ଦୀର୍ଘକାଳର ଇତିହାସ ମନେରଖିବା ଭଲ, ଏହି

ରାଜ୍ୟଗୁଡ଼ିକର ସ୍ଥାପତ୍ୟିକ ଓ ଦକ୍ଷତା ବିଷୟରେ ଏହା କେତେକ ଧାରଣା ଦିଏ । ସୁନ୍ଦର କାରୁକାର୍ଯ୍ୟ ପ୍ରତି ସେମାନଙ୍କର ବିଶେଷ ଶ୍ରଦ୍ଧା ଥିଲା ଏବଂ ବେପାରହିଁ ସେମାଙ୍କର ମୁଖ୍ୟ ବ୍ୟବସାୟ ଥିଲା । ସେମାନେ ଭାରତୀୟ ସଂସ୍କୃତିର ପରମ୍ପରା ସାଙ୍ଗରେ ନେଇଥିଲେ ଓ ଚୀନ ସଂସ୍କୃତିର ଅନେକ ଜିନିଷ ସହିତ ଏହା ଖାପ ଖାଇଲା ପରି ମିଶାଇ ପାରିଥିଲେ ।

ତୋର ମନେ ଥିବ, ମୁଁ ଯେଉଁ ତିନୋଟି ଭାରତୀୟ ବସତି କଥା ବିଶେଷ ଭାବରେ ଉଲ୍ଲେଖ କରିଛି, ତାହାଛଡ଼ା ଆହୁରି ଅନେକ ବସତି ଥିଲା ; କିନ୍ତୁ ଆମେ ପୃଥକ୍ ଭାବରେ ପ୍ରତ୍ୟେକ ବିଷୟରେ ବିଗ୍ଭର କରିପାରିବା ନାହିଁ । ମୁଁ ବି ଆମର ଦୁଇଟି ପଡ଼ୋଶୀ ରାଜ୍ୟ ବର୍ମା ଓ ଶ୍ୟାମ ବିଷୟରେ ବିଶେଷ କିଛି କହିପାରିବି ନାହିଁ । ଉଭୟ ରାଜ୍ୟରେ କ୍ଷମତାଶାଳୀ ରାଷ୍ଟ୍ରର ଉଦୟ ହୋଇଥିଲା ଏବଂ ପ୍ରଚୁର ପରିମାଣରେ କଳାର ଉନ୍ନତି ହୋଇଥିଲା । ଉଭୟ ଦେଶରେ ବୌଦ୍ଧଧର୍ମର ପ୍ରସାର ହୋଇଥିଲା । ଥରେ ମଙ୍ଗୋଲମାନେ ବର୍ମା ଆକ୍ରମଣ କରିଥିଲେ; କିନ୍ତୁ ଚୀନ କେବେ ଶ୍ୟାମ ଆକ୍ରମଣ କରି ନ ଥିଲା । ଯାହାହେଉ; ବର୍ମା ଓ ଶ୍ୟାମ ଉଭୟ ଚୀନକୁ ରାଜସ୍ୱ ଦେଉଥିଲେ । ଠିକ୍ ସାନ ଭାଇ ବଡ଼ଭାଇକୁ ସମ୍ମାନ ଦେଖାଇବା ନିମନ୍ତେ ଉପହାର ଦେଲା ପରି ଏହା ଦିଆଯାଉଥିଲା । ଏହା ବଦଳରେ ଚୀନରୁ ସାନଭାଇ ପାଖକୁ ମୂଲ୍ୟବାନ ପଦାର୍ଥସବୁ ଆସୁଥିଲା ।

ମଙ୍ଗୋଲମାନେ ବର୍ମା ଆକ୍ରମଣ କରିବା ପୂର୍ବରୁ ଉତ୍ତର-ବର୍ମାରେ ଥିବା ପାଗାନ ନଗର ଏ ଦେଶର ରାଜଧାନୀ ଥିଲା । ୨୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଏହି ନଗର ରାଜଧାନୀ ଥିଲା ଏବଂ କଥିତ ଅଛି ଯେ ଏହା ଏକ ଅତି ସୁନ୍ଦର ନଗର ଥିଲା; କେବଳ ଆଙ୍କୋରହିଁ ଏହା ସହିତ ସମକକ୍ଷ ବୋଲି କୁହାଯାଇପାରେ । ଆନନ୍ଦମନ୍ଦିର ଏହାର ସର୍ବୋତ୍କୃଷ୍ଟ ସ୍ଥାପତ୍ୟ କାର୍ଯ୍ୟ; ପୃଥିବୀରେ ବୌଦ୍ଧ କାରୁକାର୍ଯ୍ୟର ଏହା ଏକ ଅତି ସୁନ୍ଦର ଦୃଷ୍ଟାନ୍ତ । ଆହୁରି ଅନେକ ଚିତ୍ତାକର୍ଷକ ପ୍ରାସାଦମାନ ଥିଲା । ବାସ୍ତବିକ ପାଗାନ ନଗରର ଧ୍ୱଂସାବଶେଷ ବି ଖୁବ୍ ସୁନ୍ଦର ଦେଖାଯାଏ । ୧୧ଶ ଠାରୁ ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ ସମୟ ପାଗାନର ସମୃଦ୍ଧି କାଳ ଥିଲା । ପରେ କେତେକ ସମୟ ବର୍ମାରେ କିଛି ଗୋଲମାଲ ଓ ବିଶୃଙ୍ଖଳା ଦେଖାଦେଲା ଏବଂ ଉତ୍ତର ଓ ଦକ୍ଷିଣ ବର୍ମା ପୃଥକ ହୋଇଗଲା । ୧୬ଶ ଶତାବ୍ଦୀରେ ଦକ୍ଷିଣରେ ଜଣେ ମହାନ ଶାସକ ବାହାରିଲେ ଏବଂ ସେ ପୁନର୍ବାର ବର୍ମାକୁ ଏକତ୍ର କଲେ । ଦକ୍ଷିଣରେ ପେଗୁ ତାଙ୍କର ରାଜଧାନୀ ଥିଲା ।

ମୋର ଆଶା; ବର୍ମା ଓ ଶ୍ୟାମର ଏହି ସଂକ୍ଷିପ୍ତ ଏବଂ ଆକସ୍ମିକ ଉଲ୍ଲେଖ ଦ୍ୱାରା ତୁ କିଛି ଗୋଲମାଲରେ ପଡ଼ିବୁ ନାହିଁ । ଆମେ ମାଲୟେସିଆ ଓ ଇଣ୍ଡୋନେସିଆ ଇତିହାସର ଶେଷ ଅଧ୍ୟାୟରେ ପହଞ୍ଚିଛେ ଏବଂ ମୁଁ ଆମର ଆଲୋଚନା ଏତିକରେ ଶେଷ କରିବାକୁ ଚାହୁଁଥିଲି । ଏପର୍ଯ୍ୟନ୍ତ ଦେଖାଯାଏ, ରାଜନୈତିକ ଓ ସଂସ୍କୃତିଗତ ଏହି ପ୍ରଧାନ ପ୍ରଭାବସବୁ ଯାହାକି ଏହି ଅଞ୍ଚଳକୁ ସ୍ପର୍ଶ କରିଥିଲା, ତାହା ମୂଳତଃ ଭାରତ ଓ ଚୀନରୁ ଆସିଥିଲା । ମୁଁ ତୋତେ ଆଗରୁ କହିଛି ଯେ ବର୍ମା, ଶ୍ୟାମ ଓ ଇଣ୍ଡୋଚୀନ ପରି ଏସିଆର ଦକ୍ଷିଣପୂର୍ବ ରାଜ୍ୟମାନଙ୍କ

ଉପରେ ଚୀନର ପ୍ରଭାବ ପଡ଼ିଥିଲା । ଦ୍ୱୀପପୁଞ୍ଜ ଓ ମାଲୟ ଉପଦ୍ୱୀପ ଉପରେ ଅଧିକ ଭାବରେ ଭାରତୀୟ ପ୍ରଭାବ ପଡ଼ିଥିଲା ।

ଏବେ ଆଉ ଏକ ନୂତନ ପ୍ରଭାବ ଆସି ପହଞ୍ଚିଲା । ସେ ପ୍ରଭାବ ଆରବମାନେ ଆଣିଥିଲେ । ଏହା ବର୍ମା ଓ ଶ୍ୟାମକୁ ସ୍ପର୍ଶ କରି ନ ଥିଲା; କିନ୍ତୁ ମାଲୟ ଓ ଅନ୍ୟ ଦ୍ୱୀପପୁଞ୍ଜ ଏହାର କବଳରେ ପଡ଼ିଲେ ଓ ଅଳ୍ପଦିନ ପରେ ଏଠାରେ ଏକ ମୁସଲମାନ ସାମ୍ରାଜ୍ୟ ଗଢ଼ି ଉଠିଲା ।

ଆରବ ବେପାରୀମାନେ ଏହି ଦ୍ୱୀପସବୁକୁ ଯାଉଥିଲେ ଏବଂ ସେଠାରେ ଏକହଜାର ବର୍ଷ ବା ତହିଁରୁ ଅଧିକ କାଳ ପର୍ଯ୍ୟନ୍ତ ବସବାସ କରିଥିଲେ; କିନ୍ତୁ ସେମାନେ ବ୍ୟବସାୟରେ ଲାଗିପଡ଼ିଥିଲେ ଓ ସରକାର ସହିତ ଅନ୍ୟଥା ହସ୍ତକ୍ଷେପ କରି ନଥିଲେ । ୧୪ ଶତାବ୍ଦୀରେ ଆରବ ଧର୍ମପ୍ରଚାରକମାନେ ଆରବରୁ ଆସିଥିଲେ ଏବଂ ସେମାନେ କେତେକ ସ୍ଥାନୀୟ ଶାସକଙ୍କୁ ଦୀକ୍ଷିତ କରିବାରେ ସଫଳ ହୋଇଥିଲେ ।

ଇତ୍ୟବସରେ ରାଜନୀତିକ ପରିବର୍ତ୍ତନ ସବୁ ହେଉଥିଲା । ମାଦ୍‌ଜାପାହିତ ବିସ୍ତାର ଲାଭ କରି ଶ୍ରୀବିଜୟକୁ ପରାଭୂତ କରୁଥିଲା । ଶ୍ରୀବିଜୟର ପତନ ହେବାରୁ ବହୁସଂଖ୍ୟକ ପଳାତକ ମାଲୟ ଉପଦ୍ୱୀପର ଦକ୍ଷିଣକୁ ଯାଇଥିଲେ ଏବଂ ସେଠାରେ ମଲକ୍‌କାନଗର ସ୍ଥାପନ କଲେ । ଏହି ନଗର ତଥା ରାଜ୍ୟସବୁ ଦ୍ରୁତବେଗରେ ବୃଦ୍ଧି ପାଇଲା ଏବଂ ୧୪୦୦ ଖ୍ରୀ: ବେଳକୁ ଏହା ଏକ ବୃହତ୍ ନଗରୀ ହୋଇ ଯାଇଥିଲା । ମାଦ୍‌ଜାପାହିତରେ ଥିବା ଯାଭା ଲୋକମାନଙ୍କୁ ତାଙ୍କର ଅଧୀନ ଲୋକେ ଭଲ ପାଉ ନଥିଲେ । ସାଧାରଣ ସାମ୍ରାଜ୍ୟବାଦୀମାନଙ୍କ ପରି ସେମାନେ ଅତ୍ୟାଚାରୀ ଥିଲେ ଏବଂ ଅନେକ ଲୋକ ମାଦ୍‌ଜାପାହିତ ଅଧୀନରେ ରହିବା ଅପେକ୍ଷା ନୂତନ ମଲକ୍‌କା ରାଜ୍ୟରେ ରହିବାକୁ ପସନ୍ଦ କରୁଥିଲେ । ସେତେବେଳେ ଶ୍ୟାମ ମଧ୍ୟ ଏକପ୍ରକାର ଆକ୍ରମଣଶୀଳ ରାଜ୍ୟ ଥିଲା; ତେଣୁ ମଲକ୍‌କା ଅନେକ ଲୋକଙ୍କ ପକ୍ଷରେ ଏକ ଆଶ୍ରୟସ୍ଥଳ ହୋଇଥିଲା । ବୌଦ୍ଧ ଓ ମୁସଲମାନ ଉଭୟେ ସେଠାରେ ଥିଲେ । ଶାସକମାନେ ପ୍ରଥମେ ବୌଦ୍ଧ ଥିଲେ; କିନ୍ତୁ ପରେ ସେମାନେ ଇସଲାମ ଧର୍ମଗ୍ରହଣ କଲେ ।

ଶିଶୁ ମଲକ୍‌କା ରାଜ୍ୟଟି ଏକପକ୍ଷରେ ଯାଭା ଓ ଅନ୍ୟପକ୍ଷରେ ଶ୍ୟାମଠାରୁ ବିପଦ ଆଶଙ୍କା କରୁଥିଲା । ଏହା ଦ୍ୱୀପସ୍ଥ ଅନ୍ୟ କ୍ଷୁଦ୍ର ମୁସଲମାନ ରାଜ୍ୟଗୁଡ଼ିକ ଭିତରୁ ମିତ୍ର ବାହାର କରିବାକୁ ଚେଷ୍ଟା କରିଥିଲା । ଏପରିକି ଆତ୍ମରକ୍ଷଣ ନିମନ୍ତେ ଏହା ଚୀନକୁ ମଧ୍ୟ ଅନୁରୋଧ କରିଥିଲା । ସେତେବେଳକୁ ମିଙ୍ଗମାନେ ମଙ୍ଗୋଲମାନଙ୍କୁ ସ୍ଥାନଚ୍ୟୁତ କରି ଚୀନରେ ଶାସନ କରୁଥିଲେ । ଏକା ସମୟରେ କିପରି ମାଲୟେସିଆର ସମସ୍ତ ଇସଲାମ ରାଜ୍ୟ ଆତ୍ମରକ୍ଷଣ ନିମନ୍ତେ ଚୀନ ଆଡ଼କୁ ଦୃଷ୍ଟି ପକାଇଥିଲେ ତାହା ଏକ ଉଲ୍ଲେଖଯୋଗ୍ୟ କଥା । ଏଥିରୁ ଦେଖାଯାଉଛି ଯେ ଅନ୍ୟାନ୍ୟ ଶତ୍ରୁମାନଙ୍କ ତରଫରୁ କୌଣସି ଆସନ୍ନ ଆକ୍ରମଣର କିଛି ଭୟ ନିଶ୍ଚୟ ରହିଥିବ ।

ଚୀନ ସର୍ବଦା ମାଲୟେସିଆ ରାଜ୍ୟଗୁଡ଼ିକ ପ୍ରତି ବନ୍ଧୁଭାବ ଅଥଚ ମର୍ଯ୍ୟାଦାଜନକ ଭାବରେ ଅଲଗା ରହିବାର ନୀତି ଅନୁସରଣ କରି ଆସିଛି । ତାହା ଆକ୍ରମଣ ପାଇଁ ଆଦୌ ବ୍ୟଗ୍ର ନଥିଲା । ସେ ଅନୁଭବ କରୁଥିଲା ଯେ ଏଥିରୁ ବିଶେଷ କିଛି ଲାଭ କରିପାରିବ ନାହିଁ; କିନ୍ତୁ ସେ ସେମାନଙ୍କୁ ତାର ସଭ୍ୟତା ଶିଖାଇବା ନିମନ୍ତେ ପ୍ରସ୍ତୁତ ଥିଲା । ମିଙ୍ଗ ସମ୍ରାଟ ଆପାତତଃ ଏହି ପୁରାତନ ନୀତି ବଦଳାଇବାକୁ ଓ ଏହି ଦେଶଗୁଡ଼ିକର କାର୍ଯ୍ୟରେ ଅଧିକ ଆଗ୍ରହୀ ହେବା ନିମନ୍ତେ ସ୍ଥିର କରିଥିଲେ । ସେ ଯାଭା ଓ ଶ୍ୟାମର ଆକ୍ରମଣକୁ ପସନ୍ଦ କରି ନଥିଲା ପରି ବୋଧହୁଏ । ତେଣୁ ଏହାକୁ ରୋକିବା ନିମନ୍ତେ ସେ ସେନାପତି ଚେଙ୍ଗ୍‌ହୋଙ୍କ ଅଧୀନରେ ଏକ ବିରାଟ ନୌବାହିନୀ ସେଠାକୁ ପଠାଇଲେ । ଏହି ନୌବାହିନୀ କେତେକ ଜାହାଜର ଦୈର୍ଘ୍ୟ ୪୦୦ ଫୁଟ ଥିଲା ।

ଚେଙ୍ଗ୍‌ହୋ ଅନେକ ଥର ଯାତ୍ରା କରିଥିଲେ ଏବଂ ଫିଲିପାଇନ, ଯାଭା, ସୁମାତ୍ରା, ମାଲୟ ଉପଦ୍ୱୀପ ଇତ୍ୟାଦି ପ୍ରାୟ ସମସ୍ତ ଦ୍ୱୀପକୁ ଯାଇଥିଲେ । ଏପରିକି ସେ ସିଂହଳକୁ ଆସିଥିଲେ ଏବଂ ଏହା ଜୟ କରି ଚୀନକୁ ତାହାର ରାଜାଙ୍କୁ ନେଇ ଯାଇଥିଲେ । ତାଙ୍କର ଶେଷ ଅଭିଯାନରେ ସେ ପାରସ୍ୟ ଉପସାଗର ପର୍ଯ୍ୟନ୍ତ ଯାଇଥିଲେ । ୧୫ଶ ଶତାବ୍ଦୀର ଆଦ୍ୟ-ଭାଗରେ ଚେଙ୍ଗହୋଙ୍କ ଜଳଯାତ୍ରାର ପ୍ରଭାବ ସେ ଯେଉଁ ରାଜ୍ୟଗୁଡ଼ିକୁ ଯାଇଥିଲେ ସେଠାରେ ଅଧିକ ପରିମାଣରେ ପଡ଼ିଥିଲା । ହିନ୍ଦୁ ମାଦ୍‌ଜାପାହିତ ଓ ବୌଦ୍ଧ ଶ୍ୟାମକୁ ପ୍ରତିରୋଧ କରିବାର ଇଚ୍ଛା କରି ସେ ଜାଣିଶୁଣି ଇସଲାମକୁ ଉତ୍ସାହିତ କରିଥିଲେ ଏବଂ ଏହି ବିରାଟ ନୌବାହିନୀର ଅଶ୍ରୟାଧୀନରେ ମଲକ୍‌କା ରାଜ୍ୟ ଦୃଢ଼ଭାବରେ ସ୍ଥାପିତ ହୋଇଥିଲା । ଅବଶ୍ୟ ଚେଙ୍ଗ୍‌ହୋଙ୍କର ଖାଣ୍ଟି ରାଜନୀତିକ ଉଦ୍ଦେଶ୍ୟ ଥିଲା ଓ ଧର୍ମ ସହିତ କୌଣସି ପ୍ରକାର ସମ୍ପର୍କ ନ ଥିଲା । ସେ ନିଜେ ଜଣେ ବୌଦ୍ଧ ଥିଲେ ।

ସୁତରାଂ ମାଦ୍‌ଜାପାହିତକୁ ବିରୋଧ କରିବାରେ ମଲକ୍‌କା ରାଷ୍ଟ୍ର ହିଁ ମୁଖିଆ ହୋଇଥିଲା । ଏହାର ଶକ୍ତିବୃଦ୍ଧି ହେଲା ଏବଂ କ୍ରମେ ଏହା ଜାଭା ଉପନିବେଶ ସବୁ ଦଖଲ କଲା । ୧୪୭୮ରେ ମାଦଜାପାହିତ ନଗରଟି ଦଖଲ ହେଲା । ତାପରେ ଇସଲାମ ରାଜଧର୍ମ ଓ ସବୁ ନଗରଗୁଡ଼ିକର ଧର୍ମ ହୋଇଗଲା; କିନ୍ତୁ ଭାରତ ପରି ଗ୍ରାମ୍ୟଅଞ୍ଚଳରେ ପୁରାତନ ଧର୍ମ, ପୁରାଣ ଓ ରୀତିନୀତି ପ୍ରଚଳିତ ଥିଲା ।

ମଲକ୍‌କା ସାମ୍ରାଜ୍ୟ ଶ୍ରୀବିଜୟ ଓ ମାଦଜାପାହିତ ପରି ବୃହତ୍ ଓ ଦୀର୍ଘକାଳ ସ୍ଥାୟୀ ହୋଇପାରିଥାନ୍ତା; କିନ୍ତୁ ଏହାର ସେ ସୁଯୋଗ ହେଲା ନାହିଁ । ପର୍ତ୍ତୁଗୀଜମାନେ ହସ୍ତକ୍ଷେପ କଲେ ଏବଂ କେତେକ ବର୍ଷ ଭିତରେ ୧୫୧୧ରେ ମଲକ୍‌କା ତାଙ୍କ ହାତରେ ପଡ଼ିଲା । ସୁତରାଂ ୪ର୍ଥ ସାମ୍ରାଜ୍ୟ ଯାଇ ଏ ୫ମ ସାମ୍ରାଜ୍ୟ ହେଲା; ଏହା ବି ଦୀର୍ଘକାଳ ରହି ନ ଥିଲା । ଇତିହାସରେ ପ୍ରଥମ ଥର ଲାଗି ଇଉରୋପ ଏହିସବୁ ପୂର୍ବୀୟ ସାଗରରେ ଆକ୍ରମଣଶୀଳ ଓ ପ୍ରତିପତ୍ତିଶାଳୀ ହୋଇଉଠିଲା ।

# ୭୯ : ୟୁରୋପ ପୂର୍ବଏସିଆରେ ପ୍ରବେଶ କଲା

ଜୁଲାଇ ୧୯, ୧୯୩୨

ଆମର ଗତ ଚିଠିରେ ମାଲୟେସିଆକୁ ପର୍ତ୍ତୁଗୀଜମାନଙ୍କ ଆଗମନ କଥା ଲେଖିଥିଲି । ତୋର ମନେଥିବ, କିଛିଦିନ ତଳେ ସମୁଦ୍ରପଥ ଆବିଷ୍କାର ବିଷୟରେ ଏବଂ ପ୍ରଥମେ ପୂର୍ବ ରାଜ୍ୟରେ କିଏ ପହଞ୍ଚିବ ଏଥିସକାଶେ ପର୍ତ୍ତୁଗୀଜ ଓ ସ୍ପେନ୍ ଭିତରେ କିପରି ଏକ ପ୍ରତିଯୋଗିତା ଚାଲିଥିଲା, ସେ ବିଷୟରେ ମୁଁ କହିଛି । ପର୍ତ୍ତୁଗାଲ ପୂର୍ବକୁ ଗଲା ଓ ସ୍ପେନ ପଶ୍ଚିମକୁ ଗଲା । ପର୍ତ୍ତୁଗାଲ ଆଫ୍ରିକା ଦେଇ କୌଣସି ପ୍ରକାରେ ଭାରତକୁ ଆସିଲା; ସ୍ପେନ ଭୁଲକ୍ରମେ ଆମେରିକାରେ ଅଟକିଗଲା ଏବଂ ପରେ ଦକ୍ଷିଣ ଆମେରିକା ଦେଇ ମାଲୟେସିଆକୁ ଗଲା । ଆମେ ଏବେ ଆମର କେତେକ ସୂତ୍ର ଯୋଡ଼ିଦେଇ ମାଲୟେସିଆ କାହାଣୀ ଆରମ୍ଭ କରିପାରୁ ।

ତୁ ବୋଧହୁଏ ଜାଣୁ ଯେ ମସଲା ( ଲଙ୍କା ଇତ୍ୟାଦି ) ବିଷୁବରେଖା ନିକଟ ରାଜ୍ୟରେ ଉଷ୍ଣ ଜଳବାୟୁରେ ଉତ୍ପନ୍ନ ହୁଏ । ୟୁରୋପରେ ଏଗୁଡ଼ିକ ଆଦୌ ଜାତ ହୁଏ ନାହିଁ; କିନ୍ତୁ ଅଧିକାଂଶ ମସଲା ମଲକାସ୍ ନାମକ ମାଲୟେସିଆ ଦ୍ୱୀପପୁଞ୍ଜରୁ ଆସେ । ପ୍ରକୃତରେ ଏହି ଦ୍ୱୀପଗୁଡ଼ିକୁ 'ମସଲା ଦ୍ୱୀପ' ବୋଲି କହନ୍ତି । ଆଦିମ କାଳରୁ ୟୁରୋପରେ ମସଲାର ଖୁବ୍ ଚାହିଦା ଥିଲା ଏବଂ ସ୍ଥିତମତ ତାହା ପଠାଯାଉଥିଲା । ସେଗୁଡ଼ିକ ୟୁରୋପରେ ପହଞ୍ଚିବା ବେଳକୁ ଅତି ମୂଲ୍ୟବାନ ହୋଇଯାଉଥିଲା । ରୋମାନ ଅମଳରେ ଲଙ୍କାର ମୂଲ୍ୟ ସ୍ୱରୂପ ସେହି ଓଜନର ସୁନା ଦିଆଯାଉଥିଲା । ମସଲା ଏତେ ମୂଲ୍ୟବାନ ଓ ପଶ୍ଚିମରେ ତାହାର ଏତେ ଚାହିଦା ଥାଇ ସୁଦ୍ଧା ତାହା ୟୁରୋପରେ କରିବା ନିମନ୍ତେ କୌଣସି ବ୍ୟବସ୍ଥା ହୋଇ ନଥିଲା । ଦୀର୍ଘକାଳ ପର୍ଯ୍ୟନ୍ତ ମସଲା ବେପାର ଭାରତୀୟଙ୍କ ହାତରେ ଥିଲା, ପରେ ଆରବ-ମାନେ ଏହା ନିୟନ୍ତ୍ରଣ କରୁଥିଲେ । ଏହି ମସଲା ଲୋଭ ହିଁ ପର୍ତ୍ତୁଗୀଜ ଓ ସ୍ପେନବାସୀଙ୍କୁ ପୃଥିବୀର ବିଭିନ୍ନ ଦିଗରୁ ଟାଣିଲା, ଶେଷକୁ ସେମାନେ ମାଲୟେସିଆରେ ପହଞ୍ଚିଲେ । ଏହି ଅନ୍ୱେଷଣରେ ପର୍ତ୍ତୁଗୀଜମାନେ ଆଗୁଆ ହୋଇଥିଲେ । କାରଣ ସ୍ପେନବାସୀ ବଡ଼ ବ୍ୟସ୍ତ ଥିଲେ ଏବଂ ପୂର୍ବକୁ ଆସିବା ପଥରେ ଆମେରିକାରେ ଅତି ଲାଭଜନକ କାର୍ଯ୍ୟରେ ନିଯୁକ୍ତ ହୋଇଯାଇଥିଲେ ।

ଭାସ୍କୋଡ଼ାଗାମା ଉତ୍ତମାଶା ଅନ୍ତରୀପ ଦେଇ ଭାରତକୁ ଆସିବାର ଅଳ୍ପଦିନ ପରେ ଅନେକ ପର୍ତ୍ତୁଗୀଜ ଜାହାଜ ସେହି ବାଟରେ ଆସିଲା ଏବଂ ସେଗୁଡ଼ିକ ଆହୁରି ପୂର୍ବକୁ ଯାତ୍ରା କଲା । ଠିକ୍ ସେତିକିବେଳେ ନୂତନ ମଲକ୍କା ସାମ୍ରାଜ୍ୟ ମସଲା ଓ ଅନ୍ୟ ବେପାର ନିୟନ୍ତ୍ରଣ କରୁଥିଲା । ତେଣୁ ସଙ୍ଗେ ସଙ୍ଗେ ପର୍ତ୍ତୁଗୀଜମାନଙ୍କର ତାଙ୍କ ସହିତ ଓ ସାଧାରଣ

ଭାବରେ ଆରବ ବେପାରୀଙ୍କ ସହିତ ସଂଘର୍ଷ ଲାଗିଲା । ତାଙ୍କର ଉତ୍ତରାଧିକାରୀ ଆଲ୍‌ବୁକେର୍କ୍ ୧୫୧୧ରେ ମାଲକ୍କା ଦଖଲ କଲେ ଏବଂ ମୁସଲମାନ ବେପାର ଲୋପ ହେଲା । ଏବେ ପର୍ତ୍ତୁଗୀଜମାନେ ୟୁରୋପ ବେପାର ନିୟନ୍ତ୍ରଣ କଲେ ଏବଂ ତାଙ୍କ ରାଜଧାନୀ ଲିସ୍‌ବନ୍ ୟୁରୋପ ଭିତରେ ମସଲା ଓ ପ୍ରାଚ୍ୟ ଦେଶରୁ ଆସୁଥିବା ଅନ୍ୟ ଜିନିଷମାନ ବାଣ୍ଟିବା ଲାଗି ପ୍ରଧାନ ବାଣିଜ୍ୟ କେନ୍ଦ୍ର ହୋଇଥିଲା ।

ଏହା ଉଲ୍ଲେଖନୀୟ କଥା ଯେ, ଆଲ୍‌ବୁକେର୍କ୍ ଯଦିଓ ଆରବଙ୍କ ପ୍ରତି ଅତ୍ୟନ୍ତ ନିଷ୍ଠୁର ଓ ନିର୍ଦ୍ଦୟ ଶତ୍ରୁଭାବ ଦେଖାଇଥିଲେ; ତଥାପି ସେ ପ୍ରାଚ୍ୟଖଣ୍ଡର ଅନ୍ୟ ବ୍ୟବସାୟୀ ଲୋକମାନଙ୍କ ସହିତ ବନ୍ଧୁତା କରିବାକୁ ଚେଷ୍ଟା କରିଥିଲେ । ବିଶେଷଭାବରେ ସେ ଯେଉଁ ଚୀନାଲୋକଙ୍କ ସମ୍ପର୍କରେ ଆସିଥିଲେ ସେମାନଙ୍କ ସହିତ ବିଶେଷ ଭଦ୍ରତା ଦେଖାଇଥିଲେ । ଫଳସ୍ୱରୂପ ପର୍ତ୍ତୁଗୀଜମାନଙ୍କ ବିଷୟରେ ଅନୁକୂଳ ଧାରଣା ଚୀନରେ ହୋଇଥିଲା । ସମ୍ଭବତଃ ପ୍ରାଚ୍ୟ ବେପାରରେ ଆରବ ପ୍ରାଧାନ୍ୟ ଯୋଗୁଁ ଆରବମାନଙ୍କ ପ୍ରତି ଏପରି ବିରୋଧ ଦେଖାଉଥିଲେ ।

ଇତ୍ୟବସରରେ 'ମସଲା ଦ୍ୱୀପ'ର ଅନ୍ୱେଷଣ ଚାଲିଥାଏ ଏବଂ ମାଗେଲାନ ଯେ କି ପରେ ପ୍ରଶାନ୍ତ ମହାସାଗର ଅତିକ୍ରମ କରି ପୃଥିବୀର ଚତୁର୍ଦ୍ଦିଗରେ ଭ୍ରମଣ କରିଥିଲେ, ସେ ଏହି ଅଭିଯାନରେ ଥିଲେ ଏବଂ ଏହାଦ୍ୱାରା ଶେଷରେ ମାଲକ୍କା ପାଇଥିଲେ । ୬୦ ବର୍ଷରୁ ଅଧିକକାଳ ପର୍ଯ୍ୟନ୍ତ ଇଉରୋପରେ ମସଲା ବେପାରରେ ପର୍ତ୍ତୁଗୀଜଙ୍କର କେହି ପ୍ରତିଦ୍ୱନ୍ଦ୍ୱୀ ନ ଥିଲେ । ତା'ପରେ ୧୫୬୫ରେ ସ୍ପେନ ଫିଲିପାଇନ ଦ୍ୱୀପ ଦଖଲ କଲା; ତେଣୁ ପୂର୍ବୀୟ ସମୁଦ୍ରରେ ଦ୍ୱିତୀୟ ଇଉରୋପୀୟ ଶକ୍ତିର ଆବିର୍ଭାବ ହେଲା; କିନ୍ତୁ ସ୍ପେନ ପର୍ତ୍ତୁଗୀଜଙ୍କ ବେପାରରେ ବିଶେଷ କିଛି କ୍ଷତି ଘଟାଇ ପାରିଲା ନାହିଁ, ଯେହେତୁ ସ୍ପେନବାସୀ ମୂଳତଃ ଏକ ବ୍ୟବସାୟୀ ଜାତି ନୁହନ୍ତି । ସେମାନେ ପ୍ରାଚ୍ୟକୁ ସୈନ୍ୟ ଓ ପାଦ୍ରୀ ପଠାଇଲେ । ଇତ୍ୟବସରରେ ପର୍ତ୍ତୁଗାଲର ମସଲା ବେପାରରେ ଏକାଧିପତ୍ୟ ହୋଇଥିଲା; ଏପରିକି ଇଂଲଣ୍ଡ ଓ ନେଦରଲାଣ୍ଡ୍ସ ପର୍ତ୍ତୁଗୀଜ ଜରିଆରେ ମସଲା ପାଉଥିଲେ । ସେମାନେ ଅନ୍ୟ କାହାରିକି ପ୍ରତ୍ୟକ୍ଷଭାବରେ 'ମସଲା ଦ୍ୱୀପ' ସହିତ ବେପାର କରିବାକୁ ଅନୁମତି ଦେଇ ନଥିଲେ । ତେଣୁ ପର୍ତ୍ତୁଗାଲ ଧନଶାଳୀ ହେଲା; କିନ୍ତୁ ଏହା ଉପନିବେଶ ବୃଦ୍ଧି କରିବାକୁ କୌଣସି ଉଦ୍ୟମ କରି ନଥିଲା । ଵୁ ଜାଣୁ ଯେ ଏହା ଏକ କ୍ଷୁଦ୍ର ରାଜ୍ୟ ଏବଂ ବାହାରକୁ ପଠାଇବା ନିମନ୍ତେ ଏଠାରେ ଯଥେଷ୍ଟ ଲୋକ ନଥିଲେ । ୧୦୦ ବର୍ଷ ପର୍ଯ୍ୟନ୍ତ ସାରା ୧୬ଶ ଶତାବ୍ଦୀଯାକ ପୂର୍ବଖଣ୍ଡରେ ଏହି କ୍ଷୁଦ୍ର ରାଜ୍ୟଟି ଯାହା କରିବାର କ୍ଷମ ହୋଇଥିଲା, ତାହା ଅତ୍ୟନ୍ତ ବିସ୍ମୟକର ବିଷୟ ।

ଏଥି ମଧ୍ୟରେ ସ୍ପେନବାସୀ ଫିଲିପାଇନରେ ରହିଲେ ଏବଂ ସେଠାରୁ ଯେତେସମ୍ଭବ ଧନ ଆଣିବାକୁ ଚେଷ୍ଟା କଲେ । କେବଳ ରାଜସ୍ୱକର ଆଦାୟ କରିବା ଛଡ଼ା ସେମାନେ ବିଶେଷ କିଛି କରି ନଥିଲେ । ପୂର୍ବୀୟ ସମୁଦ୍ରରେ ବିବାଦ ଏଡ଼ିବା ପାଇଁ ସେମାନେ ପର୍ତ୍ତୁଗୀଜମାନଙ୍କ ସହିତ ସନ୍ଧି କଲେ । ସ୍ପେନ ସରକାର ଫିଲିପାଇନକୁ ସ୍ପେନ-ଅଧିକୃତ

ଆମେରିକା ଅଞ୍ଚଳ ସହିତ ବେପାର କରିବାକୁ ଅନୁମତି ଦେଇ ନ ଥିଲେ । ଯେହେତୁ ମେକ୍ସିକୋ ଓ ପେରୁର ସୁନା ଏବଂ ରୂପା ପୂର୍ବକୁ ଚାଲି ଆସିବ ବୋଲି ସେମାନେ ଆଶଙ୍କା କରୁଥିଲେ । ବର୍ଷକେ କେବଳ ଗୋଟିଏ ଜାହାଜ ଆସୁଥିଲା ଓ ଯାଉଥିଲା । ଏହାକୁ "ମାନିଲା ଗାଲିୟନ" କୁହାଯାଉଥିଲା ଏବଂ ଫିଲିପାଇନ୍‌ରେ ଥିବା ସ୍ପେନ ଲୋକେ ଏହି ବାର୍ଷିକ ଯାତ୍ରାକୁ କିପରି ଆଗ୍ରହର ସହିତ ଅନାଇ ରହିଥିବେ, ତୁ ବେଶ ଅନୁମାନ କରିପାରୁଥିବୁ । ୨୪୦ ବର୍ଷ କାଳ ଏହି "ମାନିଲା ଗାଲିୟନ" ଏହି ଦ୍ୱୀପଗୁଡ଼ିକ ଓ ଆମେରିକା ମଧ୍ୟସ୍ଥ ପ୍ରଶାନ୍ତ ମହାସାଗରରେ ଯିବା ଆସିବା କରୁଥିଲା ।

ଇଉରୋପରେ ସ୍ପେନ ଓ ପର୍ତ୍ତୁଗାଲର ଏହି ସଫଳତା ନେଇ ଅନ୍ୟ ଦେଶଗୁଡ଼ିକ ବଡ଼ ଈର୍ଷା କରୁଥିଲେ । ଆମେ ପରେ ଦେଖିବା ସେତେବେଳେ ସ୍ପେନ ୟୁରୋପରେ ପ୍ରାଧାନ୍ୟ କରୁଥିଲା । ଇଂଲଣ୍ଡ ପ୍ରାୟ ଏକ ପ୍ରଥମ ଶ୍ରେଣୀର ଶକ୍ତି ନଥିଲା । ନେଦରଲାଣ୍ଡ୍‌ସ୍‌ରେ ଅର୍ଥାତ୍ ହଲାଣ୍ଡ ଓ ବେଲ୍‌ଜିଅମ୍‌ର ଏକ ଅଂଶରେ ସ୍ପେନ ଶାସନ ବିରୁଦ୍ଧରେ ଏକ ବିଦ୍ରୋହ ହୋଇଥିଲା । ଡଚ୍‌ମାନଙ୍କ ସହିତ ସହାନୁଭୂତି ଦେଖାଇ ଏବଂ ସ୍ପେନ ପ୍ରତି ଈର୍ଷାପରାୟଣ ହୋଇ ଇଂରେଜ ଲୋକେ ଘରୋଇ ଭାବରେ ଡଚ୍‌ମାନଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କର କେତେକ ନାବିକ ସମୁଦ୍ର ଭିତରେ ଆମେରିକାରୁ ଆସୁଥିବା ମାଲଭର୍ତ୍ତି ଜାହାଜ ସବୁ ଧରିଲେ, ଏହି କାର୍ଯ୍ୟକୁ ଏକ ପ୍ରକାର ଜଳଦସ୍ୟୁବୃତ୍ତି ବୋଲି କୁହାଯାଇପାରେ । ଏହି ବିପଦସଙ୍କୁଳ ଅଥଚ ଲାଭଦାୟକ ଖେଳର ନେତା ଥିଲେ ସାର ଫ୍ରାନ୍‌ସିସ୍ ଡ୍ରେକ୍ ଏବଂ ସେ ଏହାକୁ ସ୍ପେନ ରାଜାଙ୍କ ଦାଢ଼ିର ଉପରିଭାଗ ପୋଡ଼ା ହେଉଛି ବୋଲି କହୁଥିଲେ ।

୧୫୭୭ରେ ସ୍ପେନୀୟ ଉପନିବେଶଗୁଡ଼ିକ ଲୁଣ୍ଠନ କରିବା ନିମନ୍ତେ ପାଞ୍ଚୋଟି ଜାହାଜ ନେଇ ଡ୍ରେକ୍ ବାହାରିଲେ । ସେ ଏହି ଆକ୍ରମଣରେ ସଫଳ ହେଲେ; କିନ୍ତୁ ତାଙ୍କର ଚାରି-ଗୋଟି ଜାହାଜ । ହଜିଗଲେ କେବଳ ଗୋଟିଏ ମାତ୍ର ଜାହାଜ—'ଗୋଲଡ଼ନ ହାଇଣ୍ଡ' ପ୍ରଶାନ୍ତ ମହାସାଗରରେ ପହଞ୍ଚିଥିଲା ଏବଂ ଉତ୍ତମାଶା ଅନ୍ତରୀପ ଦେଇ ଏଥିରେ ଡ୍ରେକ୍ ଇଂଲଣ୍ଡକୁ ଫେରି ଆସିଥିଲେ । ଏହିରୂପେ ସେ ପୃଥିବୀର ଚତୁର୍ଦ୍ଦିଗରେ ବୁଲିଲେ ଏବଂ ଏପରି ଯାତ୍ରା କରିବାରେ ଗୋଲଡ଼ନ ହାଇଣ୍ଡ ହେଲା ଦ୍ୱିତୀୟ ଜାହାଜ । ପ୍ରଥମେ ମାଗେଲାନଙ୍କ 'ଭିକ୍ଟୋରିଆ' ଜାହାଜ ଏହିପରି ଯାତ୍ରା କରିଥିଲା । ପୃଥିବୀ ଚତୁର୍ଦ୍ଦିଗରେ ଯାତ୍ରା କରିବା ପାଇଁ ଗୋଲ୍‌ଡ଼ନ ହାଇଣ୍ଡ୍‌କୁ ତିନି ବର୍ଷ ଲାଗିଥିଲା ।

ବିନା ଗୋଳମାଳରେ ସ୍ପେନ ରାଜାଙ୍କ ଦାଢ଼ି ଉପରିଭାଗ ପୋଡ଼ିବା କାମ ବେଶୀଦିନ ଚାଲିପାରନ୍ତା କିଆଁ? ଅତିଶୀଘ୍ର ଇଂଲଣ୍ଡ ଓ ସ୍ପେନ ମଧ୍ୟରେ ଯୁଦ୍ଧ ଲାଗିଗଲା । ଡଚ୍‌ମାନେ ଆଗରୁ ସ୍ପେନ ସହିତ ଲଢ଼େଇ କରୁଥିଲେ । ପର୍ତ୍ତୁଗାଲ ବି ଏହି ଯୁଦ୍ଧରେ ଲିପ୍ତ ଥିଲା, ଯେହେତୁ ଗତ କେତେବର୍ଷ ହେଲା ଏକା ରାଜା ସ୍ପେନ ଓ ପର୍ତ୍ତୁଗାଲ ଉଭୟରେ ଶାସନ କରୁଥିଲେ । ନିଜର ସୌଭାଗ୍ୟ ଏବଂ ଦୃଢ଼ତା ହେତୁ ଇଂଲଣ୍ଡ ଏହି ଯୁଦ୍ଧରେ ସଫଳ ହେଲା । ଇଉରୋପ ଏଥିରେ ଚକିତ ହୋଇଗଲା । ତୋର ମନେ ଥିବ, ସ୍ପେନ ଯେଉଁ "ଅଜେୟ ଆର୍ମାଡ଼ା" ବ୍ରିଟେନ ଜୟ କରିବାକୁ ପଠାଇଥିଲା, ତାହା ଧ୍ୱଂସ ହୋଇ ଯାଇଥିଲା । କିନ୍ତୁ ଆମେ ବର୍ତ୍ତମାନ ପ୍ରାଚ୍ୟ ସମ୍ବନ୍ଧରେ ଆଲୋଚନା କରୁଥାଉଁ ।

ଇଂରେଜ ଓ ଡଚ୍ ଉଭୟେ ସୁଦୂର ପ୍ରାଚ୍ୟ ଆକ୍ରମଣ କଲେ ଏବଂ ସ୍ପେନ ଓ ପର୍ତ୍ତୁଗାଲ ଆକ୍ରମଣ କଲେ । ସ୍ପେନବାସୀ ଫିଲିପାଇନରେ ସମସ୍ତ ଶକ୍ତି କେନ୍ଦ୍ରୀଭୂତ କରିଥିଲେ ଏବଂ ସେମାନେ ଏହା ସହଜରେ ରକ୍ଷା କରିପାରିଥିଲେ । କିନ୍ତୁ ପର୍ତ୍ତୁଗୀଜମାନେ କଠୋର ଆଘାତ ପାଇଲେ । ସେମାନଙ୍କର ପୂର୍ବୀୟ ସାମ୍ରାଜ୍ୟ ଲୋହିତସାଗରଠାରୁ ମଲାକ୍କା, ମସଲାଦ୍ୱୀପ ପର୍ଯ୍ୟନ୍ତ ୬୦୦୦ ମାଇଲବ୍ୟାପୀ ବିସ୍ତୃତ ଥିଲା । ସେମାନେ ଏଡ଼େନ ନିକଟରେ ପାରସ୍ୟ ଉପସାଗର, ସିଂହଳରେ, ଭାରତୀୟ ଉପକୂଳର ଅନେକ ସ୍ଥାନରେ ଏବଂ ଅବଶ୍ୟ ସମଗ୍ର ପୂର୍ବୀୟ ଦ୍ୱୀପପୁଞ୍ଜ ଓ ମାଲୟରେ ପ୍ରତିଷ୍ଠିତ ହୋଇଥିଲେ । କ୍ରମେ ସେମାନେ ତାଙ୍କର ପୂର୍ବୀୟ ସାମ୍ରାଜ୍ୟ ହରାଇଲେ । ସହର ପରେ ସହର, ବସତି ପରେ ବସତି ଡଚ୍ ଅଥବା ଇଂରେଜଙ୍କ ହାତକୁ ଗଲା । ଏପରିକି ୧୬୪୧ରେ ମଲାକ୍କାର ପତନ ହେଲା । କେବଳ ଭାରତ ଓ ଅନ୍ୟ କେତେକ ସ୍ଥାନରେ କେତେକ କ୍ଷୁଦ୍ର ସ୍ଥାନ ରହିଗଲା । ଏଗୁଡ଼ିକ ଭିତରେ ପଶ୍ଚିମ-ଭାରତରେ ଗୋଆହିଁ ପ୍ରଧାନ ଥିଲା ଏବଂ ସେଠାରେ ଏବେ ପର୍ତ୍ତୁଗୀଜ ରହିଛନ୍ତି । କେତେକ ବର୍ଷ ପୂର୍ବେ ଯେଉଁ ପର୍ତ୍ତୁଗୀଜ ପ୍ରଜାତନ୍ତ୍ର ସ୍ଥାପିତ ହୋଇଥିଲା, ଏହା ତାହାର ଏକ ଅଂଶ ହେଲା । ଆକବର ପର୍ତ୍ତୁଗୀଜଙ୍କ ହାତରୁ ଗୋଆ ନେବାକୁ ଚେଷ୍ଟା କରିଥିଲେ । କିନ୍ତୁ ସେ ମଧ୍ୟ ଏଥିରେ କୃତକାର୍ଯ୍ୟ ହୋଇ ନଥିଲେ ।

ତେଣୁ ପୂର୍ବଖଣ୍ଡର ଇତିହାସରୁ ପର୍ତ୍ତୁଗାଲ ବାଦ ଗଲା । କ୍ଷୁଦ୍ର ରାଜ୍ୟଟି ମୁହଁରେ ବହୁତ ଧରିଥିଲା; କିନ୍ତୁ ତାହା ଗିଳିପାରିଲା ନାହିଁ ଓ ସେହି ଚେଷ୍ଟାରେ କ୍ରମେ ଅବସନ୍ନ ହୋଇ-ପଡ଼ିଲା । ସ୍ପେନ ଫିଲିପାଇନ୍‌ରେ ରହିଥିଲା; କିନ୍ତୁ ପୂର୍ବୀୟ ବ୍ୟାପାରରେ ବିଶେଷ କିଛି ଭାଗ ନେଇ ନ ଥିଲା । ଏବେ ମୂଲ୍ୟବାନ ପୂର୍ବୀୟ ବେପାରର ପ୍ରଭୁତ୍ୱ ହଲାଣ୍ଡ ଓ ଇଂଲଣ୍ଡ ହାତକୁ ଗଲା । ଉଭୟଦେଶ ଏଥିପାଇଁ ବେପାରୀ କମ୍ପାନୀମାନ ଗଢ଼ି ଆଗରୁ ପ୍ରସ୍ତୁତ ଥିଲେ । ଇଂଲଣ୍ଡରେ ରାଣୀ ଏଲିଜାବେଥ ୧୬୦୦ ଖ୍ରୀଷ୍ଟାବ୍ଦରେ ଇଷ୍ଟଇଣ୍ଡିଆ କମ୍ପାନୀକୁ ଅଧିକାର ପତ୍ର ଦେଇଥିଲେ । ଦୁଇ ବର୍ଷ ପରେ ଡଚ୍ ଇଷ୍ଟଇଣ୍ଡିଆ କମ୍ପାନୀ ଗଢ଼ା ହେଲା । ଦୁଇଟିଯାକ କମ୍ପାନୀ ବେପାର ପାଇଁ ଗଢ଼ା ହୋଇଥିଲା । ଏଗୁଡ଼ିକ ବ୍ୟକ୍ତିଗତ କମ୍ପାନୀ ଥିଲା; କିନ୍ତୁ ଅନେକ ସମୟରେ ସରକାରଠାରୁ ସାହାଯ୍ୟ ପାଉଥିଲା । ସେଗୁଡ଼ିକ ମାଲୟସିଆର ମସଲା ବେପାରରେ ବିଶେଷ ଭାବରେ ଲାଗିଥିଲେ । ସେତେବେଳେ ମୋଗଲ ସମ୍ରାଟଙ୍କ ଅଧୀନରେ ଭାରତ ଏକ ଶକ୍ତିଶାଳୀ ରାଜ୍ୟ ଥିଲା ଏବଂ ସହଜେ ତାକୁ ଆକ୍ରମଣ କରାଯାଇ ପାରୁ ନଥିଲା ।

ଡଚ୍ ଓ ଇଂରେଜଙ୍କ ମଧ୍ୟରେ ଅନେକ ସମୟରେ କଳହ ଲାଗୁଥିଲା ଏବଂ ଶେଷରେ ଇଂରେଜମାନେ ପୂର୍ବଦ୍ୱୀପପୁଞ୍ଜ ଛାଡ଼ି ଚାଲିଗଲେ ଓ ଭାରତପ୍ରତି ଅଧିକ ଦୃଷ୍ଟି ଦେଲେ । ସେତେବେଳକୁ ବିରାଟ ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇ ପଡ଼ୁଥାଏ ଏବଂ ବିଦେଶୀ ଆକ୍ରମଣକାରୀଙ୍କ ଲାଗି ଏହା ଏକ ସୁଯୋଗ ହେଲା । ଇଂଲଣ୍ଡ ଓ ଫ୍ରାନ୍ସରୁ କିପରି ଦୁଃସାହସୀ ଲୋକେ ଆସିଲେ ଓ ଚକ୍ରାନ୍ତ ଏବଂ ଯୁଦ୍ଧଦ୍ୱାରା ଭାଙ୍ଗିପଡ଼ୁଥିବା ସାମ୍ରାଜ୍ୟର କେତେକ ଅଂଶ ପାଇବା ନିମନ୍ତେ କିପରି ଚେଷ୍ଟା କରିଥିଲେ, ତାହା ଆମେ ପରେ ଦେଖିବା ।

# ୮୦ : ଚୀନରେ ଏକ ଶାନ୍ତ ଓ ସମୃଦ୍ଧି ଯୁଗ

ଜୁଲାଇ ୨୨, ୧୯୩୨

ମା' ମୋର ! ତୁ ବେମାର ପଡ଼ିଛୁ ଏବଂ ହୁଏତ ଏବେ ବି ବିଛଣାରେ ପଡ଼ିରହିଛୁ । ଜେଲ ଭିତରକୁ ଖବର ଆସିବାକୁ ସମୟ ଲାଗେ । ମୁଁ ତୋତେ କିଛି ସାହାଯ୍ୟ କରିପାରିବି ନାହିଁ ଏବଂ ତୋତେ ନିଜପ୍ରତି ଦୃଷ୍ଟିଦେବାକୁ ହେବ । କିନ୍ତୁ ମୁଁ ତୋ ବିଷୟ ଖୁବ୍ ଚିନ୍ତା କରୁଥିବି । ଆଶ୍ଚର୍ଯ୍ୟ କଥା, ଆମେ ସବୁ କିପରି ଭାବରେ ବିକ୍ଷିପ୍ତ ହୋଇ ରହିଛେ—ତୁ ସୁଦୂର ପୁନାରେ; ମମି ଏଲାହାବାଦରେ ଅସୁସ୍ଥ । ଆଉ ଅନ୍ୟ ସମସ୍ତେ ବିଭିନ୍ନ ଜେଲରେ ରହିଛନ୍ତି ।

କେତେ ଦିନ ହେଲା ତୋ ପାଖକୁ ଏହିସବୁ ଚିଠି ଲେଖିବା ମୋ ପକ୍ଷରେ କଷ୍ଟକର ହୋଇଛି । ତୋ ସହିତ କଥାବାର୍ତ୍ତା କରୁଛି ବୋଲି ମନକୁ ଭୁଲାଇ ରଖିବା ସହଜ କଥା ନୁହେଁ । ତୁ ପୁନାରେ ପୀଡ଼ିତ ହୋଇଛୁ ବୋଲି ମୁଁ ଚିନ୍ତା କରୁଥିଲି ଏବଂ ତୋତେ କେବେ ପୁଣି ଦେଖିବି ଏ ବିଷୟ ଭାବୁଥିଲି; କେତେ ମାସ ବା ବର୍ଷ ପରେ ଆମର ଦେଖାହେବ କେଜାଣି ? ଏହି କାଳ ଭିତରେ ତୁ କେତେ ବଡ଼ ହୋଇଯାଇ ନଥିବୁ ।

କିନ୍ତୁ ଅତ୍ୟଧିକ ଚିନ୍ତା କରିବା ଭଲ ନୁହେଁ—ବିଶେଷକରି ଜେଲରେ; ମୋର ନିଜକୁ ସମ୍ଭାଳି ନେବା ଦରକାର ଓ ମୁଁ କ୍ଷଣକାଳ ଲାଗି ଆଜି କଥା ପାଶୋରି ପକାଇବି ଏବଂ ଗତ କାଳର ଚିନ୍ତା କରିବି ।

ଆମେ ମାଲୟସିଆରେ ଥିଲେ; ନୁହେଁ କି ? ଆମେ ସେଠାରେ ବିଚିତ୍ର ଘଟଣା ଦେଖିଲେ । ଏସିଆରେ ଇଉରୋପ ଆକ୍ରମଣଶୀଳ ଥିଲା; ପର୍ତ୍ତୁଗୀଜମାନେ ଆସିଲେ ଏବଂ ତାଙ୍କ ପରେ ଆସିଲେ ସ୍ପେନବାସୀ ଓ ଶେଷକୁ ଆସିଲେ ଇଂରେଜ ଓ ଡଚ୍ । କିନ୍ତୁ ଦୀର୍ଘକାଳ ପର୍ଯ୍ୟନ୍ତ ଏହି ଇଉରୋପୀୟମାନଙ୍କ କାର୍ଯ୍ୟକଳାପ ମାଲୟସିଆ ଓ ଦ୍ୱୀପମାନଙ୍କରେ ଅଧିକ ଭାବରେ ସୀମାବଦ୍ଧ ଥିଲା ଏବଂ ପଶ୍ଚିମ ଦିଗରେ ମୋଗଲଙ୍କ ଅଧୀନରେ ଏକ ଶକ୍ତିଶାଳୀ ଭାରତ ଥିଲା । ଉତ୍ତରରେ ଥିଲା ଚୀନ । ଏହା ବି ନିଜକୁ ରକ୍ଷା କରିବା ଲାଗି ସମ୍ପୂର୍ଣ୍ଣ କ୍ଷମ ଥିଲା । ତେଣୁ ଭାରତ ଓ ଚୀନରେ ଇଉରୋପୀୟମାନେ ବିଶେଷ କିଛି ହସ୍ତକ୍ଷେପ କରି ନ ଥିଲେ ।

ମାଲୟସିଆରୁ ଚୀନ ଏକ ପାହାଚ ମାତ୍ର । ଚାଲ ଆମେ ଏବେ ସେଠିକି ଯିବା । ମଙ୍ଗୋଲ କୁବ୍ଲାଇ ଖାଁ ଯେଉଁ ଓ୍ୱାନବଂଶ ସ୍ଥାପନ କରିଥିଲେ ତାହା ଯାଇଛି । ୧୩୬୮ରେ ମହାନ ପ୍ରାଚୀର ସେ କଡ଼କୁ ଏକ ଜନବିଦ୍ରୋହ ଶେଷ ମଙ୍ଗୋଲସେନାଙ୍କୁ ତଡ଼ି ଦେଇଛି । ଏହି ବିଦ୍ରୋହର ନେତା ଥିଲେ ହୁଙ୍ଗ୍-ଉ । ସେ ଏକ ଦରିଦ୍ର ଶ୍ରମିକ ସନ୍ତାନ ରୂପେ ଜୀବନ ଆରମ୍ଭ କରିଥିଲେ ଏବଂ ତାଙ୍କର ବିଶେଷ କିଛି ସ୍କୁଲ ଶିକ୍ଷା ନଥିଲା । କିନ୍ତୁ ଜୀବନର ବ୍ୟାପକ ଶିକ୍ଷାଗାରରେ ସେ ଜଣେ ଉତ୍ତମ ଛାତ୍ର ଥିଲେ ଓ ସେ ଜଣେ ସାଫଲ୍ୟମଣ୍ଡିତ ନେତା ହୋଇଥିଲେ ଏବଂ ପରେ ଏକ ଜ୍ଞାନୀ ଶାସକ ହେଲେ । ସମ୍ରାଟ ହୋଇଥିବା ଯୋଗୁଁ ସେ ଅହଙ୍କାର ବା ଗର୍ବରେ ସ୍ଫୀତ ହୋଇ ନଥିଲେ; କିନ୍ତୁ ତାଙ୍କର ସାରା ଜୀବନ ସେ

ସାଧାରଣ ଲୋକର ସନ୍ତାନ ବୋଲି ସ୍ମରଣ ରଖିଥିଲେ । ସେ ୩୦ ବର୍ଷ ରାଜତ୍ୱ କରିଥିଲେ ଏବଂ ସେ ଯେଉଁ ସାଧାରଣ ଲୋକଙ୍କ ଭିତରୁ ଆସିଥିଲେ ସେମାନଙ୍କର ଅବସ୍ଥାର ଉନ୍ନତି କରିବା ନିମନ୍ତେ ଯେଉଁ ଅବିଶ୍ରାନ୍ତ ଉଦ୍ୟମ କରିଥିଲେ ସେଥିସକାଶେ ତାଙ୍କ ଶାସନକାଳକୁ ଆଜି ବି ଲୋକେ ସ୍ମରଣ କରନ୍ତି । ଶେଷପର୍ଯ୍ୟନ୍ତ ସେ ନିଜର ସରଳ ରୁଚି ରଖି ପାରିଥିଲେ ।

ହୁଙ୍ଗ୍-ଭୁ ନୂତନ ମିଙ୍ଗ ବଂଶର ପ୍ରଥମ ସମ୍ରାଟ ଥିଲେ । ତାଙ୍କର ପୁତ୍ର ୟୁଙ୍ଗ-ଲୋବ ଜଣେ ମହାନ ଶାସକ ଥିଲେ । ସେ ୧୪୦୨ରୁ ୨୪ ପର୍ଯ୍ୟନ୍ତ ସମ୍ରାଟ ହୋଇଥିଲେ । କିନ୍ତୁ ଚୀନା ନାମଗୁଡ଼ିକ ମୁଁ ତୋ ଉପରେ ଲଦିବି ନାହିଁ । ସେଠାରେ କେତେକ ଭଲ ଶାସକ ଥିଲେ ଏବଂ ତା ପରେ ସାଧାରଣତଃ ଯାହା ହୋଇଥାଏ ସେପରି ଅଧୋଗତି ହେଲା । କିନ୍ତୁ ଚାଲ ଆମେ ସମ୍ରାଟମାନଙ୍କୁ ଭୁଲିଯାଇ ଚୀନ ଇତିହାସର ଏହି କାଳର ଅବସ୍ଥା ବିଚାର କରିବା । ଏହା ଏକ ଉଜ୍ଜ୍ୱଳ କାଳ ଥିଲା ଏବଂ ମନମୁଗ୍ଧ କଲା ପରି ଘଟଣା ଘଟିଥିଲା । 'ମିଙ୍ଗ' ଶବ୍ଦର ଅର୍ଥ ହେଉଛି ଉଜ୍ଜ୍ୱଳ । ମିଙ୍ଗବଂଶ ୧୩୬୮ରୁ ୧୬୪୪ ପର୍ଯ୍ୟନ୍ତ ୨୭୬ ବର୍ଷ ରହିଥିଲା । ସବୁ ଚୀନାବଂଶ ଭିତରେ ଏହାର ବିଶେଷତ୍ୱ ଥିଲା ଏବଂ ଏହାଙ୍କ ଶାସନକାଳରେ ଚୀନା ଲୋକଙ୍କର ଧୀମତ୍ତା ପୂର୍ଣ୍ଣମାତ୍ରାରେ ବୃଦ୍ଧି ପାଇଥିଲା । ଉଭୟ ଘରୋଇ ଓ ବୈଦେଶିକ କ୍ଷେତ୍ରରେ ଏଠାରେ ଶାନ୍ତି ଥିଲା । କୌଣସି ଆକ୍ରମଣଶୀଳ ବୈଦେଶିକ ନୀତି, କୌଣସି ସାମ୍ରାଜ୍ୟବାଦୀ ଦୁଃସାହସ ନ ଥିଲା । ପଡ଼ୋଶୀ ରାଜ୍ୟଗୁଡ଼ିକ ସହ ବନ୍ଧୁତା ଥିଲା । କେବଳ ଉତ୍ତରରେ ଯାଯାବର ତାତାର ଜାତିମାନଙ୍କଠାରୁ କିଛି ବିପଦ ଆଶଙ୍କା ଥିଲା । ଅବଶିଷ୍ଟ ପୂର୍ବୀୟ ଦୁନିଆ ପକ୍ଷରେ ଚୀନ ଅଧିକ ପରିମାଣରେ ଜ୍ୟେଷ୍ଠଭ୍ରାତା ପରି । ଏହା ଚତୁର, ପ୍ରିୟ ଓ ସଂସ୍କୃତି ସମ୍ପନ୍ନ ଥିଲା ଏବଂ ନିଜର ଶ୍ରେଷ୍ଠତା ବିଷୟରେ ଖୁବ୍ ସଚେତନ ଥିଲା । ମାତ୍ର କନିଷ୍ଠ ଭ୍ରାତାମାନଙ୍କର ମଙ୍ଗଳ କାମନା କରୁଥିଲା ଏବଂ ସେମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଓ ନିଜର ସଂସ୍କୃତି ଏବଂ ସଭ୍ୟତାରେ ଭାଗୀଦାର କରିବା ନିମନ୍ତେ ଇଚ୍ଛୁକ ଥିଲା । ସେମାନେ ବି ଏହା ପ୍ରତି ଅନାଇ ରହିଥିଲେ । କେତେକ କାଳ ପର୍ଯ୍ୟନ୍ତ ଜାପାନ ବି ଚୀନର କର୍ତ୍ତୃତ୍ୱ ସ୍ୱୀକାର କରିଥିଲା ଏବଂ ଜାପାନ ଶାସନ କରୁଥିବା ସୋଗୁନ ନିଜକୁ ମିଙ୍ଗ ସମ୍ରାଟଙ୍କ କରଦ ରାଜା ବୋଲି କହୁଥିଲେ । କୋରିଆର ଜାଭା ଓ ସୁମାତ୍ରା ଆଦି ଇଣ୍ଡୋନେସିଆ ଦ୍ୱୀପରୁ ଏବଂ ଇଣ୍ଡୋଚୀନରୁ ରାଜସ୍ୱ ଆସୁଥିଲା ।

ୟୁଙ୍ଗ୍-ଲୋଙ୍କ ରାଜତ୍ୱକାଳରେ ସେନାପତି ଚେଙ୍ଗ୍-ହୋଙ୍କ ଅଧୀନରେ ଏକ ବିରାଟ ନୌ-ଅଭିଯାନ ମାଲୟସିଆକୁ ଯାଇଥିଲା । ପ୍ରାୟ ୩୦ ବର୍ଷ କାଳ ସମଗ୍ର ପୂର୍ବୀୟ ସମୁଦ୍ରରେ ପାରସ୍ୟ ଉପସାଗର ପର୍ଯ୍ୟନ୍ତ ଚେଙ୍ଗ୍-ହୋ ପର୍ଯ୍ୟଟନ କରିଥିଲେ । ଦ୍ୱୀପ ରାଜ୍ୟଗୁଡ଼ିକୁ କରଗତ କରିବା ନିମନ୍ତେ ଏକ ସାମ୍ରାଜ୍ୟବାଦୀ ପ୍ରଚେଷ୍ଟା ପରି ଏହା ଦେଖାଯାଏ । ଯାହା ହେଉ ଆପାତତଃ ବିଜୟ ବା ଅନ୍ୟ କିଛି ଲାଭ କରିବାର ଉଦ୍ଦେଶ୍ୟ ନ ଥିଲା । ଶ୍ୟାମ ଓ ମାଡଗାସ୍କରର ବୃଦ୍ଧି ପାଉଥିବା ଶକ୍ତି ହିଁ ସମ୍ଭବତଃ ଏହି ଅଭିଯାନ ପଠାଇବା ନିମନ୍ତେ ୟୁଙ୍ଗ୍-ଲୋଙ୍କୁ ପ୍ରବର୍ତ୍ତାଇଥିଲା । କିନ୍ତୁ କାରଣ ଯାହା ହୋଇଥାଉ ନା କାହିଁକି ଏହି ଅଭିଯାନରେ ଫଳ ହୋଇଥିଲା ଖୁବ୍ ମହତ । ଏହା ମାଡଗାସ୍କର ଓ ଶ୍ୟାମକୁ

ଅଟକାଇଦେଲା ଏବଂ ନୂତନ ମୁସଲମାନ ରାଜ୍ୟ ମଲାକ୍‌କାକୁ ଉତ୍ସାହିତ କରିଥିଲା; ଏହା ସମଗ୍ର ଇଣ୍ଡୋନେସିଆ ଓ ପୂର୍ବଖଣ୍ଡରେ ଚୀନ ସଂସ୍କୃତିର ବିସ୍ତାର କରିଥିଲା ।

ଚୀନ ଓ ପଡ଼ୋଶୀଙ୍କ ମଧ୍ୟରେ ଶାନ୍ତି ଓ ବନ୍ଧୁତା ଥିବାରୁ ଘରୋଇ ବ୍ୟାପାର ପ୍ରତି ଅଧିକ ଦୃଷ୍ଟି ଦିଆଯାଇ ପାରୁଥିଲା । ଏକ ଉତ୍ତମ ଶାସନ ଥିଲା ଏବଂ ଟିକସ କମ କରାଯାଇ କୃଷକମାନଙ୍କ ଉପରୁ ଭାର ଲଘବ ହୋଇଥିଲା । ରାସ୍ତା, କେନାଲ ଓ ଜଳଭଣ୍ଡାର ସବୁର ଉନ୍ନତି କରାଗଲା । ଫସଲ ହାନି ଓ ଦୁର୍ଭିକ୍ଷବେଳେ ପାଇଁ ଖାଦ୍ୟ ଯୋଗାଇବା ନିମନ୍ତେ ସାଧାରଣ ଶସ୍ୟ ଗୋଲା ସବୁ ସ୍ଥାପିତ ହୋଇଥିଲା । ସରକାର କାଗଜମୁଦ୍ରା ବାହାର କରିଥିଲା ଏବଂ ଏହିରୂପେ ଧାରସୂତ୍ରେ ଦ୍ରବ୍ୟ ବିନିମୟ ବୃଦ୍ଧି ପାଇଲା ଏବଂ ବେପାର ଓ ମାଲ ବିନିମୟରେ ସୁବିଧା ହେଲା । ଏହି କାଗଜ ନୋଟ ବ୍ୟାପକ ଭାବରେ ବ୍ୟବହୃତ ହୋଇଥିଲା ଏବଂ ଟିକସର ଶତକଡ଼ା ୭୦ ଭାଗ ଏଥିରେ ଅସୁଲ ଦିଆଯାଇ ପାରୁଥିଲା ।

ଏହି କାଳର ସଂସ୍କୃତି, ଇତିହାସ ଅଧିକ ଉଲ୍ଲେଖଯୋଗ୍ୟ । ଯୁଗ ଯୁଗ ଧରି ଚୀନ ଲୋକେ ଏକ ସଂସ୍କୃତିସମ୍ପନ୍ନ ଓ କଳାବିତ୍ ଭାବରେ ପ୍ରସିଦ୍ଧ । ମିଂଗ ବେଳର ସୁଶାସନ ଏବଂ କଳାବିଦ୍ୟାକୁ ଯେପରି ଉତ୍ସାହିତ କରାଯାଇଥିଲା ସେଥିରେ ଲୋକଙ୍କର ଶ୍ରୀଶକ୍ତି ବୃଦ୍ଧି ପାଇଥିଲା । ପ୍ରକାଣ୍ଡ କୋଠାମାନ ତିଆରି ହେଲା, ଖୁବ୍ ଅଙ୍କନ ଚିତ୍ର ହେଲା ଏବଂ ମିଂଗ ମୃତ୍ତିକା ପାତ୍ରଗୁଡ଼ିକ ମନୋହର ଆକୃତି ଓ ସୁନ୍ଦର କାରିଗରି ସକାଶେ ପ୍ରସିଦ୍ଧ । ଇଟାଲି ସେତେବେଳେ ପୁନର୍ଜାଗରଣ ପ୍ରେରଣାରେ ଯେଉଁସବୁ ଚିତ୍ର ସୃଷ୍ଟି କରୁଥିଲା ଏଗୁଡ଼ିକ ତାର ସମକକ୍ଷ ହୋଇଥିଲା ।

୧୫ଶ ଶତାବ୍ଦୀର ଚୀନ ଧନ, ଶିଳ୍ପ ଓ ସଂସ୍କୃତିରେ ୟୁରୋପଠାରୁ ଅଗ୍ରଗାମୀ ଥିଲା । ମିଂଗ ରାଜତ୍ୱ ଭିତରେ ଚୀନ ଲୋକଙ୍କର ସୁଖ ଓ କଳାଗତ କାର୍ଯ୍ୟକଳାପ ସହିତ ୟୁରୋପ ବା ଅନ୍ୟ କେଉଁ ଦେଶ ପାଖରେ ପଡ଼ିବ ନାହିଁ । ମନେ ରଖିଥା ଯେ ଏହି ବେଳ ୟୁରୋପର ମହାନ ପୁନର୍ଜାଗରଣ କାଳ ।

ମିଂଗ୍‌କାଳ କଳା ଦୃଷ୍ଟିରୁ ଖୁବ୍ ପ୍ରସିଦ୍ଧି ଲାଭ କରିଥିବାର ଆଉ ଏକ କାରଣ ହେଉଛି ଏହା ନିଜର ସୁନ୍ଦର କାର୍ଯ୍ୟର ଅସଂଖ୍ୟ ଦୃଷ୍ଟାନ୍ତ ଆମ ପାଇଁ ରଖିଯାଇଛି । ଏଗୁଡ଼ିକ ବିରାଟ ସ୍ମୃତିସ୍ତମ୍ଭ ଏବଂ କାଠ, ହାତୀଦାନ୍ତ, ଶ୍ୱେତପ୍ରସ୍ତର, ଖୋଦିତ ସୁନ୍ଦର କାରୁକାର୍ଯ୍ୟ ଏବଂ ପିତଳପାତ୍ର ଓ ମାଟିପାତ୍ର ସବୁ । ମିଂଗ କାଳ ଶେଷବେଳକୁ ଏହି ଚିତ୍ରରେ ଆହୁରି କୋଟିକମ ହେବାର ପ୍ରବୃତ୍ତି ଦେଖାଦେଇଛି ଏବଂ ଏଥିହେତୁ ଖୋଦିତ ଚିତ୍ର ବା ଅଙ୍କନ ଚିତ୍ର ବରଂ ନଷ୍ଟ ହୋଇଯାଇଛି ।

ଏହି କାଳଭିତରେ ପର୍ତ୍ତୁଗୀଜ ଜାହାଜ ପ୍ରଥମେ ଚୀନକୁ ଆସିଥିଲା । ସେଗୁଡ଼ିକ ୧୫୧୭ରେ କ୍ୟାଣ୍ଟନରେ ପହଞ୍ଚିଥିଲା । ଅଲ୍‌ବୁକେର୍କ ଯେଉଁ ଚୀନମାନଙ୍କ ସମ୍ପର୍କରେ ଆସିଥିଲେ, ତାଙ୍କ ସହିତ ଭଲ ବ୍ୟବହାର କରିବା ଲାଗି ଖୁବ୍ ଯତ୍ନ ନେଇଥିଲେ ଏବଂ ଚୀନରେ ଅନୁକୂଳ ରିପୋର୍ଟ ପହଞ୍ଚିଥିଲା । ତେଣୁ ସେମାନଙ୍କୁ ଭଲ ଭାବରେ ସ୍ୱାଗତ କରା-ହୋଇଥିଲା । କିନ୍ତୁ ଅଳ୍ପ କେତେଦିନ ପରେ ପର୍ତ୍ତୁଗୀଜମାନେ ନାନାଭାବରେ ଅସଦ୍-ଆଚରଣ ଆରମ୍ଭ କଲେ ଓ କେତେକ ସ୍ଥାନରେ ଦୁର୍ଗ ନିର୍ମାଣ କଲେ । ଏହି ବର୍ବରତା

ଦେଖି ଚୀନ ସରକାର ଚକିତ ହୋଇଥିଲା ଏବଂ ସେ ତରତର ହୋଇ କୌଣସି କାର୍ଯ୍ୟ-ବିଧାନ କରି ନ ଥିଲେ ମଧ୍ୟ ଶେଷରେ ସମସ୍ତଙ୍କୁ ତଡ଼ି ଦେଇଥିଲା । ତାପରେ ପର୍ତ୍ତୁଗୀଜ ମାନେ ଉପଲବ୍ଧି କଲେ ଯେ ତାଙ୍କର ସାଧାରଣ କୌଶଳ ଚୀନରେ କାମ ଦେଲା ନାହିଁ । ସେମାନେ ଅଧିକ ଶାନ୍ତିପ୍ରିୟ ଓ ନମ୍ର ହୋଇଗଲେ ଏବଂ ୧୫୫୭ରେ କାଣ୍ଟନ ନିକଟରେ ବସତି କରିବା ନିମନ୍ତେ ଅନୁମତି ପାଇଥିଲେ । ତାପରେ ସେମାନେ ମାକାଓ ସ୍ଥାପନା କରିଥିଲେ ।

ପର୍ତ୍ତୁଗୀଜମାନଙ୍କ ସହିତ ଖ୍ରୀଷ୍ଟୀୟାନ ପାଦ୍ରୀସବୁ ଆସିଥିଲେ । ତାଙ୍କ ଭିତରେ ସେଣ୍ଟଫ୍ରାନ୍‌ସିସ ସର୍ବାପେକ୍ଷା ପ୍ରସିଦ୍ଧ ଥିଲେ । ସେ ବହୁଦିନ ଭାରତରେ କଟାଇଥିଲେ ଏବଂ ତାଙ୍କ ନାମରେ ଅନେକ ମିଶନାରୀ କଲେଜ ହୋଇଥିବାର ଭୁ ଦେଖିବୁ । ସେ ଜାପାନ ଯାଇଥିଲେ । ସେ ଓହ୍ଲାଇବା ପୂର୍ବରୁ ଏକ ଚୀନ ବନ୍ଦରରେ ପ୍ରାଣତ୍ୟାଗ କଲେ । ଚୀନରେ ଖ୍ରୀଷ୍ଟୀୟାନ ମିଶନାରୀମାନଙ୍କୁ ଉତ୍ସାହିତ କରାଯାଉ ନଥିଲା । ଯାହାହେଉ ଦୁଇ ଜଣ ଖ୍ରୀଷ୍ଟୀୟାନ ପାଦ୍ରୀ ନିଜକୁ ବୌଦ୍ଧ ଭିକ୍ଷୁ ବୋଲି ଛଦ୍ମବେଶ ଧାରଣ କରି କେତେ ବର୍ଷକାଳ ଚୀନ ଭାଷା ଅଧ୍ୟୟନ କରିଥିଲେ । ସେମାନେ ମହାନ କନଫୁସିଅନ ପଣ୍ଡିତ ହୋଇଥିଲେ ଏବଂ ବୈଜ୍ଞାନିକ ଭାବରେ ଖ୍ୟାତି ଲଭିଥିଲେ । ଏହାଙ୍କ ଭିତରୁ ଜଣଙ୍କ ନାମ ହେଉଛି ମାଟିଓରିକ୍‌କି । ସେ ଜଣେ ଭାରି ଦକ୍ଷ ଓ ବିଚକ୍ଷଣ ପଣ୍ଡିତ ଥିଲେ ଏବଂ କୌଶଳକ୍ରମେ ସମ୍ରାଟଙ୍କ ଉପରେ ପ୍ରଭାବ ପକାଇଥିଲେ । ସେ ପରେ ତାଙ୍କର ଛଦ୍ମବେଶ ଛାଡ଼ିଥିଲେ ଏବଂ ତାଙ୍କର ପ୍ରଭାବ ଜରିଆରେ ଚୀନରେ ଖ୍ରୀଷ୍ଟଧର୍ମ ଅଧିକ ଉତ୍ତମ ସ୍ଥାନ ପାଇଲା ।

୧୭ଶ ଶତାବ୍ଦୀର ପ୍ରଥମ ଭାଗରେ ମାକାଓକୁ ଡଚ୍‌ମାନେ ଆସିଥିଲେ । ସେମାନେ ବେପାର କରିବାକୁ ଚାହିଁଲେ । କିନ୍ତୁ ପର୍ତ୍ତୁଗୀଜ ଓ ତାଙ୍କ ଭିତରେ ଭଲ ପଡ଼ୁ ନଥିବାରୁ ପର୍ତ୍ତୁଗୀଜମାନେ ତାଙ୍କ ବିରୁଦ୍ଧରେ ଚୀନାମାନଙ୍କୁ ମତାଇବା ପାଇଁ ଯଥେଷ୍ଟ ଚେଷ୍ଟା କରିଥିଲେ । ସେମାନେ ଚୀନାମାନଙ୍କୁ କହିଲେ ଯେ ଡଚ୍ ହେଉଛନ୍ତି ଏକ ଭୀଷଣ ଜଳଦସ୍ୟୁ ଜାତି । ତେଣୁ ଚୀନାମାନେ ଅନୁମତି ଦେବାକୁ ଅସ୍ୱୀକାର କଲେ । କେତେକ ବର୍ଷ ପରେ ଡଚ୍‌ମାନେ ଜାଭାର ବାଟେଭିୟା ନଗରରୁ ମାକାଓକୁ ଏକ ବିରାଟ ନୌବାହିନୀ ପଠାଇଲେ । ଅତି ନିର୍ବୋଧ ଭାବରେ ସେମାନେ ବଳପୂର୍ବକ ମାକାଓ ନେବାକୁ ଚେଷ୍ଟା କରିଥିଲେ; କିନ୍ତୁ ଚୀନା ଓ ପର୍ତ୍ତୁଗୀଜମାନେ ତାଙ୍କ ଅପେକ୍ଷା ଅଧିକ ବଳବାନ୍ ଥିଲେ ।

ଡଚ୍‌ଙ୍କ ପରେ ଆସିଲେ ଇଂରେଜ; ମାତ୍ର ସେମାନେ ବି ବିଶେଷ ସଫଳତା ଲାଭ କରିପାରିଲେ ନାହିଁ । ମିଙ୍ଗ ରାଜତ୍ୱ ଶେଷ ହେବା ପରେ ସେମାନେ ଚୀନ ବେପାରରେ ସ୍ଥାନ ପାଇଲେ ।

ସବୁ ଭଲ ଓ ମନ୍ଦ ଜିନିଷ ପରି ମିଙ୍ଗ୍ ରାଜତ୍ୱ ୧୭ଶ ଶତାବ୍ଦୀର ମଧ୍ୟଭାଗରେ ଶେଷ ପାଇଗଲା । ଉତ୍ତରର କ୍ଷୁଦ୍ର ତାତାର ମେଘଟି ବୃଦ୍ଧି ପାଇଲା ଏବଂ ଶେଷକୁ ଚୀନ ଉପରେ ଏହା ଛାୟା ବିସ୍ତାର କଲା । ପୁରାତନ କିନ ବା ସ୍ୱର୍ଣ୍ଣବର୍ଣ୍ଣ ତାତାରଙ୍କ ବିଷୟ ତୋର ମନେ ଥିବ । ସେମାନେ ସୁଙ୍ଗ୍‌ମାନଙ୍କୁ ଚୀନର ଦକ୍ଷିଣକୁ ତଡ଼ି ଦେଇଥିଲେ ଏବଂ ସୁଙ୍ଗ୍‌ମାନେ

ମଙ୍ଗୋଲମାନଙ୍କୁ ତଡ଼ି ଦେଇଥିଲେ । ଏବେ ମାଞ୍ଚୁରିଆ ଯେଉଁଠି ଅଛି, ସେଠାରେ ଏହି ଜନମାନଙ୍କର ଭାଇ ସ୍ୱରୂପ ଏକ ନୂତନ ଜାତି ଚୀନର ଉତ୍ତରରେ ଏବେ ପ୍ରାଧାନ୍ୟଲାଭ କଲେ । ସେମାନେ ନିଜକୁ ମାଞ୍ଚୁ ବୋଲି କହୁଥିଲେ । ଏହି ମାଞ୍ଚୁମାନେ ଶେଷରେ ମିଙ୍ଗମାନଙ୍କର ସ୍ଥାନ ଦଖଲ କଲେ ।

କିନ୍ତୁ ଚୀନ ଯଦି ବିବାଦ ହେତୁ ବିଭକ୍ତ ହୋଇ ନ ଥାଆନ୍ତା, ତେବେ ମାଞ୍ଚୁଙ୍କ ପକ୍ଷରେ ଚୀନ ଦଖଲ କରିବା ଖୁବ୍ କଷ୍ଟକର ହୋଇ ପଡ଼ିଥାଆନ୍ତା । ଚୀନ, ଭାରତ ପରି ପ୍ରାୟ ପ୍ରତ୍ୟେକ ଦେଶରେ ସେ ଦେଶର ଦୁର୍ବଳତା ଓ ଲୋକଙ୍କ ଆଭ୍ୟନ୍ତରୀଣ ବିବାଦ ଯୋଗୁ ବିଦେଶୀ ଆକ୍ରମଣ ସର୍ବଦା କୃତକାର୍ଯ୍ୟ ହୋଇଛି । ଚୀନରେ ଦେଶସାରା ଗୋଲମାଲ ଲାଗିଥିଲା । ସମ୍ଭବତଃ ଶେଷ ମିଙ୍ଗ୍ ସମ୍ରାଟମାନେ ଦୋଷଦୁଷ୍ଟ ଓ ଅକର୍ମଣ୍ୟ ଥିଲେ । ଅଥବା ଆର୍ଥିକ ଅବସ୍ଥା ଏପରି ଥିଲା ଯେ ଏକ ସାମାଜିକ ବିପ୍ଳବ ହୋଇଥିଲା । ମାଞ୍ଚୁଙ୍କ ବିରୁଦ୍ଧରେ ସଂଗ୍ରାମ ମଧ୍ୟ ବ୍ୟୟସାଧ୍ୟ ଥିଲା ଓ ଏଥିରେ ତାଙ୍କ ଉପରେ ଖୁବ୍ ଚାପ ପଡ଼ିଲା । ପ୍ରତ୍ୟେକ ସ୍ଥାନରେ ଦସ୍ୟୁପତିମାନେ ଦେଖାଦେଲେ ଏବଂ କ୍ଷଣକାଳ ନିମନ୍ତେ ପ୍ରକୃତରେ ସମ୍ରାଟହିଁ ଏମାନଙ୍କ ଭିତରେ ଶ୍ରେଷ୍ଠ ଥିଲେ । ମିଙ୍ଗ ସେନାପତି ୱୁ-ସାନ-କୁଏ୍ୱ ମାଞ୍ଚୁଙ୍କ ବିରୁଦ୍ଧରେ ସୈନ୍ୟଚାଳନା କରୁଥିଲେ । ଦସ୍ୟୁସମ୍ରାଟ ଓ ମାଞ୍ଚୁଙ୍କ ମଧ୍ୟରେ କ'ଣ ବାଛିବାକୁ ହେବ, ଏହା ଜାଣିବା ପାଇଁ ତାଙ୍କୁ ବଡ଼ କଷ୍ଟ କରିବାକୁ ପଡ଼ିଥିଲା । ଅତ୍ୟନ୍ତ ନିର୍ବୋଧ ଭାବରେ ଅଥବା ବୋଧହୁଏ ବିଶ୍ୱାସଘାତକ ଭାବରେ ଦସ୍ୟୁମାନଙ୍କ ବିରୁଦ୍ଧରେ ସାହାଯ୍ୟ କରିବା ନିମନ୍ତେ ସେ ମାଞ୍ଚୁଙ୍କୁ ଅନୁରୋଧ କଲେ । ମାଞ୍ଚୁମାନେ ଆନନ୍ଦରେ ତାହା କରିଥିଲେ ଏବଂ ଅବଶ୍ୟ ପେକିଂରେ ରହିଲେ । ୱୁ-ସାନ-କୁଏ୍ୱ ତାପରେ ମିଙ୍ଗ୍ ପକ୍ଷ ଦୁର୍ବଳ ହେବା ଉପଲବ୍ଧି କରି ଏହାକୁ ଛାଡ଼ି ଚାଲିଗଲେ ଏବଂ ବିଦେଶୀ ଆକ୍ରମଣକାରୀ ମାଞ୍ଚୁମାନଙ୍କ ସହିତ ଯୋଗ ଦେଲେ ।

ଆଜି ପର୍ଯ୍ୟନ୍ତ ୱୁ-ସାନ-କୁଏ୍ୱଙ୍କୁ ଚୀନରେ ଘୃଣିତ ହେବା ଏବଂ ଇତିହାସରେ ସେ ଏକ ପ୍ରଧାନ ବିଶ୍ୱାସଘାତକ ରୂପେ ପରିଚିତ ହେବା କିଛି ବିଚିତ୍ର କଥା ନୁହେଁ । ଦେଶରକ୍ଷା କରିବାର ଭାର ଅର୍ପଣ କରାଯାଇଥିଲାବେଳେ ସେ ଶତ୍ରୁପକ୍ଷକୁ ଚାଲିଯାଇଥିଲେ ଏବଂ ପ୍ରକୃତରେ ଦକ୍ଷିଣସ୍ଥ ପ୍ରଦେଶଗୁଡ଼ିକୁ ନିଜ ଅଧୀନରେ ଆଣିବା ପାଇଁ ସାହାଯ୍ୟ କରିଥିଲେ । ତାଙ୍କର ପୁରସ୍କାର ସ୍ୱରୂପ ସେ ମାଞ୍ଚୁମାନଙ୍କ ସକାଶେ ଯେଉଁସବୁ ପ୍ରଦେଶ ଜୟ କରିଥିଲେ, ସେଥିରେ ସେମାନଙ୍କ ତରଫରୁ ତାଙ୍କୁ ଭାଇସରାୟ (ପ୍ରତିନିଧି) ନିଯୁକ୍ତ କରାଗଲା ।

୧୬୫୦ ବେଳକୁ ମାଞ୍ଚୁମାନେ କାଣ୍ଟନ ନଗର ଦଖଲ କଲେ ଏବଂ ଚୀନ ଅଧିକାର ସମ୍ପୂର୍ଣ୍ଣ ହୋଇଗଲା । ସମ୍ଭବତଃ ସେମାନେ ଅପେକ୍ଷାକୃତ ଚୀନମାନଙ୍କ ଅପେକ୍ଷା ଭଲ ଯୋଦ୍ଧା ଥିବାରୁ ଜୟଲାଭ କଲେ । ବୋଧହୁଏ ଦୀର୍ଘକାଳ ଶାନ୍ତି ଓ ସମୃଦ୍ଧିରେ ରହି ସାମରିକ ଦୃଷ୍ଟିରେ ଚୀନାମାନେ ଦୁର୍ବଳ ହୋଇ ପଡ଼ିଥିଲେ । କିନ୍ତୁ ମାଞ୍ଚୁ ବିଜୟ ଏତେ ଶୀଘ୍ର ହେବାର ବାହ୍ୟ କାରଣ ଥିଲା; ବିଶେଷତଃ ସେମାନେ ଚୀନାମାନଙ୍କୁ ଖୁସି କରିବା ଲାଗି ଖୁବ୍ ଯତ୍ନ ନେଉଥିଲେ । ଆଗ କାଳରେ ତାତାର ଆକ୍ରମଣ ପରେ ପରେ ନୃଶଂସତା ଓ ହତ୍ୟାକାଣ୍ଡ ପ୍ରାୟ ଲାଗିଥାଏ । ଏଥର ଚୀନ କର୍ମଚାରୀମାନଙ୍କୁ ନିଜ ଆଡ଼କୁ ଆଣିବା

ପାଇଁ ପ୍ରତ୍ୟେକ ପ୍ରକାର ଉଦ୍ୟମ କରାଗଲା ଏବଂ ଏହି ଲୋକମାନେ ପୁନର୍ବାର କର୍ମଚାରୀ ରୂପେ ନିଯୁକ୍ତ ହେଲେ । ଏହିରୂପେ ଚୀନ କର୍ମଚାରୀମାନେ ଉଚ୍ଚପଦବୀ ଅଧିକାର କରିଥିଲେ । ପୁରାତନ ମିଙ୍ଗ ଶାସନ ପ୍ରଣାଳୀ ମଧ୍ୟ ବଦଳି ନଥିଲା । ଏକାପ୍ରକାର ପ୍ରଥା ଚାଲିଥିଲା; ମାତ୍ର ଉପରେ ତାହାର ଚାଳକମାନେ ବଦଳିଥିଲେ ।

କିନ୍ତୁ ଦୁଇଟି ପ୍ରଧାନ ଘଟଣାରୁ ଦେଖାଗଲା ଯେ ଚୀନାମାନେ ବିଦେଶୀ ଶାସନ ଅଧୀନରେ ଥିଲେ । ଦୁଇଟି ପ୍ରଧାନ କେନ୍ଦ୍ରରେ ମାଞ୍ଚୁ ସେନା ରଖାଯାଇଥିଲା ଏବଂ ବଶ୍ୟତା ସ୍ୱୀକାର କରିବାର ଚିହ୍ନ ସ୍ୱରୂପ ପୃଷ୍ଠ କେଶ ବା ଶିଖା ପିନ୍ଧିବା ନିମନ୍ତେ ଚୀନାମାନଙ୍କୁ ବାଧ୍ୟ କରାଯାଇଥିଲା । ଆମ ଭିତରୁ ଅଧିକାଂଶ ସର୍ବଦା ଏହି ଶିଖା (ଚୂଟି ) ଚୀନାମାନଙ୍କ ସମ୍ବନ୍ଧକ ବୋଲି ଧରିଥାଉଁ । କିନ୍ତୁ ଏହା ଆଦୌ ଚୀନାମାନଙ୍କ ପ୍ରଚଳିତ ପ୍ରଥା ନୁହେଁ । ଆଜି ଯେପରି କେତେକ ଭାରତୀୟ କୌଣସି ପ୍ରକାର ଲଜ୍ଜା ବା ଅଧୋଗତିର ପରିଚାୟକ ବୋଲି ବିଚାର ଅନେକ ଚିହ୍ନ ବରଣ କରିଥାନ୍ତି, ସେହିପରି ସେମାନଙ୍କ ପକ୍ଷରେ ଏହା ଏକ ଦାସତ୍ୱର ଚିହ୍ନ ଥିଲା । ଚୀନାମାନେ ଏବେ ସେ ଶିଖା ରଖିବା ଛାଡ଼ି ଦେଲେଣି ।

ଉଜ୍ଜ୍ୱଳ ମିଙ୍ଗ୍ ଯୁଗ ଚୀନରେ ଏହିପରି ଶେଷ ହେଲା । ପ୍ରାୟ ତିନି ଶତାବ୍ଦୀ କାଳ ସୁଶାସନ କଲା ପରେ ଏହା ଏତେ ଶୀଘ୍ର କାହିଁକି ପତନ ହେଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଯେପରି କୁହାଯାଉଥିଲା ଯଦି ସରକାର ଭଲ ଥିଲା, ତେବେ କାହିଁକି ବା ବିଦ୍ରୋହ ଓ ଆଭ୍ୟନ୍ତରୀଣ ଗୋଳମାଳ ହୋଇଥିଲା ? ମାଞ୍ଚୁରିଆରୁ ଆସୁଥିବା ବିଦେଶୀ ଆକ୍ରମଣକାରୀ-ମାନଙ୍କୁ କାହିଁକି ବା ବାଧା ଦିଆଯାଇ ପାରିଲା ନାହିଁ ? ସମ୍ଭବତଃ ଶେଷ ଅବସ୍ଥାକୁ ସରକାର ଅତ୍ୟାଚାରୀ ହୋଇଥିଲା କିମ୍ବା ହୁଏତ ଅତ୍ୟଧିକ ପିତୃତୁଲ୍ୟ ଶାସନଦ୍ୱାରା ଲୋକେ ଦୁର୍ବଳ ହୋଇପଡ଼ିଥିଲେ । ହାତଟେକା କରି ଖୁଆଇବା ପିଲା ବା ଜାତି କାହାର ପକ୍ଷରେ ହିତକାରକ ନୁହେଁ ।

ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ, ଏହି କାଳରେ ଚୀନ ଅତ୍ୟନ୍ତ ଉଚ୍ଚ ସଂସ୍କୃତି ଲାଭ କରି ସୁଦ୍ଧା ବିଜ୍ଞାନ, ଆବିଷ୍କାର ଇତ୍ୟାଦି ଅନ୍ୟ ଦିଗରେ କାହିଁକି ବା ଅଗ୍ରସର ହୋଇ ନଥିଲା । ଇଉରୋପର ଲୋକେ ତାର ବହୁ ପଛରେ ପଡ଼ିଥିଲେ; ତଥାପି ତୁ ଦେଖିପାରିବୁ ଯେ ପୁନର୍ଜାଗରଣ କାଳରେ ସେମାନଙ୍କ ଭିତରେ ତେଜ, ଦୁଃସାହସ ଓ ଅନୁସନ୍ଧିତ୍ସୁ ଭାବ ପୁରାମାତ୍ରାରେ ଥିଲା । ତୁ ଏହାକୁ ଏକ ପ୍ରୌଢ଼ ଓ ଯୁବକ ଭାବରେ ତୁଳନା କରିପାରୁ । ସଂସ୍କୃତିସମ୍ପନ୍ନ ପ୍ରୌଢ଼ ବ୍ୟକ୍ତିଟି ଶାନ୍ତ ଜୀବନ ପ୍ରିୟ ହୋଇ ନୂତନ ଦୁଃସାହସ କରିବାରେ ଓ ନିଜର କାର୍ଯ୍ୟନିର୍ଘଣ୍ଟରେ ଗୋଳମାଳ କରିବା ପାଇଁ ପ୍ରସ୍ତୁତ ନୁହେଁ । ସେ ନିଜର ସାହିତ୍ୟ ଓ କଳାରେ ବ୍ୟସ୍ତ ରହିଲା; ଶ୍ରେଷ୍ଠ ଶିଶୁଟି ଅଜ୍ଞାନ ହୋଇଥିବାରୁ ତେଜସ୍ୱୀ ଓ ଜିଜ୍ଞାସୁ ହୋଇ ପ୍ରତ୍ୟେକ ସ୍ଥାନରେ ଦୁଃସାହସ କାର୍ଯ୍ୟ ଖୋଜି ବୁଲିଲା । ଚୀନରେ ବିରାଟ ସୌନ୍ଦର୍ଯ୍ୟ ଥିଲା ସତ, ମାତ୍ର ଏହା ଥିଲା ମଧ୍ୟାହ୍ନ ବା ସନ୍ଧ୍ୟାକାଳର ନିସ୍ତବ୍ଧ ସୌନ୍ଦର୍ଯ୍ୟ ।

# ୮୧ : ଜାପାନ ନିଜକୁ ଅବଦ୍ଧ କଲା

ଜୁଲାଇ ୨୩, ୧୯୩୨

ଚୀନରୁ ଆମେ ଜାପାନକୁ ଖୁସିରେ ଯାଇପାରୁ, ବାଟେ କୋରିଆରେ ଅଳ୍ପକ୍ଷଣ ପାଇଁ ରହିବା । ଅବଶ୍ୟ ମଙ୍ଗୋଳମାନେ କୋରିଆରେ ପ୍ରାଧାନ୍ୟ ବିସ୍ତାର କରୁଥିଲେ । ସେମାନେ ଜାପାନ ଆକ୍ରମଣ କରିବାକୁ ବି ଚେଷ୍ଟା କରିଥିଲେ; କିନ୍ତୁ ସଫଳ ହୋଇ ନ ଥିଲେ । କୁବଲାଇ ଖାଁ ଜାପାନ ବିରୁଦ୍ଧରେ କେତେକ ଅଭିଯାନ ଚଳାଇଥିଲେ; ମାତ୍ର ପରାସ୍ତ ହୋଇଥିଲେ । ମଙ୍ଗୋଳମାନେ କେବେହେଁ ସମୁଦ୍ରରେ ଖୁବ୍ ପାରଙ୍ଗମତା ଦେଖାଇ ନାହାନ୍ତି । ସେମାନେ ମୁଖ୍ୟତଃ ସ୍ଥଳଭାଗର ଲୋକ ଥିଲେ । ଜାପାନ ଏକ ଦ୍ୱୀପ ହୋଇଥିବାରୁ ତାଙ୍କଠାରୁ ରକ୍ଷା ପାଇଥିଲା ।

ଚୀନରୁ ମଙ୍ଗୋଳମାନଙ୍କୁ ତଡ଼ି ଦେବାର ଅଳ୍ପ ଦିନ ପରେ କୋରିଆରେ ଏକ ବିପ୍ଳବ ହୋଇଥିଲା ଏବଂ ଯେଉଁ ଶାସକମାନେ ମଙ୍ଗୋଳମାନଙ୍କର ବଶ୍ୟତା ସ୍ୱୀକାର କରିଥିଲେ, ସେମାନଙ୍କୁ ତଡ଼ିଦିଆଯାଇଥିଲା । କୋରିଆର ଦେଶଭକ୍ତ ଦ୍ୱିତୀୟ ଜୋ ଏହି ବିଦ୍ରୋହର ନେତା ଥିଲେ । ସେ ନୂତନ ଶାସକ ହେଲେ ଏବଂ ଏକ ବଂଶ ସ୍ଥାପନ କଲେ । ତାହା ୫୦୦ ବର୍ଷ କାଳ (୧୯୩୨ ଠାରୁ ଏବେ ଜାପାନ କୋରିଆ ଦଖଲ କରିବା ପର୍ଯ୍ୟନ୍ତ) ରହିଥିଲା । ସିଓଲ ତାହାର ରାଜଧାନୀ ଥିଲା ଏବଂ ସେହିଦିନଠାରୁ ଏହା ରହି ଆସିଛି । କୋରିଆର ଏହି ୫୦୦ ବର୍ଷର ଇତିହାସ ଆମେ ଆଲୋଚନା କରିବା ନାହିଁ । କୋରିଆକୁ ପୁନର୍ବାର 'ଚୋଜନ୍' ବୋଲି କୁହାଯାଉଥିଲା । ଏହା ପ୍ରାୟ ଏକ ସ୍ୱାଧୀନ ରାଜ୍ୟ ଭାବରେ ଚଳୁଥିଲା; ମାତ୍ର ଚୀନର ବାହୁଛାୟା ତଳେ ରହିଥିଲା ଓ ଅନେକ ସମୟରେ ତାକୁ କର ଦେବାକୁ ପଡ଼ୁଥିଲା । ଜାପାନ ସହିତ କେତେକ ଯୁଦ୍ଧ ହୋଇଥିଲା ଓ କେତେ ଥର କୋରିଆ କୃତକାର୍ଯ୍ୟ ହେଲା । କିନ୍ତୁ ବର୍ତ୍ତମାନ ଦୁହିଁଙ୍କ ଭିତରେ କୌଣସି ତୁଳନା କରାଯାଇପାରେ ନାହିଁ । ଜାପାନ ଏକ ମହାନ୍ ଓ ଶକ୍ତିଶାଳୀ ସାମ୍ରାଜ୍ୟ ହୋଇଛି । ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସମସ୍ତ ପ୍ରକାର ପାପ ତାହାଠାରେ ପୂର୍ଣ୍ଣ ମାତ୍ରାରେ ରହିଛି । ବିଚରା କୋରିଆ ଏହି ସାମ୍ରାଜ୍ୟର କିୟଦଂଶ ରୂପେ ପଡ଼ି ରହି ଜାପାନଙ୍କଦ୍ୱାରା ଶାସିତ ଓ ଲୁଣ୍ଠିତ ହେଉଛି ଏବଂ ଏକ ପ୍ରକାର ନିରାଶ୍ରୟ ଭାବରେ ଅଥଚ ସାହସ ସହକାରେ ନିଜର ସ୍ୱାଧୀନତା ଲାଗି ସଂଗ୍ରାମ କରୁଛି । କିନ୍ତୁ ଏହା ଆଧୁନିକ ଇତିହାସ ଓ ଆମେ ଏବେ ପୁରୁଣା ଯୁଗର ଅତୀତରେ ରହିଥାଉଁ ।

ତୋର ମନେଥିବ, ୧୨ଶ ଶତାବ୍ଦୀର ଶେଷ ବେଳକୁ ଜାପାନରେ ସୋଗୁନମାନେ ପ୍ରକୃତ ଶାସକ ହୋଇଥିଲେ । ସମ୍ରାଟ କେବଳ ନାମକୁମାତ୍ର ଥିଲେ । ପ୍ରଥମ ସୋଗୁନ ଚାମାକୁରା ସୋଗୁନ ନାମରେ ପରିଚିତ । ଏମାନେ ପ୍ରାୟ ୧୫୦ ବର୍ଷ କାଳ ରହିଥିଲେ ଏବଂ ଦେଶରେ ଉତ୍ତମ ଶାସନ ପ୍ରଣାଳୀ ଓ ଶାନ୍ତି ବିରାଜୁଥିଲା । ସାଧାରଣତଃ ଶାସକ ବଂଶର ଯେପରି ପତନ ଘଟେ, ସେହିପରି ହେଲା ଏବଂ ଅଯୋଗ୍ୟତା, ବିଳାସ ଓ ଗୃହଯୁଦ୍ଧ ଦେଖାଦେଲା । ସମ୍ରାଟ ନିଜେ ପ୍ରାଧାନ୍ୟ କରିବାକୁ ଚେଷ୍ଟା କରିବାରୁ ତାଙ୍କର ସୋଗୁନଙ୍କ ସହିତ ବିବାଦ ଲାଗିଲା । ସମ୍ରାଟ ଅକୃତକାର୍ଯ୍ୟ ହେଲେ ଏବଂ ପୁରାତନ ସୋଗୁନମାନଙ୍କ ଦଶା ମଧ୍ୟ ସେହିପରି ହେଲା ଓ ୧୩୩୮ରେ ଏକ ନୂତନ ସୋଗୁନ ବଂଶ କ୍ଷମତା ପାଇଲେ । ଏହାକୁ ଅସିକାଗା ସୋଗୁନ କୁହାଯାଏ । ଏହା ୨୩୫ ବର୍ଷ କାଳ ରହିଥିଲା । କିନ୍ତୁ ଏହା ଏକ ବିବାଦ ଓ ଯୁଦ୍ଧର କାଳ ଥିଲା । ଚୀନ୍‌ରେ ମିଙ୍ଗ୍‌ମାନଙ୍କର ଏହା ପ୍ରାୟ ସମସାମୟିକ ଥିଲା । ଜଣେ ସୋଗୁନ ମିଙ୍ଗ୍‌ମାନଙ୍କର ସଦିଚ୍ଛା ଲାଭ କରିବା ନିମନ୍ତେ ଭାରି ବ୍ୟାକୁଳ ହୋଇଥିଲେ ଏବଂ ସେ ଏପରିକି ମିଙ୍ଗ୍ ସମ୍ରାଟଙ୍କ କରଦ ରାଜା ବୋଲି ନିଜକୁ ସ୍ୱୀକାର କରିଥିଲେ । ଜାପାନକୁ ଏପରି ଅପମାନ ଦେଇଥିବା ହେତୁ ଜାପାନୀ ଐତିହାସିକମାନେ ଅତ୍ୟନ୍ତ ବିରକ୍ତ ହୋଇ ଏହି ଲୋକଟିକୁ ଖୁବ୍ ନିନ୍ଦା କରିଛନ୍ତି ।

ସ୍ୱଭାବତଃ ଚୀନ ସହିତ ଏମାନଙ୍କର ଅତ୍ୟନ୍ତ ବନ୍ଧୁତ୍ୱପୂର୍ଣ୍ଣ ସମ୍ବନ୍ଧ ଥିଲା ଏବଂ ମିଙ୍ଗ୍‌ମାନଙ୍କ ଅମଳରେ ସେତେବେଳେ ଚୀନରେ ଯେଉଁ ସଂସ୍କୃତି ରହିଥିଲା, ସେଥିପ୍ରତି ଏମାନେ ଆଗ୍ରହ ପ୍ରକାଶ କଲେ । ପ୍ରତ୍ୟେକ ଚୀନା ଜିନିଷ-ଅଙ୍କନ ବିଦ୍ୟା, କବିତା, କାରୁକାର୍ଯ୍ୟ, ଦର୍ଶନ ଏବଂ ଏପରିକି ପୁରାତନ ଶୈଳୀ ମଧ୍ୟ, ଅଧ୍ୟୟନ କରାଗଲା ଓ ପ୍ରଶଂସା କରାଗଲା । ଏହି ସମୟରେ କିମ୍ବାକୁଜି ଅର୍ଥାତ୍ ସ୍ୱର୍ଣ୍ଣମଣ୍ଡପ ( Golden Pavilion ) ଓ ଗିଂକାକୁଜି ଅର୍ଥାତ୍ ରୌପ୍ୟମଣ୍ଡପ ( Silver Pavilion ) ନାମକ ଦୁଇଟି ପ୍ରଧାନ ପ୍ରାସାଦ ତିଆରି ହୋଇଥିଲା ।

କଳାଗତ ଉନ୍ନତି ଓ ବିଳାସ ସଙ୍ଗେ ସଙ୍ଗେ କୃଷକମାନେ ଅତ୍ୟଧିକ କଷ୍ଟଭୋଗ କରୁଥିଲେ । କୃଷକମାନଙ୍କ ଉପରେ କରଭାର ଅତ୍ୟନ୍ତ ଗୁରୁତର ଥିଲା ଏବଂ ଗୃହଯୁଦ୍ଧର ବୋଝ ଅଧିକ ଭାବରେ ତାଙ୍କ ଉପରେ ପଡ଼ୁଥିଲା । ଅବସ୍ଥା ଦିନକୁଦିନ ଖରାପ ହେବାକୁ ଲାଗିଲା, ଶେଷରେ ରାଜଧାନୀ ବାହାରେ କେନ୍ଦ୍ର ସରକାର ପ୍ରାୟ କାମ କରିପାରୁ ନଥିଲେ ।

ଏହି ସଂଘର୍ଷ ଭିତରେ ୧୫୪୨ରେ ପର୍ତ୍ତୁଗୀଜମାନେ ଆସିଲେ । ମଜାର କଥା ହେଉଛି, ସେମାନେ ପ୍ରଥମେ ଜାପାନକୁ ବନ୍ଧୁକ ଆଣିଥିଲେ । ଏହା ଅଦ୍ଭୁତ ପରି ମନେହୁଏ; କାରଣ ଚୀନରେ ଦୀର୍ଘକାଳ ଏହା ପ୍ରଚଳିତ ଥିଲା ଏବଂ ବାସ୍ତବିକ ମଙ୍ଗୋଲମାନଙ୍କ ଜରିଆରେ ଚୀନରୁ ୟୁରୋପ ଏହାର ପ୍ରଚଳନ ଜାଣିପାରିଥିଲା ।

ଏକ ଶହ ବର୍ଷବ୍ୟାପୀ ଗୃହଯୁଦ୍ଧରୁ ଶେଷରେ ଜାପାନକୁ ତିନି ଜଣ ଲୋକ ରକ୍ଷା କରିଥିଲେ । ସେମାନେ ହେଉଛନ୍ତି ନବୁନାଗା; ସେ ଜଣେ ଦାୟମିଓ ବା ସାମନ୍ତ;

ହିଦେୟୋସି; ସେ ଜଣେ କୃଷକ ଏବଂ ଟୋକୁଗାଓ୍ୱା ଇୟେୟାସୁ, ସେ ପ୍ରଧାନ ସାମନ୍ତଙ୍କ ଭିତରୁ ଜଣେ । ୧୬ଶ ଶତାବ୍ଦୀର ଶେଷ ବେଳକୁ ସମଗ୍ର ଜାପାନ ପୁନର୍ବାର ଏକତାବଦ୍ଧ ହୋଇଥିଲା । କୃଷକ ହିଦେୟୋସି ଜାପାନର ଜଣେ ଦକ୍ଷ ରାଜନୀତିଜ୍ଞ ଥିଲେ । କିନ୍ତୁ କଥିତ ଅଛି ସେ ବଡ଼ କୁତ୍ସିତ ଥିଲେ, ସେ ଅତି ଖର୍ବକାୟ ଥିଲେ, ତାଙ୍କର ମୁହଁ ଠିକ୍ ବଣମଣିଷ ମୁହଁ ପରି ଥିଲା ।

ଜାପାନକୁ ଏକତାବଦ୍ଧ କରିସାରି ବିରାଟ ସେନାବାହିନୀକୁ କି କାର୍ଯ୍ୟରେ ନିଯୁକ୍ତ କରିବେ ତାହା ଏହି ଲୋକମାନେ ଜାଣି ନ ଥିଲେ ତେଣୁ ଅନ୍ୟ କୌଣସି ପେଷା ଅଭାବରୁ ସେମାନେ କୋରିଆ ଆକ୍ରମଣ କଲେ । କିନ୍ତୁ ଅତିଶୀଘ୍ର ସେମାନେ ଅନୁତାପ କରିଥିଲେ । କୋରିଆବାସୀ ଜାପାନୀ ନୌବାହିନୀକୁ ପରାସ୍ତ କଲେ ଓ ଦୁଇ ଦେଶ ଭିତରେ ଥିବା ଜାପାନ ସମୁଦ୍ରକୁ ନିୟନ୍ତ୍ରଣ କଲେ । ସେମାନେ ଅଧିକ ଭାବରେ ଏକ ନୂତନ ପ୍ରକାର ଜାହାଜ ସାହାଯ୍ୟରେ ଏହା କରିପାରୁଥିଲେ ; ଏହି ଜାହାଜର ଛାତ କଇଁଛ ପିଠି ପରି ଏବଂ ଲୁହାର ପଟା ଦିଆଯାଇଥିଲା । ଏହି ଜାହାଜଗୁଡ଼ିକୁ "କଚ୍ଛପ ନୌକା" କୁହାଯାଉଥିଲା । ଇଚ୍ଛାନୁସାରେ ସେଗୁଡ଼ିକୁ ଆଗପଛ କରାଯାଇ ପାରୁଥିଲା ଏବଂ ଏଥିରେ ଜାପାନୀ ଯୁଦ୍ଧ ଜାହାଜ ସବୁ ଧ୍ୱଂସ ହୋଇଥିଲା ।

ଉପରଲିଖିତ ତିନି ବ୍ୟକ୍ତିଙ୍କ ମଧ୍ୟରୁ ଟୋକୁଗାଓ୍ୱା ଇୟେୟାସୁ ଗୃହଯୁଦ୍ଧରେ ଅଧିକ ଫାଇଦା ଉଠାଇଥିଲେ । ଏପରିକି ସେ ଅତ୍ୟନ୍ତ ଧନୀ ହୋଇଥିଲେ ଏବଂ ଜାପାନର ପ୍ରାୟ ଏକସପ୍ତମାଂଶର ମାଲିକ ଥିଲେ । ସେ ତାଙ୍କର ଦଖଲରେ ଥିବା ଅଞ୍ଚଳର ମଧ୍ୟଭାଗରେ ୟେଡ୍ଡୋ ନଗର ନିର୍ମାଣ କରିଥିଲେ । ଏହା ପରେ ଟୋକିଓ ହୋଇଥିଲା । ଇୟେୟାସୁ ୧୬୦୩ରେ ଶୋଗୁନ୍ ହେଲେ ଏବଂ ଏହିରୂପେ ତୃତୀୟ ଓ ଶେଷ ଶୋଗୁନ ବଂଶ ଆରମ୍ଭ ହେଲା, ଏହା ଟୋକୁଗାଓ୍ୱା ଶୋଗୁନ ବଂଶ, ଏହା ୨୫୦ ବର୍ଷରୁ ଅଧିକ କାଳ ରହିଥିଲା ।

ଇତ୍ୟବସରରେ ପର୍ତ୍ତୁଗୀଜମାନେ କ୍ଷୁଦ୍ର ଆକାରରେ ବେପାର ଚଳାଇଥିଲେ । ୫୦ ବର୍ଷ ପର୍ଯ୍ୟନ୍ତ ତାଙ୍କର କୌଣସି ଇଉରୋପୀୟ ପ୍ରତିଦ୍ୱନ୍ଦ୍ୱୀ ନ ଥିଲେ । ସ୍ପେନବାସୀ ୧୫୯୨ରେ ଆସିଲେ ଏବଂ ଡଚ୍ ଓ ଇଂରେଜମାନେ ଆହୁରି ପରେ ଆସିଲେ । ୧୫୪୯ରେ ସେଣ୍ଟ ଫ୍ରାନ୍‌ସିସ୍ ଜେଭିୟରର ଖ୍ରୀଷ୍ଟଧର୍ମ ପ୍ରବର୍ତ୍ତନ କରିଥିଲା ପରି ଜଣାଯାଏ । ଖ୍ରୀଷ୍ଟଧର୍ମ ପ୍ରଚାରକମାନଙ୍କୁ ପ୍ରଚାର କରିବାକୁ ଅନୁମତି ଦିଆଗଲା ଓ ଏପରି କି ଉତ୍ସାହିତ କରାଯାଇଥିଲା । ଏହା ରାଜନୈତିକ କାରଣରୁ ହୋଇଥିଲା । ଯେହେତୁ ବୌଦ୍ଧମଠ ସବୁ ଷଡ଼ଯନ୍ତ୍ରର କେନ୍ଦ୍ର ବୋଲି ଧରାଯାଉଥିଲା । ଏହି କାରଣରୁ ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ଦମନ କରାଗଲା ଏବଂ ଖ୍ରୀଷ୍ଟିୟାନ ପାଦ୍ରିମାନଙ୍କୁ ଅଧିକ ସୁବିଧା ଦିଆଗଲା । କିନ୍ତୁ ଜାପାନୀମାନେ ଶୀଘ୍ର ବୁଝି ପାରିଲେ ଯେ, ଏହି ପାଦ୍ରିମାନେ ଅତ୍ୟନ୍ତ ବିପଜ୍ଜନକ, ତତ୍‌କ୍ଷଣାତ୍ ସେମାନେ ନିଜର ନୀତି ପରିବର୍ତ୍ତନ କଲେ । ଏବଂ ସେମାନଙ୍କୁ ତଡ଼ିଦେବାକୁ ଚେଷ୍ଟା କଲେ । ୧୫୮୭ ବେଳକୁ

ଏକ ଖ୍ରୀଷ୍ଟିୟାନ ବିରୋଧୀ ଆଇନ ଘୋଷିତ ହୋଇଥିଲା । ସେଥିରେ ୨୦ ଦିନ ଭିତରେ ସବୁ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କୁ ଜାପାନ ଛାଡ଼ିବାକୁ ହୁକୁମ ଦିଆଯାଇଥିଲା; ନଚେତ୍ ମୃତ୍ୟୁଶାସ୍ତି ଦିଆଯିବ ବୋଲି ଥିଲା । ଏହା ବଣିକମାନଙ୍କ ପ୍ରତି ଲାଗୁ କରାଯାଇ ନଥିଲା । କୁହା-ହୋଇଥିଲା ଯେ, ବଣିକମାନେ ରହି ବେପାର କରିପାରନ୍ତି; କିନ୍ତୁ ଯଦି ସେମାନେ ତାଙ୍କ ଜାହାଜରେ ଜଣେ ହେଲେ ମିସନାରୀ ଆଣନ୍ତି, ତେବେ ତାଙ୍କର ଜାହାଜ ଓ ମାଲ ସବୁ ବାଜ୍ୟାପ୍ତି କରି ନିଆହେବ । କେବଳ ରାଜନୈତିକ କାରଣରୁ ଏହି ଆଇନ ପାସ କରା-ହୋଇଥିଲା । ହିଦେୟୋଶି ପ୍ରମାଦ ଗଣିଲେ । ସେ ଭାବିଲେ ପାଦ୍ରୀ ଓ ତାଙ୍କର ଧର୍ମ ଗ୍ରହଣ କରିଥିବା ଲୋକେ ରାଜନୈତିକ ଦୃଷ୍ଟିରୁ ବିପଜ୍ଜନକ ହୋଇପାରନ୍ତି । ତାଙ୍କର ଧାରଣା ବିଶେଷ ଭୁଲ ନ ଥିଲା ।

ଏହାର ଅଳ୍ପ ଦିନ ପରେ ଏକ ଘଟଣା ଘଟିଲା, ଏଥିରେ ହିଦେୟୋଶିଙ୍କର ଭୟ ଯେ ଯଥାର୍ଥ ଥିଲା, ତାହା ସେ ଉପଲବ୍ଧି କଲେ ଏବଂ ଆହୁରି ରାଗିଗଲେ । ତୋର ମନେଥିବ, ଯେଉଁ 'ମାନିଲା ଗାଲିୟନ' ଦର୍ଷକରେ ଥରେ ଫିଲିପାଇନ ଓ ସ୍ପେନୀୟ ଆମେରିକା ମଧ୍ୟ ଦେଇ ଯାତାୟତ କରୁଥିଲା, ତାହା ଏକ ଝଡ଼ରେ ଜାପାନୀ ଉପକୂଳକୁ ଆଉଜି ଗଲା । ସ୍ପେନୀୟ କପ୍ତାନ ଜାପାନୀମାନଙ୍କୁ ଏକ ପୃଥିବୀର ମାନଚିତ୍ର ଦେଖାଇ ଏବଂ ବିଶେଷ ଭାବରେ ସ୍ପେନ ରାଜାଙ୍କ ଦଖଲରେ କିପରି ବିଶାଳ ରାଜ୍ୟ ରହିଛି, ତାହା ଦର୍ଶାଇ ଦେଇ ଭୀତି ସଞ୍ଚାର କରାଇବାକୁ ଚେଷ୍ଟା କଲେ । ସ୍ପେନ କିପରି ଭାବରେ ଏଡ଼େ ପ୍ରକାଣ୍ଡ ସାମ୍ରାଜ୍ୟ ପାଇପାରିଲା ସେ ପ୍ରଶ୍ନ କପ୍ତାନଙ୍କୁ ପଚରାଗଲା । ସେ ଜବାବ ଦେଲେ— ଏହା ଅତି ମାମୁଲି କଥା । ପ୍ରଥମେ ପାଦ୍ରୀମାନେ ଗଲେ ଏବଂ ଯେତେବେଳେ ଅନେକ ଲୋକ ଧର୍ମଗ୍ରହଣ କଲେ ସେତେବେଳେ ଧର୍ମଗ୍ରହଣ କରିଥିବା ଲୋକଙ୍କୁ ଏକାଠି କରିବା ନିମନ୍ତେ ଓ ଶାସନର ମୂଳୋତ୍ପାଟନ କରିବା ପାଇଁ ସୈନ୍ୟ ପଠାଗଲା । ହିଦେୟୋଶିଙ୍କ ପାଖରେ ଯେତେବେଳେ ଏ ସମ୍ବାଦ ପହଞ୍ଚିଲା, ସେ ବିଶେଷ ଖୁସି ହେଲେ ନାହିଁ ଏବଂ ପାଦ୍ରୀମାନଙ୍କ ବିରୁଦ୍ଧରେ ଆହୁରି ଉତ୍ତ୍ୟକ୍ତ ହୋଇଉଠିଲେ । ସେ 'ମାନିଲା ଗାଲିୟନ'କୁ ଛାଡ଼ିଦେଲେ; ମାତ୍ର କେତେକ ପାଦ୍ରୀ ଓ ତାଙ୍କ ଦ୍ୱାରା ଦୀକ୍ଷିତ ଲୋକଙ୍କୁ ହତ୍ୟା କରାଥିଲେ ।

ଯେତେବେଳେ ଇୟେୟାସୁ ଶୋଗୁନ ହେଲେ ସେ ବିଦେଶୀମାନଙ୍କ ପ୍ରତି ଅଧିକ ବନ୍ଧୁଭାବ ଦେଖାଇଲେ । ସେ ବିଶେଷ ଭାବରେ ବିଦେଶୀ ବେପାର ବିଶେଷତଃ ନିଜ ଦଳର ସ୍ପେନ୍ତୋ ସହିତ ସମ୍ପର୍କ ବୃଦ୍ଧି ପାଇଁ ଆଗ୍ରହ ଦେଖାଉଥିଲେ । କିନ୍ତୁ ଇୟେୟାସୁଙ୍କ ମୃତ୍ୟୁ ପରେ ପୁଣି ଖ୍ରୀଷ୍ଟିୟାନମାନଙ୍କୁ ଶାସ୍ତି ଦେବା ଆରମ୍ଭ ହେଲା । ପାଦ୍ରୀମାନଙ୍କୁ ବଳ-ପୂର୍ବକ ବାହାର କରିଦିଆଗଲା ଏବଂ ଦୀକ୍ଷା ଗ୍ରହଣ କରିଥିବା ଜାପାନୀମାନଙ୍କୁ ଖ୍ରୀଷ୍ଟଧର୍ମ ତ୍ୟାଗ କରିବା ପାଇଁ ବାଧ୍ୟ କରାଗଲା । ଜାପାନୀମାନେ ବିଦେଶୀମାନଙ୍କର ରାଜନୈତିକ ଅଭିସନ୍ଧି ବିଷୟରେ ଏପରି ଆଶଙ୍କା କରୁଥିଲେ ଯେ, ତାଙ୍କର ବାଣିଜ୍ୟ ନୀତି ସୁଦ୍ଧା

ବଦଳାଇ ଦେଲେ । ଯେ କୌଣସି ମୂଲ୍ୟ ଦେବାକୁ ପଡ଼ୁ ପଛକେ, ସେମାନେ ବିଦେଶୀ-ମାନଙ୍କୁ ବାହାର କରିବା ପାଇଁ ପ୍ରସ୍ତୁତ ଥିଲେ ।

ଜାପାନୀମାନଙ୍କର ଏହି ପରିବର୍ତ୍ତିତ ମନୋଭାବ ବୁଝି ହେଉଛି । ଆଶ୍ଚର୍ଯ୍ୟ କଥା ହେଉଛି, ସେମାନଙ୍କର ଇଉରୋପୀୟମାନଙ୍କ ସହିତ ବିଶେଷ ସମ୍ବନ୍ଧ ନୋହିଥିବା ପୂର୍ବରୁ ସେମାନେ ଏପରି ବିଚକ୍ଷଣ ଯେ, ସାମ୍ରାଜ୍ୟବାଦର ଗଧିଆ ଯେ ଧର୍ମରୂପକ ମେଣ୍ଢାର ପୋଷାକ ପିନ୍ଧି ଆସିଛି, ତାହା ଚିହ୍ନି ପାରିଥିଲେ । ପରବର୍ତ୍ତୀ ବର୍ଷମାନଙ୍କରେ ଏବଂ ଅନ୍ୟ ରାଜ୍ୟମାନଙ୍କରେ ନିଜର ଲାଳସା ଚରିତାର୍ଥ କରିବା ନିମନ୍ତେ ଇଉରୋପୀୟ ଶକ୍ତିମାନେ କିପରି ଧର୍ମକୁ ବ୍ୟବହାର କରିଛନ୍ତି, ତାହା ଆମେ ଭଲରୂପେ ଜାଣୁ ।

ଏବେ ଇତିହାସରେ ଏକ ବିଚିତ୍ର ଜିନିଷ ଘଟିଲା । ଏହା ହେଉଛି ଜାପାନ ନିଜର ଦ୍ୱାର ରୁଦ୍ଧ କରିଦେଲା । ଜାଣିଶୁଣି ବିଚ୍ଛିନ୍ନ ଓ ଆବଦ୍ଧ ରହିବାର ନୀତି ଗ୍ରହଣ କରାଗଲା ଏବଂ ଥରେ ଗୃହୀତ ହେବା ପରେ ଅଭୂତ ନିପୁଣତା ସହକାରେ ଏହା ପାଳନ କରାଗଲା । ଇଂରେଜମାନେ ସେଠାରେ ବିଶେଷ ଆଦର ପାଉ ନ ଥିବା ଜାଣି ୧୬୨୩ରେ ଜାପାନ ଯିବା ଛାଡ଼ିଦେଲେ । ତତ୍ପରବର୍ଷ ସ୍ପେନବାସୀଙ୍କୁ ଦେଶାନ୍ତର କରାଗଲା, ଏମାନଙ୍କୁ ଜାପାନୀମାନେ ବେଶୀ ଭୟ କରୁଥିଲେ । ନିୟମ କରାଗଲା ଯେ,କେବଳ ଅଖ୍ରୀଷ୍ଟିୟାନମାନେ ହିଁ ବିଦେଶକୁ ବାଣିଜ୍ୟ ପାଇଁ ଯାଇପାରନ୍ତି; କିନ୍ତୁ ଫିଲିପାଇନକୁ ଯାଇପାରିବେ ନାହିଁ । ୧୨ ବର୍ଷ ପରେ ୧୬୩୬ରେ ଜାପାନ ନିଷ୍ପତ୍ତିମୂଳକ ଭାବରେ ନିଜର ଦ୍ୱାର ରୋଧ କରିଦେଲା । ପର୍ତ୍ତୁଗୀଜମାନଙ୍କୁ ତଡ଼ିଦିଆଗଲା; ଖ୍ରୀଷ୍ଟିୟାନ ବା ଅ-ଖ୍ରୀଷ୍ଟିୟାନ ହୁଅନ୍ତୁ ସବୁ ଜାପାନୀଙ୍କୁ ଯେ କୌଣସି କାରଣ ପାଇଁ ବିଦେଶକୁ ଯିବା ନିଷେଧ କରାଗଲା; ବିଦେଶରେ ଥିବା କୌଣସି ଜପାନୀକୁ ଜାପାନକୁ ଫେରିବାକୁ ଦିଆଗଲା ନାହିଁ; ଫେରିଲେ ମୃତ୍ୟୁ ଦଣ୍ଡର ଭୟ ଥିଲା । କେବଳ କେତେକ ଡଚ୍ ଲୋକ ରହିଲେ; କିନ୍ତୁ ସେମାନଙ୍କୁ ବନ୍ଦର ଛାଡ଼ିବାକୁ ଓ ଦେଶର ଅଭ୍ୟନ୍ତରକୁ ଯିବା ଲାଗି ସଂପୂର୍ଣ୍ଣ ରୂପେ ନିଷେଧ କରିଦିଆଗଲା । ୧୬୪୧ରେ ଏହି ଅଳ୍ପ କେତେକ ଡଚ୍ ଲୋକଙ୍କୁ ମଧ୍ୟ ନାଗାସାକି ବନ୍ଦରର ଏକ କ୍ଷୁଦ୍ର ଦ୍ୱୀପକୁ ପଠାଇ ଦିଆଗଲେ ଏବଂ ସେଠାରେ ସେମାନେ ଏକପ୍ରକାର ବନ୍ଦୀରୂପେ ରହିଲେ । ସୁତରାଂ ପ୍ରଥମ ପର୍ତ୍ତୁଗୀଜ ଆସିବାର ଠିକ୍ ୯୯ ବର୍ଷ ପରେ ଜାପାନ ସମସ୍ତ ବିଦେଶୀ ସମ୍ପର୍କ ତୁଟାଇ ଦେଲା ଏବଂ ନିଜକୁ ଆବଦ୍ଧ କରି ରଖିଲା ।

୧୬୪୦ରେ ପୁନର୍ବାର ବେପାର କରିବାର ଅନୁମତି ପାଇବା ନିମନ୍ତେ ଏକ ପର୍ତ୍ତୁଗୀଜ ଜାହାଜ ଆସିଲା; ମାତ୍ର କିଛି କରିପାରିଲା ନାହିଁ । ଜାପାନୀମାନେ ଦୂତ ଓ ଅଧିକାଂଶ ନାବିକଙ୍କୁ ହତ୍ୟା କଲେ ଏବଂ ଫେରିଯାଇ ରିପୋର୍ଟ କରିବା ନିମନ୍ତେ ଅଳ୍ପ କେତେକଙ୍କୁ ଛାଡ଼ି ଦେଇଥିଲେ ।

୨୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ପୃଥିବୀରୁ ଏପରିକି ନିଜର ପଡ଼ୋଶୀ ଚୀନ ଓ କୋରିଆରୁ ଜାପାନ ସଂପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇରହିଥିଲା । ସେହି ଦ୍ୱୀପର ଅଳ୍ପ କେତେକ ଡଚ୍ ଲୋକ ଏବଂ ସାମୟିକ ଭାବରେ କଠୋର କଟକଣା ଭିତରେ ଯାଉଥିବା ଚୀନ ଲୋକ ହିଁ ବାହାର ଜଗତ ସହିତ ସମ୍ପର୍କର ଏକମାତ୍ର ଯୋଗସୂତ୍ର ଥିଲେ । ଏପରି ବିଚ୍ଛିନ୍ନ ହୋଇ ରହିଥିବା ଏକ ଅତି ଅସାଧାରଣ କଥା । ଲିଖିତ ଇତିହାସର କୌଣସି କାଳରେ ଏବଂ କୌଣସି ରାଜ୍ୟରେ ଏପରି ଏକ ଦୃଷ୍ଟାନ୍ତ ନାହିଁ । ଏପରିକି ରହସ୍ୟପୂର୍ଣ୍ଣ ତିବ୍ବତ ବା ମଧ୍ୟଅଫ୍ରିକା ଅନେକ ସମୟରେ ନିଜର ପଡ଼ୋଶୀ ରାଜ୍ୟଗୁଡ଼ିକ ସହ କାରବାର କରୁଥିଲା । ନିଜକୁ ବିଚ୍ଛିନ୍ନ କରି ରଖିବା ଏକ ବିପଜ୍ଜନକ ଜିନିଷ ଏବଂ କୌଣସି ବ୍ୟକ୍ତି ବିଶେଷ ତଥା କୌଣସି ଜାତି ପକ୍ଷରେ ବିପଜ୍ଜନକ; କିନ୍ତୁ ଜାପାନ ଏଥିରୁ ଉପକୃତ ହେଲା ଏବଂ ଏହାର ଆଭ୍ୟନ୍ତରୀଣ ଶାନ୍ତି ସ୍ଥାପିତ ହେଲା ଓ ଦୀର୍ଘକାଳବ୍ୟାପୀ ଯୁଦ୍ଧରୁ ମୁକ୍ତିଲାଭ କଲା । ତାପରେ ୧୮୫୩ରେ ଯେତେବେଳେ ସେ ତାହାର ଦ୍ୱାର ପୁନର୍ବାର ଉନ୍ମୁକ୍ତ କଲା, ସେତେବେଳେ ଏହା ଅଦ୍ଭୁତ ଅସାଧାରଣ ଜିନିଷ ହେଲା ସେ ଖୁବ୍ ବେଗରେ ଆଗେଇବାକୁ ଲାଗିଲା, ହରାଇଥିବା ସମୟର କ୍ଷତିପୂରଣ କରିବାକୁ ଲାଗିଲା, ଇଉରୋପୀୟ ଜାତିଗୁଡ଼ିକର ସମକକ୍ଷ ହେବାକୁ ଧାଇଁଲା ଏବଂ ତାଙ୍କରି ଖେଳରେ ତାଙ୍କୁ ଟପିଗଲା ।

ଇତିହାସର ଏକ ବିରକ୍ତ ଆଭାସ ଲାଗିବା ନୀରସ ଏବଂ ଏଥିରେ ବର୍ଣ୍ଣିତ ବ୍ୟକ୍ତି ସବୁ କପରି କ୍ଷୁଦ୍ର ଓ ପ୍ରାଣହୀନ ବୋଧ ନ ହେଉଛି । ଅଥଚ ମୂଳଗ୍ରନ୍ଥରେ ଲିଖିତ କୌଣସି ପୁସ୍ତକ ଯଦି କେହି ପଢ଼େ, ତେବେ ମୃତ ଅତୀତରେ ଜୀବନ ସଞ୍ଚାର ହେଲା ପରି ବୋଧହୁଏ ଏବଂ ନାଟକୀୟ ଅମର ଖୁବ୍ ନିକଟସ୍ଥ ହୋଇଯାଏ ଓ ଏଥିରେ ପ୍ରୀତିଭାଜନ ଏବଂ ଘୃଣ୍ୟ ମାନବସମୂହ ବାସ କରି ଗତି କରୁଥିଲାପରି ବୋଧହୁଏ । ମୁଁ ପୁରାତନ ଜାପାନର ମୁରସାକି ନାମକ ଜଣେ ସୁନ୍ଦରୀ ମହିଳା ବିଷୟରେ ପଢ଼ୁଛି, ଏହି ଚିଠିରେ ମୁଁ ଯେଉଁ ଗୁହସୂଚ୍ଛ କଥା ଉଲ୍ଲେଖ କରୁଛି, ତାହାର ବହୁକାଳ ପୂର୍ବରୁ ଶହ ଶହ ବର୍ଷ ପୂର୍ବେ ସେ ବାସ କରୁଥିଲେ । ଜାପାନର ସମ୍ରାଟଙ୍କ ଦରବାରରେ ତାଙ୍କର ଜୀବନ କିପରି ଥିଲା, ତାହାର ଏକ ଦୀର୍ଘ ବିବରଣୀ ସେ ଲେଖିଯାଇଛନ୍ତି ଏବଂ ଏଥିରୁ ତାଙ୍କର ମନମୁଗ୍ଧକର ବର୍ଣ୍ଣନା, ଅନ୍ୟମାନଙ୍କ ସହିତ ସମ୍ପର୍କ ଓ ରାଜକୀୟ ଅସାର ଆଡ଼ମ୍ବର ସମ୍ବନ୍ଧରେ ସେ ଯାହା ଲେଖିଯାଇଛନ୍ତି, ତାହା ପଢ଼ି ମୁରସାକି ଅତି ବାସ୍ତବପରି ମୋତେ ବୋଧ ହେଲେ ଏବଂ ପୁରାତନ ଜାପାନ ଦରବାରର ଅତି ସଂକୀର୍ଣ୍ଣ ଅଥଚ କଳାକୁଶଳ ଜଟିଳର ଏକ ଉଜ୍ଜ୍ୱଳ ଛବି ମୋ ଆଗରେ ଅଂକିତ ହୋଇଗଲା ।

# ୮୨ : ଇଉରୋପରେ ଚହଲ

ଅଗଷ୍ଟ ୪, ୧୯୩୨

ମୁଁ ଅନେକ ଦିନ ହେଲା ତୋ ପାଖକୁ ଚିଠି ଲେଖି ନାହିଁ, ବୋଧହୁଏ ଦୁଇ ସପ୍ତାହ ତଳେ ଲେଖିଥିଲି । ଜେଲଖାନାରେ ବେଳେବେଳେ ଲୋକର ମାନସିକ ଅବସ୍ଥା ବିଚିତ୍ର ହୋଇଥାଏ—ବାସ୍ତବିକ ବାହାର ଦୁନିଆରେ ମଧ୍ୟ ଲୋକ ସେହିପରି ହୋଇଥାଏ ଏବଂ କେତେ ଦିନ ହେଲା ଏହିସବୁ ଚିଠି ଲେଖିବାକୁ ମୋର ଇଚ୍ଛା ହେଉନାହିଁ, ଏହା ମୋ ଛଡ଼ା ଆଉ କେହି ଦେଖିପାରୁ ନାହିଁ । ଚିଠିଗୁଡ଼ିକ ସବୁ ଏକାଠି ଗୁଣ୍ଡାହୋଇ ପଡ଼ିଛି; ଆଜିଠୁଁ ହୁଏତ କେତେ ମାସ ବା କେତେ ବର୍ଷ ଅପେକ୍ଷା କଲେ ତୁ ଏଗୁଡ଼ିକ ଦେଖିପାରିବୁ । ଆଜିଠୁଁ କେତେ ମାସ ବା କେତେ ବର୍ଷ ପରେ ଆମର ପୁନର୍ବାର ଭେଟ ହେବ ଓ ଆମେ ପରସ୍ପରକୁ ଭଲରୂପେ ଦେଖିବା ଏବଂ ତୁ କିପରି ବଡ଼ ହୋଇଯାଉଛୁ ଓ ବଦଳି ଯାଉଛୁ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯିବି । ସେତେବେଳେ ଆମର କଥାବାର୍ତ୍ତା କରିବା ପାଇଁ ଓ କାର୍ଯ୍ୟ କରିବା ପାଇଁ ଯଥେଷ୍ଟ ଜିନିଷ ଥିବ ଏବଂ ତୁ ଏହି ଚିଠିଗୁଡ଼ିକ ପ୍ରତି ହୁଏତ ଦୃଷ୍ଟି ପକାଇବୁ ନାହିଁ । ସେତେବେଳକୁ ଚିଠିଗୁଡ଼ିକ ଏକ ପାହାଡ଼ ପରି ହୋଇଯାଇଥିବ ଏବଂ ବନ୍ଦୀ ଜୀବନରେ ଆହୁରି କେତେ ଶହ ଘଣ୍ଟା ଏଗୁଡ଼ିକ ଏହିପରି ତାଲା ବନ୍ଦ ହୋଇ ବା ରହିବ !

କିନ୍ତୁ ମୋତେ ଏହି ଚିଠି ଲେଖିବାକୁ ପଡ଼ିବ ଓ ଯାହା ଲେଖାହୋଇଛି ତାହା ସହିତ ଆହୁରି ଯୋଗ କରିବାକୁ ପଡ଼ିବ । ହୁଏତ ସେଗୁଡ଼ିକରେ ତୋର ଆଗ୍ରହ ଜାତ ହୋଇପାରେ; ଏହା ମୋତେ ଯେ ଆନନ୍ଦ ଦାନ କରୁଛି, ଏହା ତ ନିଶ୍ଚିତ କଥା ।

କେତେକାଳ ହେଲା ଆମେ ଏସିଆରେ ରହିଛେ ଏବଂ ଭାରତ, ମାଲୟସିଆ, ଚୀନ ଓ ଜାପାନର କାହାଣୀ ଅନୁସରଣ କରିବେ । ହଠାତ୍ ସେତେବେଳେ ଇଉରୋପ ଠିକ୍ ଜାଗ୍ରତ ହୋଇଆସୁଥିଲା ଏବଂ ଆଗ୍ରହପ୍ରଦ ହେବାକୁ ଆରମ୍ଭ କରୁଥିଲା, ସେତେବେଳେ ତାକୁ ଆମେ ଛାଡ଼ି ଆସିଛେ । ସେଠାରେ ଏକ "ପୁନର୍ଜାଗରଣ" ଏକ ପୁନର୍ଜନ୍ମ ହେଲା । ଅଥବା ଏକ ନୂତନ ଜନ୍ମ ହେଲା ବୋଲି କହିବା ଠିକ୍ ହେବ, କାରଣ ୧୬ଶ ଶତାବ୍ଦୀରେ ଯେଉଁ ଇଉରୋପ ବୃଦ୍ଧି ପାଉଥିବାର ଆମେ ଦେଖୁଁ, ତାହା ପୁରାତନ କାଳର ଆଦୌ ନକଲ ନୁହେଁ । ଏହା ଏକ ନୂତନ ଜିନିଷ, ଅଥବା ଅନ୍ତତଃ ଏକ ପୁରାତନ ଜିନିଷରେ ସମ୍ପୂର୍ଣ୍ଣ ରୂପେ ନୂତନ ଆବରଣ ଦିଆହୋଇ ବାହାରିଲା ।

ଇଉରୋପର ପ୍ରତ୍ୟେକ ସ୍ଥାନରେ ଗୋଳମାଳ ଓ ଅଶାନ୍ତି ଦେଖାଦେଲା ଏବଂ ଏକ ଆତଙ୍କ ସ୍ଥାନରେ ଉଦ୍‌ଗୀରଣ ହେଉଥିଲା । ଶହ ଶହ ବର୍ଷ ଧରି ସାମନ୍ତଧାରା ଅନୁସାରେ ଗଠିତ ଏକ ସାମାଜିକ ଓ ଅର୍ଥନୈତିକ ଗଠନ ଇଉରୋପକୁ ଆଚ୍ଛାଦିତ କରିଥିଲା ଏବଂ ନିଜ କବଳରେ ରଖିଥିଲା । କିଛିକାଳ ନିମନ୍ତେ ଏହି ଆବରଣ ହିଁ ବୃଦ୍ଧିରେ ବାଧା ଦେଲା । କିନ୍ତୁ ଏବେ ସେହି ଆବରଣ ଅନେକ ସ୍ଥାନରେ ଫାଟି ପଡ଼ିବାକୁ ଲାଗିଲା । କଲମ୍ବସ୍ ଓ ଭାସ୍କୋଡ଼ଗାମା ଏବଂ ସମୁଦ୍ରପଥର ଅନ୍ୟ ଆବିଷ୍କାରକମାନେ ଏହି ଆବରଣ ଭାଙ୍ଗି ଦେଲେ ଓ ଆମେରିକା ଦେଶଗୁଡ଼ିକ ଏବଂ ପ୍ରାଚ୍ୟଖଣ୍ଡକୁ ସ୍ପେନ ଓ ପର୍ତ୍ତୁଗାଲ ନେଇଥିବା ପ୍ରଚୁର ସମ୍ପତ୍ତି ଦେଖି ଇଉରୋପର ଆଖି ଝଲସିଗଲା ଏବଂ ଶୀଘ୍ର ପରିବର୍ତ୍ତନ କରିବାରେ ଲାଗିଲା । ଇଉରୋପ ଏହାର ସଙ୍କୀର୍ଣ୍ଣ ସମୁଦ୍ରର ଆରପାରିକୁ ଦୃଷ୍ଟି ନିକ୍ଷେପ କଲା ଏବଂ ବିଶ୍ୱ ଦୃଷ୍ଟିରୁ ଚିନ୍ତା କରିବାକୁ ଆରମ୍ଭ କଲା । ବିଶ୍ୱ ବାଣିଜ୍ୟ ଓ କର୍ତ୍ତୃତ୍ୱର ମହାନ୍ ସମ୍ଭାବନା ସବୁ ଉନ୍ମୁକ୍ତ ହେଲା । ବୁର୍ଜୋୟା ଶ୍ରେଣୀ ଅଧିକ କ୍ଷମତାଶାଳୀ ହେଲେ ଏବଂ ସାମନ୍ତବାଦ ପଶ୍ଚିମ ଇଉରୋପରେ ଅଧିକରୁ ଅଧିକ ପ୍ରତିବନ୍ଧକ ହେଲା ।

ସାମନ୍ତବାଦ ଆଗରୁ ଅଚଳ ହୋଇଯାଇଥିଲା । ଏହି ପ୍ରଥାର ସାର ମର୍ମ ହେଉଛି ନିର୍ଲଜ ଭାବରେ କୃଷକ ଶ୍ରେଣୀର ଶୋଷଣ । ଏହି କାଳରେ ବେଠି, ବିନା ପଇସାରେ ଶ୍ରମ, ସାମନ୍ତଙ୍କୁ ନାନା ପ୍ରକାର ବିଶେଷ ପାଉଣା ଦେବା ହେଉଥିଲା ଏବଂ ସାମନ୍ତ ହିଁ ନିଜେ ବିଚାରକ ଥିଲା । କୃଷକମାନଙ୍କର ଦୁଃଖ ବୋଗ ଏତେ ବେଶୀ ଥିଲା ଯେ, ସେଥିଯୋଗୁଁ କୃଷକ ବିଦ୍ରୋହ ଓ ଲଢ଼ାଇ ବାରମ୍ବାର ଘଟୁଥିବାର ଆମେ ଦେଖିଛେ । ଏହି କୃଷକ ଲଢ଼ାଇ ସବୁ ବିସ୍ତାର ଲାଭ କଲା ଏବଂ ଅଧିକରୁ ଅଧିକ ଭାବରେ ବାରମ୍ବାର ଘଟିଲା ଓ ଇଉରୋପର ଅନେକ ଅଞ୍ଚଳରେ ଯେଉଁ ଅର୍ଥନୈତିକ ବିପ୍ଳବ ଘଟିଥିଲା, ସେଥିରେ ସାମନ୍ତ ପ୍ରଥା ପରିବର୍ତ୍ତେ ମଧ୍ୟବିତ୍ତ ଶ୍ରେଣୀ ବା ବୁର୍ଜୋୟା ଶାସନ ସ୍ଥାପିତ ହେଲା । ଏହିସବୁ କୃଷକ ବିପ୍ଳବ ବା ଜାକେରିଆମାନଙ୍କ ଦ୍ୱାରା ଏହା ବିଶେଷ ଭାବରେ ଆସିପାରିଥିଲା ।

କିନ୍ତୁ ମନେକରିବୁ ନାହିଁ ଯେ, ଏହି ପରିବର୍ତ୍ତନ ଖୁବ୍ ଶୀଘ୍ର ହୋଇଥିଲା । ଏଗୁଡ଼ିକ ଦୀର୍ଘକାଳ ଲାଗିଥିଲା ଏବଂ ଶହ ଶହ ବର୍ଷ ପର୍ଯ୍ୟନ୍ତ ଇଉରୋପରେ ଗୃହଯୁଦ୍ଧ ଲାଗି ରହିଲା । ବାସ୍ତବିକ ଏହି ଯୁଦ୍ଧଗୁଡ଼ିକରେ ଇଉରୋପର ଅଧିକ ଅଞ୍ଚଳ ଧ୍ୱଂସ ପାଇ ଯାଇଥିଲା । ଏଗୁଡ଼ିକ କେବଳ କୃଷକ ବିଦ୍ରୋହ ନଥିଲା; ଆମେ ଦେଖିବା ଯେ ପ୍ରୋଟେ-ଷ୍ଟାଣ୍ଟ ଓ କାଥଲିକଙ୍କ ଭିତରେ ଧର୍ମ ସମ୍ପ୍ରଦାୟୀୟ ଯୁଦ୍ଧ, ନେଦରଲାଣ୍ଡ ପରି ସ୍ୱାଧୀନତା ଲାଗି ଜାତୀୟ ଯୁଦ୍ଧ ଏବଂ ରଜାର ଏକଛତ୍ର କ୍ଷମତା ବିରୁଦ୍ଧରେ ବୁର୍ଜୋୟା ଶ୍ରେଣୀର ବିଦ୍ରୋହ ହୋଇଥିଲା; ଏ ସବୁ ବଡ଼ ଗୋଳମାଳିଆ ବୋଧହୁଏ, ନୁହେଁ କି ? ହଁ ଏଗୁଡ଼ିକ ବଡ଼ ଗୋଳମାଳିଆ ଓ ଜଟିଳ । କିନ୍ତୁ ଆମେ ଯଦି ବୃହତ ଘଟଣା ଓ ଆନ୍ଦୋଳନ ପ୍ରତି ଦୃଷ୍ଟି ଦେବା, ତେବେ ଏଥିରୁ କିଛି ବୁଝିପାରିବା ।

ଆମର ପ୍ରଥମ ମନେ ରଖିବା କଥା ହେଉଛି ଯେ, କୃଷକଙ୍କ ଭିତରେ ଘୋର ଦୁର୍ଦ୍ଦଶା ଓ ଦୁଃଖ ଲାଗିଥିଲା । ଏହା ଫଳରେ କୃଷକ ବିଦ୍ରୋହ ହେଲା । ଦ୍ୱିତୀୟ ଜିନିଷ ହେଉଛି ଯେ ବୁର୍ଜୋୟା ଶ୍ରେଣୀର ଉଦୟ ଏବଂ ଉତ୍ପାଦିକା ଶକ୍ତିର ବୃଦ୍ଧି । ଜିନିଷ ଉତ୍ପାଦନ କରିବା ନିମନ୍ତେ ଅଧିକ ଶ୍ରମିକ ନିଯୁକ୍ତ ହେଲେ ଏବଂ ଅଧିକ ବେପାର ହେଲା । ତୃତୀୟ ଘଟଣାଟି ହେଉଛି ଭୂସ୍ୱାମୀମାନଙ୍କ ଭିତରେ ଚର୍ଚ୍ଚ ହିଁ ବଡ଼ ଜମିଦାର ଥିଲା । ଏହା ଏକ ବିରାଟ ନ୍ୟସ୍ତସ୍ୱାର୍ଥ ଥିଲା ଏବଂ ସେଥିପାଇଁ ସାମନ୍ତ ପ୍ରଥା ପ୍ରଚଳନ ବିଷୟରେ ଏହା ନିଶ୍ଚିତ ରୂପେ ଅତ୍ୟଧିକ ଦ୍ୟଗ୍ରତା ଦେଖାଉଥିଲା । ଯେଉଁ ଅର୍ଥନୈତିକ ପରିବର୍ତ୍ତନ ଫଳରେ ଏହାର ପ୍ରଚୁର ଧନ ସମ୍ପଦ ବିଚ୍ୟୁତ ହୋଇଯାଇପାରେ, ସେପରି ପରିବର୍ତ୍ତନ ସେ ଆଦୌ ଚାହୁଁ ନଥିଲା । ସୁତରାଂ ରୋମ୍‌ରୁ ଧର୍ମ ସମ୍ବନ୍ଧୀୟ ବିଦ୍ରୋହ ଆରମ୍ଭ ହେଲା ମାତ୍ରେ ଏହା ଅର୍ଥନୈତିକ ବିପ୍ଳବ ସହିତ ସାମିଲ ହୋଇଗଲା ।

ବିରାଟ ଅର୍ଥନୈତିକ ବିପ୍ଳବ ସଙ୍ଗରେ ଏବଂ ତାପରେ ସବୁ ଦିଗରେ ସାମାଜିକ, ଧାର୍ମିକ ଓ ରାଜନୈତିକ ପରିବର୍ତ୍ତନ ହେଲା । ତୁ ଯଦି ୧୬ଶ ଓ ୧୭ଶ ଶତାବ୍ଦୀରେ ଇଉରୋପ ପ୍ରତି ସୁଦୂର ଏବଂ ବ୍ୟାପକ ଦୃଷ୍ଟି ଦେବୁ ତାହାହେଲେ ଏହିସବୁ କାର୍ଯ୍ୟକଳାପ, ଆନ୍ଦୋଳନ ଓ ପରିବର୍ତ୍ତନଗୁଡ଼ିକ କିପରି ପରସ୍ପର ସହିତ ଏକାନ୍ତ ସଂପୃକ୍ତ ଓ ମିଳିତ ତାହା ବୁଝିପାରିବୁ । ସାଧାରଣତଃ ଏହି କାଳ ଭିତରେ ତିନୋଟି ବିରାଟ ଆନ୍ଦୋଳନ ହୋଇଥିଲା ବୋଲି କୁହାଯାଏ—ପୁନର୍ଜାଗରଣ, ସଂସ୍କାର ଓ ବିପ୍ଳବ । କିନ୍ତୁ ମନେରଖ, ସେସବୁ ଆର୍ଥିକ ଦୁର୍ଗତି ଓ ଗୋଳମାଳ ରହିଥିଲା; ତାହା ଆର୍ଥିକ ବିପ୍ଳବରେ ପରିଣତ ହେଉଥିଲା ଏବଂ ଏହା ଅନ୍ୟ ସକଳ ପରିବର୍ତ୍ତନ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ।

ପୁନର୍ଜାଗରଣ କାଳରେ ବିଦ୍ୟାର ପୁନର୍ଜନ୍ମ ହେଲା—ଇଉରୋପୀୟ ରାଜ୍ୟଗୁଡ଼ିକର କଳା, ବିଜ୍ଞାନ ସାହିତ୍ୟ ଓ ଭାଷାର ଅଭିବୃଦ୍ଧି ହେଲା, ସଂସ୍କାର କାଳରେ ରୋମାନ ଚର୍ଚ୍ଚ ବିରୁଦ୍ଧରେ ବିଦ୍ରୋହ ହେଲା । ଚର୍ଚ୍ଚର ବ୍ୟଭିଚାର ବିରୁଦ୍ଧରେ ଏହା ଥିଲା ଏକ ଜନ ବିଦ୍ରୋହ । ପୋପ ରାଜାମାନଙ୍କ ଉପରେ କର୍ତ୍ତୃତ୍ୱ କରିବାର ଦାବୀ ବିରୁଦ୍ଧରେ ମଧ୍ୟ ଇଉରୋପର ରାଜାମାନେ ବିଦ୍ରୋହ କରିଥିଲେ ଏବଂ ତୃତୀୟରେ ଚର୍ଚ୍ଚ ଭିତରେ ପ୍ରବେଶ କରି ତାର ସଂସ୍କାର କରିବାର ଉଦ୍ୟମ ହୋଇଥିଲା । ରାଜାମାନଙ୍କୁ ଆୟତ୍ତ କରିବା ପାଇଁ ଏବଂ ସେମାନଙ୍କର କ୍ଷମତା ସଙ୍କୁଚିତ କରିବା ପାଇଁ ରାଜନୈତିକ ସଂଗ୍ରାମକୁ ହିଁ ବିପ୍ଳବ କୁହାହେଲା ।

ଏହିସବୁ ଆନ୍ଦୋଳନ ପଶ୍ଚାତ୍‌ରେ ଆଉ ଏକ ଜିନିଷ ଥିଲା—ତାହା ହେଉଛି ମୁଦ୍ରଣ କାର୍ଯ୍ୟ । ତୋର ମନେଥିବ, ଆରବମାନେ ଚୀନାମାନଙ୍କଠାରୁ କାଗଜ ତିଆରି ଶିଖିଥିଲେ ଏବଂ ଇଉରୋପ ଏହା ଆରବମାନଙ୍କଠାରୁ ଶିକ୍ଷା କରିଥିଲା । ତଥାପି ଦୀର୍ଘକାଳ ପରେ

କାଗଜ ଶସ୍ତା ଓ ପ୍ରଚୁର ପରିମାଣରେ ମିଳିଲା । ୧୫ଶ ଶତାବ୍ଦୀର ଶେଷ ବେଳକୁ ହଲାଣ୍ଡ, ଇଟାଲୀ, ଇଂଲଣ୍ଡ, ଫ୍ରାନ୍ସର ଇତ୍ୟାଦି ଇଉରୋପର ବିଭିନ୍ନ ସ୍ଥାନରେ ପୁସ୍ତକ ମୁଦ୍ରିତ ହେବା ଆରମ୍ଭ ହେଲା । ଥରେ ଚିନ୍ତା କରି ଦେଖ, କାଗଜ ଓ ମୁଦ୍ରଣ ସାଧାରଣ ଭାବରେ ପ୍ରଚଳିତ ହେବା ପୂର୍ବରୁ ଦୁନିଆ କିପରି ହୋଇଥିବ । ଆମେ ପୁସ୍ତକ, କାଗଜ ଓ ମୁଦ୍ରଣରେ ଆଜିକାଲି ଏପରି ଅଭ୍ୟସ୍ତ ହୋଇଗଲୁଣି ଯେ ଏଗୁଡ଼ିକ ବ୍ୟତୀତ ଏକ ଦୁନିଆ କଳ୍ପନା କରିବା ଅତ୍ୟନ୍ତ କଷ୍ଟକର ହୁଏ । ମୁଦ୍ରିତ ପୁସ୍ତକ ବ୍ୟତୀତ ଅନେକ ଲୋକଙ୍କୁ ଲେଖାପଢ଼ା ଶିଖାଇବା ମଧ୍ୟ ଅସମ୍ଭବ । ଅତି କଷ୍ଟ ସହକାରେ ହାତରେ ବହିସବୁ ନକଲ କରିବାକୁ ହେଉଥିଲା ଏବଂ ତାହା ପୁଣି ଅତି ଅଳ୍ପସଂଖ୍ୟକ ଲୋକେ ପାଇପାରୁଥିଲେ । ବିଶେଷ ଭାବରେ ମୌଖିକ ଶିକ୍ଷା ଦିଆଯାଉଥିଲା ଏବଂ ଛାତ୍ରମାନଙ୍କୁ ପ୍ରତ୍ୟେକ ଜିନିଷ ମୁଖସ୍ଥ କରିବାକୁ ପଡ଼ୁଥିଲା । ଆମେ ଏବେ ବି ପୁରୁଣାକାଳିଆ ମକ୍ତବ ଓ ପାଠଶାଳାରେ ଏହା ଦେଖିବାକୁ ପାଉ ।

କାଗଜ ଓ ମୁଦ୍ରଣ ପ୍ରଚଳନରେ ଅପୂର୍ବ ପରିବର୍ତ୍ତନ ଘଟିଲା । ସ୍କୁଲ ପୁସ୍ତକ ଓ ଅନ୍ୟାନ୍ୟ ମୁଦ୍ରିତ ପୁସ୍ତକ ସବୁ ବାହାରିଲା । ଅତଏବ ଅନେକ ଲୋକ ଲେଖାପଢ଼ା ଶିଖିଗଲେ । ଲୋକ ଯେତେ ଅଧିକ ପଢ଼େ, ସେ ସେତେ ଅଧିକ ଚିନ୍ତାକରେ (କିନ୍ତୁ ଚିନ୍ତା ଉଦ୍ରେକକାରୀ ପୁସ୍ତକ ଅଧ୍ୟୟନରେ ଏହା ହୋଇପାରେ । ଆଜିକାଲି ଯେପରି ବହୁତ ବାଜେ ପୁସ୍ତକ ଦେଖାଦେଇଛି, ସେଥିରେ ହୁଏ ନାହିଁ । ) ଲୋକ ଯେତେ ଅଧିକ ଚିନ୍ତା କରେ, ସେ ସେତେ ଅଧିକ ଭାବରେ ପ୍ରଚଳିତ ଅବସ୍ଥାକୁ ପରୀକ୍ଷା ଓ ସମାଲୋଚନା କରିବାକୁ ଆରମ୍ଭ କରେ । ଏହାଫଳରେ ଅନେକ ସମୟରେ ପ୍ରଚଳିତ ବ୍ୟବସ୍ଥାର ପରିବର୍ତ୍ତନ ଦାବି କରେ । ଅଜ୍ଞତା ସର୍ବଦା ପରିବର୍ତ୍ତନକୁ ଭୟ କରେ; ଅଜଣା ଜିନିଷକୁ ଭୟ କରେ ଏବଂ ଗତାନୁଗତିକ ପନ୍ଥା ଯେତେ ଦୁର୍ଦ୍ଦଶାପୂର୍ଣ୍ଣ ହେଉପଛକେ ତାକୁ ଧରି ଚାଲୁଥାଏ । ଅନ୍ଧ ଭାବରେ ଏହା କୌଣସି ପ୍ରକାରେ ଘୋଷାରି ହୋଇ ଚାଲିଥାଏ । କିନ୍ତୁ ସତ୍‌ଶିକ୍ଷାରେ କେତେକ ପରିମାଣରେ ଜ୍ଞାନ ବୃଦ୍ଧି ହୁଏ ଏବଂ ଚକ୍ଷୁ ଆଂଶିକ ଭାବରେ ଉନ୍ମୁକ୍ତ ହୁଏ ।

କାଗଜ ମୁଦ୍ରଣଦ୍ୱାରା ଆଖି ଖୋଲିବାରୁ ଆମେ ଯେଉଁସବୁ ବିରାଟ ଆନ୍ଦୋଳନ କଥା ବର୍ଣ୍ଣନା କରୁଥାଉଁ, ତାହା ଘଟିବାରେ ବହୁ ପରିମାଣରେ ସାହାଯ୍ୟ ପାଇଲା । ପ୍ରଥମ ମୁଦ୍ରିତ ପୁସ୍ତକ ଭିତରେ ବାଇବେଲ ଏକତମ ଏବଂ ସେତେବେଳ ପର୍ଯ୍ୟନ୍ତ ଅନେକ ଲୋକ ବାଇବେଲର ଲାଟିନ୍ ଭାଷାବର୍ଣ୍ଣିତ କାହାଣୀ ଶୁଣିଥିଲେ ମାତ୍ର; କିନ୍ତୁ ତାହା ବୁଝିପାରି ନ ଥିଲେ । ସେମାନେ ଏବେ ତାଙ୍କର ନିଜ ଭାଷାରେ ଲିଖିତ ପୁସ୍ତକ ପଢ଼ିପାରିଲେ । ଏହି ପଠନଦ୍ୱାରା ଅନେକ ସମୟରେ ସେମାନେ ସମାଲୋଚକ ହେଲେ ଓ ପାଦ୍ରୀମାନଙ୍କଠାରୁ ଏକପ୍ରକାର ସ୍ୱତନ୍ତ୍ର ମତପୋଷଣ କଲେ । ବହୁ ସଂଖ୍ୟାରେ ସ୍କୁଲ ପାଠ୍ୟ ପୁସ୍ତକ ପ୍ରକାଶିତ

ହେଲା । ଏହି ସମୟରୁ ଇଉରୋପୀୟ ଭାଷା ଦ୍ରୁତଗତିରେ ବୃଦ୍ଧି ପାଇବାରେ ଆମେ ଦେଖୁଁ । ଏ ପର୍ଯ୍ୟନ୍ତ ଲାଟିନ୍ ଭାଷା ହିଁ ସର୍ବପ୍ରଧାନ ଥିଲା ।

ଏହି କାଳର ଇଉରୋପର ଇତିହାସ ବହୁ ମହାପୁରୁଷଙ୍କ ନାମରେ ପୂର୍ଣ୍ଣ ହୋଇଛି । ପରେ ଆମେ କେତେକ ନାମ ଆଲୋଚନା କରିବା । ଯେତେବେଳେ କୌଣସି ଦେଶ ବା ମହାଦେଶ ତାର ବୃଦ୍ଧିରେ ବାଧା ଦେଇଥିବା ଆବରଣ ଭେଦ କରି ବାହାରେ, ସେତେବେଳେ ଏହା ଅନେକ ଦିଗରେ ଆଗକୁ ମାଡ଼ି ଚାଲେ । ଆମେ ଇଉରୋପରେ ଏହା ଦେଖୁ । ଏହି ସମୟରେ ଇଉରୋପରେ ଯେଉଁ ଅର୍ଥନୈତିକ ଓ ଅନ୍ୟ ମହାନ୍ ପରିବର୍ତ୍ତନମାନ ଘଟିଥିଲା, ସେଥିଯୋଗୁଁ ଇଉରୋପର ଇତିହାସ ଅତ୍ୟନ୍ତ ଆଗ୍ରହପ୍ରଦ ଓ ଶିକ୍ଷାପ୍ରଦ ଅଟେ । ଏହାକୁ ସେହି କାଳର ଭାରତ ଇତିହାସ ବା ଚୀନ୍ ଇତିହାସ ସହିତ ତୁଳନା କର । ମୁଁ ତୋତେ ଆଗରୁ କହିଛି, ସେତେବେଳେ ଏହି ଦୁଇଟି ରାଜ୍ୟ ଅନେକ ଭାବରେ ଇଉରୋପ ଠାରୁ ଆଗୁଆ ଥିଲେ । ଅଥଚ ସେହି କାଳର ଇଉରୋପୀୟ ଇତିହାସର ଜୀବନ୍ତାତ୍ମକ ପ୍ରକୃତି ସହିତ ତୁଳନା କଲେ ଏହି ଦୁଇ ଦେଶର ଇତିହାସରେ ନିର୍ଜ୍ଜୀବତା ଦେଖାଯାଏ । ଭାରତ ଓ ଚୀନ୍‌ରେ ଥିଲେ ମହାନ ଶାସକ, ମହାପୁରୁଷ ଓ ଥିଲା ଉଚ୍ଚ ଦରର ସଂସ୍କୃତି; କିନ୍ତୁ ବିଶେଷ ଭାବରେ ଭାରତର ଜନସାଧାରଣ ଅତ୍ୟନ୍ତ ଜୀବହୀନ ଓ ନିର୍ଜ୍ଜୀବପର ବୋଧ ହୁଅନ୍ତି । ସେମାନେ ବିନା ଆପତ୍ତିରେ ଶାସକମାନଙ୍କର ପରିବର୍ତ୍ତନ ସହ୍ୟ କରି ଯାଆନ୍ତି । ସେମାନେ ଭାଙ୍ଗି ପଡ଼ିଥିଲା ପରି ବୋଧହୁଏ ଏବଂ ବଶ୍ୟତା ସ୍ୱୀକାର କରିବାରେ ଏପରି ଅଭ୍ୟସ୍ତ ଯେ କର୍ତ୍ତୃତ୍ୱର ପ୍ରତିରୋଧ କରିବାର ଆଦୌ ଦେଖାଯାଏ ନାହିଁ । ସୁତରାଂ ଏହି ଦୁଇ ରାଜ୍ୟର ଇତିହାସ ବେଳେବେଳେ ଆଗ୍ରହପ୍ରଦ ହୋଇଥିଲେ ସୁଦ୍ଧା ଜନ ଆନ୍ଦୋଳନ ଅପେକ୍ଷା ଏହା ଅଧିକ ଭାବରେ ଘଟଣା ଓ ଶାସକମାନଙ୍କର ବିବରଣୀ ମାତ୍ର । ଚୀନ ସମ୍ବନ୍ଧରେ ଏହା କେତେଦୂର ସତ୍ୟ ସେ ବିଷୟରେ ମୁଁ ନିଶ୍ଚିତ ନୁହେଁ, କିନ୍ତୁ ଭାରତରେ ନିଶ୍ଚିତରୂପେ କେତେ ଶହ ବର୍ଷ ହେଲା ଏପରି ଅବସ୍ଥା ଘଟି ଆସିଛି । ଏହି କାଳ ଭିତରେ ଭାରତୀୟ ଲୋକଙ୍କର ଦୁର୍ଭାଗ୍ୟଜନକ ଅବସ୍ଥା ଯୋଗୁଁ ହିଁ ସମସ୍ତ ଦୁର୍ଦ୍ଦଶା ଭାରତରେ ପଶିଅଛି ।

ଭାରତରେ ଆଉ ଏକ ପ୍ରବୃତ୍ତିକୁ ଲକ୍ଷ୍ୟ କରିବାର କଥା— ଏହା ହେଉଛି ଆଗକୁ ନୁହେଁ, ପଛକୁ ଦୃଷ୍ଟିନିକ୍ଷେପ କରିବା । ଆମେ ଥରେ ଯେଉଁ ଉଚ୍ଚ ସ୍ଥାନ ଅଧିକାର କରିଥିଲେଉଁ ସେଥିର ଗୌରବଗାନ କରୁଥାଉଁ ଓ ଆମକୁ ଯେ ଉଚ୍ଚକୁ ଯିବାକୁ ହେବ, ସେ କଥା ଭାବୁ ନାହୁଁ । ତେଣୁ ଆମ ଲୋକେ ଆଗକୁ ଗତିକରିବା ପରିବର୍ତ୍ତେ ଅତୀତ କଥା ଭାବି ଦୀର୍ଘନିଶ୍ୱାସ ପକାନ୍ତି, ଯେ କେହି ତାଙ୍କ ଉପରେ ଶାସନ କଲେ ତାର ହୁକୁମ୍ ମାନି ଚଳନ୍ତି । ସାମ୍ରାଜ୍ୟଗୁଡ଼ିକ ନିଜ ଶକ୍ତିବଳରେ ଯେତେ ନୁହେଁ, ଯେଉଁ ଲୋକମାନଙ୍କ ଉପରେ ସେଗୁଡ଼ିକ ପ୍ରାଧାନ୍ୟ କରେ ସେମାନଙ୍କର ଦାସତ୍ୱ ସ୍ୱୀକାର ଉପରେ ହିଁ ନିର୍ଭର କରି ରହିଥାଏ ।

# ୮୩ : ପୁନର୍ଜାଗରଣ

ଅଗଷ୍ଟ ୫, ୧୯୩୨

ସମସ୍ତ ଇଉରୋପରେ ଯେଉଁ ଗୋଳମାଳ ଓ ଦୁର୍ଦ୍ଦଶା ବ୍ୟାପୀ ରହିଥିଲା, ସେଥିଭିତରୁ ପୁନର୍ଜାଗରଣରୂପୀ ସୁନ୍ଦର ପୁଷ୍ପ ବାହାରିଲା । ଏହା ପ୍ରଥମେ ଇଟାଲୀର ମୃତ୍ତିକାରେ ଦେଖା-ଦେଲା, କିନ୍ତୁ ଏହା ବୃଦ୍ଧି ଓ ପୁଷ୍ଟି ପାଇଁ ଶତାବ୍ଦୀ ପୂର୍ବର ପୁରାତନ ଗ୍ରୀସ ପ୍ରତି ଅନାଇଁ ରହିଲା । ଗ୍ରୀସରୁ ଏହା ସୌନ୍ଦର୍ଯ୍ୟପ୍ରୀତି ଗ୍ରହଣ କଲା ଏବଂ ଶାସ୍ତ୍ରୀକ ସୌନ୍ଦର୍ଯ୍ୟ ସହିତ ଆଉ ଏକ ଜିନିଷ ଯୋଗ କଲା; ଯାହାର ସ୍ଥିତି ଅନ୍ତର ଗଭୀର, ଏହା ମନ ଭିତରୁ ଜାତ । ସହରମାନଙ୍କରୁ ଏହାର ସୃଷ୍ଟି ଏବଂ ଉତ୍ତର ଇଟାଲୀର ସହରଗୁଡ଼ିକରେ ଏହା ବୃଦ୍ଧି ପାଇଲା । ବିଶେଷତଃ, ପ୍ରଥମ ପୁନର୍ଜାଗରଣର ଗୃହ ଥିଲା ଫ୍ଲୋରେନ୍ସ ।

ଆଗରୁ ୧୩ଶ ଓ ୧୪ଶ ଶତାବ୍ଦୀରେ ଇଟାଲୀ ଭାଷାର ଦୁଇ ଜଣ ମହାନ କବି - ଦାନ୍ତେ ଓ ପେଟ୍ରାର୍କ ଫ୍ଲୋରେନ୍ସରେ ଜାତ ହୋଇଥିଲେ । ମଧ୍ୟଯୁଗରେ ଦୀର୍ଘକାଳ ପର୍ଯ୍ୟନ୍ତ ଏହା ଇଉରୋପର ଆର୍ଥିକ ରାଜଧାନୀ ଥିଲା । ଏଠାରେ ବଡ଼ ବଡ଼ ମହାଜନ ମିଳିତ ହେଉଥିଲେ । ଏହା ଧନୀମାନଙ୍କର କ୍ଷୁଦ୍ର ପ୍ରଜାତନ୍ତ୍ର ଥିଲା । ଏ ଲୋକେ ଅତ୍ୟନ୍ତ ପ୍ରଶଂସାଯୋଗ୍ୟ ନୁହନ୍ତି, ଅନେକ ସମୟରେ ସେମାନେ ନିଜର ମହାପୁରୁଷମାନଙ୍କ ପ୍ରତି ଖରାପ ବ୍ୟବହାର କରୁ-ଥିଲେ । ଏହାକୁ "ଚଞ୍ଚଳା ଫ୍ଲୋରେନ୍ସ" ବୋଲି କୁହାଯାଏ । କିନ୍ତୁ ମହାଜନ ସ୍ୱେଚ୍ଛାଚାରୀ ଓ ଅତ୍ୟାଚାରୀ ହେବା ସତ୍ତ୍ୱେ ୧୫ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲିଓନାର୍ଡୋ ଡା-ଭିନ୍ସି, ମାଇକେଲ ଏଞ୍ଜିଲୋ ଏବଂ ରଫାୟେଲ ନାମକ ତିନିଜଣ ଅଲୌକିକ ବ୍ୟକ୍ତି ଏଠାରେ ଜାତ ହୋଇଥିଲେ । ତିନିଜଣଯାକ ଖୁବ୍ ପ୍ରସିଦ୍ଧ ଶିଳ୍ପୀ ଓ ଚିତ୍ରକର ଥିଲେ,; ଲିଓନାର୍ଡୋ ଓ ମାଇକେଲ ଏଞ୍ଜିଲୋ ଅନ୍ୟ ଦିଗରେ ମଧ୍ୟ ମହାନ ଥିଲେ । ମାଇକେଲ ଏଞ୍ଜିଲୋ ଜଣେ ଅଦ୍ଭୁତ ପ୍ରତିଭା ନିର୍ମାତା ଥିଲେ । ସେ କଠିନ ମଖମଲ ପଥରରେ ବିରାଟ ମୂର୍ତ୍ତିସବୁ ଗଢୁ-ଥିଲେ ସେ ଜଣେ ମହାନ କାରିଗର ଥିଲେ ଏବଂ ରୋମର ବିରାଟ ସେଣ୍ଟପିଟର ଗିର୍ଜା ବିଶେଷ ଭାବରେ ତାଙ୍କଦ୍ୱାରା ତିଆରି ହୋଇଥିଲା । ସେ ଅନେକ କାଳ—ପ୍ରାୟ ୯୦ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲେ ଏବଂ ପ୍ରାୟ ମୃତ୍ୟୁଦିନ ପର୍ଯ୍ୟନ୍ତ ସେଣ୍ଟପିଟରରେ କାମ କରୁଥିଲେ । ସେ ଜଣେ ଅସୁଖୀ ଲୋକ ଥିଲେ । ସର୍ବଦା ଜିନିଷର ଆବରଣ ପଶ୍ଚାତରେ କିଛି ଖୋଜି ବୁଲୁଥିଲେ, ସର୍ବଦା ଚିନ୍ତା କରୁଥିଲେ ଓ ସର୍ବଦା ଅଦ୍ଭୁତ କାର୍ଯ୍ୟର ଉଦ୍ୟମ କରୁଥିଲେ । ସେ ଥରେ କହିଥିଲେ, "ଲୋକ ନିଜ ମସ୍ତିଷ୍କ ଦ୍ୱାରା ଆଙ୍କେ, ହାତଦ୍ୱାରା ନୁହେଁ ।"

ତିନି ଜଣଙ୍କ ଭିତରେ ଲିଓନାର୍ଡୋ ବୟସରେ ବଡ଼ ଥିଲେ ଏବଂ ଅନେକ ଦିଗରେ ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଲୋକ ଥିଲେ । ବାସ୍ତବିକ ତାଙ୍କ ଯୁଗରେ ସେ ଜଣେ ଅତି ଅଲୌକିକ

ଦୀଉଥିଲେ ଏବଂ ମନେ ରଖିଥା ଯେ ଏହି ଯୁଗରେ ଅନେକ ମହାପୁରୁଷ ଜାତ ହୋଇଥିଲେ ସେ ଜଣେ ଅତି ପ୍ରସିଦ୍ଧ ଚିତ୍ରକର ଓ ପ୍ରତିମା ନିର୍ମାତା ଏବଂ ଆହୁରି ମଧ୍ୟ ପ୍ରସିଦ୍ଧ ସ୍ଥପତି ଓ ବୈଜ୍ଞାନିକ ଥିଲେ । ସେ ସର୍ବଦା ପ୍ରୟୋଗ କରି, ଚିନ୍ତା କରି ଜିନିଷଗୁଡ଼ିକର କାରଣ ବାହାର କରିବାର ଚେଷ୍ଟା କରୁଥିଲେ । ଆଧୁନିକ ବିଜ୍ଞାନର ମୂଳଭିତ୍ତି ସ୍ଥାପନ କରିଥିବା ଶ୍ରେଷ୍ଠ ବୈଜ୍ଞାନିକମାନଙ୍କ ଭିତରେ ସେ ହେଉଛନ୍ତି ପ୍ରଥମ । ସେ କହୁଥିଲେ, "ଦୟାଳୁ ପ୍ରକୃତି ଏପରି ବ୍ୟବସ୍ଥା କରିଛି ଯେ, ତମେ ପୃଥିବୀରେ ପ୍ରତ୍ୟେକ ସ୍ଥାନରେ କିଛି ନା କିଛି ଶିକ୍ଷା କରିବାକୁ ପାଇପାରିବ !" ସେ ଆପେ ଆପେ ଶିକ୍ଷା ପାଇଥିଲେ ଏବଂ ୩୦ ବର୍ଷ ବୟସରେ ନିଜେ ଲାଟିନ ଓ ଗଣିତ ଶିକ୍ଷା ଦେବାକୁ ଆରମ୍ଭ କଲେ । ସେ ଜଣେ ବଡ଼ ଇଞ୍ଜିନିୟରର ମଧ୍ୟ ହୋଇଥିଲେ ଏବଂ ଶରୀର ମଧ୍ୟରେ ରକ୍ତ ଯେ ପ୍ରବାହିତ ହୁଏ ତାହା ସେ ପ୍ରଥମେ ଆବିଷ୍କାର କରିଥିଲେ । ଶରୀରର ଗଠନରେ ସେ ମୁଗ୍ଧ ହୋଇ ଯାଇଥିଲେ । ସେ କହୁଥିଲେ, "କୁଅଭ୍ୟାସ ଓ ସ୍ୱଳ୍ପ ବୁଦ୍ଧିର ଥିବା ସ୍ଥୂଳକାୟ ପୁରୁଷମାନେ ମନୁଷ୍ୟ ଶରୀର ପରି ଏଡ଼େ ସୁନ୍ଦର ଯନ୍ତ୍ର, ଏପରି ଜଟିଳ ଶରୀର, ବିଶିଷ୍ଟ ବସ୍ତୁ ପାଇବାର ଯୋଗ୍ୟ ନୁହନ୍ତି । ସେମାନଙ୍କର ଖାଦ୍ୟ ଗ୍ରହଣ ଓ ପୁନର୍ବାର ତାହା ବାହାର କରିବା ନିମନ୍ତେ କେବଳ ଗୋଟିଏ ଥଳି ରହିବା ଉଚିତ; କାରଣ ଏଗୁଡ଼ିକ ଖାଦ୍ୟବାହୀ ନଳି ଛଡ଼ା ଆଉ କିଛି ନୁହେଁ ।" ସେ ନିଜେ ମାଂସାହାରୀ ନ ଥିଲେ ଏବଂ ପଶୁମାନଙ୍କୁ ବହୁତ ଆଦର କରୁଥିଲେ । ବଜାରରୁ ପିଞ୍ଜରାରେ ଥିବା ଚଢ଼େଇ କିଣି ତତ୍‌କ୍ଷଣାତ୍ ସେଗୁଡ଼ିକୁ ମୁକ୍ତ କରିଦେବା ତାଙ୍କର ଏକ ଅଭ୍ୟାସ ଥିଲା ।

ଲିଓନାର୍ଡ଼ୋଙ୍କ ସମସ୍ତ ପ୍ରଚେଷ୍ଟା ଭିତରେ ପବନରେ ଉଡ଼ିବା ଚେଷ୍ଟା ହିଁ ସର୍ବାପେକ୍ଷା ଆଶ୍ଚର୍ଯ୍ୟଜନକ । ସେ କୃତକାର୍ଯ୍ୟ ହୋଇ ନ ଥିଲେ, କିନ୍ତୁ ସଫଳତା ଦିଗରେ ଖୁବ୍ ଆଗେଇ ଥିଲେ । ତାଙ୍କର ତଥ୍ୟ ଓ ପ୍ରୟୋଗକୁ ଅନୁସରଣ କରିବାକୁ କେହି ନ ଥିଲେ । ସମ୍ଭବତଃ ତାଙ୍କୁ ଅନୁସରଣ କରିବା ପାଇଁ ଯଦି ଆଉ କେତେ ଜଣ ଲିଓନାର୍ଡ଼ୋ ଆଆନ୍ତେ, ତେବେ ଆଧୁନିକ ଉଡ଼ାଜାହାଜ ୨୦୦ ବା ୩୦୦ ବର୍ଷ ପୂର୍ବରୁ ଆବିଷ୍କୃତ ହୋଇପାରି ଥାଆନ୍ତା । ଏହି ବିଚିତ୍ର ଓ ଅଦ୍ଭୁତ ବ୍ୟକ୍ତି ୧୪୫୨ରୁ ୧୫୧୯ ପର୍ଯ୍ୟନ୍ତ ବଞ୍ଚିଥିଲେ । କଥିତ ଅଛି ଯେ, ତାଙ୍କର ଜୀବନ "ପ୍ରକୃତି ସହିତ ବାକ୍ୟାଳାପ ମାତ୍ର ଥିଲା ।" ସେ ସର୍ବଦା ପ୍ରଶ୍ନ ପଚାରୁଥିଲେ ଏବଂ ପ୍ରୟୋଗଦ୍ୱାରା ସେସବୁର ଜବାବ ପାଇବା ପାଇଁ ଚେଷ୍ଟା କରୁଥିଲେ । ସେ ସର୍ବଦା ଆଗକୁ ଚାଲି, ଭବିଷ୍ୟତ ଧରିବା ନିମନ୍ତେ ଚେଷ୍ଟା କରୁଥିଲା ପରି ଜଣାପଡ଼େ ।

ଫ୍ଲରେନ୍‌ସର ଏହି ତିନିଜଣ, ବିଶେଷତଃ ଲିଓନାର୍ଡ଼ୋ ମୋର ପ୍ରିୟ ଥିବାରୁ ମୁଁ ସେମାନଙ୍କ ସମ୍ବନ୍ଧରେ ଲେଖିଛି । ଫ୍ଲରେନ୍‌ସ ପ୍ରଜାତନ୍ତ୍ରର ଇତିହାସ ଆଦୌ ଆମୋଦଜନକ ବା ମନମୁଗ୍ଧକର ନୁହେଁ । ଏଥିରେ ଚକ୍ରାନ୍ତକାରୀ, ସ୍ୱେଚ୍ଛାଚାରୀ ଓ ଆତ୍ମାଭିମାନୀ ଶାସକମାନେ ରହିଥିଲେ । ଫ୍ଲରେନ୍‌ସରେ ଯେଉଁସବୁ ମହାପୁରୁଷ ଜାତ ହୋଇଥିଲେ

ସେଥିପାଇଁ ଆମେ ଫ୍ଲୋରେନ୍ସକୁ କ୍ଷମା ଦେଇପାରୁ—ଏପରିକି ତାର ଋଣଦାତାମାନଙ୍କୁ ବି କ୍ଷମା ଦିଆଯାଇ ପାରେ । ତାର ମହାପୁରୁଷମାନଙ୍କ ଗ୍ରନ୍ଥ ସେଠାରେ ଆଜି ପର୍ଯ୍ୟନ୍ତ ରହିଛି ଏବଂ ଏହି ସୁନ୍ଦର ନଗରର ଗଳିଗୁଡ଼ିକ ଅତିକ୍ରମ କରିଗଲେ ଅଥବା ମଧ୍ୟଯୁଗୀୟ ପୋଲଗୁଡ଼ିକ ତଳେ ପ୍ରବାହିତ ସୁନ୍ଦର ଆର୍ଣ୍ଣୋ ନଦୀ ପ୍ରତି ଦୃଷ୍ଟିପାତ କଲେ ଏକପ୍ରକାର ସୌନ୍ଦର୍ଯ୍ୟର ଆକର୍ଷଣ ଅନୁଭୂତ ହୁଏ ଏବଂ ଅତୀତ ଅତି ସ୍ପଷ୍ଟ ଓ ଜୀବନ୍ତ ହୋଇଉଠେ । ଦାନ୍ତେ ଯାଇଛନ୍ତି ଏବଂ ସେ ଭଲ ପାଉଥିବା ତାଙ୍କର ପ୍ରିୟା ମହିଳା ବେଟ୍ରିସ ବି ଚାଲି-ଯାଇଛନ୍ତି । ତାଙ୍କ ପଶ୍ଚାତରେ ତାଙ୍କର କ୍ଷୀଣ ସୁଗନ୍ଧ ମାତ୍ର ରହିଯାଇଛି । ଯେପରି ମନେ-ହୁଏ, ଲିଓନାର୍ଡ଼ୋ ଏହି ସଙ୍କୀର୍ଣ୍ଣ ଗଳି ମଧ୍ୟରେ ଜୀବନ ଓ ପ୍ରକୃତିର ରହସ୍ୟ ବିଷୟରେ ଚିନ୍ତା କରି ଚିନ୍ତାମଗ୍ନ ହୋଇ ବୁଲୁଛନ୍ତି ।

ତେଣୁ ୧୫ଶ ଶତାବ୍ଦୀଠାରୁ ଇଟାଲୀରେ ପୁନର୍ଜାଗରଣ ବୃଦ୍ଧି ପାଇଲା ଏବଂ କ୍ରମେ ଏହା ଅନ୍ୟ ପାଶ୍ଚାତ୍ୟ ଦେଶମାନଙ୍କରେ ବ୍ୟାପିଲା । ମହାନ୍ ଶିଳ୍ପୀସବୁ ପଥର ଓ କାନ୍ଭାସ୍‌ରେ ଜୀବନ ଦାନ କରିବାକୁ ଚେଷ୍ଟା କଲେ ଏବଂ ଇଉରୋପର ଯାଦୁଘର ଓ ଚିତ୍ରାଗାର-ମାନଙ୍କରେ ସେମାନଙ୍କର ଅଙ୍କିତ ଚିତ୍ର ଓ ମୂର୍ତ୍ତିସବୁ ପୂର୍ଣ୍ଣ ହୋଇଛି । ଇଟାଲୀରେ ୧୭ଶ ଶତାବ୍ଦୀର ଶେଷ ବେଳକୁ କଳାଗତ ପୁନର୍ଜାଗରଣର ପତନ ହେଲା । ୧୭ଶ ଶତାବ୍ଦୀରେ ହଲାଣ୍ଡରେ ଶ୍ରେଷ୍ଠ ଚିତ୍ରକରମାନେ ଜାତ ହେଲେ । ରେମ୍‌ବ୍ରାଣ୍ଡ୍‌ଟ ସେମାନଙ୍କ ଭିତରେ ଜଣେ ଅତି ପ୍ରସିଦ୍ଧ ବ୍ୟକ୍ତି ଏବଂ ସେହି ସମୟ ବେଳକୁ ସ୍ପେନରେ ଭେଲାସ୍‌କ୍ୱେଜ୍ ଥିଲେ । କିନ୍ତୁ ମୁଁ ଅଧିକ ନାମ ଏଠାରେ ଉଲ୍ଲେଖ କରିବି ନାହିଁ । ସେମାନଙ୍କର ସଂଖ୍ୟା ବହୁତ । ତୋର ଯଦି ପ୍ରସିଦ୍ଧ ଚିତ୍ରକରମାନଙ୍କ ବିଷୟରେ ଜାଣିବାକୁ ଆଗ୍ରହ ଥାଏ, ତେବେ ତୁ ଏହି ଚିତ୍ରାଗାରମାନଙ୍କୁ ଯାଇ ସେମାନଙ୍କର କାର୍ଯ୍ୟ ଦେଖିପାରୁ । ସେମାନଙ୍କ ନାମରେ ବିଶେଷ କିଛି ଯାଏ ଆସେ ନାହିଁ; ସେମାନଙ୍କର କଳା ଓ ସୌନ୍ଦର୍ଯ୍ୟ ହିଁ ଆମ୍ଭମାନଙ୍କୁ ଏକ ସନ୍ଦେଶ ଦାନ କରେ ।

୧୫ଶ ଠାରୁ ୧୭ଶ ଶତାବ୍ଦୀ- ଏହି କାଳ ଭିତରେ ବିଜ୍ଞାନ କ୍ରମେ ଅଗ୍ରସର ହେଲା ଏବଂ ବର୍ତ୍ତମାନର ରୂପ ଧାରଣ କଲା । ଏହାକୁ ଚର୍ଚ୍ଚ ସହିତ କଠିନ ସଂଗ୍ରାମ କରିବାକୁ ପଡ଼ିଥିଲା । କାରଣ ଚର୍ଚ୍ଚ ଲୋକମାନଙ୍କୁ ଚିନ୍ତା ଓ ପ୍ରୟୋଗ କରିବାକୁ ଦେବାରେ ବିଶ୍ୱାସ କରୁ ନ ଥିଲା । ତା ପକ୍ଷରେ ପୃଥିବୀ ବିଶ୍ୱବ୍ରହ୍ମାଣ୍ଡର, କେନ୍ଦ୍ର, ସୂର୍ଯ୍ୟ ତାହାର ଚତୁର୍ଦ୍ଦିଗରେ ଭ୍ରମଣ କରୁଛି ଏବଂ ନକ୍ଷତ୍ରସବୁ ସ୍ୱର୍ଗର ନିର୍ଦ୍ଦିଷ୍ଟ ସ୍ଥାନରେ ରହିଛନ୍ତି । ଯେଉଁ ଲୋକ ଅନ୍ୟ-ମତ ପୋଷଣ କରୁଥିଲା, ସେ ବିଧର୍ମୀ ଏବଂ ଇନ୍‌କ୍ୱିଜିସନ୍‌ରେ ତାକୁ ଶାସ୍ତି ଦିଆଯାଉଥିଲା । ଏସବୁ ସତ୍ତ୍ୱେ କୋପେରନିକସ ନାମକ ଜଣେ ପୋଲାଣ୍ଡବାସୀ ଏହି ବିଶ୍ୱାସର ବିରୁଦ୍ଧ ମତ ପ୍ରକାଶ କଲେ ଏବଂ ପ୍ରମାଣ କଲେ ଯେ, ପୃଥିବୀ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବୁଲୁଛି । ଏହି-ରୂପେ ବ୍ରହ୍ମାଣ୍ଡର ଆଧୁନିକ ଧାରଣାର ଭିତ୍ତି ସେ ପକାଇଥିଲେ । ସେ ୧୪୭୩ରୁ ୧୫୪୩

ପର୍ଯ୍ୟନ୍ତ ବଞ୍ଚିଥିଲେ । ଯାହାହେଉ, ତାଙ୍କର ବିପ୍ଳବୀ ଓ ବିଧର୍ମୀ ମତ ସକାଶେ ଚର୍ଚ୍ଚର କୋପ ଦୃଷ୍ଟିରୁ ସେ କୌଣସି ପ୍ରକାର ରକ୍ଷା ପାଇଯାଇଥିଲେ । ତାଙ୍କ ପରେ ଯେଉଁମାନେ ଆସିଲେ, ସେମାନେ ଏପରି ଭାଗ୍ୟବାନ ନ ଥିଲେ । ଜିଓର୍ଡାନୋ ବ୍ରୁନୋ ନାମକ ଜଣେ ଇଟାଲୀୟ ପୃଥିବୀ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବୁଲୁଛି ଏବଂ ନକ୍ଷତ୍ରଗୁଡ଼ିକ ଗୋଟିଏ ଗୋଟିଏ ସୂର୍ଯ୍ୟ ବୋଲି ମତ ପ୍ରକାଶ କରିଥିବାରୁ ୧୬୦୦ ଖ୍ରୀଷ୍ଟାବ୍ଦରେ ଚର୍ଚ୍ଚଦ୍ୱାରା ରୋମରେ ତାଙ୍କୁ ପୋଡ଼ି ଦିଆଯାଇଥିଲା । ତାଙ୍କର ସମସାମୟିକ ଗାଲିଲିଓ ଦୂରବୀକ୍ଷଣ ଯନ୍ତ୍ର ବାହାର କରିଥିଲେ । ତାଙ୍କୁ ବି ଚର୍ଚ୍ଚ ଧମକ ଦେଉଥିଲା; ମାତ୍ର ସେ ବ୍ରୁନୋଙ୍କ ଅପେକ୍ଷା ଦୁର୍ବଳ ଥିଲେ ଏବଂ ତାଙ୍କର ମତ ପ୍ରତ୍ୟାହାର କରି ନେବା ଅଧିକ ସୁବିଧାଜନକ ବୋଲି ମନେ କରିଥିଲେ । ସେ ଚର୍ଚ୍ଚ ଆଗରେ ସ୍ୱୀକାର କଲେ ଯେ, ତାଙ୍କର ନିର୍ବୋଧତା ହେତୁ ସେ ଭୁଲ କରିଥିଲେ ଏବଂ ପୃଥିବୀ ହିଁ ନିଶ୍ଚଳ ବ୍ରହ୍ମାଣ୍ଡର କେନ୍ଦ୍ର ଓ ସୂର୍ଯ୍ୟ ତା ଚତୁର୍ଦ୍ଦିଗରେ ବୁଲୁଛି । ଏହା କରି ସୁଦ୍ଧା ପ୍ରାୟଶ୍ଚିତ୍ତ କରିବା ନିମନ୍ତେ ତାଙ୍କୁ କେତେ କାଳ ବନ୍ଦୀଶାଳାରେ କଟାଇବାକୁ ପଡ଼ିଥିଲା ।

୧୭ଶ ଶତାବ୍ଦୀରେ ପ୍ରସିଦ୍ଧ ବୈଜ୍ଞାନିକମାନଙ୍କ ଭିତରେ ହାର୍ଭେ ଅନ୍ୟତମ । ସେ ଶରୀରରେ ରକ୍ତ ପ୍ରବାହିତ ହେବା କଥା ପ୍ରମାଣ କରାଇ ଦେଇଥିଲେ । ୧୭ଶ ଶତାବ୍ଦୀରେ ବିଜ୍ଞାନ କ୍ଷେତ୍ରରେ ଆଉ ଜଣେ ପ୍ରସିଦ୍ଧ ବ୍ୟକ୍ତି ଦେଖାଦେଲେ—ତାଙ୍କ ନାମ ହେଉଛି ଆଇଜାକ୍ ନିଉଟନ୍ । ସେ ଜଣେ ବିଖ୍ୟାତ ଗଣିତଜ୍ଞ ଥିଲେ । ସେ ଯାହାକୁ ମାଧ୍ୟାକର୍ଷଣ ଶକ୍ତି (ତଳେ କପରି ଜିନିଷ ପଡ଼େ) କହନ୍ତି, ତାହା ଆବିଷ୍କାର କରିଥିଲେ ଏବଂ ଏହିରୂପେ ପ୍ରକୃତିର ଆଉ ଏକ ଗୋପନୀୟ ଜିନିଷ ବାହାର କରିଥିଲେ ।

ବିଜ୍ଞାନ ସମ୍ବନ୍ଧରେ ଏତିକି । ଏହି କାଳରେ ସାହିତ୍ୟ ବି ବୃଦ୍ଧି ହେବାକୁ ଲାଗିଲା । ଯେଉଁ ନୂତନ ଭାବ ଚାରିଆଡ଼େ ବ୍ୟାପିଲା, ତାହା ପ୍ରଖର ଭାବରେ ନୂତନ ଇଉରୋପୀୟ ଭାଷାଗୁଡ଼ିକୁ ସ୍ପର୍ଶ କଲା । ଏହି ଭାଷାଗୁଡ଼ିକ କେତେକ କାଳ ନିମନ୍ତେ ରହିଥିଲା ଏବଂ ଆମେ ଦେଖିଛେ ଇଟାଲୀରେ ପ୍ରସିଦ୍ଧ କବିମାନେ ଜାତ ହୋଇଥିଲେ । ଇଂଲଣ୍ଡରେ ଥିଲେ ଚସର; କିନ୍ତୁ ଲାଟିନ୍ ସମଗ୍ର ଇଉରୋପର ଶିକ୍ଷିତ ଲୋକଙ୍କର ଓ ଚର୍ଚ୍ଚର କଥିତ ଏବଂ ଲିଖିତ ଭାଷା ହୋଇଥିବାରୁ ଅନ୍ୟ ସବୁ ଭାଷାକୁ ଏହା ଘୋଡ଼ାଇ ପକାଇଥିଲା । ଅପଭ୍ରଷ୍ଟ ଭାଷାସବୁ ଥିଲା— ଯାହାକୁ 'ଭର୍ଣ୍ଣାକୁଲର' କହନ୍ତି; ଅତି ବିଚିତ୍ର କଥା ଯେ, ଅନେକ ଲୋକ ଭାରତୀୟ ଭାଷାକୁ ଏହି ନାମରେ ଡାକନ୍ତି । ଏଥିରେ ଲେଖିବା ଏକ ପ୍ରକାର ଅମର୍ଯ୍ୟାଦାକର ଥିଲା । କିନ୍ତୁ ନୂତନ ଭାବ, କାଗଜ ଓ ମୁଦ୍ରଣ ଏହିସବୁ ଭାଷାଗୁଡ଼ିକୁ ପ୍ରୋତ୍ସାହିତ କରାଇଲା । ଇଟାଲୀବାସୀ ଏହି କ୍ଷେତ୍ରରେ ପ୍ରଥମ ଥିଲେ, ତାପରେ ଆସିଲେ ଇଂରେଜ, ଫରାସୀ ଏବଂ ସ୍ପେନବାସୀ ଏବଂ ଶେଷରେ ଜର୍ମାନମାନେ; ୧୬ଶ ଶତାବ୍ଦୀରେ ଫ୍ରାନ୍ସର କେତେକ ଉଦୀୟମାନ ଲେଖକ ଲାଟିନରେ ନ ଲେଖି ନିଜ ଭାଷାରେ ଲେଖିବା ପାଇଁ ପ୍ରତିଜ୍ଞାବଦ୍ଧ

ହେଲେ ଏବଂ ନିଜର "ଅପଭ୍ରଷ୍ଟ ଭାଷା" ସାହିତ୍ୟର ସର୍ବୋତ୍କୃଷ୍ଟ ଉପଯୋଗୀ ମାଧ୍ୟମ ହେବା ପର୍ଯ୍ୟନ୍ତ ତାର ଉନ୍ନତି କରିବାକୁ ସ୍ଥିର କଲେ ।

ତେଣୁ ଇଉରୋପର ଭାଷାସବୁ ଉନ୍ନତି ଲାଭ କଲା । ଏହାର ପ୍ରାଚୁର୍ଯ୍ୟ ଓ ଶକ୍ତି ବୃଦ୍ଧି ହେଲା । ଶେଷରେ ପୃଥିବୀରେ ଏଗୁଡ଼ିକ ଆଜି ସୁନ୍ଦର ଭାଷାରେ ପରିଣତ ହୋଇଛି । ମୁଁ ଅନେକ ବିଖ୍ୟାତ ଲେଖକଙ୍କ ନାମ ଉଲ୍ଲେଖ କରିବି ନାହିଁ; ଅଳ୍ପ କେତେକ ନାମ ମାତ୍ର ଦେବି । ଇଂଲଣ୍ଡରେ ୧୫୬୪ରୁ ୧୬୧୬ ପର୍ଯ୍ୟନ୍ତ ଥିଲେ ବିଖ୍ୟାତ ସେକ୍ସପିଅର ଏବଂ ୧୭ଶ ଶତାବ୍ଦୀରେ ଠିକ୍ ତାଙ୍କ ପରେ ଆସିଲେ ମିଲ୍‌ଟନ୍ । "ପାରାଡ଼ାଇଜ୍ ଲଷ୍ଟ"ର ସେ ହେଉଛନ୍ତି ଅନ୍ଧ କବି । ଫ୍ରାନ୍‌ସରେ ଦାର୍ଶନିକ ଡେକାର୍ଟେ ଓ ନାଟ୍ୟକାର ମଲିୟର ଉଭୟେ ୧୭ଶ ଶତାବ୍ଦୀରେ ବାସ କରୁଥିଲେ । ପାରିସର ପ୍ରସିଦ୍ଧ ଷ୍ଟେଟ ଥିଏଟର 'କମିଡ଼ି ଫ୍ରାଙ୍କସ୍' ମାଲିୟର ସ୍ଥାପନା କରିଥିଲେ । ସ୍ପେନରେ ସର୍ଭେଣ୍ଟିଜ ସେକ୍‌ସପିଅରଙ୍କ ସମସାମୟିକ ଥିଲେ । 'ଡେ ଡନ୍ କୁଇକ୍‌ସୋଟ୍' ଲେଖିଥିଲେ ।

ଅଉ ଜଣଙ୍କ ନାମ ମୁଁ ଉଲ୍ଲେଖ କରିବି । ତାଙ୍କର ଶ୍ରେଷ୍ଠତ୍ୱ ଯୋଗୁଁ ନୁହେଁ; ମାତ୍ର ଯେହେତୁ ସେ ସୁପରିଚିତ ଥିଲେ । ତାଙ୍କ ନାମ ହେଉଛି ମେକିଆଭେଲି । ସେ ଜଣେ ଫ୍ଲରେନସବାସୀ ଥିଲେ । ୧୫ଶ ଶତାବ୍ଦୀରେ ସେ ଜଣେ ସାଧାରଣ ରାଜନୀତିଜ୍ଞ, କିନ୍ତୁ ତାଙ୍କ ଲିଖିତ "ଦି ପ୍ରିନସ" (ରାଜକୁମାର) ପୁସ୍ତକ ଖୁବ୍ ପ୍ରସିଦ୍ଧ ହୋଇଥିଲା । ସେ କାଳରେ ରାଜା ଓ ରାଜନୀତିକମାନଙ୍କର ମନର କଳ୍ପିତ ଆଭାସ ଏହି ପୁସ୍ତକରୁ ମିଳେ । ମେକିଆ-ଭେଲି କହିଛନ୍ତି ଯେ, ଶାସନ ନିମନ୍ତେ ଧର୍ମର ଆବଶ୍ୟକ—ମନେରଖ, ଲୋକଙ୍କୁ ଧାର୍ମିକ କରିବା ପାଇଁ ନୁହେଁ; ମାତ୍ର ସେମାନଙ୍କୁ ଶାସନ କରିବା ପାଇଁ ଓ ଦବାଇ ରଖିବା ପାଇଁ ଧର୍ମ ଲୋଡ଼ା । କୌଣସି ଶାସକ ଏକ ଧର୍ମକୁ ମିଥ୍ୟା ବୋଲି ବିଶ୍ୱାସ କରୁଥିଲେ ସୁଦ୍ଧା ହୁଏତ ଏହାକୁ ସମର୍ଥନ କରିବା ତାର ଏକ କର୍ତ୍ତବ୍ୟ ହୋଇପଡ଼େ । ମେକିଆଭେଲି କହନ୍ତି, "ଜଣେ ରାଜା ମଣିଷ ଓ ପଶୁ, ସିଂହ ଓ ଶିଆଳ କପରି ଭାବରେ ଏକ ସଙ୍ଗରେ ଖେଳାଇ-ବାକୁ ହେବ, ତାହା ଜାଣିବା ଉଚିତ । ଏହା କରିବା ବେଳେ ସେ କେବେହେଲେ ନିଜ କଥା ରକ୍ଷା କରିପାରେ ନାହିଁ କି କରିବା ଉଚିତ ନୁହେଁ । ସେ ଜଣକୁ ଅପର ବିରୁଦ୍ଧରେ ଲଗାଇବ...ମୁଁ ଜୋର ଦେଇ କହିପାରେ ଯେ, ସାଧୁ ହେବାକୁ ଚେଷ୍ଟା କରିବା ସର୍ବଦା ଅତ୍ୟନ୍ତ ଅସୁବିଧାଜନକ; ବରଂ ଧାର୍ମିକ ଓ ଧର୍ମବିଶ୍ୱାସୀ, ଦୟାଳୁ ଓ ଭକ୍ତ ବୋଲି ନିଜକୁ ପରିଚୟ ଦେବା ଲାଭଜନକ । ଧାର୍ମିକ ବୋଲି ଦେଖାଇ ହେବା ଅପେକ୍ଷା ଅଧିକ ଦରକାରୀ ଜିନିଷ କିଛି ନାହିଁ ।"

ଏଗୁଡ଼ିକ ଭାରି ଖରାପ ନୁହେଁ କି ? ଯେତେ ଅଧିକ ବଦମାସ ହେବ, ସେତେ ଭଲ ରାଜା ହୋଇପାରିବ ! ଇଉରୋପରେ ଯେତେବେଳେ ଯଦି ରାଜାମାନଙ୍କର ସାଧାରଣ ମନୋଭାବ ଏହିପରି ହୋଇଥାଏ, ତେବେ ବାରମ୍ବାର ସେଠାରେ ଗୋଳମାଳ ଘଟିବାରେ

ଆଶ୍ଚର୍ଯ୍ୟ କିଛି ନାହିଁ । କିନ୍ତୁ ଏତେ ପଛକୁ କାହିଁକି ଯିବା ? ଆଜି ମଧ୍ୟ ମେକିଆଭେଲିଙ୍କ ବର୍ଣ୍ଣିତ ରାଜାମାନଙ୍କ ପରି ସାମ୍ରାଜ୍ୟବାଦୀ ଶକ୍ତିମାନେ ଆଚରଣ କରନ୍ତି । ଧାର୍ମିକ ବୋଲି ପରିଚୟ ଦେବା ପଶ୍ଚାତରେ ଲୋଭ, ନୃଶଂସତା ଓ ଅନ୍ୟାୟ ପୂରି ରହିଛି । ସଭ୍ୟତାର ନରମ ଆବରଣ ତଳେ ପଶୁଙ୍କର ଲାଲ ପଞ୍ଝା ଲୁଚି ରହିଛି ।

## ୮୪ : ପ୍ରୋଟେଷ୍ଟାଣ୍ଟ ବିଦ୍ରୋହ ଓ କୃଷକମାନଙ୍କର ଲଢ଼ାଇ

ଅଗଷ୍ଟ ୮, ୧୯୩୨

୧୫ଶରୁ ୧୭ଶ ଶତାବ୍ଦୀ ପର୍ଯ୍ୟନ୍ତ ୟୁରୋପର ଅବସ୍ଥା ସମ୍ବନ୍ଧରେ କେତେକ ଚିଠି ମୁଁ ଆଗରୁ ତୋତେ ଲେଖିସାରିଛି । ମଧ୍ୟଯୁଗର ଅନ୍ତିମ, କୃଷକଙ୍କ ଭିତରେ ମହାନ ଦୁର୍ଭିକ୍ଷ, ବୁର୍ଜୋୟା ଶ୍ରେଣୀର ଆବିର୍ଭାବ, ଆମେରିକା ଓ ପୂର୍ବ ଖଣ୍ଡ ପାଇଁ ସମୁଦ୍ରପଥ ଆବିଷ୍କାର, କଳା ଓ ବିଜ୍ଞାନର ପ୍ରଗତି ଏବଂ ଇଉରୋପର ସ୍ୱାଧୀନତା ସମ୍ବନ୍ଧରେ ମୁଁ ତୋତେ କିଛି କହିଛି । କିନ୍ତୁ ଏହାର ମୂର୍ତ୍ତି ଚିତ୍ର ଦେବାକୁ ହେଲେ ଏହି କାଳ ସମ୍ବନ୍ଧରେ ମୋତେ ଅଧିକ କିଛି କହିବାକୁ ପଡ଼ିବ । ମନେରଖ ଯେ, ମୋର ଗତ ଦୁଇଟି ଚିଠି ତଥା ଜଳପଥ ସମ୍ବନ୍ଧରେ ଲିଖିତ ଗୋଟିଏ ଚିଠି ଏବଂ ବର୍ତ୍ତମାନ ଯେଉଁଟି ଲେଖୁଛି ଏବଂ ଏହା ପରେ ହୁଏତ ଯେଉଁ ଗୋଟିଏ ବା ଯୋଡ଼ିଏ ଲେଖିବି, ତାହାସବୁ ଇଉରୋପର ଏକ କାଳର ବିବରଣୀ । ମୁଁ ବିଭିନ୍ନ ଆନ୍ଦୋଳନ ଓ କାର୍ଯ୍ୟକଳାପ ବିଷୟରେ ପୃଥକ୍ ଭାବରେ ଲେଖେ; ମାତ୍ର ସେଗୁଡ଼ିକ ଉଣାଅଧିକେ ଏକ ସମୟରେ ଘଟେ ଏବଂ ପ୍ରତ୍ୟେକ ଅପର ଉପରେ ପ୍ରଭାବ ପକାଏ ।

ପୁନର୍ଜାଗରଣ କାଳ ପୂର୍ବରୁ ହିଁ ରୋମାନ୍ ଚର୍ଚ୍ଚର ଦେହ ଭିତରେ ଗୋଳଯୋଗ ଲକ୍ଷିତ ହେଉଥିଲା । ଇଉରୋପର ରାଜା ଓ ଲୋକେ ଚର୍ଚ୍ଚର ଅତ୍ୟଧିକ ଚାପ ଅନୁଭବ କରିବାକୁ ଆରମ୍ଭ କରିଥିଲେ ଏବଂ ଟିକିଏ ଆପତ୍ତି ଓ ସନ୍ଦେହ ପ୍ରକାଶ କରିବାକୁ ଲାଗିଲେ । ତୋର ମନେଥିବ, ସମ୍ରାଟ ଦ୍ୱିତୀୟ ଫ୍ରେଡ଼ରିକ ପୋପ୍‌ଙ୍କ ସହିତ ଖୁବ୍ ତର୍କ କରିଥିଲେ ଏବଂ ଜାତିଚ୍ୟୁତ ହେବାକୁ ଆଦୌ ଖାତିର କରି ନ ଥିଲେ । ଏହିସବୁ ସନ୍ଦେହ ଓ ଅବମାନନାର ସଙ୍କେତ ଦେଖି ରୋମ କ୍ରୋଧାନ୍ୱିତ ହୋଇଥିଲା ଏବଂ ନୂତନ ବିଧର୍ମୀମାନଙ୍କୁ ତଳିତଳାନ୍ତ କରିବା ନିମନ୍ତେ ଏହା ସ୍ଥିର କଲା । ଏହି ଉଦ୍ଦେଶ୍ୟରେ ଇନ୍‌କ୍ୱିଜିସନ୍ ସୃଷ୍ଟି କରାଗଲା ଏବଂ ବିଧର୍ମୀ ବୋଲି କହି କେତେକ ଅଭାଗା ଲୋକଙ୍କୁ ଏବଂ ଡାହାଣୀ ବୋଲି ଅଭିଯୋଗ କରି କେତେକ ନାରୀଙ୍କୁ ସମଗ୍ର ଇଉରୋପରେ ପୋଡ଼ି ଦିଆଯାଉଥିଲା । ପ୍ରେଗର ଜନ୍ ହସଙ୍କୁ କୌଶଳ କରି ପୋଡ଼ି ଦିଆଗଲା ଏବଂ ତେଣୁ ବୋହେମିଆରେ ହସଙ୍କ

ଅନୁଗାମୀମାନେ ବିଦ୍ରୋହବାନା ଉଠାଇଲେ । ସେମାନେ ଚର୍ଚ୍ଚ ଭିତରେ ଏହି ନୂତନ ବିଦ୍ରୋହ ଭାବକୁ ଇନ୍‌କ୍ୱିଜିସନର ସକଳ ପ୍ରକାର ଅତଙ୍କ ଦବାଇ ପାରି ନ ଥିଲା । ଏହା ଧନ୍ତ୍ରର ଲାଭ କଲା ଏବଂ ଚର୍ଚ୍ଚ ଏକ ବୃହତ୍ତ ଭୂସ୍ୱାମୀ ଥିବାରୁ ତା ବିରୁଦ୍ଧରେ କୃଷକମାନଙ୍କର ମନୋଭାବ ଏଥିସହିତ ଯୋଗ ହେଲା ସନ୍ଦେହ ନାହିଁ । ଅନେକ ସ୍ଥାନରେ ରାଜାମାନେ ନିଜର ସ୍ୱାର୍ଥ ଦୃଷ୍ଟିରୁ ଏହି ଭାବକୁ ଉତ୍ସାହିତ କରିଥିଲେ । ସେମାନେ ଚର୍ଚ୍ଚର ଅଚଳାଚଳ ସମ୍ପତ୍ତି ପ୍ରତି ଈର୍ଷାପରାୟଣ ଓ ଲୋଲୁପ ଦୃଷ୍ଟି ନିକ୍ଷେପ କରୁଥିଲେ । ଧୂମାୟିତ ଅଗ୍ନିରେ ସହି ପୁସ୍ତକ ଓ ବାଇବଲ ମୁଦ୍ରଣ ଯୋଗ ଦେଲା ।

୧୬ଶ ଶତାବ୍ଦୀର ପ୍ରଥମ ଭାଗରେ ଜର୍ମାନୀରେ ମାର୍ଟିନ୍ ଲୁଥର ବାହାରିଲେ । ରୋମ ବିରୁଦ୍ଧରେ ବିଦ୍ରୋହର ସେ ଜଣେ ପ୍ରଧାନ ନେତା ହୋଇଥିଲେ । ସେ ଜଣେ ଖ୍ରୀଷ୍ଟିୟାନ ପାଦ୍ରୀ ଥିଲେ । ସେ ରୋମ ପରିଦର୍ଶନ କଲା ପରେ ଚର୍ଚ୍ଚର ବ୍ୟଭିଚାର ଓ ବିଳାସ ଦେଖି ବିରକ୍ତ ହୋଇ ଯାଇଥିଲେ । ଏହି ବିବାଦ ବୃଦ୍ଧି ପାଇଲା ଏବଂ ଶେଷରେ ରୋମାନ ଚର୍ଚ୍ଚ ଦୁଇ ଭାଗରେ ବିଭକ୍ତ ହୋଇଗଲା ଏବଂ ପାଶ୍ଚାତ୍ୟ ଇଉରୋପ ଧର୍ମଗତ ତଥା ରାଜନୈତିକ ଏହି ଦୁଇ ଦଳରେ ବିଭକ୍ତ ହୋଇଗଲା । ରୁଷ ଓ ପୂର୍ବ ଇଉରୋପର ପୁରାତନ ରକ୍ଷଣଶୀଳ ଗ୍ରୀକ୍ ଚର୍ଚ୍ଚ ଏଥିରୁ ଅଲଗା ରହିଥିଲା । ଏମାନଙ୍କ ମତରେ ରୋମ ବି ପ୍ରକୃତ ଧର୍ମବିଶ୍ୱାସରୁ ବହୁ ଦୂରରେ ଥିଲା ।

ଏହି ରୂପେ ପ୍ରୋଟେଷ୍ଟାଣ୍ଟ ବିଦ୍ରୋହ ଆରମ୍ଭ ହେଲା । ସେମାନେ ଚର୍ଚ୍ଚର ବିଭିନ୍ନ ଧର୍ମଗତ ବିରୁଦ୍ଧରେ ପ୍ରତିବାଦ ବା 'ପ୍ରୋଟେଷ୍ଟ' କରୁଥିବାରୁ ଏହାଙ୍କୁ ପ୍ରୋଟେଷ୍ଟାଣ୍ଟ କୁହାଯାଏ । ସେହିକାଳରୁ ପଶ୍ଚିମ ଇଉରୋପ ଖ୍ରୀଷ୍ଟଧର୍ମରେ ରୋମାନ କାଥଲିକ ଓ ପ୍ରୋଟେଷ୍ଟାଣ୍ଟ ଏହି ଦୁଇଟି ମୁଖ୍ୟ ବିଭାଗ ହୋଇଯାଇଛି । କିନ୍ତୁ ପ୍ରୋଟେଷ୍ଟାଣ୍ଟଙ୍କ ଭିତରେ ଅନେକ ସଂପ୍ରଦାୟ ଅଛନ୍ତି ।

ଏହି ଚର୍ଚ୍ଚବିରୋଧୀ ଆନ୍ଦୋଳନକୁ 'ସଂସ୍କାର ଆନ୍ଦୋଳନ' ବୋଲି କୁହାଯାଏ । ମୁଖ୍ୟ ଭାବରେ ଏହା ଚର୍ଚ୍ଚର ବ୍ୟଭିଚାର ତଥା ପ୍ରଭୁତ୍ୱବ୍ୟଞ୍ଜକଭିତ୍ତି ବିରୁଦ୍ଧରେ ଏକ ଜନବିଦ୍ରୋହ ଥିଲା । ଏହା ସଙ୍ଗେ ସଙ୍ଗେ ଅନେକ ରାଜା ପୋପ ତାଙ୍କ ଉପରେ କର୍ତ୍ତୃତ୍ୱ କରିବାର ସମସ୍ତ ଚେଷ୍ଟାକୁ ଲୋପ କରିବାକୁ ଚାହୁଁଥିଲେ । ସେମାନଙ୍କର ରାଜନୈତିକ କାର୍ଯ୍ୟରେ ପୋପଙ୍କ ହସ୍ତକ୍ଷେପକୁ ସେମାନେ ଅତ୍ୟନ୍ତ ନାପସନ୍ଦ କରୁଥିଲେ । ସଂସ୍କାର ଆନ୍ଦୋଳନର ଏକ ତୃତୀୟ ପ୍ରବାହ ଥିଲା । ନିଷ୍ଠାପର ଚର୍ଚ୍ଚ ଲୋକେ ଚର୍ଚ୍ଚର ଆଭ୍ୟନ୍ତରୀଣ ଦୋଷ ଦୂର କରି ସଂସ୍କାର ଆଣିବାରେ ଚେଷ୍ଟା କରିଥିଲେ ।

ସମ୍ଭବତଃ ଚର୍ଚ୍ଚର ଫ୍ରାନ୍‌ସିସ୍କାନ ଓ ଡୋମିନିକାନ୍ ଏହି ଦୁଇ ସଂଘ କଥା ତୋର ମନେଥିବ । ୧୬ଶ ଶତାବ୍ଦୀରେ ଠିକ୍ ଯେତେବେଳେ ମାର୍ଟିନ ଲୁଥର ଶକ୍ତି ଅର୍ଜନ କରୁଥିଲେ, ସେତେବେଳେ ସ୍ପେନ୍‌ର ସ୍ପେନବାସୀ ଇଗ୍ନେଟିୟସ୍ ଏକ ନୂତନ ଚର୍ଚ୍ଚ ସଂଘ ଆରମ୍ଭ କଲେ । ସେ ଏହାକୁ "ଜେସସ୍ ସଂଘ" ନାମ ଦେଇଥିଲେ ଏବଂ ଏହାର ସଭ୍ୟମାନଙ୍କୁ

ଜେସୁଇଟ୍ ବୋଲି କୁହାଯାଉଥିଲା । ଜେସୁଇଟ୍‌ମାନେ ଚୀନ ଓ ପ୍ରାଚ୍ୟ ଦେଶରେ ଯିବା ବିଷୟ ମୁଁ ଆଗରୁ ଉଲ୍ଲେଖ କରିଛି । ଏହି "ଜେସସ୍ ସଂଘ" ଏକ ଅତି ଅପୂର୍ବ ସମିତି ଥିଲା । ସେମାନେ ଚର୍ଚ୍ଚ ଓ ପୋପଙ୍କର ସବୁ ସମୟ ସେବା ଓ ନିଯୁକ୍ତ ସହକାରେ ସେବା କରିବା ନିମନ୍ତେ ଲୋକଙ୍କୁ ଶିକ୍ଷା ଦେବା ଏହାର ଲକ୍ଷ୍ୟ ଥିଲା । ଏହା ଖୁବ୍ କଠୋର ଶିକ୍ଷା ଦେଲା ଏବଂ ଏହି ଶିକ୍ଷା ଏପରି ସଫଳ ହୋଇଥିଲା ଯେ, ଚର୍ଚ୍ଚର ଅତି ଅଲୌକିକ ରୂପେ କାର୍ଯ୍ୟଦକ୍ଷ ଓ ବିଶ୍ୱାସୀ ସେବକ ତିଆରି ହେଲେ । ସେମାନେ ଚର୍ଚ୍ଚ ଉପରେ ଏହିପରି ବିଶ୍ୱାସ ଅର୍ପଣ କଲେ ଯେ, ଅନ୍ଧ ଭାବରେ ଓ ପ୍ରଶ୍ନ ନ କରି ଏହାକୁ ମାନିଲେ ଏବଂ ନିଜର ସମସ୍ତ ଶକ୍ତି ଏଥିଲାଗି ଦାନ କଲେ । ଯେଉଁଠି ଚର୍ଚ୍ଚ ଲାଭ ପାଇବାର ଆଶା ଦେଖାଯାଏ, ସେଠାରେ ସେମାନେ ସ୍ୱେଚ୍ଛାରେ ନିଜକୁ ବଳି ଦେବା ପାଇଁ ପ୍ରସ୍ତୁତ ହୋଇଯାଆନ୍ତି । ବାସ୍ତବିକ ଚର୍ଚ୍ଚର ସେବାରେ ସେମାନେ ସଂପୂର୍ଣ୍ଣରୂପେ ବିନା ଦ୍ୱିଧାରେ ଲାଗି ପଡ଼ିଥିବା ଖାଡି ଜଣାଯାଉଛି । ଚର୍ଚ୍ଚର ମଙ୍ଗଳ ହିଁ ସବୁ କଥାକୁ ଯଥାର୍ଥ ପ୍ରତିପାଦିତ କରୁଥିଲା ଓ କ୍ଷମା ଦେଉଥିଲା ।

ଏହି ଅଲୌକିକ ଲୋକସମୂହ ସେମାନ ଚର୍ଚ୍ଚର ମହାନ ସହାୟକ ହୋଇଥିଲେ । ସେମାନେ କେବଳ ଯେ ସୁଦୂର ଦେଶଗୁଡ଼ିକୁ ଏହାର ନାମ ଓ ବାର୍ତ୍ତା ବହନ କରି ନେଉ-ଥିଲେ ତାହା ନୁହେଁ; ଇଉରୋପରେ ଚର୍ଚ୍ଚର ସମ୍ମାନ ମଧ୍ୟ ବୃଦ୍ଧି କରିଥିଲେ । ଆଂଶିକ ଭାବରେ ସଂସ୍କାର ଲାଗି ଅଭ୍ୟନ୍ତରୀଣ ଆନ୍ଦୋଳନ ହେତୁ ଏବଂ ଅଧିକ ଭାବରେ ପ୍ରୋଟେଷ୍ଟାଣ୍ଟ ବିଦ୍ରୋହର ଭୟ ହେତୁ ରୋମରେ ବଂଶଗତର ଦୁର୍ନୀତି କମି ଯାଇଥିଲା । ଏହିରୂପେ ସଂସ୍କାର ଆନ୍ଦୋଳନ ଚର୍ଚ୍ଚକୁ ଦୁଇ ଭାଗରେ ବିଭକ୍ତ କଲା ଏବଂ ତାହା ସଙ୍ଗେ ସଙ୍ଗେ କେତେକ ପରିମାଣରେ ଏହାର ଆଭ୍ୟନ୍ତରୀଣ ସଂସ୍କାର ବି କରିଥିଲା ।

ପ୍ରୋଟେଷ୍ଟାଣ୍ଟ ବିଦ୍ରୋହ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଇଉରୋପର କେତେକ ରାଜା ଗୋଟିଏ ପକ୍ଷରେ ଯୋଗ ଦେଲେ ତ ଅନ୍ୟମାନେ ଆଉ ଏକପକ୍ଷରେ ଯୋଗ ଦେଲେ । ଏଥିରେ କୌଣସି ପ୍ରକାର ଧାର୍ମିକ ଉଦ୍ଦେଶ୍ୟ ନ ଥିଲା । ଏହା ମୁଖ୍ୟତଃ ରାଜନୀତିକ ପ୍ରଶ୍ନ ଏବଂ ଲାଭ କରିବାର ଅଭିଳାଷ ଥିଲା । ସେତେବେଳେ ହାପ୍‌ସବର୍ଗ ବଂଶର ପଞ୍ଚମ ଚାର୍ଲ୍‌ସ ପବିତ୍ର ରୋମାନ ସାମ୍ରାଜ୍ୟର ସମ୍ରାଟ ଥିଲେ । ତାଙ୍କର ପିତା ଓ ପିତାମହଙ୍କ ବିବାହ ଯୋଗୁଁ ସେ ଏକ ବିଶାଳ ସାମ୍ରାଜ୍ୟ ଉତ୍ତରାଧିକାରୀ ସ୍ୱରୂପ ପାଇଥିଲେ । ଏଥିରେ ଅଷ୍ଟ୍ରିଆ, ଜର୍ମାନୀ (ନାମକୁମାତ୍ର), ସ୍ପେନ, ନେପଲସ୍ ଓ ସିସିଲି, ନେଦରଲ୍ୟାଣ୍ଡ ଓ ସ୍ପେନୀୟ-ଆମେରିକାର ଅନ୍ତର୍ଗତ ଥିଲା । ଏପରି ଭାବରେ ବିବାହ ଦ୍ୱାରା ନିଜ ରାଜ୍ୟ ବୃଦ୍ଧି କରିବା ସେତେବେଳେ ଇଉରୋପରେ ଏକ ଆଦରଣୀୟ ପନ୍ଥା ଥିଲା । ଏହିରୂପେ ନିଜର କୌଣସି ଯୋଗ୍ୟତା ନ ଥାଇ ସୁଦ୍ଧା ଚାର୍ଲ୍‌ସ ଇଉରୋପର ଅର୍ଦ୍ଧେକ ଅଞ୍ଚଳ ଉପରେ ଶାସନ କଲେ ଏବଂ କ୍ଷଣକାଳ ନିମନ୍ତେ ସେ ଜଣେ ପ୍ରବଳ ଲୋକ ହୋଇଉଠିଲେ । ସେ ପ୍ରୋଟେଷ୍ଟାଣ୍ଟ-ମାନଙ୍କ ବିରୁଦ୍ଧରେ ପୋପଙ୍କ ପକ୍ଷ ନେବାକୁ ସ୍ଥିର କଲେ । ସଂସ୍କାର ଧାରଣା ସାମ୍ରାଜ୍ୟବାଦୀ

ଛିଦ ସହିତ ଖାପ ଖାଏ ନାହିଁ । ମାତ୍ର ଅନେକ କ୍ଷୁଦ୍ର ଜର୍ମାନ ରାଜା ପ୍ରୋଟେଷ୍ଟାଣ୍ଟ-ମାନଙ୍କ ପକ୍ଷ ନେଲେ ଏବଂ ଜର୍ମାନୀରେ ଦୁଇଟି ଦଳ ହୋଇଗଲେ—ରୋମାନ ଓ ଲୁଥେରାନ । ଏହାର ସ୍ୱାଭାବିକ ଫଳସ୍ୱରୂପ ଜର୍ମାନୀରେ ଗୃହଯୁଦ୍ଧ ହେଲା ।

ଇଂଲଣ୍ଡରେ ବହୁ-ବିବାହ କରିଥିବା ଅଷ୍ଟମ ହେନରି ପୋପଙ୍କ ବିରୁଦ୍ଧରେ ଗଲେ ଏବଂ ପ୍ରୋଟେଷ୍ଟାଣ୍ଟ (ବେରଂ ନିଜର) ପକ୍ଷ ଗ୍ରହଣ କଲେ । ସେ ଚର୍ଚ୍ଚର ସମ୍ପତ୍ତି ପାଇବା ଲାଗି ଆଶା କରିଥିଲେ ଏବଂ ରୋମ ସହିତ ସମ୍ପର୍କ ତୁଟାଇ ସେ ଖ୍ରୀଷ୍ଟିୟାନ ଧର୍ମପୀଠମାନଙ୍କର ସମସ୍ତ ମୂଲ୍ୟବାନ ଭୂମି ବାଜ୍ୟାପ୍ତ କରିନେଲେ । ପୋପଙ୍କ ସହିତ ସମ୍ପର୍କ ତୁଟାଇବାର ଆଉ ଏକ ବ୍ୟକ୍ତିଗତ କାରଣ ଥିଲା; ସେ ନିଜର ସ୍ତ୍ରୀକୁ ତ୍ୟାଗ କରି ଆଉ ଏକ ନାରୀକୁ ବିବାହ ହେବାକୁ ଚାହୁଁଥିଲେ ।

ଫ୍ରାନ୍ସରେ ଅବସ୍ଥା ବିଚିତ୍ର ଥିଲା । ରାଜାଙ୍କ ପ୍ରଧାନମନ୍ତ୍ରୀ ଥିଲେ ବିଖ୍ୟାତ କାର୍ଡ଼ିନାଲ ରିଚେଲୁ । ସେ ହିଁ ପ୍ରକୃତରେ ରାଜ୍ୟ ଶାସନ କରୁଥିଲେ । ରିଚେଲୁ ଫ୍ରାନ୍ସକୁ ରୋମ ଓ ପୋପ ପକ୍ଷରେ ରଖିଲେ ଏବଂ ସେଠାରେ ପ୍ରୋଟେଷ୍ଟାଣ୍ଟଙ୍କ ଧର୍ମକୁ ଦମନ କଲେ । କିନ୍ତୁ ରାଜନୀତିର ଚକ୍ରାନ୍ତ ଏପରି ଯେ ସେ ଜର୍ମାନୀରେ ପ୍ରୋଟେଷ୍ଟାଣ୍ଟ ଧର୍ମ ଉତ୍ସାହିତ କରିବାକୁ ଲାଗିଲେ । ଉଦ୍ଦେଶ୍ୟ ହେଉଛି—ସେଠାରେ ଗୃହଯୁଦ୍ଧ ହୋଇପାରିବ ଏବଂ ଜର୍ମାନୀ ଦୁର୍ବଳ ଓ ଭାଗ ଭାଗ ହୋଇଯିବ । ଫ୍ରାନ୍ସ ଓ ଜର୍ମାନୀ ଭିତରେ ବିରୋଧ ୟୁରୋପ ଇତିହାସରେ ଏକ ସୂକ୍ଷ୍ମ ପରି ଲାଗି ରହିଛି ।

ଲୁଥର ଜଣେ ମହାନ ପ୍ରୋଟେଷ୍ଟାଣ୍ଟ ଥିଲେ ଏବଂ ସେ ରୋମ କର୍ତ୍ତୃତ୍ୱର ବିରୋଧ କରୁଥିଲେ; କିନ୍ତୁ ଅନୁମାନ କରିବୁ ନାହିଁ ଯେ, ସେ ଧର୍ମ ପ୍ରତି ସହିଷ୍ଣୁ ଭାବାପନ୍ନ ଥିଲେ । ସେ ଯେଉଁ ପୋପଙ୍କ ସହିତ ଲଢ଼େଇ କରୁଥିଲେ, ତାଙ୍କ ପରି ଅସହିଷ୍ଣୁ ମଧ୍ୟ ଥିଲେ । ତେଣୁ ସଂସ୍କାର ଆନ୍ଦୋଳନ ୟୁରୋପରେ ଧର୍ମଗତ ସ୍ୱାଧୀନତା ଆଣିଦେଲା ନାହିଁ । ଏହା ଏକ ନୂତନ ପ୍ରକାର ଧର୍ମାନ୍ଧ ଶ୍ରେଣୀ ଜାତ କଲା— ପିଉରିଟାନ୍ ଓ କାଲ୍ଭିନିଷ୍ଟ । କାଲ୍ଭିନ ପ୍ରୋଟେଷ୍ଟାଣ୍ଟ ଆନ୍ଦୋଳନର ଜଣେ ପରବର୍ତ୍ତୀ ନେତା । ସେ ଜଣେ ଉତ୍ତମ ସଂଗଠନକାରୀ ଏବଂ ଟିକୋଲ ନିୟମରେ ଜେନେଭା ନଗର ଅଧୀନରେ ରଖିଥିଲେ । ଜେନେଭାର ପାର୍କରେ ସଂସ୍କାର ଆନ୍ଦୋଳନର ଯେଉଁ ମହାନ୍ ସ୍ମୃତିସ୍ତମ୍ଭ ରହିଛି, ତୋର ତାହା ମନେ ଅଛି ତ ? ଯେଉଁ ପ୍ରକାଣ୍ଡ କାନ୍ଥମାନଙ୍କରେ କାଲ୍ଭିନ ଓ ଅନ୍ୟମାନଙ୍କର ମୂର୍ତ୍ତି ରହିଛି, ତାହା ମନେଅଛି ତ ? କାଲ୍ଭିନ ଏପରି ଅସହିଷ୍ଣୁ ଥିଲେ ଯେ, କେବଳ ତାଙ୍କ ସହିତ ଏକମତ ନ ହେବାରୁ ଏବଂ ସ୍ୱାଧୀନ ଭାବୁକ ଥିବାରୁ ସେ ଅନେକ ଲୋକଙ୍କୁ ପୋଡ଼ି ଦେଇଥିଲେ ।

ଲୁଥର ଓ ପ୍ରୋଟେଷ୍ଟାଣ୍ଟମାନେ ସାଧାରଣ ଜନତାଠାରୁ ଖୁବ୍ ସାହାଯ୍ୟ ପାଇଥିଲେ; କାରଣ ରୋମାନ ଚର୍ଚ୍ଚ ବିରୁଦ୍ଧରେ ଦୃଢ଼ ମନୋଭାବ ଥିଲା । ମୁଁ ତୋତେ କହିଛି, କୃଷକମାନଙ୍କ ଦଶା ଅତ୍ୟନ୍ତ ଶୋଚନୀୟ ଥିଲା ଏବଂ ବାରମ୍ବାର ଦଙ୍ଗା ଲାଗି ରହୁଥିଲା ।

ଏହି ଦଙ୍ଗାରୁ ଜର୍ମାନୀରେ ସଂଘବଦ୍ଧ କୃଷକ ଯୁଦ୍ଧ ବୃଦ୍ଧି ପାଇଲା । ଯେଉଁ ଅନ୍ୟାୟ ପ୍ରଥା ଦରିଦ୍ର କୃଷକମାନଙ୍କୁ ପେଷି ଦେଉଥିଲା, ସେମାନେ ତା ବିରୁଦ୍ଧରେ ଉଠିଲେ ଏବଂ ଅତି ସାଧାରଣ ଓ ନ୍ୟାୟୋଚିତ ଅଧିକାରମାନ ଦାବୀ କଲେ; ଯଥା :—କୃଷକଙ୍କ ଭିତରେ ଦାସ ପ୍ରଥା ରହିବ ନାହିଁ ଏବଂ ମାଛ ଧରିବାର ଓ ଶିକାର କରିବାର ଅଧିକାର ରହିବ । ମାତ୍ର ଏତିକ ବି ସେମାନଙ୍କୁ ଅସ୍ୱୀକାର କରାଗଲା ଏବଂ ଜର୍ମାନୀ ରାଜାମାନେ ସକଳ ପ୍ରକାର ବର୍ବ-ରତା କରି ସେମାନଙ୍କୁ ତଳିତଳାନ୍ତ କରିଦେବା ନିମନ୍ତେ ଚେଷ୍ଟା କଲେ । ମହାନ ସଂସ୍କାରକ ଲୁଥର୍‌ଙ୍କର ମନୋଭାବ କ'ଣ ଥିଲା ? ସେ ଦରିଦ୍ର କୃଷକଙ୍କ ପକ୍ଷ ନେଇ ତାଙ୍କର ଯଥାର୍ଥ ଦାବୀ ସମର୍ଥନ କରିଥିଲେ କି ? ସେ କଲେ ନାହିଁ । ଅର୍ଦ୍ଧ-ଦାସତ୍ୱ ଲୋପ ବିଷୟରେ କୃଷକଙ୍କ ଯେ ଦାବୀ ହୋଇଥିଲା, ଲୁଥର କହିଲେ—"ଏହି ସର୍ତ୍ତ ଅନୁସାରେ ସବୁ ଲୋକ ସମାନ ହୋଇଯିବେ ଏବଂ ଖ୍ରୀଷ୍ଟଙ୍କ ଆଧ୍ୟାତ୍ମିକ ରାଜ୍ୟ ଏପରି ବଦଳିଯିବ ଯେ ଏହା ଏକ ସାଂସାରିକ ଜନପଦରେ ପରିଣତ ହୋଇଯିବ । ଅସମ୍ଭବ ! ବ୍ୟକ୍ତି-ଅସମାନତା ବ୍ୟତିରେକେ ରାଜ୍ୟ ତିଷ୍ଠି ପାରେ ନାହିଁ । କେତେକ ସ୍ୱାଧୀନ ହେବେ, କେତେକ ଅର୍ଦ୍ଧ ଦାସରୂପେ ରହିବେ କେତେକ ଶାସକ ହେବେ ଓ କେତେକ ପ୍ରଜା ହୋଇ ଅବଶ୍ୟ ରହିବେ ।" ସେ କୃଷକମାନଙ୍କୁ ଅଭିଶାପ ଦେଇ ତାଙ୍କର ଧ୍ୱଂସ କାମନା କରିଥିଲେ; "ଅତଏବ ଆମେ ଦକ୍ଷଲୋକେ ସେମାନଙ୍କୁ କାଟି ପକାଇବା, ହତ୍ୟା ଓ ଛୁରିକାଘାତ କରିବା ଏବଂ ମନେରଖ ପ୍ରକାଶ୍ୟରେ ବା ଗୁପ୍ତରେ ବିଦ୍ରୋହୀ ହେବା ଅପେକ୍ଷା ଅଧିକ ବିଷାକ୍ତ, ଅନିଷ୍ଟକର ଓ ପୈଶାଚିକ ବିଷୟ ଆଉ କିଛି ନାହିଁ । ପାଗଳା କୁକୁରକୁ ମାରିଲା ପରି ତମେ ଏପରି ଲୋକକୁ ହତ୍ୟା କରିବା ଉଚିତ; ତମେ ଯଦି ତାକୁ ଶିକାର ନ କର, ତେବେ ସେ ତମ ଉପରେ ଏବଂ ସମଗ୍ର ଦେଶକୁ ଶିକାର କରିବ ।" ଏକ ଧାର୍ମିକ ନେତା ଓ ସଂସ୍କାରକଙ୍କ ମୁଖରୁ ନିଃସୃତ ସୁନ୍ଦର ଭାଷା ଏକା !

ଏଥିରୁ ଦେଖାଯାଏ ଯେ, ସମସ୍ତ ମୁକ୍ତି ଓ ସ୍ୱାଧୀନତାର ଆଲୋଚନା କେବଳ ଉଚ୍ଚ-ଶ୍ରେଣୀଙ୍କ ପାଇଁ, ଜନତାଙ୍କ ପାଇଁ ନୁହେଁ । ପ୍ରାୟ ପ୍ରତ୍ୟେକ ଯୁଗରେ ଜନସାଧାରଣ ଯେଉଁ ଜୀବନ ଅତିବାହିତ କରନ୍ତି, ତାହା ପଶୁଠାରୁ ବିଶେଷ ପୃଥକ ନୁହେଁ । ଲୁଥରଙ୍କ ମତାନୁ-ସାରେ ସେମାନଙ୍କୁ ଏହିପରି ରହିବାକୁ ହେବ । କାରଣ ଈଶ୍ୱରଙ୍କ ଦ୍ୱାରା ଏହା ଧାର୍ଯ୍ୟ ହୋଇଅଛି । ଲୋକମାନଙ୍କର ଅତ୍ୟଧିକ ଆର୍ଥିକ ଦୁର୍ଦ୍ଦଶା ହେତୁ ଅଧିକାଂଶରେ ରୋମ ବିରୁଦ୍ଧରେ ପ୍ରୋଟେଷ୍ଟାଣ୍ଟ ବିଦ୍ରୋହ ହୋଇଥିଲା । ଏହା ସହିତ ନିଜକୁ ମିଶାଇ ଦେଇ ଏହାର ଉପଯୋଗ କରାଗଲା; କିନ୍ତୁ ଯେତେବେଳେ ଭୟ ହେଲା ଯେ, ଅର୍ଦ୍ଧଦାସମାନେ ହୁଏତ ଆହୁରି ଆଗେଇଯିବେ ଏବଂ ନିଜର ଦାସତ୍ୱରୁ ମୁକ୍ତିଲାଭ କରିନେବେ, (ଏହା ତ ଏକ ସାମାନ୍ୟ କଥା) ସେତେବେଳେ ପ୍ରୋଟେଷ୍ଟାଣ୍ଟ ନେତାମାନେ ରାଜାମାନଙ୍କ ସହିତ ଯୋଗ ଦେଇ ସେମାନଙ୍କୁ ଦମନ କରିବାରେ ଲାଗିଗଲେ । ଜନସାଧାରଣଙ୍କ ଆଗ ଅସିବା ଆହୁରି ଅନେକ ଡେରି ଥିଲା । ଯେଉଁ ନୂତନ ଯୁଗର ଅଭ୍ୟୁତ୍ଥାନ ହେଉଥିଲା, ତାହା

ମଧ୍ୟବିତ୍ତ ଶ୍ରେଣୀ, ବୁର୍ଜୋୟା ଶ୍ରେଣୀର ସୃଷ୍ଟି । ୧୭ଶ ଶତାବ୍ଦୀର ସକଳ ସଂଗ୍ରାମ ଓ ଯୁଦ୍ଧରୁ ପ୍ରାପ୍ତ ଅନିବାର୍ଯ୍ୟ ରୂପେ କ୍ରମେ କ୍ରମେ ଏହି ଶ୍ରେଣୀ ଜାଗ୍ରତ ହେବାର ଦେଖାଯାଏ ।

ଯେଉଁ ସ୍ଥାନରେ ଜାଗ୍ରତ ବୁର୍ଜୋୟା ଶ୍ରେଣୀ ଅପେକ୍ଷାକୃତ ବଳିଷ୍ଠ ଥିଲେ, ସେଠାରେ ପ୍ରୋଟେଷ୍ଟାଣ୍ଟ ଧର୍ମ ବିସ୍ତାର ଲାଭ କଲା । ପ୍ରୋଟେଷ୍ଟାଣ୍ଟଙ୍କ ଭିତରେ ଅନେକ ପ୍ରକାର ସମ୍ପ୍ରଦାୟ ରହିଛନ୍ତି । ଇଂଲଣ୍ଡର ରାଜା ନିଜକୁ ଚର୍ଚ୍ଚର ମୁଖିଆ ବୋଲି ଘୋଷଣା କଲେ—“ଡିଫେଣ୍ଡର ଅଫ୍ ଦି ଫେଥ୍”—ଏବଂ ବ୍ୟାବହାରିକ ଭାବରେ ଚର୍ଚ୍ଚ ଆଉ ଧର୍ମ-ସଂସ୍ଥା ହୋଇ ରହିଲା ନାହିଁ । ଏହା ସରକାରର ଏକ ବିଭାଗ ହୋଇଗଲେ । ସେହିଦିନରୁ ଇଂଲଣ୍ଡର ଚର୍ଚ୍ଚ ଏପରି ହୋଇ ଆସିଛି ।

ଅନ୍ୟ ରାଜ୍ୟରେ ବିଶେଷତଃ ଜର୍ମାନୀ, ସୁଇଜରଲାଣ୍ଡ ଓ ନେଦରଲାଣ୍ଡର ଅନ୍ୟ ସମ୍ପ୍ରଦାୟ ଗୁଡ଼ିକ ପ୍ରାଧାନ୍ୟ ଲଭିଲେ । କାଲଭିନିଜମ୍‌ର ପ୍ରସାର ହେଲା, କାରଣ ବୁର୍ଜୋୟା ଶ୍ରେଣୀ ବୃଦ୍ଧି ସହିତ ଏହା ଖାପ ଖାଉଥିଲା । ଧର୍ମ ସମ୍ବନ୍ଧୀୟ ବ୍ୟାପାରରେ କାଲଭିନ୍ ଅତ୍ୟନ୍ତ ଅସହିଷ୍ଣୁ ଥିଲେ । ବିଧର୍ମୀମାନଙ୍କୁ ଯନ୍ତ୍ରଣା ଦିଆଗଲା ଓ ପୋଡ଼ି ଦିଆଯାଉଥିଲା ଏବଂ ଅନୁଚରମାନଙ୍କ ପ୍ରତି କଠୋର ଶୃଙ୍ଖଳା ରଖାଯାଉଥିଲା; କିନ୍ତୁ ବେପାର ବଣିଜ କ୍ଷେତ୍ରରେ ବୃଦ୍ଧି ପାଉଥିବା ବେପାର ଓ ଶିଳ୍ପ ସହିତ ତାଙ୍କର ଶିକ୍ଷା ଅଧିକ ଖାପ ଖାଉଥିଲା, ରୋମାନ ଶିକ୍ଷାରେ ଏହା ନ ଥିଲା । ବ୍ୟବସାୟରେ ଲାଭକୁ ଆଶୀର୍ବାଦ ଦିଆଗଲା ଏବଂ ଧାରକୁ ଉତ୍ସାହିତ କରାଗଲା । ତେଣୁ ନୂତନ ବୁର୍ଜୋୟା ଶ୍ରେଣୀ ପ୍ରଚଳିତ ଧର୍ମର ଏହି ନୂତନ ବ୍ୟାଖ୍ୟାକୁ ଗ୍ରହଣ କଲେ ଓ ସମ୍ପୂର୍ଣ୍ଣରୂପେ ଅତି ସହଜ ବିବେକରେ ପଇସା କମାଇବାରେ ଲାଗିଗଲେ । ସେମାନେ ସାମନ୍ତ ପ୍ରଭୁମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ଜନତାକୁ ଲଗାଇଥିଲେ । ଏବେ ସାମନ୍ତମାନଙ୍କ ଉପରେ ଜୟଲାଭ କରିସାରି ସେମାନେ ତାଙ୍କୁ ଅବହେଳା କଲେ ବା ଜନତାଙ୍କ ଉପରେ ପ୍ରଭୁତ୍ୱ କଲେ ।

କିନ୍ତୁ ବୁର୍ଜୋୟା ଶ୍ରେଣୀକୁ ଆହୁରି ଅନେକ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼ିଲା । ରଜା ତାଙ୍କ ପଥରେ ତଥାପି କଣ୍ଟକ ହୋଇ ଥିଲେ । ରାଜା ସାମନ୍ତମାନଙ୍କ ସହିତ ଲଢ଼ିବା ପାଇଁ ସହରର ଲୋକଙ୍କ ସହିତ ଯୋଗ ଦେଇଥିଲେ । ଏବେ ସାମନ୍ତମାନେ କ୍ଷମତାହୀନ ହୋଇଯିବାରୁ ରଜା ଅଧିକ ବଳବାନ ହୋଇପଡ଼ିଲେ ଏବଂ ସାରା ଦେଶରେ ଏକମାତ୍ର ପ୍ରଭୁ ପରି ମନେହେଲେ । ତାଙ୍କ ସହିତ ମଧ୍ୟବିତ୍ତ ଶ୍ରେଣୀର ବିବାଦ ଅସିବାର ହେଲା ଠିକ୍ ଏଡେ଼ ଦେରି ଅଛି ।

# ୮୫ : ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀର ଇଉରୋପରେ ଏକଛତ୍ର ଶାସନ

ଅଗଷ୍ଟ ୨୬, ୧୯୩୨

ମୁଁ ପୁନର୍ବାର ହେଳା କରୁଛି । ଅନେକ ଦିନ ପୂର୍ବେ ମୁଁ ତୋ ପାଖକୁ ଚିଠି ଲେଖିଥିଲି । ଏଠି ମୋତେ ପ୍ରଶ୍ନ କରିବାକୁ କମ୍ବା ଠିକଣା କରି ରଖିବାକୁ କେହି ନାହିଁ; ତେଣୁ ମୁଁ ବେଳେ ବେଳେ ଢିଲା ହୋଇ ଯାଉଛି ଓ ଅନ୍ୟ କାର୍ଯ୍ୟରେ ନିଜକୁ ଲଗାଇ ଦେଉଛି । ଆମେ ଯଦି ଏକାଠି ଥାଆନ୍ତେ ଅଲଗା କଥା ହୁଅନ୍ତା, ନୁହେଁ କି ? କିନ୍ତୁ ତୁ ଆଉ ମୁଁ ଯଦି ପରସ୍ପର ଭିତରେ କଥାବାର୍ତ୍ତା ହୋଇ ପାରୁଥାଆନ୍ତେ, ତେବେ ମୁଁ ତୋ ପାଖକୁ ଆଉ ଲେଖନ୍ତି ବା କାହିଁକି ?

ମୋର ଗତ ଚିଠିରେ ମୁଁ ଇଉରୋପ ବିଷୟରେ ଲେଖିଥିଲି । ସେତେବେଳେ ସେଠାରେ ଖୁବ୍ ଗୋଳମାଳ ଓ ପରିବର୍ତ୍ତନ ହେଉଥିଲା । ସେ ଚିଠିଗୁଡ଼ିକରେ ୧୬ଶ ଓ ୧୭ଶ ଶତାବ୍ଦୀରେ ଘଟିଥିବା ବିରାଟ ପରିବର୍ତ୍ତନ,ଏହା ସଙ୍ଗେ ସଙ୍ଗେ ବା ପରେ ଯେଉଁ ଅର୍ଥନୈତିକ ବିପ୍ଳବ ଆସି ମଧ୍ୟଯୁଗକୁ ଶେଷ କରିଦେଲା ଏବଂ ବୁର୍ଜୋୟା ଶ୍ରେଣୀର ଅଭ୍ୟୁଦୟ ହେଲା, ତାହା ବର୍ଣ୍ଣିତ ଅଛି । ଆମର ଗତ ଚିଠିରେ ଆମେ ଦେଖିଛେ ପଶ୍ଚିମ ଇଉରୋପରେ ଖ୍ରୀଷ୍ଟ-ରାଜ୍ୟ କାଥଲିକ ଓ ପ୍ରୋଟେଷ୍ଟାଣ୍ଟ ଏହି ଦୁଇ ଦଳରେ ବିଭକ୍ତ ହୋଇଗଲା । ଏହି ଦୁଇଦଳ ମଧ୍ୟରେ ଲାଗିଥିବା ଧର୍ମଗତ ସଂଗ୍ରାମର ବିଶେଷ ରଣକ୍ଷେତ୍ର ଥିଲା ଜର୍ମାନି; କାରଣ ଏଠାରେ ଦୁଇ ଦଳର ଶକ୍ତି ପ୍ରାୟଅଧିକେ ସମାନ ଥିଲା । ପଶ୍ଚିମ ଇଉରୋପର ଅନ୍ୟ ରାଜ୍ୟଗୁଡ଼ିକ କେତେକ ପରିମାଣରେ ଏହି ସଂଗ୍ରାମରେ ଲିପ୍ତ ହୋଇଥିଲେ । ଇଂଲଣ୍ଡ ଇଉରୋପୀୟ ରାଜ୍ୟଗୁଡ଼ିକର ଏହି ସଂଗ୍ରାମରୁ ଅଲଗା ରହିଥିଲା । ଇଂଲଣ୍ଡର ରାଜା ଅଷ୍ଟମ ହେନେରିଙ୍କ ଅମଳରେ ତାହା ବିଶେଷ ଆଭ୍ୟନ୍ତରୀଣ ଗଣ୍ଡଗୋଳ ବ୍ୟତିରେକେ ରୋମରୁ ନିଜକୁ ବିଚ୍ଛିନ୍ନ କରିଦେଲା ଏବଂ ନିଜର ଏକ ଚର୍ଚ୍ଚ ସ୍ଥାପନା କଲା, ଏହା କାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟର ମଧ୍ୟବର୍ତ୍ତୀ ଏକ ଜିନିଷ ଥିଲା । ହେନେରି ଧର୍ମ ପ୍ରତି ବିଶେଷ ଖାତିର କରୁ ନ ଥିଲେ । ସେ ଚର୍ଚ୍ଚର ସମ୍ପତ୍ତି ଚାହୁଁଥିଲେ ଏବଂ ସେଗୁଡ଼ିକ ପାଇଲେ ସେ ପୁନର୍ବାର ବିବାହ କରିବାକୁ ଚାହୁଁଥିଲେ ଏବଂ ତାହା ବି କରିପାରିଲେ । ସୁତରାଂ ସଂସ୍କାର ଆନ୍ଦୋଳନର ମୁଖ୍ୟ ସୁରୁପ-ଫଳ ପୋପମାନଙ୍କର ପ୍ରାଧାନ୍ୟରୁ ରାଜାମାନେ ମୁକ୍ତ ହୋଇଗଲେ ।

ଏହିସବୁ ପୁନର୍ଜାଗରଣ ଓ ସଂସ୍କାର ଆନ୍ଦୋଳନ ଏବଂ ଅର୍ଥନୈତିକ ଗୋଳମାଳ ଇଉରୋପର ରୂପ ପରିବର୍ତ୍ତନ କରୁଥିଲାବେଳେ ରାଜନୀତିକ ପୃଷ୍ଠଭୂମିକା କିପରି ଥିଲା ? ୧୬ଶ ଓ ୧୭ଶ ଶତାବ୍ଦୀରେ ଇଉରୋପର ମାନଚିତ୍ର କିପରି ଥିଲା ? ଅବଶ୍ୟ ଏହି ଦୁଇଶହ

ବର୍ଷ ଭିତରେ ଏହାର ମାନଚିତ୍ରରେ ପରିବର୍ତ୍ତନ ହୋଇଛି । ତେଣୁ ୧୬ଶ ଶତାବ୍ଦୀର ପ୍ରଥମ ଭାଗରେ ଏହାର ମାନଚିତ୍ର ଯେପରି ଥିଲା, ସେଥିପ୍ରତି ଆମେ ନଜର ପକାଇବା ।

ଦକ୍ଷିଣ-ପୂର୍ବରେ ତୁର୍କମାନେ କନଷ୍ଟାଣ୍ଟିନୋପଲ ଦଖଲ କରି ରହିଥିଲେ ଏବଂ ତାଙ୍କର ସାମ୍ରାଜ୍ୟ ହଙ୍ଗେରି ତରଫକୁ ବଢ଼ୁଥିଲା । ଦକ୍ଷିଣ-ପଶ୍ଚିମ କୋଣରେ ଆରବ ବିଜେତା-ମାନଙ୍କର ବଂଶଧର ମୁସଲମାନ ସାରସେନମାନଙ୍କୁ ଗ୍ରାନାଡ଼ାରୁ ତଡ଼ି ଦିଆଯାଇଥିଲା ଏବଂ ଫର୍ଡ଼ିନାଣ୍ଡ ଓ ଇସାବେଲାଙ୍କ ମିଳିତ ଶାସନରେ ସ୍ପେନ ଏକ ଖ୍ରୀଷ୍ଟିୟାନ ଶକ୍ତିରୂପେ ବାହାରିଲା । ସ୍ପେନରେ ଖ୍ରୀଷ୍ଟିୟାନ ଓ ମୁସଲମାନଙ୍କ ଭିତରେ ଦୀର୍ଘ ଶତାବ୍ଦୀକାଳ ଲାଗି-ଥିବା ସଂଗ୍ରାମ ହେତୁ ସ୍ପେନବାସୀମାନେ ଅତ୍ୟଧିକ ଧର୍ମାନ୍ଧ ଭାବରେ ତାଙ୍କର କାଥଲିକ ଧର୍ମକୁ ଧରି ରହିଥିଲେ । ସ୍ପେନରେ ହିଁ ପ୍ରଚଣ୍ଡ ଇନ୍‌କ୍ୱିଜିସନର ପ୍ରତିଷ୍ଠା ହୋଇଥିଲା । ଆମେରିକା ଆବିଷ୍କାର କରିଥିବା ମୋହ ଏବଂ ସେଠାରୁ ଯେଉଁ ସମ୍ପଦ ସ୍ପେନ ପାଇଲା, ସେଥିରେ ଇଉରୋପୀୟ ରାଜନୀତିରେ ଏହା ପ୍ରଧାନ ଭାଗ ନେବାକୁ ଆରମ୍ଭ କଲା ।

ପୁନର୍ବାର ମାନଚିତ୍ର ପ୍ରତି ଦୃଷ୍ଟି ନିକ୍ଷେପ କର । ଆମେ ଦେଖୁ ଇଂଲଣ୍ଡ ଓ ଫ୍ରାନ୍‌ସ ବର୍ତ୍ତମାନ ଯେପରି ଅଛନ୍ତି, ସେହିପରି ବହୁ ପରିମାଣରେ ଥିଲେ । ପୁଣି ଦେଖୁ ମାନଚିତ୍ରର କେନ୍ଦ୍ରସ୍ଥଳରେ ଗୋଟିଏ ସାମ୍ରାଜ୍ୟ ଅଛି, ତାହା ଅନେକ ଜର୍ମାନ ରାଜ୍ୟରେ ବିଭକ୍ତ ହୋଇଛି । ସେଥିରୁ ପ୍ରତ୍ୟେକେ ଊଣାଅଧିକେ ସ୍ୱାଧୀନ ହୋଇଛନ୍ତି । ରାଜା, ଡିଉକ୍, ବିଶପ, ମଠଦାତା ଓ ସେହିପରି ବ୍ୟକ୍ତିମାନଙ୍କ ଅଧୀନରେ ଥିବା କେତେକ କ୍ଷୁଦ୍ର ରାଜ୍ୟର ବିଚିତ୍ର ସମଷ୍ଟି । ସେଠାରେ ବିଶେଷ ଅଧିକାରଭୋଗୀ ଅନେକ ସହର ବି ରହିଛି ଏବଂ ଉତ୍ତରାଞ୍ଚଳରେ ବାଣିଜ୍ୟ ଚଳୁଥିବା ସହରଗୁଡ଼ିକ ଏକତ୍ର ହୋଇ ଏକ "କନ୍‌ଫେଡ଼େରେ-ସନ" ବା ସଂଘ ଗଢ଼ିଛନ୍ତି । ତା'ପରେ ସୁଇଜରଲଣ୍ଡର ପ୍ରଜାତନ୍ତ୍ର ରହିଛି । ଏହା ପ୍ରକୃତରେ ସ୍ୱାଧୀନ; ମାତ୍ର ବିଧିବଦ୍ଧ ଭାବରେ ତାହା ଏ ପର୍ଯ୍ୟନ୍ତ ସ୍ୱୀକୃତ ହୋଇ ନାହିଁ । ଭେନିସ ପ୍ରଜାତନ୍ତ୍ର ଓ ଉତ୍ତର-ଇଟାଲୀର ଅନ୍ୟ ନଗର ପ୍ରଜାତନ୍ତ୍ର ସବୁ ଅଛି; ରୋମ ଚତୁର୍ଦ୍ଦିଗରେ 'ପୋପାଲ ଷ୍ଟେଟ' ନାମରେ ପରିଚିତ ପୋପଙ୍କ ଜମିଦାରି ଏବଂ ସେଠାରୁ ଆହୁରି ଦକ୍ଷିଣକୁ ସିସିଲି ଓ ନେପଲ୍‌ସ ରାଜ୍ୟ । ପୂର୍ବକୁ ସାମ୍ରାଜ୍ୟ ଓ ରୁଷ ଭିତରେ ପୋଲଣ୍ଡ ଏବଂ ହଙ୍ଗେରି ରାଜ୍ୟ । ଅଟୋମାନ ତୁର୍କମାନେ ଏହା ଉପରେ ନଜର ଲୁବ୍ଧଦୃଷ୍ଟିପାତ କରୁଛନ୍ତି । ଆହୁରି ପୂର୍ବକୁ ଅଛି ରୁଷ । ଏହା ଦୁଇଶହ ବର୍ଷର ମଙ୍ଗୋଲମାନଙ୍କଠାରୁ ଉଦ୍ଧାର ପାଇବା ପରେ ଏକ ଶକ୍ତିଶାଳୀ ରାଜ୍ୟରୂପେ ନୂଆ କରି ବୃଦ୍ଧିଲାଭ କରୁଛି । ଉତ୍ତର ଓ ପଶ୍ଚିମକୁ ଅନ୍ୟ କେତେକ ରାଜ୍ୟ ରହିଛି ।

୧୬ଶ ଶତାବ୍ଦୀର ପ୍ରଥମ ଭାଗରେ ଇଉରୋପ ଏହିପରି ଥିଲା । ୧୫୨୦ରେ ପଞ୍ଚମ ଚାର୍ଲସ ସମ୍ରାଟ ହେଲେ । ସେ ଜଣେ ହାପ୍‌ସବର୍ଗ ଥିଲେ ଏବଂ ଆମେ ଦେଖିଛେଁ, ସେ ସ୍ପେନ, ନେପଲ୍‌ସ, ସିସିଲି ଓ ନେଦରଲଣ୍ଡ ରାଜ୍ୟ ଉତ୍ତରାଧିକାରୀ ସୂତ୍ରେ ପାଇଥିଲେ । କେତେକ ରାଜକୀୟ ବିବାହ ଯୋଗୁଁ ଇଉରୋପର ଦେଶ ଓ ଲୋକମାନଙ୍କର କିପରି ପ୍ରଭୁ ପରିବର୍ତ୍ତନ

ଘଟିଲା, ତାହା ବାସ୍ତବିକ ବିଚିତ୍ର କଥା । ଲକ୍ଷ ଲକ୍ଷ ଲୋକ ଓ ବିଶାଳ ରାଜ୍ୟସବୁ ଉତ୍ତରାଧିକାରୀ ସୂତ୍ରେ ମିଳିଯାଉଥିଲା । ବେଳେ ବେଳେ ଏଗୁଡ଼ିକ ଯୌତୁକରୂପେ ଦିଆ-ଯାଉଥିଲା । ଏହିରୂପେ ଇଂରେଜ ରାଜା ୨ୟ ଚାର୍ଲସ ତାଙ୍କ ସ୍ତ୍ରୀ ବ୍ରାଗାଞ୍ଜାର(ପର୍ତ୍ତୁଗାଲରେ) କାଥେରାଇନ୍‌ଙ୍କ ଯୌତୁକ ସ୍ୱରୂପ ବମ୍ବେ ଦ୍ୱୀପ ପାଇଥିଲେ । ଅତଏବ ଉନ୍ନତହାରରେ ବିବାହ ଦ୍ୱାରା ହାପସ୍‌ବର୍ଗମାନେ ଏକ ସାମ୍ରାଜ୍ୟ ଏକତ୍ର କରିପାରିଥିଲେ ଏବଂ ପଞ୍ଚମ ଚାର୍ଲସ ଏହାର ପ୍ରଧାନ ହେଲେ । ସେ ଏକ ଅତି ସାଧାରଣ ଲୋକ ଥିଲେ । ମୁଖ୍ୟତଃ ପ୍ରଚୁର ପରିମାଣରେ ଖାଇପାରନ୍ତି ବୋଲି ତାଙ୍କର ଖ୍ୟାତି ଥିଲା, ମାତ୍ର ସେ ସମୟରେ ତାଙ୍କର ବିଶାଳ ରାଜ୍ୟଗୁଡ଼ିକ ହେତୁ ଇଉରୋପରେ ସେ ଏକ ପ୍ରକାଣ୍ଡ ପୁରୁଷ ପରି ଜଣାପଡ଼ୁଥିଲେ ।

ଯେଉଁ ବର୍ଷ ଚାର୍ଲସ ସମ୍ରାଟ ହେଲେ ସେହି ବର୍ଷ ସୁଲେମାନ ଅଟୋମାନ ସାମ୍ରାଜ୍ୟର କର୍ତ୍ତା ହେଲେ । ତାଙ୍କର ରାଜତ୍ୱକାଳରେ ଏ ସାମ୍ରାଜ୍ୟ ସବୁ ଦିଗରେ ଏବଂ ବିଶେଷ ଭାବରେ ପୂର୍ବ-ଇଉରୋପରେ ବିସ୍ତାର ଲାଭ କଲା । ତୁର୍କମାନେ ଭିଏନାର ଦ୍ୱାର ପର୍ଯ୍ୟନ୍ତ ଆସିଗଲେ; ମାତ୍ର ଏହି ପ୍ରାଚୀନ ସୌନ୍ଦର୍ଯ୍ୟଶାଳୀ ନଗରଟି ଦଖଲ କରିପାରି ନଥିଲେ । କିନ୍ତୁ ହାପ୍‌ସବର୍ଗ ସମ୍ରାଟଙ୍କୁ ସେମାନେ ଆତଙ୍କିତ କରି ପକାଇଥିଲେ ଏବଂ ସେ ସୁଲେମାନଙ୍କୁ ଅର୍ଥ ଦେଇ ଦୂରେଇ ଦେବାର ଆବଶ୍ୟକତା ବୋଧ କରିଥିଲେ । ପବିତ୍ର ରୋମାନ ସାମ୍ରାଜ୍ୟ ମହାନ ସମ୍ରାଟ ତୁର୍କର ସୁଲତାନଙ୍କୁ ରାଜସ୍ୱ ଦେବା କଥା ଥରେ ଅନୁମାନ କର । ସୁଲେମାନ ଉଦାରଚେତା ସୁଲେମାନ ନାମରେ ପରିଚିତ । ସେ ନିଜେ ସମ୍ରାଟ ଉପାଧି ଗ୍ରହଣ କଲେ; ଯେହେତୁ ସେ ନିଜକୁ ପୂର୍ବୀୟ ବିଜାଣ୍ଟାଇନ ସିଜରଙ୍କ ପ୍ରତିନିଧି ରୂପେ ବିଚାର କରୁଥିଲେ ।

ସୁଲେମାନଙ୍କ ଅମଳରେ କନଷ୍ଟାଣ୍ଟିନୋପଲରେ ପ୍ରଚୁର ପରିମାଣରେ ନିର୍ମାଣ କାର୍ଯ୍ୟ ହୋଇଥିଲା ଏବଂ ଅନେକ ସୁନ୍ଦର ମସଜିଦ ତିଆରି ହୋଇଥିଲା । ଇଟାଲୀରେ କଳାଗତ ପୁନର୍ଜାଗରଣ ଉଳି ପୂର୍ବରେ ମଧ୍ୟ ହୋଇଥିଲାପରି ବୋଧ ହୁଏ । କେବଳ ଯେ କନ୍‌ଷ୍ଟାଣ୍ଟିନୋପଲରେ କଳାଗତ କାର୍ଯ୍ୟକଳାପ ହୋଇଥିଲା, ତାହା ନୁହେଁ; ମାତ୍ର ଇରାନ୍ ଓ ମଧ୍ୟ-ଏସିଆର ଖୋରାସାନରେ ସୁନ୍ଦର ଅଙ୍କନ ଚିତ୍ରସବୁ କରାହୋଇଥିଲା । ଆମେ ଦେଖିଛେଁ, ଉତ୍ତର ପଶ୍ଚିମରୁ ମୋଗଲ ବାବର ଭାରତକୁ ଆସିଲେ ଏବଂ ଏକ ନୂତନ ବଂଶ ସ୍ଥାପନା କଲେ । ଏହା ୧୫୨୬ରେ ହୋଇଥିଲା, ସେତେବେଳେ ୫ମ ଚାର୍ଲସ ଇଉରୋପର ସମ୍ରାଟ ଥିଲେ ଏବଂ ସୁଲେମାନ କନଷ୍ଟାଣ୍ଟିନୋପଲରେ ଶାସନ କରୁଥିଲେ । ଆମେ ବାବର ଓ ତାଙ୍କର ଯୋଗ୍ୟ ବଂଶ-ଧରମାନଙ୍କ ସମ୍ବନ୍ଧରେ ଅଧିକ ଭାବରେ ପରେ ଆଲୋଚନା କରିବା । ଯାହାହେଉ, ମଜାର କଥା ହେଉଛି, ଯଦିଓ ସେ କାଳର ଇଉରୋପୀୟ ରାଜାମାନଙ୍କ ଅପେକ୍ଷା ବାବର ଜଣେ ଅଧିକତର ପୁନର୍ଜାଗରଣ ଢଙ୍ଗର ରାଜା ଥିଲେ, ସେ ଜଣେ ଦୁଃସାହସିକ ଥିଲେ, ଏକ ନିର୍ଭୀକ ସାମନ୍ତ ଥିଲେ ଓ ସାହିତ୍ୟ ଏବଂ କଳାପ୍ରତି ତାଙ୍କର ଅସୀମ ଆଗ୍ରହ ଥିଲା । ସେ

କାଳର ଇଟାଲୀରେ ଯେଉଁ ରାଜାମାନେ ଥିଲେ, ସେମାନେ ବି ଦୁଃସାହସିକ ଏବଂ ସାହିତ୍ୟ ଓ କଳାପ୍ରେମୀ ଥିଲେ ଏବଂ ସେମାନଙ୍କର କ୍ଷୁଦ୍ର ରାଜଦରବାରରେ ବାହ୍ୟ ଆଡ଼ମ୍ବର ରହିଥିଲା । ସେତେବେଳେ ଫ୍ଲରେନ୍ସର ମେଡ଼ିକ ପରିବାର ଓ ବୋର୍ଜିଆମାନେ ପ୍ରସିଦ୍ଧ ଥିଲେ, କିନ୍ତୁ ଏହି ଇଟାଲୀୟ ରାଜାମାନେ ଏବଂ ସେତେବେଳର ଇଉରୋପର ଅଧିକାଂଶ ଅନ୍ୟ ରାଜା ସବୁ ମେକିଆଭେଲିଙ୍କ ପ୍ରକୃତ ଅନୁଚର ଥିଲେ । ସେମାନେ ଅବିବେକ, ଚକ୍ରାନ୍ତକାରୀ ଓ ସ୍ୱେଚ୍ଛାଚାରୀ ଥିଲେ, ନିଜର ବିରୋଧୀମାନଙ୍କ ପ୍ରତି ବିଷ ପିଆଇ ଓ ହତ୍ୟା-କାରୀର କୁତ୍ସିତ ବ୍ୟବହାର କରୁଥିଲେ । ମହାନ୍ ବାବରଙ୍କ ସହିତ ଏହି ରାଜାମାନଙ୍କୁ ତୁଳନା କରିବା ଆଦୌ ସୁନ୍ଦର ନୁହେଁ; ଠିକ ସେପରି ସେମାନଙ୍କର କ୍ଷୁଦ୍ର ରାଜଦରବାର ସହିତ ଆକବର, ସାହାଜାହାନ ଓ ଅନ୍ୟ ମୋଗଲ ସମ୍ରାଟମାନଙ୍କର ଦିଲ୍ଲୀ ବା ଆଗ୍ରାରେ ଥିବା ଜାକଜମକ ତୁଳନା କରିବା ଏକ ଅନୁପଯୋଗୀ ବିଷୟ ଅଟେ । କଥିତ ଅଛି ଯେ, ଏହି ମୋଗଲ ରାଜଦରବାରଗୁଡ଼ିକ ଚିତ୍ତାକର୍ଷକ ଥିଲା ଏବଂ ସମ୍ଭବତଃ ଏପରି ଧନଶାଳୀ ଓ ପ୍ରସିଦ୍ଧ ଥିଲା ଯାହାକି ଆଉ କେବେ ଦେଖା ନ ଥିଲା ।

ଆମେ ଏକପ୍ରକାର ଅଜ୍ଞାତସାରରେ ୟୁରୋପରୁ ଭାରତକୁ ଚାଲି ଆସିଛେଁ । କିନ୍ତୁ ୟୁରୋପୀୟ ପୁନର୍ଜାଗରଣ କାଳ ଭିତରେ ଭାରତ ଓ ଅନ୍ୟତ୍ର କଣ ଘଟୁଥିଲା ତାହା ତତେ ଉପଲବ୍ଧି କରାଇଦେବା ମୋର ଇଚ୍ଛା । ତୁର୍କୀ, ଇରାନ, ମଧ୍ୟଏସିଆ ଓ ଭାରତରେ କଳା ସମ୍ବନ୍ଧୀୟ କାର୍ଯ୍ୟକଳାପ ସେତେବେଳେ ଚାଲିଥିଲା ଚୀନରେ ମିଙ୍ଗମାନଙ୍କର ଶାନ୍ତିପୂର୍ଣ୍ଣ ଓ ସମୃଦ୍ଧିଶାଳୀ ଯୁଗ, ସେତେବେଳେ ଏକ ଉଚ୍ଚ ସୋପାନର କଳାଗତ ଉନ୍ନତି ହୋଇଥିଲା । କିନ୍ତୁ ବୋଧହୁଏ କେବଳ ଚୀନ ଛଡ଼ା ଏହି ପୁନର୍ଜାଗରଣ କାଳର କଳା ଊଣା ଅଧିକେ ରାଜକୀୟ କଳାହିଁ ଥିଲା । ଏହା ଲୋକସାଧାରଣଙ୍କ କଳା ନୁହେଁ । ଇଟାଲୀରେ ପ୍ରଧାନ କଳାବିତ୍‌ମାନେ ପ୍ରାଣତ୍ୟାଗ କଲା ପରେ ପୁନର୍ଜାଗରଣ କଳା ଅତି ନଗଣ୍ୟ ଓ ଅପ୍ରଧାନ ହୋଇଗଲା, କେତେକଙ୍କ ନାମ ମୁଁ ଉଲ୍ଲେଖ କରିଛି ।

ଷୋଡ଼ଶ ଶତାବ୍ଦୀର କାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟ ରାଜ୍ୟ ଏହି ଦୁଇ ଭାଗରେ ଇଉରୋପ ବିଭକ୍ତ ହୋଇଥିଲା । ସେତେବେଳେ ରାଜାଙ୍କର ହିଁ ସ୍ଥାନ ଥିଲା; ଲୋକଙ୍କୁ କେହି ପଚାରୁ ନ ଥିଲେ । ଇଟାଲୀ, ଅଷ୍ଟ୍ରିଆ, ଫ୍ରାନ୍ସ ଓ ସ୍ପେନ କାଥଲିକ୍ ଥିଲେ; ଜର୍ମାନୀ ଅଧା କାଥଲିକ୍ ଓ ଅଧା ପ୍ରୋଟେଷ୍ଟାଣ୍ଟ ଥିଲା । ଇଂଲଣ୍ଡର ରାଜା ପ୍ରୋଟେଷ୍ଟାଣ୍ଟ ହେବାରୁ ତାହା ବି ପ୍ରୋଟେଷ୍ଟାଣ୍ଟ ହେଲା । ଯେହେତୁ ଇଂଲଣ୍ଡ ପ୍ରୋଟେଷ୍ଟାଣ୍ଟ ହେଲା; ତେଣୁ ଇଂଲଣ୍ଡ ବିଜୟ କରି ଅଧିକାର କରିବାର ଚେଷ୍ଟା କରୁଥିବା ଆୟର୍ଲଣ୍ଡ ପକ୍ଷରେ କାଥଲିକ୍ ହେବାର ଯଥେଷ୍ଟ କାରଣ ଥିଲା; କିନ୍ତୁ ଲୋକଙ୍କ ଧର୍ମର କୌଣସି ମୂଲ୍ୟ ନାହିଁ କହିବା ରୂପେ ସମ୍ପୂର୍ଣ୍ଣ ଠିକ୍ ହେବ ନାହିଁ । ଶେଷରେ ଏହାର କୌଣସି ମୂଲ୍ୟ ନ ଥିଲା ଏବଂ ଏହି କାରଣରୁ ଅନେକ ଯୁଦ୍ଧ ଓ ବିପ୍ଳବ ହୋଇଥିଲା । ରାଜନୈତିକ ଓ ଅର୍ଥନୈତିକ ବିଭାଗରୁ

ଧର୍ମଗତ ଭାବକୁ ପୃଥକ କରିବା କଷ୍ଟକର । ମୋର ମନେହୁଏ, ତୋତେ କହିଛି ଯେ ଯେଉଁଠାରେ ନୂତନ ବେପାରୀ ଶ୍ରେଣୀ ବଳିଷ୍ଠ ହେଉଥିଲେ, ସେହିଠାରେ ବିଶେଷ ଭାବରେ ରୋମ ବିରୁଦ୍ଧରେ ପ୍ରୋଟେଷ୍ଟାଣ୍ଟ ବିଦ୍ରୋହ ହେଉଥିଲା । ତେଣୁ ଆମେ ଦେଖିପାରିବା ଧର୍ମ ଓ ବେପାର ମଧ୍ୟରେ ଗୋଟାଏ ସମ୍ପର୍କ ରହିଥିଲା । ଆହୁରି ମଧ୍ୟ ଅନେକ ରାଜା ଧାର୍ମିକ ସଂସ୍କାରକୁ ଭୟ କରୁଥିଲେ; କାରଣ ସେମାନେ ଭାବିଲେ ଯେ, ଏହି ଆବରଣ ଭିତରେ ଏକ ଆଭ୍ୟନ୍ତରୀଣ ବିପ୍ଳବ ଘଟିପାରେ ଏବଂ ତାଙ୍କର କର୍ତ୍ତୃତ୍ୱ ଲୋପ ହୋଇଯାଇ ପାରେ । କୌଣସି ଲୋକ ଯଦି ପୋପଙ୍କ ଧର୍ମଗତ କର୍ତ୍ତୃତ୍ୱର ପ୍ରତିରୋଧ କରିପାରେ, ତେବେ ସେ କାହିଁକି ବା ରାଜାର ରାଜନୈତିକ କର୍ତ୍ତୃତ୍ୱ ବିରୁଦ୍ଧରେ ନ ଉଠିବ । ରାଜାମାନଙ୍କ ପକ୍ଷରେ ଏହା ଏକ ବିପଜ୍ଜନକ ସିଦ୍ଧାନ୍ତ ଥିଲା । ସେମାନେ ତଥାପି ରାଜାମାନଙ୍କର ଶାସନ କରିବାର ଯେ ଐଶ୍ୱରିକ ଅଧିକାର ରହିଛି, ଏହି ମତ ପୋଷଣ କରୁଥିଲେ । ଏପରିକି ପ୍ରୋଟେଷ୍ଟାଣ୍ଟ ରାଜାମାନେ ମଧ୍ୟ ଏହା ଛାଡ଼ିବାକୁ ପ୍ରସ୍ତୁତ ନ ଥିଲେ ।

ତଥାପି ସଂସ୍କାର ଆନ୍ଦୋଳନ ସତ୍ତ୍ୱେ ଇଉରୋପରେ ରାଜାମାନେ ସର୍ବଶକ୍ତିମାନ ଥିଲେ । ପୂର୍ବେ କୌଣସି ଅବସ୍ଥାରେ ସେମାନେ ଏପରି ଏକଚ୍ଛତ୍ର ନ ଥିଲେ । ପୂର୍ବେ ମହାନ ସାମନ୍ତ ପ୍ରଭୁମାନେ ସେମାନଙ୍କୁ ବିରୋଧ କରୁଥିଲେ ଏବଂ ଅନେକ ସମୟରେ ତାଙ୍କର କର୍ତ୍ତୃତ୍ୱ ବିରୁଦ୍ଧରେ ଉଠୁଥିଲେ । ବଣିକ ଓ ବୁର୍ଜୋୟା ଶ୍ରେଣୀ ଏହି ସାମନ୍ତମାନଙ୍କୁ ଭଲପାଉ ନ ଥିଲେ; ରାଜା ବି ସେମାନଙ୍କୁ ଚାହୁଁ ନ ଥିଲେ । ତେଣୁ ବଣିକ ଶ୍ରେଣୀ ତଥା କୃଷକମାନଙ୍କ ସାହାଯ୍ୟରେ ରାଜା ଏହି ସାମନ୍ତମାନଙ୍କୁ ଦଳିଦେଲା ପରେ ଓ ନିଜେ ସର୍ବଶକ୍ତିମାନ ହେଲେ । ବୁର୍ଜୋୟା ଶ୍ରେଣୀର କ୍ଷମତା ଓ ପ୍ରାଧାନ୍ୟ ବଢ଼ିଲେ ହେଁ ରାଜାଙ୍କୁ ପ୍ରତିରୋଧ କଲା ପରି ଶକ୍ତି ତାଙ୍କର ଏ ପର୍ଯ୍ୟନ୍ତ ହୋଇ ନ ଥିଲା । କିନ୍ତୁ ଶୀଘ୍ର ରାଜାଙ୍କର ଅନେକ କାର୍ଯ୍ୟରେ ମଧ୍ୟବିତ୍ତ ଶ୍ରେଣୀ ଆପତ୍ତି ଉଠାଇବାକୁ ଆରମ୍ଭ କଲେ । ବିଶେଷ ଭାବରେ ପୁନଃ ପୁନଃ ବସୁଥିବା ଅତ୍ୟଧିକ ଟିକସହାର ଓ ଧର୍ମରେ ହସ୍ତକ୍ଷେପ ନେଇ ସେମାନେ ଆପତ୍ତି କଲେ । ରାଜା ଏସବୁ ଆଦୌ ପସନ୍ଦ କଲେ ନାହିଁ । ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଏପରି ଆପତ୍ତି ଉଠାଇବା ଆସ୍ଫାଳନ ଦେଖି ସେ ବିରକ୍ତ ହୋଇଗଲେ । ତେଣୁ ସେ ସେମାନଙ୍କୁ ଜେଲରେ ଭର୍ତ୍ତି କଲେ ଓ ଅନ୍ୟ ଭାବରେ ଶାସ୍ତି ଦିଆଗଲା । ସେମାନଙ୍କୁ ମନ-ଇଚ୍ଛା ଜେଲଦଣ୍ଡ ଦିଆଗଲା, ଠିକ୍ ଯେପରି ଅଜି ଆମେ ବ୍ରିଟିଶ ସରକାରରେ ବଶତା ସ୍ୱୀକାର ନ କରିବା ହେତୁ ଭାରତରେ କରାଯାଉଛି, ସେଠାରେ ବି ସେହି ନୀତି ଚାଲିଥିଲା । ରାଜା ବେପାରରେ ବି ହସ୍ତକ୍ଷେପ କଲେ । ଏସବୁର ଅବସ୍ଥା ଘୋର ଆଡ଼କୁ ଗଲା ଏବଂ ରାଜାଙ୍କ ପ୍ରତି ବିରୋଧ ବଢ଼ିଲା । ରାଜାମାନଙ୍କର ଏକଚ୍ଛତ୍ରାଧିକାର ବିରୁଦ୍ଧରେ କ୍ଷମତା ପାଇବା ନିମନ୍ତେ ବୁର୍ଜୋୟା ଶ୍ରେଣୀ ଲଢ଼େଇ କରି ଶହ ଶହ ବର୍ଷ ଧରି ଏ ପର୍ଯ୍ୟନ୍ତ ଲାଗିଥିଲେ ଏବେ ଅନେକ ରାଜାଙ୍କ ମସ୍ତକ ଛେଦନ କଲେ, ରାଜାଙ୍କର ଐଶ୍ୱରିକ ଦାବୀ ବିଷୟକ ଧାରଣା କାଣ୍ଡଜ୍ଞାନମୂଳକ

ଶିବିରରେ ଶେଷ ହେଲା ଏବଂ ରାଜାମାନଙ୍କୁ ଠିକଣା ଜାଗାରେ ରଖି ଦିଆଗଲା । କେତେକ ଦେଶରେ ପ୍ରଥମେ ବିଜୟ ହେଲା, କେତେକରେ ପରେ ହେଲା । ଯୁଦ୍ଧର ଫଳାଫଳ ବିଷୟରେ ଆମେ ପରବର୍ତ୍ତୀ ଚିଠିଗୁଡ଼ିକରେ ଆଲୋଚନା କରିବା ।

କିନ୍ତୁ ୧୭ଶ ଶତାବ୍ଦୀର ଇଉରୋପରେ ପ୍ରାୟ ରାଜା ହିଁ ସର୍ବେସର୍ବା ଥିଲେ— ମାତ୍ର ସମ୍ପୂର୍ଣ୍ଣରୂପେ ନୁହେଁ । ତୋର ମନେଥିବ, ସ୍ୱିଜରଲାଣ୍ଡର ପର୍ବତବାସୀ ଦରିଦ୍ର କୃଷକମାନେ ମହାନ୍ ହାପସ୍‌ବର୍ଗ ସମ୍ରାଟଙ୍କୁ ଅବଜ୍ଞା କରିବାକୁ ସାହାସ କରିଥିଲେ ଏବଂ ନିଜର ସ୍ୱାଧୀନତା ଲାଭ କଲେ । ତେଣୁ ୟୁରୋପରେ ମନମୁଖୀ ଓ ଏକଛତ୍ରାଧିକାର ସମୁଦ୍ର ଭିତରେ ସ୍ୱିଜରଲ୍ୟାଣ୍ଡର କ୍ଷୁଦ୍ର କୃଷକ ପ୍ରଜାତନ୍ତ୍ରଟିଏ ଏକ ଦ୍ୱୀପରୂପେ ରହିଲା, ଏଥିରେ ରାଜାଙ୍କର କୌଣସି ସ୍ଥାନ ନଥିଲା ।

ଅଳ୍ପ ଦିନ ପରେ ଅନ୍ୟ ଏକ ସ୍ଥାନ ନେଦରଲେଣ୍ଡରେ ଅବସ୍ଥା ଗୁରୁତର ହେଲା ଏବଂ ବ୍ୟକ୍ତିଗତ ଓ ଧର୍ମଗତ ସ୍ୱାଧୀନତା ନିମନ୍ତେ ଲଢ଼ାଇ ଲାଗିଲା ଓ ବିଜୟ ହେଲା । ଏହା ଏକ କ୍ଷୁଦ୍ର ରାଜ୍ୟ । କିନ୍ତୁ ଇଉରୋପର ଯେତେବେଳେ ସର୍ବଶ୍ରେଷ୍ଠ ଶକ୍ତି ସ୍ପେନ ବିରୁଦ୍ଧରେ ଏହା ଏକ ମହାନ ସଂଗ୍ରାମ ଥିଲା । ଏହିରୂପେ ନେଦରଲଣ୍ଡ ୟୁରୋପକୁ ଏକ ନେତୃତ୍ୱ ଦେଲା । ତାପରେ ଇଂଲଣ୍ଡରେ ଲୋକ ସ୍ୱାଧୀନତା ବିରୁଦ୍ଧରେ ସଂଗ୍ରାମ ହେଲା । ଏଥିରେ ଏକ ରାଜାଙ୍କ ମସ୍ତକ ଛେଦନ ହେଲା ଏବଂ ସେ କାଳର ପାର୍ଲିଆମେଣ୍ଟର ବିଜୟ ହେଲା । ସୁତରାଂ ଏକଛତ୍ରାଧିକାର ବିରୁଦ୍ଧରେ ବୁର୍ଜୋୟା ଶ୍ରେଣୀର ଏହି ସଂଗ୍ରାମରେ ନେଦରଲଣ୍ଡ ଓ ଇଙ୍ଗଲଣ୍ଡ ନେତୃତ୍ୱ ନେଇଥିଲେ । ବୁର୍ଜୋୟା ଶ୍ରେଣୀ ଏହିସବୁ ରାଜ୍ୟରେ ଜୟଯୁକ୍ତ ହୋଇଥିବାରୁ ଏହି ନୂତନ ଅବସ୍ଥାର ସୁବିଧା ନେବାକୁ ସମର୍ଥ ହୋଇଥିଲା ଏବଂ ଅନ୍ୟ ଦେଶଗୁଡ଼ିକ ଅପେକ୍ଷା ଆଗୁଆ ହୋଇପାରିଥିଲା । ଉଭୟ ଦେଶରେ ଶକ୍ତିଶାଳୀ ନୌବାହିନୀ ପରେ ନିର୍ମିତ ହେଲା । ସୁଦୂର ରାଜ୍ୟ ସହ ଉଭୟଙ୍କର ବାଣିଜ୍ୟ ବୃଦ୍ଧି ପାଇଲା ଏବଂ ଉଭୟେ ଏସିଆରେ ସାମ୍ରାଜ୍ୟର ଭିତ୍ତିସ୍ଥାପନ କଲେ ।

ଏହିସବୁ ଚିଠିରେ ଇଂଲଣ୍ଡ ବିଷୟରେ ଆମେ ଏ ପର୍ଯ୍ୟନ୍ତ ବିଶେଷ କିଛି ବର୍ଣ୍ଣନା କରି ନ ଥାଉଁ । ବିଶେଷ କିଛି କହିବାର ନ ଥିଲା, ଯେହେତୁ ୟୁରୋପରେ ଇଂଲଣ୍ଡ ସେପରି କିଛି ପ୍ରଧାନ ଦେଶ ହୋଇ ନ ଥିଲା; କିନ୍ତୁ ଏବେ ଏକ ପରିବର୍ତ୍ତନ ହେଲା ଏବଂ ଆମେ ଦେଖିବା ଇଂଲଣ୍ଡ ଦ୍ରୁତ ବେଗରେ ଆଗେଇ ଚାଲିଛି । ଆମେ ମାଗ୍ନା କାର୍ଟା ପାର୍ଲିଆମେଣ୍ଟର ପ୍ରଥମ ଆରମ୍ଭ ଓ କୃଷକ ଗୋଳମାଳ ଏବଂ ବିଭିନ୍ନ ବଂଶ ମଧ୍ୟରେ ଗୃହଯୁଦ୍ଧ ସମ୍ବନ୍ଧରେ ଉଲ୍ଲେଖ କରିଛେ । ଏହି ଯୁଦ୍ଧକାଳରେ ରାଜାମାନଙ୍କ ଦ୍ୱାରା ହତ୍ୟାକାଣ୍ଡ ଏକ ସାଧାରଣ କଥା ଥିଲା । ବହୁସଂଖ୍ୟକ ସାମନ୍ତ ଏହି ଯୁଦ୍ଧରେ ପ୍ରାଣ ହରାଇଲେ ଏବଂ ତେଣୁ ସେ ଶ୍ରେଣୀର ଶକ୍ତି କମିଗଲା । ଟିଉଡ଼ର ନାମକ ଏକ ନୂତନ ବଂଶ ସିଂହାସନକୁ ଆସିଲେ ଏବଂ ସେମାନେ

ଖୁବ୍ ଏକଛତ୍ର ଭାବରେ ଶାସନରେ କାର୍ଯ୍ୟ କଲେ । ୮ମ ହେନେରି ଜଣେ ଟିଉଡ଼ର ଥିଲେ । ତାଙ୍କ ଝିଅ ଏଲିଜାବେଥ୍ ମଧ୍ୟ ଟିଉଡ଼ର ଥିଲେ ।

ସମ୍ରାଟ ୫ମ ଚାର୍ଲସଙ୍କ ପରେ ସାମ୍ରାଜ୍ୟ ବିଭକ୍ତ ହୋଇଗଲା । ସ୍ପେନ ଓ ନେଦରଲାଣ୍ଡ ତାଙ୍କ ପୁତ୍ର ଦ୍ୱିତୀୟ ଫିଲିପଙ୍କ ହାତରେ ପଡ଼ିଲା । ସେତେବେଳକୁ ସ୍ପେନ ଇଉରୋପରେ ସର୍ବାପେକ୍ଷା ପ୍ରଭାବଶାଳୀ ରାଜତନ୍ତ୍ର ଥିଲା । ତୋର ମନେଥିବ, ପେରୁ ଓ ମେକ୍ସିକୋ ଏହାର ଦଖଲରେ ଥିଲା ଏବଂ ଆମେରିକା ଦେଶରୁ ସୁନା ବୋହି ଆସୁଥିଲା । ମାତ୍ର କଲମ୍ବସ, କୋର୍ଟେସ ଓ ପିଜାରୋଙ୍କ ଜନ୍ମଭୂମି ହୋଇ ସୁଦ୍ଧା ସ୍ପେନ ଏହି ନୂତନ ଅବସ୍ଥାର ସୁବିଧା ଉଠାଇ ପାରିଲା ନାହିଁ । ଏହା ବେପାର ପ୍ରତି ଆଗ୍ରହ ଦେଖାଉ ନ ଥିଲା, ଅତି ଧର୍ମାନ୍ଧ ଓ ନିଷ୍ଠୁର ପ୍ରକାରର ପ୍ରୋଟେଷ୍ଟାଣ୍ଟ ବିଶେଷ ଦୃଷ୍ଟି ଦେଉଥିଲା । ସମସ୍ତ ଦେଶରେ ଇନ୍‌କ୍ୱିଜିସନ ବୃଦ୍ଧି ପାଇଲା ଏବଂ ତଥାକଥିତ ବିଧର୍ମୀଙ୍କ ପ୍ରତି ପ୍ରଚଣ୍ଡ ନୃଶଂସ ବ୍ୟବହାର କରାଗଲା । ଥରକୁଥର ବିରାଟ ସାଧାରଣ ଉତ୍ସବର ବନ୍ଦୋବସ୍ତ ହେଲା; ରାଜା, ରାଜପରିବାର, ରାଜଦୂତ ଓ ସହସ୍ର ସହସ୍ର ଲୋକଙ୍କ ଉପସ୍ଥିତିରେ ଦଳ ଦଳ "ବିଧର୍ମୀ" ନରନାରୀଙ୍କୁ ପ୍ରକାଣ୍ଡ ଅଗ୍ନିକୁଣ୍ଡରେ ଜୀବନ୍ତ ପୋଡ଼ି ଦିଆଯାଉଥିଲା । ଏହି ପ୍ରକାଶ୍ୟ ଦହନ କ୍ରିୟାକୁ "ଅଟୋସ-ଡା-ଫେ" ଅର୍ଥାତ୍ ଧାର୍ମିକ କାର୍ଯ୍ୟ ବୋଲି କୁହାଯାଉଥିଲା । ଏସବୁ ଅତ୍ୟନ୍ତ ପ୍ରଚଣ୍ଡ ଓ ରାକ୍ଷସୀପରି ବୋଧହୁଏ । ଏହି କାଳର ସମଗ୍ର ୟୁରୋପ ଇତିହାସ ଏପରି ହିଂସା, ଗୋଷ୍ଠୀ, ବର୍ବର ନୃଶଂସତା ଓ ଧର୍ମସମ୍ବନ୍ଧୀୟ ମତାନ୍ଧତାରେ ପରିପୂର୍ଣ୍ଣ ଯେ ଏହା ପ୍ରାୟ ଅବିଶ୍ୱାସଯୋଗ୍ୟ ପରି ମନେହୁଏ ।

ସ୍ପେନ ସାମ୍ରାଜ୍ୟ ଦୀର୍ଘକାଳ ତିଷ୍ଠି ନ ଥିଲା । କ୍ଷୁଦ୍ର ହଲାଣ୍ଡରେ ନିର୍ଭୀକ ସଂଗ୍ରାମ ଏହାକୁ ସମ୍ପୂର୍ଣ୍ଣରୂପେ ଦୋହଲାଇ ଦେଲା । ଅଳ୍ପ କେତେ ଦିନ ପରେ ୧୫୮୮ରେ ଇଂଲଣ୍ଡ ଜୟ କରିବାର ଉଦ୍ୟମ ଶୋଚନୀୟ ଭାବରେ ବିଫଳ ହେଲା ଏବଂ ଯେଉଁ 'ଅଜେୟ ଆର୍ମଡ଼ା' ସ୍ପେନସୈନ୍ୟ ନେଇଯାଇଥିଲା ତାହା ଇଂଲଣ୍ଡ ଉପକୂଳରେ ସୁଦ୍ଧା ପହଞ୍ଚି ପାରି ନ ଥିଲା । ସମୁଦ୍ର ପଥରେ ଏହାକୁ ଭାଙ୍ଗି ଦିଆଗଲା । ଏଥିରେ ବିସ୍ମୟ ହେବାର କିଛି ନାହିଁ; ଯେହେତୁ ଏହି ଆର୍ମଡ଼ା ବା ଶସ୍ତ୍ରପୋତ ପରିଚାଳନା କରୁଥିବା ଲୋକେ ଜାହାଜ ବା ସମୁଦ୍ର ବିଷୟରେ କିଛି ଜାଣି ନ ଥିଲେ । ବାସ୍ତବିକ ସେ ରାଜା ଦ୍ୱିତୀୟ ଫିଲିପଙ୍କ ପାଖରୁ ଯାଇଥିଲେ ଏବଂ "ନମ୍ରତା ସହକାରେ ମହାମାନ୍ୟବରଙ୍କୁ ନିବେଦନ କଲେ ଯେ ତାଙ୍କୁ ତାଙ୍କ ପଦବୀରୁ ମୁକ୍ତ କରିଦିଆଯାଉ; କାରଣ ସେ କହିଲେ—ସମୁଦ୍ର ଘାଟି ସମ୍ବନ୍ଧରେ ତାଙ୍କୁ କିଛି ଜଣାନାହିଁ ଏବଂ ଅଧିକନ୍ତୁ ମଧ୍ୟ ସେ ଜଣେ ଖରାପ ନାବିକ । କିନ୍ତୁ ରାଜା ଜବାବ ଦେଲେ ଯେ, ସ୍ପେନ ଜାହାଜକୁ ସ୍ୱୟଂ ଖ୍ରୀଷ୍ଟ ହିଁ ଚାଳନା କରିବେ ।"

କ୍ରମଶଃ କ୍ରମେ ସ୍ପେନ ସାମ୍ରାଜ୍ୟ ମଉଳି ପଡ଼ିଲା । ୫ମ ଚାର୍ଲସଙ୍କ ଅମଳରେ କୁହାହେଉଥିଲା ଯେ, ତାଙ୍କ ସାମ୍ରାଜ୍ୟରେ ସୂର୍ଯ୍ୟ କେବେ ଅସ୍ତ ହେଉ ନ ଥିଲେ ।

ଏହି ପ୍ରବଚନ ଅର୍ଥ ଏକ ଗର୍ବୀ ଓ ଅଷ୍ଟାଳନକାରୀ ସାମ୍ରାଜ୍ୟ ପ୍ରତି ଅଙ୍ଗୀକାର। ଅନେକ ସମୟରେ ବାରମ୍ବାର ବ୍ୟବହାର କରାଯାଏ।

## ୮୭ : ନେଦରଲାଣ୍ଡର ସ୍ୱାଧୀନତା ଲଢ଼େଇ

ଅଗଷ୍ଟ ୨୭, ୧୯୩୨

୧୬ଶ ଶତାବ୍ଦୀରେ ପ୍ରାୟ ସମଗ୍ର ୟୁରୋପରେ ରଜାମାନେ କିପରି ସର୍ବେସର୍ବା ହେଲେ ସେକଥା ଗତ ଚିଠିରେ ମୁଁ ତୋତେ କହିଛି। ଇଂଲଣ୍ଡରେ ଟିଉଡ଼ରମାନେ, ସ୍ପେନ ଓ ଅଷ୍ଟ୍ରିଆରେ ହାପ୍‌ସବର୍ଗ ଥିଲେ। ରୁଷରେ ଏବଂ ଜର୍ମାନୀ ଓ ଇଟାଲୀର ଅଧିକ ଅଞ୍ଚଳରେ ଏକଛତ୍ର ସମ୍ରାଟ ଥିଲେ। ସମ୍ଭବତଃ ଫ୍ରାନ୍‌ସର ଏକ ବିଶେଷତ୍ୱ ଥିଲା। ଏଠାରେ ଏକ ପ୍ରକାର ବ୍ୟକ୍ତିଗତ ରାଜତନ୍ତ୍ର ଥିଲା। ଜଣେ ରାଜା ଶାସନ କରୁଥିଲେ। ସମଗ୍ର ରାଜ୍ୟ ରାଜାଙ୍କର ବ୍ୟକ୍ତିଗତ ସମ୍ପତ୍ତିରୂପେ ଧରାଯାଉଥିଲା। କାର୍ଡିନାଲ ରିଚେଲ୍ ନାମକ ଜଣେ ସୁଦକ୍ଷ ମନ୍ତ୍ରୀ ଫ୍ରାନ୍‌ସ ଓ ତାହାର ରାଜପଦକୁ ଦୃଢ଼ କରିବାରେ ସାହାଯ୍ୟ କରିଥିଲେ। ଫ୍ରାନ୍‌ସ ସର୍ବଦା ଭାବି ଆସିଛି ଯେ ଜର୍ମାନୀର ଦୁର୍ବଳତାରେ ହିଁ ତାର ଶକ୍ତି ଓ ନିରାପତ୍ତା ନିର୍ଭର କରେ। ତେଣୁ ରିଚେଲୁ ପ୍ରକୃତରେ ଜର୍ମାନୀରେ ପ୍ରୋଟେଷ୍ଟାଣ୍ଟମାନଙ୍କୁ ଉତ୍ସାହ ଦେଇଥିଲେ; ଅଥଚ ସେ ନିଜେ ଜଣେ ପ୍ରଧାନ କାଥଲିକ୍ ଧର୍ମଯାଜକ ଥିଲେ ଓ ଫ୍ରାନ୍‌ସର ପ୍ରୋଟେଷ୍ଟାଣ୍ଟମାନଙ୍କୁ ନିର୍ଦ୍ଦୟଭାବରେ ଦମନ କରିଥିଲେ। ଜର୍ମାନୀରେ ବିଶୃଙ୍ଖଳା ଓ ପରସ୍ପର ଭିତରେ ବିବାଦ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏବଂ ସେହିଭାବରେ ତାକୁ ଦୁର୍ବଳ କରିଦେବା ନିମନ୍ତେ ଏହା କରିଥିଲେ। ଏହିନୀତି ଖୁବ୍ ସଫଳ ହେଲା। ଆମେ ଦେଖିବା ଜର୍ମାନୀରେ ଅତି ଜଘନ୍ୟ ଧରଣର ଗୃହଯୁଦ୍ଧ ହେଉଥିଲା। ଯାହାଫଳରେ ଦେଶ ଧ୍ୱଂସ ହୋଇଗଲା।

ଫ୍ରାନ୍‌ସରେ ମଧ୍ୟ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଗୃହଯୁଦ୍ଧ ଲାଗିଲା। ଏହାକୁ 'ଫ୍ରୋଣ୍ଡ ଯୁଦ୍ଧ' କହନ୍ତି; କିନ୍ତୁ ରଜା ସାମନ୍ତ ଓ ବଣିକ ଉଭୟଙ୍କୁ ଦମନ କରିଦେଲେ। ସାମନ୍ତ-ମାନଙ୍କର କୌଣସି ପ୍ରକୃତ କ୍ଷମତା ରହିଲା ନାହିଁ, କିନ୍ତୁ ସେମାନଙ୍କୁ ନିଜ ପାଖରେ ରଖିବା ନିମନ୍ତେ ରଜା ତାଙ୍କୁ ଅଗଣିତ ବିଶେଷାଧିକାର ଦେଲେ। ସେମାନେ କାର୍ଯ୍ୟତଃ କୌଣସି ଟିକସ ଦେଉ ନ ଥିଲେ। ସାମନ୍ତ ପୁରୋହିତ ଉଭୟଙ୍କୁ ଟିକସ ମାଫି ଦିଆଯାଉଥିଲା। ସମସ୍ତ କରଭାର ସାଧାରଣ ଲୋକ ବିଶେଷତଃ କୃଷି ସମ୍ପ୍ରଦାୟ ଉପରେ ପଡ଼ୁଥିଲା। ଏହି ଦରିଦ୍ର ଦୁର୍ଦ୍ଦଶାଗ୍ରସ୍ତ ହତଭାଗ୍ୟଙ୍କଠାରୁ ଆଦାୟ ହୋଇଥିବା ଧନରେ

ବଗ୍ଗିଚ ଓ ଚତ୍ତ୍ରକର୍ଷକ ପ୍ରାସାଦମାନ ଉଠିଲା ଏବଂ ରାଜାର ଚତୁଃପାର୍ଶ୍ୱରେ ଅପୂର୍ବ ରାଜଦରବାର ପରବେଷ୍ଟିତ ହେଲା । ଫ୍ୟାରସ ନକଟରେ ଭର୍ସେଇ ଦେଖିଥିବା କଥା ତୋର ମନେ ଅଛି ତ ? ସେଠାରେ ଆମେ ଏବେ ଯେଉଁ ଶ୍ରେଷ୍ଠ ପ୍ରାସାଦ ଚତ୍ର ଦେଖୁ, ସେଗୁଡ଼ିକ ଫରାସୀ କୃଷକର ରକ୍ତରେ ୧୭ଶ ଶତାବ୍ଦୀରେ ଗଢ଼ା ହୋଇଥିଲା । ଭର୍ସେଇ ଏକଛତ୍ର ଓ ଦାୟିତ୍ୱହୀନ ରାଜତନ୍ତ୍ରର ପ୍ରତୀକ ଥିଲା ଏବଂ ଭର୍ସେଇ ଯେ ଫରାସୀ ବପ୍ଲବରେ ଅଗ୍ରଗାମୀ ହୋଇଥିଲା ଏବଂ ସମସ୍ତ ପ୍ରକାର ରାଜତନ୍ତ୍ର ଏହି ବପ୍ଲବରେ ଲୋପ ପାଇଲା, ଏଥିରେ ବିସ୍ମିତ ହେବାର କଛି ନାହିଁ । କନ୍ତୁ ସେ କାଳରେ ବପ୍ଳବ ତଥାପି ବହୁତ ଡେର ଥିଲା । ୧୪ଶ ଲୁଇ ରାଜା ଥିଲେ, ତାଙ୍କୁ ଗ୍ରାଣ୍ଡ ମନାର୍କ (ମହାନ ରାଜା) ବୋଲି କୁହା-ଯାଉଥିଲା—ରେଇସୋଲେଇ-ସୂର୍ଯ୍ୟ ପରି ଯାହାଙ୍କ ଚତୁର୍ଦ୍ଦିଗରେ ରାଜପରଷଦରୂପୀ ଗ୍ରହମାନେ ବୁଲୁଥିଲେ । ସେ ୧୬୦୩ରୁ ୧୭୧୫ ପର୍ଯ୍ୟନ୍ତ ଦୀର୍ଘ ୭୨ ବର୍ଷ କାଳ ରାଜୁତି କରୁଥିଲେ ଏବଂ ଅଉ ଜଣେ କାର୍ଡ଼ିନାଲ, ମାଜାରନ୍ ତାଙ୍କର ପ୍ରଧାନମନ୍ତ୍ରୀ ଥିଲେ । ଉପର ଶ୍ରେଣୀରେ ପ୍ରଚୁର ପରମାଣରେ ବଳାସ ରହିଥିଲା ଓ ସାହିତ୍ୟ, ବଜ୍ଞାନ ଏବଂ କଳା ପ୍ରତ ରାଜକୀୟ ଅନୁଗ୍ରହ ଥିଲା; କନ୍ତୁ ଏହି ଜାକଜକମର ପତଳା ଆବରଣ ତଳେ ଦୁର୍ଦ୍ଦଶା ଓ ଦୁଃଖଭୋଗ ଲାଗି ରହିଥିଲା । ଏହି ଦୁନଆ ଏକ ସୁନ୍ଦର କେଶ ଓ ଅସ୍ତ ଦାଆ ପୂଷ୍କ ପୋଷାକଦ୍ୱାରା ଆବୃତ ହୋଇଥିଲେ ସୁଦ୍ଧା ଏହା କେବେ ଧୂଆଯାଉ ନ ଥିଲା ଏବଂ ମଇଳା ଓ ଗନ୍ଧମୂର୍ତ୍ତି ଥିଲା ।

ଆମେ ସମସ୍ତେ ଆଡ଼ମ୍ବର ଓ ଜାକଜକମରେ ବହୁ ପରମାଣରେ ପ୍ରଭାବତ ହେଉ ଏବଂ ୧୪ଶ ଲୁଇ ନଜର ଦୀର୍ଘ ରାଜୁତି କାଳରେ ୟୁରୋପରେ ଯେ ଖୁବ୍ ପ୍ରଭାବ ବସ୍ତାର କରଥିଲେ, ଏଥିରେ ଅଶ୍ଚର୍ଯ୍ୟ ହେବାର କଛି ନାହିଁ । ସେ ଏକ ଆଦର୍ଶ ରାଜା ଥିଲେ ଏବଂ ଅନ୍ୟମାନେ ତାଙ୍କୁ ଅନୁକରଣ କରବାକୁ ଲାଗିଲେ । କନ୍ତୁ ଏହି ମହାନ ସମ୍ରାଟ କପର ଥିଲେ ? ସୁପରଚତ ଇଂରେଜ ଲେଖକ କାର୍ଲାଇଲ ଲେଖିଛନ୍ତି, "ଚତୁର୍ଦ୍ଦଶ ଲୁଇଙ୍କଠାରୁ ରାଜମୁକୁଟ କାଢ଼ିନଅ ଏବଂ ଦେଖିବ ଯେ ଦୁଇ କୁଆଁଥିବା ମୂଳାର ଅଦ୍ଭୁତ ବଙ୍କ ମସ୍ତକ ଛଡ଼ା ଆଉ କଛି ନାହିଁ ।" ଏହା ଏକ ଅତ କଠୋର ବର୍ଣ୍ଣନା, ସମ୍ଭବତଃ ରାଜା ଓ ସାଧାରଣ ଲୋକଙ୍କ ଭିତରେ ଅଧିକାଂଶଙ୍କ ପ୍ରତ ପ୍ରଯୁଜ୍ୟ ।

ଚତୁର୍ଦ୍ଦଶ ଲୁଇ ୧୭୧୫ ଅର୍ଥାତ୍ ୧୮ଶ ଶତାବ୍ଦୀରେ ଆରମ୍ଭ ପର୍ଯ୍ୟନ୍ତ ରହିଥିଲେ । ଇତ୍ୟବସରେ ୟୁରୋପରେ ଅନ୍ୟ ଦେଶଗୁଡ଼ିକରେ ବହୁତ ଘଟଣା ଘଟିଗଲା ଏବଂ ସେହି ଘଟଣା ପ୍ରତ ଆମର ଦୃଷ୍ଟି ପକାଇବା ଦରକାର ।

ସ୍ପେନ ବରୁଦ୍ଧରେ ନେଦରଲାଣ୍ଡର ବଦ୍ରୋହ ବଷୟ ମୁଁ ତୋତେ ଆଗରୁ କହିଛି । ତାଙ୍କର ନର୍ଭୀକ ସଂଗ୍ରାମ କାହାଣୀ ବନେଷ୍ଟ ଭାବରେ ଅଧ୍ୟୟନ କରବା ଯୋଗ୍ୟ ।

ଜେ. ଏଲ. ମଟଲେ ନାମକ ଜଣେ ଆମେରିକାବାସୀ ଏହି ସ୍ୱାଧୀନତା ସଂଗ୍ରାମ ବିଷୟରେ ଏକ ସୁନ୍ଦର ବିବରଣୀ ଲେଖିଯାଇଛନ୍ତି ଏବଂ ସେ ଏହାକୁ ଅତ୍ୟନ୍ତ ଆଗ୍ରହପ୍ରଦ ଓ ଚିତ୍ତାକର୍ଷକ କାହାଣୀ କରିଛନ୍ତି । ୩୫୦ ବର୍ଷ ପୂର୍ବେ ୟୁରୋପର ଏହି କ୍ଷୁଦ୍ର ରାଜ୍ୟ କୋଣରେ ଯାହା ଘଟିଥିଲା, ତାର ହୃଦୟସ୍ପର୍ଶୀ ବର୍ଣ୍ଣନା ଯେପରି ଭାବରେ ଏହି ଉପନ୍ୟାସରେ କରାଯାଇଛି, ସେପରି ମୁଁ କୌଣସି ଉପନ୍ୟାସ ପୁସ୍ତକ ଦେଖି ନାହିଁ । ସେ ଏହି ବହିର ନାମ "ଡଚ୍ ପ୍ରଜାତନ୍ତ୍ରର ଉଦୟ" ( The rise of the Dutch Requblic ) ଏବେ ମୁଁ ତାହା ଜେଲଖାନାରେ ପଢ଼ିଲି ।

ହଲାଣ୍ଡ ଓ ବେଲଜିୟମ ଉଭୟ ରାଜ୍ୟ ନେଦରଲାଣ୍ଡର ଅନ୍ତର୍ଗତ । ଏଗୁଡ଼ିକର ନାମରୁ ଜଣାପଡ଼େ ଯେ, ଏହା ଅତ୍ୟନ୍ତ ନିମ୍ନଭୂମି । ହଲଣ୍ଡ "ହଲେ ଲଣ୍ଡ" ଅର୍ଥାତ୍ ଫମ୍ପା ମୃତ୍ତିକାରୁ ହୋଇଛି । ପ୍ରକୃତରେ ଏହାର ଅନେକ ଅଞ୍ଚଳ ସମୁଦ୍ର ପତ୍ତନରୁ ବହୁତ ତଳେ ଏବଂ ବିଶାଲ ପ୍ରାଚୀର ଓ ଆନକଟ ଦ୍ୱାରା ଏହାକୁ ଉତ୍ତର ସାଗରରୁ ରକ୍ଷା କରାଯାଇଛି । ଏପରି ଯେଉଁ ଦେଶରେ ବାରମ୍ବାର ସମୁଦ୍ର ସହିତ ଲଢ଼ିବାକୁ ପଡ଼େ, ସେଠାରେ ସମୁଦ୍ରବାସୀ ଜାତି ବଡ଼ ଟାଣୁଆ ହୁଅନ୍ତି ଏବଂ ଯେଉଁ ଲୋକେ ବାରମ୍ବାର ସମୁଦ୍ରଯାତ୍ରା କରନ୍ତି, ସେମାନେ ବେପାରରେ ଲାଗନ୍ତି । ତେଣୁ ନେଦରଲାଣ୍ଡର ଲୋକେ ବେପାର କଲେ । ସେମାନେ ରେଶମ ଓ ଅନ୍ୟ ମାଲ ଆମଦାନୀ କଲେ ଏବଂ ପ୍ରାଚ୍ୟ ଦେଶରୁ ମସଲା ବି ତାଙ୍କ ପାଖକୁ ଗଲା । ବ୍ରୁଜେସ, ଘେଣ୍ଟ ଓ ବିଶେଷ ଭାବରେ ଆଣ୍ଟୱାର୍ପ ପରି ଐଶ୍ୱର୍ଯ୍ୟଶାଳୀ ଓ କାର୍ଯ୍ୟରତ ନଗରମାନ ଗଢ଼ି ଉଠିଲା । ପ୍ରାଚ୍ୟ ଦେଶ ସହିତ ବେପାର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଏହି ନଗରମାନଙ୍କର ସମ୍ପଦ ବୃଦ୍ଧି ହେଲା ଏବଂ ୧୬ଶ ଶତାବ୍ଦୀରେ ଆଣ୍ଟୱାର୍ପ ୟୁରୋପର ବାଣିଜ୍ୟ ସଂକ୍ରାନ୍ତ ରାଜଧାନୀ ହୋଇଗଲା । କଥିତ ଅଛି ଯେ, ଏହାର ବିଜନେସ୍ ଗୃହରେ ପ୍ରତ୍ୟେକ ଦିନ ପରସ୍ପର ସହିତ ବ୍ୟବସାୟ କରିବା ନିମନ୍ତେ ୫୦୦୦ ବଣିକ ଏକାଠି ହେଉଥିଲେ; ଏହାର ବନ୍ଦରରେ ଏକ ସମୟରେ ୨୫୦୦ ପୋତ ରହୁଥିଲା । ପ୍ରତିଦିନ ଏଠାକୁ ପ୍ରାୟ ୫୦୦ ପୋତ ଆସୁଥିଲା ଓ ଯାଉଥିଲା । ଏହି ବଣିକ ଶ୍ରେଣୀ ନଗର ସରକାରଗୁଡ଼ିକୁ ନିୟନ୍ତ୍ରଣ କରୁଥିଲେ ।

ଏହି ପ୍ରକାର ବେପାରୀ ସଂପ୍ରଦାୟ ହିଁ ନୂତନ ଧର୍ମସଂସ୍କାର ଭାବ ପ୍ରତି ଆକୃଷ୍ଟ ହୁଅନ୍ତି । ପ୍ରୋଟେଷ୍ଟାଣ୍ଟ ଧର୍ମ ଏଠାରେ ବିଶେଷତଃ ଉତ୍ତରରେ ପ୍ରସାର ହେଲା । ଉତ୍ତରାଧିକାର ସୂତ୍ରେ ହାପ୍ସବର୍ଗ ୫ମ ଚାର୍ଲସ ଓ ତାଙ୍କ ପରେ ତାଙ୍କ ପୁତ୍ର ୨ୟ ଫିଲିପ ନେଦରଲାଣ୍ଡର ଶାସକ ହୋଇଥିଲେ । ତାଙ୍କ ଭିତରୁ କେହି ରାଜନୈତିକ ବା ଧାର୍ମିକ କୌଣସି ପ୍ରକାର ସ୍ୱାଧୀନତା ସହ୍ୟ କରୁ ନ ଥିଲେ । ଫିଲିପ ନଗର ତଥା ନୂତନ ଧର୍ମ ବିଶେଷାଧିକାର ସବୁ ଦମନ କରିଦେବା ନିମନ୍ତେ ଚେଷ୍ଟା କରୁଥିଲେ । ସେ ଆଲଭାର ଡିଉକ୍‌ଙ୍କୁ ଗଭର୍ଣ୍ଣର

ଜେନେରାଲ କରି ପଠାଇଲେ । ଏହି ବ୍ୟକ୍ତି ନିଜର ଅତ୍ୟାଚାର ଓ ଦମନ ନିମନ୍ତେ ପ୍ରସିଦ୍ଧି ଲାଭ କରିଥିଲେ । ଇନ୍‌କ୍ୟୁଇଜିସନ୍ ସ୍ଥାପିତ ହେଲା ଏବଂ ଏକ "ରକ୍ତ ପରିଷଦ" ହେଲା, ଏତଦ୍ୱାରା ସହସ୍ର ସହସ୍ର ଲୋକଙ୍କୁ ଶୂଳୀ ଦିଆଗଲା ।

ଏହା ଏକ ଦୀର୍ଘ କାହାଣୀ ଓ ମୁଁ ଏଠାରେ ବର୍ଣ୍ଣନା କରିପାରିବି ନାହିଁ । ସ୍ପେନର ଅତ୍ୟାଚାର ବଢ଼ିବା ସଙ୍ଗେ ସଙ୍ଗେ ଏହା ବିରୁଦ୍ଧରେ ଲୋକଙ୍କର କ୍ରୋଧ ମଧ୍ୟ ବୃଦ୍ଧି ହେଲା । ଏମାନଙ୍କ ଭିତରେ ଜଣେ ଶ୍ରେଷ୍ଠ ଓ ଜ୍ଞାନୀ ନେତା ବାହାରିଲେ—ତାଙ୍କ ନାମ ହେଉଛି ଅରେଞ୍ଜର ପ୍ରିନ୍‌ସ ୱିଲିୟମ୍ । ସେ 'ନୀରବ ୱିଲିୟମ୍' ନାମରେ ପରିଚିତ । ସେ ଆଲଭା ଭିତରଙ୍କ ସମକକ୍ଷ ଥିଲେ । ପ୍ରକୃତରେ ୧୫୬୮ରେ ଇନ୍‌କ୍ୟୁଇଜିସନ୍‌ର ଏକ ଦଣ୍ଡାଦେଶରେ କେବଳ କେତେକ ନିର୍ଦ୍ଦିଷ୍ଟ ଲୋକଙ୍କ ବ୍ୟତୀତ ନେଦରଲାଣ୍ଡର ସମଗ୍ର ଅଧିବାସୀଙ୍କୁ ବିଧର୍ମୀ ବୋଲି ମୃତ୍ୟୁ ଶାସ୍ତି ଦେବାର ଘୋଷଣା ହୋଇଥିଲା । ଏହା ଏକ ଅଦ୍ଭୁତ ଶାସ୍ତି ଓ ଇତିହାସରେ ଅନୁପମ । ତିନି ବା ଚାରିଟି ଧାଡ଼ିରେ ୩୦ ଲକ୍ଷ ଲୋକଙ୍କୁ ମୃତ୍ୟୁଦଣ୍ଡ !

ପ୍ରଥମେ ନେଦରଲାଣ୍ଡର ସାମନ୍ତ ଓ ସ୍ପେନର ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଲାଗିଥିଲା ପରି ମନେ ହେଉଥିଲା । ଏହା ପ୍ରାୟ ଅନ୍ୟ ଦେଶମାନଙ୍କରେ ରାଜା ଓ ସାମନ୍ତମାନଙ୍କ ମଧ୍ୟରେ ଚାଲିଥିବା ସଂଗ୍ରାମ ପରି ହୋଇଥିଲା । ଆଲଭା ଏହାକୁ ଦମନ କରିବାକୁ ଚେଷ୍ଟା କରିଥିଲେ ଏବଂ ଅନେକ ସାମନ୍ତଙ୍କୁ ବ୍ରସେଲସଠାରେ ଶୂଳୀ ଚଢ଼ିବାକୁ ପଡ଼ିଥିଲା । କାଉଣ୍ଟ୍ ଇଗ୍‌ମଣ୍ଟ ନାମକ ଜଣେ ଲୋକପ୍ରିୟ ଓ ବିଖ୍ୟାତ ସାମନ୍ତଙ୍କୁ ମୃତ୍ୟୁ ଶାସ୍ତି ଦିଆଯାଇଥିଲା । ତାପରେ ଆଲଭାଙ୍କ ଅର୍ଥାଭାବ ଘଟିବାରୁ ସେ ନୂତନ ଅତ୍ୟଧିକ ଟିକସ ବସାଇବାର ଚେଷ୍ଟା କଲେ । ଏହା ବଣିକ ଶ୍ରେଣୀଙ୍କ ଉପରେ ପଡ଼ିଲା ଏବଂ ସେମାନେ ବିଦ୍ରୋହ କଲେ । ଏହା ସାଙ୍ଗକୁ ପୁଣି କ୍ୟାଥଲିକ ଓ ପ୍ରୋଟେଷ୍ଟାଣ୍ଟଙ୍କ ମଧ୍ୟରେ ସଂଗ୍ରାମ ଲାଗିଥିଲା ।

ସ୍ପେନ ଏକ ପ୍ରବଳ ପରାକ୍ରାନ୍ତ ଶକ୍ତି ଥିଲା । ଏହାର ନିଜର ବଡ଼ପଣିଆ ଲାଗି ଗର୍ବ ଥିଲା । ନେଦରଲାଣ୍ଡ ଥିଲା ମୁଷ୍ଟିମେୟ ବଣିକ, ଅକର୍ମଣ୍ୟ ଓ ବିଳାସୀ ସାମନ୍ତମାନେ ବାସ କରୁଥିବା ଅଳ୍ପ କେତେକ ପ୍ରଦେଶ ମାତ୍ର । ଦୁହିଁଙ୍କ ଭିତରେ କୌଣସି ତୁଳନା କରାଯାଇ ପାରେ ନାହିଁ । ତଥାପି ସ୍ପେନ ଏହାକୁ ଦମନ କରିବାକୁ କଷ୍ଟକର ବୋଧ କଲା । ବାରମ୍ବାର ହତ୍ୟାକାଣ୍ଡ ହୋଇଥିଲା । ସମଗ୍ର ଲୋକସଂଖ୍ୟା ମୂଳପୋଛ ହୋଇଗଲେ । ଆଲଭା ଓ ତାଙ୍କର ସେନାପତିମାନେ ମନୀଷ ଜୀବନ ଧ୍ୱଂସ କରିବାରେ ଚେଙ୍ଗିଜ ଖାଁ ଓ ତୈମୁରଙ୍କୁ ବଳି ପଡ଼ିଲେ । ଅନେକ ସମୟରେ ସେ ମଙ୍ଗୋଲମାନଙ୍କଠାରୁ ଅଧିକ ବେଶୀ ଦୂର ଯାଇଥିଲେ । ଆଲଭା ନଗର ପରେ ନଗର ଅବରୋଧ କଲେ ଏବଂ ଅଶିକ୍ଷିତ ଲୋକେ ଏପରି କି ନଗରର ନାରୀମାନେ ଜଳ ଓ ସ୍ଥଳ ଉଭୟ କ୍ଷେତ୍ରରେ ଆଲଭାଙ୍କ ପ୍ରଶିକ୍ଷିତ ସେନାଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଶେଷରେ ଅର୍ଥାଭାବ ହିଁ ତାଙ୍କ ପକ୍ଷରେ ଯୁଦ୍ଧ ଚଲାଇବା ଅସମ୍ଭବ କରିଦେଲା । ସ୍ପେନ କବଳରେ ପଡ଼ିବା ଅପେକ୍ଷା ତାଙ୍କ ପାଖରେ

ଆଉ ଯାହା କିଛି ଥିଲା, ତାହା ଧ୍ୱଂସ ହେବା ଶ୍ରେୟସ୍କର ବୋଲି ବିଦ୍ରୋହୀ ହଲାଣ୍ଡବାସୀ ବିଚାର୍ଗ କଲେ ଏବଂ ଉତ୍ତର ସାଗରର ପାଣି ମାଡ଼ିଆସି ସ୍ପେନ ସେନାକୁ ବୁଡ଼ାଇ ଦେବାଲାଗି ଓ ତଡ଼ିଦେବା ଲାଗି ଆଶା ବାନ୍ଧିଲେ । ସଂଗ୍ରାମ ଚାଲିବା ସଙ୍ଗେ ସଙ୍ଗେ ଅଧିକରୁ ଅଧିକ ନିର୍ମମ ହୋଇପଡ଼ି ଏବଂ ଉଭୟ ପକ୍ଷ ଅତ୍ୟନ୍ତ ନିଷ୍ଠୁର ହେଲେ । ସୁନ୍ଦର ହାରଲେମ ନଗର ଅବରୋଧ ଶେଷ ପର୍ଯ୍ୟନ୍ତ ସାହସର ସହିତ ରକ୍ଷା କରାଯାଇଥିଲା । କିନ୍ତୁ ଶେଷରେ ସ୍ପେନ ସୈନ୍ୟମାନେ ବ୍ୟାପକ ହତ୍ୟା ଓ ଲୁଣ୍ଠନରେ ଏହାକୁ ଧ୍ୱଂସ କରି ଦେଇଥିଲେ; ଆଲକାମ ର ଅବରୋଧ ଦୃଢ଼ ବନ୍ଧଗୁଡ଼ିକ ସକାଶେ ରକ୍ଷା ହୋଇଯାଇଥିଲା ଏବଂ ଲିଏଡ଼େନ ଶତ୍ରୁ ପରିବେଷ୍ଟିତ ହୋଇ ଅନାହାର ଓ ରୋଗ ହେତୁ ହଜାରେ ଲୋକ ମରି ଯାଉଥିଲେ । ଲିଏଡ଼େନର ବୃକ୍ଷମାନଙ୍କରେ କୌଣସି ଗୋଟିଏ ସବୁଜ ପତ୍ର ରହି ନ ଥିଲା । ସବୁ ସେମାନେ ଖାଇ ଯାଇଥିଲେ । ନରନାରୀ ଉଚ୍ଛିଷ୍ଟ ଖାଇବା ପାଇଁ କୁକୁରମାନଙ୍କ ସହିତ ଝଗଡ଼ା କରୁଥିଲେ । ତଥାପି ସେମାନେ ନିଜକୁ ରକ୍ଷା କରି ପାରୁଥିଲେ ଏବଂ ଏହି କ୍ଷୀଣ କ୍ଷୁଧିତ ଲୋକେ ଶତ୍ରୁ ବିରୁଦ୍ଧରେ ଲଢ଼ାଇ କଲେ ଏବଂ ସେମାନେ ସ୍ପେନବାସୀଙ୍କୁ ଜଣାଇ ଦେଲେ ଯେ, ଆମେ ବରଂ ମୂଷା, କୁକୁର ଓ ଅନ୍ୟ ଯେ କୌଣସି ଜିନିଷ ଖାଇ ବଞ୍ଚିବୁ, ମାତ୍ର ଆତ୍ମସମର୍ପଣ କରିବୁ ନାହିଁ । ଯେତେବେଳେ ଆମ ଛଡ଼ା ଆଉ ସବୁ ଧ୍ୱଂସ ପାଇଯିବ ତେବେ ନିଶ୍ଚୟ ଜାଣିଥା, ଆମେ ପ୍ରତ୍ୟେକ ଆମର ବାମହସ୍ତ ଖାଇ ବିଦେଶୀ ଅତ୍ୟାଚାରଠାରୁ ଆମର ନାରୀ, ଆମର ସ୍ୱାଧୀନତା ଓ ଆମର ଧର୍ମ ରକ୍ଷା କରିବା ଲାଗି ଦକ୍ଷିଣ ହସ୍ତ ଚାଳନା କରୁଥିବୁ । ଭଗବାନ ଯଦି ଅଭିଶାପ ଦେଇ ଆମକୁ ଧ୍ୱଂସ କରି ଦିଅନ୍ତି ଏବଂ କୌଣସି ପ୍ରକାର ମୁକ୍ତି ନ ଦିଅନ୍ତି, ସେତେବେଳେ ମଧ୍ୟ ଆମେ ସର୍ବଦା ତମର ପ୍ରବେଶ ବିରୁଦ୍ଧରେ ନିଜର ଶକ୍ତି ଚାଳନା କରିବୁ । ଯେତେବେଳେ ଶେଷ ଅବସ୍ଥା ପହଞ୍ଚିବ, ସେତେବେଳେ ଆମେ ନିଜ ହାତରେ ନଗରରେ ନିଆଁ ଲଗାଇ ଦେବୁ ଓ ଆମର ଗୃହ ସବୁକୁ ଦୂଷିତ କରିବା ଅପେକ୍ଷା ଏବଂ ଆମର ସ୍ୱାଧୀନତାକୁ ଦମନ କରାଇବା ଅପେକ୍ଷା ସେହି ଅଗ୍ନିରେ ନରନାରୀ ଓ ସନ୍ତାନ ସମସ୍ତଙ୍କୁ ଏକତ୍ର ଜାଳି ଧ୍ୱଂସ କରିଦେବୁ ।

ଲିଏଡ଼େନ ଲୋକଙ୍କର ଏହିପରି ଉତ୍ସାହ ଥିଲା; କିନ୍ତୁ ଦିନ ପରେ ଦିନ କୌଣସି ପ୍ରକାର ନୂତନ ନ ହେବାରୁ ସେଠାରେ ହତାଶା ଆସିଗଲା ଏବଂ ସେମାନେ ଲିଏଡ଼େନ ବାହାରେ ଥିବା ହଲାଣ୍ଡ ଇଷ୍ଟେଟମାନଙ୍କର ବନ୍ଧୁମାନଙ୍କ ନିକଟକୁ ବାର୍ତ୍ତା ପ୍ରେରଣ କଲେ । ଇଷ୍ଟେଟଗୁଡ଼ିକ ଶତ୍ରୁ ହାତରେ ଲିଏଡ଼େନର ପତନ ହେବାକୁ ଛାଡ଼ିଦେବା ଅପେକ୍ଷା ନିଜର ପ୍ରିୟ ଭୂମିକୁ ବୁଡ଼ାଇ ଦେବାର ମହାନ ସିଦ୍ଧାନ୍ତ ନେଲେ । "ଏକ ପରାଜିତ ଭୂମି ଅପେକ୍ଷା ଜଳମଗ୍ନ ଭୂମି ଶ୍ରେୟସ୍କର ।" ତାଙ୍କ ଭିତରେ ସର୍ବାପେକ୍ଷା ନିର୍ଯ୍ୟାତିତ ନଗର ଲିଏଡ଼େନ ନିକଟକୁ ସେମାନେ ଏହି ସନ୍ଦେଶ ପଠାଇଲେ । "ଆମେ ବରଂ ଆମର ସମଗ୍ର ଭୂମି ଓ ସମଗ୍ର ସମ୍ପଦ ସମୁଦ୍ର ପ୍ରବାହରେ ଧ୍ୱଂସ ହୋଇଯିବାର ଦେଖିବୁ; ମାତ୍ର ଲିଏଡ଼େନ, ତୋତେ ଆମେ ଛାଡ଼ିପାରିବୁ ନାହିଁ ।"

ଶେଷରେ ବନ୍ଧ ପରେ ବନ୍ଧ ଭାଙ୍ଗି ଦିଆଗଲା ଏବଂ ଅନୁକୂଳ ବାୟୁ ସାହାଯ୍ୟରେ ସମୁଦ୍ର ଜଳ ଭିତରକୁ ମାଡ଼ିଆସିଲା ଓ ଡଚ୍ ଜାହାଜସବୁ ଖାଦ୍ୟ ଏବଂ ସାହାଯ୍ୟ ନେଇ ଆସି ପହଞ୍ଚିଲା । ସ୍ପେନ ସେନାମାନେ ଏହି ନୂତନ ଶତ୍ରୁ ସମୁଦ୍ରକୁ ଭୟ କରି ତରତର ହୋଇ ପଳାଇଗଲେ । ତେଣୁ ଲିଏଡେନ ବଞ୍ଚିଗଲା ଏବଂ ସେ ଅଧିବାସୀମାନେ ସାହସର ସ୍ମୃତି ସ୍ୱରୂପ ୧୫୭୫ ଖ୍ରୀଷ୍ଟାବ୍ଦରେ ଲିଏଡେନ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା, ଏହା ସେହି ଦିନରୁ ପ୍ରସିଦ୍ଧ ହୋଇଛି ।

ଅନେକ ସାହସ ଓ ପ୍ରଚଣ୍ଡ ହତ୍ୟାକାଣ୍ଡର କାହାଣୀ ରହିଛି । ସୌନ୍ଦର୍ଯ୍ୟଶାଳୀ ଆଣ୍ଟୱର୍ପରେ ନିର୍ମମ ହତ୍ୟା ଓ ଲୁଟ୍ ହୋଇଥିଲା । ୮୦୦୦ ଲୋକ ନିହତ ହୋଇଥିଲେ । ଏହାକୁ "ସ୍ପେନ କ୍ରୋଧ" ବୋଧ କୁହାଯାଏ ।

କିନ୍ତୁ ବିପ୍ଳବ ସଂଗ୍ରାମ ସହିତ ଅଧିକ ପରିମାଣରେ ହଲାଣ୍ଡ ଚଲାଇଥିଲା, ନେଦରଲାଣ୍ଡର ଦକ୍ଷିଣାଞ୍ଚଳ ନୁହେଁ । ସ୍ପେନ ଶାସକଙ୍କ ବ୍ୟବହାର ଓ ବଳପ୍ରୟୋଗ ଦ୍ୱାରା ନେଦରଲାଣ୍ଡର ଅନେକ ସାମନ୍ତଙ୍କୁ ସେମାନେ ହାତ କରିପାରିଥିଲେ, ଏବଂ ସେମାନେ ନିଜ ଦେଶ ଲୋକଙ୍କୁ ଦବାଇଲେ । ଦକ୍ଷିଣରେ ପ୍ରୋଟେଷ୍ଟାଣ୍ଟ ଅପେକ୍ଷା କାଥଲିକ ଅଧିକ ଥିବାରୁ ସେମାନେ ସାହାଯ୍ୟ ପାଇଥିଲେ । ସେମାନେ କାଥଲିକମାନଙ୍କୁ ହାତ କରିବାକୁ ଚେଷ୍ଟା କଲେ ଏବଂ ଆଂଶିକ ଭାବରେ କୃତକାର୍ଯ୍ୟ ହେଲେ । ସାମନ୍ତମାନେ ନିଜର ଦେଶ ଧ୍ୱଂସ ପାଇଯାଉଥିଲେ ସୁଦ୍ଧା ସ୍ପେନ ରାଜାଙ୍କଠାରୁ ଅନୁଗ୍ରହ ଓ ସମ୍ପଦ ନିଜ ପାଇଁ ଲାଭ କରିବା ନିମନ୍ତେ ଯେପରି କୌଶଳ ଓ ଚକ୍ରାନ୍ତ କରିଥିଲେ, ତାହା ଅତ୍ୟନ୍ତ ଲଜ୍ଜାଜନକ ।

ନେଦରଲାଣ୍ଡର ସାଧାରଣ ସଭାରେ ବକ୍ତୃତା ଦେଇ ଅରେଞ୍ଜ୍‌ର ୱିଲିୟମ କହିଥିଲେ, "ନେଦରଲାଣ୍ଡ ଦ୍ୱାରା ହିଁ କେବଳ ନେଦରଲାଣ୍ଡ ଦମନ ହେଲା । ଆଲଭାର ଡିଉକ୍‌ଙ୍କ ହାତରେ ଯେଉଁ ଶକ୍ତି ଥିଲା ବୋଲି ସେ ଆସ୍ଫାଳନ କରନ୍ତି, ତାହା ସେ କେଉଁଠୁ ପାଇଥିଲେ ? ତମଠାରୁ—ନେଦରଲାଣ୍ଡ ସହରମାନଙ୍କରୁ । କେଉଁଠୁ ଜାହାଜ, ସରବରାହ ଅର୍ଥ, ଅସ୍ତ୍ରଶସ୍ତ୍ର ଓ ଯୋଦ୍ଧା ପାଇଲେ ? ନେଦରଲାଣ୍ଡ ଲୋକଙ୍କଠାରୁ ।"

ତେଣୁ ଅବଶେଷରେ ଆଜି ମୋଟାମୋଟି ନେଦରଲାଣ୍ଡର ଯେଉଁ ଅଂଶଟି ବେଲ୍‌ଜିୟମ୍ ନାମରେ ପରିଚିତ ସ୍ପେନବାସୀ ସେ ଅଂଶଟି ପାଇବାରେ ସମର୍ଥ ହୋଇଥିଲେ । କିନ୍ତୁ ସେମାନେ ଚେଷ୍ଟା କରିଥିଲେ ସୁଦ୍ଧା ହଲାଣ୍ଡକୁ ବଶ କରିପାରି ନ ଥିଲେ । ବିଚିତ୍ର କଥା ଯେ ସଂଗ୍ରାମ ସାରା ଏପରି ଶେଷ ପର୍ଯ୍ୟନ୍ତ ହଲାଣ୍ଡ ସ୍ପେନର ଦ୍ୱିତୀୟ ଫିଲିପଙ୍କ ଅଧିକାର ଦାବୀ ଅମାନ୍ୟ କରୁ ନ ଥିଲା । ସେ ଯଦି ସେମାନଙ୍କର ସ୍ୱାଧୀନତା ସ୍ୱୀକାର କରନ୍ତି, ତାହା ହେଲେ ରାଜା ରୂପେ ରଖିବା ଲାଗି ସେମାନେ ପ୍ରସ୍ତୁତ ଥିଲେ । ଅବଶେଷରେ ତାଙ୍କଠାରୁ ନିଜକୁ ବଳପୂର୍ବକ ବିଚ୍ଛିନ୍ନ କରିବାକୁ ସେମାନେ ବାଧ୍ୟ ହୋଇଥିଲେ । ସେମାନେ ତାଙ୍କର ପ୍ରଧାନ ନେତା ଇଂଲଣ୍ଡ଼ିୟମଙ୍କଠାରେ ମୁକୁଟ ଅର୍ପଣ କଲେ; କିନ୍ତୁ ସେ ତାହା ନେଲେ ନାହିଁ । ତେଣୁ

ପ୍ରାପ୍ତ ତାଙ୍କ ଇଚ୍ଛା ବିରୁଦ୍ଧ ପରିସ୍ଥିତିଭାବେ ବାଧ୍ୟ ହୋଇ ତାହା ଏକ ପ୍ରଜାତନ୍ତ୍ର ହେଲା । ସେ କାଳର ରାଜତନ୍ତ୍ରର ମୋହ ଏତେ ବେଶୀ ଥିଲା ।

ହଲାଣ୍ଡରେ ଅନେକ ବର୍ଷ ପର୍ଯ୍ୟନ୍ତ ସଂଗ୍ରାମ ଚାଲିଲା । ୧୬୦୯ ପର୍ଯ୍ୟନ୍ତ ହଲାଣ୍ଡ ସ୍ୱାଧୀନ ହୋଇ ନ ଥିଲା । କିନ୍ତୁ ୧୫୬୭ ରୁ ୧୫୮୪ ପର୍ଯ୍ୟନ୍ତ ନେଦରଲାଣ୍ଡରେ ପ୍ରକୃତ ଯୁଦ୍ଧ ଲାଗିଲା । ସ୍ପେନର ଦ୍ୱିତୀୟ ଫିଲିପ ଅରେଞ୍ଜର ଉଇଲିୟମଙ୍କୁ ପରାସ୍ତ କରିବାରେ ଅସମର୍ଥ ହୋଇ ଏକ ହତ୍ୟାକାରୀ ଦ୍ୱାରା ତାଙ୍କୁ ନିହତ କଲେ । ସେ ତାଙ୍କର ହତ୍ୟା ପାଇଁ ପ୍ରକାଶ୍ୟ ଭାବରେ ପୁରସ୍କାର ଘୋଷଣା କରୁଥିଲେ । ସେତେବେଳେ ଇଉରୋପରେ ଏହିପରି ନୈତିକତା ଥିଲା । ଉଇଲିୟମଙ୍କୁ ହତ୍ୟା କରିବା ନେଇ ଅନେକ ଚେଷ୍ଟା ବିଫଳ ହେଲା । ୧୫୮୪ ରେ ସେହି ଉଦ୍ୟମଟି କୃତକାର୍ଯ୍ୟ ହେଲା ଏବଂ 'ଟିଟା ଉଇଲିୟମ' ନାମରେ ସାରା ହଲାଣ୍ଡରେ ପରିଚିତ ସେହି ମହାନ ପୁରୁଷ ପ୍ରାଣ ହରାଇଲେ; କିନ୍ତୁ ସେ ତାଙ୍କର କାର୍ଯ୍ୟ କରିଥିଲେ । ତ୍ୟାଗ ଓ କଷ୍ଟଭୋଗ ଜରିଆରେ ଉକ୍ତ ପ୍ରଜାତନ୍ତ୍ର ଆଗ୍ରହୀ ହୋଇଥିଲା ଅତ୍ୟାଚାରୀ ଓ ସ୍ୱେଚ୍ଛାଚାରୀର ପ୍ରତିରୋଧ କରିବାଦ୍ୱାରା ଦେଶଲୋକଙ୍କ ହିତ ହୁଏ । ଏହା ଶିକ୍ଷାଦାନ କରେ ଏବଂ ଶକ୍ତି ଦାନ କରେ । ହଲାଣ୍ଡ ବଳଶାଳୀ ଓ ଆତ୍ମନିର୍ଭରଶୀଳ ହୋଇଥିବାରୁ ତତ୍‌କ୍ଷଣାତ୍ ଏକ ପ୍ରଧାନ ନୌଶକ୍ତି ହେଲା ଏବଂ ସୁଦୂର ପ୍ରାଚ୍ୟ ପର୍ଯ୍ୟନ୍ତ ବିସ୍ତୃତି ଲାଭ କଲା । ହଲାଣ୍ଡରୁ ବିଚ୍ଛିନ୍ନ ହୋଇ ବେଲ୍‌ଜିୟମ୍ ସ୍ପେନ ଶାସନ ଅଧୀନରେ ରହିଲା ।

ଇଉରୋପର ଚିତ୍ର ପୂର୍ଣ୍ଣ କରିବା ନିମନ୍ତେ ଆମେ ଜର୍ମାନୀ ପ୍ରତି ନଜର ପକାଇବା । ୧୬୧୮ ରୁ ୧୬୪୮ ପର୍ଯ୍ୟନ୍ତ ଏଠାରେ ଏକ ପ୍ରଚଣ୍ଡ ଗୃହଯୁଦ୍ଧ ଲାଗିଥିଲା । ଏହାକୁ ୩୦ ବର୍ଷିଆ ଯୁଦ୍ଧ କହନ୍ତି । ଏହା କାଥଲିକ ଓ ପ୍ରୋଟେଷ୍ଟାଣ୍ଟଙ୍କ ମଧ୍ୟରେ ହୋଇଥିଲା ଏବଂ ଜର୍ମାନୀର କ୍ଷୁଦ୍ର କ୍ଷୁଦ୍ର ରାଜା ଓ ନିର୍ବାଚିତ ବ୍ୟକ୍ତିମାନେ ପରସ୍ପର ଭିତରେ ଓ ସମ୍ରାଟଙ୍କ ସହିତ ଲଢୁଥିଲେ; ଫ୍ରାନ୍ସର କାଥଲିକ୍ ରାଜା ଏହି ଗୋଳମାଳକୁ ଆହୁରି ବଢାଇଦେବା ନିମନ୍ତେ ଟିକିଏ ପ୍ରୋଟେଷ୍ଟାଣ୍ଟଙ୍କ ପକ୍ଷ ନେଉଥିଲେ, ଶେଷରେ 'ଉତ୍ତରର ସିଂହ' ରୂପେ କଥିତ ସୁଇଡେନ ରାଜା ଗୁସ୍ତାଭସ ଏଡଲଫସ୍ ଆସି ସମ୍ରାଟଙ୍କୁ ପରାସ୍ତ କଲେ; ସେ ଏହିରୂପେ ପ୍ରୋଟେଷ୍ଟାଣ୍ଟମାନଙ୍କୁ ରକ୍ଷା କଲେ । କିନ୍ତୁ ଜର୍ମାନୀ ଦେଶ ଧ୍ୱଂସ ହୋଇଗଲା । ବେତନଭୋଗୀ ସୈନିକମାନେ ଦସ୍ୟୁ ପରି କାମ କରୁଥିଲେ । ସେମାନେ ଲୁଟତରାଜ ଚଳାଇଥିଲେ । ଏପରିକି ସୈନ୍ୟ ବାହିନୀର ସେନାପତିମାନଙ୍କ ପାଖରେ ନିଜର ସୈନିକଙ୍କୁ ଦରମା ଦେବା ବା ଏପରି କି ଖାଦ୍ୟ ଯୋଗାଇବା ପାଇଁ ପାଖରେ କିଛି ଅର୍ଥ ନ ଥିବାରୁ ଲୁଟ ଆରମ୍ଭ କଲେ । ଥରେ ଚିନ୍ତା କର ତ ଏହା ୩୦ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା; ବର୍ଷ ବର୍ଷ ଧରି ହତ୍ୟାକାଣ୍ଡ, ଧ୍ୱଂସ ଓ ଲୁଟ ଚାଲିଲା । ସେଠାରେ ପ୍ରାୟ କୌଣସି ବେପାର ଚାଲିପାରୁ ନ ଥିଲା; କୌଣସି ପ୍ରକାର କୃଷି ପ୍ରାୟ ହୋଇପାରୁ ନ ଥିଲା । ତେଣୁ ସେଠାରେ ଖାଦ୍ୟ କମିଗଲା ଏବଂ ଅନାହାର ଅଧିକରୁ ଅଧିକ ବଢିଲା । ଏହାର ଫଳରେ ହିଁ ଦସ୍ୟୁ

ହତ୍ୟା ବଢ଼ିଲା ଓ ଲୁଟ ଅଧିକ ହେଲା । ପେଶାଦାର ଓ ଭଡ଼ାଟିଆ ସୈନିକଙ୍କ ପକ୍ଷରେ ଜର୍ମାନୀ ଏକ ପ୍ରକାର ଲୀଳାକ୍ଷେତ୍ର ହେଲା ।

ଶେଷରେ ଏହି ଯୁଦ୍ଧ ଶେଷ ହେଲା । ସମ୍ଭବତଃ ସେତେବେଳେ ଆଉ କିଛି ଲୁଣ୍ଠନ କରିବାକୁ ବାକୀ ନ ଥିବାରୁ ଏହା ହେଲା । କିନ୍ତୁ ପୁନର୍ବାର ଏଥିରୁ ମୁକ୍ତିଲାଭ କରିବାକୁ ଏକତ୍ର କରିବା ନିମନ୍ତେ ଜର୍ମାନୀକୁ ଦୀର୍ଘକାଳ ଲାଗିଗଲା । ୧୬୪୮ରେ ଓ୍ୱେଷ୍ଟଫାଲିଆ ସନ୍ଧି ଫଳରେ ଜର୍ମାନ ଗୃହଯୁଦ୍ଧ ଶେଷ ହେଲା । ଏହାଦ୍ୱାରା ପବିତ୍ର ରୋମାନ୍ ସାମ୍ରାଜ୍ୟର ସମ୍ରାଟ ଏକ ଶକ୍ତିହୀନ ଛାୟା ଓ ଭୂତ ସ୍ୱରୂପ ରହିବେ । ଫ୍ରାନ୍ସ ଆଲସେସ୍ ନାମକ ଏକ ବଡ଼ ଅଂଶ ନେଲା; ଏହାକୁ ଦୁଇ ଶହ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ରଖିଥିଲା ଏବଂ ତାପରେ ଏକ ନୂତନ ଜର୍ମାନୀକୁ ଏହା ଫେରାଇ ଦେବା ନିମନ୍ତେ ବାଧ୍ୟ ହୋଇଥିଲା; ପୁନର୍ବାର ୧୯୧୪ରୁ ୧୮ ମହାସମରରେ ଏହାକୁ ଫେରାଇ ନେଲା । ତେଣୁ ଏହି ସନ୍ଧି ଫଳରେ ଫ୍ରାନ୍ସ ଲାଭବାନ ହେଲା । କିନ୍ତୁ ଜର୍ମାନୀରେ ଅନ୍ୟ ଏକ ଶକ୍ତିର ଉଦୟ ହେଲା, ଯାହା ଫ୍ରାନ୍ସ ପକ୍ଷରେ ଏକ କଣ୍ଟକ ସ୍ୱରୂପ ରହିଲା । ଏହା ହେଉଛି ହୋହେନ୍‌ଜୋଲର୍ଣ୍ଣ ବଂଶଦ୍ୱାରା ଶାସିତ ପ୍ରୁସିଆ ରାଜ୍ୟ ।

ଓ୍ୱେଷ୍ଟଫାଲିଆର ସନ୍ଧି ଶେଷରେ ସ୍ୱିଜରଲାଣ୍ଡ ଓ ହଲାଣ୍ଡ ପ୍ରଜାତନ୍ତ୍ରକୁ ସ୍ୱୀକାର କଲା ।

ଯୁଦ୍ଧ, ହତ୍ୟାକାଣ୍ଡ, ଲୁଣ୍ଠନ ଓ ଧର୍ମାନ୍ଧତାର କାହାଣୀ ସବୁ ମୁଁ ତୋତେ କହୁଛି; ଅଥଚ ପୁନର୍ଜାଗରଣର ଠିକ୍ ପରେ ୟୁରୋପରେ ଏତେ ଅଧିକ ତେଜ, କଳା ଓ ସାହିତ୍ୟର ଉନ୍ନତି ଦେଖାଯାଇଥିଲା । ମୁଁ ଇଉରୋପକୁ ଏସିଆ ରାଜ୍ୟଗୁଡ଼ିକ ସହିତ ତୁଳନା କରିଛି ଏବଂ ନୂତନ ଜୀବନ କିପରି ୟୁରୋପରେ ଚାଞ୍ଚଲ୍ୟ ସୃଷ୍ଟି କରିଛି ତାହା ଦର୍ଶାଇଛି । ଏହି ନୂତନ ଜୀବନଟି ସଂଗ୍ରାମ ନେଇ ଚିବାକୁ ଚେଷ୍ଟା କରିଛି । ଏକ ନୂତନ ଶିଳ୍ପ ଓ ନୂତନ ବ୍ୟବସ୍ଥାର ଜନ୍ମବେଳେ ଅନେକ କଷ୍ଟ ଭୋଗ କରିବାକୁ ପଡ଼େ । ଯେତେବେଳେ ମୂଳରେ ଅର୍ଥନୈତିକ ଅନିଶ୍ଚିତତା ରହିଥାଏ, ସେତେବେଳେ ଉପରେ ସମାଜ ଓ ରାଜନୀତି ଦୋହଲିଯାଏ । ଇଉରୋପରେ ଯେ ଏକ ନୂତନ ଜୀବନ ଖେଳୁଥିଲା; ଏହା ସ୍ପଷ୍ଟ କଥା । କିନ୍ତୁ ଚତୁର୍ଦ୍ଦିଗରେ କି ବର୍ବର ବ୍ୟବହାର, କି ବର୍ବର ଆଚରଣ ! ସେତେବେଳେ ଏକ ପ୍ରଚଳିତ ପ୍ରଥା କଥା ଥିଲା ଯେ, "ମିଥ୍ୟା କହିବାର ବିଜ୍ଞାନ ହିଁ ଶାସନ କରିବାର ବିଜ୍ଞାନ ।" ସମଗ୍ର ବାୟୁମଣ୍ଡଳ ମିଥ୍ୟା, ଚକ୍ରାନ୍ତ, ହିଂସା ଓ ନୃଶଂସତାରେ ପୂର୍ଣ୍ଣ ଥିଲା ଏବଂ ଲୋକେ କିପରି ଏହା ସହ୍ୟ କରୁଥିଲେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

## ୮୭ : ଇଂଲଣ୍ଡ ରାଜାଙ୍କ ଶିରଚ୍ଛେଦନ

ଅଗଷ୍ଟ ୨୯, ୧୯୩୨

ଆମେ ବର୍ତ୍ତମାନ ଇଂଲଣ୍ଡ ଇତିହାସ କିଛିକ୍ଷଣ ଆଲୋଚନା କରିବା । ଏ ପର୍ଯ୍ୟନ୍ତ ଏହାକୁ ଅବହେଳା ଦେଖାଇଛେଁ, ଯେହେତୁ ମଧ୍ୟଯୁଗ କାଳରେ ଇଂଲଣ୍ଡରେ ଆଗ୍ରହ ଜାତ କଲା ପରି କିଛି ହୋଇ ନ ଥିଲା । ଏ ଦେଶ ଫ୍ରାନ୍‌ସ ବା ଇଟାଲୀ ଅପେକ୍ଷା ଅଧିକ ଅନୁନ୍ନତ ଥିଲା । ଯାହାହେଉ ପ୍ରଥମରୁ ଅକ୍‌ସଫୋର୍ଡ୍ ବିଶ୍ୱବିଦ୍ୟାଳୟ ଏକ ଶିକ୍ଷା କେନ୍ଦ୍ର ଭାବରେ ପ୍ରସିଦ୍ଧ ଥିଲା ଏବଂ ଅଳ୍ପକାଳ ପରେ କେମ୍ବ୍ରିଜ ହେଲା । ଅକ୍‌ସଫୋର୍ଡ୍‌ରୁ ହିଁ ଉଇକ୍ଲିଫ୍ ବାହାରିଥିଲେ । ଏହାଙ୍କ ସମ୍ବନ୍ଧରେ ମୁଁ ଆଗରୁ ତୋତେ ଲେଖିଛି ।

ଇଂଲଣ୍ଡର ପ୍ରାରମ୍ଭିକ ଇତିହାସରେ ପାର୍ଲିଆମେଣ୍ଟର ଉନ୍ନତିକୁ କେନ୍ଦ୍ର କରି ସବୁ କାର୍ଯ୍ୟ ହୋଇଛି । ଆଦିମ କାଳରୁ ରାଜାର କ୍ଷମତା ସୀମାବଦ୍ଧ କରିବା ନିମନ୍ତେ ସାମନ୍ତ-ମାନେ ଉଦ୍ୟମ କରି ଆସିଛନ୍ତି । ୧୨୧୫ରେ 'ମାଗ୍ନାକାର୍ଟା' ହେଲା । ଅଳ୍ପ କେତେ କାଳ ପରେ ପାର୍ଲିମେଣ୍ଟର ଆରମ୍ଭ ଦୃଷ୍ଟିଗୋଚର ହେଲା । ଏହା ବଡ଼ ବିକୃତ ଢଙ୍ଗରେ ଆରମ୍ଭ ହୋଇଛି । ବଡ଼ ବଡ଼ ସାମନ୍ତ ଓ ପାଦ୍ରୀ (ବିଶପ୍)ଙ୍କୁ ନେଇ ଲର୍ଡସ ସଭା ଗଠିତ । କିନ୍ତୁ ଏହା ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ହେଉଛି କେତେକ ନାଇଟ୍, ଶ୍ରେଷ୍ଠ ଭୂସ୍ୱାମୀ ଓ ସହରର କେତେକ ପ୍ରତିନିଧିଙ୍କୁ ନେଇ ଗଠିତ ଏକ ନିର୍ବାଚିତ ବ୍ୟବସ୍ଥା ପରିଷଦ । ଏହି ନିର୍ବାଚିତ ବ୍ୟବସ୍ଥା ପରିଷଦ କମନ୍‌ସ ସଭା' (House of Commons)ରେ ପରିଣତ ହେଲା । ଏହି ବ୍ୟବସ୍ଥା ପରିଷଦ ବା ଉଭୟ ସଭା ଭୂସ୍ୱାମୀ ଓ ସମ୍ପତ୍ତିବାନ ଲୋକଙ୍କୁ ନେଇ ଗଠନ । ଏପରିକି କମନ୍‌ସ ସଭାର ଲୋକେ କେବଳ ଅତି ଅଳ୍ପସଂଖ୍ୟକ ଧନୀ, ଭୂସ୍ୱାମୀ ଓ ବଣିକମାନଙ୍କର ପ୍ରତିନିଧିତ୍ୱ କରୁଥିଲେ ।

କମନ୍‌ସ ସଭାର ପ୍ରାୟ କିଛି କ୍ଷମତା ନ ଥିଲା । ସେମାନେ ନିବେଦନ କରି ରାଜାଙ୍କୁ ତାଙ୍କର ଆପତ୍ତି ଦର୍ଶାଉଥିଲେ ଏବଂ କ୍ରମେ ଟିକସ ଧାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ଆରମ୍ଭ କଲେ । ସେମାନଙ୍କର ସମ୍ମତି ବିନା ନୂତନ ଟିକସ ବସାଇବା ବା ଆଦାୟ କରିବା କଷ୍ଟକର ଥିଲା; ତେଣୁ ରାଜା ଏପରି ଟିକସ ଧାର୍ଯ୍ୟ ନିମନ୍ତେ ସେମାନଙ୍କର ସମ୍ମତି ନେବାର ପ୍ରଚଳନ ଆରମ୍ଭ କଲେ । ଟଙ୍କାର ଶକ୍ତି ସର୍ବଦା ଏକ ପ୍ରଧାନ ଶକ୍ତି ଏବଂ ପାର୍ଲିମେଣ୍ଟ ଓ ଓ ବିଶେଷତଃ କମନ୍‌ସ ସଭା ଏହି କ୍ଷମତା ପାଇବାରୁ ତାର ବଳ ଓ ମର୍ଯ୍ୟାଦା ବୃଦ୍ଧି ହେଲା । ଅନେକ ସମୟରେ ରାଜା ଓ କମନ୍‌ସ ସଭା ଭିତରେ ବିବାଦ ଲାଗୁଥିଲା । କିନ୍ତୁ

ତଥାପି ପାର୍ଲିମେଣ୍ଟ ଏକ ଦୁର୍ବଳ ଜିନିଷ ଥିଲା । ମୁଁ ତୋତେ କହିଛି ଯେ, ଟିଉଡ଼ର ଶାସକମାନେ ଗୁଣାଧିକେ ଏକଛତ୍ର ଶାସକ ଥିଲେ; କିନ୍ତୁ ଟିଉଡ଼ରମାନେ ଚତୁର ଥିଲେ ଓ ପାର୍ଲିମେଣ୍ଟ ସହିତ କୌଣସି ପ୍ରକାର ସଂଘର୍ଷ ସେମାନେ ଏଡ଼ାଇ ଦେଉଥିଲେ ।

ଇଂଲଣ୍ଡ ମହାଦେଶର ଉତ୍କଟ ଧର୍ମଗତ ସଂଘର୍ଷରୁ ରକ୍ଷା ପାଇଯାଇଥିଲା । ପ୍ରଚୁର ପରିମାଣରେ ଧର୍ମ-ସମ୍ବନ୍ଧୀୟ ବିବାଦ, ଦଙ୍ଗା ଓ ଧର୍ମାନ୍ଧତା ହୋଇଥିଲା ଏବଂ ବହୁସଂଖ୍ୟକ ନାରୀଙ୍କୁ ଡାହାଣୀ ବୋଲି ବିଚାର କରି ଜୀବନ୍ତ ପୋଡ଼ି ମାରି ଦିଆଗଲା । କିନ୍ତୁ ମହାଦେଶ ତୁଳନାରେ ଇଂଲଣ୍ଡ ଶାନ୍ତିପୂର୍ଣ୍ଣ ଥିଲା । ଅଷ୍ଟମ ହେନେରିଙ୍କ ବେଳେ ଦେଶ ପ୍ରୋଟେଷ୍ଟାଣ୍ଟ ହୋଇଗଲା ବୋଲି କୁହାଯାଏ । ଅବଶ୍ୟ ଦେଶରେ ଅନେକ କାଥଲିକ୍ ଥିଲେ ଓ ଅନେକ ଉଗ୍ର ପ୍ରୋଟେଷ୍ଟାଣ୍ଟ ବି ଥିଲେ । ଯାହାହେଉ ଇଂଲଣ୍ଡର ନୂତନ ଚର୍ଚ୍ଚ ଏହି ଦୁହିଁଙ୍କ ମଝିଆମଝି ଜିନିଷ ଭଳି ଥିଲା, ନିଜକୁ ପ୍ରୋଟେଷ୍ଟାଣ୍ଟ କହୁଥିଲା; କିନ୍ତୁ ସମ୍ଭବତଃ ପ୍ରୋଟେଷ୍ଟାଣ୍ଟ ଅପେକ୍ଷା ଏହା ଅଧିକ କାଥଲିକ୍ ଥିଲା ଏବଂ ବାସ୍ତବରେ ଲୋକଙ୍କ ମୁଖିଆ ରୂପେ ଗ୍ରହଣ କରି ଏହା ଏକପ୍ରକାର ସରକାରୀ ବିଭାଗ ହୋଇଯାଇଥିଲା । ଯାହାହେଉ, ରୋମ ଓ ପୋପ ସହିତ ସମ୍ପର୍କ ସଂପୂର୍ଣ୍ଣରୂପେ ତୁଟି ଯାଇଥିଲା ଏବଂ ଅନେକ "ପୋପ୍-ବିରୋଧୀ" ଦଙ୍ଗା ହୋଇଥିଲା । ରାଣୀ ଏଲିଜାବେଥ୍‌ଙ୍କ ସମୟରେ (ସେ ଅଷ୍ଟମ ହେନେରିଙ୍କ ଝିଅ) ପୂର୍ବୀୟ ଦେଶ ଓ ଆମେରିକାକୁ ନୂତନ ସମୁଦ୍ରପଥ ଖୋଲି ହେବାରୁ ଏବଂ ବେପାର ସକାଶେ ନୂତନ ସୁଯୋଗ ମିଳିବାରୁ ଅନେକ ଲୋକଙ୍କର ଲାଳସା ବଢ଼ିଲା । ସ୍ପେନ ଓ ପର୍ତ୍ତୁଗୀଜ ନାବିକମାନଙ୍କର ସାଫଲ୍ୟରେ ମୋହିତ ହୋଇ ଏବଂ ସମ୍ପଦଲାଭ କରିବାର ଅଭିଳାଷରେ ଇଂଲଣ୍ଡ ସମୁଦ୍ର ପଥର ଆଶ୍ରୟ ନେଲା । ସାର୍ ଫ୍ରାନ୍ସିସ୍ ଡ୍ରେକ୍ ଓ ତାଙ୍କ-ପରି ଅନ୍ୟମାନେ ପ୍ରଥମେ ସମୁଦ୍ରରେ ଜଳଦସ୍ୟୁ କାମ କରୁଥିଲେ । ଆମେରିକାରୁ ଆସୁଥିବା ସ୍ପେନୀୟ ପୋତମାନ ଲୁଣ୍ଠନ କରୁଥିଲେ । ଡ୍ରେକ୍ ତାପରେ ପୃଥିବୀର ଚତୁର୍ଦ୍ଦିଗରେ ଏକ ବିରାଟ ଜଳଯାତ୍ରା କରିବାକୁ ଯାଇଥିଲେ । ସାର୍ ୱାଲଟାର ରାଲେ ଆଟଲାଣ୍ଟିକ ଅତିକ୍ରମ କଲେ ଏବଂ ଏବେ ଯୁକ୍ତ ରାଷ୍ଟ୍ରନାମରେ ପରିଚିତ ଦେଶର ପୂର୍ବ ଉପକୂଳରେ ଏକ ବସତି ସ୍ଥାପନାର ଚେଷ୍ଟା କଲେ । ଏହାକୁ ଭର୍ଜିନିଆ କୁହାହେଉଥିଲା । କୁମାରୀ ରାଣୀ ଏଲିଜା-ବେଥ୍‌ଙ୍କୁ ସମ୍ମାନ ଦେଖାଇ ଏହି ନାମକରଣ କରାହୋଇଥିଲା । ରାଲେ ପ୍ରଥମେ ଆମେରିକାରୁ ତମାଖୁ ଟାଣିବାର ଅଭ୍ୟାସ ଇଉରୋପକୁ ଆଣିଥିଲେ । ତାହା ପରେ ସ୍ପେନବାସୀଙ୍କ ଅର୍ମାଡ଼ା ଆସିଥିଲା ଏବଂ ଏହି ପ୍ରବଳ ଉଦ୍ୟମ ସମ୍ପୂର୍ଣ୍ଣ ବିଫଳ ହେବାରୁ ଇଂଲଣ୍ଡ ବହୁ ପରିମାଣରେ ଉତ୍ସାହିତ ହୋଇଥିଲା । ରାଜା ଓ ପାର୍ଲିମେଣ୍ଟ ମଧ୍ୟରେ ସଂଘର୍ଷ ସହିତ ଏସବୁର ବିଶେଷ କିଛି ସମ୍ପର୍କ ନ ଥିଲା; କେବଳ ଏହା ଲୋକଙ୍କର ମନକୁ ଆକୃଷ୍ଟ କରି ରଖିଥିଲା ଏବଂ ବିଦେଶୀ ବ୍ୟାପାର ପ୍ରତି ଦୃଷ୍ଟି ଫେରାଇଲା । କିନ୍ତୁ ଟିଉଡ଼ର ଅମଳରୁ ମଧ୍ୟ ଭିତରେ ଭିତରେ ନିଆଁ ଜଳୁଥିଲା ।

ଏଲିଜାବେଥ୍‌ଙ୍କ ରାଜୁତିକାଳ ଇଂଲଣ୍ଡରେ ଏକ ଉଜ୍ଜ୍ୱଳ ଯୁଗ । ଏଲିଜାବେଥ୍ ଜଣେ ବିଖ୍ୟାତ ରାଣୀ ଥିଲେ ଏବଂ ତାଙ୍କ ସମୟରେ ଅନେକ ମହାନ କାର୍ଯ୍ୟଦକ୍ଷ ପୁରୁଷ ଇଂଲଣ୍ଡରୁ ବାହାରିଥିଲେ । କିନ୍ତୁ ରାଣୀ ଓ ତାଙ୍କର ଦୁଃସାହସୀ ନାଇଟ୍‌ମାନଙ୍କ ଅପେକ୍ଷା ଏହି ଯୁଗର କବି ଓ ନାଟ୍ୟକାରମାନେ ଅଧିକ ପ୍ରସିଦ୍ଧ ଥିଲେ ଏବଂ ସର୍ବୋପରି ଅମର ଇଉଲିୟମ ସେକ୍‌ସପିଅର ଏହି କାଳର ଲୋକ । ଅବଶ୍ୟ ତାଙ୍କର ନାଟକ ଆଜିକାଲି ସମଗ୍ର ଜଗତରେ ପରିଚିତ; ମାତ୍ର ଆମେ ବ୍ୟକ୍ତିଗତ ଭାବରେ ତାଙ୍କ ବିଷୟରେ ଖୁବ୍ କମ୍ ଜାଣୁ । ସେ ଜଣେ ବିଚକ୍ଷଣ ଲୋକ ଥିଲେ । ସେ ତାଙ୍କର ଅସଂଖ୍ୟ ମୂଲ୍ୟବାନ ଦାନରେ ଇଂରେଜ ଭାଷାକୁ ଏପରି ଉନ୍ନତ କରିଛନ୍ତି ଯେ, ଆମର ହୃଦୟ ଆନନ୍ଦରେ ପୂରିଉଠେ । ଏପରିକି ଏଲିଜାବେଥ୍‌ଙ୍କ ଅମଳର କ୍ଷୁଦ୍ର ଖଣ୍ଡକାବ୍ୟମାନଙ୍କର ମାଧୁର୍ଯ୍ୟ ଆଉ କୌଣସିଥିରେ ଦେଖାଯାଏ ନାହିଁ । ଅତି ସରଳ ଓ ସୁମଧୁର ଭାଷାରେ ସେଗୁଡ଼ିକ ଆମୋଦଦାୟକ ଭାବରେ ଲିଖିତ; ଦୈନନ୍ଦିନ ଘଟଣା ସବୁ ଏକ ବିଶେଷ ଢଙ୍ଗରେ ସେଥିରେ ରୂପାୟିତ ହୋଇଛି । ଲିଟନ୍ ଷ୍ଟ୍ରାଚି ନାମକ ଜଣେ ଇଂରେଜ ସମାଲୋଚକ ଏହିକାଳ କଥା ବର୍ଣ୍ଣନା କରି ଲେଖିଛନ୍ତି, "ଏଲିଜାବେଥ୍‌ଙ୍କ ଅମଳର କେତେକ ଉଚ୍ଚମନା ବ୍ୟକ୍ତିଙ୍କର ଦୃଢ଼ ଓ ଅପୂର୍ବ ଭାବ ହିଁ ଏକ ଅଦ୍ଭୁତ ଯୁଗରେ ଇଂଲଣ୍ଡକୁ ଯାହା ଦାନ କରିଯାଇଛି, ତାହା ପୃଥିବୀରେ ଅଜ୍ଞାତପୂର୍ବ ଗୌରବମୟ ନାଟକର ଏକ ଐତିହ୍ୟ ସୃଷ୍ଟି କରିଛି ।

ଭାରତରେ ମହାନ୍ ଆକବରଙ୍କ ମୃତ୍ୟୁର ଠିକ୍ ଦୁଇ ବର୍ଷ ପୂର୍ବରୁ ୧୬୦୩ରେ ଏଲିଜାବେଥ୍ ପ୍ରାଣତ୍ୟାଗ କଲେ । ତାଙ୍କ ବଂଶର ନିକଟତମ ଉତ୍ତରାଧିକାରୀ ଭାବରେ ସେତେବେଳର ସ୍କଟଲଣ୍ଡର ରାଜା ତାଙ୍କ ପରେ ସିଂହାସନରେ ବସିଲେ । ସେ ପ୍ରଥମ ଜେମ୍‌ସ ନାମ ନେଲେ ଏବଂ ଇଂଲଣ୍ଡ ଓ ସ୍କଟଲଣ୍ଡ ଏକ ରାଜ୍ୟ ହେଲା । ଇଂଲଣ୍ଡ ଯାହା ହିଂସାଦ୍ୱାରା କରିପାରି ନ ଥିଲା, ତାହା ଶାନ୍ତିପୂର୍ଣ୍ଣ ଭାବରେ ହୋଇପାରିଲା । ପ୍ରଥମ ଜେମ୍‌ସ-ରାଜାମାନଙ୍କ ଈଶ୍ୱରଦତ୍ତ ଅଧିକାରରେ ବିଶ୍ୱାସ କରୁଥିଲେ ଏବଂ ପାର୍ଲିମେଣ୍ଟକୁ ନାପସନ୍ଦ କରୁଥିଲେ । ସେ ଏଲିଜାବେଥ୍‌ଙ୍କ ପରି ଚତୁର ନ ଥିଲେ ଏବଂ ଅତି ଶୀଘ୍ର ତାଙ୍କ ଭିତରେ ଓ ପାର୍ଲିମେଣ୍ଟ ଭିତରେ ଗୋଳମାଳ ଉଠିଲା । ତାଙ୍କର ରାଜତ୍ୱ କାଳରେ ଇଂଲଣ୍ଡର ଅନେକ ପ୍ରୋଟେଷ୍ଟାଣ୍ଟ ଚିରକାଳ ପାଇଁ ନିଜର ମାତୃଭୂମି ଛାଡ଼ି ୧୬୨୦ରେ ଆମେରିକାରେ ବସତି କରିବା ନିମନ୍ତେ 'ମେ ଫ୍ଲାୱାର' ନାମକ ଜାହାଜରେ ଯାତ୍ରା କରିଥିଲେ । ସେମାନେ ପ୍ରଥମ ଜେମ୍‌ସଙ୍କ ଏକଛତ୍ର କାର୍ଯ୍ୟପନ୍ଥାକୁ ଆପତ୍ତି କରିଥିଲେ ଏବଂ ଇଂଲଣ୍ଡର ନୂତନ ଚର୍ଚ୍ଚକୁ ନାପସନ୍ଦ କରୁଥିଲେ ଓ ଏହା ଯଥେଷ୍ଟ ପ୍ରୋଟେଷ୍ଟାଣ୍ଟବାଦୀ ନୁହେଁ ବୋଲି ବିଚାର କରୁଥିଲେ । ତେଣୁ ସେମାନେ ନିଜ ଘର ଓ ଦେଶ ଛାଡ଼ିଲେ ଏବଂ ଆଟଲାଣ୍ଟିକ ଅତିକ୍ରମ ନୂତନ ଦୁନିଆଁକୁ ଯାତ୍ରା କଲେ । ସେମାନେ ଉତ୍ତର ଉପକୂଳରେ ଏକ ସ୍ଥାନରେ ଓହ୍ଲାଇଲେ । ଏହାର ନାମ ଦେଲେ 'ନିଉ ପ୍ଲାଇ-ମାଉଥ୍ ।' ଅନେକ ଉପନିବେଶ କରିବା ଲୋକ ତାଙ୍କ ପରେ ଯାଇଥିଲେ ଏବଂ କ୍ରମେ ବସତି ଏତେ ବଢ଼ିଲା

ଯେ, ଶେଷରେ ସମଗ୍ର ପୂର୍ବ-ଉପକୂଳରେ ୧୩ଟି ଉପନିବେଶ ହୋଇଥିଲା । ଏହି ଉପନିବେଶଗୁଡ଼ିକ ଶେଷରେ ଆମେରିକା ସଂଯୁକ୍ତ ରାଷ୍ଟ୍ର ହୋଇଥିଲା; କିନ୍ତୁ ତାହା ଦୀର୍ଘକାଳ ପରେ ଘଟିଥିଲା ।

ପ୍ରଥମ ଜେମ୍‌ସଙ୍କ ପୁତ୍ର ଥିଲେ ପ୍ରଥମ ଚାର୍ଲ୍‌ସ ଏବଂ ସେ ୧୬୨୫ରେ ରାଜା ହେବା ପରେ ଅବସ୍ଥା ଅତିଶୀଘ୍ର ସଙ୍କଟାପନ୍ନ ହେଲା । ତେଣୁ ୧୬୨୮ରେ ପାର୍ଲିଆମେଣ୍ଟ ତାଙ୍କ ନିକଟରେ ଏକ "ଦାବୀ ଦରଖାସ୍ତ" ପେଶ୍ କଲା । ଇଂରେଜ ଇତିହାସରେ ଏହା ଏକ ବିଖ୍ୟାତ କାଗଜ । ଏହି ଦରଖାସ୍ତରେ ରାଜାଙ୍କୁ ବୁଝାହୋଇଥିଲା ଯେ, ସେ ଏକଛତ୍ର ଶାସକ ନୁହନ୍ତି ଏବଂ ନିୟମ ପ୍ରଣୟନ କରିବାର କ୍ଷମତା ତାଙ୍କର ନାହିଁ । ସେ ଟିକସ ବସାଇ ପାରିବେ ନାହିଁ କିମ୍ବା ବେଆଇନ ଭାବରେ ଲୋକଙ୍କୁ ବନ୍ଦୀ କରିପାରିବେ ନାହିଁ । ଭାରତର ଇଂରେଜ ରାଜପ୍ରତିନିଧି ବିଂଶ ଶତାବ୍ଦୀରେ ଯେପରି ଅର୍ଡ଼ିନାନ୍‌ସ ଜାରି କରୁଛନ୍ତି ଓ ଲୋକଙ୍କୁ ବନ୍ଦୀ କରୁଛନ୍ତି, ସପ୍ତଦଶ ଶତାବ୍ଦୀରେ ଇଂଲଣ୍ଡରେ ରାଜାର ସେତିକ ବି କ୍ଷମତା ନଥିଲା ।

କ'ଣ କରିପାରିବେ, କ'ଣ ନ କରିପାରିବେ, ଏ ବିଷୟ ତାଙ୍କୁ ବୁଝାହେବାରୁ ବିରକ୍ତ ହୋଇ ଚାର୍ଲ୍‌ସ ପାର୍ଲିଆମେଣ୍ଟ ଭାଙ୍ଗିଦେଲେ ଏବଂ ତାହା ବିନା ଶାସନ ଚଳାଇବାକୁ ଲାଗିଲେ । ମାତ୍ର କେତେବର୍ଷ ପରେ ଅର୍ଥର ଏପରି ଅନାଟନ ପଡ଼ିଲା ଯେ, ସେ ଆଉ ଏକ ପାର୍ଲିଅମେଣ୍ଟ ଅହ୍ୱାନ କରିବାକୁ ବାଧ୍ୟ ହେଲେ । ପାର୍ଲିଅମେଣ୍ଟ ବୀଗତ ଚାର୍ଲ୍‌ସ ଯାହାସବୁ କରୁଥିଲେ ସେଥିରେ ଖୁବ୍ କ୍ରୋଧ ଉପୁଜିଥିଲା ଏବଂ ନୂତନ ପାର୍ଲିଆମେଣ୍ଟ ତାଙ୍କ ସହିତ ଲଢ଼ାଇ କରିବା ନିମନ୍ତେ ବ୍ୟଗ୍ର ହୋଇ ଉଠିଥିଲା । ଦୁଇ ବର୍ଷ ଭିତରେ ୧୬୪୨ରେ ଗୃହଯୁଦ୍ଧ ଆରମ୍ଭ ହେଲା । ରାଜା ଏକପକ୍ଷରେ ରହିଲେ, ଅନେକ ସାମନ୍ତ ଓ ବହୁସଂଖ୍ୟକ ସେନାବାହିନୀ ତାଙ୍କୁ ସମର୍ଥନ କଲେ ଏବଂ ଅନ୍ୟ ପକ୍ଷରେ ଥିଲା ପାର୍ଲିଆମେଣ୍ଟ; ଧନୀ ବଣିକ ଓ ଲଣ୍ଡନ ନଗରୀ ଏହାକୁ ସାହାଯ୍ୟ କରୁଥିଲେ । ଏହି ଯୁଦ୍ଧ କେତେବର୍ଷ ପର୍ଯ୍ୟନ୍ତ ଚାଲିଲା; ଶେଷରେ ପାର୍ଲିଆମେଣ୍ଟ ପକ୍ଷରେ ଓଲିଭର କ୍ରମ୍‌ଓ୍ୱେଲ୍ ନାମକ ଜଣେ ପ୍ରଧାନ ନେତା ବାହାରିଲେ । ସେ ଜଣେ ବଡ଼ ସଂଗଠନକାରୀ; କଠୋର ଶୃଙ୍ଖଳାକାରୀ ଥିଲେ ଏବଂ ନିଜର ଉଦ୍ଦେଶ୍ୟ ଲାଗି ଧର୍ମବିଶ୍ୱାସପୂର୍ଣ୍ଣ ଉତ୍ସାହ ତାଙ୍କଠାରେ ଥିଲା । କାର୍ଲାଇଲ କ୍ରମ୍‌ଓ୍ୱେଲଙ୍କ ସମ୍ବନ୍ଧରେ ଲେଖିଛନ୍ତି, "ଯୁଦ୍ଧର ଅତି ବିପଜ୍ଜନକ ଅବସ୍ଥାରେ ଯୁଦ୍ଧକ୍ଷେତ୍ରରେ ଯେତେବେଳେ ଅନ୍ୟ ସମସ୍ତେ ଆଶା ହରାଇ ଦେଇଥିଲେ, ସେତେବେଳେ ଏକ ଅଗ୍ନିସ୍ତମ୍ଭ ରୂପେ ତାଙ୍କଠାରେ ଆଶା ପ୍ରଜ୍ୱଳିତ ହୋଇଥିଲା ।" କ୍ରମ୍‌ଓ୍ୱେଲ ଏକ ନୂତନ ସେନା-ବାହିନୀ ଗଢ଼ିଲେ; ଏହାକୁ "ଆଇରନ୍ ସାଇଡ଼' (ଲୌହଶରୀର) କୁହାଯାଉଥିଲା ଏବଂ ନିଜର ଶୃଙ୍ଖଳାବଦ୍ଧ ଉତ୍ସାହର ପ୍ରଭାବ ସେମାନଙ୍କ ଉପରେ ପକାଇଥିଲେ । ପାର୍ଲିଆମେଣ୍ଟ ସେନାର "ପିଉରିଟାନ୍"ମାନେ ଚାର୍ଲ୍‌ସଙ୍କ "କାଭେଲିଅର"ମାନଙ୍କ ସମ୍ମୁଖୀନ ହୋଇଥିଲେ । ଶେଷରେ କ୍ରମ୍‌ଓ୍ୱେଲ୍ ଜିତିଲେ ଏବଂ ରାଜା ଚାର୍ଲ୍‌ସ ପାର୍ଲିଆମେଣ୍ଟଦ୍ୱାରା ବନ୍ଦୀ ହେଲେ ।

ପାର୍ଲିମେଣ୍ଟର ଅନେକ ସଦସ୍ୟ ରାଜାଙ୍କ ସହିତ ଏବେ ସୁଦ୍ଧା ମୀମାଂସା କରିବାକୁ ଚାହୁଁଥିଲେ । କିନ୍ତୁ କ୍ରମ୍‌ୱେଲ୍‌ଙ୍କ ନୂତନ ସେନା ଏଥିପ୍ରତି କର୍ଣ୍ଣପାତ କଲେ ନାହିଁ ଏବଂ କର୍ଣ୍ଣେଲ ପ୍ରାଇଡ୍ ନାମକ ଜଣେ ସେନା-କର୍ମଚାରୀ ସାହସର ସହିତ ପାର୍ଲିମେଣ୍ଟ ଗୃହ ମଧ୍ୟରେ ପ୍ରବେଶ କଲେ ଓ ଏଏଭି ସଦସ୍ୟମାନଙ୍କୁ ବାହାର କରିଦେଲେ । ଏହାକୁ 'ପ୍ରାଇଡ୍‌ଙ୍କ ନିଷ୍କାସନ' ବୋଲି କୁହାଯାଏ । ଏହା ଏକ ଚରମ ପ୍ରତିକାର ଏବଂ ପାର୍ଲିଅମେଣ୍ଟ ପକ୍ଷରେ ଖୁବ୍ ଅନୁକୂଳ ନୁହେଁ । ପାର୍ଲିଆମେଣ୍ଟ ଯଦି ରାଜାଙ୍କ ଏକଚ୍ଛତ୍ର ଅଧିକାର ବିରୁଦ୍ଧରେ ଆପତ୍ତି ଉଠାଉଥିଲା, ତାହାହେଲେ ଏଠି ତ ପୁଣି ତାହାର ନିଜ ସେନା ସେହିପରି ଆଉ ଏକ ଶକ୍ତିରୂପେ ବାହାରି ଆଇନଗତ ବିବାଦ ପ୍ରତି ଆଦୌ ଦୃଷ୍ଟି ନଦେଇ କାର୍ଯ୍ୟ କରିଗଲା । ବିପ୍ଳବଗୁଡ଼ିକର ଗତି ଏହିପରି ।

କମନ୍‌ସ ସଭାର ଅବଶିଷ୍ଟ ସଦସ୍ୟମାନଙ୍କୁ 'ରମ୍ପ ପାର୍ଲିଆମେଣ୍ଟ' କୁହାଯାଉଥିଲା । ସେମାନେ ଲର୍ଡ଼ସ ସଭାର ଆପତ୍ତି ସତ୍ତ୍ୱେ ଚାର୍ଲସଙ୍କ ବିଚାର କରିବାକୁ ସ୍ଥିର କଲେ ଏବଂ "ଅତ୍ୟାଚାରୀ, ବିଶ୍ୱାସଘାତକ, ନରହନ୍ତା ଓ ନିଜ ଦେଶର ଶତ୍ରୁ ହିସାବରେ" ତାଙ୍କୁ ସେମାନେ ପ୍ରାଣଦଣ୍ଡ ଦେଲେ । ଏହି ଯେଉଁ ଲୋକ ସେମାନଙ୍କର ରାଜା ଥିଲା ଓ ଶାସନ କରିବାଲାଗି ତାର ଐଶ୍ୱରିକ ଅଧିକାର ରହିଛି ବୋଲି କହୁଥିଲା, ୧୬୪୯ରେ ଲଣ୍ଡନର ହ୍ୱାଇଟ୍ ହଲ୍‌ରେ ତାର ମସ୍ତକ ଛେଦନ କରାଯାଇଥିଲା ।

ଅନ୍ୟ ଲୋକଙ୍କ ପରି ରାଜାମାନେ ମରିଯାଆନ୍ତି । ବାସ୍ତବିକ୍ ଇତିହାସରେ ଅନେକ ରାଜାଙ୍କ ଜୀବନ ହିଂସାକାଣ୍ଡରେ ଯାଇଛି । ଏକଚ୍ଛତ୍ର ଶାସନ ଓ ରାଜତନ୍ତ୍ର ହତ୍ୟାକାଣ୍ଡକୁ ଜନ୍ମ ଦିଏ ଏବଂ ଇଂରେଜ ରାଜବଂଶରେ ଅତୀତରେ ଯଥେଷ୍ଟ ହତ୍ୟା ହୋଇଛି ; କିନ୍ତୁ ଏକ ନିର୍ବାଚିତ ବ୍ୟବସ୍ଥା ପରିଷଦ ନିଜକୁ ଅଦାଲତ ଭାବରେ ଧରିନେବା, ରାଜାକୁ ବିଚାର କରିବା, ତାଙ୍କୁ ମୃତ୍ୟୁ ଶାସ୍ତି ଦେବା ଏବଂ ତା'ପରେ ତାର ମସ୍ତକ ଛେଦନ କରିବା ଏକ ନବୀନ ଓ ବିସ୍ମୟକର ଘଟଣା । ବିଚିତ୍ର କଥା ଯେ ଯେଉଁ ଇଂରେଜମାନେ ସର୍ବଦା ଅତ୍ୟନ୍ତ ରକ୍ଷଣଶୀଳ ହୋଇଆସିଛନ୍ତି ଏବଂ ଦ୍ରୁତ ପରିବର୍ତ୍ତନ ପ୍ରତି ବିତୃଷ୍ଣା ଦେଖାଇଛନ୍ତି, ସେହି-ମାନେ କପରି ଭାବରେ ଏକ ଅତ୍ୟାଚାରୀ ଓ ବିଶ୍ୱାସଘାତକ ରାଜା ପ୍ରତି ବ୍ୟବହାର କରାଯିବା ଉଚିତ ତାହାର ଏକ ଦୃଷ୍ଟାନ୍ତ ଏହିରୂପେ ରଖିଦେଲେ ; କିନ୍ତୁ ଏହି କାର୍ଯ୍ୟଟି ମୋଟାମୋଟି କ୍ରମ୍‌ୱେଲଙ୍କ ଅଧୀନରେ ନୂତନ "ଆଇରନ୍ ସାଇଡ୍"ମାନଙ୍କ ଦ୍ୱାରା ଯେତେ ହୋଇଥିଲା, ସେପରି ଭାବରେ ଇଂଲଣ୍ଡ ଲୋକମାନଙ୍କ ଦ୍ୱାରା ହୋଇ ନଥିଲା ।

ୟୁରୋପର ସମସ୍ତ ରାଜା, ସିଜରମାନେ ଓ କ୍ଷୁଦ୍ର କ୍ଷୁଦ୍ର ରାଜତନ୍ତ୍ର ସବୁ ଏଥିରେ ଭୀଷଣ ଭାବରେ ଆତଙ୍କିତ ହୋଇଗଲେ । ଯଦି ସାଧାରଣ ଲୋକେ ଏହିପରି ଦୁଃସାହସୀ ହୋଇ ଇଂଲଣ୍ଡର ଦୃଷ୍ଟାନ୍ତ ଅନୁସରଣ କରନ୍ତି, ତେବେ ସେମାନଙ୍କର ଦଶା କ'ଣ ହେବ ? ତାଙ୍କ ଭିତରୁ ଅନେକେ ଇଂଲଣ୍ଡ ଆକ୍ରମଣ କରି ତାକୁ ଦମନ କରିବାକୁ ଚାହୁଁଥିଲେ; କିନ୍ତୁ ସେତେବେଳେ ଇଂଲଣ୍ଡର ଭାଗ୍ୟଡୋର ଜଣେ ଅକର୍ମଣ୍ୟଶୀଳ ରାଜା ହାତରେ ନ ଥିଲା । ପ୍ରଥମ ଥର ପାଇଁ ଇଂଲଣ୍ଡ ଏକ ପ୍ରଜାତନ୍ତ୍ର ହେଲା ଏବଂ କ୍ରମ୍‌ୱେଲ୍ ଓ ତାଙ୍କ ସେନା

ତାହା ରକ୍ଷା କରିବା ନିମନ୍ତେ ରହିଲେ । କ୍ରମ୍‌ୱେଲ ବ୍ୟାବହାରିକ ରୂପେ ଡିକ୍‌ଟେଟର ହେଲେ । ତାଙ୍କୁ "ଲର୍ଡ଼ ପ୍ରୋଟେକ୍ଟର" କୁହାଯାଉଥିଲା । ତାଙ୍କର କଠୋର ଓ ନିପୁଣ ଶାସନାଧୀନରେ ଇଂଲଣ୍ଡର ଶକ୍ତି ବୃଦ୍ଧି ହେଲା ଏବଂ ତାର ଜାହାଜ ସବୁ ଡଚ୍, ଫରାସୀ ଓ ସ୍ପେନ ଜାହାଜକୁ ତଡ଼ିଦେଲା । ପ୍ରଥମ ଥର ପାଇଁ ୟୁରୋପରେ ଇଂଲଣ୍ଡ ମୁଖ୍ୟ ଶକ୍ତି ହେଲା ।

କିନ୍ତୁ ଇଂଲଣ୍ଡ ପ୍ରଜାତନ୍ତ୍ର ଖୁବ୍ ଅଳ୍ପକାଳ ସ୍ଥାୟୀ ହୋଇଥିଲା—ପ୍ରଥମ ଚାର୍ଲସଙ୍କ ମୃତ୍ୟୁ ପରେ ପ୍ରାୟ ୧୧ ବର୍ଷ ବି ରହି ନଥିଲା । କ୍ରମ୍‌ୱେଲ ୧୬୬୫ରେ ମଲେ ଏବଂ ଦୁଇବର୍ଷ ପରେ ପ୍ରଜାତନ୍ତ୍ରର ପତନ ହେଲା । ପ୍ରଥମ ଚାର୍ଲସଙ୍କ ପୁଅ ବିଦେଶୀ ରାଜ୍ୟରେ ଯାଇ ଆଶ୍ରୟ ଗ୍ରହଣ କରିଥିଲେ; ସେ ଇଂଲଣ୍ଡକୁ ଫେରି ଆସିଲେ ଏବଂ ତାଙ୍କୁ ସ୍ୱାଗତ କରାଗଲା ଏବଂ ଦ୍ୱିତୀୟ ଚାର୍ଲସ ରୂପେ ସିଂହାସନରେ ବସାଇଦିଆଗଲା । ଏହି ଦ୍ୱିତୀୟ ଚାର୍ଲସ ଏକ ନୀଚ ଓ ଅପଖ୍ୟାତ ବ୍ୟକ୍ତି ଥିଲେ ଏବଂ ତାଙ୍କ ପକ୍ଷରେ ରାଜପଦର ଅର୍ଥ ଥିଲା ଖୁବ୍ ଆରାମରେ କାଳ କଟାଇବା ; କିନ୍ତୁ ସେ ଖୁବ୍ ଚତୁରପଣିଆ କରି ପାର୍ଲିଆମେଣ୍ଟ ବିରୁଦ୍ଧରେ ବିଶେଷ ଭାବରେ ଯାଇ ନ ଥିଲେ । ସେ ପ୍ରକୃତରେ ଗୁପ୍ତଭାବରେ ଫରାସୀ ଲୋକଙ୍କଠାରୁ ଧନ ପାଉଥିଲେ । ଇଂଲଣ୍ଡ କ୍ରମ୍‌ୱେଲଙ୍କ ଅମଳରେ ୟୁରୋପରେ ଯେଉଁ ସ୍ଥାନ ଲାଭ କରିଥିଲା, ତାହା ହରାଇଲା ଏବଂ ଡଚ୍‌ମାନେ ପ୍ରକୃତରେ ଆସି ଟେମସ୍ ନଦୀରେ ଇଂରେଜ ପୋତ-ମାନଙ୍କୁ ପୋଡ଼ିଦେଇଥିଲେ ।

ଚାର୍ଲସଙ୍କ ପରେ ତାଙ୍କ ଭାଇ ଦ୍ୱିତୀୟ ଜେମ୍‌ସ ଉତ୍ତରାଧିକାରୀ ହେଲେ ଏବଂ ସାଙ୍ଗେ ସାଙ୍ଗେ ପାର୍ଲିଆମେଣ୍ଟସହି ଗୋଳମାଳ ଆରମ୍ଭ ହେଲା । ଜେମ୍‌ସ ଅତି କାଥଲିକ୍ ଥିଲେ ଏବଂ ସେ ଇଂଲଣ୍ଡରେ ପୁନର୍ବାର ପୋପଙ୍କ କର୍ତ୍ତୃତ୍ୱ ସ୍ଥାପନ କରିବାକୁ ଇଚ୍ଛା କରୁଥିଲେ । କିନ୍ତୁ ଇଂରେଜ ଲୋକମାନଙ୍କର ଧର୍ମ ସମ୍ବନ୍ଧରେ ଯାହା ଧାରଣା ଥାଉ ନା କାହିଁକି ଏ ବିଷୟରେ ସେମାନଙ୍କର ଅସ୍ପଷ୍ଟ ଧାରଣା ଥିଲା; ସେମାନଙ୍କ ଭିତରୁ ଅଧିକାଂଶ ପୋପ୍ ଓ "ପୋପ୍ ପନ୍ଥାନୁଗିତ୍ୱ" ସମସ୍ତ କାର୍ଯ୍ୟର ଘୋର ବିରୋଧୀ ଥିଲେ । ଏହି ବ୍ୟାପକ ବିରୁଦ୍ଧଭାବ ଭାଙ୍ଗିବା ପାଇଁ ଦ୍ୱିତୀୟ ଜେମ୍‌ସ କିଛି କରିପାରିଲେ ନାହିଁ ଏବଂ ପାର୍ଲିଆମେଣ୍ଟ ବିରକ୍ତ ହେବାରୁ ସେ ପୁନର୍ବାର ଫ୍ରାନ୍‌ସରେ ଆଶ୍ରୟ ଗ୍ରହଣ କରିବାକୁ ପଳାଇଗଲେ ।

ପୁନର୍ବାର ରାଜା ଉପରେ ପାର୍ଲିଆମେଣ୍ଟର ବିଜୟ ହେଲା ଏବଂ ଏଥରକ ଏହା ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ଭାବରେ ଗୃହଯୁଦ୍ଧ ବ୍ୟତିରେକେ ହୋଇଥିଲା । ଦେଶରେ କୌଣସି ରାଜା ନ ଥିଲେ । କିନ୍ତୁ ଇଂଲଣ୍ଡ ପୁନର୍ବାର ପ୍ରଜାତନ୍ତ୍ର ହେବାକୁ ଯାଉ ନ ଥିଲା । କଥିତ ଅଛି ଯେ, ଇଂରେଜ ଲୋକେ ଏକ ପ୍ରଭୁ ବୃହାନ୍ତି ଏବଂ ଆଡ଼ମ୍ବର ଅଧିକ କଥା ହେଉଛି, ସେମାନେ ରାଜତନ୍ତ୍ରର ଆଡ଼ମ୍ବର ଓ ଯାକଯମକ ପସନ୍ଦ କରନ୍ତି । ତେଣୁ ପାର୍ଲିଆମେଣ୍ଟ ନୂତନ ରାଜା ଖୋଜିବାରେ ଲାଗିଲା ଏବଂ ଅରେଞ୍ଜର ଜଣେ ବ୍ୟକ୍ତିକୁ ପାଇଲା । ୧୦୦ ବର୍ଷ ପୂର୍ବେ ଏହି ବଂଶରୁ 'ଉଇଲିୟମ ଦ ସାଇଲେଣ୍ଟ' ବାହାରି ସ୍ପେନ୍ ବିରୁଦ୍ଧରେ ନେଦରଲାଣ୍ଡସର ବିରାଟ

ସଂଗ୍ରାମର ନେତୃତ୍ୱ ଗ୍ରହଣ କରିଥିଲେ । ସେଠାରେ ଅରେଞ୍ଜର ରାଜା ଆଉ ଏକ ଉଇଲିୟମ୍ ଥିଲେ ଏବଂ ସେ ଇଂରେଜ ରାଜପରିବାରର ମେରୀଙ୍କୁ ବିବାହ କରିଥିଲେ; ତେଣୁ ଉଇଲିୟମ ଓ ମେରୀଙ୍କୁ ୧୬୮୮ ରେ ମିଳିତ ଶାସନକର୍ତ୍ତା କରିଦିଆଗଲା । ବର୍ତ୍ତମାନ ପାର୍ଲିଆମେଣ୍ଟ ସର୍ବେସର୍ବା ହେଲା ଏବଂ ଇଂରେଜ ବିପ୍ଳବୀ ଲୋକଙ୍କ ହାତରେ ପାର୍ଲିଆମେଣ୍ଟକୁ ପ୍ରତିନିଧି ପଠାଇବାର କ୍ଷମତା ଦେଇ ତାର ଉଦ୍ଦେଶ୍ୟ ସିଦ୍ଧ କଲା । ସେହିଦିନଠାରୁ କୌଣସି ବ୍ରିଟିଶ ରାଜା ବା ରାଣୀ ପାର୍ଲିଆମେଣ୍ଟର କର୍ତ୍ତୃତ୍ୱ ବିରୁଦ୍ଧରେ ଯିବାକୁ ସାହସ କରିନାହାନ୍ତି । କିନ୍ତୁ ଅବଶ୍ୟ ନିର୍ଦ୍ଦିଷ୍ଟଭାବରେ ବିରୁଦ୍ଧ ବା ଚ୍ୟାଲେଞ୍ଜ ନ କରି ମୁଣ୍ଡ ଟେକିବାକୁ କରିବାରେ ଅନେକ ଉପାୟ ଅଛି ଏବଂ କେତେକ ବ୍ରିଟିଶ ରାଜା ଏହି କୌଶଳ ପ୍ରୟୋଗ କରିଥିଲେ ।

ପାର୍ଲିଆମେଣ୍ଟ ସର୍ବେସର୍ବା ହେଲା । କିନ୍ତୁ ଏ ପାର୍ଲିଆମେଣ୍ଟଟି କ'ଣ ? ଅନୁମାନ କରିବୁ ନାହିଁ ଯେ ଏହା ଇଂଲଣ୍ଡ ଲୋକଙ୍କର ପ୍ରତିନିଧି ଥିଲା । ଏହା କେବଳ ଅତି ଅଳ୍ପସଂଖ୍ୟକ ଲୋକଙ୍କ ପ୍ରତିନିଧିତ୍ୱ କରୁଥିଲା । ଲର୍ଡ଼ସଭାର ନାମରୁ ତ ଜଣାପଡ଼େ ଯେ, ଏହା ଲର୍ଡ଼ ଅଥବା ବଡ଼ ବଡ଼ ଭୂସ୍ୱାମୀ ଓ ପାଦ୍ରୀମାନଙ୍କର ପ୍ରତିନିଧି ଥିଲା । ଏପରିକି କମନ୍ସ ସଭା ମଧ୍ୟ ଭୂସ୍ୱାମୀ ବା ବଡ଼ ବଡ଼ ବ୍ୟବସାୟୀ ଏହିପରି ଧନୀଲୋକମାନଙ୍କର ଏକ ପରିଷଦ ଥିଲା । ଖୁବ୍ ଅଳ୍ପଲୋକଙ୍କର ଭୋଟ ଦେବାର ଅଧିକାର ଥିଲା । ୧୦୦ ବର୍ଷ ପୂର୍ବ ପର୍ଯ୍ୟନ୍ତ ବହୁସଂଖ୍ୟକ "ପକେଟ ବରୋ" ଇଂଲଣ୍ଡରେ ଥିଲା—ଅର୍ଥାତ୍ ନିର୍ବାଚନ ମଣ୍ଡଳୀଗୁଡ଼ିକ ଯାହାକି କାହାର ପକେଟରେ ପୁରାପୁରି ରହିଯାଉଥିଲା । ଗୋଟିଏ ଗୋଟିଏ ନିର୍ବାଚନମଣ୍ଡଳୀରେ ସଭ୍ୟ ନିର୍ବାଚନ କରିବା ଲାଗି କେବଳ ଗୋଟିଏ ବା ଦୁଇଟି ଭୋଟର ଥାଆନ୍ତି । କଥିତ ଅଛି ଯେ ୧୭୯୩ରେ କମନ୍ସ ସଭାର ୩୦୬ ଜଣ ସଭ୍ୟଙ୍କୁ ମୋଟ ୧୬୦ ଜଣ ଲୋକ ନିର୍ବାଚିତ କରିଥିଲେ । ଓଲ୍ଡ଼ ସାରୁମ୍ ନାମକ ଏକ କ୍ଷୁଦ୍ର ଗ୍ରାମ ପାର୍ଲିଆମେଣ୍ଟକୁ ଦୁଇଟି ସଭ୍ୟ ପଠାଇ ଥିଲା । ଏଥିରୁ ତୁ ଦେଖିପାରିବୁ ଯେ ବହୁ ଅଧିକ ସଂଖ୍ୟକ ଲୋକଙ୍କର ଭୋଟ ନ ଥିଲା ଏବଂ ପାର୍ଲିଆମେଣ୍ଟରେ ତାଙ୍କର ପ୍ରତିନିଧି ନଥିଲେ । କମନ୍ସ ସଭା ଲୋକପ୍ରିୟ ବ୍ୟବସ୍ଥା ପରିଷଦ ହେବା ଦୂରର କଥା ଥିଲା । ଏପରିକି ସହରରେ ଜାଗ୍ରତ ହେଉଥିବା ନୂତନ ମଧ୍ୟବିତ୍ତ ଶ୍ରେଣୀର ମଧ୍ୟ ଏହା ପ୍ରତିନିଧିତ୍ୱ କରୁ ନଥିଲା । ଏହା କେବଳ ଭୂସ୍ୱାମୀ ଶ୍ରେଣୀର ଓ କେତେକ ଧନୀ ବଣିକଙ୍କ ପ୍ରତିନିଧି ଥିଲା । ପାର୍ଲିଆମେଣ୍ଟର ସଭ୍ୟପଦ କିଣାବିକା ହେଉଥିଲା ଏବଂ ପ୍ରଚୁର ପରିମାଣରେ ଲାଞ୍ଚ ଦିଆନିଆ ହେଉଥିଲା । ଏହା ଠିକ୍ ଶହେ ବର୍ଷ ପୂର୍ବେ ୧୮୩୨ ପର୍ଯ୍ୟନ୍ତ ଚାଲିଥିଲା, ସେତେବେଳେ ଅନେକ ଆନ୍ଦୋଳନ ପରେ ଏକ ସଂସ୍କାର ଆଇନ ପାସ୍ ହେଲା ଏବଂ ଅଧିକ ଲୋକ ଭୋଟ ଅଧିକାର ପାଇଲେ ।

ତେଣୁ ଆମେ ଦେଖୁ ଯେ, ରାଜା ଉପରେ ପାର୍ଲିଆମେଣ୍ଟର ବିଜୟ ଅର୍ଥ ମୁଷ୍ଟିମେୟ ଧନୀ ଲୋକଙ୍କର ବିଜୟ । ଇଂଲଣ୍ଡ ପ୍ରକୃତରେ ଏହି ମୁଷ୍ଟିମେୟ ଭୂସ୍ୱାମୀ ଓ ବଣିକମାନଙ୍କ

ଶାସିତ ହେଉଥିଲା । ବ୍ୟାବହାରିକ ହିସାବରେ ଅନ୍ୟ ସକଳ ଶ୍ରେଣୀ, ଅର୍ଥାତ୍ ପ୍ରାୟ ସମସ୍ତ ଜାତିର ଏଥିରେ କୌଣସି ହାତ ନଥିଲା ।

ସେହିପରି ଭାବରେ ତୋର ମନେଥିବ, ଷ୍ପେନ୍ ସହ ବିରାଟ ସଂଗ୍ରାମ ପରେ ଯେଉଁ ଡଚ୍ ପ୍ରଜାତନ୍ତ୍ର ପ୍ରତିଷ୍ଠା ହେଲା, ତାହା ମଧ୍ୟ ଧନୀ ଲୋକଙ୍କର ପ୍ରଜାତନ୍ତ୍ର ହୋଇଥିଲା ।

ଉଇଲିୟମ୍ ଓ ମେରୀଙ୍କ ପରେ ମେରୀଙ୍କ ଭଉଣୀମାନେ ଇଂଲଣ୍ଡର ରାଣୀ ହୋଇଥିଲେ । ୧୭୧୪ରେ ତାଙ୍କର ମୃତ୍ୟୁ ପରେ ତତ୍ପରବର୍ତ୍ତୀ ରାଜାଙ୍କ ବିଷୟରେ କିଛି ଅସୁବିଧା ହୋଇଥିଲା । ଶେଷରେ ପାର୍ଲିଆମେଣ୍ଟ ଜର୍ମାନୀରୁ ଲୋକ ବାଛିଲା । ସେତେବେଳେ ଜର୍ମାନୀର ହାନୋଭରର ଶାସକ ଜଣେ ଜର୍ମାନ ଲୋକଙ୍କୁ ସେମାନେ ନିର୍ବାଚନ କଲେ ଓ ତାଙ୍କୁ ଇଂଲଣ୍ଡର ପ୍ରଥମ ଜର୍ଜରୂପେ ବସାଇଲେ । ସମ୍ଭବତଃ ସେ ଅତ୍ୟନ୍ତ ମାଠିଆ ଥିବାରୁ ଓ ଆଦୌ ଚତୁର ନ ଥିବାରୁ ପାର୍ଲିମେଣ୍ଟ ତାଙ୍କୁ ବାଛିଥିଲା ଏବଂ ପାର୍ଲିମେଣ୍ଟ ସହିତ ହସ୍ତକ୍ଷେପ କଲା ପରି ଏକ ଚତୁର ଲୋକ ଅପେକ୍ଷା ନିର୍ବୋଧ ରାଜା ରଖିବା ନିରାପଦ ଥିଲା । ସେପରିକି ପ୍ରଥମ ଜର୍ଜ ଇଂରେଜୀ ଭାଷାରେ କହିପାରୁ ନ ଥିଲେ । ଇଂରେଜ ରାଜାଙ୍କୁ ପୁଣି ଇଂରେଜୀ ଜଣା ନ ଥିଲା । ତାଙ୍କର ପୁଅ ଯେ କି ଦ୍ୱିତୀୟ ଜର୍ଜ ହେଲେ ସେ ପ୍ରାୟ ଇଂରେଜୀ ଜାଣି ନ ଥିଲେ । ଏହିପରି ଭାବରେ ଇଂଲଣ୍ଡରେ ହାନୋଭର ପରିବାର ବା ହାନୋଭେରିଅନ୍ ବଂଶ ବୃଦ୍ଧି ପାଇଲା । ଏହା ଶାସନ କରୁଥିଲା ବୋଲି ପ୍ରାୟ ବୁଝାଯାଇ ପାରିବ ନାହିଁ, ଯେହେତୁ ରାଜତ୍ୱ କରିବା ଓ ଶାସନ କରିବା କାର୍ଯ୍ୟ ପାର୍ଲିଆମେଣ୍ଟ ହିଁ କରୁଥିଲା ।

୧୬ଶ ଓ ୧୭ଶ ଶତାବ୍ଦୀରେ ଇଂଲଣ୍ଡ ଓ ଆୟର୍ଲାଣ୍ଡ ଭିତରେ ବହୁତ ଗୋଳମାଳ ଓ ବିବାଦ ଲାଗିଥିଲା । ଆୟର୍ଲଣ୍ଡ ବିଜୟ କରିବା ନିମନ୍ତେ ଉଦ୍ୟମ ହୋଇଥିଲା ଏବଂ ଏଲିଜାବେଥ୍ ଓ ପ୍ରଥମ ଜେମ୍‌ସଙ୍କ ରାଜତ୍ୱ ଅମଳରେ ବିଦ୍ରୋହ ଓ ହତ୍ୟାକାଣ୍ଡ ସବୁ ହୋଇଥିଲା । ଜେମ୍‌ସ ଆୟର୍ଲଣ୍ଡର ଉତ୍ତରାଞ୍ଚଳରେ ଆଲଷ୍ଟରରେ ଯଥେଷ୍ଟ ଭୂସମ୍ପତ୍ତି ବାଜ୍ୟାପ୍ତ କରିଥିଲେ ଏବଂ ଏହି ଅଞ୍ଚଳରେ ବାସ କରିବା ନିମନ୍ତେ ସ୍କଟଲଣ୍ଡରୁ ପ୍ରୋଟେଷ୍ଟାଣ୍ଟମାନଙ୍କୁ ଦେଇଥିଲେ । ସେହିଦିନଠାରୁ ଏହି ପ୍ରୋଟେଷ୍ଟାଣ୍ଟ ଲୋକେ ସେଠାରେ ରହିଛନ୍ତି ଏବଂ ଆୟର୍ଲଣ୍ଡ ଦୁଇ ଭାଗରେ ବିଭକ୍ତ ହୋଇଯାଇଛି । ଦେଶୀ ଆୟର୍ଲଣ୍ଡବାସୀ ଓ ସ୍କଟଲଣ୍ଡରୁ ଆସିଥିବା ଅଧିବାସୀ; ସେମାନେ କାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟ ଦୁହିଁଙ୍କ ଭିତରେ ବିକଟ ଶତ୍ରୁତା ରହିଛି ଏବଂ ଅବଶ୍ୟ ଏହି ଭେଦରୁ ଇଂଲଣ୍ଡ ଲାଭ ଉଠାଇଛି । ସବୁଦିନ ପରି ଶାସକମାନେ 'ଭେଦନୀତି' ଶାସନରେ ବିଶ୍ୱାସ କରନ୍ତି । ଏବେ ସୁଦ୍ଧା ଆୟର୍ଲଣ୍ଡରେ ଅଲଷ୍ଟର ଏକ ପ୍ରଶ୍ନ ହୋଇ ରହିଛି ।

ଇଂଲଣ୍ଡ ଗୃହଯୁଦ୍ଧ କାଳ ଭିତରେ ଆୟର୍ଲଣ୍ଡରେ ଇଂରେଜମାନଙ୍କୁ ହତ୍ୟା କରାଯାଇଥିଲା । କ୍ରମ୍‌ଓ୍ୱେଲ ନିଷ୍ଠୁର ଭାବରେ ଆୟର୍ଲଣ୍ଡବାସୀଙ୍କୁ ହତ୍ୟା କରି ଏହାର ପ୍ରତିଶୋଧ ନେଇଥିଲେ ଏବଂ ଆଜିପର୍ଯ୍ୟନ୍ତ ଆଇରିଶ୍‌ଙ୍କ ମନରେ ଏହା ତିକ୍ତଭାବରେ ରହିଛି । ଅଧିକ ଯୁଦ୍ଧ ହୋଇଥିଲା, ମିଳାମିଶା ଓ ସନ୍ଧି ହୋଇଥିଲା ଏବଂ ଇଂରେଜମାନେ

ଏହାସବୁ ଭଗିଥିଲେ । ଏହା ଏକ ଦୀର୍ଘ ଯନ୍ତ୍ରଣାଦାୟକ ଇତହାସ ଆୟର୍ଲଣ୍ଡର ଅଶାନ୍ତିଜନକର ଇତହାସ ।

ତୁ ଜାଣିଲେ ଖୁସି ହେବୁ ଯେ, ଏହି ସମୟରେ ୧୬୬୭ଠାରୁ ୧୭୪୫ ପର୍ଯ୍ୟନ୍ତ "ଗଲିଭର ଟ୍ରାଭଲ୍ସ" ଲେଖକ ଜନାଥନ୍ ସୁଇଫ୍ଟ ବାସ କରୁଥିଲେ । ଏହି ପୁସ୍ତକ ପିଲାଙ୍କ ଉପଯୋଗୀ ଏକ ପ୍ରସିଦ୍ଧ ସାହିତ୍ୟ; ମାତ୍ର ପ୍ରକୃତରେ ଏହା ତାଙ୍କ କାଳର ଇଂଲଣ୍ଡର ଏକ ବିକଟ ପରିହାସବ୍ୟଞ୍ଜକ କାହାଣୀ । 'ରବୀନ୍ସନ୍ କ୍ରୁଶୋ'ର ଲେଖକ ଡାନିଏଲ ଡେଫୋ ସୁଇଫ୍ଟଙ୍କ ସମସାମୟିକ ଥିଲେ ।

## ୮୮ : ବାବର

ସେପ୍ଟେମ୍ବର ୩, ୧୯୩୨

ଚାଲ ଆମେ ଭାରତକୁ ଫେରିଯିବା । ଆମେ ଇଉରୋପରେ କିଛି ସମୟ କଟାଇଲେ ଏବଂ ଅନେକ ଥରରେ ଏହାର ଗୋଳମାଳ, ସଂଘର୍ଷ ଓ ଯୁଦ୍ଧ ଭିତରକୁ ଦୃଷ୍ଟି ପକାଇବାକୁ ଚେଷ୍ଟା କଲେ; '୧୬ଶ ଓ ୧୭ଶ ଶତାବ୍ଦୀ ଭିତରେ କଣ ଘଟିଲା, ତାହା ବୁଝିବାକୁ ଚେଷ୍ଟା କଲେ । ଇଉରୋପର ଏହି କାଳ ବିଷୟରେ ତୋର କି ଧାରଣା ହୋଇଛି ମୁଁ ଜାଣେନା । ତୋ ଧାରଣା ଯାହା ହୋଇଥାଉ ପଛକେ, ତାହା ନିଶ୍ଚୟ ଅତ୍ୟନ୍ତ ମିଶ୍ରିତ ହୋଇଥିବ ଏବଂ ଇଉରୋପ ସେତେବେଳେ ଏକ ମିଶ୍ରିତ ଓ ବିଚିତ୍ର ସ୍ଥାନ ଥିଲା । ସେଥିରେ ଏପରି ହେବା କିଛି ବିଚିତ୍ର ନୁହେଁ । ଅବିଶ୍ରାନ୍ତ ଓ ବର୍ବର ଯୁଦ୍ଧ, ଧର୍ମସମ୍ବନ୍ଧୀୟ ଅନ୍ଧଭାବ ଓ ଇତହାସରେ ଅତୁଳନୀୟ ନୃଶଂସତା, ଏକଛତ୍ର ଶାସନ ଓ ରାଜାମାନଙ୍କ "ଐଶ୍ବରିକ ଅଧିକାର" ପତନୋନ୍ମୁଖୀ ଅଭିଜାତ୍ୟ ଶ୍ରେଣୀ ଓ ଲୋକଙ୍କର ନିର୍ଲଜ ଶୋଷଣ ସେଠାରେ ଚାଲିଥିଲା । ଚୀନ ଏସବୁର ବହୁ ଯୁଗ ଆଗରେ ଥିଲା ପରି ବୋଧହୁଏ—ତାହା ଏକ ସୁସଂସ୍କୃତ, କଳାପୂର୍ଣ୍ଣ, ସହନଶୀଳ ଓ ଊଣାଅଧିକେ ଶାନ୍ତିପୂର୍ଣ୍ଣ ଦେଶ ଥିଲା । ଭାରତରେ ଭେଦଭାବ ଓ ଅଧୋଗତି ସତ୍ତ୍ୱେ ଅନେକ ବିଷୟରେ ଏହା ସହିତ ତାକୁ ତୁଳନା କରାଯାଇ ପାରେ ।

କିନ୍ତୁ ଇଉରୋପର ରୂପ ବିଭିନ୍ନ ଓ ଆମୋଦଜନକ ହୋଇଥିଲା । ସେଠାରେ ଆଧୁନିକ ବିଜ୍ଞାନର ପ୍ରାରମ୍ଭ ଦୃଷ୍ଟିଗୋଚର ହେଲା ଏବଂ ବ୍ୟକ୍ତି-ସ୍ୱାଧୀନତାର ଧାରଣା ବୃଦ୍ଧି ପାଇବାକୁ ଆରମ୍ଭ କଲା ଓ ରାଜାମାନଙ୍କ ସିଂହାସନ ଥରହର ହେଲା । ଏସବୁର ପଶ୍ଚାତ୍ତରେ ଏବଂ ଏହାର ଓ ଅଧିକାଂଶ ଅନ୍ୟ କାର୍ଯ୍ୟକଳାପର ମୂଳରେ ଥିଲା ପଶ୍ଚିମ ଓ ଉତ୍ତର-ପଶ୍ଚିମ ଇଉରୋପୀୟ ରାଜ୍ୟମାନଙ୍କରେ ବାଣିଜ୍ୟ ଓ ଶିଳ୍ପ-ଉନ୍ନତି । ବଡ଼ ବଡ଼ ନଗର ଗଢ଼ି ଉଠିଲା, ସୁଦୂର ରାଜ୍ୟମାନଙ୍କ ସହିତ ବେପାର କରୁଥିବା ବଣିକ ସେଥିରେ ପୂର୍ଣ୍ଣ ରହିଥିଲେ ଏବଂ କାରିଗରମାନଙ୍କର ଶିଳ୍ପଗତ କାର୍ଯ୍ୟ ଖୁବ୍ ଚାଲିଥିଲା । ସମଗ୍ର ପଶ୍ଚିମ ଇଉରୋପରେ ଶିଳ୍ପୀ ସଂଘ ( Craft guild) ଅର୍ଥାତ୍ କାରିଗର ଓ ଶିଳ୍ପୀମାନଙ୍କର ସମିତିସବୁ ଗଢ଼ି ଉଠିଲା । ଏହି ବଣିକ ଓ ଶିଳ୍ପୋଦ୍ୟୋଗୀ ଶ୍ରେଣୀ ହିଁ ବୁର୍ଜୋୟା—ନୂତନ ମଧ୍ୟବିତ୍ତଶ୍ରେଣୀ—ହେଲେ ।

ଏହି ଶ୍ରେଣୀ ବୃଦ୍ଧି ପାଇଲା; କିନ୍ତୁ ଏହା ରାଜନୀତିକ, ସାମାଜିକ ଓ ଧର୍ମ ସମ୍ବନ୍ଧୀୟ ନାନା ବାଧା ପାଇଥିଲା । ରାଜନୀତି ଓ ସାମାଜିକ ସଂଗଠନରେ ସାମନ୍ତ ପ୍ରଥାର ଅବଶେଷ ରହିଥିଲା । ଏକ ଅତୀତ ଯୁଗରେ ଏହି ପ୍ରଥା ଚଳୁଥିଲା ଏବଂ ନୂତନ ଅବସ୍ଥା ସହିତ ଖାପ ଖାଇଲା ନାହିଁ; ବାଣିଜ୍ୟ ଓ ଶିଳ୍ପରେ ଏହା ପ୍ରତିବନ୍ଧକ ହେଲା । ସାମନ୍ତ ପ୍ରଭୁମାନେ ନାନାପ୍ରକାର ରାଜସ୍ୱ ଓ ଟିକସ ଦାବୀ କଲେ । ଏଥିରେ ବେପାରୀ ଶ୍ରେଣୀ ଉତ୍ତ୍ୟକ୍ତ ହୋଇଗଲେ । ତେଣୁ ବୁର୍ଜୋୟା ଶ୍ରେଣୀ ନିଜେ ଏହି ଶ୍ରେଣୀକୁ କ୍ଷମତାରୁ ଅନ୍ତର କରିବା ନିମନ୍ତେ ଲାଗିପଡ଼ିଲେ । ରାଜା ବି ସାମନ୍ତମାନଙ୍କୁ ଭଲପାଉ ନଥିଲେ, ସେହେତୁ ସେମାନେ ରାଜାର କ୍ଷମତା ଋଣ୍ଣ କରିବାକୁ ଚାହୁଁଥିଲେ । ତେଣୁ ରାଜା ଓ ବୁର୍ଜୋୟା ଶ୍ରେଣୀ ସାମନ୍ତ ବିରୁଦ୍ଧରେ ମିଳିତ ହେଲେ ଓ ସେମାନଙ୍କୁ ପ୍ରକୃତ ପ୍ରଭାବରୁ ବିଚ୍ୟୁତ କଲେ । ଫଳସ୍ୱରୂପ ରାଜା ଅଧିକ ପ୍ରଭାବଶାଳୀ ଓ ଏକଚ୍ଛତ୍ର ହୋଇ ଉଠିଲେ ।

ସେହିପରି ଭାବରେ ମନେହେଲା ଯେ, ପଶ୍ଚିମ-ଇଉରୋପର ଧର୍ମ-ବ୍ୟବସ୍ଥାର ସଂଗଠନ ଏବଂ ପ୍ରଚଳିତ ଧାର୍ମିକ ଭାବ ଓ ଧାରଣା ବେପାର ଓ ଶିଳ୍ପବୃଦ୍ଧି ଦିଗରେ ଅନ୍ତରାୟ ହେଉଛି ବୋଲି । ଧର୍ମ ନାନାପ୍ରକାର ସାମନ୍ତ ପ୍ରଥା ସହିତ ସଂପୃକ୍ତ ଥିଲା ଏବଂ ମୁଁ ତୋତେ କହିଛି ଯେ, ଚର୍ଚ୍ଚ ହିଁ ବୃହତ୍ତ ସାମନ୍ତ ଭୂସ୍ୱାମୀ ଥିଲା । ଅନେକ ବର୍ଷ ପୂର୍ବରୁ ବ୍ୟକ୍ତିବିଶେଷ ଓ ଦଳସବୁ ବାହାର ରୋମାନ ଚର୍ଚ୍ଚକୁ ସମାଲୋଚନା କରିଛନ୍ତି; ତା ବିରୁଦ୍ଧରେ ଉଠିଛନ୍ତି । କିନ୍ତୁ ସେମାନେ ବିଶେଷ ପରିବର୍ତ୍ତନ ଘଟାଇପାରିନାହାନ୍ତି । ଯାହାହେଉ, ବର୍ତ୍ତମାନ ସମଗ୍ର ଜାଗ୍ରତ ବୁର୍ଜୋୟା ଶ୍ରେଣୀ ପରିବର୍ତ୍ତନ ଚାହୁଁଥିଲେ ଏବଂ ସେହିହେତୁ ସଂସ୍କାର ପାଇଁ ଆନ୍ଦୋଳନ ପ୍ରବଳ ହୋଇ ଉଠିଲା ।

ଏହିସବୁ ପରିବର୍ତ୍ତନ କଥା ଏବଂ ଅନ୍ୟ ଯେଉଁସବୁ ପରିବର୍ତ୍ତନ ବିଷୟରେ ଆମେ ଏକଥ ଆଗରୁ ବିଚାର କରିଛେ, ସେସବୁ ବିପ୍ଳବର ବିଭିନ୍ନ ଭାଗ ଓ ପ୍ରବାହ, ଏହା ବୁର୍ଜୋୟା ଶ୍ରେଣୀକୁ ସମ୍ମୁଖକୁ ଆଣିଲା । ପଶ୍ଚିମ-ଇଉରୋପୀୟ ରାଜ୍ୟଗୁଡ଼ିକରେ ଏହି ପ୍ରକ୍ରିୟା ଉଣା-ଅଧିକେ ଏକାଭଳିଆ ହୋଇଥିବାର ବୋଧହୁଏ । ଏହା କିନ୍ତୁ ବିଭିନ୍ନ ଦେଶରେ ବିଭିନ୍ନ ସମୟରେ ଘଟିଥିଲା । ପୂର୍ବ-ଇଉରୋପ ଏଥିଭିତରେ ଏବଂ ପରେ ଦୀର୍ଘକାଳ ପର୍ଯ୍ୟନ୍ତ ଶିଳ୍ପ ଦିଗରେ ଅତ୍ୟନ୍ତ ପଶ୍ଚାଦ୍‌ଗାମୀ ଥିଲା ଏବଂ ତେଣୁ ସେଠାରେ ସେପରି କିଛି ପରିବର୍ତ୍ତନ ନଥିଲା ।

ଚୀନ ଓ ଭାରତରେ ମଧ୍ୟ ଶିଳ୍ପୀ ସଂଘ ଥିଲା ଏବଂ ଅନେକ କାରିଗର ଓ ହସ୍ତଶିଳ୍ପୀ ଥିଲେ । ଶିଳ୍ପ ପଶ୍ଚିମ-ଇଉରୋପ ପରି ଏବଂ ଅନେକ ସମୟରେ ତା ଅପେକ୍ଷା ଅଧିକ ଉନ୍ନତ ଥିଲା । କିନ୍ତୁ ଇଉରୋପ ପରି ଏପରି ଅବସ୍ଥାରେ ଆମେ ସେଠାରେ ବିଜ୍ଞାନର ବୃଦ୍ଧି ଦେଖିବାକୁ ପାଉନାହିଁ କିମ୍ବା ସାଧାରଣ ଲୋକଙ୍କ ପାଇଁ ସ୍ୱାଧୀନତା ଲାଗି ସମପରିମାଣର ପ୍ରେରଣା ସେଠାରେ ଦେଖାଯାଏ ନାହିଁ । ଉଭୟ ରାଜ୍ୟରେ ଦୀର୍ଘକାଳର ଧର୍ମସମ୍ବନ୍ଧୀୟ ସ୍ୱାଧୀନତା ଏବଂ ସହର, ଗ୍ରାମ ଓ ହସ୍ତଶିଳ୍ପୀଙ୍କ ଭିତରେ ସ୍ଥାନୀୟ ସ୍ୱାଧୀନତା ରହିଥିଲା । ସ୍ଥାନୀୟ ବ୍ୟାପାରରେ ହସ୍ତକ୍ଷେପ ନ ହେବା ପର୍ଯ୍ୟନ୍ତ ଲୋକେ ରାଜାର କ୍ଷମତା ଓ ଏକଚ୍ଛତ୍ରାଧିକାର ପ୍ରତି ଆଦୌ ଖାତିର କରୁ ନଥିଲେ । ଉଭୟ ରାଜ୍ୟରେ ଏକ ଏକ ସାମାଜିକ

ସଂଗଠନ ରହିଥିଲା । ଏହା ଦୀର୍ଘକାଳ ପର୍ଯ୍ୟନ୍ତ ତିଷ୍ଠି ରହିଲା ଏବଂ ଇଉରୋପରେ ଅନ୍ୟ ଜାତିଷ ଅପେକ୍ଷା ଅତ୍ୟଧିକ ସ୍ଥାୟୀ ହୋଇଥିଲା । ସମ୍ଭବତଃ ଏହି ସଂଗଠନର ସ୍ଥାୟିତ୍ୱ ଓ କଠୋରତା ହିଁ ଏହାର ବୃଦ୍ଧିରେ ବାଧା ପହଞ୍ଚାଇଲା । ଆମେ ଦେଖିଛେ, ଭାରତରେ ଭେଦଭାବ ଓ ଅଧୋଗତି ଫଳରେ ଶେଷରେ ମୋଗଲ ବାବର ଆସି ଉତ୍ତରାଞ୍ଚଳ ଦଖଲ କଲେ । ଲୋକେ ପୁରାତନ ଆର୍ଯ୍ୟ ସ୍ୱାଧୀନତାର ଧାରଣା ସମ୍ପୂର୍ଣ୍ଣରୂପେ ପାସୋର ପକାଇଥିଲା ପରି ମନେହୁଏ ଏବଂ ସେମାନେ ଯେକୌଣସି ଶାସକର ଦାସତ୍ୱ ଓ ଅଧୀନତା ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲା ପରି ବୋଧହେଲା । ସେପରିକି ଯେଉଁ ମୁସଲମାନମାନେ ଦେଶରେ ଏକ ନୂତନ ଜୀବନ ଆଣି ଦେଇଥିଲେ, ସେମାନେ ମଧ୍ୟ ଅନ୍ୟମାନଙ୍କ ପରି ଅଧୋଗତିସମ୍ପନ୍ନ ଓ ଦାସଭାବାପନ୍ନ ହୋଇଥିଲା ପରି ଜଣାପଡ଼େ ।

ତେଣୁ ଇଉରୋପରେ ନୂତନ ଶକ୍ତି ଓ ତେଜ ପୁରି ରହିଥିଲା, ଏହା ପୁରାତନ ସଭ୍ୟତାରେ ନଥିଲା, ଇଉରୋପ ଏହି ଶକ୍ତି ଯୋଗୁଁ ଧୀରେ ଧୀରେ ଆଗେଇ ଚାଲିଲା । ଇଉରୋପର ସନ୍ତାନମାନେ ପୃଥିବୀର ସୁଦୂର କୋଣମାନଙ୍କୁ ଯାତ୍ରା କଲେ । ବାଣିଜ୍ୟ ଓ ସମ୍ପଦର ଲାଳସା ହେତୁ ତାର ନାବିକମାନେ ଆମେରିକା ରାଜ୍ୟ ଓ ଏସିଆକୁ ଗଲେ । ଦକ୍ଷିଣ-ପୂର୍ବ ଏସିଆରେ ପର୍ତ୍ତୁଗୀଜମାନେ ମଲକ୍କାର ଆରବ ସାମ୍ରାଜ୍ୟ ଲୋପ କରିଦେଇଥିଲେ । ସେମାନେ ଭାରତୀୟ ଉପକୂଳ ଓ ସମଗ୍ର ପୂର୍ବୀୟ ସାଗରରେ ବନ୍ଦର ସ୍ଥାପନ କଲେ । କିନ୍ତୁ ଅତି ଶୀଘ୍ର ହଲାଣ୍ଡ ଓ ଇଂଲଣ୍ଡ—ଏହି ଦୁଇ ନୂତନ ସାମୁଦ୍ରିକ ଶକ୍ତି ସେମାନଙ୍କର ମସଲା ବେପାରର ଏକାଧିପତ୍ୟ ବିରୁଦ୍ଧରେ ଉଠିଲେ । ପର୍ତ୍ତୁଗାଲମାନଙ୍କୁ ପୂର୍ବରୁ ଓ ତାର ପୂର୍ବୀୟ ସାମ୍ରାଜ୍ୟରୁ ବାହାର କରିଦିଆଗଲା ଏବଂ ବାଣିଜ୍ୟ ହ୍ରାସ ଲଭିଲା । ଡଚ୍‌ମାନେ କେତେକ ପରିମାଣରେ ପର୍ତ୍ତୁଗାଲରେ ସ୍ଥାନ ନେଲେ ଏବଂ ଅନେକ ପୂର୍ବୀୟ ଦ୍ୱୀପ ସେମାନେ ଦଖଲ କରିଥିଲେ । ୧୬୦୦ ଖ୍ରୀଷ୍ଟାବ୍ଦରେ ଲଣ୍ଡନ ବଣିକମାନଙ୍କର ଇଷ୍ଟଇଣ୍ଡିଆ ନାମକ ଏକ କମ୍ପାନୀକୁ ଭାରତରେ ବେପାର କରିବା ନିମନ୍ତେ ରାଣୀ ଏଲିଜାବେଥ୍ ଏକ ସନନ୍ଦ ଦେଲେ ଏବଂ ଦୁଇବର୍ଷ ପରେ ଡଚ୍ ଇଷ୍ଟଇଣ୍ଡିଆ କମ୍ପାନୀ ଗଠିତ ହେଲା । ଏହିରୂପେ ଏସିଆକୁ ଇଉରୋପ ଗ୍ରାସ କରିବା କାଳ ଆରମ୍ଭ ହେଲା । ଦୀର୍ଘକାଳ ପର୍ଯ୍ୟନ୍ତ ଏହା ପ୍ରାୟ ମାଲୟ ଓ ପୂର୍ବୀୟ ଦ୍ୱୀପପୁଞ୍ଜରେ ଆବଦ୍ଧ ଥିଲା । ମିଙ୍ଗ ଓ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଆସିଥିବା ପ୍ରଥମ ମାଞ୍ଚୁମାନଙ୍କ ଅମଳରେ ଚୀନ ଶକ୍ତିଶାଳୀ ଥିଲା । ଇଉରୋପ ପକ୍ଷରେ ସେଠାରେ ପ୍ରବେଶ କରିବା କଷ୍ଟକର ଥିଲା । ଜାପାନ ପ୍ରକୃତରେ ବହୁଦୂର ଆଗକୁ ଯାଇ ପ୍ରତ୍ୟେକ ବିଦେଶୀକୁ ତଡ଼ିଦେଲା ଏବଂ ୧୬୪୧ରେ ସମ୍ପୂର୍ଣ୍ଣରୂପେ ନିଜ ଦେଶର ଦ୍ୱାରରୁଦ୍ଧ କରିଦେଲା । ଆଉ ଭାରତ ? ଭାରତ କାହାଣୀ ବର୍ଣ୍ଣନା କରିବାରେ ଆମେ ପଛରେ ପଡ଼ିଯାଇଛେ ଓ ସମସ୍ତଙ୍କୁ ତାହା ପୂରଣ କରିବାକୁ ହେବ । ଆମେ ଦେଖିବା, ନୂତନ ମୋଗଲ ବଂଶ ଅଧୀନରେ ଭାରତରେ ଏକ ଶକ୍ତିଶାଳୀ ରାଜତନ୍ତ୍ର ଗଢ଼ି ଉଠିଲା ଏବଂ ଇଉରୋପୀୟ ଆକ୍ରମଣର ବିଶେଷ ଆଶଙ୍କା ବା ସମ୍ଭାବନା ନ ଥିଲା; କିନ୍ତୁ ଇଉରୋପ ଆଗରୁ ସମୁଦ୍ରରେ ଶ୍ରେଷ୍ଠତ୍ୱ ଲାଭ କରିଥିଲା ।

ଏବେ ଆମେ ଭାରତକୁ ଆସିଲେ । ଇଉରୋପ,ଚୀନ, ଜାପାନ ଓ ମାଲୟେସିଆ ବିବରଣୀ ଆମେ ୧୬ଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ବର୍ଣ୍ଣନା କରିଛେ ଏବଂ ଅଷ୍ଟାଦଶ ଶତାବ୍ଦୀର ନିକଟରେ ଆସି ପହଞ୍ଚିଛେ । କିନ୍ତୁ ଭାରତରେ ଆମେ ୧୬ଶ ଶତାବ୍ଦୀର ପ୍ରଥମ ଭାଗରେ ରହିଛେ । ବାବର ଏହି ସମୟରେ ଆସିଥିଲେ ।

୧୫୨୬ରେ ଦିଲ୍ଲୀର ଦୁର୍ବଳ ଓ ଘୃଣ୍ୟ ଆଫଗାନ ସୁଲତାନଙ୍କ ଉପରେ ବାବରଙ୍କ ବିଜୟ ଭାରତରେ ଏକ ନୂତନ ଯୁଗ ଓ ନୂତନ ସାମ୍ରାଜ୍ୟର ଶୁଭ ଦେଲା—ଏହା ହେଉଛି ମୋଗଲ ସାମ୍ରାଜ୍ୟ । ମଝିରେ ଅଳ୍ପ କେତେକାଳ ବ୍ୟତୀତ ଏହା ୧୫୨୬ ଠାରୁ ୧୭୦୭ ପର୍ଯ୍ୟନ୍ତ ୧୮୧ ବର୍ଷ କାଳ ରହିଥିଲା । ଏହା ସେମାନଙ୍କର କ୍ଷମତା ଓ ଗୌରବକାଳ । ଏତେବେଳେ ଭାରତର ମୋଗଲର ଯଶ ସମସ୍ତ ଏସିଆ ଓ ଇଉରୋପରେ ପ୍ରସାର ଲାଭ କରିଥିଲା । ଏହି ବଂଶର ୬ଟି ବଡ଼ ଶାସକ ଥିଲେ ଏବଂ ତା'ପରେ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଗଲା । ମରହଟ୍ଟା, ଶିଖ ଓ ଅନ୍ୟମାନେ ଏଥିରୁ ଖଣ୍ଡେ ଖଣ୍ଡେ ରାଜ୍ୟ କାଢ଼ିନେଲେ । ତାଙ୍କ ପରେ ଆସିଲେ ବ୍ରିଟିଶ; ସେମାନେ ଦେଶରେ କେନ୍ଦ୍ରୀୟ ଶକ୍ତିର ପତନ ଓ ବିଶୃଙ୍ଖଳା ହେତୁ ଫାଇଦା ଉଠାଇବା କ୍ରମେ ନିଜ କର୍ତ୍ତୃତ୍ୱ ସ୍ଥାପନ କଲେ ।

ମୁଁ ବାବରଙ୍କ ସମ୍ବନ୍ଧରେ ତୋତେ ଆଗରୁ କିଛି କହିଛି । ଚେଙ୍ଗିଜ୍ ତୈମୁରଙ୍କ ବଂଶଧର ହୋଇଥିବାରୁ କିଛିତ୍ ପରିମାଣରେ ସେମାନଙ୍କର ବୈଶିଷ୍ଟ୍ୟ ଓ ସାମରିକ ଦକ୍ଷତା ତାଙ୍କ-ଠାରେ ଥିଲା । କିନ୍ତୁ ଚେଙ୍ଗିଜଙ୍କ କାଳପରେ ମଙ୍ଗୋଲମାନେ ଅଧିକ ଭଦ୍ର ହୋଇଥିଲେ ଏବଂ ବାବର ଅତ୍ୟନ୍ତ ସଂସ୍କୃତିସମ୍ପନ୍ନ ଓ ଆହ୍ଲାଦଜନକ ବ୍ୟକ୍ତି ଥିଲେ । ତାଙ୍କଠାରେ କୌଣସି ସାଂପ୍ରଦାୟିକତା ଭାବ ଓ କୌଣସି ପ୍ରକାର ଧାର୍ମିକ ମତାନ୍ଧତା ନଥିଲା ଏବଂ ପୂର୍ବପୁରୁଷଙ୍କ ପରି ସେ ଧ୍ୱଂସ କରୁନଥିଲେ । ସେ କଳା ଓ ସାହିତ୍ୟ ପ୍ରତି ଅନୁରକ୍ତ ଥିଲେ ଏବଂ ନିଜେ ପାର୍ସୀ ଭାଷାରେ କବି ଥିଲେ । ସେ ପୁଷ୍ପ ଓ ଉଦ୍ୟାନକୁ ଭଲ ପାଉଥିଲେ ଏବଂ ଭାରତରେ ଅତ୍ୟଧିକ ଉତ୍ତାପ ହେତୁ ସେ ଅନେକ ସମୟରେ ମଧ୍ୟଏସିଆରେ ନିଜର ଜନ୍ମସ୍ଥଳୀ କଥା ଚିନ୍ତା କରୁଥିଲେ । ସେ ତାଙ୍କର ସଂକ୍ଷିପ୍ତ ଜୀବନୀରେ କହିଛନ୍ତି; "ଫରଗନାରେ ଲତାଗୁଳ୍ମ ଅତ୍ୟନ୍ତ ମନୋରମ; ଏହା ଏକ କ୍ଷୁଦ୍ର କ୍ଷୁଦ୍ର ବୃକ୍ଷ ଓ ଗୋଲପ ଫୁଲର ସମଷ୍ଟି ଅଟେ ।"

ବାବରଙ୍କ ପିତାଙ୍କ ମୃତ୍ୟୁବେଳକୁ ତାଙ୍କର ବୟସ ୧୧ ବର୍ଷ ମାତ୍ର ହୋଇଥିଲା ଏବଂ ସେ ସମରକନ୍ଦର ଶାସକ ହୋଇଥିଲେ । ଏହା କିଛି ଏକ ସହଜ କାମ ନୁହେଁ । ଚତୁର୍ଦ୍ଦିଗରେ ଶତ୍ରୁ ଘେରି ରହିଥିଲେ । ତେଣୁ ଯେଉଁ ବୟସରେ ଛୋଟ ଛୋଟ ବାଳକ ବାଳିକା ସ୍କୁଲରେ ଅଧ୍ୟୟନ କରନ୍ତି, ସେପରି ବୟସରେ ତାଙ୍କୁ ତରବାରି ହସ୍ତରେ ଯୁଦ୍ଧକ୍ଷେତ୍ରକୁ ଯିବାକୁ ପଡ଼ିଥିଲା । ସେ ସିଂହାସନ ହରାଇଥିଲେ ଏବଂ ପୁଣି ଜୟଲାଭ କରି ଫେରି ପାଇଲେ । ଝଞ୍ଜାମୟ ଜୀବନୀ ଭିତରେ ତାଙ୍କୁ ଅନେକ ବିପଦ ଉଠାଇବାକୁ ପଡ଼ିଥିଲା । ତଥାପି ସେ

ସାହିତ୍ୟ, କବିତା ଓ କଳାର ଆଲୋଚନା କରିପାରିଥିଲେ । ଉଚ୍ଚାକାଙ୍କ୍ଷା ହିଁ ତାଙ୍କୁ ଆଗେଇ ନେଲା । ସେ କାବୁଲ ଜୟ କରିସାରି ସିନ୍ଧୁନଦୀ ଅତିକ୍ରମ କରି ଭାରତକୁ ଆସିଲେ । ତାଙ୍କ ସହିତ କ୍ଷୁଦ୍ର ସେନାବାହିନୀ ଥିଲେ; ମାତ୍ର ତାଙ୍କ ପାଖରେ ଏକ ନୂତନ ଅଶ୍ୱାରୋହୀ ସେନା ଥିଲେ, ସେତେବେଳେ ଇଉରୋପ ଓ ପଶ୍ଚିମ ଏସିଆରେ ଏହା ବ୍ୟବହୃତ ହେଉଥିଲା । ଯେଉଁ ପ୍ରକାଣ୍ଡ ଆଫଗାନ ସେନା ତାଙ୍କ ସହିତ ଲଢ଼ାଇ କରିବାକୁ ବାହାରିଲେ ତାହା ଏହି କ୍ଷୁଦ୍ର ସୁଶିକ୍ଷିତ ସେନା ଓ ଅଶ୍ୱାରୋହୀଙ୍କ ଆଗରେ ଖଣ୍ଡ ଖଣ୍ଡ ହୋଇଗଲା ଏବଂ ବାବର ବିଜୟୀ ହେଲେ । କିନ୍ତୁ ତାଙ୍କର କଷ୍ଟଭୋଗ ଶେଷ ହୋଇ ନଥିଲା ଓ ଅନେକ ସମୟରେ ତାଙ୍କର ଭାଗ୍ୟ ବିପର୍ଯ୍ୟୟ ଘଟୁଥିଲା । ଥରେ ଯେତେବେଳେ ଗୁରୁତର ବିପଦ ପଡ଼ିଥିଲା, ସେତେବେଳେ ଉତ୍ତରକୁ ପଳାଇଯିବା ନିମନ୍ତେ ତାଙ୍କର ସେନାପତିମାନେ ତାଙ୍କୁ ପରାମର୍ଶ ଦେଇଥିଲେ । କିନ୍ତୁ ସେ ଖୁବ୍ ହାଣୁଆ ଥିଲେ ଏବଂ କହିଲେ ଯେ, ପଳେଇଯିବା ଅପେକ୍ଷା ମୃତ୍ୟୁର ସମ୍ମୁଖୀନ ହେବା ସେ ଶ୍ରେୟସ୍କର ମନେ କରନ୍ତି । ସେ ମଦ୍ୟପାନ ଭଲ ପାଉଥିଲେ । ଯାହାହେଉ ତାଙ୍କ ଜୀବନର ଏହି ସଙ୍କଟ କାଳରେ ସେ ମଦ୍ୟପାନ ତ୍ୟାଗ କରିବାକୁ ସ୍ଥିର କରିଥିଲେ ଏବଂ ମଦ ପିଇବା ପିଆଲା ସବୁ ଭାଙ୍ଗି ପକାଇଲେ । ଭାଗ୍ୟକ୍ରମେ ସେ କୃତକାର୍ଯ୍ୟ ହେଲେ ଏବଂ ମଦ୍ୟପାନ ବିଷୟରେ ତାଙ୍କର ଶପଥ ବଜାୟ ରଖିଥିଲେ ।

ବାବର ଭାରତରେ ୪ ବର୍ଷ ପ୍ରାୟ ରହିଛନ୍ତି କି ନାହିଁ ପ୍ରାଣତ୍ୟାଗ କଲେ । ଏହି ଚାରିବର୍ଷ କାଳ କେବଳ ଯୁଦ୍ଧ ଲାଗିଥିଲା । ସେ ବିଶ୍ରାମ ପାଇ ନଥିଲେ । ଭାରତ ପକ୍ଷରେ ସେ ଏକପ୍ରକାର ଅପରିଚିତ ହୋଇ ରହିଥିଲେ ଏବଂ ବିଶେଷ କିଛି ଜାଣି ନଥିଲେ । ଆଗ୍ରାରେ ସେ ଏକ ଅପୂର୍ବ ରାଜଧାନୀ ଗଢ଼ିଲେ ଏବଂ ଜଣେ ପ୍ରସିଦ୍ଧ ଶିଳ୍ପୀଙ୍କୁ କନ୍‌ଷ୍ଟାଣ୍ଟିନୋପଲକୁ ପଠାଇଥିଲେ । ସେତେବେଳେ ସୁଲେମାନ କନ୍‌ଷ୍ଟାଣ୍ଟିନୋପଲରେ କୋଠା ତିଆରି କରୁଥାନ୍ତି । ସିନାନ ନାମକ ଜଣେ ପ୍ରସିଦ୍ଧ ଅଟୋମାନ୍ ଶିଳ୍ପୀ ତାଙ୍କର ପ୍ରିୟ ଛାତ୍ର ଇସୁଫ୍‌କୁ ଭାରତ ପଠାଇଥିଲେ ।

ବାବର ତାଙ୍କ ଜୀବନର ଇତିବୃତ୍ତି ଲେଖିଥିଲେ ଏବଂ ଏହି ମନୋରମ ପୁସ୍ତକରୁ ତାଙ୍କର ବ୍ୟକ୍ତିତ୍ୱ ବିଷୟରେ ପୂର୍ଣ୍ଣ ଆଭାସ ମିଳେ । ସେ ହିନ୍ଦୁସ୍ଥାନର ପଶୁ, ପୁଷ୍ପ, ବୃକ୍ଷ, ଫଳସବୁ ବିଷୟ ବର୍ଣ୍ଣନା କରିଛନ୍ତି—ଏପରିକି ବେଙ୍ଗମାନଙ୍କ ବିଷୟ ସୁଦ୍ଧା ଭୁଲି ନାହାନ୍ତି ! ସେ ତାଙ୍କ ମାତୃଭୂମିର ତରଭୁଜ, ଅଙ୍ଗୁର ଓ ଫୁଲ ପାଇଁ ବ୍ୟାକୁଳ ହୋଇ ପଡ଼ିଥିଲେ । ଲୋକମାନଙ୍କ ଅବସ୍ଥା ଦେଖି ଅତ୍ୟନ୍ତ ହତାଶ ହୋଇପଡ଼ିଥିଲେ । ତାଙ୍କ କଥାନୁସାରେ ଭାରତୀୟଙ୍କର ଗୋଟିଏ ହେଲେ କିଛି ଭଲଗୁଣ ନଥିଲା । ସମ୍ଭବତଃ ତାଙ୍କ ଚାରିବର୍ଷ ଯୁଦ୍ଧକାଳ ଭିତରେ ସେ ସେମାନଙ୍କ ସମ୍ବନ୍ଧରେ ଜାଣିପାରି ନଥିଲେ ଏବଂ ଭାରତର ଅଧିକ ସଂସ୍କୃତିସମ୍ପନ୍ନ ଶ୍ରେଣୀ ବି ନୂତନ ବିଜେତାଙ୍କଠାରୁ ଦୂରରେ ରହିଥିଲେ । ଜଣେ ନୂତନ ଆଗନ୍ତୁକ ଅନ୍ୟ ଲୋକଙ୍କ ଜୀବନ ଓ ସଂସ୍କୃତିରେ ସହଜରେ ପ୍ରବେଶ କରିପାରେ ନାହିଁ । ଯାହାହେଉ, ଯେଉଁ ଆଫଗାନମାନେ ଶାସକ ଶ୍ରେଣୀ ଥିଲେ, ତାଙ୍କ ଭିତରେ କିମ୍ବା ଅଧିକାଂଶ ଲୋକଙ୍କ ଭିତରେ ହେଁ ପ୍ରଶଂସାଯୋଗ୍ୟ ବିଶେଷ କିଛି ଦେଖିପାରି ନଥିଲେ । ସେ ଜଣେ ଉତ୍ତମ ନିରୀକ୍ଷକ ଏବଂ

ନୂତନ ଆଗନ୍ତୁକର ମତାମତ ହୋଇଥିଲେ ଛାଡ଼ିଦେଲେ ତାଙ୍କର ବିବରଣୀରୁ ଜଣାପଡ଼େ ଯେ, ଉତ୍ତର-ଭାରତର ସେତେବେଳେ ବଡ଼ ଦରିଦ୍ର ଅବସ୍ଥା ଥିଲା । ସେ ଆଦୌ ଦକ୍ଷିଣ-ଭାରତ ପରିଦର୍ଶନ କରି ନ ଥିଲେ ।

ବାବର କହି ଯାଇଛନ୍ତି, "ହିନ୍ଦୁସ୍ଥାନ ସାମ୍ରାଜ୍ୟ ବିସ୍ତୃତ, ଲୋକବସତିପୂର୍ଣ୍ଣ ଓ ଐଶ୍ୱର୍ଯ୍ୟ-ଶାଳୀ ଥିଲା । ପୂର୍ବ, ଦକ୍ଷିଣ ଏବଂ ପଶ୍ଚିମରେ ବି ମହାସାଗର ଦ୍ୱାରା ଏହା ପରିବେଷ୍ଟିତ । ଏହାର ଉତ୍ତରରେ କାବୁଲ ଗଜନୀ ଓ କାନ୍ଦାହାର ରହିଛି । ସମସ୍ତ ହିନ୍ଦୁସ୍ଥାନର ରାଜଧାନୀ ହେଉଛି ଦିଲ୍ଲୀ । ବାବର ଯେତେବେଳେ ଆସିଥିଲେ, ସେତେବେଳେ ଭାରତ ଅନେକ ରାଜ୍ୟରେ ବିଭକ୍ତ ହୋଇଥିଲେ ସୁଦ୍ଧା ଆନନ୍ଦର କଥା ଯେ, ସେ ସମଗ୍ର ଭାରତକୁ ଏକ ଦେଶ ବୋଲି ବିଚାର କରୁଥିଲେ । ଭାରତର ଏହି ଐକ୍ୟଭାବ ଆଦିମ ଇତିହାସ କାଳରୁ ରହି ଆସିଅଛି ।

ବାବର ଭାରତ ବିଷୟରେ ଆହୁରି ବର୍ଣ୍ଣନା କରି କହିଛନ୍ତି—

"ଏହା ଏକ ଅପୂର୍ବ ମନୋରମ ଦେଶ । ଅନ୍ୟ ଦେଶଗୁଡ଼ିକ ତୁଳନାରେ ଏହା ସମ୍ପୂର୍ଣ୍ଣ ପୃଥକ ଦୁନିଆ । ଏହାର ପାହାଡ଼, ନଦୀ, ଅରଣ୍ୟ ଓ ସମତଳ ଭୂମି, ପଶୁ ଓ ଉଦ୍ଭିଦ, ଅଧିବାସୀ ଓ ତାଙ୍କର ଭାଷା, ଏହାର ବାୟୁ ଓ ବର୍ଷା ସବୁ ସ୍ୱତନ୍ତ୍ର ଧରଣରେ···ତମେ ସିନ୍ଧୁ ଅତିକ୍ରମ କରିବା ପରେ ହିଁ ହିନ୍ଦୁସ୍ଥାନର ବିଶେଷ ଢଙ୍ଗର ଦେଶ, ବୃକ୍ଷ, ପ୍ରସ୍ତର, ଯାଯାବର ଜାତି, ଲୋକଙ୍କର ରୀତିନୀତି ଓ ପ୍ରଥା ଦେଖିପାରିବ । ଏପରିକି ସରୀସୃପଗୁଡ଼ିକ ବି ବିଭିନ୍ନ ଧରଣର....ହିନ୍ଦୁସ୍ଥାନର ବେଙ୍ଗଗୁଡ଼ିକ ଲକ୍ଷ୍ୟ କରିବାର ଜିନିଷ । ଯଦିଓ ତାଙ୍କର ଜୀବାତ୍ମା ଆମପରି ତଥାପି ସେମାନେ ଜଳ ଉପରେ ଛ ସାତ ଗଜ କୁଦିପାରନ୍ତି ।"

ତା ପରେ ସେ ହିନ୍ଦୁସ୍ଥାନର, ପଶୁ, ପୁଷ୍ପ, ବୃକ୍ଷ ଓ ଫଳମାନଙ୍କ ଏକ ତାଲିକା ଦେଇଛନ୍ତି ।

ତା ପରେ ଲୋକମାନଙ୍କ ବିଷୟ ବର୍ଣ୍ଣନା କରି କହିଛନ୍ତି—

"ହିନ୍ଦୁସ୍ଥାନ ଦେଶରେ ଆମୋଦ ବୋଲି ଜିନିଷ ନାହିଁ । ଏଠାକାର ଲୋକେ ସୁନ୍ଦର ନୁହନ୍ତି । ସେମାନଙ୍କର ବନ୍ଧୁତ୍ୱପୂର୍ଣ୍ଣ ସମାଜର ମୋହ ବା ଖୋଲା ହୃଦୟରେ ଏକାଠି ମିଶିବା ବା ପରିଚିତ ଲୋକଙ୍କ ଭିତରେ ଭାବ ଆଦାନପ୍ରଦାନର କୌଣସି ଧାରଣା ନାହିଁ । ସେମାନଙ୍କର କୌଣସି ଧୀମତ୍ତା, ବୋଧଶକ୍ତି, ଶିଷ୍ଟାଚାର, କୌଣସି ପ୍ରକାର ଦୟାଶୀଳଭାବ ବା ସହୃଦୟଭାବ, ଯୋଜନା କରିବା ନିମନ୍ତେ କୌଣସି ପ୍ରକାର ବୁଦ୍ଧି ବା ଯାନ୍ତ୍ରିକ ଆବିଷ୍କାର ବା ହସ୍ତଶିଳ୍ପ କାର୍ଯ୍ୟ ଚଳାଇବା ନିମନ୍ତେ ବୁଦ୍ଧି, ହସ୍ତଶିଳ୍ପ ବା କାରିଗରୀରେ କୌଣସି ଦକ୍ଷତା ବା ଜ୍ଞାନ ନାହିଁ; ଏ ଦେଶରେ ଭଲ ଘୋଡ଼ା, ଭଲ ମାଂସ, ଅଙ୍ଗୁର ବା ତରଭୁଜ, କୌଣସି ଭଲ ଫଳ, ବରଫ ବା ଥଣ୍ଡାପାଣି, ଭଲ ଖାଦ୍ୟ ବା ବଜାରରେ ରୁଟି, କୌଣସି ସ୍ନାନାଗାର ବା କଲେଜ, ଦୀପ, ମଶାଲ, ଦୀପରୁଖା ନଥିଲା ।"

ତାହାହେଲେ ତାଙ୍କର ଥିଲା କ'ଣ ? ଜଣେ ଏ କଥା ପଚାରିପାରେ ! ବାବର ଯେତେବେଳେ ଏହା ଲେଖିଥିଲେ ସେ ନିଶ୍ଚୟ ସମ୍ପୂର୍ଣ୍ଣରୂପେ ବିରକ୍ତ ହୋଇ ଯାଇଥିବେ ।

ହିନ୍ଦୁସ୍ଥାନର ମୁଖ୍ୟ ଗୁଣ ହେଉଛି (ବାବର କହନ୍ତି) ଯେ ଏହା ଏକ ବିଶାଳ ଦେଶ ଏବଂ ସୁନା ଓ ରୁପା ଏଠାରେ ପ୍ରଚୁର ଥିଲା ।······ହିନ୍ଦୁସ୍ଥାନର ଆଉ ଏକ ସୁବିଧା ହେଉଛି, ଏଠାରେ ବିଭିନ୍ନ ବୃତ୍ତିଧାରୀ ଓ ବେପାର କରିବାର ଅସଂଖ୍ୟ ଓ ଅସରନ୍ତି ଲୋକ ଅଛନ୍ତି । ଯେ କୌଣସି କାର୍ଯ୍ୟ ପାଇଁ ଯେକୌଣସି ନିଯୁକ୍ତି ପାଇଁ ଏଠାରେ ଗୋଟିଏ ଗୋଟିଏ ଦଳର ଲୋକ ପ୍ରସ୍ତୁତ ହୋଇ ରହିଛନ୍ତି । ଯୁଗ ଯୁଗ ଧରି ବାପଠାରୁ ପୁଅ ଏହିସବୁ କାର୍ଯ୍ୟ ଓ ବେପାର ଶିକ୍ଷା କରି ଆସିଛି ।"

ବାବରଙ୍କ ଇତିବୃତ୍ତିରୁ ମୁଁ ଟିକିଏ ବିସ୍ତୃତ ଭାବରେ ଉଦ୍ଧାର କରିଛି । ଅନ୍ୟ କୌଣସି ବର୍ଣ୍ଣନା ଅପେକ୍ଷା ଏପରି ପୁସ୍ତକରୁ ତାଙ୍କ ସମ୍ବନ୍ଧରେ ଅନେକ ସମୟରେ ଭଲ ଧାରଣା ହୁଏ ।

ବାବର ୧୫୩୦ରେ ମଲେ । ସେତେବେଳେ ତାଙ୍କର ବୟସ ୪୯ ବର୍ଷ ମାତ୍ର ଥିଲା । ତାଙ୍କର ମୃତ୍ୟୁ ସମ୍ବନ୍ଧରେ ଏକ ପ୍ରସିଦ୍ଧ କାହାଣୀ ଅଛି । ତାଙ୍କର ପୁତ୍ର ହୁମାୟୁନ ପୀଡ଼ିତ ଥିଲେ ଏବଂ କଥିତ ଅଛି ଯେ, ପୁତ୍ର-ସ୍ନେହ ହେତୁ ପୁତ୍ରର ଆରୋଗ୍ୟ ନିମନ୍ତେ ସେ ନିଜ ଜୀବନ ଅର୍ପଣ କରିବାଲାଗି ପ୍ରସ୍ତୁତ ହେଲେ, ଏହାପରେ ହୁମାୟୁନ ଆରୋଗ୍ୟ ଲାଭ କଲେ ଏବଂ ତାହାର ଅଳ୍ପ କେତେ ଦିନ ପରେ ବାବର ପ୍ରାଣତ୍ୟାଗ କଲେ ।

ବାବରଙ୍କ ଶରୀରକୁ କାବୁଲକୁ ନିଆଗଲା ଏବଂ ସେଠାରେ ସେ ଭଲ ପାଉଥିବା ଏକ ଉଦ୍ୟାନରେ ତାଙ୍କୁ କବର ଦିଆଗଲା । ଶେଷରେ ସେ କାମନା କରୁଥିବା ଫୁଲ ପାଖକୁ ଫେରି ଯାଇଥିଲେ ।

# ୮୯ : ଆକବର

ସେପ୍ଟେମ୍ବର ୪, ୧୯୩୨

ବାବର ତାଙ୍କର ସେନାପତିତ୍ୱ ଓ ସାମରିକ କୁଶଳତାଦ୍ୱାରା ଉତ୍ତର-ଭାରତର ଅଧିକ ଭାଗ ଜୟ କରିଥିଲେ । ସେ ଦିଲ୍ଲୀର ଆଫଗାନ ସୁଲତାନଙ୍କୁ ପରାସ୍ତ କରିଥିଲେ ଏବଂ ପରେ ଆହୁରି ଏକ ଅଧିକ କଷ୍ଟକର କାର୍ଯ୍ୟର ସମ୍ମୁଖୀନ ହୋଇଥିଲେ । ତାଙ୍କୁ ଖ୍ୟାତନାମା ଯୋଦ୍ଧା ଚିତୋରର ନିର୍ଭିକ ରାଣା ସିଂହଙ୍କ ନେତୃତ୍ୱରେ ସମ୍ମିଳିତ ରାଜପୁତ ଜାତିଙ୍କର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ସେ ତାଙ୍କର ପୁତ୍ର ହୁମାୟୁନଙ୍କ ପାଇଁ ଆହୁରି କଷ୍ଟଦାୟକ କର୍ତ୍ତବ୍ୟ ରଖି ଯାଇଥିଲେ । ହୁମାୟୁନ ଜଣେ ଶିକ୍ଷିତ ଓ ବିଦ୍ୱାନ ବ୍ୟକ୍ତି ଥିଲେ ; କିନ୍ତୁ ପିତାଙ୍କ ପରି ଯୋଦ୍ଧା ନଥିଲେ । ତାଙ୍କର ନୂତନ ସାମ୍ରାଜ୍ୟର ଚାରିଆଡ଼େ ଗୋଳମାଳ ଦେଖାଦେଇଥିଲା ଏବଂ ଶେଷରେ ୧୫୪୦ରେ ବାବରଙ୍କ ମୃତ୍ୟୁର ଠିକ୍ ଦଶ ବର୍ଷପରେ ବିହାରରେ ସେର ଖାଁ ନାମକ ଜଣେ ଆଫଗାନ ସାମନ୍ତ ତାଙ୍କୁ ପରାସ୍ତ କଲେ ଓ ଭାରତରୁ ତଡ଼ିଦେଲେ । ସୁତରାଂ ମହାନ ମୋଗଲଙ୍କ ଦ୍ୱିତୀୟ ରାଜା ଏକ ଭୁଲ ଫକୀର ହେଲେ, ନିଜେ ଲୁଚି ଛପି ବୁଲିଲେ ଏବଂ ସକଳ ପ୍ରକାର ଯନ୍ତ୍ରଣା ଭୋଗ କଲେ । ରାଜପୁତନାର ମରୁଭୂମିରେ ଏପରି ଭ୍ରମଣ କରୁଥିବା କାଳରେ ୧୫୪୨ ନଭେମ୍ବର ମାସରେ ତାଙ୍କର ସ୍ତ୍ରୀ ଏକ ପୁତ୍ର ପ୍ରସବ କରିଥିଲା । ମରୁଭୂମିରେ ଜାତ ଏହି ପୁତ୍ରଟି ହେଉଛନ୍ତି ଆକବର ।

ହୁମାୟୁନ ଇରାନକୁ ପଳାଇଗଲେ ଏବଂ ସେଠାକାର ଶାସକ ସାହା ତାମସ୍ପ ତାଙ୍କୁ ଆଶ୍ରୟ ଦେଲେ । ଏଥିଭିତରେ ଉତ୍ତର-ଭାରତରେ ସେରଖାଁ ସର୍ବେସର୍ବା ହେଲେ ଏବଂ ପାଞ୍ଚ ବର୍ଷକାଳ ସେ ସେରସାହ ଭାବରେ ଶାସନ କରୁଥିଲେ । ସେହି ସ୍ୱଳ୍ପକାଳ ଭିତରେ ସେ ଦେଖାଇ ଦେଇଥିଲେ ଯେ, ସେ ଜଣେ ଦକ୍ଷ ବ୍ୟକ୍ତି । ସେ ବିଚକ୍ଷଣ ସଂଗଠନକାରୀ ଥିଲେ ଓ ତାଙ୍କର ଶାସନ କ୍ଷମତାଶୀଳ ଓ ନିପୁଣ ଥିଲା । ଯୁଦ୍ଧ ଭିତରେ ଚାଷୀମାନଙ୍କ ଉପରେ ଟିକସ ଧାର୍ଯ୍ୟ କରିବା ନିମନ୍ତେ ଏକ ନୂତନ ଓ ଉନ୍ନତ ଭୂରାଜସ୍ୱ ପ୍ରଥା ପ୍ରଚଳନ କରିବାକୁ ସେ ସମୟ ପାଇଥିଲେ । ସେ ଜଣେ ନିଷ୍ଠାବାନ ଓ ଟାଣୁଆ ଲୋକ ଥିଲେ, କିନ୍ତୁ ଭାରତର ସମସ୍ତ ଆଫଗାନ ଶାସକଙ୍କ ମଧ୍ୟରେ ଏବଂ ଅନ୍ୟ ଅନେକଙ୍କ ଭିତରେ ବି ସେ ନିଶ୍ଚିତରୂପେ ଦକ୍ଷ ଓ ଉତ୍କୃଷ୍ଟ ଥିଲେ । ମାତ୍ର କାର୍ଯ୍ୟଦକ୍ଷ ଏକଛତ୍ର ଶାସକମାନେ ଯେପରି ହୋଇଥାନ୍ତି, ସେହିପରି ତାଙ୍କ ଶାସନରେ ସେ ସର୍ବେସର୍ବା ଥିଲେ ଏବଂ ତାଙ୍କର ମୃତ୍ୟୁ ପରେ ସମସ୍ତ ସଂଗଠନ ଖଣ୍ଡ ଖଣ୍ଡ ହୋଇ ପଡ଼ିଲା ।

ହୁମାୟୁନ ଏହି ସଂଗଠନ ଅଭାବର ସୁବିଧା ନେଲେ ଏବଂ ଏକ ସେନା ସହ ୧୫୫୬ରେ ଇରାନରୁ ଆସିଲେ । ସେ ଜୟଲାଭ କଲେ ଏବଂ ୧୬ ବର୍ଷ ପରେ ପୁନର୍ବାର ଦିଲ୍ଲୀ ସିଂହାସନ ପାଇଲେ । କିନ୍ତୁ ଏହା ଦୀର୍ଘକାଳ ପାଇଁ ନୁହେଁ । ଛ'ମାସ ପରେ ସେ ଏକ ପାହାଚରୁ ପଡ଼ିଯାଇ ମରିଗଲେ ।

ସେରସାହ ଓ ହୁମାୟୁନଙ୍କ କବର ଭିତରେ ପାର୍ଥକ୍ୟ ଦେଖିଲେ ମଜାଲାଗେ । ସେରସାହଙ୍କ କବର ବିହାରର ସାହସ୍ରାମଠାରେ, ଏହା ତାଙ୍କପରି କଠୋର, ଶକ୍ତ ଓ ରାଜକୀୟ କୋଠା । ହୁମାୟୁନଙ୍କ କବର ଦିଲ୍ଲୀରେ ଅଛି । ଏହା ଏକ ଚିକ୍କଣ ଓ ସୁନ୍ଦର କୋଠା । ଏହି ପ୍ରସ୍ତରର ଗଠନରୁ ୧୬ଶ ଶତାବ୍ଦୀର ସାମ୍ରାଜ୍ୟଲାଗି ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀଙ୍କ ବିଷୟରେ ଭଲ ଧାରଣା ଜାତ ହୋଇପାରିବ ।

ଆକବରଙ୍କ ବୟସ ସେତେବେଳେ ୧୩ ବର୍ଷ ଥିଲା । ତାଙ୍କ ପିତାମହଙ୍କପରି ଖୁବ୍ ଅଳ୍ପ ବୟସରେ ସେ ସିଂହାସନ ଆରୋହଣ କରିଥିଲେ । ବୈରାମ ଖାଁ ନାମକ ତାଙ୍କର ଜଣେ ମୁରବୀ ଓ ରକ୍ଷକ ଥିଲେ । ତାଙ୍କୁ ଖାଁ ବାବା ବୋଲି କୁହାଯାଉଥିଲା । ଚାରି ବର୍ଷ ଭିତରେ ଆକବର ମୁରବୀଙ୍କୁ ଛାଡ଼ିଲେ ଏବଂ ଅନ୍ୟ ଲୋକଙ୍କ ପରାମର୍ଶକୁ ଅପେକ୍ଷା ନକରି ନିଜହାତରେ ଶାସନ ଭାର ନେଲେ ।

ପ୍ରାୟ ୫୦ ବର୍ଷ ପର୍ଯ୍ୟନ୍ତ (୧୫୫୬ ଠାରୁ ୧୬୦୫ ଶେଷ ପର୍ଯ୍ୟନ୍ତ) ଆକବର ଭାରତ ଶାସନ କରିଥିଲେ । ସେତେବେଳେ ଇଉରୋପରେ ନେଦରଲାଣ୍ଡ ବିଦ୍ରୋହ ହୋଇଥାଏ ଏବଂ ଇଂଲଣ୍ଡରେ ସେକ୍ସପିଅର ଜାତ ହୋଇଥାନ୍ତି । ଭାରତ ଇତିହାସରେ ଆକବରଙ୍କ ନାମ ଉଜ୍ଜ୍ୱଳ ହୋଇଛି ଏବଂ କେତେକ ପ୍ରକାରେ ତାଙ୍କ ରାଜତ୍ୱ ଦେଖି ଅଶୋକଙ୍କ କଥା ସ୍ମରଣ-ଆସେ । ଆଶ୍ଚର୍ଯ୍ୟ କଥାଯେ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଭାରତର ଜଣେ ବୌଦ୍ଧ ସମ୍ରାଟ ଏବଂ ଖ୍ରୀଷ୍ଟପରେ ୧୬ଶ ଶତାବ୍ଦୀରେ ଜଣେ ମୁସଲମାନ ସମ୍ରାଟ ଏକାଭଳି ପ୍ରାୟ ଏକା ଭାଷାରେ କଥା କହିଛନ୍ତି । ବେଳେ ବେଳେ ମନରେ ଏ ଭାବ ଉଠେ ଯେ, ସମ୍ଭବତ ଏହା ଭାରତର ହିଁ ବାଣୀ, ଦୁଇଟି ଶ୍ରେଷ୍ଠ ସନ୍ତାନଙ୍କ ମୁଖରୁ ଏହା ନିସୃତ ହୋଇଛି ମାତ୍ର । ଅଶୋକଙ୍କ ସମ୍ବନ୍ଧରେ ଆମେ ବିଶେଷ କିଛି ଜାଣୁନା, କେବଳ ସେ ନିଜେ ପଥର କୋଳି ଯାହା ଲେଖା ରଖିଯାଇଛନ୍ତି । ଆକବରଙ୍କ ସମ୍ବନ୍ଧରେ ଆମେ ବହୁକଥା ଜାଣୁ । ତାଙ୍କ ରାଜ ପରିଷଦର ଦୁଇଜଣ ସମସାମୟିକ ଐତିହାସିକ ଦୀର୍ଘ ବିବରଣୀ ଲେଖି-ଯାଇଛନ୍ତି ଏବଂ ଯେଉଁ ବିଦେଶୀ ମାନେ ତାଙ୍କ ପାଖକୁ ଆସିଥିଲେ ଓ ବିଶେଷତଃ ଯେଉଁ ଜେସୁଇଟମାନେ ତାଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇବାକୁ ଖୁବ୍ ଚେଷ୍ଟା କରିଥିଲେ ସେମାନେ ଦୀର୍ଘ ବିବରଣୀ ଲେଖି ଯାଇଛନ୍ତି ।

ବାବରଙ୍କ ବଂଶର ସେ ତୃତୀୟ ସମ୍ରାଟ; କିନ୍ତୁ ତାଙ୍କ ଅମଳ ପର୍ଯ୍ୟନ୍ତ ବି ମୋଗଲମାନେ ଭାରତରେ ନୂତନ ଥିଲେ ସେମାନଙ୍କୁ ବିଦେଶୀ ବୋଲି ଜ୍ଞାନ କରାଯାଉଥିଲା ଏବଂ

ସାମରିକ ଶକ୍ତି ଭାବରେ ସେମାନେ କର୍ତ୍ତୃତ୍ୱ କରୁଥିଲେ । ଆକବରଙ୍କ ରାଜୁତି ହିଁ ମୋଗଲ ବଂଶକୁ ପ୍ରତିଷ୍ଠିତ କରିଦେଲା ଏବଂ ଏହା ଏହି ମାଟିର ଲୋକଙ୍କର ଓ ଏହାର ଦୃଷ୍ଟିକୋଣ ସମ୍ପୂର୍ଣ୍ଣରୂପେ ଭାରତୀୟ ହେଲା । ତାଙ୍କର ରାଜୁତି କାଳରେ ହିଁ ଇଉରୋପରେ ମହାନ-ମୋଗଲ ଉପାଧି ବ୍ୟବହୃତ ହେବାକୁ ଲାଗିଲା । ସେ ଏକଛତ୍ରପତି ଥିଲେ ଓ ତାଙ୍କ କ୍ଷମତା ଅସୀମ ଥିଲା । ସେତେବେଳେ ଭାରତର ଶାସକର କ୍ଷମତା ପ୍ରତିରୋଧ କରିବାର ଭାବ କିଛି ଶୁଣାଯାଉ ନଥିଲା । ଆକବର ଜଣେ ବିଜ୍ଞ ସ୍ୱେଚ୍ଛାଚାରୀ ଥିଲେ ଏବଂ ସେ ଭାରତୀୟ ଲୋକଙ୍କ ମଙ୍ଗଳ ନିମନ୍ତେ କଠିନ ପରିଶ୍ରମ କରିଥିଲେ । ତାଙ୍କୁ ହିଁ ଏକପ୍ରକାର ଭାରତୀୟ ଜାତୀୟତାର ପିତା ବୋଲି ଧରାଯାଇପାରେ ! ଏହି ସମୟରେ ଯେତେବେଳେ ଦେଶରେ ଜାତି ବୋଲି କିଛି ନଥିଲା ଏବଂ ଧର୍ମ ଖଣ୍ଡ ଖଣ୍ଡ କରିଦେଉଥିଲା, ସେତେବେଳେ ଆକବର ଜାଣିଶୁଣି ବିଭିନ୍ନ ଧର୍ମର ଦାବିକୁ ଉପେକ୍ଷା କରି ଏକ ସାଧାରଣ ଭାରତୀୟ ଜାତିର ଆଦର୍ଶ ରଖିଥିଲେ । ତାଙ୍କ ଉଦ୍ୟମରେ ସେ ସମ୍ପୂର୍ଣ୍ଣରୂପେ କୃତକାର୍ଯ୍ୟ ହୋଇନଥିଲେ । କିନ୍ତୁ ସେ ଯେତେଦୂର ଯାଇପାରିଥିଲେ ଏବଂ ତାଙ୍କର ପ୍ରଚେଷ୍ଟା ଯେପରି ଅଧିକ ସାଫଲ୍ୟ ଲାଭ କରିଥିଲା, ତାହା ବାସ୍ତବିକ ବିସ୍ମୟକର ।

ତଥାପି ଆକବରଙ୍କ ସାଫଲ୍ୟ ଯେ ବିନା ସାହାଯ୍ୟରେ କେବଳ ତାଙ୍କ ନିଜଯୋଗୁଁ ହୋଇଥିଲା, ଏପରି ନୁହେଁ । ଉପଯୁକ୍ତ ସମୟ ଏବଂ ଅନୁକୂଳ ବାୟୁମଣ୍ଡଳ ନଥିଲେ କୌଣସି ଲୋକ ମହତ କାର୍ଯ୍ୟରେ ସଫଳ ହୋଇପାରିବ ନାହିଁ । ଅନେକ ସମୟରେ ମହାପୁରୁଷ-ମାନେ ଗତିକୁ ପ୍ରଖର ବେଗ ଦିଅନ୍ତି ଏବଂ ନିଜର ବାୟୁମଣ୍ଡଳ ସୃଷ୍ଟି କରନ୍ତି । କିନ୍ତୁ ମହାପୁରୁଷ ନିଜେ କାଳ ଓ ପ୍ରଚଳିତ ବାୟୁମଣ୍ଡଳରୁ ଜାତ । ତେଣୁ ଆକବର ନିଜେ ବି ଭାରତରେ ତତ୍‌କାଳୀନ ଯୁଗର ସନ୍ତାନ ଥିଲେ ।

ପୂର୍ବର ଏକ ଚିଠିରେ ଭାରତରେ କିପରି ଏକ ଅସ୍ପଷ୍ଟ ଶକ୍ତି ଦୁଇ ସଂସ୍କୃତି ଓ ଧର୍ମ ଭିତରେ ସମନ୍ୱୟ ଆଣିବାଲାଗି କାର୍ଯ୍ୟ କରୁଛି, ତାହା ମୁଁ ତୋତେ କହିଛି । କାର୍ଯ୍ୟକାର୍ଯ୍ୟରେ ନୂତନ ରୀତି, ଭାରତୀୟ ଭାଷା ବିଶେଷତଃ ଉର୍ଦ୍ଦୁ ବା ହିନ୍ଦୁସ୍ଥାନୀର ବୃଦ୍ଧି ବିଷୟରେ ମୁଁ ତୋତେ କହିଛି । ଆହୁରି ମଧ୍ୟ ରାମାନନ୍ଦ, କବୀର ଓ ଗୁରୁ ନାନକଙ୍କ ପରି ଧର୍ମ ସଂସ୍କାରକ ନେତା ମାନଙ୍କ କଥା କହିଛି । ସେମାନେ ଇସଲାମ୍ ଓ ହିନ୍ଦୁ ଧର୍ମ ଭିତରେ ଥିବା ସାଧାରଣ ଲକ୍ଷ୍ୟ ଉପରେ ଯୋର ଦେଇ ଓ ବାହ୍ୟ ଆଡ଼ମ୍ବର ଏବଂ ଆଚାର ବିଚାରର ସମାଲୋଚନା ଦ୍ୱାରା ଉଭୟଙ୍କୁ ପରସ୍ପର ନିକଟତର କରିବା ନିମନ୍ତେ ଚେଷ୍ଟା କରିଥିଲେ । ଏହି ସମନ୍ୱୟ ଭାବ ପ୍ରଚଳିତ ହୋଇଥିଲା ଏବଂ ଆକବରଙ୍କ ପରି ଏକ ସୁନ୍ଦର ଭାବପ୍ରବଣ ଓ ଗ୍ରହଣେଚ୍ଛୁ ମନୋଭାବାପନ୍ନ ବ୍ୟକ୍ତିଙ୍କ ଉପରେ ଅବଶ୍ୟ ଏହାର ପ୍ରଭାବ ପଡ଼ିଲା ଏବଂ ବହୁ ପରିମାଣରେ ଏହି ପ୍ରତିକ୍ରିୟା ତାଙ୍କ ମନରେ ହୋଇଥିଲା । ବାସ୍ତବିକ୍ ସେ ଏହାର ଜଣେ ମୁଖ୍ୟ ପ୍ରଚାରକ ଥିଲେ ।

ରାଜନୀତିଙ୍କ ଭାବରେ ମଧ୍ୟ ସେ ଏହି ସିଦ୍ଧାନ୍ତରେ ଅବଶ୍ୟ ପହଞ୍ଚିବେ ଯେ ତାଙ୍କର ନିଜର ଶକ୍ତି ଓ ତା'ପର ଶକ୍ତି ଏହି ସମନ୍ୱୟ ଉପରେ ନିର୍ଭର କରେ । ସେ ଜଣେ ସାହସୀ ଯୋଦ୍ଧା ଓ ଦକ୍ଷ ସେନାପତି ଥିଲେ । ଅଶୋକଙ୍କ ପରି ସେ କେବେହେଲେ ଯୁଦ୍ଧ ପ୍ରତି ବିତୃଷ୍ଣା ଦେଖାଇ ନାହାନ୍ତି । ସେ ତରବାରିର ଜୟ ଅପେକ୍ଷା ପ୍ରେମଦ୍ୱାରା ଲବ୍ଧ ଜୟକୁ ଶ୍ରେୟସ୍କର ମନେ କରୁଥିଲେ ଏବଂ ଜାଣିଥିଲେ ଯେ, ଏହା ଦୀର୍ଘକାଳ ସ୍ଥାୟୀ ହେବ । ତେଣୁ ସେ ଜାଣିଶୁଣି ହିନ୍ଦୁ ସାମନ୍ତ ଓ ହିନ୍ଦୁ ଜନତାର ସଦିଚ୍ଛା ଲାଭ କରି ନିମନ୍ତେ ଲାଗିପଡ଼ିଲେ । ସେ ଅମୁସଲମାନଙ୍କ ଉପରେ ବସିଥିବା ଜିଜିଆ କର ଓ ହିନ୍ଦୁ ଯାତ୍ରୀଙ୍କ ଉପରେ ବସିଥିବା ଟିକସ ଉଠାଇଦେଲେ । ନିଜେ ରାଜପୁତ ସାମନ୍ତ ପରିବାରର ଏକ କନ୍ୟାକୁ ବିବାହ କଲେ । ପରେ ତାଙ୍କ ପୁଅକୁ ମଧ୍ୟ ଜଣେ ରାଜପୁତ ବାଳିକା ସହ ବିବାହ ଦେଇଥିଲେ । ସେ ମିଶ୍ରିତ ବିବାହକୁ ଉତ୍ସାହିତ କରିଥିଲେ । ତାଙ୍କ ସାମ୍ରାଜ୍ୟରେ ରାଜପୁତ ସାମନ୍ତମାନଙ୍କୁ ଉଚ୍ଚ ପଦବୀରେ ନିଯୁକ୍ତ କରିଥିଲେ । ତାଙ୍କର ସାହସିକ ସେନାପତି ଓ ଅତ୍ୟନ୍ତ ଦକ୍ଷ ମନ୍ତ୍ରୀ ଏବଂ ଗଭର୍ଣ୍ଣର ଥିଲେ କେତେକ ହିନ୍ଦୁ । ଏପରିକି ରାଜା ମାନସିଂହଙ୍କୁ କିଛିକ୍ଷଣ ନିମନ୍ତେ କାବୁଲକୁ ଗଭର୍ଣ୍ଣର କରି ପଠା ହୋଇଥିଲା । ବାସ୍ତବିକ ରାଜପୁତ ଓ ହିନ୍ଦୁ ଜନତାକୁ ସନ୍ତୁଷ୍ଟ କରିବା ଚେଷ୍ଟାରେ ସେ ଏତେଦୂର ଯାଇଥିଲେ ଯେ, ବେଳେ ବେଳେ ମୁସଲମାନ ପ୍ରଜାଙ୍କ ପ୍ରତି ଅନ୍ୟାୟ କରୁଥିଲେ । ଯାହାହେଉ, ହିନ୍ଦୁମାନଙ୍କର ସଦିଚ୍ଛା ପାଇବାରେ ସେ କୃତକାର୍ଯ୍ୟ ହେଲେ ଏବଂ କାର୍ଯ୍ୟ କରିବାପାଇଁ ଓ ତାଙ୍କୁ ସମ୍ମାନ ଦେଖାଇବାପାଇଁ ରାଜପୁତମାନେ ତାଙ୍କପାଖରେ ରୁଣ୍ଡହେଲେ— ପ୍ରାୟ ସମସ୍ତେ ଆସିଥିଲେ, କେବଳ ମେବାରର ରାଣା ପ୍ରତାପ ସିଂହ ମୁଣ୍ଡ ନୁଆଁଇ ନଥିଲେ; ରାଣାପ୍ରତାପ ନାମକୁ ମାତ୍ର ସୁଦ୍ଧା ଆକବରଙ୍କ କର୍ତ୍ତୃତ୍ୱ ସ୍ୱୀକାର କରିବାକୁ ଅସ୍ୱୀକାର କଲେ । ଯୁଦ୍ଧରେ ପରାସ୍ତ ହୋଇ ଆକବରଙ୍କ ଅଧୀନସ୍ଥ ରାଜାରୂପେ ଆୟାସ ଜୀବନ ଯାପନ କରିବା ଅପେକ୍ଷା ଜଙ୍ଗଲ ମଧ୍ୟରେ ଏକ ଶୀକାରୀ ଜୀବନ ବିତାଇବାକୁ ସେ ଶ୍ରେୟସ୍କର ମନେକଲେ । ଏହି ଦାମ୍ଭିକ ରାଜପୁତ ସାରା ଜୀବନ ଦିଲ୍ଲୀର ମହାନ୍ ସମ୍ରାଟଙ୍କ ସହିତ ଲଢ଼ିଥିଲେ ଏବଂ ତାଙ୍କ ନିକଟରେ ମୁଣ୍ଡ ନୁଆଁଇବାକୁ ଅସ୍ୱୀକାର କଲେ । ତାଙ୍କ ଜୀବନର ଶେଷକାଳ ଆଡ଼କୁ ସେ କିଛି ସଫଳତା ଲାଭ କରିଥିଲେ । ଏହି ନିର୍ଭୀକ ରାଜପୁତଙ୍କ ସ୍ମୃତି ରାଜପୁତାନାରେ ସମ୍ମାନିତ ହୋଇ ରହିଛି ଏବଂ ତାଙ୍କ ବିଷୟରେ ନାନା ଗଳ୍ପ ପ୍ରଚଳିତ ଅଛି ।

ସୁତରାଂ ଆକବର ରାଜପୁତମାନଙ୍କୁ ନିଜ ଆଡ଼କୁ ଟାଣି ଆଣିଥିଲେ ଓ ଜନସାଧାରଣଙ୍କ ଭିତରେ ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲେ । ସେ ସେମାନଙ୍କ ପ୍ରତି ଏବଂ ଏପରିକି ତାଙ୍କର ରାଜପରିଷଦକୁ ଯେଉଁ ଜେସୁଇଟ୍ ପାଦ୍ରୀମାନେ ଆସିଥିଲେ, ସେମାନଙ୍କ ପ୍ରତି ଭଲ ବ୍ୟବହାର କରିଥିଲେ । ମାତ୍ର ଏହି ଭଦ୍ର ବ୍ୟବହାର ଏବଂ କେତେକ ମୁସଲମାନ ରୀତି ନୀତି ପ୍ରତି ବେଖାତିର ଦେଖାଇବାରୁ ମୁସଲମାନ ସାମନ୍ତଙ୍କ ଭିତରେ ସେ ଅପ୍ରିୟ ହୋଇ ଉଠିଲେ ଓ ତାଙ୍କ ବିରୁଦ୍ଧରେ କେତେକ ବିଦ୍ରୋହ ହୋଇଥିଲା ।

ମୁଁ ତାଙ୍କୁ ଅଶୋକଙ୍କ ସହିତ ତୁଳନା କରିଛୁ, କିନ୍ତୁ ଏହି ତୁଳନାରେ ଭୁଲ ଯେପରି ଭୁଲ ନ ଯାଉ । ଅନେକ ବିଷୟରେ ସେ ଆଦୌ ଅଶୋକଙ୍କ ପରି ନ ଥିଲେ । ସେ ଅତ୍ୟନ୍ତ ଉଚ୍ଚାଭିଳାଷୀ ଥିଲେ ଏବଂ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ସେ ଏକ ବିଜେତା ଥିଲେ । ନିଜର ସାମ୍ରାଜ୍ୟ ବିସ୍ତାର କରିବାରେ ଲାଗି ପଡ଼ିଥିଲେ । ଜେସୁଇଟ୍‌ମାନେ କହନ୍ତି, "ତାଙ୍କର ଏକ ଜାଗ୍ରତ ଓ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ମସ୍ତିଷ୍କ ଥିଲା; ସେ ସୁବିଗ୍ଭରକ ଥିଲେ, ବୁଦ୍ଧିମାନର ସହିତ ସବୁ ବିଷୟ ବୁଝୁଥିଲେ ଏବଂ ସର୍ବୋପରି ସେ ଦୟାଳୁ, ସ୍ନେହୀ ଓ ଉଦାର ଥିଲେ । ଏହିସବୁ ଗୁଣ ସହିତ ବଡ଼ ବଡ଼ ପ୍ରଚେଷ୍ଟା ଯେଉଁମାନେ କରନ୍ତି ଓ ଚଳାନ୍ତି ସେମାନଙ୍କ ତୁଲ୍ୟ ସାହସିକ ଗୁଣ ତାଙ୍କଠାରେ ବି ଥିଲା । ......ସେ ଅନେକ ବିଷୟରେ ଆଗ୍ରହ ଦେଖାଇଥିଲେ ଏବଂ ଅନେକ ବିଷୟ ଶିଖିବା ନିମନ୍ତେ କୌତୂହଳ ଦେଖାଉଥିଲେ । କେବଳ ସାମରିକ ଓ ରାଜନୈତିକ ବିଷୟ ନୁହେଁ, ମାତ୍ର ଅନେକ ଯାନ୍ତ୍ରିକ ଶିଳ୍ପ ବିଷୟରେ ଯଥେଷ୍ଟ ଜ୍ଞାନ ଅର୍ଜନ କରିଥିଲେ.. ...ତାଙ୍କ ବିରୁଦ୍ଧରେ ଅପରାଧ କରିଥିବା ବ୍ୟକ୍ତି ପ୍ରତି ସୁଦ୍ଧା ସେ ଉଦାର ଓ ଦୟାଭାବ ଦେଖାଉଥିଲେ । ସେ ପ୍ରାୟ କ୍ରୋଧ କରୁ ନ ଥିଲେ । ତାହା ଯଦି ହେଉଥିଲା, ତେବେ ଭୀଷଣ ଅନୁପ୍ରେରଣାରେ ସେ ପଡ଼ୁଥିଲେ, କିନ୍ତୁ ତାଙ୍କର କ୍ରୋଧ କେବେହେଲେ ଦୀର୍ଘକାଳ ସ୍ଥାୟୀ ହେଉ ନ ଥିଲା ।"

ମନେରଖ ଏହି ବର୍ଣ୍ଣନା ତାଙ୍କର ରାଜପରିଷଦର କୌଣସି ଲୋକ କରି ନାହିଁ; ମାତ୍ର ଆଉ ଏକ ଦେଶର ଅପରିଚିତ ଲୋକ ଯେଉଁମାନଙ୍କର କି ଆକବରଙ୍କୁ ନିରୀକ୍ଷଣ କରିବାର ପ୍ରଚୁର ସୁଯୋଗ ଥିଲା ସେହି କରିଛନ୍ତି ।

ଆକବର ଅସାଧାରଣ ବଳବାନ ଓ କର୍ମଠ ଥିଲେ ଏବଂ ବନ୍ୟ ଓ ବିପଜ୍ଜନକ ପଶୁମାନଙ୍କ ଶିକାରକୁ ସର୍ବାପେକ୍ଷା ଭଲ ପାଉଥିଲେ । ଯୋଦ୍ଧା ହିସାବରେ ସେ ଏପରି ସାହାସୀ ଥିଲେ ଯେ, ଜୀବନକୁ ପଣ ଛଡ଼ାଇ ଲଢ଼ାଇ କରୁଥିଲେ । ଆଗ୍ରାଠାରୁ ଅହମ୍ମଦାବାଦ ପର୍ଯ୍ୟନ୍ତ ନ' ଦିନ ଭିତରେ ତାଙ୍କର ପ୍ରସିଦ୍ଧ ଯାତ୍ରାରୁ ହିଁ ତାଙ୍କର ଅପୂର୍ବ ତେଜର ପରିଚୟ ମିଳେ । ଗୁଜୁରାଟରେ ଏକ ବିଦ୍ରୋହ ହୋଇଥିଲା ଏବଂ ଆକବର ଏକ କ୍ଷୁଦ୍ର ସେନାବାହିନୀ ସହ ରାଜପୁତନା ମରୁଭୂମି ଅତିକ୍ରମ କରି ୪୫୦ ମାଇଲ ଦୂର ଯାତ୍ରା କଲେ । ଏହା ଏକ ଅସାଧାରଣ କାର୍ଯ୍ୟ । ସେତେବେଳେ ଯେ ରେଲଗାଡ଼ି ବା ମୋଟରଗାଡ଼ି ନ ଥିଲା ଏ କଥା ତୋତେ ସ୍ମରଣ କରାଇଦେବା ଦରକାର ନାହିଁ ।

କିନ୍ତୁ ମହାନ ପୁରୁଷମାନଙ୍କର ଏହିସବୁ ଗୁଣ ଛଡ଼ା ଆଉ କିଛି ଥାଏ; କଥିତ ଅଛି ସେମାନଙ୍କର ଏକ ଆକର୍ଷଣ ଶକ୍ତି ଲୋକଙ୍କୁ ତାଙ୍କ ନିକଟକୁ ଟାଣି ଆଣେ । ଆକବରଙ୍କଠାରେ ଏହି ବ୍ୟକ୍ତିଗତ ଆକର୍ଷଣ ଶକ୍ତି ଓ ମାଧୁର୍ଯ୍ୟ ପ୍ରଚୁର ପରିମାଣରେ ଥିଲା । ଜେସୁଇଟ୍‌ମାନଙ୍କ ଅଦ୍ଭୁତ ବର୍ଣ୍ଣନାନୁସାରେ ତାଙ୍କର ତୀକ୍ଷ୍ଣ ଦୃଷ୍ଟି "ସମୁଦ୍ରରେ ସୂର୍ଯ୍ୟକିରଣ ପରି ଉଜ୍ଜ୍ୱଳ ଥିଲା ।" ତେଣୁ ଏହି ବ୍ୟକ୍ତି ଯେ ଆଜି ସୁଦ୍ଧା ଆମର ଚିତ୍ତାକର୍ଷକ କରୁଛି ଓ ଅନ୍ୟ ସକଳ ବ୍ୟକ୍ତି ଏବଂ ରାଜାଙ୍କ ଉପରେ ତାଙ୍କର ରାଜକୀୟ

ନିଜର ବ୍ୟକ୍ତିତ୍ୱ ରହିଛି, ଏଥିରେ ଆଶ୍ଚର୍ଯ୍ୟ ହେବାରେ କ'ଣ ଅଛି ? ବିଜେତା ଭାବରେ ଆକବର ସମଗ୍ର ଉତ୍ତର-ଭାରତ ଏବଂ ଏପରିକି ଦକ୍ଷିଣରେ ଜୟଲାଭ କରିଥିଲେ । ସେ ତାଙ୍କର ସାମ୍ରାଜ୍ୟ ସହିତ ଗୁଜୁରାଟ, ବଙ୍ଗଳା, ଓଡ଼ିଶା, କାଶ୍ମୀର ଓ ସିନ୍ଧୁ ମିଶାଇଥିଲେ ସେ ଦକ୍ଷିଣ-ଭାରତ ଓ କେନ୍ଦ୍ର ଭାରତର ମଧ୍ୟ ବିଜୟ ଲାଭ କରିଥିଲେ ଏବଂ ଭାଗ ନେଉଥିଲେ । ମଧ୍ୟପ୍ରଦେଶର ନାମକ ରାଣୀ ଦୁର୍ଗାବତୀଙ୍କୁ ସେ ଯେପରି ପରାଜୟ କଲେ, ସେଥିରେ ତାଙ୍କର ସୁନାମ ହୋଇଥିଲା । ରାଣୀ ଜଣେ ସାହସିନୀ ଓ ଉତ୍ତମ ଶାସିକା ଥିଲେ ଏବଂ ସେ ଆକବରଙ୍କର କିଛି କ୍ଷତି କରି ନ ଥିଲେ । କିନ୍ତୁ ଆକାଂକ୍ଷା ଓ ସାମ୍ରାଜ୍ୟ-ଲାଳସା ଏହି ସବୁ ବାଧାକୁ ଖାତିର କରେନା । ଦକ୍ଷିଣ-ଭାରତରେ ତାଙ୍କର ସେନା ଆଉ ଏକ ନାରୀ-ଶାସିକା ଅହମଦନଗରର ରିଜେଣ୍ଟ ପ୍ରସିଦ୍ଧ ଚାନ୍ଦବିବିଙ୍କ ସହିତ ଯୁଦ୍ଧ କରିଥିଲେ । ଏହି ମହିଳାଙ୍କର ଅଦ୍ଭୁତ ସାହାସ ଓ ଦକ୍ଷତା ଥିଲା ଏବଂ ମୋଗଲ ସେନାଙ୍କ ସହିତ ଯୁଦ୍ଧରେ ସେ ଏପରି ପ୍ରଭାବ ପକାଇଥିଲେ ଯେ, ସେମାନେ ଅନୁକୂଳ ସନ୍ଧି କରିଥିଲେ । ଦୁର୍ଭାଗ୍ୟବଶତଃ ପରେ ତାଙ୍କ ନିଜର କେତେକ ଅସନ୍ତୁଷ୍ଟ ସୈନ୍ୟ ତାଙ୍କୁ ହତ୍ୟା କରିଥିଲେ ।

ଆକବରଙ୍କ ସେନା ଚିତୋର ବି ଅବରୋଧ କରିଥିଲେ—ଏହା ରାଣାପ୍ରତାପଙ୍କ ଅମଳ ପୂର୍ବରୁ ହୋଇଥିଲା । ଜୟମଲ୍ଲ ଅତ୍ୟନ୍ତ ନିର୍ଭୀକତା ସହକାରେ ଚିତୋର ରକ୍ଷା କରିଥିଲେ । ତାଙ୍କ ମୃତ୍ୟୁରେ ନିଦାରୁଣ ଜହର ଉତ୍ସବ ପୁନର୍ବାର କରାଗଲା ଏବଂ ଚିତୋରର ପତନ ହେଲା ।

ଆକବର ତାଙ୍କ ପାଖରେ ଅନେକଗୁଡ଼ିଏ ଦକ୍ଷ ସାହାଯ୍ୟକାରୀ ରଖିଥିଲେ ସେମାନେ ତାଙ୍କ ପ୍ରତି ଅନୁରକ୍ତ ଥିଲେ । ଏମାନଙ୍କ ଭିତରେ ଫଏଜି ଓ ଆବୁଲ ଫଜଲ ଦୁଇ ଭାଇ ଏବଂ ବୀରବଲ ମୁଖ୍ୟ ଥିଲେ । ବୀରବଲଙ୍କ ବିଷୟରେ ଅଗଣିତ କାହାଣୀ ଏବେ ବି କୁହାଯାଏ । ଟୋଡ଼ରମଲ୍ଲ ତାଙ୍କର ଅର୍ଥମନ୍ତ୍ରୀ ଥିଲେ । ସେ ସମଗ୍ର ରାଜସ୍ୱ ପ୍ରଥା ପ୍ରବର୍ତ୍ତନ କରିଥିଲେ । ସେହିକାଳରେ କୌଣସି ଜମିଦାରୀ ପ୍ରଥା ଓ ଜମିଦାର ବା ତାଲୁକଦାର ନଥିଲେ । ସରକାର ବ୍ୟକ୍ତିଗତ କୃଷକ ବା ରୟତ ସହିତ ବନ୍ଦୋବସ୍ତ କରୁଥିଲେ । ଏବେ ଏହାକୁ ରୟତୱାରୀ ପ୍ରଥା କହନ୍ତି । ଆଜିକାଲିକାର ଜମିଦାରୀଗୁଡ଼ିକ ବ୍ରିଟିଶର ସୃଷ୍ଟି ।

ଜୟପୁରର ରାଜା ମାନସିଂହ ଆକବରଙ୍କର ଜଣେ ଉତ୍କୃଷ୍ଟ ସେନାପତି ଥିଲେ । ଆକବରଙ୍କ ରାଜପରିଷଦରେ ଆଉ ଜଣେ ପ୍ରସିଦ୍ଧ ଲୋକ ଥିଲେ, ସେ ହେଉଛନ୍ତି ପ୍ରଧାନ ଗାୟକ ତାନ୍‌ସେନ୍ । ଭାରତରେ ସମସ୍ତ ଗାୟକଙ୍କର ସେ ଆଦର୍ଶ ହୋଇଛନ୍ତି ।

ପ୍ରଥମେ ଆକବରଙ୍କ ରାଜଧାନୀ ଆଗ୍ରାରେ ଥିଲା ଏବଂ ସେ ସେଠାରେ ଦୁର୍ଗ ନିର୍ମାଣ କରିଥିଲେ । ତା'ପରେ ଆଗ୍ରାଠାରୁ ୧୫ ମାଇଲ ଦୂରରେ ଫତେପୁର-ସିକ୍ରିଠାରେ ସେ ଏକ ନୂତନ ନଗର ସ୍ଥାପନ କଲେ । ସେଠାରେ ସେଖ୍ ସେଲିମଚିସ୍ତି ନାମକ ଜଣେ ସନ୍ନ୍ୟାସୀ

ବ୍ୟକ୍ତ ବାସ କରୁଥିବାରୁ ଏହି ସ୍ଥାନ ବାଛିଥିଲେ । ସେ କାଳର ଜଣେ ଇଂରେଜ ପରିବ୍ରାଜକଙ୍କ ବର୍ଣ୍ଣନା ଅନୁସାରେ ସେ ଏଠାରେ ଏକ ଅପୂର୍ବ ନଗର ନିର୍ମାଣ କରିଥିଲେ, ଯାହା କି ଲଣ୍ଡନ ଅପେକ୍ଷା ବହୁତ ବଡ଼ ଥିଲା ଏବଂ ୧୫ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଏହା ତାଙ୍କ ସାମ୍ରାଜ୍ୟର ରାଜଧାନୀ ଥିଲା । ପରେ ସେ ଲାହୋରକୁ ତାଙ୍କ ରାଜଧାନୀ କଲେ । ଆକବରଙ୍କ ବନ୍ଧୁ ଓ ମନ୍ତ୍ରୀ ଆବୁଲଫାଜଲ କହିଛନ୍ତି, "ମହାମାନ୍ୟବର ଅପୂର୍ବ ପ୍ରାସାଦମାନଙ୍କର ଯୋଜନା କରନ୍ତି । ତାଙ୍କର ମନ ଓ ହୃଦୟର କାର୍ଯ୍ୟକୁ ପଥର ଏବଂ କାଦୁଅର ପୋଷାକ ପିନ୍ଧାଇ ଦିଅନ୍ତି ।" ଫତେପୁର-ସିକ୍ରିଠାରେ ଆଜି ପର୍ଯ୍ୟନ୍ତ ସୁନ୍ଦର ମସ୍‌ଜିଦ୍, ବିରାଟ ସିଂହ ଫାଟକ ଓ ଅନ୍ୟାନ୍ୟ ଅନେକ ସୁନ୍ଦର କୋଠା ରହିଛି । ଏହା ଏକ ପରିତ୍ୟକ୍ତ ନଗର ଏବଂ ଏଥିରେ ଆଉ ଜୀବନ ନାହିଁ; କିନ୍ତୁ ଏହାର ଗଳି ଓ ବିସ୍ତୃତ ପ୍ରାନ୍ତରମାନ ଅତିକ୍ରମ କରିଗଲାବେଳେ ଏକ ମୃତ ସାମ୍ରାଜ୍ୟର ଭୂତ ରହିଥିଲା ପରି ମନେହୁଏ ।

ଆମର ଆଧୁନିକ ଏଲାହାବାଦ ସହର ଆକବରଙ୍କଦ୍ୱାରା ସ୍ଥାପିତ ହୋଇଥିଲା; ଅବଶ୍ୟ ଏହି ସ୍ଥାନଟି ଅତି ପୁରାକାଳରୁ ରହିଛି ଓ ରାମାୟଣ କାଳରୁ ପ୍ରୟାଗ ଏଠାରେ ସମୃଦ୍ଧିଲାଭ କରିଥିଲା । ଏଲାହାବାଦ ଦୁର୍ଗ ଆକବରଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

ଏକ ବିଶାଳ ସାମ୍ରାଜ୍ୟ ହୋଇଥିବାରୁ ଅଭିଯାନ ଓ ଦୃଢ଼ୀକରଣ ଲାଗି ଏହି କାଳ ଭିତରେ ସେ ଖୁବ୍ ବ୍ୟସ୍ତ ରହିଥିଲେ । କିନ୍ତୁ ଏହି ସମସ୍ତ ସାରା ଆକବରଙ୍କର ଆଉ ଏକ ଅଲୌକିକ ଗୁଣର ପରିଚୟ ମିଳେ । ଏହା ହେଉଛି ତାଙ୍କର ଅସୀମ କୌତୂହଳ ଓ ସତ୍ୟ ଲାଗି ଅନୁସନ୍ଧାନ । କୌଣସି ବିଷୟରେ ଜ୍ଞାନଦାନ କଲା ପରି କୌଣସି ଲୋକ ଦେଖିଲେ, ସେ ତାକୁ ଆଣି ପ୍ରଶ୍ନ କରୁଥିଲେ । ତାଙ୍କର ଇବାଦାତ୍ ଖାନାରେ ବିଭିନ୍ନ ଧର୍ମର ଲୋକ ଏକତ୍ର ହେଉଥିଲେ ଓ ପ୍ରତ୍ୟେକେ ଏହି ମହାନ ସମ୍ରାଟଙ୍କୁ ନିଜ ଧର୍ମରେ ଦୀକ୍ଷିତ କରାଇବାକୁ ଆଶା କରୁଥିଲେ । ସେମାନେ ଅନେକ ସମୟରେ ପରସ୍ପର ଭିତରେ ବିବାଦ କରୁଥିଲେ ଏବଂ ଆକବର ପାଖରେ ବସି ସେମାନଙ୍କର ବକ୍ତୃତା ଶୁଣନ୍ତି ଓ ସେମାନଙ୍କୁ ଅନେକ ପ୍ରଶ୍ନ ପଚାରନ୍ତି । ସତ୍ୟ କୌଣସି ଧର୍ମ ବା ସମ୍ପ୍ରଦାୟ ଏକଚାଟିଆ ନୁହେଁ ବୋଲି ସେ ଉପଲବ୍ଧି କରିଥିଲା ପରି ଜଣାପଡ଼େ । ସେ ଘୋଷଣା କରିଥିଲେ ଯେ, ତାଙ୍କର ନିର୍ଦ୍ଦିଷ୍ଟ ନୀତି ହେଉଛି ଧର୍ମପ୍ରତି ସହନଶୀଳ ଭାବ ଦେଖାଇବା । ତାଙ୍କ ରାଜତ୍ୱ କାଳର ଐତିହାସିକ ବାଦୌନି ଅବଶ୍ୟ ଏପରି ବୈଠକମାନଙ୍କରେ ସେ ନିଜେ ଯୋଗ ଦେଇଥିବେ । ସେ ଆକବରଙ୍କ ସମ୍ବନ୍ଧରେ ଏକ ଆଗ୍ରହଜନକ ବିବରଣୀ ଲେଖି ଯାଇଛନ୍ତି । ମୁଁ ତାହା ଏଠାରେ ଉଦ୍ଧାର କରିବି । ବାଦୌନି ଜଣେ ରକ୍ଷଣଶୀଳ ମୁସଲମାନ ଥିଲେ ଏବଂ ସେ ଆକବରଙ୍କ ଏପରି କାର୍ଯ୍ୟସବୁ ସମ୍ପୂର୍ଣ୍ଣରୂପେ ନାପସନ୍ଦ କରୁଥିଲେ ।

"ମହାମାନ୍ୟବର (ସେ କହନ୍ତି) ପ୍ରତ୍ୟେକର, ବିଶେଷତଃ ଯେଉଁମାନେ ମୁସଲମାନ ନୁହନ୍ତି, ସେମାନଙ୍କର ମତ ସଂଗ୍ରହ କରୁଥିଲେ । ସେ ଯାହା ପସନ୍ଦ କରୁଥିଲେ ତାହା ଗ୍ରହଣ କରୁଥିଲେ ଏବଂ ଯାହା ତାଙ୍କର ପ୍ରକୃତିବିରୁଦ୍ଧ ଓ ଇଚ୍ଛାବିରୁଦ୍ଧ ହେଉଥିଲା, ତାହା

ଅଗ୍ରାହ୍ୟ କରୁଥିଲେ । ତାଙ୍କର ଅତି ବାଲ୍ୟକାଳରୁ ଯୌବନ ପର୍ଯ୍ୟନ୍ତ ଏବଂ ସେଠାରୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ମହାମାନବର ବିଭିନ୍ନ ବାଟ ଦେଇ ଯାଇଥିଲେ । ସକଳ ପ୍ରକାର ଧର୍ମ ଆଚରଣ ଓ ଗୋଷ୍ଠୀଗତ ବିଶ୍ୱାସ ପାଉଥିଲେ ଏବଂ ଲୋକେ ପୁସ୍ତକରେ ଯାହା ପାଆନ୍ତି, ସେପରି ପ୍ରତ୍ୟେକ ଜିନିଷ ତାଙ୍କର ନିଜର ବିଶେଷ ବୁଦ୍ଧି ଦ୍ୱାରା ବାଛି ସଂଗ୍ରହ କରିଥିଲେ ଏବଂ ପ୍ରତ୍ୟେକ (ଇସଲାମ) ମତର ବିରୁଦ୍ଧ ଅନୁସନ୍ଧାନ କରିବାର ଭାବ ତାଙ୍କଠାରେ ଥିଲା । ଏହିରୂପେ ଧୀରେ ଧୀରେ ପ୍ରାଥମିକ ମାତି ଉପରେ ପ୍ରତିଷ୍ଠିତ ବିଶ୍ୱାସ ତାଙ୍କ ହୃଦୟର ପ୍ରତିବିମ୍ବ ଥିଲା ଏବଂ ଫଳସ୍ୱରୂପ ଯେଉଁସବୁ ପ୍ରଭାବ ମହାମାନ୍ୟବରଙ୍କ ଉପରେ ପଡ଼ିଥିଲା, ତାହା କ୍ରମେ ବୃଦ୍ଧି ପାଇ ତାଙ୍କ ହୃଦୟରେ ଏକ ବିଶ୍ୱାସ ଜାଗ୍ରତ ହେଲା ଯେ ସକଳ ଧର୍ମରେ ବୁଦ୍ଧିମାନ ଲୋକ, ସଂଯମୀ ଓ ଶ୍ରଦ୍ଧେୟ ଅଛନ୍ତି ଏବଂ ଅଲୌକିକ ଶକ୍ତିସମ୍ପନ୍ନ ବ୍ୟକ୍ତି ସବୁ ଜାତିରେ ମିଳିବେ । ଯଦି ଏହିରୂପେ ପ୍ରତ୍ୟେକ ସ୍ଥାନରେ କିଛି ସଦାଜ୍ଞାନ ମିଳିପାରେ ତେବେ ସତ୍ୟ ଏକ ଧର୍ମରେ ଆବଦ୍ଧ ରହିବ କାହିଁକି ?"......

ତୋର ମନେଥିବ ଏହି ସମୟରେ ଧର୍ମ ସଂକ୍ରାନ୍ତରେ ଇଉରୋପରେ ଅତି ଅସମ୍ଭବ ପ୍ରକାରର ଅସହିଷ୍ଣୁ ଭାବ ଥିଲା । ସ୍ପେନ୍, ନେଦରଲେଣ୍ଡ ଓ ଅନ୍ୟତ୍ର ଇନ୍‌କ୍ୱିଜିସନ ବ୍ୟାପିଥିଲା ଏବଂ କାଥଲିକ୍ ଓ କାଲଭିନିଷ୍ଟ ଉଭୟ ଧର୍ମରେ ସହିଷ୍ଣୁଭାବ ପ୍ରଦର୍ଶନ କରିବାକୁ ଏକ ଗୁରୁତର ପାପ ବୋଲି ବିଚାରୁଥିଲେ ।

ବିଭିନ୍ନ ଧର୍ମ ବିଶ୍ୱାସର ଅଧ୍ୟାପକମାନଙ୍କ ସହିତ ଆକବର ବର୍ଷ ବର୍ଷ ଧରି ତାଙ୍କର ଧର୍ମ ସମ୍ବନ୍ଧୀୟ କଥାବାର୍ତ୍ତା ଓ ତର୍କ ଚଳାଇଥିଲେ । ଶେଷରେ ଏହି ଅଧ୍ୟାପକମାନେ ଏକ ପ୍ରକାର କ୍ଳାନ୍ତ ହୋଇଗଲେ ଏବଂ ସେମାନଙ୍କର ନିର୍ଦ୍ଦିଷ୍ଟ ଧର୍ମ ବିଶ୍ୱାସରେ ତାଙ୍କୁ ଦୀକ୍ଷିତ କରାଇବାର ଆଶା ତ୍ୟାଗ କଲେ । ପ୍ରତ୍ୟେକ ଧର୍ମବିଶ୍ୱାସରେ ଯେତେବେଳେ କିଛି ସତ୍ୟତା ରହିଛି, ସେତେବେଳେ ସେ କୌଣସି ଗୋଟିଏ ଗ୍ରହଣ କରିଥାଆନ୍ତେ କିପରି ! ସେ ଜେସୁଇଟ୍‌ମାନଙ୍କୁ କହୁଥିବାର ଶୁଣାଯାଏ, "ଜେଣ୍ଟାଇଲମାନେ ତାଙ୍କର ବିଧିକୁ ଭ୍ରମ ବୋଲି ଜ୍ଞାନ କରନ୍ତି ଏବଂ ସେହିପରି ସାରାସେନ୍ ଓ ଖ୍ରୀଷ୍ଟିୟାନ୍‌ମାନେ ତାଙ୍କ ବିଧାନ ଠିକ୍ କହନ୍ତି । ତାହାହେଲେ ଆମେ କେଉଁ କଥାଟିକି ଗ୍ରହଣ କରିବା ?" (ଜେଣ୍ଟାଇଲ ବୋଇଲେ ଜେସୁଇଟ୍‌ମାନେ ହିନ୍ଦୁଙ୍କୁ ବୁଝୁଥିଲେ ଏବଂ ଏଠାରେ ସାରାସେନ୍ ଅବଶ୍ୟ ମୁସଲମାନମାନଙ୍କୁ ଲକ୍ଷ୍ୟ କରି କୁହାଯାଉଥିଲା । ଜେସୁଇଟ୍ ଧର୍ମ ପ୍ରଚାରକମାନେ ପର୍ତ୍ତୁଗୀଜ୍‌ବାସୀ ଥିବାରୁ ସେମାନେ ସ୍ପେନର ସାରାସେନ୍‌ମାନଙ୍କୁ ଜାଣିଥିଲେ ଏବଂ ଭାରତୀୟ ମୁସଲମାନମାନଙ୍କୁ ସେହି ନାମରେ ଡାକୁଥିଲେ ।) ଆକବର ବଡ଼ ସଙ୍ଗତ ପ୍ରଶ୍ନ କରୁଥିଲେ; ମାତ୍ର ଏଥିରେ ଜେସୁଇଟ୍‌ମାନେ ବିରକ୍ତ ହୋଇଗଲେ । ସେମାନେ ତାଙ୍କ ପୁସ୍ତକରେ ଲେଖିଛନ୍ତି, "ସୁତରାଂ ଆମେ ଦେଖୁ ଯେ ଏହି ସମ୍ରାଟଙ୍କଠାରେ ନାସ୍ତିକର ସାଧାରଣ ଦୋଷ ସବୁ ରହିଥିଲା । ସେ ବିଶ୍ୱାସ ଆଗରେ କାରଣକୁ ବଳ ଦେବାକୁ ଅସ୍ୱୀକାର କରୁଥିଲେ ଏବଂ ତାଙ୍କର ଦୁର୍ବଳ ମନ କୌଣସି ଜିନିଷ ସତ୍ୟ ବୋଲି ଗ୍ରହଣ କରିବାକୁ

ଅସମର୍ଥ ଥିବାରୁ ସେ ନିଜର ଅସମ୍ପୂର୍ଣ୍ଣ ବିଚାରଶକ୍ତିକୁ ମାନବର ବୋଧଶକ୍ତି ଅତି ସୀମା ପର୍ଯ୍ୟନ୍ତ ନେଇଯାଇ ତା' ପରେ ତାହା ଗ୍ରହଣ କରି ସନ୍ତୁଷ୍ଟ ହେଉଥିଲେ'' । ଏହା ଯଦି ନାସ୍ତିକର ସଂଜ୍ଞା ହୁଏ, ତାହାହେଲେ ଯେତେ ବେଶୀ ଏପରି ନାସ୍ତିକ ହେବେ ତେତେ ଭଲ

ଆକବରଙ୍କ ଉଦ୍ଦେଶ୍ୟ କ'ଣ ଥିଲା ତାହା ସ୍ପଷ୍ଟ ହୋଇନାହିଁ । ସେ ଏହି ପ୍ରଶ୍ନକୁ କେବଳ ରାଜନୈତିକ ଦୃଷ୍ଟିରୁ ବିଚାର କରୁଥିଲେ କି ? ଏକ ସାଧାରଣ ଜାତି ଗଢ଼ିବାର ଅଭିଳାଷରେ ସେ ବିଭିନ୍ନ ଧର୍ମ ଏକ ଧାରାରେ ପକାଇବା ନିମନ୍ତେ ଚେଷ୍ଟା ଥିଲେ କି ? ଅଥବା ତାଙ୍କର ଉଦ୍ଦେଶ୍ୟ ଓ ଅନୁସନ୍ଧାନ ଧର୍ମ ଦୃଷ୍ଟିସମ୍ପନ୍ନ ଥିଲା କି ? ମୁଁ ଜାଣେ ନା, କିନ୍ତୁ ମୋର ମନେ ହୁଏ, ସେ ଧର୍ମସଂସ୍କାରଙ୍କ ଅପେକ୍ଷା ଅଧିକ ରାଜନୀତିଜ୍ଞ ଥିଲେ । ତାଙ୍କର ଉଦ୍ଦେଶ୍ୟ ଯାହା ହୋଇଥାଉ ପଛକେ, ସେ ପ୍ରକୃତରେ ଏକ ନୂତନ ଧର୍ମ-ଦୀନ୍ ଇଲାହି—ପ୍ରଚାର କରିଥିଲେ । ସେ ନିଜେ ଏହାର ପିର ଥିଲେ ଅନ୍ୟ ବିଷୟ ପରି ଧର୍ମରେ ତାଙ୍କର ଏକଚ୍ଛତ୍ରାଧିକାରର କେହି ବିରୋଧ କରି ନଥିଲେ, ବରଂ ଅତି ବିରକ୍ତିକର ଭାବରେ ଭୂମିପ୍ରାନ୍ତ, ପଦଲେହନ ଆଦି ବେଶ୍ ପରିମାଣରେ ହେଉଥିଲା । ନୂତନ ଧର୍ମ ତିଷ୍ଠିପାରିଲା ନାହିଁ ; ଏହା କେବଳ ମୁସଲମାନମାନଙ୍କୁ ଉତ୍ତ୍ୟକ୍ତ କରିଦେଲା ।

ଆକବର ସମ୍ପୂର୍ଣ୍ଣ ପ୍ରଭୁତ୍ୱବ୍ୟଞ୍ଜକ ଥିଲେ । ତଥାପି ଉଦାର ରାଜନୀତିକ ଭାବ ପ୍ରତି ତାଙ୍କର ପ୍ରତିକ୍ରିୟା ଆଲୋଚନା କଲେ ବେଶ ଆମୋଦ ଜାତ ହୁଏ । ଯଦି ବିବେଚନାର ସ୍ୱାଧୀନତା ରହିବା ଦରକାର, ତେବେ ଲୋକମାନଙ୍କର ଅଧିକ ରାଜନୈତିକ ସ୍ୱାଧୀନତା ନ ରହିବ କାହିଁକି । ବିଜ୍ଞାନ ପ୍ରତି ସେ ନିଶ୍ଚୟ ଅଧିକ ଆକୃଷ୍ଟ ହୋଇଥାଆନ୍ତେ । ଦୁର୍ଭାଗ୍ୟବଶତଃ ଏହି ଭାବଧାରା ଯେତେବେଳେ ଇଉରୋପରେ କେତେକ ଲୋକଙ୍କ ମନରେ ଆଲୋଡ଼ିତ ହେବାକୁ ଆରମ୍ଭ କରିଦେଲା, ମାତ୍ର ଭାରତରେ ପ୍ରଚଳିତ ହୋଇ ନ ଥିଲା । ମୁଦ୍ରଣ ଯନ୍ତ୍ରର ମଧ୍ୟ ବ୍ୟବହାର ଥିଲା ପରି ବୋଧହୁଏ ନାହିଁ ତେଣୁ ଶିକ୍ଷା ସୀମାବଦ୍ଧ ଥିଲା ! ବାସ୍ତବିକ ତୁ ଶୁଣି ଜାବା ହେବୁ ଯେ, ଆକବର ନିରକ୍ଷର ଥିଲେ—ଅର୍ଥାତ୍ ସେ ଲେଖି ବା ପଢ଼ିପାରୁ ନ ଥିଲେ ! କିନ୍ତୁ ତାହାସତ୍ତ୍ୱେ ସେ ଉଚ୍ଚଶିକ୍ଷିତ ଥିଲେ । ତାଙ୍କ ଆଗରେ ପୁସ୍ତକ ସବୁ ପଢ଼ାଯାଏ, ତାହା ଶୁଣିବା ଲାଗି ସେ ଅତ୍ୟନ୍ତ ଭଲ ପାଉଥିଲେ । ତାଙ୍କର ଆଦେଶାନୁସାରେ ଅନେକ ସଂସ୍କୃତ ପୁସ୍ତକ ପାର୍ସିଭାଷାରେ ଅନୂଦିତ ହୋଇଥିଲା ।

ହିନ୍ଦୁ ବିଧବାମାନଙ୍କ ସତୀ ହେବା ପ୍ରଥାକୁ ସେ ନିଷେଧ କରି ଆଦେଶ ଜାରି କରିଥିଲେ ଏବଂ ଯୁଦ୍ଧବନ୍ଦୀମାନଙ୍କୁ ଦାସ କରିବା ନିଷେଧ କରିଥିଲେ । ପ୍ରାୟ ୫୦ ବର୍ଷ ରାଜୁତି କଲା ପରେ ଆକବର ୬୪ ବର୍ଷ ବୟସରେ ୧୬୦୫ ଅକ୍ଟୋବର ମାସରେ ମରିଥିଲେ । ଆଗ୍ରା ନିକଟସ୍ଥ ସିକନ୍ଦ୍ରାବାଦଠାରେ ଏକ ସୁନ୍ଦର କବରଖାନାରେ ତାଙ୍କ କବର ଦିଆଯାଇଥିଲା ।

ଆକବରଙ୍କ ରାଜୁତିକାଳରେ ଉତ୍ତର-ଭାରତରେ ବିଶେଷତଃ ବାରଣାସୀରେ ଜଣେ ବ୍ୟକ୍ତି ଥିଲେ ଯାହାଙ୍କ ନାମ ଯୁକ୍ତପ୍ରଦେଶରେ ପ୍ରାୟ ପ୍ରତ୍ୟେକ ଗ୍ରାମବାସୀଙ୍କୁ ଜଣା । ସେ

ସେଠାରେ ଖୁବ୍ ପରିଚିତ ଏବଂ ଆକବର ବା ଅନ୍ୟ କୌଣସି ରାଜା ଅପେକ୍ଷା ଅଧିକ ଲୋକପ୍ରିୟ । ମୁଁ ତୁଳସୀଦାସଙ୍କୁ ଲକ୍ଷ୍ୟ କରି ଏ କଥା କହୁଛି । ସେ ହିନ୍ଦୀରେ 'ରାମଚରିତ ମାନସ' ବା ରାମାୟଣ ଲେଖିଥିଲେ ।

## ୯୦ ଭାରତରେ ମୋଗଲ ସାମ୍ରାଜ୍ୟର ହ୍ରାସ ଓ ପତନ

ସେପ୍ଟେମ୍ବର ୯, ୧୯୩୨

ଆକବରଙ୍କ ସମ୍ବନ୍ଧରେ ଆଉ କିଛି ଅଧିକ କହିବା ନିମନ୍ତେ ମୋର ଇଚ୍ଛା ହେଉଛି; ମାତ୍ର ମୁଁ ଏଠାରେ ନିଜକୁ ସଂଯତ କରୁଛି । ଯାହାହେଉ ପର୍ତ୍ତୁଗୀଜ୍ ପାଦ୍ରୀମାନଙ୍କ ବିବରଣୀରୁ ଆଉ ଅଧିକ ଉଲ୍ଲେଖ ନ କରି ରହିପାରିବି ନାହିଁ । ଆକବରଙ୍କ ରାଜପରିଷଦର ଲୋକଙ୍କ ଅପେକ୍ଷା ସେମାନଙ୍କ ମତର ଅତି ଅଧିକ ମୂଲ୍ୟ ରହିଛି ଏବଂ ଏହା ମଧ୍ୟ ସ୍ମରଣ ରଖିଲେ ଭଲ ହେବ ଯେ, ଆକବର ଖ୍ରୀଷ୍ଟଧର୍ମ ଗ୍ରହଣ କରି ନ ଥିବାରୁ ସେମାନେ ଅତ୍ୟନ୍ତ ନିରାଶ ହୋଇଥିଲେ । ତଥାପି ସେମାନେ କହନ୍ତି ଯେ, "ବାସ୍ତବିକ୍ ସେ ଜଣେ ଶ୍ରେଷ୍ଠ ରାଜା ଥିଲେ; କାରଣ ସେ ଜାଣିଥିଲେ ଯେ, ଯେଉଁ ବ୍ୟକ୍ତି ଏକ ସଙ୍ଗରେ ପ୍ରଜାଙ୍କଠାରୁ ଆଜ୍ଞାନୁବର୍ତ୍ତିତା, ସମ୍ମାନ, ଶ୍ରଦ୍ଧା ଓ ଭୟ ପାଇପାରିବ ସେ ହେଉଛି ଉତ୍ତମ ଶାସକ । ସେ ସମସ୍ତଙ୍କର ପ୍ରିୟ ଥିଲେ, ବଡ଼ଙ୍କ ପ୍ରତି କଠୋର ଓ ସାନଙ୍କ ପ୍ରତି ଦୟାଭାବ ଦେଖାଉଥିଲେ ଏବଂ ସାନ ବଡ଼, ପଡ଼ୋଶୀ ଓ ଅପରିଚିତ ଖ୍ରୀଷ୍ଟୀୟ ସାରାସେନ ବା ଜେଣ୍ଟାଇଲ ସବୁଲୋକଙ୍କ ପ୍ରତି ନ୍ୟାୟପରାୟଣ ଥିଲେ, ଏଣୁ ପ୍ରତ୍ୟେକ ଲୋକ ବିଶ୍ୱାସ କରୁଥିଲେ ଯେ, ରାଜା ତାଙ୍କ ପକ୍ଷରେ ଅଛନ୍ତି" । ଜେସୁଇଟ୍‌ମାନେ ଆହୁରି ଲେଖିଛନ୍ତି, "ବେଳେ ବେଳେ ସେ ଶାସନ କାର୍ଯ୍ୟରେ ଗମ୍ଭୀର ଭାବରେ ନିମଗ୍ନ ହୋଇଯାଆନ୍ତି ଅଥବା ତାଙ୍କର ପ୍ରଜାଙ୍କର ଗୁହାରି ଶୁଣନ୍ତି; କିନ୍ତୁ ପରମୁହୂର୍ତ୍ତରେ ଦେଖାଯାଏ ସେ ଏକ ଓଟ ଚଢ଼ୁଛନ୍ତି, ପଥର ଭାଙ୍ଗୁଛନ୍ତି, କାଠ କାଟୁଛନ୍ତି ଅଥବା ଲୁହା ବାଡ଼ଉଛନ୍ତି । ଏହି କାର୍ଯ୍ୟସବୁ ଏପରି ଶ୍ରମସ୍ୱୀକାର କରି କରନ୍ତି ଯେ ତାହାଁକୁ ମନେହୁଏ ସତେ କି ସେ ନିଜର ରୋଜଗାର ଲାଗି କାମ କରୁଛନ୍ତି" । ସେ ଯଦିଓ ଜଣେ ପ୍ରଭାବଶାଳୀ ଏବଂ ଏକଚ୍ଛତ୍ରବାଦୀ ସମ୍ରାଟ ଥିଲେ ତଥାପି ଆଜି ଯେପରି କେତେକ ଲୋକେ ଭାବନ୍ତି ସେପରି କାୟିକ ଶ୍ରମକୁ ମର୍ଯ୍ୟାଦା ହାନିକର ବୋଲି ବିଚାରୁ ନଥିଲେ ।

ସେମାନେ ଆହୁରି କହିଛନ୍ତି ଯେ, "ସେ ଅଳ୍ପ ଖାଉଥିଲେ । ବର୍ଷକରେ ମୋଟେ ୩/୪ ମାସ ମାଂସ ଖାଆନ୍ତି······ଅତ୍ୟନ୍ତ କଷ୍ଟ ସହକାରେ ସେ ରାତିରେ ୩ ଘଣ୍ଟା ନିଦ୍ରା ଯାଉଥିଲେ ।·······ତାଙ୍କର ଅଦ୍ଭୁତ ସ୍ମରଣଶକ୍ତି ଥିଲା । ତାଙ୍କର ହଜାର ହଜାର ହାତୀ ଥିଲେ ପୁଣି ସେ ସମସ୍ତ ହାତୀଙ୍କ ନାମ ଜାଣିଥିଲେ; ତାଙ୍କର ଘୋଡ଼ା, ହରିଣ ଏବଂ ଏପରି

କ ପାରିଙ୍କ ନାମ ପର୍ଯ୍ୟନ୍ତ ଜାଣିଥିଲେ" । ଏପରି ଅଲୌକିକ ସ୍ମରଣଶକ୍ତି କଥା ବିଶ୍ୱାସ କରି ହୁଏ ନାହିଁ ଏବଂ ଏହି ବିବରଣୀରେ ହୁଏତ କିଛି ଅତିରଞ୍ଜିତ ରହିଛି । ମାତ୍ର ତାଙ୍କର ଯେ ଅପୂର୍ବ ମାନସିକ ଶକ୍ତି ଥିଲା, ଏଥିରେ ସନ୍ଦେହ ନାହିଁ । "ଯଦିଓ ସେ ଲେଖା ପଢ଼ା ଜାଣି ନ ଥିଲେ, ତାଙ୍କ ରାଜ୍ୟରେ ଘଟିଥିବା ପ୍ରତ୍ୟେକ ଘଟଣା ତାଙ୍କୁ ଜଣାଥିଲା । ଜ୍ଞାନ ପାଇଁ ତାଙ୍କର ବ୍ୟଗ୍ରତା ଏପରି ଥିଲା ଯେ ଜଣେ କ୍ଷୁଧିତ ଲୋକ ତାର ଖାଦ୍ୟ ଏକଗୁଣ୍ଡାରେ ଗିଳିବାକୁ ଚେଷ୍ଟା କଲା ପରି ସେ ପ୍ରତ୍ୟେକ ଜିନିଷ ତତ୍‌କ୍ଷଣାତ୍ ଶିଖିବାକୁ ଚେଷ୍ଟା କରୁଥିଲେ" ।

ଆକବର ଏହି ପ୍ରକାର ଲୋକ ଥିଲେ । କିନ୍ତୁ ସେ ସମ୍ପୂର୍ଣ୍ଣ ଏକଛତ୍ର ଥିଲେ । ଯଦିଓ ସେ ଲୋକଙ୍କୁ ଅଧିକ ପରିମାଣରେ ନିରାପଦ ରଖିଥିଲେ ଓ କୃଷକମାନଙ୍କର ଟିକସ ଭାର କମାଇ ଦେଇଥିଲେ, ତଥାପି ତାଙ୍କର ମନ:ଶିକ୍ଷା ଓ ଅଧ୍ୟୟନର ସାଧାରଣ ସୀମା ବଢ଼ାଇବା ଦିଗରେ ଚିନ୍ତନା କରି ନ ଥିଲେ । ପ୍ରତ୍ୟେକ ସ୍ଥାନରେ ସେତେବେଳେ ଏକଛତ୍ର ଅଧିକାର ରହିଥିଲା ଏବଂ ଅନ୍ୟ ଏକଛତ୍ର ସମ୍ରାଟମାନଙ୍କର ତୁଳନାରେ ରାଜା ଓ ବ୍ୟକ୍ତି ହିସାବରେ ସେ ବିଚକ୍ଷଣ ।

ଯଦିଓ ବାବରଙ୍କ ବଂଶରେ ସେ ତୃତୀୟ ବ୍ୟକ୍ତି ତଥାପି ଆକବରହିଁ ଭାରତରେ ମୋଗଲ ବଂଶର ପ୍ରକୃତ ସ୍ଥାପୟିତା ଥିଲେ । ଚୀନରେ କୁବଲାଇ ଖାଁଙ୍କ ଓ୍ୟାନ୍ ବଂଶ ପରି ଆକବରଙ୍କଠାରୁ ମୋଗଲ ଶାସକମାନେ ଏକ ଭାରତୀୟ ବଂଶ ହୋଇଗଲେ । ଆକବର ତାଙ୍କ ସାମ୍ରାଜ୍ୟ ଦୃଢ଼ କରିବା ନିମନ୍ତେ ଯେଉଁସବୁ ମହାନ କାର୍ଯ୍ୟ କରିଥିଲେ, ଯେହି ହେତୁ ତାଙ୍କ ମୃତ୍ୟୁ ପରେ ଏକ ଶହ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ତାଙ୍କର ବଂଶ ରହି ପାରିଥିଲା ।

ଆକବରଙ୍କ ପରେ ତିନିଜଣ ଦକ୍ଷ ଶାସକ ଥିଲେ, ମାତ୍ର ସେମାନଙ୍କ ସମ୍ବନ୍ଧରେ ଅସାଧାରଣ ସେପରି କିଛି ନଥିଲା । ଏକ ସମ୍ରାଟର ମୃତ୍ୟୁ ଘଟିବା ସଙ୍ଗେ ସଙ୍ଗେ ତାଙ୍କର ପୁତ୍ରମାନଙ୍କ ଭିତରେ ସିଂହାସନ ଲାଗି ଅଶୋଭନୀୟ ବିବାଦ ଲାଗୁଥିଲା । ଏଠାରେ ରାଜପ୍ରାସାଦର ଚକ୍ରାନ୍ତ, ଉତ୍ତରାଧିକାରୀ ହେବା ଲାଗି ଯୁଦ୍ଧ, ପିତା ବିରୁଦ୍ଧରେ ପୁତ୍ରର ବିଦ୍ରୋହ ଓ ଭାଇ ବିରୁଦ୍ଧରେ ଭାଇର ହତ୍ୟା ଏବଂ ଅନ୍ଧୀଭୂତ ମନଙ୍କୁ ଅନ୍ଧ କରିଦେବା ଇତ୍ୟାଦି ଏକଛତ୍ର ଓ ମନମୁଖୀ ଶାସନର ସମସ୍ତ ଅବଗୁଣ ଦେଖାଯାଇଥିଲା । ଏତେ ପରିମାଣରେ ଆଡ଼ମ୍ବର ଓ ଜାକଜମକ ରହିଥିଲା ଯାହା ଅନ୍ୟତ୍ର କେଉଁଠି ଦେଖାଯାଏ ନାହିଁ । ତୋର ମନେ ଥିବ ଏତେବେଳେ ୧୪ଶ ଲୁଇ ବୋଏ ସୋଲେଲ ଫ୍ରାନ୍ସରେ ଥିଲେ । ସେ ଭରସେଇ ନିର୍ମାଣ କଲେ ଓ ଏକ ଚମତ୍କାର୍ଯ୍ୟକ ରାଜପରିଷଦ କରିଥିଲେ । କିନ୍ତୁ ମହାନ ମୋଗଲଙ୍କ ଶ୍ରେଷ୍ଠତ୍ୱ ସମ୍ମୁଖରେ ରୋଏ, ସୋଲେଲଙ୍କ ମହତ୍ତ୍ୱ କ୍ଷୀଣ ହୋଇଗଲା । ସମ୍ଭବତଃ ଏହି ମୋଗଲ ଶାସକମାନେ ସେ ଯୁଗର ଐଶ୍ୱର୍ଯ୍ୟଶାଳୀ ସମ୍ରାଟ ଥିଲେ । ତଥାପି ବେଳେବେଳେ ଦୁର୍ଭିକ୍ଷ, ସଂକ୍ରାମକ ରୋଗ ଓ ନାନା ବେମାରୀ ହୋଇଥିଲା ଏବଂ ରାଜକୀୟ-କଚେରୀ ବିଳାସରେ ଭାସୁଥିଲାବେଳେ ବହୁସଂଖ୍ୟକ ଲୋକ ଧ୍ୱଂସପାଇ ଯାଇଥିଲେ ।

ଆକବରଙ୍କ ଅମଳର ଧର୍ମପ୍ରତି ମହାନୁଭବତା ତାଙ୍କ ପୁତ୍ର ଜାହାଙ୍ଗୀରଙ୍କ ରାଜତ୍ୱରେ ଚାଲିଥିଲା । କିନ୍ତୁ ତା ପରେ ଏହା ଦୂର ହୋଇଗଲା ଏବଂ ଖ୍ରୀଷ୍ଟିୟାନ୍ ଓ ହିନ୍ଦୁମାନଙ୍କୁ କେତେକ ପରିମାଣରେ ଶାସ୍ତି ଦିଆଯାଉଥିଲା । ତା' ପରେ ଆଉରଙ୍ଗଜେବଙ୍କ ରାଜତ୍ୱ-କାଳରେ ହିନ୍ଦୁମାନଙ୍କୁ ଶାସ୍ତି ଦେବା ନିମନ୍ତେ ନିର୍ଦ୍ଦିଷ୍ଟ ରୂପେ ପ୍ରଚେଷ୍ଟା ହୋଇଥିଲା । ମନ୍ଦିର ଧ୍ୱଂସ ଓ ପୁଣି ଜିଜିୟା କର ପୁନର୍ବାର ବସାଇବାର ଚେଷ୍ଟା ହୋଇଥିଲା । ତେଣୁ ଆକବର ଏତେ ଶ୍ରମ ସହକାରେ ସାମ୍ରାଜ୍ୟର ଯେଉଁ ଭିତ୍ତି ସ୍ଥାପନ କରିଥିଲେ ତାହା ଗୋଟିକ ପରେ ଗୋଟିଏ ଦୂର ହୋଇଗଲା ଏବଂ ହଠାତ୍ ସାମ୍ରାଜ୍ୟ ଦୋହଲି ଗଲା ଓ ପତନ ହେଲା ।

ଆକବରଙ୍କ ପରେ ଜାହାଙ୍ଗୀର ରାଜା ହେଲେ । ଆକବରଙ୍କର ଏକ ରାଜପୁତ ସ୍ତ୍ରୀଙ୍କ ଗର୍ଭରୁ ସେ ଜନ୍ମ ହୋଇଥିଲେ । ସେ କେତେକ ପରିମାଣରେ ତାଙ୍କ ପିତାଙ୍କ ପରମ୍ପରା ରକ୍ଷା କରିଥିଲେ । ମାତ୍ର ଶାସନ ଅପେକ୍ଷା କଳା ଓ ଅଙ୍କନ ବିଦ୍ୟା, ଉଦ୍ୟାନ ଓ ଫୁଲରେ ସେ ଅଧିକ ଆଗ୍ରହ ଦେଖାଉଥିଲେ । ତାଙ୍କର ଏକ ସୁନ୍ଦର ଚିତ୍ରାଗାର ଥିଲା । ପ୍ରତି ବର୍ଷ ସେ କାଶ୍ମୀର ଯାଉଥିଲେ ଏବଂ ମୋର ମନେ ହୁଏ ଶ୍ରୀନଗର ନିକଟସ୍ଥ ସାଲିମାର ଓ ନିସାତ୍‌ବାଗ ବିଖ୍ୟାତ ଉଦ୍ୟାନ ସେ କରିଥିଲେ । ଜାହାଙ୍ଗୀରଙ୍କ ସ୍ତ୍ରୀ ତାଙ୍କର ଅନେକ ସ୍ତ୍ରୀଙ୍କ ଭିତରେ ଜଣେ କହିଲେ ଚଳେ—ସୁନ୍ଦରୀ ନୁର୍‌ଜାହାନ୍; ସିଂହାସନ ପଶ୍ଚାତରେ ସେ ପ୍ରକୃତ ଶକ୍ତି ରୂପେ ଥିଲେ । ଜାହାଙ୍ଗୀରଙ୍କ ଅମଳରେ ଇତମାଦଉଦ୍ଦୌଲା କବର ଅତି ସୁନ୍ଦର କୋଠା ତିଆରି ହୋଇଥିଲା । ମୁଁ ଯେତେବେଳେ ଆଗ୍ରା ଯାଏ, ସର୍ବଦା ଏହି କାରୁକାର୍ଯ୍ୟ ଦେଖି ମୋର ଚକ୍ଷୁକୁ ଏହି ସୌନ୍ଦର୍ଯ୍ୟରେ ମୁଗ୍ଧ କରାଏ ।

ଜାହାଙ୍ଗୀରଙ୍କ ପରେ ତାଙ୍କ ପୁତ୍ର ସାହାଜାହାନ ରାଜା ହେଲେ । ସେ ୩୦ ବର୍ଷକାଳ ଶାସନ କରିଥିଲେ (୧୬୨୮-୧୬୫୮) । ସେ ଫ୍ରାନ୍ସର ୧୪ଶ ଲୁଇଙ୍କ ସମ ସାମୟିକ ଥିଲେ ଏବଂ ତାଙ୍କ ରାଜତ୍ୱ କାଳରେ ମୋଗଲ ଜାକଜମକ ଚୂଡ଼ାନ୍ତରେ ପହଞ୍ଚିଥିଲା ଓ ତାଙ୍କ ଶାସନ କାଳରେହିଁ ପତନ ବୀଜ ସ୍ପଷ୍ଟ ଦୃଷ୍ଟିଗୋଚର ହେଲା । ଅତ୍ୟନ୍ତ ମୂଲ୍ୟବାନ ମୁକ୍ତା ଖଚିତ ପ୍ରସିଦ୍ଧ ମୟୂର ସିଂହାସନ ରାଜାଙ୍କ ବସିବାଲାଗି ତିଆରି ହୋଇଥିଲା; ତା ପରେ ତାଜମହଲ ହେଲା । ଆଗ୍ରାରେ ଯମୁନା କୂଳରେ ଏହା ଏକ ସୌନ୍ଦର୍ଯ୍ୟର କୀର୍ତ୍ତିସ୍ତମ୍ଭରୂପେ ରହିଛି । ତୁ ବୋଧହୁଏ ଜାଣୁ ଯେ ଏହା ତାଙ୍କର ଅତିପ୍ରିୟ ସ୍ତ୍ରୀ ମମତାଜମହଲଙ୍କ କବର । ସାହାଜାହାନ ଅନେକ ଏପରି କାମ କରିଥିଲେ ଯଦ୍ୱାରା ତାଙ୍କର ଖ୍ୟାତି ବା ସମ୍ମାନ ବୃଦ୍ଧି ପାଇ ନ ଥିଲା । ସେ ଧର୍ମପ୍ରତି ଅସହିଷ୍ଣୁ ଥିଲେ ଏବଂ ଦକ୍ଷିଣ ଗୁଜରାଟରେ ଯେତେବେଳେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା ଲୋକଙ୍କୁ ସାହାଯ୍ୟ ଦେବା ନିମନ୍ତେ ଆଦୌ କିଛି କରିନଥିଲେ । ତାଙ୍କ ଅମଳରେ ଲୋକଙ୍କ ଦୁର୍ଦ୍ଦଶା ଓ ଦାରିଦ୍ର୍ୟ କଥା ଭାବିଲେ ତାଙ୍କର ସମ୍ପଦ ଓ ପ୍ରାଚୁର୍ଯ୍ୟପ୍ରତି ଅତ୍ୟନ୍ତ ଘୃଣା ଜାତ ହୁଏ । ତଥାପି ସେ ପଥର ଓ ଶଙ୍ଖମର୍ମର ପ୍ରସ୍ତରରେ ଯେଉଁ ସୌନ୍ଦର୍ଯ୍ୟ ରଖି-ଯାଇଛନ୍ତି ଦେଖିଲେ ବୋଧହୁଏ ତାଙ୍କୁ କ୍ଷମା ଦିଆଯାଇ ପାରେ । ତାଙ୍କର ଅମଳରେ

ମୋଗଲ କାରୁକାର୍ଯ୍ୟ ତା'ର ଉଚ୍ଚସୀମାରେ ପହଞ୍ଚିଥିଲା । ତାଜ୍ ଛଡ଼ା ସେ ଆଗ୍ରାରେ ମୋତି ମସ୍‌ଜିଦ୍, ଦିଲ୍ଲୀରେ ବଡ଼ ଜୁମ୍ମା ମସ୍‌ଜିଦ ଏବଂ ଦିଲ୍ଲୀରେ ରାଜପ୍ରାସାଦରେ ଦେଓ୍ୱାନ୍ ଆମ ଓ ଦେଓ୍ୱାନ ଖାସ୍ ତିଆରି କରିଥିଲେ । ଏହି କୋଠାଗୁଡ଼ିକ ଅତ୍ୟନ୍ତ ସାଧାସିଧା ଥିଲା, କେତେକ ଖୁବ୍ ବଡ଼ ଅଥଚ ଅତ୍ୟନ୍ତ କମନୀୟ ଓ ମନୋରମ ଏବଂ ଏଗୁଡ଼ିକର ଅପ୍‌ସରା ପରି ସୌନ୍ଦର୍ଯ୍ୟ ଥିଲା ।

କିନ୍ତୁ ଏହି ଅପ୍‌ସରାତୁଲ୍ୟ ସୌନ୍ଦର୍ଯ୍ୟ ପଶ୍ଚାତ୍‌ରେ ଦୁଃଖୀ ଦରିଦ୍ର ଲୋକ ଥିଲେ । ସେମାନେହିଁ ପ୍ରାସାଦ ପାଇଁ ଖର୍ଚ୍ଚ ବହନ କରୁଥିଲେ । ଅଧିକାଂଶଙ୍କ ବାସ କରିବା ପାଇଁ ମାଟି କୁଡ଼ିଆ ଖଣ୍ଡେ ବି ନଥିଲା । ଅସହାୟ ସ୍ୱେଚ୍ଛାଚାରିତା ଚାଲିଥିଲା ଏବଂ ସମ୍ରାଟ ବା ତାଙ୍କର ଉଚ୍ଚପଦସ୍ଥ ଓ ଗଭର୍ଣ୍ଣରମାନଙ୍କୁ କେହି ଅସନ୍ତୁଷ୍ଟ କଲେ ତାଙ୍କୁ ଭୀଷଣ କଠୋର ଶାସ୍ତି ଦିଆଯାଉଥିଲା । ମେକିଆଭେଲିଙ୍କ ନୀତି ରାଜପରିଷଦରେ ଚରମ ଚାଲିଥିଲା ଚାଲୁଥିଲା । ଆକବରଙ୍କ ଦୟା, ସହିଷ୍ଣୁତା ଓ ସୁଶାସନ ଦିନ ଅତୀତର କାହାଣୀ ହୋଇଯାଇଥିଲା । ଘଟଣା ସବୁ ସଙ୍କଟ ଆଡ଼କୁ ଗତିକଲା ।

ତାପରେ ଆସିଲେ ଆଉରଙ୍ଗଜେବ । ମହାନ୍ ମୋଗଲଙ୍କ ଭିତରେ ସେ ହେଉଛନ୍ତି ଶେଷ ବ୍ୟକ୍ତି । ସେ ପିତାଙ୍କୁ ବନ୍ଦୀ କରି ଶାସନଭାର ଗ୍ରହଣ କଲେ । ୧୬୫୮ଠାରୁ ୧୭୦୭ ପର୍ଯ୍ୟନ୍ତ ୪୮ ବର୍ଷ ରାଜୁତି କରିଥିଲେ । ସେ ତାଙ୍କ ପିତାମହ ଜାହାଙ୍ଗିରଙ୍କ ପରି କଳା ସାହିତ୍ୟପ୍ରେମୀ କିମ୍ବା ପିତା ସାହାଜାହାନଙ୍କପରି କାରୁକାର୍ଯ୍ୟର ପ୍ରେମୀ ନ ଥିଲେ । ସେ ଜଣେ ଗୋଣ୍ଡି ରକ୍ଷଣଶୀଳ, ଧର୍ମାନ୍ଧ ବ୍ୟକ୍ତି ଥିଲେ । ନିଜ ଧର୍ମ ଛଡ଼ା ଅନ୍ୟ କୌଣସି ଧର୍ମ ସହ୍ୟ କରୁ ନଥିଲେ । ମୋଗଲ ରାଜପରିଷଦର ଆଡ଼ମ୍ବର ସେହିପରି ରହିଥିଲା; କିନ୍ତୁ ଆଉରଙ୍ଗଜେବ ତାଙ୍କ ବ୍ୟକ୍ତିଗତ ଜୀବନରେ ସରଳ ଓ ପ୍ରାୟ ଏକ ଋଷିପ୍ରତିମ ଥିଲେ । ଜାଣିଶୁଣି ସେ ହିନ୍ଦୁଧର୍ମର ଅଞ୍ଚଳମାନଙ୍କୁ ଶାସ୍ତି ଦେବା ଲାଗି ଏକ ନୀତି ଧାର୍ଯ୍ୟ କରିଥିଲେ । ଆକବରଙ୍କ ମିଳାମିଶା ଓ ସମନ୍ୱୟ କରିବାର ନୀତି ସେ ବଦଳାଇ ଦେଲେ; ତେଣୁ ଏ ପର୍ଯ୍ୟନ୍ତ ସାମ୍ରାଜ୍ୟ ଯାହା ଉପରେ ପ୍ରତିଷ୍ଠିତ ହୋଇଥିଲା ତାହା ଅନ୍ତର କରିଦେଲେ । ସେ ହିନ୍ଦୁଙ୍କ ଉପରେ ଜିଜିୟାକର ପୁନର୍ବାର ବସାଇଲେ, ହିନ୍ଦୁମାନଙ୍କୁ ଯଥାସମ୍ଭବ ଚାକିରିରୁ ବଞ୍ଚିତ କଲେ, ଯେଉଁ ରାଜପୁତ ସାମନ୍ତମାନେ ଆକବରଙ୍କ ସମୟରୁ ମୋଗଲ ବଂଶକୁ ସମର୍ଥନ କରିଆସିଥିଲେ, ସେମାନଙ୍କୁ ଅପମାନ ଦେଲେ ଓ ଏକ ରାଜପୁତ ଯୁଦ୍ଧ ଆରମ୍ଭ ହୋଇଗଲା; ହଜାର ହଜାର ହିନ୍ଦୁମନ୍ଦିର ଧ୍ୱଂସ କରିଦେଲେ ଏବଂ ଏହିରୂପେ ଅତୀତର ଅନେକ ସୁନ୍ଦର ପୁରାତନ କୋଠା ଧୂଳିସାତ ହୋଇଗଲା । ତାଙ୍କ ସାମ୍ରାଜ୍ୟ ଦକ୍ଷିଣରେ ବିସ୍ତାର ଲଭିଲା । ବିଜାପୁର ଓ ଗୋଲକୁଣ୍ଡା ତାଙ୍କ ହାତରେ ପଡ଼ିଲା ଏବଂ ସୁଦୂର ଦକ୍ଷିଣରୁ ରାଜସ୍ୱ ପାଇଲେ । ସାମ୍ରାଜ୍ୟର ଭିତ୍ତି ଦୋହଲିଗଲା ଓ ଏହା ଦିନକୁ ଦିନ ଦୁର୍ବଳ ହୋଇପଡ଼ିଲା ଏବଂ ପ୍ରତ୍ୟେକ ଆଡ଼େ ଶତ୍ରୁ ଦେଖାଦେଲେ । ତାଙ୍କ ନିକଟକୁ ଜିଜିୟାକର ବିରୁଦ୍ଧରେ ଆସିଥିବା ହିନ୍ଦୁମାନଙ୍କ ଏକ ଦରଖାସ୍ତରେ ଲେଖାଥିଲା

ଯେ ରାଜସ୍ୱ, "ନ୍ୟାୟ ବିରୁଦ୍ଧ, ଏହା ଆଦୌ ଉତ୍ତମ ନୀତି ନୁହେଁ, ଯେହେତୁ ଏଥିରେ ଦେଶର ଦାରିଦ୍ର୍ୟ ବଢ଼ିବ, ଆହୁରି ମଧ୍ୟ ଏହା ହିନ୍ଦୁସ୍ଥାନରେ ଏକ ନୂତନ କଥା ଏବଂ ତା'ବିଧାନର ବ୍ୟତିକ୍ରମ ଘଟାଉଛି ।" ସାମ୍ରାଜ୍ୟର ଯେପରି ଅବସ୍ଥା ଥିଲା, ତାହା ଉଲ୍ଲେଖ କରି ଏଥିରେ କୁହାହୋଇଥିଲା "ଆପଣଙ୍କ ରାଜତ୍ୱ ଭିତରେ ଅନେକ ସାମ୍ରାଜ୍ୟରୁ ଦୂର ହୋଇଯାଇଛନ୍ତି ଏବଂ ଯେହେତୁ ବର୍ତ୍ତମାନ ବିନା ବାଧାରେ ସର୍ବତ୍ର ଧ୍ୱଂସ ଓ ପୈଶାଚିକ କାଣ୍ଡ ଚାଲିଛି; ତେଣୁ ଏହା ପରେ ପରେ ଅହୁରି ଅଞ୍ଚଳ ଅବଶ୍ୟ ହରାଇବାକୁ ପଡ଼ିବ । ଆପଣଙ୍କର ପ୍ରଜାମାନଙ୍କୁ ପାଦରେ ଦଳିଦିଆଯାଇଛି ଏବଂ ଆପଣଙ୍କ ସାମ୍ରାଜ୍ୟର ପ୍ରତ୍ୟେକ ପ୍ରଦେଶ ଦରିଦ୍ର ହୋଇପଡ଼ିଛି, ଲୋକସଂଖ୍ୟା କମ୍ ହୋଇଯାଇଛି ଏବଂ ଅସୁବିଧା ବଢ଼ିବାରେ ଲାଗିଛି ।"

ଆଗାମୀ ୫୦ ବର୍ଷ ବା ସେହି କାଳ ଭିତରେ ଭାରତରେ ଯେଉଁସବୁ ମହାନ୍ ପରିବର୍ତ୍ତନ ହୋଇ ଥିଲା, ଏହି ସାଧାରଣ ଦୁର୍ଦ୍ଦଶା ତାର ପୂର୍ବାଭାସ ଥିଲା । ଏଥିରୁ ଏକ ପରିବର୍ତ୍ତନ ହେଉଛି, ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ବିରାଟ ମୋଗଲ ସାମ୍ରାଜ୍ୟର ହଠାତ୍ ସମ୍ପୂର୍ଣ୍ଣ ରୂପେ ପତନ ହୋଇଗଲା । ବିରାଟ ପରିବର୍ତ୍ତନ ଓ ମହାନ ଆନ୍ଦୋଳନମାନଙ୍କ ପଶ୍ଚାତରେ ସର୍ବଦା ଅର୍ଥନୀତିକ କାରଣ ଥାଏ ଏବଂ ଆମେ ଦେଖିଥାଉଁ ଯେ ୟୁରୋପ ଓ ଚୀନରେ ବିରାଟ ସାମ୍ରାଜ୍ୟ ଗୁଡ଼ିକର ପତନ ସଙ୍ଗେ ସଙ୍ଗେ ଆର୍ଥିକ ପତନ ଓ ପରେ ବିପ୍ଳବ ହୋଇଥିଲା । ଭାରତରେ ବି ସେହିପରି ହେଲା ।

ପ୍ରାୟ ସମସ୍ତ ସାମ୍ରାଜ୍ୟର ଯେପରି ପତନ ଘଟେ ସେହିପରି ନିଜର ଅନ୍ତର୍ନିହିତ ଦୁର୍ବଳତା ହେତୁ ମୋଗଲ ସାମ୍ରାଜ୍ୟର ପତନ ହେଲା । ଏହା ଖଣ୍ଡ ଖଣ୍ଡ ହୋଇଗଲା । ମାତ୍ର ହିନ୍ଦୁମାନଙ୍କ ଭିତରେ ଏକ ନୂତନ ବିଦ୍ରୋହର ଚେତନା ଏହି ପ୍ରକ୍ରିୟାରେ ଖୁବ୍ ସାହାଯ୍ୟ କରିଥିଲା । ଆଉରଙ୍ଗଜେବଙ୍କ ନୀତିଦ୍ୱାରା ଅବସ୍ଥା ଏପରି ଗୁରୁତର ଆକାର ଧାରଣ କରିଥିଲା କିନ୍ତୁ ଏକପ୍ରକାର ହିନ୍ଦୁ ଧାର୍ମିକ ଜାତୀୟତାଭାବ ଆଉରଙ୍ଗଜେବଙ୍କ ରାଜୁତିର ଆହୁରି ଆଗରୁ ବି ଆରମ୍ଭହୋଇଥିଲା । ହୁଏତ ଏହି ହେତୁରୁ ଆଂଶିକ ଭାବରେ ଆଉରଙ୍ଗଜେବ ଏହିପରି ଉଗ୍ର ଓ ଅସହିଷ୍ଣୁ ହୋଇଥିଲେ । ହିନ୍ଦୁଧର୍ମର ପୁନରୁଦ୍ଧାରରେ ମରହଟ୍ଟା, ଶିଖ ଓ ଅନ୍ୟମାନେ ପ୍ରଧାନ ହୋଇଥିଲେ ଏବଂ ଆମେ ଆଗାମୀ ଚିଠିରେ ଦେଖିବା ଯେ ଏହିମାନେ ଶେଷରେ ମୋଗଲ ସାମ୍ରାଜ୍ୟର ମୂଳ ଉତ୍ପାଟନ କଲେ; କିନ୍ତୁ ସେମାନେ ଏହି ମହତ୍ତ୍ୱ କାର୍ଯ୍ୟରୁ କିଛି ଶିକ୍ଷା କରିପାରିଲେ ନାହିଁ । ନୀରବରେ ଓ ଚତୁର ଭାବରେ ବ୍ରିଟିଶ ପ୍ରବେଶ କଲେ ଏବଂ ଅନ୍ୟମାନେ ପରସ୍ପର ଭିତରେ ଲଢ଼ାଇ କରୁଥିବାବେଳେ ସେମାନେ ଲୁଣ୍ଠିତଦ୍ରବ୍ୟ ଦଖଲ କରିଗଲେ ।

ମୋଗଲ ସମ୍ରାଟମାନେ ଯେତେବେଳେ କୌଣସି ସୈନ୍ୟବାହିନୀ ସହ ଯାତ୍ରା କରୁଥିଲେ ସେତେବେଳେ ରାଜକୀୟ ଶିବିର କିପରି ଥିଲା, ତାହା ଜାଣିବାକୁ ତୋର ଆଗ୍ରହ

ହୋଇପାରେ । ଏହା ଏକ ବିଶାଳ ବ୍ୟାପାର । ୩° ମାଇଲ ବ୍ୟାପୀ ବୃତ୍ତାକାରରେ ପ୍ରାୟ ପାଞ୍ଚଲକ୍ଷ ଲୋକ ରହୁଥାନ୍ତି । ରାଜାଙ୍କ ସହିତ ଯାଉଥିବା ସେନାବାହିନୀ ଏହି ଲୋକସଂଖ୍ୟାର ଅନ୍ତର୍ଭୁକ୍ତ, କିନ୍ତୁ ଏଥିରେ ଅନ୍ୟ ଲୋକ ବହୁସଂଖ୍ୟାରେ ଥାଆନ୍ତି ଓ ଯାହାର ଏହି ପ୍ରକାଣ୍ଡ ସହରରେ ଶହ ଶହ ବଜାର ଥାଏ । ଏହି ଗତିଶୀଳ ଶିବିରରେ ଉର୍ଦ୍ଦୁ ('ଶିବିର' ଭାଷା)-ବୃଦ୍ଧି ପାଇଲା ।

ମୋଗଲ ଅମଳର ଅନେକ ଛବି ଏବେ ସୁଦ୍ଧା ରହିଛି । ସେଗୁଡ଼ିକ ଅତି ସୁନ୍ଦର ଅଙ୍କିତ ଚିତ୍ର । ସମ୍ରାଟମାନଙ୍କ ପ୍ରତିକୃତିର ବହୁବିଧ ଏକ ଚିତ୍ରାଗାର ଅଛି । ସେଥିରେ ବାବରଙ୍କଠାରୁ ଆଉରଙ୍ଗଜେବଙ୍କ ପର୍ଯ୍ୟନ୍ତ ଏହି ଲୋକମାନଙ୍କର ବ୍ୟକ୍ତିତ୍ୱ ଅଦ୍ଭୁତ ପ୍ରକାରେ ପ୍ରକଟିତ ହୁଏ ।

ମୋଗଲ ସମ୍ରାଟମାନେ ପ୍ରତ୍ୟେକ ଦିନ ଅନ୍ତତଃ ଦୁଇଥର ବାରଣ୍ଡାରେ ଲୋକମାନଙ୍କୁ ଦେଖା ଦିଅନ୍ତି ଏବଂ ସେମାନଙ୍କର ଦରଖାସ୍ତ ଗ୍ରହଣ କରନ୍ତି । ଯେତେବେଳେ ଇଂରେଜ ରାଜା ପ୍ରଥମ ଜର୍ଜ ୧୯୧୧ରେ ଦିଲ୍ଲୀରେ ଅଭିଷେକ ଦରବାର ପାଇଁ ଆସିଥିଲେ, ସେତେବେଳେ ସେହିପ୍ରକାରେ ତାଙ୍କୁ ହାଜିର କରିବାକୁ ହୋଇଥିଲା । ଭାରତ ରାଜ୍ୟରେ ମୋଗଲଙ୍କ ଉତ୍ତରାଧିକାରୀ ବୋଲି ଇଂରେଜମାନେ ନିଜକୁ ବିଚାର କରନ୍ତି ଏବଂ ଆଡ଼ମ୍ବର ଓ ଅଳୀକ ପ୍ରଦର୍ଶନରେ ସେମାନଙ୍କୁ ଅନୁକରଣ କରିବାକୁ ଚେଷ୍ଟା କରନ୍ତି । ମୁଁ ତୋତେ କହିଛି, ଇଂରେଜ ରାଜାଙ୍କୁ ମୋଗଲ ସମ୍ରାଟଙ୍କ ଉପାଧି, ଯଥା—କାଇଜର ଇ ହିନ୍ଦ୍ ଦିଆଯାଇଛି । ଆଜି ସୁଦ୍ଧା ଭାରତରେ ଇଂରେଜ ଭାଇସ୍‌ରାୟ ପାଖରେ ଯେତେ ଆଡ଼ମ୍ବର ଓ ଜାକଜମକ ରହିଛି, ତାହା ସମ୍ଭବତଃ ପୃଥିବୀର ଅନ୍ୟ କୌଣସି ସ୍ଥାନରେ ଦେଖାଯାଏ ନାହିଁ ।

ପରବର୍ତ୍ତୀ ମୋଗଲମାନଙ୍କର ବିଦେଶୀଙ୍କସହ କିପରି ସମ୍ବନ୍ଧ ଥିଲା, ମୁଁ ତାହା କହିନାହିଁ । ଆକବରଙ୍କ ରାଜପରିଷଦରେ ପର୍ତ୍ତୁଗୀଜ ପାଦ୍ରୀମାନେ ଅତ୍ୟନ୍ତ ପ୍ରିୟ ଥିଲେ ଏବଂ ଆକବର ମୁଖ୍ୟତଃ ପର୍ତ୍ତୁଗୀଜମାନଙ୍କ ଦ୍ୱାରା ୟୁରୋପୀୟ ଜଗତସହ ସମ୍ପର୍କ ସ୍ଥାପନ କରିଥିଲେ । ସେ ସେମାନଙ୍କୁ ୟୁରୋପୀୟ ଜାତିଭିତରେ ସର୍ବାପେକ୍ଷା ଅଧିକ ପ୍ରଭାବଶାଳୀ ବୋଲି ମନେକରୁଥିଲେ ଏବଂ ସେମାନେ ସମୁଦ୍ର ଆୟତ୍ତ କରିଥିଲେ । ଇଂରେଜଙ୍କ ନାମଗନ୍ଧ ନ ଥିଲା । ଆକବର ଗୋଆ ଉପରେ ଆଖି ପକାଇଲେ ଏବଂ ଏପରିକି ଏହାକୁ ଆକ୍ରମଣ କରିଥିଲେ; କିନ୍ତୁ କିଛି ହେଲା ନାହିଁ । ମୋଗଲମାନେ ସମୁଦ୍ରପଥକୁ ଭଲପାଉ ନଥିଲେ ଏବଂ ଏକ ନୌଶକ୍ତି ଆଗରେ ଶକ୍ତିହୀନ ହୋଇ ପଡ଼ିଲେ । ଏହା ଏକ ବିଚିତ୍ର କଥା । କାରଣ ସେତେବେଳେ ପୂର୍ବବଙ୍ଗରେ ଅଧିକ ପରିମାଣରେ ଜାହାଜ ନିର୍ମାଣ ହେଉଥିଲା; କିନ୍ତୁ ଏହି ଜାହାଜସବୁ ଅଧିକାଂଶ ବାଣିଜ୍ୟ ଜିନିଷ ବୋହିବା ଲାଗି ହୋଇଥିଲା । ସମୁଦ୍ରରେ ଶକ୍ତିହୀନତା ମୋଗଲ ସାମ୍ରାଜ୍ୟ ପତନର ଏକ କାରଣ ବୋଲି ଧରାଯାଏ । ନୌଶକ୍ତିର ବେଳ ପହଞ୍ଚି ଯାଇଥିଲା ।

◆

ଇଂରେଜ ମାନେ ଯେତେବେଳେ ମୋଗଲ ଦରବାରକୁ ଆସିବାକୁ ଚେଷ୍ଟା କଲେ, ପର୍ତ୍ତୁଗୀଜ ମାନେ ସେମାନଙ୍କ ପ୍ରତି ଈର୍ଷାପରାୟଣ ହେଲେ ଏବଂ ସେମାନଙ୍କ ବିରୁଦ୍ଧରେ ଜାହାଙ୍ଗିରଙ୍କୁ ମତାଇବା ସକାଶେ ଯଥାପରୋନାସ୍ତି ଚେଷ୍ଟା କଲେ; କିନ୍ତୁ ଇଂଲଣ୍ଡର ପ୍ରଥମ ଜେମସଙ୍କ ରାଜଦୂତ ସାର୍ ଟମ ରୋ ୧୬୧୫ରେ କୌଣସି ପ୍ରକାର ଜାହାଙ୍ଗିରଙ୍କ ରାଜସଭାରେ ପହଞ୍ଚି ପାରିଥିଲେ ଏବଂ ସେ ସମ୍ରାଟଙ୍କଠାରୁ ସୁବିଧା ହାସଲ କରି ଇଷ୍ଟଇଣ୍ଡିଆ କମ୍ପାନୀରେ ବେପାରର ମୂଳଦୁଆ ସ୍ଥାପନକଲେ । ଇତ୍ୟବସରରେ ଭାରତୀୟ ସାଗରରେ ଇଂରେଜପୋତ ପର୍ତ୍ତୁଗୀଜ ଜାହାଜଗୁଡ଼ିକୁ ପରାସ୍ତ କରିଦେଇଥିଲା । ଇଂଲଣ୍ଡର ନକ୍ଷତ୍ର ଧୀରେ ଧୀରେ ଆକାଶ ମଣ୍ଡଳରେ ଉଠିବାକୁ ଲାଗିଲା; ପଶ୍ଚିମରେ ପର୍ତ୍ତୁଗାଲର ଶକ୍ତି କ୍ଷୟ ହୋଇଯାଉଥିଲା । ଡଚ୍ ଓ ଇଂରେଜ କ୍ରମେ ପୂର୍ବୀୟ ସାଗରରୁ ପର୍ତ୍ତୁଗୀଜମାନଙ୍କୁ ତଡ଼ିଦେଲେ ଏବଂ ତୋର ମନେ ଥିବ ଏପରିକି ମଲକ୍କାର ଅଧିକ ଅଂଶ ୧୬୪୧ରେ ଡଚ୍‌ମାନଙ୍କ ହାତରେ ପଡ଼ିଲା । ୧୬୨୧ରେ ହୁଗୁଳି ଠାରେ ସାହାଜାହାନ ଓ ଅର୍ତ୍ତୁଗୀଜଙ୍କ ଭିତରେ ଯୁଦ୍ଧ ଲାଗିଲା । ପର୍ତ୍ତୁଗୀଜମାନେ ବିଧିବଦ୍ଧ ଭାବରେ ଦାସ ବ୍ୟବସାୟ କରୁଥିଲେ ଏବଂ ବଳପୂର୍ବକ ଖ୍ରୀଷ୍ଟଧର୍ମରେ ଲୋକଙ୍କୁ ଦୀକ୍ଷିତ କରୁଥିଲେ । ଏକ ଦାମ୍ଭିକ ପ୍ରତିରୋଧ ପରେ ମୋଗଲମାନେ ହୁଗୁଳି ଦଖଲ କଲେ । ଏହି ପୁନଃପୁନଃ ଯୁଦ୍ଧଦ୍ୱାରା କ୍ଷୁଦ୍ର ପର୍ତ୍ତୁଗାଲ ରାଜ୍ୟର ଶକ୍ତି କ୍ଷୟ ହୋଇଗଲା । ଆଉ ସମ୍ରାଜ୍ୟଲବ୍ଧି ବିବାଦରୁ କ୍ଷାନ୍ତ ହେଲା; ମାତ୍ର ଗୋଆ ଓ ଅନ୍ୟ କେତେକ ସ୍ଥାନରେ ରହିଲା ଏବଂ ସେଠାରେ ସେମାନେ ଏବେ ସୁଦ୍ଧା ଅଛନ୍ତି ।

ଇତ୍ୟବସରରେ ଇଂରେଜମାନେ ଭାରତୀୟ ଉପକୂଳ ସହରରେ ମାଡ୍ରାଜ ଓ ସୁରଟ ନିକଟରେ କାରଖାନା ବସାଇଲେ । ୧୬୩୯ରେ ସେମାନେ ମାଡ୍ରାଜର ଭିତ୍ତିସ୍ଥାପନା କଲେ । ୧୬୬୨ରେ ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସ ପର୍ତ୍ତୁଗାଲର ବ୍ରାଗାଞ୍ଜା କାଥେରାଇନଙ୍କୁ ବିବାହ କଲେ ଏବଂ ସେ ଯୌତୁକ ସ୍ୱରୂପ ବମ୍ବେ ଦ୍ୱୀପ ପାଇଲେ । ଅଳ୍ପଦିନ ପରେ ସାମାନ୍ୟ ମୂଲ୍ୟରେ ଇଷ୍ଟଇଣ୍ଡିଆ କମ୍ପାନୀକୁ ଏହା ବନ୍ଦୋବସ୍ତ କରିଦେଲେ । ଏହା ଆଉରଙ୍ଗଜେବଙ୍କ ରାଜତ୍ୱ ଭିତରେ ଘଟିଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ ପର୍ତ୍ତୁଗୀଜମାନଙ୍କୁ ତଡ଼ିଦେବାରେ ଗର୍ବ ଅନୁଭବ କଲା ଏବଂ ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇ ପଡ଼ୁଛି ବୋଲି ଭାବି ଭାରତରେ ୧୬୮୫ରେ ବଳପୂର୍ବକ ନିଜ ରାଜ୍ୟ ବୃଦ୍ଧି କରିବାରେ ଚେଷ୍ଟା କଲା; କିନ୍ତୁ ତାଙ୍କୁ ଦୁଃଖ ସହିବାକୁ ପଡ଼ିଥିଲା, ସୁଦୂର ଇଂଲଣ୍ଡରୁ ଯୁଦ୍ଧଜାହାଜସବୁ ଆସୁଥିଲା ଏବଂ ଆଉରଙ୍ଗଜେବଙ୍କ ରାଜ୍ୟ ଉଭୟ ଦିଗରେ ପୂର୍ବରେ ବଙ୍ଗଳା ଓ ପଶ୍ଚିମରେ ସୁରଟରେ ଆକ୍ରମଣ କରାଯାଇଥିଲା; କିନ୍ତୁ ମୋଗଲମାନେ ତଥାପି ଶକ୍ତିଶାଳୀ ଥିଲେ ଓ ତାଙ୍କୁ ଗୁରୁତର ଭାବରେ ପରାସ୍ତ କରିଦେଲେ । ଇଂରେଜମାନେ ଏଥିରୁ ମହତ୍ ଶିକ୍ଷା ପାଇଲେ । ଏବଂ ଭବିଷ୍ୟତରେ ଅତ୍ୟଧିକ ସାବଧାନ ହୋଇଗଲେ । ଏପରିକି ଆଉରଙ୍ଗଜେବଙ୍କ ମୃତ୍ୟୁରେ ଯେତେବେଳେ ମୋଗଲଶକ୍ତି ସ୍ପଷ୍ଟରୂପେ ଖଣ୍ଡ ଖଣ୍ଡ ହୋଇଯିବାର ଦେଖାଗଲା, ସେତେବେଳେ ଅନେକ ବର୍ଷ ପର୍ଯ୍ୟନ୍ତ କୌଣସି ପ୍ରକାର ବଡ଼ ଉଦ୍ୟମ ଲଗାଇବା ନିମନ୍ତେ

ସେମାନେ ଦ୍ୱିଧା ବୋଧ କରୁଥିଲେ । ୧୬୯୦ରେ ତାଙ୍କଭିତରୁ ଜବ୍ ଚାର୍ଣ୍ଣକ ନାମକ ଜଣେ ବ୍ୟକ୍ତି କଲିକତା ନଗର ସ୍ଥାପନ କରିଥିଲେ । ଏହିରୂପେ ମାନ୍ଦ୍ରାଜ, ବମ୍ବେ ଓ କଲିକତା ଇଂରେଜ ଲୋକେ ସ୍ଥାପନ କରିଥିଲେ ଏବଂ ବ୍ରିଟିଶ ଉଦ୍ୟୋଗ ବୃଦ୍ଧି ସଙ୍ଗେ ସଙ୍ଗେ ଏହା ବୃଦ୍ଧି ପାଇଥିଲା ।

ଭାରତରେ ଏହାପରେ ଫରାସୀମାନେ ଦେଖାଦେଲେ । ଏକ ଫରାସୀ ବାଣିଜ୍ୟ କମ୍ପାନୀ ଗଠିତ ହେଲା ଏବଂ ୧୬୬୮ରେ ସେମାନେ ସୁରାଟରେ ଗୋଟିଏ କାରଖାନା ଏବଂ ଅନ୍ୟ କେତେକ ସ୍ଥାନରେ ଆଉ କେତେକ କାରଖାନା ବସାଇଲେ । କେତେକ ବର୍ଷ ପରେ ସେମାନେ ପଣ୍ଡିଚେରି ସହର କିଣିଥିଲେ । ଏହା ପୂର୍ବୋପକୂଳରେ ସର୍ବାପେକ୍ଷା ପ୍ରଧାନ ବାଣିଜ୍ୟ ବନ୍ଦର ହୋଇଥିଲା ।

୧୭୦୭ରେ ୯୦ ବର୍ଷ ବୟସରେ ଆଉରଙ୍ଗଜେବ ମଲେ । ସେ ଯେଉଁ ଅପୂର୍ବ ସ୍ଥାନ-ଭାରତ ଛାଡ଼ିଗଲେ, ତାହା ବିବାଦ ଲାଗି କ୍ଷେତ୍ର ସ୍ୱରୂପ ହୋଇଥିଲା । ତାଙ୍କର ଅପାରଗ ବଂଶଧର ଓ କେତେକ ବଡ଼ ଗଭର୍ଣ୍ଣର ସବୁ ଥିଲେ; ମରହଟ୍ଟା ଓ ଶିଖମାନେ ବି ଥିଲେ ଏବଂ ଉତ୍ତର ପଶ୍ଚିମ ସୀମାନ୍ତର ସେ କଡ଼ରୁ ଲୋଲୁପ ଦୃଷ୍ଟିରେ ଲୋକେ ଅନାଇ ଥିଲେ ଏବଂ ଇଂରେଜ ଓ ଫରାସୀ ଦୁଇଟି ବିଦେଶୀ ଜାତି ସମୁଦ୍ର ପାରି ହୋଇ ଆସିଲେ । ଭାରତର ଦରିଦ୍ର ଲୋକଙ୍କ ଅବସ୍ଥା କିପରି ଥିଲା?

## ୯୧ : ଶିଖ ଓ ମରହଟ୍ଟା

ସେପ୍ଟେମ୍ବର ୧୬, ୧୯୩୨

ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ୧୦୦ ବର୍ଷ କାଳ ଭାରତର ଅବସ୍ଥା ବିଚିତ୍ର ପ୍ରକାର ଥିଲା । ନାନା ପ୍ରକାର ଘଟଣା, ସଦାପରିବର୍ତ୍ତନଶୀଳ ପରିସ୍ଥିତି ଅଥଚ ଦେଖିବାକୁ ସେପରି ଭଲ ନୁହେଁ । କୌଣସି ଦୁଃସାହାସିକ ପକ୍ଷରେ ଏହା ଏକ ଶୁଭମୁହୂର୍ତ୍ତ । ସାହସୀ ଓ ନ୍ୟାୟ ଅନ୍ୟାୟକୁ ଖାତିର ନକରୁଥିବା ଲୋକେ ଯେକୌଣସି ଉପାୟ ବା ପନ୍ଥା ପ୍ରତି ଖାତିର ନକରି ଏହାର ସୁଯୋଗ ଉଠାଇଲେ । ସମଗ୍ର ଭାରତରେ ଏପରି ଦୁଃସାହସିକ ଲୋକେ ଦେଖାଦେଲେ । ଏହି ଦେଶର ଦୁଃସାହସିକ ଲୋକ ଏବଂ ଉତ୍ତର ପଶ୍ଚିମ ସୀମାନ୍ତ ପାରହୋଇ ଆସିଥିବା ଜାତି ଓ ସମୁଦ୍ର ଅତିକ୍ରମ କରି ଆସିଥିବା ଇଂରେଜ ଫରାସୀଙ୍କ ପରି ସମ୍ପ୍ରଦାୟଙ୍କର ପ୍ରାଦୁର୍ଭାବ ବଢ଼ିଥିଲା । ପ୍ରତ୍ୟେକ ବ୍ୟକ୍ତି ବା ସମ୍ପ୍ରଦାୟ ତାର ବା ନିଜର

ହାତ ଦେଖାଇ ଦେଲା ଏବଂ ଅନ୍ୟ ସମସ୍ତଙ୍କୁ ଧ୍ୱଂସ କରି ଦେବାକୁ ପ୍ରସ୍ତୁତ ଥିଲା; କେତେବେଳେ ଦୁଇ ବା ତତୋଽଧିକ ଶତ୍ରୁ ଜାତିଙ୍କୁ ଦମନ କରିବା ଲାଗି ମିଳିତ ହେଉଥିଲେ ତ ପରମୁହୂର୍ତ୍ତରେ ନିଜ ଭିତରେ ବିବାଦ ଲାଗୁଥିଲା । ରାଜ୍ୟକୁ ଖଣ୍ଡ ଖଣ୍ଡ କରିଦେବା ପାଇଁ, ଶୀଘ୍ର ଧନୀ ହେବା ପାଇଁ ଏବଂ ଅନେକ ସମୟରେ ପ୍ରକାଶ୍ୟ ଓ ନିର୍ଲଜ ଭାବରେ, କେତେବେଳେ ବା ବେପାରୀର ସୂକ୍ଷ୍ମ ଛଦ୍ମବେଶ ଧାରଣ କରି ଲୁଣ୍ଠନ କରିବାର ପ୍ରବଳ ଉଦ୍ୟମ ହୋଇଥିଲା । ଏହାଠାରୁ ପଛ ଭିତରେ ଥିଲା ଲୋପପାଉଥିବା ମୋଗଲ ସାମ୍ରାଜ୍ୟ । ଏହା ଚେସାୟାର ବିଲୁଆ* ପରି ଲୋପ ହେଉଥିଲା—ଶେଷକୁ ତାର ହସ ବି ଆଉ ରହିଲା ନାହିଁ ଏବଂ ତଥାକଥିତ ସମ୍ରାଟ ଏକ ଅଭାଗା ପେନ୍‌ସନ୍ ଭୋଗୀ ବା ଅନ୍ୟମାନଙ୍କ ହାତରେ ବନ୍ଦୀ ହୋଇ ରହିଲେ ।

କିନ୍ତୁ ଏହିସବୁ ଆନ୍ଦୋଳନ ଓ ଗୋଳମାଳଗୁଡ଼ିକ ଭିତରେ ଚାଲିଥିବା ଏକ ବିପ୍ଳବର ବାହ୍ୟିକ ସୂଚନାମାତ୍ର । ପୁରାତନ ଅର୍ଥନୈତିକ ବ୍ୟବସ୍ଥା ଭାଙ୍ଗିପଡ଼ୁଥିଲା । ସାମନ୍ତବାଦର କାଳ ପୂରି ଯାଇଥିଲା ଏବଂ ଏହାର ପତନ ହେଉଥିଲା । ଦେଶର ନୂତନ ଅବସ୍ଥା ସହିତ ଏହା ଖାପ ଖାଉ ନଥିଲା । ଏହି ପ୍ରକ୍ରିୟା ଇଉରୋପରେ ଘଟିଥିବାର ଆମେ ଦେଖିଥାଉଁ । ବଣିକଶ୍ରେଣୀ ଜାଗ୍ରତ ହୋଇଛନ୍ତି । ମାତ୍ର ଏକଛତ୍ର ଶାସକମାନେ ହିଁ ତାଙ୍କୁ ବାଧା ଦେଉଛନ୍ତି । ଏକମାତ୍ର ଇଂଲଣ୍ଡରେ ଓ କେତେକ ପରିମାଣରେ ହଲାଣ୍ଡରେ ସମ୍ରାଟମାନେ ବଶୀଭୂତ ହୋଇପାରିଥିଲେ । ଯେତେବେଳେ ଆଉରଙ୍ଗଜେବ ସିଂହାସନ ଆରୋହଣ କଲେ, ସେତେବେଳେ ଇଂଲଣ୍ଡରେ କ୍ଷଣସ୍ଥାୟୀ ପ୍ରଜାତନ୍ତ୍ର ଥିଲା, ତାହାପରେ ପ୍ରଥମ ଚାର୍ଲସ ଫାସି ପାଇଥିଲେ । ଆଉରଙ୍ଗଜେବଙ୍କ ରାଜୁତି କାଳଭିତରେ ମଧ୍ୟ ବ୍ରିଟିଶ ବିପ୍ଳବ ସମ୍ପୂର୍ଣ୍ଣ ହୋଇଥିଲା, ଜେମସ୍ ପଳାଇଗଲେ ଓ ୧୬୮୮ରେ ପାର୍ଲିମେଣ୍ଟର ବିଜୟ ହେଲା । ଇଂଲଣ୍ଡରେ ପାର୍ଲିମେଣ୍ଟ ପରି ଏକ ଅର୍ଦ୍ଧ ଲୋକପ୍ରିୟ ବ୍ୟବସ୍ଥାସଭା ଥିବାରୁ ଏହି ସଂଗ୍ରାମ ଖୁବ୍ ସାହାଯ୍ୟ ପାଇଥିଲା । ସାମନ୍ତ ପ୍ରଭୁ ଓ ପରେ ରାଜାଙ୍କ ବିରୁଦ୍ଧରେ ଏହାକୁ ହିଁ ଉପଯୋଗ କରାଯାଇଥିଲା ।

ଇଉରୋପର ଅଧିକାଂଶ ଦେଶରେ ଅବସ୍ଥା ଭିନ୍ନ ଭିନ୍ନ ପ୍ରକାରର ଥିଲା । ଫ୍ରାନ୍ସରେ ସମ୍ରାଟ ୧୪ଶ ଲୁଇ ଏବେସୁଦ୍ଧା ରାଜତ୍ୱ କରୁଥିଲେ, ସେ ତାଙ୍କର ରାଜୁତିରେ ଆଉରଙ୍ଗଜେବଙ୍କ ସମସାମୟିକ ଥିଲେ ଏବଂ ତାଙ୍କପରେ ଆହୁରି ଆଠବର୍ଷ ବଞ୍ଚିଥିଲେ । ସେଠାରେ ପ୍ରାୟ ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏକଛତ୍ର ଶାସନ ଚାଲିଥିଲା । ତା'ପରେ ବିରାଟ ଫରାସୀ ବିପ୍ଳବ ହୋଇଥିଲା । ଆମେ ଦେଖିଲେ ଜର୍ମାନୀରେ ୧୭ଶ ଶତାବ୍ଦୀରେ ଏକ ପ୍ରଖର ଦେଳ

* 'ଏଲିସ୍ ଇନ୍ ଦ ଓ୍ୱାଣ୍ଡରଲାଣ୍ଡ୍' ପୁସ୍ତକରେ ବର୍ଣ୍ଣିତ ଏକ କଳ୍ପିତ ବିଲୁଆ—ଏହା ସର୍ବଦା ହସୁଥାଏ ।

ପଡ଼ୁଥିଲା । ଏହି ଶତାବ୍ଦୀ ଭିତରେ ୩୦ ବର୍ଷିଆ ଯୁଦ୍ଧ ଘଟିଲା । ଏହା ଦେଶକୁ ଭାଙ୍ଗି ପକାଇଲା ଓ ଧ୍ୱଂସ କଲା ।

୧୮ଶ ଶତାବ୍ଦୀରେ ଭାରତର ଅବସ୍ଥା କେତେକ ପରିମାଣରେ ଜର୍ମାନୀର ୩୦ ବର୍ଷିଆ ଯୁଦ୍ଧର ଅବସ୍ଥା ସହିତ ତୁଳନା କରାଯାଇପାରେ, କିନ୍ତୁ ଏହି ତୁଳନା ବେଶୀଦୂର ନେବା ଠିକ୍ ନୁହେଁ । ଉଭୟ ରାଜ୍ୟରେ ଅର୍ଥନୈତିକ ପତନ ହୋଇଥିଲା ଏବଂ ପୁରାତନ ସାମନ୍ତ ଶ୍ରେଣୀ ଅକାମୀ ହୋଇଯାଇଥିଲା । ଯଦିଓ ସାମନ୍ତବାଦ ଭାରତରେ ଭାଙ୍ଗି ପଡ଼ୁଥିଲା । ତଥାପି ଏହା ଦୀର୍ଘକାଳ ପର୍ଯ୍ୟନ୍ତ ଯାଇ ନଥିଲା ।

ଏପରିକି ଯେତେବେଳେ ବ୍ୟାବହାରିକ ରୂପରେ ଏହା ଲୋପପାଇଲା, ସେତେବେଳେ ଏହାର ବାହ୍ୟଆକୃତି ରହିଥିଲା । ବାସ୍ତବିକ ଆଜି ବି ଭାରତରେ ଏବଂ ଇଉରୋପର କେତେକ ସ୍ଥାନରେ ସାମନ୍ତବାଦର ଅନେକ ଚିହ୍ନ ରହିଛି ।

ଏହିସବୁ ଅର୍ଥନୈତିକ ପରିବର୍ତ୍ତନ ହେତୁ ମୋଗଲ ସାମ୍ରାଜ୍ୟ ଭାଙ୍ଗି ପଡ଼ିଲା; କିନ୍ତୁ ଏହି ପତନର ସୁବିଧା ଉଠାଇ କ୍ଷମତା ଅଧିକାର କରିବା ନିମନ୍ତେ କୌଣସି ମଧ୍ୟବିତ୍ତ ଶ୍ରେଣୀ ପ୍ରସ୍ତୁତ ନଥିଲା । ଇଂଲଣ୍ଡ ପରି ଏଠାରେ ଏହି ଶ୍ରେଣୀର ପ୍ରତିନିଧିତ୍ୱ କରୁଥିବା କୌଣସି ସଂଗଠନ ବା ବ୍ୟବସ୍ଥା ସଭା ନଥିଲା । ଅତ୍ୟଧିକ ସ୍ୱେଚ୍ଛାଚାରୀ ଶାସନ ଫଳରେ ଲୋକେ ସାଧାରଣତଃ ଏକପ୍ରକାର ଉଦାସ ମନୋଭାବାପନ୍ନ ହୋଇଯାଇଥିଲେ ଏବଂ ଯାହା ବା ପୁରାତନ ସ୍ୱାଧିନତାର ଧାରଣା ଥିଲା ତାହା ପାଶୋରି ପକାଇଥିଲେ । ତଥାପି ଆମେ ପରେ ଏହି ଚିଠିରେ ଦେଖିବା ଯେ କ୍ଷମତା ହାସଲ କରିବା ପାଇଁ ଉଦ୍ୟମ ହୋଇଥିଲା । ଏହା ଆଂଶିକ ଭାବରେ ବୁର୍ଜୋୟା ଓ ଆଂଶିକ ଭାବରେ କୃଷକ ଥିଲା ଏବଂ ଏଥିରୁ କେତେକ ଉଦ୍ୟମ ସଫଳତାର ନିକଟରେ ପହଞ୍ଚିଥିଲା । ଯାହାହେଉ ପ୍ରଧାନ ଲକ୍ଷ୍ୟ କରିବାର ବିଷୟ ହେଉଛି ଯେ, ସାମନ୍ତବାଦର ପତନ ଏବଂ ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁତ୍ଥାନ ହୋଇ କ୍ଷମତା ନେବାଲାଗି ପ୍ରସ୍ତୁତ ହେବା ମଧ୍ୟରେ ରହିଯାଇଥିଲା । ଏପରି ଶୂନ୍ୟତା ଉପରେ ଗୋଳମାଳ ଓ ଗଣ୍ଡଗୋଳ ହୁଏ, ଜର୍ମାନୀରେ ସେମିତି ହୋଇଥିଲା । ଭାରତରେ ବି ତାହା ହେଲା । ପ୍ରଭୁତ୍ୱ ଲାଗି କ୍ଷୁଦ୍ର କ୍ଷୁଦ୍ର ରାଜାମାନେ ଲଢ଼ାଇ କଲେ । ମାତ୍ର ସେମାନେ ଏକ ପତନୋନ୍ମୁଖୀ ବ୍ୟବସ୍ଥାର ପ୍ରତିନିଧିତ୍ୱ କରୁଥିଲେ ଏବଂ ତାଙ୍କର କୌଣସି ସ୍ଥାୟୀ ଭିତ୍ତି ନ ଥିଲା । ସେମାନଙ୍କୁ ଏକ ନୂତନ ଶ୍ରେଣୀ ବିରୁଦ୍ଧରେ ଠିଆ ହେବାକୁ ହେଲା । ଏହି ଶ୍ରେଣୀ ହେଉଛନ୍ତି ବ୍ରିଟିଶ ବୁର୍ଜୋୟା ଶ୍ରେଣୀର ପ୍ରତିନିଧି; ଏମାନେ ନିକଟରେ ନିଜ ଦେଶରେ ଜୟଲାଭ କରିଥିଲେ । ଏହି ବ୍ରିଟିଶ ମଧ୍ୟବିତ୍ତ ଶ୍ରେଣୀ ସାମନ୍ତବାଦ ଅପେକ୍ଷା ଆହୁରି ଉଚ୍ଚତର ସାମାଜିକ ବ୍ୟବସ୍ଥାର ପ୍ରତିନିଧିତ୍ୱ କରନ୍ତି; ଏହା ପୃଥିବୀର ନୂତନ ଅବସ୍ଥା ସହିତ ସାମଞ୍ଜସ୍ୟ ରକ୍ଷିଥାଏ; ଏହା ଉନ୍ନତ ଭାବରେ ସଂଗଠିତ ଓ ଅଧିକ କର୍ମକୁଶଳ, ଏହା ନିକଟରେ ଆଧୁନିକ ଯନ୍ତ୍ରପାତି ଓ ଅସ୍ତ୍ରଶସ୍ତ୍ର ଥିଲା । ତେଣୁ ଏହା ଅଧିକ କ୍ରିୟାଶୀଳ ଭାବରେ ଯୁଦ୍ଧ କରିପାରୁଥିଲା ଏବଂ ସମୁଦ୍ରକୁ

ଅସ୍ତିତ ବିପଦପୂର୍ଣ୍ଣ ଥିଲା । ଭାରତର ସାମନ୍ତ ରାଜାମାନେ ଏହି ନୂତନ ଶକ୍ତି ସହିତ ପ୍ରତିଯୋଗିତା କରିବା ସମ୍ଭବପର ନଥିଲା ଏବଂ ଗୋଟିକ ପରେ ଗୋଟିଏ ସେମାନେ ଏହା ସମକ୍ଷରେ ଟଳି ପଡ଼ିଲେ ।

ଏହି ଘଟଣାର ଏକ ଅତି ଦୀର୍ଘ ଭୂମିକା ଲେଖିଲି । ଆମକୁ ବର୍ତ୍ତମାନ ଟିକିଏ ଫେରିଯିବାକୁ ହେବ । ଆଉରଙ୍ଗଜେବଙ୍କ ରାଜୁତିର ପରବର୍ତ୍ତୀ କାଳରେ ଲୋକଜାଗରଣ ଏବଂ ଧାର୍ମିକ ହିନ୍ଦୁ ଜାତୀୟତା ଭାବର ପୁନରୁଦ୍ଧାର ବିଷୟ ମୁଁ ମୋର ଗତ ଚିଠିରେ ଉଲ୍ଲେଖ କରିଛି । ଆମକୁ ବର୍ତ୍ତମାନ ଏ ବିଷୟରେ କିଛି ଅଧିକା କହିବାକୁ ପଡ଼ିବ । ମୋଗଲ ସାମ୍ରାଜ୍ୟର ବିଭିନ୍ନ ସମୟରେ ବହୁସଂଖ୍ୟକ ଅର୍ଦ୍ଧ ଧାର୍ମିକ ଜନଆନ୍ଦୋଳନ ବୃଦ୍ଧି ପାଉଥିବାର ଆମେ ଦେଖୁଁ । ଲକ୍ଷଣକାଳ ନିମନ୍ତେ ଏଗୁଡ଼ିକ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଥିଲା । ରାଜନୀତି ସହିତ ଏଗୁଡ଼ିକର ସମ୍ବନ୍ଧ ନଥିଲା । ଦେଶର ଭାଷା ହିନ୍ଦୀ, ମରହଟ୍ଟୀ, ପଞ୍ଜାବୀରେ ସଙ୍ଗୀତ ଓ ଧାର୍ମିକ ଭଜନ ସବୁ ଲେଖା ହୋଇଥିଲା ଏବଂ ଲୋକପ୍ରିୟ ହେଲା । ଏହି ସଙ୍ଗୀତ ଓ ଭଜନ ସବୁ ଜନଚେତନା ଜାଗ୍ରତ କଲା । ଧାର୍ମିକ ସମ୍ପ୍ରଦାୟ ବା ଲୋକପ୍ରିୟ ପ୍ରଚାରକମାନଙ୍କ ସହ ଗଢ଼ି ଉଠିଲା । ଅର୍ଥନୀତିକ ପରିସ୍ଥିତିର ଚାପହେତୁ କ୍ରମେ ଏହି ସମ୍ପ୍ରଦାୟଗୁଡ଼ିକ ରାଜନୀତିକ ପ୍ରଶ୍ନ ପ୍ରତି ନଜର ପକାଇଲେ; ଶାସକ ଶ୍ରେଣୀ ଅର୍ଥାତ୍ ମୋଗଲ ସାମ୍ରାଜ୍ୟ ସହ ବିବାଦ ହେଲା । ତାପରେ ଏହି ସମ୍ପ୍ରଦାୟର ଦମନ ଆରମ୍ଭ ହେଲା । ଏହି ଦମନ ଫଳରେ ଶାନ୍ତିପୂର୍ଣ୍ଣ ଧାର୍ମିକ ସମ୍ପ୍ରଦାୟ ଏକ ସାମରିକ ଭ୍ରାତୃମଣ୍ଡଳୀରେ ପରିଣତ ହେଲା । ଏହାଦ୍ୱାରା ଶିଖ ଓ ଅନ୍ୟ କେତେକ ସମ୍ପ୍ରଦାୟ ବୃଦ୍ଧି ପାଇଲେ । ମରହଟ୍ଟାଙ୍କ ଇତିହାସ ଆହୁରି ଅଧିକ ଜଟିଳ; କିନ୍ତୁ ସେଥିରେ ମୋଗଲଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କଲାବେଳେ ଧର୍ମ ଓ ଜାତୀୟତାର ଏକ ମିଶ୍ରଣ ହୋଇଥିବାର ଆମେ ଦେଖିପାଉଁ । ବ୍ରିଟିଶଦ୍ୱାରା ମୋଗଲ ସାମ୍ରାଜ୍ୟର ମୂଳୋତ୍ପାଟନ ହୋଇ ନଥିଲା; ମାତ୍ର ଏହି ଧାର୍ମିକ ଜାତୀୟ ଆନ୍ଦୋଳନ ଏବଂ ବିଶେଷତଃ ମରହଟ୍ଟାମାନଙ୍କ ଦ୍ୱାରା ଏହାର ପତନ ଘଟିଲା । ଆଉରଙ୍ଗଜେବଙ୍କ ଅସହିଷ୍ଣୁ ନୀତି ଫଳରେ ସ୍ୱାଭାବିକ ରୂପେ ଏହି ଆନ୍ଦୋଳନ ସବୁ ଶକ୍ତିଲାଭ କଲା । ଏହା ମଧ୍ୟ ସଂପୂର୍ଣ୍ଣ ସମ୍ଭବ ଯେ, ତାଙ୍କ ଶାସନ ବିରୁଦ୍ଧରେ ଜାଗ୍ରତ ଧର୍ମ ସମ୍ବନ୍ଧୀୟ ଚେତନା ହେତୁ ଆଉରଙ୍ଗଜେବ ଅଧିକ ତିକ୍ତ ଓ ଅସହିଷ୍ଣୁ ହୋଇ ଉଠିଲେ ।

୧୬୬୯ରେ ମଥୁରାର ଜାଠ କୃଷକମାନେ ବିଦ୍ରୋହ କରିଥିଲେ । ସେମାନଙ୍କୁ ବାରମ୍ବାର ଦମନ କରିଦିଆଗଲା; ମାତ୍ର ସେମାନେ ୩୦ ବର୍ଷରୁ ଅଧିକକାଳ—ଆଉରଙ୍ଗଜେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବାରମ୍ବାର ବିଦ୍ରୋହ କରିଥିଲେ । ମନେରଖ, ମଥୁରା ଆଗ୍ରାର ଖୁବ୍ ନିକଟରେ ଏବଂ ଏହି ବିଦ୍ରୋହଗୁଡ଼ିକ ରାଜଧାନୀର ଖୁବ୍ ନିକଟରେ ହେଉଥିଲା । ସତ୍‌ନାମୀମାନଙ୍କର ଆଉ ଏକ ବିଦ୍ରୋହ ହୋଇଥିଲା, ଏହା ମୁଖ୍ୟତଃ ସାଧାରଣ ଲୋକଥିବା ଏକ ହିନ୍ଦୁ ସମ୍ପ୍ରଦାୟ । ଏହିରୂପେ ଏହାବି ଏକ ଦରିଦ୍ର ଲୋକଙ୍କ ବିଦ୍ରୋହ ଥିଲା ଏବଂ ସାମନ୍ତ, ଲର୍ଡ ଓ ସେହିପରି ଲୋକଙ୍କ ବିଦ୍ରୋହଠାରୁ ସମ୍ପୂର୍ଣ୍ଣ ପୃଥକ୍ ଥିଲା । ସେ କାଳର ଜଣେ ମୋଗଲ ସାମନ୍ତ ବିରକ୍ତ

ହୋଇ ସେମାନଙ୍କୁ "ଏକ ରକ୍ତ ପିପାସୁ ଦୁର୍ଦ୍ଧର୍ଷ ଗୁପ୍ତ ବିଦ୍ରୋହୀ, ଚଷୀଆ, ବଢ଼େଇ, ଝାଡ଼ୁଦାର ମୋଚି ଅନ୍ୟ ଘୃଣ୍ୟ ଲୋକଙ୍କ ଦଳ" ବୋଲି ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ଏପରି 'ଘୃଣ୍ୟ ଲୋକ" ମାନଙ୍କ ପକ୍ଷରେ ତାଙ୍କ ସାମ୍ରାଜ୍ୟ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ଉଠିବା ଅବଶ୍ୟ ଏକ ଜଘନ୍ୟ ବିଷୟ ହୋଇଥିଲା ।

ଆମେ ବର୍ତ୍ତମାନ ଶିଖମାନଙ୍କ ବିଷୟ ବର୍ଣ୍ଣନା କରିବା ଏବଂ ଆଦିକାଳରୁ ସେମାନଙ୍କର ଇତିହାସ ଦେଖି ଆସିବା । ମୁଁ ତୋତେ ଗୁରୁ ନାନକଙ୍କ ବିଷୟ କହିଥିଲି, ମନେଥିବ ବାବର ଭାରତକୁ ଆସିବାର ଅଳ୍ପ ଦିନ ପରେ ସେ ମଲେ । ଯେଉଁମାନେ ହିନ୍ଦୁଧର୍ମ ଓ ଇସଲାମ ମଧ୍ୟରେ ଏକ ସାଧାରଣ କ୍ଷେତ୍ର ବାହାର କରିବା ଉଦ୍ୟମ କରିଥିଲେ; ସେ ସେମାନଙ୍କ ଭିତରୁ ଏକତମ । ତାଙ୍କ ପରେ ଆଉ ଚାରିଜଣ ଗୁରୁ ଆସିଲେ । ସେମାନେ ତାଙ୍କ ପରି ସମ୍ପୂର୍ଣ୍ଣ ଶାନ୍ତିପ୍ରିୟ ଥିଲେ ଏବଂ କେବଳ ଧାର୍ମିକ ବ୍ୟାପାରରେ ଆଗ୍ରହୀ ଥିଲେ । ଆକବର ଚତୁର୍ଥ ଗୁରୁଙ୍କୁ ଅମୃତସରରେ ଏକ ପୁଷ୍କରିଣୀ ଓ ସୁବର୍ଣ୍ଣ ମନ୍ଦିର ନିର୍ମାଣ କରିବା ନିମନ୍ତେ ସ୍ଥାନ ଦେଇଥିଲେ । ସେହିଦିନୁ ଅମୃତସର ଶିଖ ଧର୍ମର କେନ୍ଦ୍ରସ୍ଥଳୀ ହୋଇ ଆସିଛି ।

ତା'ପରେ ପଞ୍ଚମ ଗୁରୁ ଅର୍ଜୁନ ସିଂହ ଆସିଲେ । ସେ "ଗ୍ରନ୍ଥ" ସଙ୍କଳନ କରିଥିଲେ ଏଥିରେ ଧର୍ମଭଜନ ଓ କାହାଣୀ ସଂଗୃହୀତ ହୋଇଛି ଏବଂ ଏହା ଶିଖମାନଙ୍କର ଧର୍ମପୁସ୍ତକ । ଏକ ରାଜନୈତିକ ଅପରାଧ ଲାଗି ଜାହାଙ୍ଗୀର ଅର୍ଜୁନ ସିଂହଙ୍କୁ ଯନ୍ତ୍ରଣା ଦେଇ ମାରି ପକାଇଲେ । ଶିଖମାନଙ୍କର କାର୍ଯ୍ୟକଳାପ ଏହିଠାରୁ ପରିବର୍ତ୍ତିତ ହେବାକୁ ଲାଗିଲା । ତାଙ୍କ ଗୁରୁଙ୍କ ପ୍ରତି ଏହିପରି ଅନ୍ୟାୟ ଓ ନୃଶଂସ ବ୍ୟବହାର ଯୋଗୁଁ ତାଙ୍କ ମନରେ ଅସନ୍ତୋଷ ପୂରିଗଲା ଏବଂ ଅସ୍ତ୍ରଧାରଣ ପାଇଁ ତାଙ୍କର ମନ ଗଲା । ୬ଷ୍ଠ ଗୁରୁ ହରଗୋବିନ୍ଦଙ୍କ ନେତୃତ୍ୱରେ ସେମାନେ ଏକ ସାମରିକ ଭ୍ରାତୃମଣ୍ଡଳୀରେ ପରିଣତ ହେଲେ ଏବଂ ସେହିଦିନ-ଠାରୁ ସେମାନଙ୍କର ଅନେକ ସମୟରେ ଶାସକଙ୍କ ସହିତ ସଂଘର୍ଷ ଲାଗିଲା । ନିଜେ ଗୁରୁ ହରଗୋବିନ୍ଦ ଜାହାଙ୍ଗୀରଙ୍କଦ୍ୱାରା ୧୦ ବର୍ଷ ଜେଲ ଦଣ୍ଡ ପାଇଲେ । ୯ମ ଗୁରୁ ତେଗ୍ ବାହାଦୁର ଆଉରଙ୍ଗଜେବଙ୍କ ରାଜୁତିକାଳରେ ବାସ କରୁଥିଲେ । ଇସଲାମଧର୍ମ ଗ୍ରହଣ କରିବା ନିମନ୍ତେ ଆଉରଙ୍ଗଜେବ ତାଙ୍କୁ ଆଦେଶ ଦେଇଥିଲେ । ସେ ଅସ୍ୱୀକାର କରିବାରୁ ତାଙ୍କୁ ମୃତ୍ୟୁ ଶାସ୍ତି ଦିଆଗଲା । ୧୦ମ ଓ ଶେଷଗୁରୁ ଥିଲେ ଗୋବିନ୍ଦ ସିଂହ । ସେ ଶିଖମାନଙ୍କୁ ଏକ ଶକ୍ତିଶାଳୀ ସାମରିକ ସଂପ୍ରଦାୟରେ ପରିଣତ କଲେ । ମୁଖ୍ୟତଃ ଦିଲ୍ଲୀ ସମ୍ରାଟଙ୍କ ବିରୋଧ କରିବାକୁ ଏହା ହୋଇଥିଲା । ଆଉରଙ୍ଗଜେବଙ୍କ ମୃତ୍ୟୁର ଏକବର୍ଷ ପରେ ସେ ମଲେ । ସେହି ଦିନଠାରୁ ଆଉ ଗୁରୁ ହୋଇନାହାନ୍ତି । କୁହାଯାଏ ଯେ, ଗୁରୁଙ୍କ କ୍ଷମତା ଏବେ ଶିଖସଂପ୍ରଦାୟ ଉପରେ ରହିଛି, ଏହାକୁ ଖାଲସା ବା 'ନିର୍ବାଚିତ" ବୋଲି କୁହାଯାଏ ।

ଆଉରଙ୍ଗଜେବଙ୍କ ମୃତ୍ୟୁର ଅଳ୍ପ ଦିନ ପରେ ଏକ ଶିଖ ବିଦ୍ରୋହ ହୋଇଥିଲା । ଏହାକୁ ଦମନ କରିଦିଆଗଲା; କିନ୍ତୁ ଶିଖମାନଙ୍କର କ୍ଷମତା ବୃଦ୍ଧି ପାଇବାରେ ଲାଗିଲା ଏବଂ

ପଞ୍ଜାବରେ ସେମାନେ ନିଜକୁ ଦୃଢ଼ କରିବାରେ ଲାଗିଲେ । ପରେ ଏହି ଶତାବ୍ଦୀ ଶେଷ ହେବାକୁ ରଞ୍ଜିତ ସିଂହଙ୍କ ଅଧୀନରେ ପଞ୍ଜାବରେ ଏକ ଶିଖ ରାଜ୍ୟର ଆବିର୍ଭାବ ହେଲା ।

ଏହିସବୁ ବିଦ୍ରୋହ ଯୋଗୁଁ ବଡ଼ ଗୋଳମାଳ ଘଟୁଥିଲା; ମାତ୍ର ମୋଗଲ ସାମ୍ରାଜ୍ୟର ପ୍ରକୃତ ବିପଦ ଦକ୍ଷିଣ ପଶ୍ଚିମରେ ଜାଗ୍ରତ ମରହଟ୍ଟା ଶକ୍ତିରୁ ଆସିଲା । ଏପରିକି ସାହାଜାହାନ ରାଜୁତି କାଳରେ ସାହାଜି ଭୋନ୍‌ସଲା ନାମକ ଜଣେ ମରହଟ୍ଟା ସାମନ୍ତ ହଇରାଣ କରିଥିଲେ । ସେ ଅହମଦନଗର ଷ୍ଟେଟର ଜଣେ କର୍ମଚାରୀ ଥିଲେ ଏବଂ ପରେ ବିଜାପୁରରେ ଥିଲେ; କିନ୍ତୁ ୧୬୨୭ରେ ଜାତ ତାଙ୍କର ସନ୍ତାନ ଶିବାଜୀ ହିଁ ମରହଟ୍ଟାଙ୍କ ଗୌରବ ଓ ସାମ୍ରାଜ୍ୟର ଆତଙ୍କ ହୋଇଥିଲେ । ୧୯ ବର୍ଷର ବାଳକ ଅବସ୍ଥାରେ ସେ ତାଙ୍କର ଧ୍ୱଂସକାରୀ କାର୍ଯ୍ୟକଳାପ ଆରମ୍ଭ କରିଥିଲେ ଏବଂ ପୁନା ନିକଟରେ ପ୍ରଥମ ଦୁର୍ଗ ଦଖଲ କଲେ । ସେ ଜଣେ ନିର୍ଭୀକ ସେନାପତି, ଆଦର୍ଶ ଗରିଲା ନେତା ଓ ଦୁଃସାହସିକ ଥିଲେ ଏବଂ ଭଲେ ସାହସୀ ଓ ଟାଣୁଆ ପାହାଡ଼ିଆ ଜାତିଙ୍କୁ ପ୍ରସ୍ତୁତ କଲେ । ସେମାନେ ତାଙ୍କ ପ୍ରତି ଅନୁରକ୍ତ ଥିଲେ । ସେମାନଙ୍କ ସାହାଯ୍ୟରେ ସେ ଅନେକ ଦୁର୍ଗ ଦଖଲ କଲେ ଏବଂ ଆଉରଙ୍ଗଜେବଙ୍କ ସେନାପତିମାନେ ବଡ଼ ହଇରାଣ ହୋଇଥିଲେ । ୧୬୬୪ରେ ସେ ହଠାତ୍ ସୁରଟରେ ପହଞ୍ଚିଲେ । ସେଠାରେ ଏକ ଇଂରେଜୀ କାରଖାନା ଥିଲା ଏବଂ ସେ ନଗରକୁ ଅବରୋଧ କଲେ । ଆଗ୍ରାରେ ଆଉରଙ୍ଗଜେବଙ୍କ ରାଜପରିଷଦକୁ କୌଣସି ପ୍ରକାର ଯାଇଥିଲେ; କିନ୍ତୁ ଏକ ସ୍ୱାଧୀନ ରାଜା ରୂପେ ତାଙ୍କ ପ୍ରତି ବ୍ୟବହାର ନ କରାଯିବାରୁ ସେ ନିଜକୁ ଅପମାନିତ ଓ ଲଜ୍ଜିତ ବୋଧ କଲେ । ତାଙ୍କୁ ବନ୍ଦୀରୂପେ ରଖାଯାଇଥିଲା; କିନ୍ତୁ ସେ ପଳାଇଯାଇଥିଲେ । ସେତେବେଳେ ମଧ୍ୟ ତାଙ୍କୁ 'ରାଜା' ଉପାଧି ଦେଇ ଆଉରଙ୍ଗଜେବ ହାତ କରିବାକୁ ଚେଷ୍ଟା କରିଥିଲେ ।

କିନ୍ତୁ ଶିବାଜୀ ଅତି ଶୀଘ୍ର ପୁନର୍ବାର ଯୁଦ୍ଧ ପଥରେ ଚାଲିଲେ ଏବଂ ଦକ୍ଷିଣସ୍ଥ ମୋଗଲ କର୍ମଚାରୀମାନେ ଏପରି ଉତ୍ପୀଡ଼ିତ ହୋଇଗଲେ ଯେ, ସେମାନେ ରକ୍ଷାପାଇବା ନିମନ୍ତେ ତାଙ୍କୁ ଅର୍ଥଦାନ କଲେ । ଏହା ହେଉଛି ପ୍ରସିଦ୍ଧ ଚୌଥ ବା ରାଜସ୍ୱର ଚାରିଭାଗରୁ ଭାଗେ । ମରହଟ୍ଟାମାନେ ଯେଉଁଠାକୁ ଯାଉଥିଲେ, ଏହା ଦାବୀ କରୁଥିଲେ । ତେଣୁ ମରହଟ୍ଟା ଶକ୍ତି ବୃଦ୍ଧି ପାଇବାକୁ ଲାଗିଲା ଏବଂ ଦିଲ୍ଲୀ ସାମ୍ରାଜ୍ୟ ଦୁର୍ବଳ ହୋଇଗଲା । ୧୬୭୪ରେ ଶିବାଜୀ ରାୟଗଡ଼ଠାରେ ଏକ ବିରାଟ ଉତ୍ସବ କରି ନିଜେ ରାଜା ବୋଲି ଘୋଷଣା କଲେ । ତାଙ୍କର ବିଜୟ ୧୬୮୦ରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଚାଲିଥିଲା ।

ତୁ ଏବେ କେତେକାଳ ହେଲା ମରହଟ୍ଟା ରାଜ୍ୟର କେନ୍ଦ୍ରସ୍ଥଳୀ ପୁନାରେ ରହୁଛୁ ଏବଂ ସେଠାର ଲୋକେ ଶିବାଜୀଙ୍କୁ କିପରି ଶ୍ରଦ୍ଧା ଓ ସମ୍ମାନ କରନ୍ତି ତୁ ଅବଶ୍ୟ ଜାଣିଥିବୁ । ମୁଁ ଆଗରୁ ଯେଉଁ ଧାର୍ମିକ ଜାତୀୟବାଦର ପୁନରୁଦ୍ଧାର ବିଷୟ କହିଛି, ସେ ତାହାର ପ୍ରତିନିଧିତ୍ୱ କରୁଥିଲେ । ଆର୍ଥିକ ପତନ ଏବଂ ଲୋକଙ୍କ ସାଧାରଣ ଦୁର୍ଦ୍ଦଶା ହିଁ କ୍ଷେତ୍ର ପ୍ରସ୍ତୁତ

କରିଥିଲେ ଏବଂ ରାମଦାସ ଓ ତୁକାରାମ ନାମକ ଦୁଇଜଣ ମରହଟ୍ଟା କବି ଜନତାର ଏକତା ଓ ଭଜନ ଦ୍ୱାରା ଏହି କ୍ଷେତ୍ରକୁ ଆହୁରି ଉପଯୁକ୍ତ କଲେ । ଏହିରୂପେ ମରହଟ୍ଟା ଲୋକେ ଚୈତନ୍ୟ ଓ ଏକତାଲାଭ କଲେ ଏବଂ ଠିକ୍ ଏତିକିବେଳେ ଏକ ବିଚକ୍ଷଣ ସେନାପତି ବିଜୟ ହାସଲ ଲାଗି ସେମାନଙ୍କୁ ପରିଚାଳନା କଲେ ।

ଶିବାଜୀଙ୍କ ପୁତ୍ର ଶମ୍ଭୁଜୀଙ୍କୁ ମୋଗଲମାନେ ଯନ୍ତ୍ରଣା ଦେଇଥିଲେ ଓ ବଧ କଲେ; କିନ୍ତୁ କେତେ ଥର ପରାଜିତ ହେଲା ପରେ ମରହଟ୍ଟାମାନଙ୍କ ଶକ୍ତିବୃଦ୍ଧି ହେଉଥିଲା । ଆଉରଙ୍ଗଜେବଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ତାଙ୍କର ବିଶାଳ ସାମ୍ରାଜ୍ୟ ଲୋପପାଇବାକୁ ଆରମ୍ଭ କଲା । ବିଭିନ୍ନ ଲାଟମାନେ ହେଡ଼କ୍ୱାର୍ଟରରୁ ସ୍ୱତନ୍ତ୍ର ହୋଇଗଲେ । ବଙ୍ଗଳା ଅଲଗା ହୋଇଗଲା । ଅଯୋଧ ଓ ରୋହିଲଖଣ୍ଡ ମଧ୍ୟ ସେହିପରି ହେଲା । ଦକ୍ଷିଣରେ ନିଜାମ ଆସଫଝା—ଏକ ରାଜ୍ୟ ଆଧୁନିକ ହାଇଦ୍ରାବାଦ ସ୍ଥାପନ କଲେ । ବର୍ତ୍ତମାନ ନିଜାମ ଆସଫ-ଝାଙ୍କର ଜଣେ ବଂଶଧର । ଆଉରଙ୍ଗଜେବଙ୍କ ମୃତ୍ୟୁର ୧୭ ବର୍ଷ ଭିତରେ ସାମ୍ରାଜ୍ୟ ପ୍ରାୟ ଲୋପ ପାଇଗଲା; କିନ୍ତୁ ସାମ୍ରାଜ୍ୟ ନ ଥାଇ ସୁଦ୍ଧା ଦିଲ୍ଲୀ ବା ଆଗ୍ରାରେ ନାମମାତ୍ର ଗୋଟିଏ ପରେ ଗୋଟିଏ ସମ୍ରାଟ ଥିଲେ ।

ସାମ୍ରାଜ୍ୟ ଦୁର୍ବଳ ହେବା ସଙ୍ଗେ ସଙ୍ଗେ ମରହଟ୍ଟାମାନଙ୍କର ଶକ୍ତି ବଢ଼ିଲା । ସେମାନଙ୍କର ପ୍ରଧାନମନ୍ତ୍ରୀଙ୍କୁ ପେଶୱା କୁହାଯାଏ, ସେ ରାଜାଙ୍କୁ ଘେଉଡ଼ାଇ ପକାଇ ନିଜେ ପ୍ରକୃତ କ୍ଷମତାରେ ରହିଲେ । ଜାପାନରେ ସୋଗୁନ ପରି ପେଶୱା ପଦ ବଂଶପରମ୍ପରା ହୋଇଗଲା ଏବଂ ରାଜା ପଛକୁ ପଡ଼ିଗଲେ । ଦିଲ୍ଲୀ ସମ୍ରାଟ ଦୁର୍ବଳ ହୋଇପଡ଼ିବାରୁ ମରହଟ୍ଟାମାନଙ୍କର ଦାକ୍ଷିଣାତ୍ୟରୁ ଚୌଥ ଟିକସ ଆଦାୟ କରିବା ଅଧିକାର ସ୍ୱୀକାର କଲେ । ଏଥିରେ ସନ୍ତୁଷ୍ଟ ନହୋଇ ପେଶୱା ଗୁଜରାଟ, ମାଲୱା ଓ ମଧ୍ୟଭାରତ ବିଜୟ କଲେ । ତାଙ୍କ ସେନା ୧୭୩୭ରେ ଦିଲ୍ଲୀର ଦ୍ୱାର ପର୍ଯ୍ୟନ୍ତ ଯାଇଥିଲେ । ମରହଟ୍ଟାମାନେ ଭାରତରେ ପ୍ରଭୁତ୍ୱ କରିବାଲାଗି ଜନ୍ମଗ୍ରହଣ କରିଥିଲେ ପରି ମନେହୁଏ । ସେମାନେ ଦେଶରେ ପ୍ରାଧାନ୍ୟ ବିସ୍ତାର କଲେ; କିନ୍ତୁ ହଠାତ୍ ୧୭୩୯ରେ ଉତ୍ତର-ପଶ୍ଚିମରୁ ଏକ ବାଧା ଆସି ପହଞ୍ଚିଲା । ତାହା ଏହାଙ୍କ କ୍ଷମତା ଓଲଟପାଲଟ କରିଦେଲା ଏବଂ ଉତ୍ତର-ଭାରତର ରୂପ ପରିବର୍ତ୍ତନ ହୋଇଗଲା ।

# ୯୨ : ଭାରତରେ ଇଂରେଜମାନଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କ ଉପରେ ଜୟଲାଭ

ସେପ୍ଟେମ୍ବର ୧୮, ୧୯୩୨

ଆମେ ଦେଖିଛେ ଯେ ଦିଲ୍ଲୀ ସାମ୍ରାଜ୍ୟ ବଡ଼ ଖରାପ ଅବସ୍ଥାରେ ଥିଲା । ବାସ୍ତବିକ ସାମ୍ରାଜ୍ୟ ହିସାବରେ ଏହା କୌଣସି ପ୍ରକାରେ ନ ଥିଲା ବୋଲି କୁହାଯାଇପାରେ । ଅଥଚ ଦିଲ୍ଲୀ ଓ ଉତ୍ତର-ଭାରତ ଅହୂର ଜନ୍ମଗାମୀ ହୋଇଥିଲା । ମୁଁ ତୋତେ କହିଛି, ଏତେବେଳେ ଭାରତରେ ଦୁଃସାହସର ଦିନ ଥିଲା । ହଠାତ୍ ଉତ୍ତର-ପଶ୍ଚିମରୁ ଏକ ଦୁଃସାହସିକ ରାଜା ମାଡ଼ିଆସିଲେ ଏବଂ ଅନେକ ହତ୍ୟା ଓ ଲୁଣ୍ଠନ କଲା ପରେ ପ୍ରଚୁର ସମ୍ପଦ ସଙ୍ଗରେ ନେଇ ଚାଲିଗଲେ । ଏ ହେଉଛନ୍ତି ନାଦିର ସାହା । ସେ ନିଜକୁ ଇରାନର ଶାସକ କରିଥିଲେ । ସେ ତାଙ୍କ ସହିତ ସାହାଜାହାନ ଯେଉଁ ପ୍ରସିଦ୍ଧ ମୟୂରସିଂହାସନ କରିଥିଲେ, ତାହା ନେଇ ଯାଇଥିଲେ । ଏହି ଭୀଷଣ ଦୁର୍ବିପାକ ୧୭୩୯ରେ ଘଟିଥିଲା ଏବଂ ଉତ୍ତର-ଭାରତ ଧ୍ୱଂସ ହୋଇଗଲା । ନାଦିରସାହା ତାଙ୍କର ରାଜ୍ୟ ସିନ୍ଧୁନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ତେଣୁ ଆଫଗାନିସ୍ଥାନ ଭାରତରୁ ବିଚ୍ଛିନ୍ନ ହୋଇଗଲା । ମହାଭାରତ ଓ ଗାନ୍ଧାର ଯୁଗଠାରୁ ଭାରତ-ଇତିହାସ ସାରା ଆଫଗାନିସ୍ଥାନ ଭାରତ ସହିତ ଘନିଷ୍ଠ ରୂପେ ସଂପୃକ୍ତ ଥିଲା । ଏହା ବର୍ତ୍ତମାନ ଅଲଗା ହୋଇଯାଇଛି ।

୧୭ବର୍ଷ ଭିତରେ ଉତ୍ତରକୁ ଆଉ ଏକ ଆକ୍ରମଣ ଓ ଲୁଣ୍ଠନକାରୀ ଆସିଥିଲେ । ସେ ହେଉଛନ୍ତି ଅହମଦଶାହା ଦୁରାନି । ସେ ଆଫଗାନିସ୍ଥାନରେ ନାଦିରଶାହାଙ୍କ ଉତ୍ତରାଧିକାରୀ ହୋଇଥିଲେ; ତଥାପି ଏହିସବୁ ଆକ୍ରମଣ ସତ୍ତ୍ୱେ ମରହଟ୍ଟା ଶକ୍ତି ବିସ୍ତୃତ ହେବାରେ ଲାଗିଲା ଏବଂ ୧୭୫୮ରେ ପଞ୍ଜାବ ତାଙ୍କ ଅଧୀନରେ ଥିଲା । ସେମାନେ ଏହିସବୁ ଅଞ୍ଚଳ ଉପରେ ଏକ ସରକାର ସଂଗଠନ କରିବାର ଚେଷ୍ଟା କରି ନଥିଲେ । ସେମାନେ ତାଙ୍କର ପ୍ରସିଦ୍ଧ ଚୌଥ ଟିକସ ଆଦାୟ କରୁଥିଲେ ଏବଂ ଶାସନଭାର ସ୍ଥାନୀୟ ଲୋକଙ୍କୁ ଛାଡ଼ି ଦେଇଥିଲେ । ଏହିରୂପେ ସେମାନେ କାର୍ଯ୍ୟତଃ ଦିଲ୍ଲୀ ସାମ୍ରାଜ୍ୟର ଅଧିକାରୀ ହେଲେ; କିନ୍ତୁ ତା'ପରେ ଏ ବଡ଼ ପ୍ରତିବନ୍ଧକ ଆସିଲା । ଦୁରାନି ଉତ୍ତର-ପଶ୍ଚିମରୁ ପୁନର୍ବାର ଆସିଲେ ଏବଂ ଅନ୍ୟମାନଙ୍କ ସହଯୋଗରେ ୧୭୬୧ରେ ପୁରାତନ ପାନିପଥ ରଣକ୍ଷେତ୍ରରେ ମରହଟ୍ଟାମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରିଦେଲେ । ଦୁରାନି ସେତେବେଳେ ଉତ୍ତର-ଭାରତର ପ୍ରଭୁ ଥିଲେ ଏବଂ ତାଙ୍କୁ ପ୍ରତିରୋଧ କରିବାକୁ କୌଣସି ଶକ୍ତି ନ ଥିଲା; କିନ୍ତୁ ତାଙ୍କର ବିଜୟ କାଳରେ ତାଙ୍କୁ ନିଜ ଲୋକଙ୍କ ଗୋଳମାଳ ଓ ବିଦ୍ରୋହର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏବଂ ସେ ନିଜ ଦେଶକୁ ଫେରିଗଲେ ।

କିଛିକାଳ ନିମନ୍ତେ ମରହଟ୍ଟାଙ୍କ କର୍ତ୍ତୃତ୍ୱକାଳ ଶେଷ ପାଣିପଥଯୁଦ୍ଧ ବେଳକୁ ଏବଂ ତାଙ୍କର କିଛି ପ୍ରଭାବ ରହିଲା ନାହିଁ । ସେମାନେ ଯେଉଁ ବଡ଼ ଜନପଦଟି ଖୋଜୁଥିଲେ, ତାହା ହରାଇଲେ; କିନ୍ତୁ ସେମାନେ କ୍ରମେ ବଳ ସଞ୍ଚୟ କଲେ ଓ ପୁଣି ଥରେ ଭାରତରେ ଏକ ଶକ୍ତିଶାଳୀ ଆଭ୍ୟନ୍ତରୀଣ ଶକ୍ତି ହୋଇପାରିଥିଲେ । ଇତ୍ୟବସରରେ ଆମେ ଦେଖିବା, ଅନ୍ୟସବୁ ଏପରିକି ଅଦ୍ଭୁତ ଅଧିକ ପ୍ରଭାବଶାଳୀ ଶକ୍ତିମାନେ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ଏବଂ କେତେ ପୁରୁଷ ପର୍ଯ୍ୟନ୍ତ ଭାରତର ଭାଗ୍ୟନିୟନ୍ତ୍ରି ହେଲାପରି ବୋଧହେଲା । ଏହି ସମସ୍ତ ବେଳକୁ କେତେକ ମହେହଟ୍ଟା ସାମନ୍ତଙ୍କ ଉତ୍ଥାନ ହେଲା । ସେମାନେ ପେଶୱାଙ୍କ ଅଧୀନସ୍ଥ ବୋଲି ଧରାଯାଉଥିଲା । ସେମାନଙ୍କ ଭିତରେ ସବୁଠାରୁ ପ୍ରଧାନ ହେଉଛନ୍ତି ଗୋଆଲିୟରର ସିନ୍ଧିଆ, ବରୋଦାର ଗାଇକୱାଡ଼ ଓ ଇନ୍ଦୋରର ହୋଲକାର ।

ଆମେ ଏବେ ଉପରୋଲ୍ଲିଖିତ ଅନ୍ୟ ବିଷୟଗୁଡ଼ିକର ବିଚାର କରିବା । ଦକ୍ଷିଣ-ଭାରତରେ ଏତେବେଳେ ଇଂରେଜ ଓ ଫରାସୀଙ୍କ ମଧ୍ୟରେ ବିବାଦ ହିଁ ପ୍ରଧାନ ଘଟଣା । ୧୮ଶ ଶତାବ୍ଦୀରେ ଅନେକ ସମୟରେ ଇଉରୋପରେ ଇଂଲଣ୍ଡ ଓ ଫ୍ରାନ୍ସ ଯୁଦ୍ଧରେ ଲିପ୍ତଥିଲେ ଏବଂ ତାଙ୍କର ପ୍ରତିନିଧିମାନେ ଭାରତରେ ପରସ୍ପର ଭିତରେ ବିବାଦ କରୁଥିଲେ; କିନ୍ତୁ ବେଳେ ବେଳେ ଦୁଇ ଦେଶ ସରକାରୀ ଭାବରେ ସନ୍ଧି ସୂତ୍ରରେ ଆବଦ୍ଧ ଥିଲେ ସୁଦ୍ଧା ଉଭୟେ ଭାରତରେ ଯୁଦ୍ଧ କରୁଥିଲେ । ଉଭୟପକ୍ଷରେ ସାହସୀ ଓ ନ୍ୟାୟାନ୍ୟାୟ-ରହିତ ଦୁଃସାହସୀ ଲୋକ ଥିଲେ; ଧନ ସମ୍ପଦ ଓ କ୍ଷମତା ପାଇବା ନିମନ୍ତେ ଅତ୍ୟନ୍ତ ବ୍ୟସ୍ତ ଥିଲେ ଏବଂ ସ୍ୱାଭାବିକ ରୂପେ ସେମାନଙ୍କ ଭିତରେ କଠୋର ପ୍ରତିଯୋଗିତା ଥିଲା । ଫରାସୀ ପକ୍ଷରେ ସେକାଳରେ ଡୁପ୍ଲେ ହିଁ ପ୍ରଧାନ ବ୍ୟକ୍ତି ଥିଲେ, ଇଂରେଜ ପକ୍ଷରେ ଥିଲେ କ୍ଲାଇଭ୍ । ଡୁପ୍ଲେ ଦୁଇ ରାଜ୍ୟ ଭିତରେ ସ୍ଥାନୀୟ ବିବାଦରେ ଏକ ଲାଭ ଜନକ ଖେଳ ଖେଳିବାକୁ ଆରମ୍ଭ କଲେ । ଆଗେ ନିଜର ଶିକ୍ଷିତ ସେନାର ସାହାଯ୍ୟ ଦେଇ ପରେ ରାଜ୍ୟକୁ ଗ୍ରାସ କରୁଥିଲେ । ଫରାସୀ ପ୍ରଭାବ ବୃଦ୍ଧି ପାଇଲା; କିନ୍ତୁ ଇଂରେଜମାନେ ଅତି ଶୀଘ୍ର ଏମାନଙ୍କ ନୀତି ଅନୁସରଣ କଲେ ଓ ସେଥିରେ ଉନ୍ନତି କଲେ । ଦୁଇପକ୍ଷ କ୍ଷୁଧିତ ଗୃଧ୍ର ପରି ଗୋଲମାଳ ପାଇଁ ଚାହିଁ ରହୁଥାନ୍ତି ଏବଂ ଏପରି ଗୋଲମାଳ ପାଇଁ ଯଥେଷ୍ଟ ସୁବିଧା ଥାଏ । ଯେତେବେଳେ ଦକ୍ଷିଣରେ କୌଣସିଠାରେ ଉତ୍ତରାଧିକାରିତ୍ୱ ନେଇ ବିବାଦ ହୋଇଛି, ତୁ ଦେଖିବୁ ବୋଧହୁଏ ଇଂରେଜମାନେ ଗୋଟିଏ ପକ୍ଷ ସମର୍ଥନ କରିଛନ୍ତି ତ ଫରାସୀମାନେ ଅନ୍ୟପକ୍ଷ ନେଇଛନ୍ତି । ପନ୍ଦର ବର୍ଷ ଯୁଦ୍ଧ ପରେ (୧୭୪୬—୬୧) ଫ୍ରାନ୍ସ ବିରୁଦ୍ଧରେ ଇଂଲଣ୍ଡ ଜୟଲାଭ କଲା । ଭାରତରେ ଇଂରେଜ ଲୋକେ ତାଙ୍କ ନିଜ ଦେଶରୁ ପୂର୍ଣ୍ଣ ସମର୍ଥନ ପାଇଲେ; ଡୁପ୍ଲେ ଓ ତାଙ୍କ ସହକର୍ମୀମାନେ ଫ୍ରାନ୍ସରୁ ସେପରି କିଛି ସାହାଯ୍ୟ ପାଇ ନଥିଲେ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଭାରତରେ ଇଂରେଜଙ୍କ ପ୍ରସ୍ତାବରେ ବ୍ରିଟିଶ ବଣିକ ଏବଂ ଇଷ୍ଟଇଣ୍ଡିଆ କମ୍ପାନୀରେ ଅଂଶ ନେଇଥିବା ଅନ୍ୟ ଲୋକ ଥିଲେ ଏବଂ ସେମାନେ ପାର୍ଲିମେଣ୍ଟ ଓ ସରକାର ଉପରେ ପ୍ରଭାବ

ପଠାଇ ପାରୁଥିଲେ । ଫରାସୀଙ୍କ ପରଠାରେ ରାଜା ୧୫ଶ ଲୁଇ (ପ୍ରଧାନ ସମ୍ରାଟ ୧୪ଶ ଲୁଇଙ୍କ ପୌତ୍ର ଓ ଉତ୍ତରାଧିକାରୀ)ଆନନ୍ଦର ସହିତ ସେମାନଙ୍କୁ ଗଠନ କରୁଥିଲେ । ସମୁଦ୍ର ଉପରେ ବ୍ରିଟେନଙ୍କ ନୌଶକ୍ତି ମଧ୍ୟ ବହୁ ପରିମାଣରେ ସାହାଯ୍ୟ କରିଥିଲା । ଫରାସୀ ଓ ବ୍ରିଟିଶ ଉଭୟେ ଭାରତୀୟ ସେନାଙ୍କୁ ଶିକ୍ଷା ଦେଲେ; ସେମାନଙ୍କୁ 'ସିପାହୀ' କୁହାଗଲା । ଏହା 'ସିପାହି'ରୁ ହୋଇଛି ଏବଂ ସ୍ଥାନୀୟ ସେନାଙ୍କ ଅପେକ୍ଷା ସେଗୁଡ଼ିକ ଉତ୍ତମ ରୂପେ ଅସ୍ତ୍ରଶସ୍ତ୍ର ସଜ୍ଜିତ ଥିଲେ । ସେମାନଙ୍କର କାର୍ଯ୍ୟ ଅତ୍ୟନ୍ତ ଦରକାର ହେଉଥିଲା ।

ଶେଷରେ ଇଂରେଜମାନେ ଭାରତରେ ଫରାସୀଙ୍କୁ ପରାସ୍ତ କଲେ ଏବଂ ଫରାସୀ-ଅଧିକୃତ ଚନ୍ଦନନଗର ଓ ପଣ୍ଡିଚେରି ସହର ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରିଦେଲେ । ଏହି ଧ୍ୱଂସ ଏପରି ହୋଇଥିଲା ଯେ ଏହି ଉଭୟ ସ୍ଥାନରେ ଗୋଟିଏ ଘରର ଛାତ ସୁଦ୍ଧା ନଥିଲା ବୋଲି କୁହାଯାଏ । ଏହି ସମୟଠାରୁ ଫରାସୀମାନେ ଭାରତୀୟ କ୍ଷେତ୍ରରୁ ଅନ୍ତର ହୋଇଗଲେ ଏବଂ ଯଦିଓ ସେମାନେ ପରେ ପଣ୍ଡିଚେରି ଓ ଚନ୍ଦନନଗର ଫେରି ପାଇଲେ ଏବଂ ଆଜି ବି ତାହା ତାଙ୍କ ଅଧୀନରେ ଅଛି, ତଥାପି ତାଙ୍କର କୌଣସି ମହତ୍ତ୍ୱ ନାହିଁ ।

ଏହି ସମୟରେ ଭାରତ କେବଳ ଇଂରେଜ-ଫରାସୀଙ୍କ ରଣକ୍ଷେତ୍ର ନ ଥିଲା । ଇଉରୋପ ଛଡ଼ା ସେମାନେ କାନାଡ଼ା ଓ ଅନ୍ୟତ୍ର ପରସ୍ପର ଭିତରେ ଲଢ଼ାଇ କରୁଥିଲେ । କାନାଡ଼ାରେ ବି ଇଂରେଜମାନେ ଜୟଲାଭ କଲେ । ଯାହାହେଉ ଅଳ୍ପଦିନ ପରେ ଇଂରେଜମାନେ ଆମେରିକା ଉପନିବେଶ ହରାଇଲେ ଏବଂ ଏହି ଉପନିବେଶଗୁଡ଼ିକୁ ସାହାଯ୍ୟ କରି ଫରାସୀମାନେ ବ୍ରିଟିଶଙ୍କ ଉପରେ ନିଜର ପ୍ରତିଶୋଧ ନେଲେ । ମାତ୍ର ଏକ ପରବର୍ତ୍ତୀ ଚିଠିରେ ଏ ସମ୍ବନ୍ଧରେ ଆମେ ଅଧିକ ଆଲୋଚନା କରିବା ।

ଫରାସୀମାନଙ୍କୁ ତଡ଼ିବା ପରେ ଇଂରେଜମାନଙ୍କ ପଥରେ ଆଉ ପ୍ରତିବନ୍ଧକ କ'ଣ ଥିଲା ? ଅବଶ୍ୟ ପଶ୍ଚିମ ଓ କେନ୍ଦ୍ର ଭାରତ ଏବଂ ଏପରିକି କେତେକ ପରିମାଣରେ ଉତ୍ତରରେ ମରହଟ୍ଟାମାନେ ଥିଲେ । ହାଇଦ୍ରାବାଦର ନିଜାମ ଥିଲେ; କିନ୍ତୁ ତାଙ୍କୁ ବିଶେଷ କିଛି ଖାତିର କରାଯାଉ ନଥିଲା; ମାତ୍ର ଦକ୍ଷିଣରେ ହାଇଦର ଆଲି ନାମକ ଜଣେ ନୂତନ ଓ ଶକ୍ତିଶାଳୀ ବିରୋଧୀ ଥିଲେ । ସେ ପୁରାତନ ବିଜୟନଗର ସାମ୍ରାଜ୍ୟର ଅବଶିଷ୍ଟାଂଶରେ ନିଜକୁ ପ୍ରଭୁ କରିପାରିଥିଲେ, ଏହି ଅଞ୍ଚଳ ଅଧୁନିକ ମହୀଶୂର ଷ୍ଟେଟ ହୋଇଛି । ଉତ୍ତରରେ ବଙ୍ଗଳାରେ ସିରାଜଉଦ୍ଦୌଲା ଥିଲେ, ସେ ସମ୍ପୂର୍ଣ୍ଣରୂପେ ଏକ ଅପାରଗ ଲୋକ ଥିଲେ । ଆମେ ଦେଖିଛେ ଦିଲ୍ଲୀ ସାମ୍ରାଜ୍ୟ କେବଳ କଳ୍ପନାରେ ଥିଲା; ଅଥଚ କୌତୂହଳର କଥା ଯେ ଇଂରେଜମାନେ ୧୭୫୬ ପର୍ଯ୍ୟନ୍ତ ଅର୍ଥାତ୍ ନାଦିରସାହାଙ୍କ ଆକ୍ରମଣ ପରେ ସାର୍ଘକାଳ ପର୍ଯ୍ୟନ୍ତ ଦିଲ୍ଲୀ ସାମ୍ରାଜ୍ୟକୁ ବଶତା ସ୍ୱୀକାରର ଚିହ୍ନ ସ୍ୱରୂପ ସାମାନ୍ୟ ଉପଢୌକନ ପଠାଉଥିଲେ, ନାଦିରସାହାଙ୍କ ଆକ୍ରମଣରେ କେନ୍ଦ୍ର ସରକାରର ଯାହା ବା ସ୍ଥିତି ଥିଲା, ତାହା ଶେଷ ହୋଇଯାଇଥିଲା । ତୋର ମନେଥିବ, ବଙ୍ଗଳାରେ ଇଂରେଜମାନେ ଆଉରଙ୍ଗଜେବଙ୍କ ସମୟରେ ଥରେ ଆକ୍ରମଣ କରିବା ଲାଗି ସାହସ କରିଥିଲେ; କିନ୍ତୁ

ସେମାନେ ଭୀଷଣ ଭାବରେ ପରାସ୍ତ ହେଲେ ଏବଂ ଏହି ପରାଜୟ ତାଙ୍କୁ ଏପରି ନିଃଶେଷ କରିଦେଲା ଯେ ଯେକୌଣସି ଦୃଢ଼ପ୍ରତିଜ୍ଞ ବ୍ୟକ୍ତିଙ୍କ ହସ୍ତକ୍ଷେପ ଲାଗି ଦକ୍ଷିଣ-ଭାରତରେ ଅନୁକୂଳ ପରିସ୍ଥିତି ଥିବା ସତ୍ତ୍ୱେ ସେମାନେ ପୁନର୍ବାର ଦୁଃସାହସ କରିବାକୁ ଦୀର୍ଘକାଳ ପର୍ଯ୍ୟନ୍ତ ଦ୍ୱିଧା କରୁଥିଲେ ।

କ୍ଲାଇବ୍ ଜଣେ ଇଂରେଜ ଓ ଏହିପରି ଏକ ଦୃଢ଼ ପ୍ରତିଜ୍ଞା କରିଥିଲେ । ସେ ଏକ ବିରାଟ ସାମ୍ରାଜ୍ୟ-ନିର୍ମାତା ଭାବରେ ତାଙ୍କ ଦେଶବାସୀଙ୍କ ଦ୍ୱାରା ଏତେ ପ୍ରଶଂସିତ ହୋଇଛନ୍ତି । ତାଙ୍କର ବ୍ୟକ୍ତିଗତ ଜୀବନ ଓ କାର୍ଯ୍ୟରେ ସାମ୍ରାଜ୍ୟ କିପରି ଗଢ଼ାଯାଏ, ତାର ଦୃଷ୍ଟାନ୍ତ ମିଳେ । ସେ ଅତ୍ୟନ୍ତ ସାହସୀ ଓ ଅସାଧାରଣ ଲୋକ ଥିଲେ ଏବଂ ତାଙ୍କର କାର୍ଯ୍ୟସିଦ୍ଧି ନିମନ୍ତେ ଶଠତା ବା ମିଥ୍ୟା ଆଚରଣ କରିବାକୁ ସେ ପଛାଉ ନଥିଲେ । ବଙ୍ଗଳାର ନବାବ ସିରାଜୁଦ୍ଦୌଲ୍ଲା ବ୍ରିଟିଶଙ୍କ ଅନେକ କାର୍ଯ୍ୟରେ ବିରକ୍ତ ହୋଇ ନିଜର ରାଜଧାନୀ ମୁର୍ଶିଦାବାଦରୁ ଆସି କଲିକତା ଦଖଲ କଲେ । ଏହିକବେଳେହିଁ ତଥାକଥିତ "ଅନ୍ଧକୂପ" କାଣ୍ଡ ଘଟିଥିଲା ବୋଲି କୁହାଯାଏ । ଏହି କାହାଣୀ ହେଉଛି ଯେ ନବାବଙ୍କ କର୍ମଚାରୀମାନେ ବହୁସଂଖ୍ୟକ ଇଂରେଜ ଲୋକଙ୍କୁ ରାତିକପାଇଁ ଏକ କ୍ଷୁଦ୍ର ଓ ରୁଦ୍ଧକୋଠରୀରେ ତାଲାପକାଇ ବନ୍ଦକରି-ଦେଲେ ଏବଂ ସେମାନଙ୍କ ଭିତରୁ ଅଧିକାଂଶଙ୍କ ନିଶ୍ୱାସ ବନ୍ଦହୋଇ ମୃତ୍ୟୁ ହେଲା । ଏଥିରେ ସନ୍ଦେହ ନାହିଁ ଯେ ଏପରି ଏକ କାର୍ଯ୍ୟ ଅତ୍ୟନ୍ତ ବର୍ବର ଓ ନିଦାରୁଣ; କିନ୍ତୁ ଏହି କାହାଣୀଟି ଜଣେ ଲୋକର ବର୍ଣ୍ଣନା ଉପରେ ପ୍ରତିଷ୍ଠିତ । ସେ ଲୋକଟି ଖୁବ୍ ବିଶ୍ୱାସଯୋଗ୍ୟ ବୋଲି ବିଚାର କରାଯାଏ ନାହିଁ । ତେଣୁ ଅନେକ ଲୋକ ଭାବନ୍ତି ଯେ ଏହି ଗଳ୍ପ ଅଧିକ ଭାବରେ ଅସତ୍ୟ ଏବଂ ସାହାହେଉ ଅତ୍ୟନ୍ତ ଅତିରଞ୍ଜିତ କରାଯାଇଛି ।

କଲିକତା ଦଖଲ କରିବାରେ ନବାବଙ୍କର ସାଫଲ୍ୟଲାଭର କ୍ଲାଇବ ପ୍ରତିଶୋଧ ନେଲେ; ମାତ୍ର ସାମ୍ରାଜ୍ୟନିର୍ମାତା ନିଜ ଢଙ୍ଗରେ ବିଶ୍ୱାସଘାତକରୂପେ କାର୍ଯ୍ୟ କରିବାପାଇଁ ନବାବଙ୍କ ମନ୍ତ୍ରୀ ମୀରଜାଫରଙ୍କୁ ଲାଞ୍ଚ ଦେବାରେ ଲାଗିଲେ ଏବଂ ଏକ ଦସ୍ତାବିଜ ଜାଲ କଲେ । ଏହି କାହାଣୀ ଅତିଦୀର୍ଘ; ଏଠାରେ ବର୍ଣ୍ଣନା କରିହେବ ନାହିଁ । ଜାଲ ଓ ବିଶ୍ୱାସ ଘାତକତାଦ୍ୱାରା କ୍ଷେତ୍ର ପ୍ରସ୍ତୁତ କରି କ୍ଲାଇବ୍ ୧୭୫୭ରେ ପଲାସୀଠାରେ ନବାବଙ୍କୁ ପରାସ୍ତ କଲେ । ଯୁଦ୍ଧଦୃଷ୍ଟିରୁ ଏହା ଏକ କ୍ଷୁଦ୍ର ସଂଗ୍ରାମ ଏବଂ ବାସ୍ତବିକ ପ୍ରକୃତ ଯୁଦ୍ଧ ଆରମ୍ଭ ପୂର୍ବରୁ କ୍ଲାଇବ୍ ନିଜର ଚକ୍ରାନ୍ତ ଫଳରେ ଏହି ଯୁଦ୍ଧରେ କାର୍ଯ୍ୟତଃ ଜୟୀ ହୋଇସାରିଥିଲେ । ପଲାସୀର କ୍ଷୁଦ୍ର ଯୁଦ୍ଧରେ ଅଧିକ ଫଳ ହୋଇଥିଲା । ଏହା ବଙ୍ଗଳାର ଭାଗ୍ୟ ନିର୍ଣ୍ଣୟ କଲା ଏବଂ ପଲାସୀଠାରୁ ଭାରତରେ ବ୍ରିଟିଶ କର୍ତ୍ତୃତ୍ୱ ଆରମ୍ଭ ହେଲା ବୋଲି ଅନେକ ସମୟରେ କୁହାଯାଏ । ଏହି ବିଶ୍ୱାସଘାତକତା ଓ ଜାଲୁଆମିର ଭିତ୍ତି ଉପରେ ଭାରତରେ ବ୍ରିଟିଶ ସାମ୍ରାଜ୍ୟ ଗଢ଼ାହେଲା; କିନ୍ତୁ ଉଣାଅଧିକେ ସମସ୍ତ ସାମ୍ରାଜ୍ୟ ଓ ସାମ୍ରାଜ୍ୟନିର୍ମାତାମାନେ ଏହିପରି ନୀତି ଗ୍ରହଣ କରିଥାଆନ୍ତି ।

ଭାଗୀରଥୀର ଏପରି ହଠାତ୍ ପରିବର୍ତ୍ତନ ହୋଇ ବଙ୍ଗଳା ଦୁଃସାହସୀ ଓ ଲୋଭୀ ଇଂରେଜ ଲୋକଙ୍କ ହାତକୁ ଗଲା । ସେମାନେ ବଙ୍ଗଳାରେ ସର୍ବେସର୍ବା ହେଲେ ଏବଂ ତାଙ୍କର ଗତିରୋଧ କରିବାକୁ କେହି ନଥିଲେ । ତେଣୁ କ୍ଲାଇବ୍‌ଙ୍କ ନେତୃତ୍ୱରେ ସେମାନେ ପ୍ରଦେଶର ସାଧାରଣ କୋଷାଗାରରେ ପ୍ରବେଶ କରି ସମ୍ପୂର୍ଣ୍ଣରୂପେ ଧନ ବୋହିନେଲେ । କ୍ଲାଇବ୍ ନଗଦ ପ୍ରାୟ ୨୧,୦୦,୦୦୦ ଟଙ୍କା ନେଇଥିଲେ ଏବଂ ଏଥିରେ ସନ୍ତୁଷ୍ଟ ନହୋଇ ସେ ଏକ ଅତି ମୂଲ୍ୟବାନ ଜାଗିର ବା ଇଲାକା ନେଲେ, ଏଥିରୁ ବର୍ଷକୁ କେତେ ଲକ୍ଷ ଟଙ୍କା ଆୟ ହେଉଥିଲା । ଅନ୍ୟ ସମସ୍ତ ଇଂରେଜ ଲୋକେ ସେହିପ୍ରକାରେ ନିଜର "କ୍ଷତିପୂରଣ" ନେଇଗଲେ । ଧନଲାଗି ନିର୍ଲଜ୍ଜ ପ୍ରତିଯୋଗିତା ଚାଲିଲା ଏବଂ ଇଷ୍ଟଇଣ୍ଡିଆ କମ୍ପାନୀର କର୍ମଚାରୀମାନଙ୍କର ଲୋଭ ଓ ମିଥ୍ୟା ଆଚରଣ ସମସ୍ତ ସୀମା ଅତିକ୍ରମ କରିଯାଇଥିଲା । ଇଂରେଜମାନେ ବଙ୍ଗଳାର ନବାବ-ନିର୍ମାତା ହେଲେ ଏବଂ ଇଚ୍ଛାକ୍ରମେ ନବାବ ପରିବର୍ତ୍ତନ କରିଦେଉଥିଲେ । ପ୍ରତ୍ୟେକ ପରିବର୍ତ୍ତନବେଳେ ଲାଞ୍ଚ ଓ ପ୍ରଚୁର ଉପହାର ମିଳୁଥିଲା । ସେମାନଙ୍କଠାରେ ଶାସନର କୌଣସି ଦାୟିତ୍ୱ ନଥିଲା—ଏହାଥିଲା ବରାବର ବଦଳୁଥିବା ଗରିବ ନବାବଙ୍କ କାର୍ଯ୍ୟ; ଶୀଘ୍ର ଧନୀ ପାଲଟିବାହିଁ ତାଙ୍କର କାର୍ଯ୍ୟ ଥିଲା ।

କେତେକ ବର୍ଷ ପରେ ୧୭୬୪ରେ ବକ୍ସରଠାରେ ଇଂରେଜମାନେ ଆଉ ଏକ ଯୁଦ୍ଧରେ ଜିତିଲେ । ଏହାଫଳରେ ଦିଲ୍ଲୀରେ ନାମମାତ୍ର ସମ୍ରାଟ ସେମାନଙ୍କ ନିକଟରେ ବଶତା ସ୍ୱୀକାର କଲେ । ସେ ଏମାନଙ୍କର ପେନ୍‌ସନ୍ ଭୋଗି ହେଲେ । ବଙ୍ଗଳା ଓ ବିହାରରେ ବ୍ରିଟିଶଙ୍କର କର୍ତ୍ତୃତ୍ୱର ପ୍ରତିରୋଧ କରିବାକୁ ଏବେ କେହି ନଥିଲେ । ସେମାନେ ଏ ଦେଶରୁ ଯେଉଁ ଅଜସ୍ର ଧନ ଲୁଣ୍ଠନ କରୁଥିଲେ, ସେଥିରେ ସନ୍ତୁଷ୍ଟ ରହିଲେ ନାହିଁ ଏବଂ ପଇସା କମାଇବାର ନୂତନ ପନ୍ଥା ବାହାର କରିବାରେ ଲାଗିପଡ଼ିଲେ । ଅଭ୍ୟନ୍ତରୀଣ ବେପାର ସହିତ ତାଙ୍କର କୌଣସି ସମ୍ପର୍କ ନଥିଲା । ଏବେ ମାଲ ଚାଲାଣ ପାଇଁ କର ନଦେଇ ଏହି ବେପାର ଚଳାଇବା ନିମନ୍ତେ ସେମାନେ ଜୋର କଲେ, ସ୍ୱଦେଶୀ ମାଲ ବେପାର କରୁଥିବା ସମସ୍ତ ବଣିକଙ୍କୁ ଏହି କର ଦେବାକୁ ପଡ଼ୁଥିଲା । ଭାରତର ସ୍ୱଦେଶୀ ଶିଳ୍ପ ଓ ବେପାର ଉପରେ ଇଂରେଜମାନେ ଏହି ପ୍ରଥମ ପ୍ରହାର ଦେଲେ ।

ଉତ୍ତର ଭାରତରେ ବ୍ରିଟିଶ ଏବେ କୌଣସି ଦାୟିତ୍ୱ ମୁଣ୍ଡକୁ ନ ନେଇ କ୍ଷମତା ଓ ସମ୍ପଦ ବଢ଼ାଇଲେ । ଇଷ୍ଟଇଣ୍ଡିଆ କମ୍ପାନୀର ଦୁଃସାହସିକ ବଣିକମାନେ ସଚ୍ଚା ବେପାର ଓ ଅନ୍ୟାୟ ବେପାର ଏବଂ ପ୍ରକାଶ୍ୟ ଲୁଣ୍ଠନ ଭିତରେ କୌଣସି ପାର୍ଥକ୍ୟ ଦେଖୁ ନଥିଲେ । ଏତେବେଳେ ଇଂରେଜମାନେ ଭାରତୀୟ ଧନ ପ୍ରଚୁର ପରିମାଣରେ ନେଇ ଭାରତରୁ ଇଂଲଣ୍ଡକୁ ଫେରି ଯାଉଥିଲେ ଏବଂ ସେଥିପାଇଁ ତାଙ୍କୁ "ନବାବ" ବୋଲି କୁହାଯାଉଥିଲା । ତୁ ଯଦି ଥାକରେଙ୍କ ରଚିତ "ଭାନିଟି ଫେୟାର" ପୁସ୍ତକ ପଢ଼ିଥିବୁ ତାହାହେଲେ ଏପରି ଏକ ବ୍ୟକ୍ତିର କଥା ତୋର ମନେଥିବ ।

ରାଜନୈତିକ ଜଗନ୍ନାଥ ଅଭାବ, ଗୋଳମାଳ, ବର୍ଷାର ଅଭାବ ଏବଂ ବ୍ରିଟିଶର ଶାସନ କରିବା ନୀତି, ଏସବୁ ମିଳି ୧୭୭୦ରେ ବଙ୍ଗଳା ଓ ବିହାରରେ ଅତି ଭୀଷଣ ଦୁର୍ଭିକ୍ଷ ଦେଖାଦେଲା। କଥିତ ଅଛି ଯେ ଏହି ଅଞ୍ଚଳର ଲୋକସଂଖ୍ୟାର ଏକତୃତୀୟାଂଶରୁ ଅଧିକ ଲୋପ ପାଇଗଲେ। ଏହି ସଂଖ୍ୟା କଥା ଭାବନ୍ତୁ! କ୍ରମେ ଖାଦ୍ୟ ଅଭାବରେ କେତେ ଲକ୍ଷ ଲୋକ ମରିଗଲେ। ସମଗ୍ର ଅଞ୍ଚଳର ଲୋକବସତି ଉଜୁଡ଼ି ଗଲା ଏବଂ ଚାଷ ହେଉଥିବା ଜମି ଓ ଗ୍ରାମ ସ୍ଥାନରେ ଜଙ୍ଗଲ ବଢ଼ିଉଠିଲା। କେହି ଅନ୍ନକଷ୍ଟ ଲୋକଙ୍କୁ କୌଣସି ପ୍ରକାର ସାହାଯ୍ୟ କରି ନଥିଲେ। ନବାବଙ୍କର କୌଣସି କ୍ଷମତା, କର୍ତ୍ତୃତ୍ୱ ବା ପ୍ରବୃତ୍ତି ନଥିଲା। ଇଷ୍ଟଇଣ୍ଡିଆ କମ୍ପାନୀ ହାତରେ କ୍ଷମତା ଓ କର୍ତ୍ତୃତ୍ୱ ଥିଲା; କିନ୍ତୁ ସେମାନେ କୌଣସି ପ୍ରକାର ଦାୟିତ୍ୱବୋଧ ବା ଇଚ୍ଛାପ୍ରକାଶ କଲେ ନାହିଁ। ତାଙ୍କର କାର୍ଯ୍ୟ ହେଲା, ଅର୍ଥ ସଂଗ୍ରହ କରିବା ଓ ରାଜସ୍ୱ ଆଦାୟ କରିବା ଏବଂ ଯେମାନେ ନଜର ପକେଟ ଭର୍ତ୍ତି କରିବା ସଙ୍କାଶେ ଏହା ଯେପରି ଦକ୍ଷତାର ସହିତ ଓ ସନ୍ତୋଷଜନକ ଭାବରେ କରିଥିଲେ, ତାହା ବର୍ଣ୍ଣନା କଲେ ଆଶ୍ଚର୍ଯ୍ୟ ହେବ। ଭୀଷଣ ଦୁର୍ଭିକ୍ଷ ସତ୍ତ୍ୱେ ଏବଂ ଲୋକସଂଖ୍ୟାର ଏକତୃତୀୟାଂଶରୁ ଅଧିକ ମରି ଯାଇଥିଲେ ସୁଦ୍ଧା ଯେଉଁମାନେ ବଞ୍ଚିରହିଥିଲେ, ସେମାନଙ୍କଠାରୁ ଏମାନେ ପୂର୍ଣ୍ଣ ରାଜସ୍ୱ ଆଦାୟ କରିଥିଲେ; ବାସ୍ତବିକ ସେମାନେ ଆହୁରି ଅଧିକ ଆଦାୟ କରିଥିଲେ ଏବଂ ସରକାରୀ ରିପୋର୍ଟରୁ ଜଣାଯାଏ ଯେ ସେମାନେ ଏହା "ହିଂସା ପ୍ରୟୋଗ କରି" କରିଥିଲେ। ଏକ ମହାନ୍ ଦୁର୍ଯ୍ୟୋଗରେ ବଞ୍ଚି ରହିଥିବା ଅନ୍ନକଷ୍ଟ ଓ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କଠାରୁ ଏପରି ବଳପୂର୍ବକ ଆଦାୟ କରିବା କପରି ଅମାନୁଷିକତା ତାହା ଧାରଣା କରିବା କଷ୍ଟକର।

ବଙ୍ଗଳାରେ ଓ ଫରାସୀମାନଙ୍କ ଉପରେ ଇଂରେଜମାନେ ଜୟଲାଭ କରିବା ସତ୍ତ୍ୱେ ଦକ୍ଷିଣରେ ତାଙ୍କୁ ମସ୍ତବଡ଼ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା। ପୂର୍ଣ୍ଣ ବିଜୟ ହାସଲ କରିବା ପୂର୍ବରୁ ସେମାନଙ୍କୁ ପରାଜୟ ଓ ଅପମାନ ସହ୍ୟ କରିବାକୁ ପଡ଼ୁଥିଲା। ମହୀଶୂରର ହାଇଦର ଅଲ୍ଲୀ ତାଙ୍କର ଶକ୍ତ ବିରୋଧୀ ଥିଲେ। ସେ ଜଣେ ଦକ୍ଷ ଓ ପ୍ରଚଣ୍ଡ ସେନାନାୟକ ଏବଂ ସେ ବାରମ୍ବାର ଇଂରେଜ ସେନାକୁ ପରାସ୍ତ କରିଥିଲେ। ୧୭୬୯ ରେ ସେ ମାନ୍ଦ୍ରାଜରେ ନଜେ ତାଙ୍କର ଅନୁକୂଳ ସନ୍ଧିଚୁକ୍ତି କରିଥିଲେ। ଦଶବର୍ଷ ପରେ ସେ ଅନେକ ପରିମାଣରେ ଆହୁରି ସଫଳତା ଲାଭ କରିଥିଲେ ଏବଂ ତାଙ୍କ ପରେ ତାଙ୍କ ପୁଅ ଟିପୁ ସୁଲତାନ ଇଂରେଜଙ୍କ ପକ୍ଷରେ ଏକ କଣ୍ଟକ ହୋଇଗଲେ। ଟିପୁଙ୍କୁ ପରାସ୍ତ କରିବା ନିମନ୍ତେ ଆଉ ଦୁଇଟି ମହୀଶୂର ଯୁଦ୍ଧ କରିବାକୁ ପଡ଼ିଲା ଓ ସେଥିରେ ଅନେକ ବର୍ଷ ଲାଗିଗଲା। ବ୍ରିଟିଶ ବାହୁବଳୀ ତଳେ ସେତେବେଳେ ମହୀଶୂରର ବର୍ତ୍ତମାନ ମହାରାଜାଙ୍କ ଜଣେ ପୂର୍ବପୁରୁଷଙ୍କୁ ଶାସକ ରୂପେ ସ୍ଥାପନା କରାଗଲା।

ମରହଟ୍ଟାମାନେ ମଧ୍ୟ ୧୭୮୨ରେ ଇଂରେଜମାନଙ୍କୁ ଦକ୍ଷିଣରେ ପରାସ୍ତ କରିଥିଲେ। ଉତ୍ତରରେ ଗୋଆଲିଅରର ସିନ୍ଧିଆଙ୍କର ପ୍ରାଧାନ୍ୟ ଥିଲା ଏବଂ ସେ ଅଭାଗା ଅସହାୟ ଦିଲ୍ଲୀ ସମ୍ରାଟଙ୍କୁ ନିୟନ୍ତ୍ରଣ କରିଥିଲେ।

ଇତ୍ୟବସରେ ଓ୍ୱାରେନ୍ ହେଷ୍ଟିଂସ୍‌ଙ୍କୁ ଇଂଲଣ୍ଡରୁ ପଠାଗଲା ଏବଂ ସେ ଭାରତରେ ପ୍ରଥମ ଗଭର୍ଣ୍ଣର ଜେନେରାଲ ହେଲେ । ବ୍ରିଟିଶ ପାର୍ଲିଆମେଣ୍ଟ ଏଣିକି ଭାରତ ବିଷୟରେ ଆଗ୍ରହ ନେବାକୁ ଆରମ୍ଭ କଲା । ହେଷ୍ଟିଂସ ଭାରତରେ ଇଂରେଜ ଶାସକଙ୍କ ଭିତରେ ସର୍ବଶ୍ରେଷ୍ଠ ବୋଲି ଧରାଯାଏ; କିନ୍ତୁ ତାଙ୍କ ସମୟରେ ପୁଣି ସରକାର ବ୍ୟଭିଚାର ଓ ଅନ୍ୟାୟ କାର୍ଯ୍ୟରେ ଲିପ୍ତ ଥିବାର ଜଣା ରହିଛି । ହେଷ୍ଟିଂସ ବହୁପରିମାଣରେ ଧନ ଆଦାୟ କରିବାର କେତେକ ଦୃଷ୍ଟାନ୍ତ ପ୍ରସିଦ୍ଧି ଲାଭ କରିଛି । ଇଂଲଣ୍ଡକୁ ଫେରିବା ପରେ ଭାରତୀୟ ଶାସନ କମନ୍ରେ ହେଷ୍ଟିଂସଙ୍କୁ ପାର୍ଲିଆମେଣ୍ଟ ସମକ୍ଷରେ ଅଭିଯୁକ୍ତ କରାଯାଇଥିଲା ଏବଂ ଦୀର୍ଘକାଳ ବିଚାର ପରେ ତାଙ୍କୁ ଖଲାସ କରିଦିଆଗଲା । ତା ପୂର୍ବରୁ କ୍ଲାଇବଙ୍କୁ ମଧ୍ୟ ପାର୍ଲିଆମେଣ୍ଟ ଦୋଷୀ କରିଥିଲେ ଏବଂ ସେ ପ୍ରକୃତରେ ଆତ୍ମହତ୍ୟା କରିଥିଲେ । ତେଣୁ ଇଂଲଣ୍ଡ ଏହି ଲୋକମାନଙ୍କୁ ନିନ୍ଦା କରି ବା ବିଚାର କରି ନିଜର ବିବେକ ସନ୍ତୋଷଦାନ କରୁଥିଲା; କିନ୍ତୁ ତାର ହୃଦୟ ଭିତରେ ସେ ଏହି ଲୋକମାନଙ୍କୁ ପ୍ରଶଂସା କରୁଥିଲା ଏବଂ ସେମାନଙ୍କର ନୀତି ଅନୁସାରେ ଲାଭବାନ ହେବାକୁ ଇଚ୍ଛାପ୍ରକାଶ କଲା । କ୍ଲାଇବ, ହେଷ୍ଟିଂସଙ୍କୁ ନିନ୍ଦା କରାଯାଇ ପାରେଥାଏ; କିନ୍ତୁ ସେମାନେ ଏକପ୍ରକାର ସାମ୍ରାଜ୍ୟନୀତି ଏବଂ ଯେପର୍ଯ୍ୟନ୍ତ ପରାଧୀନ ଲୋକଙ୍କ ଉପରେ ବଳପୂର୍ବକ ସାମ୍ରାଜ୍ୟ ସବୁ ଲଦି ଦିଆଯାଉଥିବ ଓ ଏହି ଲୋକ-ମାନଙ୍କୁ ଶୋଷଣ କରାଯାଉଥିବ, ସେପର୍ଯ୍ୟନ୍ତ ଏହି ଲୋକେ ଆଗରେ ଥାଇ ପ୍ରଶଂସା ପାଉଥିବେ । ଶୋଷଣପ୍ରଣାଳୀ ବିଭିନ୍ନ ଯୁଗରେ ପରିବର୍ତ୍ତିତ ହୋଇପାରିଥାଏ; କିନ୍ତୁ ସେଥିର ମୂଳତତ୍ତ୍ୱ ସମାନ । ବ୍ରିଟିଶ ପାର୍ଲିଆମେଣ୍ଟ କ୍ଲାଇବଙ୍କୁ ନିନ୍ଦା କରି ଥାଇପାରେ; କିନ୍ତୁ ଲଣ୍ଡନର ହ୍ୱାଇଟ ହଲ୍‌ରେ ଭାରତ ଅଫିସ ସମ୍ମୁଖରେ ତାଙ୍କର ଏକ ପ୍ରତିମୂର୍ତ୍ତି ସେମାନେ ରଖିଛନ୍ତି ଏବଂ ତାହା ଭିତରେ ତାଙ୍କର ଆତ୍ମା ବାସ କରୁଛି ଓ ଭାରତରେ ବ୍ରିଟିଶ ନୀତି ସେହି ଅନୁସାରେ ପ୍ରଭାବିତ ହେଉଛି ।

ବ୍ରିଟିଶ ଅଧିକାରାଧୀନରେ ପୁତୁଳିକା ଭଳି ଭାରତୀୟ ରାଜା ଥାପିବାର ନୀତି ହେଷ୍ଟିଂସ ଆରମ୍ଭ କଲେ । ତେଣୁ ଆଜି ଭାରତୀୟ ରଙ୍ଗମଞ୍ଚରେ ଆମେ ଯେଉଁ ବହୁସଂଖ୍ୟକ ସ୍ୱର୍ଣ୍ଣମଣ୍ଡିତ ଓ ଶୂନ୍ୟ ମସ୍ତିଷ୍କ ମହାରାଜା ଓ ନବାବମାନଙ୍କୁ ଦେଖୁ ଏବଂ ଯେଉଁମାନେ ଉତ୍ପାତ କରନ୍ତି, ସେମାନଙ୍କ ଲାଗି ଆମକୁ ଆଂଶିକଭାବରେ ହେଷ୍ଟିଂସଙ୍କୁ ଧନ୍ୟବାଦ ଦେବାକୁ ପଡ଼ିବ !

ଭାରତରେ ବ୍ରିଟିଶ ସାମ୍ରାଜ୍ୟ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ମରହଟ୍ଟା, ଆଫଗାନ, ଶିଖ, ବର୍ମାବାସୀ ଇତ୍ୟାଦି ଲୋକମାନଙ୍କ ସହିତ ଆହୁରି ଅନେକ ଯୁଦ୍ଧ କରିବାକୁ ପଡ଼ିଥିଲା । କିନ୍ତୁ ମଜାର କଥା ହେଉଛି ଯେ ଯଦିଓ ଏହିସବୁ ଯୁଦ୍ଧ ଇଂଲଣ୍ଡର ମଙ୍ଗଳ ପାଇଁ କରାଯାଇଥିଲା ତଥାପି ଏହାର ଖର୍ଚ୍ଚ ଭାରତକୁ ବହନ କରିବାକୁ ପଡ଼ିଲା । ଇଂଲଣ୍ଡ ବା ଇଂରେଜ ଲୋକଙ୍କ ଉପରେ କୌଣସି ବୋଝ ପଡ଼ିଲା ନାହିଁ । ସେମାନେ କେବଳ ଲାଭ ଉଠାଇଲେ ।

ମନେରଖ, ଇଷ୍ଟଇଣ୍ଡିଆ କମ୍ପାନୀ—ଏକ ବେପାରୀ ସଂଘ—ଭାରତ ଶାସନ କରୁଥିଲା । ବ୍ରିଟିଶ ପାର୍ଲିଆମେଣ୍ଟ କ୍ରମେ ନିୟନ୍ତ୍ରଣ ବଢ଼ାଉଥିଲା; କିନ୍ତୁ ମୁଖ୍ୟତଃ ଭାରତର ଭାଗ

କେତେକ ଲୁଣ୍ଠନକାରୀ ବଣିକଙ୍କ ହାତରେ ପଡ଼ିଥିଲା । ଶାସନଠାରୁ ଅଧିକ ଭାବରେ ବେପାର ଥିଲା । ବେପାର ଅଧିକ ରୂପେ ଲୁଣ୍ଠନ ହିଁ ଥିଲା । ଉଭୟ ଭିତରେ ପାର୍ଥକ୍ୟ କ୍ଷୀଣ । କମ୍ପାନୀର ଅଂଶୀଦାରମାନଙ୍କୁ ବାର୍ଷିକ ଶତକଡ଼ା ୧୦୦,୧୫୦ ଏବଂ ୨୦୦ରୁ ଅଧିକ ଲାଭାଂଶ ମିଳୁଥିଲା । ଏହାଛଡ଼ା ଆମେ ମଧ୍ୟ କ୍ଲାଇଭଙ୍କ ବେଳେ ଯାହା ଦେଖିଛେଁ, ଭାରତରେ ଏହାର ଏଜେଣ୍ଟମାନେ ଏଥିଚତୁରୁ ଆଉ କିଛି ଧନ କମାଇ ପାରୁଥିଲେ । କମ୍ପାନୀର କର୍ମଚାରୀମାନେ ବି ଏକଚାଟିଆ ବେପାର କରୁଥିଲେ ଏବଂ ଏହିରୂପେ ଅତିଶୀଘ୍ର ପ୍ରକାଣ୍ଡ ଧନ ସମ୍ପଦ କରିପାରିଲେ । ଭାରତରେ କମ୍ପାନୀ ରାଜୁତି ଏହିପରି ଥିଲା ।

## ୯୩ : ଚୀନର ମହାନ ମାଞ୍ଚୁ ଶାସକ

ସେପ୍ଟେମ୍ବର ୧୫, ୧୯୩୦

ମୁଁ ସମ୍ପୂର୍ଣ୍ଣରୂପେ ବିଚଳିତ ହୋଇପଡ଼ିଛି ଏବଂ କଣ କରିବାକୁ ହେବ ଜାଣେନା । ଏକ ଦାରୁଣ ସମ୍ବାଦ ଆସି ପହଞ୍ଚିଛି ଯେ ବାପା ଆମରଣ ଅନଶନ କରିବା ନିମନ୍ତେ ମନସ୍ଥ କରିଛନ୍ତି । ମୋର କ୍ଷୁଦ୍ର ଦୁନିଆଟିରେ ସେ ଏପରି ଏକ ବଡ଼ ସ୍ଥାନ ଅଧିକାର କରିଛନ୍ତି ଯେ ତାହା ଦୋହଲି ଯିବାକୁ ଆରମ୍ଭ କଲଣି ଏବଂ ଚାରିଆଡ଼େ ଖାଲି ଅନ୍ଧାର ଓ ଶୂନ୍ୟତା ଦେଖାଯାଉଛି । ବାରମ୍ବାର ତାଙ୍କର ଚିତ୍ରଟି ମୋ ଦୃଷ୍ଟିପଥରେ ଆସୁଛି— ଠିକ ଏକ ବର୍ଷ ପୂର୍ବେ ତାଙ୍କ ସହିତ ମୋର ଶେଷ ଭେଟ ହୋଇଥିଲା । ଯେଉଁ ଜାହାଜ ଭାରତରୁ ତାଙ୍କୁ ପାଶ୍ଚାତ୍ୟ ଦେଶକୁ ନେଇଗଲା ସେହି ଜାହାଜର ଡେକ ଉପରେ ମୁଁ ଠିଆହୋଇ ତାଙ୍କୁ ଦେଖିଥିଲି । ମୁଁ କଣ ତାଙ୍କୁ ଆଉ ଦେଖିପାରିବି ନାହିଁ ? ଯେତେବେଳେ ମୁଁ ସନ୍ଦେହରେ ପଡ଼ିଥିବି ଏବଂ ବିଜ୍ଞ ପରାମର୍ଶ ଲୋଡ଼ୁଥିବି; କିମ୍ବା ଦୁଃଖ କଷ୍ଟ ଭୋଗୁଥିବି ଓ ଶ୍ରଦ୍ଧାପୂର୍ଣ୍ଣ ସ୍ୱାଚ୍ଛନ୍ଦ୍ୟ ଦରକାର କରୁଥିବି, ସେତେବେଳେ ମୁଁ ଆଉ କାହା ପାଖକୁ ଯିବି ? ଆମର ଯେଉଁ ପ୍ରିୟ ନେତା ଆମକୁ ପ୍ରେରଣା ଦାନ କରିଛନ୍ତି ଓ ନେତୃତ୍ୱ ଦେଇଛନ୍ତି, ସେ ଯଦି ଚାଲିଯାଆନ୍ତି ତେବେ ଆମେ ସବୁ କଣ କରିବା । ଓଃ ! ଭାରତ ଏକ ଭୟାନକ ଦେଶ, ଏହାର ମହାପୁରୁଷମାନଙ୍କୁ ଏପରି ମରିବାକୁ ଦିଏ ଏବଂ ଭାରତୀୟ ଲୋକେ ଦାସ ଓ ଦାସ ମନୋବୃତ୍ତି ଯୋଗୁଁ ସାମାନ୍ୟ କଥାରେ ନିଜ ଭିତରେ ବିବାଦ ଓ ଝଗଡ଼ା କରନ୍ତି ଏବଂ ସ୍ୱାଧୀନତାକୁ ପାଶୋରି ପକାନ୍ତି ।

ମୋର ଲେଖିବାର ପ୍ରବୃତ୍ତି ଆଦୌ ହେଉଛି ନାହିଁ ଏବଂ ମୁଁ ଚିଠି ଲେଖା ଶେଷ କରିଦେବା ନିମନ୍ତେ ବି ଭାବୁଛି । କିନ୍ତୁ ଏହା ଏକ ନିର୍ବୋଧ ଜିନିଷ ହେବ । ମୁଁ

ପଢ଼ିବା, ଲେଖିବା ଓ ଚିନ୍ତା କରିବା ଛଡ଼ା ମୋର ଏହି ନିର୍ଜନ କୋଠରୀ ଭିତରେ ଆଉ କ'ଣ ବା କରିପାରିବି ? ମୁଁ କ୍ଳାନ୍ତ ଓ ହତବୁଦ୍ଧି ହେଲବେଳେ ତୋ କଥା ଭାବିବା ଏବଂ ତୋ ପାଖକୁ ଲେଖିବା ଛଡ଼ା ଆଉ କେଉଁଥିରୁ ଅଧିକ ସନ୍ତୋଷ ଲାଭ କରି ପାରିବି ? ଏହି ଦୁନିଆରେ ଦୁଃଖ ଓ ଅଶ୍ରୁ ଅତି ହତଭାଗ୍ୟ ସାଥୀ । ବୁଦ୍ଧ କହିଛନ୍ତି, "ମହାସାଗରରେ ଯେତେ ଜଳ ଅଛି ତାହା ଅପେକ୍ଷା ଅଧିକ ଅଶ୍ରୁପାତ ହୋଇଗଲାଣି" ଏବଂ ଏହି ଅଭାଗା ଦୁନିଆକୁ ଠିକଣା କରିବା ପାଇଁ ଆହୁରି ଅଧିକ ଅଶ୍ରୁପାତ କରିବାକୁ ପଡ଼ିବ । ଆମର ମହାନ୍ କର୍ତ୍ତବ୍ୟ ଆଗରେ ରହିଛି, ମହାନକାର୍ଯ୍ୟ ଏବେ ସୁଦ୍ଧା ଜଳ ଜଳ କରି ଅନାଇଛି ଏବଂ ଯେପର୍ଯ୍ୟନ୍ତ ସେ କାର୍ଯ୍ୟ ସମ୍ପନ୍ନ ହୋଇନାହିଁ, ସେପର୍ଯ୍ୟନ୍ତ ଆମ ପକ୍ଷରେ ଓ ଏହି ପଥର ଯାତ୍ରୀମାନଙ୍କ ପକ୍ଷରେ ଭଲେ ହେଲେ ବିଶ୍ରାମ ନାହିଁ । ତେଣୁ ମୋର ପୂର୍ବର କାର୍ଯ୍ୟ-ନିର୍ଘଣ୍ଟ ଅନୁସାରେ ଚଳିବା ପାଇଁ ମୁଁ ସ୍ଥିର କରିଛି; ପୂର୍ବପରି ତୋ ପାଖକୁ ଲେଖୁଥିବି ।

ମୋର ଗତ କେତୋଟି ଚିଠିରେ ମୁଁ ଭାରତ ସମ୍ବନ୍ଧରେ ଲେଖିଛି ଏବଂ ମୋର କାହାଣୀର ଶେଷଅଂଶ ବିଶେଷ ଶିକ୍ଷାପ୍ରଦ ହୋଇନାହିଁ । ଭାରତ ଧର୍ଷଣାସ୍ପଦ ହୋଇପଡ଼ିଥିଲା, ପ୍ରତ୍ୟେକ ଦସ୍ୟୁ ଦୁଃସାହସିକ ବ୍ୟକ୍ତିର ଶିକାର ଥିଲା । ପୂର୍ବରେ ତାର ବଡ଼ ଭଉଣୀ ଚୀନ ଅଧିକ ଉନ୍ନତ ଅବସ୍ଥାରେ ଥିଲା ଏବଂ ଆମେ ବର୍ତ୍ତମାନ ଚୀନକୁ ଯିବା ।

ତୋର ମନେ ଥିବ ମିଙ୍ଗ ଅମଳର ସମୃଦ୍ଧିଶାଳୀ ବେଳ, କପରି ବ୍ୟଭିଚାର ଓ ଭେଦ ପ୍ରବେଶ କଲା ଏବଂ ଚୀନର ଉତ୍ତର ପଡ଼ୋଶୀ ମାଞ୍ଚୁମାନେ ଆସିଲେ ଏବଂ ଅଧିକାର କଲେ, ସେକଥା ମୁଁ ତୋତେ କହିଥିଲି (ଚିଠି ନମ୍ବର ୮୦) । ୧୬୫୦ ଖ୍ରୀ: ଠାରୁ ମାଞ୍ଚୁମାନେ ସମଗ୍ର ଚୀନରେ ଦୃଢ଼ରୂପେ ପ୍ରତିଷ୍ଠିତ ହେଲେ । ଏହି ଅର୍ଦ୍ଧ-ବିଦେଶୀ ବଂଶ ଅଧୀନରେ ଚୀନ ବଳଶାଳୀ ଏପରିକି ଆକ୍ରମଣଶୀଳ ହେଲା । ମାଞ୍ଚୁମାନେ ଏକ ନୂତନ ତେଜ ଆଣିଦେଲେ ଏବଂ ସେମାନେ ଚୀନର ଅଭ୍ୟନ୍ତର ଶାସନରେ ଯଥାସମ୍ଭବ କମ୍ ହସ୍ତକ୍ଷେପ କଲେ । ମାତ୍ର ତାଙ୍କର ଅତ୍ୟଧିକ ଶକ୍ତିକୁ ଉତ୍ତର-ପଶ୍ଚିମ ଓ ଦକ୍ଷିଣ ଦିଗରେ ନିଜର ସାମ୍ରାଜ୍ୟ ବିସ୍ତାର କରିବାରେ ଲଗାଇଲେ ।

ସାଧାରଣତଃ ଆରମ୍ଭ ବେଳେ ଏକ ନୂତନ ବଂଶର କେତେକ ଦକ୍ଷ ଶାସକ ଜାତ ହୁଅନ୍ତି ଏବଂ ପରେ ଗୁଡ଼ାଏ ଅକର୍ମଣ୍ୟ ଦେଖାଯାଆନ୍ତି । ସେହିପରି ମାଞ୍ଚୁମାନଙ୍କ ଭିତରେ କେତେକ ଅସାଧାରଣ ଦକ୍ଷତାସମ୍ପନ୍ନ ଓ ସମର୍ଥ ଶାସକ ଏବଂ ରାଜନୀତିଜ୍ଞ ଜାତ ହୋଇଥିଲେ । କାଙ୍ଗହି ଦ୍ୱିତୀୟ ସମ୍ରାଟ ଥିଲେ । ସେ ସିଂହାସନରେ ବସିଲା ବେଳକୁ ତାଙ୍କର ବୟସ ମୋଟେ ଆଠ ବର୍ଷ ହୋଇଥିଲା । ୬୧ ବର୍ଷ ପର୍ଯ୍ୟନ୍ତ ସେ ଏକ ସାମ୍ରାଜ୍ୟର ଅଧିପତି ହୋଇଥିଲେ । ଏହା ପୃଥିବୀର ଅନ୍ୟ କୌଣସି ସାମ୍ରାଜ୍ୟ ଅପେକ୍ଷା ବୃହତ ଓ ଅଧିକ ଲୋକବସତି ପୂର୍ଣ୍ଣଥିଲା; କିନ୍ତୁ ଏହି କାରଣରୁ ବା ତାଙ୍କର ସାମରିକ ଦକ୍ଷତା

ହେତୁ ଇତିହାସରେ ତାଙ୍କ ନାମ ଖ୍ୟାତ ନୁହେଁ । ସେ ତାଙ୍କର ରାଜନୀତି କୌଶଳ ଓ ଅଲୌକିକ ସାହିତ୍ୟିକ କାର୍ଯ୍ୟ ସକାଶେ ସ୍ମରଣୀୟ । ସେ ୧୬୬୧ରୁ ୧୭୨୨ ପର୍ଯ୍ୟନ୍ତ ସମ୍ରାଟ ଥିଲେ—ଅର୍ଥାତ୍ ୬୧ ବର୍ଷ ପର୍ଯ୍ୟନ୍ତ । ଫ୍ରାନ୍ସର "ମହାନ ସମ୍ରାଟ" ୧୪ଶ ଲୁଇଙ୍କର ସେ ସମସାମୟିକ ଥିଲେ । ଉଭୟେ ଅତିଦୀର୍ଘ କାଳ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଲୁଇ ଏହି ପ୍ରତିଯୋଗିତାରେ ଜୟୀ ହୋଇଥିଲେ । ସେ ୭୨ ବର୍ଷ କାଳ ରାଜତ୍ୱ କରି ଏକ ଦୃଷ୍ଟାନ୍ତ ରଖିଯାଇଛନ୍ତି । ଏହି ଦୁହିଙ୍କ ତୁଳନା କଲେ ବଡ଼ ଖୁସି ଲାଗେ; କିନ୍ତୁ ତୁଳନା ଲୁଇଙ୍କ ବିପକ୍ଷରେ ଯାଏ । ସେ ତାଙ୍କର ଦେଶକୁ ଧ୍ୱଂସ କରି ପକାଇ ଥିଲେ ଏବଂ ତାଙ୍କର ପ୍ରଚୁର ଋଣ ହେତୁ ଦେଶ ବୋଝରେ ନଇଁ ପଡ଼ିଥିଲା ଓ ଅବସନ୍ନ ହୋଇଯାଇଥିଲା । ସେ ଧର୍ମପ୍ରତି ବଡ଼ ଅସହିଷ୍ଣୁ ଥିଲେ । କାଙ୍ଗ୍ ହି ଜଣେ ନିଷ୍ଠାପର କନଫୁସିଆନ୍ ଥିଲେ; କିନ୍ତୁ ଅନ୍ୟ ଧର୍ମ ବିଶ୍ୱାସ ପ୍ରତି ସହିଷ୍ଣୁଭାବ ଦେଖାଉଥିଲେ । ତାଙ୍କ ଅଧୀନରେ ଓ ପ୍ରଥମ ଚାରିଜଣ ମାଞ୍ଚୁ ସମ୍ରାଟଙ୍କ ଅଧୀନରେ ମିଙ୍ଗ ସଂସ୍କୃତି କୌଣସି ପ୍ରକାର ବାଧା ପାଇ ନଥିଲା । ଏହା ଉଚ୍ଚ ସୋପାନରେ ରହିଥିଲା ଓ କେତେକ କ୍ଷେତ୍ରରେ ଏହାର ଉନ୍ନତି ହୋଇଥିଲା । ମିଙ୍ଗମାନଙ୍କ ଅମଳରେ ଶିଳ୍ପ, କଳା, ସାହିତ୍ୟ ଓ ଶିକ୍ଷା ବୃଦ୍ଧି ପାଇଲା । ଅପୂର୍ବ ମୃତ୍ତିକାପାତ୍ର ସବୁ ଗଢ଼ା ହେବା ଚାଲିଥିଲା । ରଙ୍ଗିନ ଚିତ୍ରର ମୁଦ୍ରଣ ଆବିଷ୍କାର କରାଗଲା ଏବଂ ଜେସୁଇଟ୍-ମାନଙ୍କଠାରୁ ତମ୍ବା ଖୋଳିବା ଶିକ୍ଷା କଲେ ।

ମାଞ୍ଚୁ ଶାସକମାନେ ଯେପରି ନିଜକୁ ସମ୍ପୂର୍ଣ୍ଣରୂପେ ଚୀନର ସଂସ୍କୃତି ସହିତ ମିଶାଇ ଦେଇଥିଲେ ସେଥିରେ ହିଁ ତାଙ୍କର ରାଜନୀତିପଣିଆ ଓ ସାଫଲ୍ୟ ନିହିତ ଥିଲା । ଚୀନର ଚିନ୍ତା ଓ ସଂସ୍କୃତି ଗ୍ରହଣ କରି ସେମାନେ ଅପେକ୍ଷାକୃତ ଅଳ୍ପ ସଭ୍ୟ ମାଞ୍ଚୁମାନଙ୍କଠାରେ ଥିବା କର୍ମଠତା ହରାଇ ନଥିଲେ । ତେଣୁ କାଙ୍ଗ୍ହି ଏକ ଅସାଧାରଣ ଓ ବିଚିତ୍ର ମିଶ୍ରଣ ଥିଲେ—ଦର୍ଶନ ଓ ସାହିତ୍ୟର ଏକ ଅଧ୍ୟବସାୟୀ ଛାତ୍ର ଭାବରେ ସାଂସ୍କୃତିକ କାର୍ଯ୍ୟରେ ନିମଗ୍ନ ଥିଲେ ଏବଂ ଜଣେ ସୁଦକ୍ଷ ସାମରିକ କର୍ତ୍ତାରୂପେ ସେ ଏକପ୍ରକାର ଅଭିଯାନପ୍ରିୟ ଥିଲେ । ସେ ସାହିତ୍ୟ ଓ କଳାର କେବଳ ପଲ୍ଲବଗ୍ରାହୀ ବା ବାହ୍ୟିକ ପ୍ରେମୀ ନଥିଲେ । ତାଙ୍କର ସାହିତ୍ୟିକ କାର୍ଯ୍ୟକଳାପ ଭିତରେ ଯେଉଁ ତିନୋଟି କାର୍ଯ୍ୟ ତାଙ୍କ ପରାମର୍ଶ ଅନୁସାରେ ଓ ଅନେକ ସମୟରେ ତାଙ୍କ ବ୍ୟକ୍ତିଗତ ପରିଚାଳନା ଅଧୀନରେ ହୋଇଥିଲା ସେଥିରୁ ତାଙ୍କର ଆଗ୍ରହ ଓ ପାଣ୍ଡିତ୍ୟର ଗଭୀରତା ସମ୍ବନ୍ଧରେ ତୋର କିଛି ଧାରଣା ଜାତ ହେବ ।

ତୋର ମନେଥିବ, ଚୀନ ଭାଷାରେ ଅକ୍ଷର ନାହିଁ; ଏହା କେତେକ ସଙ୍କେତ ସମନ୍ୱିତ । କାଙ୍ଗ୍ ହି ଏହି ଭାଷାର ଏକ ଅମରକୋଷ ବା ଅଭିଧାନ ପ୍ରସ୍ତୁତ କରିଥିଲେ । ଏହା ଏକ ପ୍ରକାଣ୍ଡ କାର୍ଯ୍ୟ । ୪୦୦୦ରୁ ଅଧିକ ସଙ୍କେତ ଏଥିରେ ଥିଲା । ଅସଂଖ୍ୟ ବାକ୍ୟାଂଶରେ ତାର ବ୍ୟାଖ୍ୟା ଦିଆଯାଇଥିଲା । ଆଜି ପୁଣି ଏପରି କୌଣସି ଅଭିଧାନ ହୋଇନାହିଁ ବୋଲି କୁହାଯାଏ ।

କାଙ୍ଗ୍ ହି ଆଉ ଏକ ପ୍ରକାଣ୍ଡ ସଚିତ୍ର ଅଭିଧାନ (Encyclopaedia) ତିଆରି କରିଥିଲେ। ଏହା ଏକ ଅଦ୍ଭୁତ କାର୍ଯ୍ୟ ଏବଂ ୫୦୦୦ ଖଣ୍ଡ ହୋଇଥିଲା । ଏହି ବହିଗୁଡ଼ିକରେ ଗୋଟିଏ ପୁରା ଲାଇବ୍ରେରୀ; ପ୍ରତ୍ୟେକ ଜିନିଷ ଏଥିରେ ମିଳେ, ପ୍ରତ୍ୟେକ ବିଷୟ ଏଥିରେ ଆଲୋଚିତ ହୋଇଛି । କାଙ୍ଗ୍ ହିଙ୍କ ମୃତ୍ୟୁ ପରେ ତମ୍ବା ପାତରୁ ଏହି ପୁସ୍ତକ ପ୍ରକାଶିତ ହୋଇଥିଲା ।

ତାଙ୍କର ତୃତୀୟ ପ୍ରଧାନ କାର୍ଯ୍ୟ ବିଷୟରେ ମୁଁ କହିବି । ସେହାମଧ୍ୟ ସମଗ୍ର ଚୀନ ସାହିତ୍ୟର ଏକ ସଂଯୋଜନା; ଅର୍ଥାତ୍ ଏହା ଏକ ପ୍ରକାର ଭାଷାକୋଷ; ଏଥିରେ ସବୁ ପଦ ଓ ବାକ୍ୟାଂଶ ସଂଗୃହୀତ ହୋଇଥିଲା ଏବଂ ତୁଳନା କରାଯାଇଥିଲା । ଏହାମଧ୍ୟ ଏକ ଅସାଧାରଣ କାର୍ଯ୍ୟ, ଯେହେତୁ ଏଥିଲାଗି ସମଗ୍ର ସାହିତ୍ୟର ଘନିଷ୍ଠ ଅଧ୍ୟୟନ ଆବଶ୍ୟକ ହୋଇଥିଲା । କବି, ଐତିହାସିକ ଓ ପ୍ରବନ୍ଧ ଲେଖକଙ୍କ ଲେଖାରୁ ପୂର୍ଣ୍ଣ ଅଂଶମାନ ଏଥିରେ ଉଦ୍ଧୃତ କରାଯାଇଥିଲା ।

କାଙ୍ଗ୍ ହିଙ୍କର ଅନେକ ସାହିତ୍ୟିକ କାର୍ଯ୍ୟକଳାପ ଥିଲା; ମାତ୍ର ଏହି ତିନୋଟି ଯେକୌଣସି ଲୋକକୁ ମୁଗ୍ଧ କରିଦେବା ପାଇଁ ଯଥେଷ୍ଟ । ଆଜିକାଲି ଏହା ସହିତ ତୁଳନା କଲାପରି କୌଣସି ପୁସ୍ତକ ଥିବାର ମୋର ମନେହୁଏନା, କେବଳ ବିରାଟ 'ଅକ୍ସଫୋର୍ଡ଼ ଇଂରେଜି ଭାଷାକୋଷ' ଅବଶ୍ୟ ଏକ ବିରାଟ ଗ୍ରନ୍ଥ. ବହୁସଂଖ୍ୟକ ବିଦ୍ୱାନ ଲୋକ ୫୦ ବର୍ଷରୁ ଅଧିକ କାଳ ପରିଶ୍ରମକରି ଏହାକୁ ସଂଗ୍ରହ କରିଛନ୍ତି ଏବଂ ଅଳ୍ପ କେତେବର୍ଷ ପୂର୍ବେ ଏହା ସମ୍ପୂର୍ଣ୍ଣ ହୋଇଥିଲା ।

କାଙ୍ଗ୍ ହି ଖ୍ରୀଷ୍ଟଧର୍ମ ଓ ଖ୍ରୀଷ୍ଟିୟାନ ପାଦ୍ରିମାନଙ୍କପ୍ରତି ଭଲ ବ୍ୟବହାର କରୁଥିଲେ । ସେ ବିଦେଶୀ ବେପାରକୁ ଉତ୍ସାହିତ କରିଥିଲେ ଏବଂ ଚୀନର ସମସ୍ତ ବନ୍ଦର ଏଥିଲାଗି ଉନ୍ମୁକ୍ତ କରିଦେଇଥିଲେ । ମାତ୍ର ସେ ଜାଣିପାରିଲେ ଯେ ୟୁରୋପୀୟମାନେ ଖରାପ ଆଚରଣ କରୁଛନ୍ତି ଏବଂ ସେମାନଙ୍କୁ ରୋକିଦେବା ଦରକାର । ପାଦ୍ରିମାନେ ଆଡ଼ମ୍ବରରେ ସୁବିଧା କରିବା ନିମନ୍ତେ ନିଜଦେଶ ସରକାରର ସାମ୍ରାଜ୍ୟବାଦୀମାନଙ୍କ ସହିତ ଚକ୍ରାନ୍ତ କରୁଛନ୍ତି ବୋଲି ସେ ସନ୍ଦେହ କରିଥିଲେ । ଏହି ସନ୍ଦେହ ପାଇଁ କାରଣ ଯେ ନଥିଲା ତାହା ନୁହେଁ । ଏଥିଲାଗି ଖ୍ରୀଷ୍ଟଧର୍ମ ପ୍ରତି ସହାନୁଭୂତି ତାଙ୍କୁ ତ୍ୟାଗ କରିବାକୁ ପଡ଼ିଲା । ପରେ କାଣ୍ଟନର ଜଣେ ଚୀନା ସାମରିକ କର୍ମଚାରୀଠାରୁ ଏକ ବିବରଣୀ ପାଇ ତାଙ୍କର ଏହି ସନ୍ଦେହ ଦୃଢ଼ୀଭୂତ ହେଲା । କିପରି ଭାବରେ ଫିଲିପାଇନ ଓ ଜାପାନରେ ୟୁରୋପୀୟ ସରକାର ଏବଂ ତାଙ୍କର ବଣିକ ଓ ପାଦ୍ରିମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥିଲା, ତାହା ଏହି ରିପୋର୍ଟରେ ବର୍ଣ୍ଣାଇ ଦିଆଯାଇଥିଲା । ତେଣୁ ଏହି କର୍ମଚାରୀ ସୁପାରିଶ କରିଥିଲେ ଯେ ଆକ୍ରମଣ ଓ ବିଦେଶୀ ଚକ୍ରାନ୍ତରୁ ସାମ୍ରାଜ୍ୟକୁ ରକ୍ଷାକରିବା ନିମନ୍ତେ ବିଦେଶୀ ବେପାର ସୀମାବଦ୍ଧ କରିଦେବା ଉଚିତ ଏବଂ ଖ୍ରୀଷ୍ଟଧର୍ମ ପ୍ରଚାର ବନ୍ଦ ହେବା ଦରକାର ।

ଏହି ରିପୋର୍ଟ ୧୭୧୭ରେ ଦିଆଯାଇଥିଲା । ଏଥିରୁ ପୂର୍ବୀୟ ରାଜ୍ୟଗୁଡ଼ିକରେ ବିଦେଶୀ ଚକ୍ରାନ୍ତ ବିଷୟରେ ଅନେକ ରହସ୍ୟ ଜଣାପଡ଼େ ଏବଂ କେଉଁ ଉଦ୍ଦେଶ୍ୟରେ ଏହି ଦେଶଗୁଡ଼ିକ

ବିଦେଶୀ ବେପାର ଓ ଖ୍ରୀଷ୍ଟଧର୍ମ ପ୍ରଚାର ସୀମାବଦ୍ଧ କରିବାକୁ ବାଧ୍ୟହେଲେ ତାହା ଜଣାପଡ଼େ । ତୋର ମନେଥିବ, ଏହିପରି ଏକ ଅବସ୍ଥା ଜାପାନରେ ଘଟିଲା; ଯାହାଫଳରେ ଜାପାନ ନିଜ ଦେଶକୁ ଆବଦ୍ଧ କରି ରଖିଦେଲା । ଅନେକ ସମୟରେ କୁହାଯାଏ ଯେ ଚୀନବାସୀ ଓ ଅନ୍ୟମାନେ ପଶ୍ଚାତ୍‌ଗାମୀ, ଅଜ୍ଞ, ବିଦେଶୀମାନଙ୍କୁ ଘୃଣା କରନ୍ତି ଏବଂ ବେପାରରେ ବାଧା ପହଞ୍ଚାନ୍ତି । ପ୍ରକୃତରେ ଦେଖିବାକୁଗଲେ ଆମ ଇତିହାସ ଆଲୋଚନାରୁ ଏହା ସ୍ପଷ୍ଟରୂପେ ଜଣାଏଉଛି ଯେ ଭାରତ, ଚୀନ ଓ ଅନ୍ୟ ଦେଶ ଭିତରେ ଆଦମକାଳରୁ ଯଥେଷ୍ଟ ସମ୍ପର୍କ ଥିଲା । ବିଦେଶୀମାନଙ୍କୁ ବା ବିଦେଶୀ ବେପାରକୁ ଘୃଣା କରିବାର କୌଣସି ପ୍ରଶ୍ନ ନଥିଲା । ବାସ୍ତବିକ ଦୀର୍ଘକାଳ ପର୍ଯ୍ୟନ୍ତ ଭାରତ ଅନେକ ବିଦେଶୀ ବଜାର ଅଧିକୃତ କରିଥିଲା । ବିଦେଶୀ ସଙ୍ଘ ସବୁ ପାଶ୍ଚାତ୍ୟ ଇଉରୋପୀୟ ଶକ୍ତିମାନଙ୍କର ସାମ୍ରାଜ୍ୟବାଦୀ ବିସ୍ତୃତିକାମର ସ୍ୱୀକୃତ ଚିହ୍ନା ବୋଲି ଯେତେବେଳେ ଜଣାପଡ଼ିଲା, ସେତେବେଳେ ପ୍ରାଚ୍ୟରେ ସେମାନଙ୍କୁ ସନ୍ଦେହ କରାଗଲା ।

କାଣ୍ଟନ କର୍ମଚାରୀଙ୍କ ରିପୋର୍ଟ ଚୀନର 'ଗ୍ରାଣ୍ଡ କାଉନ୍‌ସିଲ ଅଫ୍ ଷ୍ଟେଟ୍' ବିଚାରକଲା ଏବଂ ମଞ୍ଜୁର କଲା । ତେଣୁ ସମ୍ରାଟ କାଙ୍ଗ୍ ହି ସେହି ଅନୁସାରେ କାର୍ଯ୍ୟ ବିଧାନ କଲେ ଏବଂ ବିଦେଶୀ ବେପାର ଓ ପାଦ୍ରୀଙ୍କ କାର୍ଯ୍ୟକଳାପ କଠୋର ଭାବରେ କଟକଣା କରି ହୁକୁମ ଜାରି କରିଦେଲେ ।

ମୁଁ କିଛିକ୍ଷଣ ପାଇଁ ଖାସ ଚୀନ କଥା ବର୍ତ୍ତମାନ ଛାଡ଼ି ଦେବି ଏବଂ ତୋତେ ଏସିଆର ଉତ୍ତର ସାଇବେରିଆକୁ ନେଇଯିବି ଏବଂ ସେଠାରେ କଣ ହେଉଥିଲା, କହିବି । ସାଇବେରିଆର ବିସ୍ତୃତ ଅଞ୍ଚଳ ପୂର୍ବରେ ଚୀନକୁ ପଶ୍ଚିମର ରୁଷ ସହିତ ସମ୍ପୃକ୍ତ କରେ । ମୁଁ ତୋତେ କହିଛି ଯେ ଚୀନର ମାଞ୍ଚୁ ସମ୍ରାଜ୍ୟ ଏକ ଆକ୍ରମଣଶୀଳ ସାମ୍ରାଜ୍ୟ ଥିଲା । ମାଞ୍ଚୁରିଆ ଅବଶ୍ୟ ଏହାର ଅନ୍ତର୍ଗତ ଥିଲା; ଏହା ମଙ୍ଗୋଲିଆ ଓ ଆହୁରି ଦୂରକୁ ବିସ୍ତୃତ ହେଲା । ରୁଷ ମଧ୍ୟ ସୁବର୍ଣ୍ଣବର୍ଣ୍ଣ ମଙ୍ଗୋଲମାନଙ୍କୁ ତଡ଼ିଦେଇ ସାରି ଏକ ଶକ୍ତିଶାଳୀ କେନ୍ଦ୍ରୀଭୂତ ସରକାର ହେଲା ଏବଂ ସାଇବେରିଆ ସମତଳ ପ୍ରଦେଶ ଅତିକ୍ରମ କରି ପୂର୍ବ-ଦିଗକୁ ବିସ୍ତାର ଲାଭ କରିଥିଲା । ବର୍ତ୍ତମାନ ଦୁଇଟି ସମ୍ରାଜ୍ୟ ସାଇବେରିଆରେ ମିଳିଛନ୍ତି ।

ଏସିଆରେ ମଙ୍ଗୋଲମାନେ ଅତିଶୀଘ୍ର ଦୁର୍ବଳ ହୋଇ ପଡ଼ିବା ଓ ତାଙ୍କର ପତନ ହେବା ଇତିହାସରେ ଏକ ଆଶ୍ଚର୍ଯ୍ୟ ଘଟଣା । ଯେଉଁ ଲୋକେ ଏସିଆ ଓ ୟୁରୋପ କମ୍ପାଇ ଦେଇଥିଲେ ଏବଂ ଚେଙ୍ଗିଜ ଓ ତାଙ୍କ ବଂଶଧର ଅଧୀନରେ ପରିଚିତ ଦୁନିଆର ଅଧିକାଂଶ ଜୟ କରିଥିଲେ, ସେମାନେ ଏବେ କେଉଁ ଅତଳଗର୍ଭରେ ଲୁଚିଗଲେ । ତୈମୁରଙ୍କ ଅଧୀନରେ କ୍ଷଣକାଳ ପାଇଁ ପୁନର୍ବାର ସେମାନଙ୍କର ଆବିର୍ଭାବ ହୋଇଥିଲା; ମାତ୍ର ସଙ୍ଗେ ସଙ୍ଗେ ତାଙ୍କ ସାମ୍ରାଜ୍ୟର ବି ମୃତ୍ୟୁ ହେଲା । ତାଙ୍କ ପରେ ତାଙ୍କ ବଂଶଧରମାନଙ୍କୁ ତିମୁରିଦ ବୋଲି କୁହାଯାଉଥିଲା, କେତେକ ବଂଶଧର ମଧ୍ୟଏସିଆରେ ରାଜତ୍ୱ କଲେ ଏବଂ ଆମେ ଜାଣୁ ଯେ ଏହି ରାଜଦରବାରଗୁଡ଼ିକରେ ଏକ ବିଖ୍ୟାତ ଅଙ୍କନ କଳା ବୃଦ୍ଧି ଲଭିଥିଲା ।

ବାବର ତିମୁରବଂଶ ଥିଲେ; ସେ ଭାରତକୁ ଆସିଥିଲେ । ଯାହାହେଉ ତିମୁରବଂଶ ଶାସକମାନଙ୍କ ହସ୍ତରୁ ମଙ୍ଗୋଲ ଜାତିର ସାରା ଏସିଆରେ ବୃଦ୍ଧିଠାରୁ ତାଙ୍କ ମାତୃଭୂମି ମଙ୍ଗୋଲିଆ ପର୍ଯ୍ୟନ୍ତ ସବୁଠାରେ ପତନ ହେଲା ଏବଂ ତାଙ୍କର ସମସ୍ତ ଗୁରୁତ୍ୱ ଚାଲିଗଲା । ସେମାନେ କାହିଁକି ଏପରି ହେଲେ କେହି ଜାଣିଥିବା ପରି ବୋଧ ହୁଏନାହିଁ । କେତେକ ଲୋକ ମତ ଦିଅନ୍ତି ଯେ ଜଳବାୟୁ ପରିବର୍ତ୍ତନ ଗୋଟିଏ କାରଣ ହୋଇପାରେ; ଅନ୍ୟମାନେ ବିଭିନ୍ନ ମତପ୍ରକାଶ କରନ୍ତି । ଯାହାହେଉ, ପୁରାତନ ବିଜେତା ଓ ଆକ୍ରମଣକାରୀଙ୍କ ଉପରେ ଏବେ ଦକ୍ଷିଣ ଓ ବାମ ଉଭୟ ଦିଗରୁ ଆକ୍ରମଣ ହେଲା ।

ମଙ୍ଗୋଲ ସାମ୍ରାଜ୍ୟର ପତନ ପରେ ପ୍ରାୟ ୨୦୦ ବର୍ଷ ପର୍ଯ୍ୟନ୍ତ ଏସିଆ ମଧ୍ୟଦେଇ ସ୍ଥଳପଥ ବନ୍ଦ ହୋଇଗଲା । ଯାହାହେଉ ୧୬ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରୁଷବାସୀ ଚୀନକୁ ସ୍ଥଳପଥରେ ଜଣେ ରାଜଦୂତ ପ୍ରେରଣ କରିଥିଲେ । ସେମାନେ ମିଙ୍ଗ୍ ସମ୍ରାଟଙ୍କ ସହିତ କୂଟନୈତିକ ସମ୍ପର୍କ ସ୍ଥାପନ କରିବା ନିମନ୍ତେ ଚେଷ୍ଟା କରିଥିଲେ; କିନ୍ତୁ ସଫଳ ହୋଇ ନଥିଲେ । ଅଳ୍ପ କେତେ ଦିନ ପରେ ଏର୍ମାରମାକ୍ ନାମକ ଏକ ରୁଷୀୟ ଦସ୍ୟୁ କସାକ୍‌ମାନଙ୍କୁ ସାଙ୍ଗରେ ନେଇ ୟୁରାଲ ପର୍ବତ ଅତିକ୍ରମ କରି ଆସିଲେ ଏବଂ କ୍ଷୁଦ୍ର ଶିବିର ରାଜ୍ୟ ଦଖଲ କଲେ । ଏହି ରାଜ୍ୟ ନାମରୁହିଁ ସାଇବେରିଆ ନାମ ହୋଇଛି ।

ଏହା ୧୫୮୧ରେ ହୋଇଥିଲା ଏବଂ ସେହି ଦିନଠାରୁ ରୁଷଲୋକେ ଆହୁରି ପୂର୍ବକୁ ଯାଇଛନ୍ତି । ଶେଷରେ ପ୍ରାୟ ୫୦ ବର୍ଷ ଭିତରେ ସେମାନେ ପ୍ରଶାନ୍ତ ମହାସାଗରରେ ପହଞ୍ଚିଥିଲେ । ଅଳ୍ପଦିନ ପରେ ଆମୁର ଉପତ୍ୟକାରେ ଚୀନାମାନଙ୍କ ସହିତ ସେମାନଙ୍କର ସଂଘର୍ଷ ହେଲା ଏବଂ ଦୁହିଁଙ୍କ ମଧ୍ୟରେ ଯୁଦ୍ଧ ଲାଗିଲା । ଫଳସ୍ୱରୂପ; ରୁଷ ପରାସ୍ତ ହେଲା । ୧୬୮୯ରେ ଦୁଇ ଦେଶ ଭିତରେ ଏକ ସନ୍ଧି ହେଲା । ଏହାକୁ ନେରଚିନସ୍କ ସନ୍ଧି କହନ୍ତି । ସୀମା ନିର୍ଦ୍ଦିଷ୍ଟ କରିଦିଆଗଲା ଏବଂ ବେପାର ବ୍ୟବସ୍ଥା ହେଲା । ଏକ ୟୁରୋପୀୟ ଦେଶ ସହିତ ଚୀନର ଏହି ପ୍ରଥମ ସନ୍ଧି । ଏହି ସନ୍ଧିରେ ରୁଷର ଅଗ୍ରଗତି ରୋଧ ହେଲା; ମାତ୍ର ପ୍ରଚୁର ପରିମାଣରେ ସ୍ଥଳ ବେପାର ଚାଲିଲା । ସେତେବେଳେ ପିଟର୍ ଦି ଗ୍ରେଟ୍ ରୁଷର ଜାର୍ ଥିଲେ ଏବଂ ସେ ଚୀନ ସହିତ ଘନିଷ୍ଠ ସମ୍ପର୍କ ବୃଦ୍ଧି କରିବା ନିମନ୍ତେ ବ୍ୟାକୁଳ ଥିଲେ । ସେ କାଙ୍ଗ୍‌ହିଙ୍କ ନିକଟକୁ ଦୁଇଜଣ ରାଜଦୂତ ପଠାଇଲେ ଏବଂ ତା'ପରେ ଚୀନ ରାଜଦରବାରରେ ଏକ ସ୍ଥାୟୀ ପ୍ରତିନିଧି ରଖିଥିଲେ ।

ଆଦିମକାଳରୁ ଚୀନ ବିଦେଶୀ ରାଜଦୂତଙ୍କୁ ଗ୍ରହଣ କରିବାର ଅଭ୍ୟାସ କରିଆସିଛି । ମୋର ମନେହୁଏ, ମୁଁ ମୋର ଏକ ଚିଠିରେ ଉଲ୍ଲେଖ କରିଛି ଯେ ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ରୋମାନ୍ ସମ୍ରାଟ ମାର୍କସ ଅରେଲିୟସ୍ ଆଣ୍ଟୋନିୟସ୍ ଏକ ରାଜଦୂତ ପ୍ରେରଣ କରିଥିଲେ । ଏହା ଦେଖିଲେ ଆନନ୍ଦ ଲାଗେ ଯେ ୧୬୫୬ରେ ଡଚ୍ ଓ ରୁଷିୟ ରାଜଦୂତ-ମାନେ ଚୀନ ଦରବାରକୁ ଯାଇଥିଲେ ଏବଂ ସେଠାରେ ସେମାନେ ମହାନ୍ ମୋଗଲଙ୍କଠାରୁ ପ୍ରତିନିଧି ଆସିଥିବାର ଦେଖିଥିଲେ । ସାହାଜାହାନ ଅବଶ୍ୟ ଏହି ପ୍ରତିନିଧି ପଠାଇଥିବେ ।

## ୯୪ : ଚୀନ ସମ୍ରାଟଙ୍କର ଇଂରେଜ ରାଜାଙ୍କ ନିକଟକୁ ପତ୍ର

ସେପ୍ଟେମ୍ବର ୧୬, ୧୯୩୨

ମାଞ୍ଚୁ ସମ୍ରାଟମାନେ ଅସାଧାରଣ ଭାବରେ ଦୀର୍ଘକାଳ ରହିଥିଲେ ପରି ଜଣାପଡ଼େ । କାଙ୍ଗ୍ ହିଙ୍କ ନାତି ଚଏନ୍‌ଲୁଙ୍ଗ ଚତୁର୍ଥ ସମ୍ରାଟ ଥିଲେ । ସେ ମଧ୍ୟ ଦୀର୍ଘ ୬୦ ବର୍ଷ କାଳ ୧୭୩୬ରୁ ୧୭୯୬ ପର୍ଯ୍ୟନ୍ତ ରାଜୁତି କରିଥିଲେ । ଅନ୍ୟ ଭାବରେ ମଧ୍ୟ ସେ ତାଙ୍କର ପିତାମହଙ୍କ ଭଳି ଥିଲେ । ସାହିତ୍ୟ କାର୍ଯ୍ୟକଳାପ ଏବଂ ସାମ୍ରାଜ୍ୟବିସ୍ତୃତି ଏହି ଦୁଇଟି କାର୍ଯ୍ୟରେ ସେ ମୁଖ୍ୟଭାବରେ ଆଗ୍ରହ ଦେଖାଉଥିଲେ । ସଞ୍ଚୟ କରି ରକ୍ଷା କରିବାର ଉପଯୁକ୍ତ ସମସ୍ତ ସାହିତ୍ୟିକ ପୁସ୍ତକମାନଙ୍କର ସେ ଅନୁସନ୍ଧାନ କରିଥିଲେ । ସେସବୁ ସଂଗୃହୀତ ହୋଇଥିଲା ଏବଂ ଅତି ବିଶଦ୍‌ଭାବରେ ତାଲିକା କରାହୋଇଥିଲା । ପୁସ୍ତକ ତାଲିକା ଶବ୍ଦଟି ଏଥିପାଇଁ ଉପଯୋଗୀ ନୁହେଁ, ଯେହେତୁ ପ୍ରତ୍ୟେକ କାର୍ଯ୍ୟ ସମ୍ବନ୍ଧରେ ଯେତେ ଘଟଣା ଜଣାଯାଇଥିଲା ତାହା ଲିପିବଦ୍ଧ କରାଯାଇଥିଲା ଏବଂ ସେଥିସହିତ ସମାଲୋଚନାମୂଳକ ମନ୍ତବ୍ୟସବୁ ଯୋଗ କରାଯାଇଥିଲା । ଏହି ରାଜକୀୟ ଲାଇବ୍ରେରୀର ବିସ୍ତୃତ ଭାବରେ ବର୍ଣ୍ଣିତ ପୁସ୍ତକ ତାଲିକା ଚାରୋଟି ବିଭାଗରେ ବିଭକ୍ତ ହୋଇଥିଲା :— ପୁରାତନ ସାହିତ୍ୟ ଅର୍ଥାତ୍ କନ୍‌ଫୁସିଆନିଜିମ୍, ଇତିହାସ, ଦର୍ଶନ ଏବଂ ସାଧାରଣ ସାହିତ୍ୟ । କୁହାଯାଏ ଯେ, ଏହି କାର୍ଯ୍ୟପରି ଅନ୍ୟ କାର୍ଯ୍ୟ ଆଉ କେଉଁଠି ନାହିଁ ।

ଏହି ସମୟରେ ମଧ୍ୟ ଚୀନଭାଷାରେ ଶ୍ରେଷ୍ଠଗଳ୍ପ ଓ ନାଟକମାନ ଲେଖା ହୋଇଥିଲା ଏବଂ ସେଗୁଡ଼ିକ ଖୁବ୍ ଉଚ୍ଚ ଦରର ହୋଇଥିଲା । ଆହୁରି ମଜାର କଥା ହେଉଛି ଯେ ଇଂଲଣ୍ଡରେ ମଧ୍ୟ ସେତିକିବେଳେ ଉପନ୍ୟାସ ଲେଖା ଚାଲିଥିଲା । ଇଉରୋପରେ ଚୀନା ବାସନ ଏବଂ ଅନ୍ୟ କଳାକାର୍ଯ୍ୟର ଖୁବ୍ ଚାହିଦା ଥିଲା ଏବଂ ଏହାର ବେପାର ବରାବର ଚାଲିଥିଲା । ଚାହା ବେପାର ଆରମ୍ଭ ଅତ୍ୟନ୍ତ ଆମୋଦଦାୟକ । ଏହା ପ୍ରଥମ ମାଞ୍ଚୁ ସମ୍ରାଟଙ୍କ କାଳରେ ଆରମ୍ଭ ହୋଇଥିଲା । ସମ୍ଭବତଃ ଦ୍ୱିତୀୟ ଚାର୍ଲସଙ୍କ ରାଜୁତି କାଳରେ ଚାହା ଇଂଲଣ୍ଡରେ ପହଞ୍ଚିଥିଲା । ଇଂରେଜୀ ଭାଷାରେ ସାମୁଏଲ ପେପିସ୍ ନାମକ ଜଣେ ପ୍ରସିଦ୍ଧ ଡାଏରି ଲେଖକ ୧୬୬୦ରେ ପ୍ରଥମ ଥର ପାଇଁ ଚାହା ପିଇବା କଥା ତାଙ୍କ ଡାଏରିରେ ଉଲ୍ଲେଖ କରିଛନ୍ତି । ଏହା "ଚାହା, ଚୀନର ପିଇବା ଜିନିଷ" (Tea—a Chinese drink) ବୋଲି ଉଲ୍ଲେଖ ରହିଛି । ପ୍ରଚୁର ପରିମାଣରେ ଚାହା ବେପାର ବୃଦ୍ଧି ପାଇଲା ଏବଂ ୨୦୦ ବର୍ଷ ପରେ ୧୮୬୦ରେ ଫୁଚୌ ନାମକ କେବଳ ଗୋଟିଏ ଚୀନା ବନ୍ଦରରୁ ଏକ ଋତୁରେ ଦଶ କୋଟି ପାଉଣ୍ଡ ଚାହା ରପ୍ତାନି ହୋଇଥିଲା । ତା'ପରେ ଅନ୍ୟ ସ୍ଥାନମାନଙ୍କରେ ବି ଚାହା ଚାଷ ହେଲା ଏବଂ ତୁ ଜାଣୁ ବର୍ତ୍ତମାନ ଏହା ଭାରତ ଓ ସିଂହଳରେ ବିସ୍ତୃତ ଭାବରେ ଚାଷ କରାଯାଉଛି ।

ଚିଏନ୍‌ଲୁଙ୍ଗ ମଧ୍ୟଏସିଆରେ ତୁର୍କୀସ୍ଥାନ ଜୟ କରି ଏବଂ ତିବ୍ବତ ଦଖଲ କରି ନିଜର ସାମ୍ରାଜ୍ୟ ବଢ଼ାଇଥିଲେ । କେତେ ବର୍ଷ ପରେ ୧୭୯୦ରେ ନେପାଳର ଗୁର୍ଖାମାନେ ତିବ୍ବତ ଆକ୍ରମଣ କଲେ । ତେଣୁ ଚିଏନ୍‌ଲୁଙ୍ଗ ଗୁର୍ଖାମାନଙ୍କୁ କେବଳ ଯେ ତିବ୍ବତରୁ ତଡ଼ିଦେଲେ ତାହା ନୁହେଁ, ସେମାନଙ୍କୁ ଅନୁସରଣ କରି ହିମାଳୟ ଉପରେ ନେପାଳ ଭିତରକୁ ଗଲେ ଏବଂ ନେପାଳକୁ ଚୀନ ସାମ୍ରାଜ୍ୟର ଏକ ଅଧୀନ ରାଜ୍ୟ ହେବାକୁ ବାଧ୍ୟ କରିଥିଲେ । ଏହି 'ନେପାଳ ବିଜୟ' ଏକ ଅଲୌକିକ କାର୍ଯ୍ୟ । ଏକ ଚୀନ ସେନା ପକ୍ଷରେ ତିବ୍ବତ ଅତିକ୍ରମ କରିବା, ପୁଣି ତା'ପରେ ହିମାଳୟକୁ ଯାଇ ଗୁର୍ଖାଙ୍କ ପରି ଯୁଦ୍ଧପ୍ରିୟ ଜାତିକୁ ତାଙ୍କ ନିଜ ରାଜ୍ୟରେ ପରାସ୍ତ କରିବା ଅତି ଅଦ୍ଭୁତ କାର୍ଯ୍ୟ । ଏପରି ହେଲା ଯେ, ୨୨ ବର୍ଷ ପରେ ୧୮୧୪ରେ ଭାରତରେ ନେପାଳ ସହିତ ଇଂରେଜମାନଙ୍କର ଗୋଳମାଳ ଲାଗିଲା । ସେମାନେ ନେପାଳକୁ ଏକ ସେନା ପଠାଇଲେ; ମାତ୍ର ଏମାନଙ୍କ ପକ୍ଷରେ ହିମାଳୟ ଅତିକ୍ରମ କରିବାକୁ ନପଡ଼ିଥିଲେ ମଧ୍ୟ ଏମାନଙ୍କୁ ଅତ୍ୟଧିକ ଅସୁବିଧା ଭୋଗ କରିବାକୁ ପଡ଼ିଥିଲା ।

୧୭୯୬ରେ ଚିଏନ୍‌ଲୁଙ୍ଗଙ୍କ ରାଜତ୍ୱ ଶେଷ ବେଳକୁ ପ୍ରତ୍ୟକ୍ଷ ଭାବରେ ତାଙ୍କଦ୍ୱାରା ଶାସିତ ସାମ୍ରାଜ୍ୟ ମଧ୍ୟରେ ମାଞ୍ଚୁରିଆ, ମଙ୍ଗୋଲିଆ, ତିବ୍ବତ ଓ ତୁର୍କୀସ୍ଥାନ ଅନ୍ତର୍ଭୁକ୍ତ ଥିଲା । କୋରିଆ, ଆନାମ, ଶ୍ୟାମ ଓ ବର୍ମା ତାଙ୍କର କରଦ ରାଜ୍ୟ ଥିଲା ଓ କର୍ତ୍ତୃତ୍ୱ ସ୍ୱୀକାର କରୁଥିଲା; କିନ୍ତୁ ବିଜୟ ଓ ସାମରିକ ଗୌରବ କାମନା ଏକ ବ୍ୟୟସାଧ୍ୟ କ୍ରୀଡ଼ା । ଏଗୁଡ଼ିକରେ ଅତ୍ୟଧିକ ବ୍ୟୟ ହୁଏ ଏବଂ ଟିକସ ବୋଝ ବଢ଼େ । ସର୍ବଦା ଏହି ବୋଝ ଅଧିକ ଭାବରେ ଦରିଦ୍ରତମ ଲୋକ ଉପରେ ପଡ଼େ । ସେତେବେଳେ ଆର୍ଥିକ ଅବସ୍ଥା ମଧ୍ୟ ପରିବର୍ତ୍ତନ ହେଉଥିଲା ଏବଂ ଏହା ସାଙ୍ଗକୁ ପୁଣି ଅସନ୍ତୋଷ ଯୋଗ ହେଲା । ସମସ୍ତ ଦେଶରେ ଗୁପ୍ତ ସମିତିମାନ ଗଢ଼ାହେଲା । ଇତିହାସ ପରି ଚୀନରେ ଗୁପ୍ତ ସମିତି ପାଇଁ ଗୋଟିଏ ବେଶ ଖ୍ୟାତି ରହିଛି । ଏଥିରୁ କେତେଗୁଡ଼ି‌ର ନାମ ଅତ୍ୟନ୍ତ ଆଗ୍ରହଜନକ; ହ୍ୱାଇଟ୍ ଲିଲି ସୋସାଇଟି, ସୋସାଇଟି ଅଫ୍ ଡ଼ିଭାଇନ୍ ଜଷ୍ଟିସ୍, ହ୍ୱାଇଟ ଫିଦାର ସୋସାଇଟି ଏବଂ ହେଭନ୍ ଏଣ୍ଡ ଆର୍ଥ ସୋସାଇଟି ।

ଇତ୍ୟବସରେ ସମସ୍ତ କ୍ୟାଣ୍ଟନରେ ବିଦେଶୀ ବେପାର ବୃଦ୍ଧି ପାଉଥିଲା । ଏହିସବୁ କଟକଣା ହେତୁ ବିଦେଶୀ ବଣିକଙ୍କ ଭିତରେ ଖୁବ୍ ଅସନ୍ତୋଷ ଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ କାଣ୍ଟନ ପର୍ଯ୍ୟନ୍ତ ପ୍ରସାରଲାଭ କରିଥିଲା । ତା'ର ବେପାରରେ ସର୍ବାପେକ୍ଷା ବେଶୀ ଅଂଶ ଥିଲା ଏବଂ କଟକଣାକୁ ଅଧିକ ଭାବରେ ସେମାନେ ଅନୁଭବ କରିଥିଲେ । ଆମେ ପରବର୍ତ୍ତୀ ଚିଠିମାନଙ୍କରେ ଦେଖିବା, ଏତେବେଳେ ତଥାକଥିତ ଶିଳ୍ପବିପ୍ଳବ ଆରମ୍ଭ ହେଉଥିଲା ଏବଂ ଇଂଲଣ୍ଡ ଏଥିରେ ନେତୃତ୍ୱ ନେଇଥିଲା । ବାଷ୍ପୀୟ କଳ ତିଆରି ହୋଇଥିଲା ଏବଂ ନୂତନ କୌଶଳ ଓ କଳକବ୍‌ଜା ବ୍ୟବହାରରେ ଶ୍ରମ ସହଜ ହୋଇପଡ଼ିଥିଲା; ଉତ୍ପାଦନ, ବିଶେଷତଃ ତୂଳା ଜିନିଷ ବୃଦ୍ଧି ପାଇଥିଲା । ଏହି ଯେଉଁ ଅଧିକା ମାଲସବୁ

ଉତ୍ପନ୍ନ ହେଲା, ତାହା ବାହାର କରିବା ଦରକାର ପଡ଼ିଲା ଏବଂ ସେହିହେତୁ ନୂତନ ବଜାର ଖୋଜାହେଲା । ଠିକ୍ ସେତେବେଳେ ଇଂଲଣ୍ଡର ଭାଗ୍ୟକୁ ଭାରତ ତା'ର ଆୟତ୍ତରେ ଥିଲା । ତେଣୁ ସେଠାରେ ନିଜ ମାଲ ବଳପୂର୍ବକ ବିକ୍ରୀ କରିବା ପାଇଁ ଯାହା ବ୍ୟବସ୍ଥା କରିପାରେ, ପ୍ରକୃତରେ ସେ ତାହା କରିଥିଲା; ମାତ୍ର ତାହା ଚୀନରେ ବେପାର ମଧ୍ୟ କରିବାକୁ ଚାହୁଁଥିଲା ।

ତେଣୁ ୧୭୯୨ରେ ଲର୍ଡ ମାକାର୍ଟନିଙ୍କ ଅଧୀନରେ ବ୍ରିଟିଶ ସରକାର ଏକ ରାଜଦୂତ ଦଳ ପେକିଂକୁ ପଠାଇଲେ । ସେତେବେଳେ ତୃତୀୟ ଜର୍ଜ ଇଂଲଣ୍ଡର ରାଜା ଥିଲେ । ଚିଏନ୍ ଲୁଙ୍ଗ ସେମାନଙ୍କର ନିବେଦନ ଶୁଣିଲେ ଏବଂ ଉପହାର ଦିଆନିଆ ଚାଲିଲା; କିନ୍ତୁ ବିଦେଶୀ ବେପାରରେ ପ୍ରଚଳନ କଟକଣାର କୌଣସି ପରିବର୍ତ୍ତନ କରିବାକୁ ସମ୍ରାଟ ଅସ୍ୱୀକାର କଲେ । ଚିଏନ୍ ଲୁଙ୍ଗ ତୃତୀୟ ଜର୍ଜଙ୍କ ନିକଟକୁ ଯେଉଁ ଜବାବ ପଠାଇଥିଲେ, ତାହା ଅତି ଆଗ୍ରହଜନକ ଲେଖା ଏବଂ ମୁଁ ସେଥିରୁ ଦୀର୍ଘ ଅଂଶ ଏଠାରେ ଉଦ୍ଧୃତ କରିବି । ସେଥିରେ ଏହିରୂପେ ଲେଖା ଅଛି :—

"......ହେ ବହୁ ସାଗର ସୀମାତିକ୍ରମ କରି ବାସ କରୁଥିବା ରାଜା ! ଆପଣ ଆମ ସଭ୍ୟତାର ସୁବିଧାରେ ଭାଗିଦାର ହେବା ନିମନ୍ତେ ଏକ ଅଭିଳାଷର ବଶବର୍ତ୍ତୀ ହୋଇ ଆପଣଙ୍କର ନିବେଦନ ଘେନି ଏକ ଦୂତଦଳ ଯେ ପ୍ରେରଣ କରିଥିଲେ, ଏଥିରେ ସନ୍ଦେହ ନାହିଁ....ଆପଣଙ୍କ ଅନୁରକ୍ତି ଦର୍ଶାଇବା ନିମନ୍ତେ ଆପଣ ନିଜ ଦେଶଜାତ କେତେକ ଉପହାର ବି ପଠାଇଥିଲେ । ମୁଁ ଆପଣଙ୍କର ସ୍ମାରକପତ୍ର ପଢ଼ିଛି । ସେଥିରେ ଯେଉଁ ନିଷ୍କପଟ ଭକ୍ତି ଦିଆଯାଇଛି, ସେଥିରୁ ଆପଣଙ୍କ ପକ୍ଷରେ ଏକ ସମ୍ମାନଜନକ ନମ୍ରତା ପ୍ରକାଶ ପାଉଛି; ଏହା ଅତ୍ୟନ୍ତ ପ୍ରଶଂସା ଜନକ... ।

"ଏହି ବ୍ୟାପକ ଦୁନିଆରେ ମୋର ଏକମାତ୍ର ଲକ୍ଷ୍ୟ ରହିଛି; ଯଥା—ଏକ ସୁସମ୍ପନ୍ନ ଶାସନ ପରିଚାଳନା କରିବା ଏବଂ ଏକ ସରକାରର ସମସ୍ତ କର୍ତ୍ତବ୍ୟ ପୂରଣ କରିବା; ଅଦ୍ଭୁତ ଏବଂ ମୂଲ୍ୟବାନ ବସ୍ତୁରେ ମୋର ଆଗ୍ରହ ନ ଥାଏ । ଆପଣଙ୍କ ଦେଶ ତିଆରି ଜିନିଷଗୁଡ଼ିକ ମୋର...କିଛି ଦରକାର ନାହିଁ । ହେ ରାଜା ! ଏବେ ମୋର ଭାବ ପ୍ରତି ସମ୍ମାନ ଦେଖାଇବା ଓ ଭବିଷ୍ୟତରେ ଆହୁରି ଅଧିକ ଅନୁରକ୍ତି ଓ ଭକ୍ତି ପ୍ରଦର୍ଶନ କରିବା ଆପଣଙ୍କ ଉପରେ ନିର୍ଭର କରେ । ତାହାହେଲେ ଆମ ସିଂହାସନ ନିକଟରେ ସ୍ଥାୟୀ ଭାବରେ ବଶତା ସ୍ୱୀକାର କରିବାଦ୍ୱାରା ଆପଣ ଏଣିକି ନିଜ ରାଜ୍ୟରେ ଶାନ୍ତି ଓ ସମୃଦ୍ଧି ଲାଭ କରିପାରିବେ... ।

"ଭୟକମ୍ପିତ ହୋଇ ଆଜ୍ଞା ପାଳନ କରନ୍ତୁ ଏବଂ କୌଣସି ପ୍ରକାର ବିଳମ୍ବ କରନ୍ତୁ ନାହିଁ !

ତୃତୀୟ ଜର୍ଜ ଓ ତାଙ୍କ ମନ୍ତ୍ରୀମାନେ ଯେତେବେଳେ ଏହି ଜବାବ ପଢ଼ିଥିବେ, ନିଶ୍ଚୟ ସେମାନେ ଚମକି ପଡ଼ିଥିବେ ! ଏକ ଉନ୍ନତ ସଭ୍ୟତାରେ ପ୍ରତିପାଳିତ ବିଶ୍ୱାସ ଏବଂ

କ୍ଷମତାର ଗୌରବ ଯେପରି ଏହି ଜବାବରେ ବର୍ଣ୍ଣିତ ହୋଇଅଛି, ତାହାର ପ୍ରକୃତରେ ସ୍ଥାୟୀ ଭିତ୍ତି ନଥିଲା । ମାଞ୍ଚୁ ସରକାର ବଳବାନ ଦେଖାଯାଉଥିଲା ଏବଂ ଚିଏନ୍‌ଲୁଙ୍ଗଙ୍କ ଅଧୀନରେ ଶକ୍ତିଶାଳୀ ଥିଲା; କିନ୍ତୁ ପରିବର୍ତ୍ତିତ ଅର୍ଥନୈତିକ ବ୍ୟବସ୍ଥାଦ୍ୱାରା ଏହାର ଭିତ୍ତି ଦୋହଲି ଯାଉଥିଲା । ମୁଁ ଯେଉଁ ଗୁପ୍ତ ସମିତିଗୁଡ଼ିକ ବିଷୟ ଉଲ୍ଲେଖ କରିଛି, ସେଗୁଡ଼ିକ ଅସନ୍ତୋଷର ସଙ୍କେତ; କିନ୍ତୁ ପ୍ରାକୃତିକ ଗୋଳମାଳ ହେଲା ଯେ, ନୂତନ ଆର୍ଥିକ ଅବସ୍ଥା ସହିତ ଦେଶକୁ ଖାପ ଖୁଆଇଲା ପରି ବ୍ୟବସ୍ଥା କରାଗଲା ନାହିଁ । ଇତ୍ୟବସରରେ ଏହି ନୂତନ ବ୍ୟବସ୍ଥାରେ ପାଶ୍ଚାତ୍ୟ ଦେଶହିଁ ନେତା ଥିଲା ଏବଂ ଏହା ଦ୍ରୁତ ବେଗରେ ଅଗ୍ରସର ହେବାକୁ ଲାଗିଲା ଓ ଧନକୁବେର ବଳଶାଳୀ ହୋଇଥିଲା । ସମ୍ରାଟ ଚିଏନ୍‌ଲୁଙ୍ଗ ଇଂଲଣ୍ଡର ରାଜା ତୃତୀୟ ଜର୍ଜଙ୍କୁ ଏହି ଉଦ୍ଧତର ସୋପାନରୁ ଜବାବ ପଠାଇବାର ୭୦ ବର୍ଷରୁ କମ ସମୟ ପରେ ଇଂଲଣ୍ଡ ଓ ଫ୍ରାନ୍‌ସଦ୍ୱାରା ଚୀନ ଅପମାନିତ ହୋଇଥିଲା ଏବଂ ତାହାର ଗର୍ବକୁ ଧୂଳିସାତ୍ କରିଦିଆଗଲା ।

ମାଞ୍ଚୁ ହେଉଛି ଚୀନ ସମ୍ବନ୍ଧରେ ଆଗାମୀ ଚିଠିରେ ମୁଁ କାହାଣୀ ଲେଖିବି । ୧୭୯୬ରେ ଚିଏନ୍‌ଲୁଙ୍ଗଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଆମେ କାର୍ଯ୍ୟତଃ ଅଷ୍ଟାଦଶ ଶତାବ୍ଦୀର ଶେଷରେ ପହୁଞ୍ଚିଲେ; କିନ୍ତୁ ଏହି ଶତାବ୍ଦୀ ଶେଷ ହେବା ପୂର୍ବରୁ ଆମେରିକା ଓ ଇଉରୋପରେ ଅନେକ ଅସାଧାରଣ ଘଟଣା ଘଟିଯାଇଥିଲା । ବାସ୍ତବିକ ଇଉରୋପରେ ଯୁଦ୍ଧ ଓ ଗୋଳମାଳ ଯୋଗୁଁ ପାଶ୍ଚାତ୍ୟଦେଶର ଚାପ ଚୀନ ଉପରେ ପ୍ରାୟ ୨୫ ବର୍ଷ କାଳ କମିଯାଇଥିଲା । ତେଣୁ ଆମର ଆଗାମୀ ଚିଠିରେ ଆମେ ଇଉରୋପକୁ ଯିବା ଏବଂ ୧୮ଶ ଶତାବ୍ଦୀର ଆରମ୍ଭରୁ ଏହି କାହାଣୀ ଲେଖିବା ଓ ଭାରତ ଏବଂ ଚୀନର ଘଟଣାଗୁଡ଼ିକ ସହିତ ଏହାକୁ ସମାନ କରିଦେବା ।

କିନ୍ତୁ ଏହି ଚିଠି ଶେଷ କରିବା ପୂର୍ବରୁ ମୁଁ ତୋତେ ପୂର୍ବ ଖଣ୍ଡରେ ରୁଷର ପ୍ରଗତି ବିଷୟରେ କହୁଛି । ୧୬୮୯ରେ ରୁଷ ଓ ଚୀନ ଭିତରେ ନେର ଚନ୍‌ସ୍କ ସନ୍ଧି ପରେ ଦେଢ଼-ଶତାବ୍ଦୀ ପର୍ଯ୍ୟନ୍ତ ପୂର୍ବଦିଗରେ ରୁଷର ପ୍ରଭାବ ବଢ଼ିବାରେ ଲାଗିଲା । ରୁଷ ଚାକିରୀରେ ନିଯୁକ୍ତ ଥିବା ଭିଟସ୍ ବେରିଂ ନାମକ ଜଣେ ଡେନମାର୍କ ଆମେରିକା ଓ ଏସିଆ ମଧ୍ୟସ୍ଥ ପ୍ରଣାଳୀଟି ଆବିଷ୍କାର କଲେ । ତୁ ବୋଧହୁଏ ଜାଣୁ ଏବେ ସୁଦ୍ଧା ତାଙ୍କ ନାମାନୁସାରେ ଏହି ପ୍ରଣାଳୀ ନାମରେ କଥିତ । ବେରିଂ ପ୍ରଣାଳୀ ପାର ହୋଇ ସେ ଆଲସ୍କାକୁ ଗଲେ ଏବଂ ଏହା ରୁଷ ରାଜ୍ୟର ଅନ୍ତର୍ଗତ ବୋଲି ଘୋଷଣା କରିଥିଲେ । ଆଲସ୍କା ମେଣ୍ଢ଼ଲୋମ ଆଦିରେ ଏତେ ଅଧିକ ସମୃଦ୍ଧ ହେଲା ଯେ, ରୁଷ ସେଗୁଡ଼ିକୁ କାନାଡ଼ାର ହଡ୍‌ସନ୍ ସାଗରରୁ ଇଂଲଣ୍ଡ ଦେଇ ରପ୍ତାନୀ କଲା ଏବଂ ତାପରେ ସାଇବେରିଆର ଲେକ ବୈକାଲ ନିକଟସ୍ଥ କାଣ୍ଟଖ୍ତାର ପ୍ରକାଣ୍ଡ ମେଣ୍ଢ଼ାଲୋମ ବଜାରକୁ ସେଗୁଡ଼ିକ ପଠାଉଥିଲା । ମେଣ୍ଢ଼ାଲୋମଗୁଡ଼ିକ କେତେଦୂର ଯାଉ ନଥିଲା !

ମୁଁ ଏ ବିଷୟରେ ଲେଖିଥିବା ଚିଠିସବୁ ଅପେକ୍ଷା ଏହି ଚିଠିଟି ଖୁବ୍ ଶ୍ରେଷ୍ଠ କରିଛି; ପରିବର୍ତ୍ତି ପର୍ଯ୍ୟନ୍ତ ଏହା କଲି । ମୋର ଆଶା ଏହି ପରିବର୍ତ୍ତନକୁ ତୁ ପସନ୍ଦ କରିବୁ ।

## ୯୬ : ଅଷ୍ଟାଦଶ ଶତାବ୍ଦୀରେ ଇଉରୋପରେ ଭାବର ସଂଘର୍ଷ

ସେପ୍‌ଟେମ୍ବର ୧୯, ୧୯୩୨

ଆମେ ବର୍ତ୍ତମାନ ଇଉରୋପକୁ ଫେରିଯିବା ଏବଂ ଏହାର ବଦଳୁଥିବା ଭାଗ୍ୟ ଅନୁସରଣ କରିବା । ଏହା ବିରାଟ ପରିବର୍ତ୍ତନମାନଙ୍କର ପୂର୍ବାବସ୍ଥାରେ ଆସି ପହଞ୍ଚିଥିଲା । ଏହି ପରିବର୍ତ୍ତନଗୁଡ଼ିକ ପୃଥିବୀ ଇତିହାସରେ ତାର ଛାପ ପକାଇଦେଲା । ଏହି ପରିବର୍ତ୍ତନ ଗୁଡ଼ିକୁ ବୁଝିବାକୁ ହେଲେ ଆମକୁ ଘଟଣାର ସ୍ତର ଭିତରକୁ ଯିବାକୁ ହେବ ଏବଂ ଲୋକଙ୍କ ମନ-ଭିତରେ କ'ଣ କାର୍ଯ୍ୟ କରୁଥିଲା, ତାହା ବାହାର କରିବାଲାଗି ଚେଷ୍ଟା କରିବାକୁ ହେବ । କାରଣ ଆମେ ଦେଖୁ ଯେ ଚିନ୍ତା ଓ ପ୍ରଗାଢ଼ଭାବ, ଓ ବିରୋଧୀ କୁସଂସ୍କାର, ଆଶା ଓ ଭୟର ମିଶ୍ରଣ ଫଳରେ କାର୍ଯ୍ୟହୁଏ ଏବଂ ଆମେ କେଉଁ କାରଣରୁ ଏହି କାର୍ଯ୍ୟ ହେଲା ତାହା ବିଚାର ନକଲେ ଏହା ବୁଝିବା କଷ୍ଟକର । କିନ୍ତୁ ଏହା ସହଜ ବିଷୟ ନୁହେଁ ଏବଂ ଯଦିଚ ଏହିସବୁ କାରଣ ଓ ଉଦ୍ଦେଶ୍ୟ ଯାହାକି ଇତିହାସର ଉଲ୍ଲେଖଯୋଗ୍ୟ ଘଟଣାକୁ ଗଢ଼େ ସେ ସମ୍ବନ୍ଧରେ ସଙ୍ଗତ ଭାବରେ ଲେଖିବାକୁ ମୁଁ ସମର୍ଥ; ତଥାପି ଏହି ଚିଠିଗୁଡ଼ିକ ଯେପରି ନୀରସ ଓ ବୃହତ୍ ହେଲାଣି ତାକୁ ଆଉ ବେଶି ସେପରି କରିବାକୁ ଚାହେଁନାହିଁ । ବେଳେ ବେଳେ ମୋର ଆଶଙ୍କା ହୁଏ ଯେ କୌଣସି ବିଷୟ ପ୍ରତି ଉତ୍ସାହ ହେତୁ କିମ୍ବା ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ନିମନ୍ତେ ମୋର ଯେତେଦୂର ଯିବା ଦରକାର ତାହାଠାରୁ ଅଧିକ ଗଭୀରତମ ପ୍ରଦେଶ ଭିତରକୁ ମୁଁ ଚାଲିଯାଇଛି । ମୋର ଅନୁମାନ, ତୋତେ ଏହା ସହ୍ୟ କରିବାକୁ ପଡ଼ିବ; ସୁତରାଂ ଏହି କାରଣରୁ ଖୁବ୍ ଭିତରକୁ ଆମେ ଯାଇପାରିବା ନାହିଁ; କିନ୍ତୁ ଏଗୁଡ଼ିକ ପ୍ରତି ଅବହେଳା ଦେଖାଇବା ଅତ୍ୟନ୍ତ ନିର୍ବୋଧତା ହେବ ଏବଂ ବାସ୍ତବିକ ତାହା ଯଦି ଆମେ କରୁ ତାହାହେଲେ ଆମେ ଇତିହାସର ଆକର୍ଷଣ ଓ ମହତ୍ତ୍ୱ ହରାଇବା ।

୧୬ଶ ଓ ୧୭ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଇଉରୋପର ବିଦ୍ରୋହ ଓ ବିଶୃଙ୍ଖଳା ବିଷୟରେ ଆମେ ଆଲୋଚନା କଲେ । ୧୭ଶ ଶତାବ୍ଦୀର ମଧ୍ୟଭାଗରେ ୱେଷ୍ଟଫେଲିଆ ସନ୍ଧି ହୋଇଥିଲା (୧୬୪୮) । ଏହାଫଳରେ ଭୀଷଣ ୩୦ ବର୍ଷିଆ ଯୁଦ୍ଧ ଶେଷ ହେଲା ଓ ଏକବର୍ଷପରେ ଇଂଲଣ୍ଡରେ ଗୃହଯୁଦ୍ଧ ଶେଷ ହେଲା ଏବଂ ପ୍ରଥମ ଚାର୍ଲସଙ୍କୁ ତାଙ୍କ ମସ୍ତକ ହରାଇବାକୁ ପଡ଼ିଲା । ତା'ପରେ ଅପେକ୍ଷାକୃତ ଶାନ୍ତିର ଯୁଗ ଚାଲିଲା । ଇଉରୋପ ମହାଦେଶ ସମ୍ପୂର୍ଣ୍ଣ ରୂପେ ଅବସନ୍ନ ହୋଇପଡ଼ିଥିଲା । ଆମେରିକାର ଉପନିବେଶ ସହିତ ଅନ୍ୟାନ୍ୟ ବେପାର ଯୋଗୁଁ ଇଉରୋପକୁ ଧନ ଆସୁଥିଲା ଏବଂ ଏହା ଆରାମ ଦେଲା ଓ ବିଭିନ୍ନ ଶ୍ରେଣୀ ମଧ୍ୟରେ ଥିବା ବିରୋଧ କମାଇ ଦେଲା ।

ଇଂଲଣ୍ଡରେ ଶାନ୍ତିପୂର୍ଣ୍ଣ ବିଦ୍ରୋହ ହେଲା, ଏଥିରେ ଦ୍ୱିତୀୟ ଜେମ୍‌ସଙ୍କୁ ଛାଡ଼ିଦିଆଗଲା ଏବଂ ପାର୍ଲିମେଣ୍ଟ ଜୟଲାଭ କଲା (୧୬୮୮) । ପ୍ରକୃତ ଯୁଦ୍ଧ ଗୃହଯୁଦ୍ଧରେ ପ୍ରଥମ ଚାର୍ଲସଙ୍କ

ବିରୁଦ୍ଧରେ ପାର୍ଲିମେଣ୍ଟ ଜୟଲାଭ କରିଥିଲା । ୫୦ ବର୍ଷ ପୂର୍ବରୁ ଶସ୍ତ୍ରଶକ୍ତି ଦ୍ୱାରା ଯେଉଁ ସିଦ୍ଧାନ୍ତ ହୋଇଥିଲା, ତାହା ଏହି ଶାନ୍ତିପୂର୍ଣ୍ଣ ବିପ୍ଳବରେ କେବଳ ସ୍ୱୀକୃତ ହେଲା ।

ଏହିରୂପେ ଇଂଲଣ୍ଡରେ ରଜାଙ୍କ କ୍ଷମତା କମାଇ ଦିଆଗଲା; କିନ୍ତୁ ସ୍ୱିଜରଲାଣ୍ଡ ଓ ହଲାଣ୍ଡ ପରି ଇଉରୋପର କେତେକ କ୍ଷୁଦ୍ର ଅଞ୍ଚଳ ବ୍ୟତୀତ ଅନ୍ୟତ୍ର ଅବସ୍ଥା ଅନ୍ୟ ପ୍ରକାର ଥିଲା । ଏକଛତ୍ର ଏବଂ ଦାୟିତ୍ୱହୀନ ଶାସକ ସ୍ୱୈରରୂପରେ ଥିଲେ ଏବଂ ମହାନ ସମ୍ରାଟ ଫ୍ରାନ୍‌ସର ୧୪ଶ ଲୁଇ ଏକ ଆଦର୍ଶ ରୂପେ ଥିଲେ, ଯାହାଙ୍କୁ ଅନ୍ୟମାନେ ଅନୁକରଣ କରିବାକୁ ଲାଗିଲେ । ଇଉରୋପ ମହାଦେଶରେ ସପ୍ତଦଶ ଶତାବ୍ଦୀ ବ୍ୟାବହାରିକ ରୂପେ ୧୪ଶ ଲୁଇଙ୍କ ଶତାବ୍ଦୀ ଅଟେ । ସେମାନଙ୍କର ଯେଉଁ ଦୁର୍ଭାଗ୍ୟ ଘଟିଥିଲା ସେଥିପ୍ରତି ମନ ନଦେଇ ଏବଂ ଏପରିକି ଇଂଲଣ୍ଡର ପ୍ରଥମ ଚାର୍ଲସଙ୍କ ଅବସ୍ଥାରୁ କିଛି ଶିକ୍ଷାଲାଭ ନକରି ଇଉରୋପର ରଜାମାନେ ସମସ୍ତ ଆଡ଼ମ୍ବର, ଜାକଜମକ ଓ ନିର୍ବୋଧତା ସହକାରେ ଏକଛତ୍ର ଶାସକରୂପେ କାର୍ଯ୍ୟ କରିବାକୁ ଲାଗିଲେ । ସେମାନେ ଦେଶର ସମସ୍ତ କ୍ଷମତା ଓ ସମ୍ପଦ ନିଜେ ଦାବୀ କରିବାକୁ ଲାଗିଲେ ଏବଂ ତାଙ୍କ ନିଜ ଦେଶକୁ ଏକ ଖାସ୍ ଇଲାକାପରି ବ୍ୟବହାର କଲେ । ୪୦୦ ବର୍ଷ ପୂର୍ବରୁ ପ୍ରସିଦ୍ଧ ଡଚ୍ ପଣ୍ଡିତ ଏରାସ୍‌ମସ୍ ଲେଖିଥିଲେ—"ବୁଦ୍ଧିମାନ ଲୋକେ ସବୁ ପକ୍ଷୀଙ୍କ ଭିତରେ ଈଗଲକୁ ରାଜସତ୍ତାର ପ୍ରକୃତ ରୂପ ବୋଲି ବିଚାରୁଥିଲେ—ଏହା ସୁନ୍ଦର ନୁହେଁ, ଭଲ ଗାନ କରିପାରେନା, ଖାଦ୍ୟ ପାଇଁ ଉପଯୁକ୍ତ ନୁହେଁ; ମାତ୍ର ମାଂସାସୀ, ଲୋଭୀ, ସମସ୍ତଙ୍କ ଦ୍ୱାରା ଘୃଣିତ ସମସ୍ତଙ୍କର ଅଭିଶାପ ଏବଂ କ୍ଷତି କରିବାର ପ୍ରବଳ କ୍ଷମତା ସଙ୍ଗେ ସଙ୍ଗେ ଏହା ସେସବୁ କାର୍ଯ୍ୟ କରିବାର ଅଭିଳାଷରେ ସେମାନଙ୍କୁ ଟପିଯାଏ" ।

ଆଜି ରଜାସବୁ ପ୍ରାୟ ଲୋପ ହୋଇ ଯାଇଛନ୍ତି ଏବଂ ଅତୀତ ଯୁଗର ଚିହ୍ନ ସ୍ୱରୂପ ଯେଉଁମାନେ ବା ରହିଛନ୍ତି, ତାଙ୍କର ବିଶେଷ କିଛି ବା ଆଦୌ କ୍ଷମତା ନାହିଁ । ଆମେ ବର୍ତ୍ତମାନ ସେମାନଙ୍କୁ ଗୁରୁତ୍ୱ ଦେଇ ବିଚାରିବା ନାହିଁ; କିନ୍ତୁ ଆହୁରି ଅଧିକ ବିପଜ୍ଜନକ ଲୋକେ ତାଙ୍କର ସ୍ଥାନ ଗ୍ରହଣ କରିଛନ୍ତି ଏବଂ ଏହି ପରବର୍ତ୍ତୀ କାଳର ସାମ୍ରାଜ୍ୟବାଦୀ ଓ ଲୁହା, ତେଲ, ରୁପା, ସୁନାର ରଜାମାନଙ୍କର ଉପଯୁକ୍ତ ସଙ୍କେତ ହେଉଛି ଈଗଲ ।

ଇଉରୋପର ରାଜତନ୍ତ୍ର ଗୁଡ଼ିକ ଦୃଢ଼ କେନ୍ଦ୍ରୀଭୂତ ରାଜ୍ୟରୂପେ ବୃଦ୍ଧି ପାଇଲା । ପ୍ରଭୁ ଓ ପରାଧୀନ ରାଜ୍ୟ ଏହି ପୁରାତନ ସାମନ୍ତବାଦୀ ଧାରଣା ଲୋପ ପାଇଥିଲା କିମ୍ବା ମୁମୂର୍ଷୁ ଅବସ୍ଥାରେ ଥିଲା । ଦେଶକୁ ଏକ ଏକକ ଓ ଏକ ଅଖଣ୍ଡରାଷ୍ଟ୍ର ବୋଲି ଭାବିବାର ନୂତନ ଧାରଣା ଏହାର ସ୍ଥାନ ନେଲା । ରିଚେଲୁ ଓ ମାଜେରିନ୍ ଏହି ଦୁଇ ଜଣ ଅତ୍ୟନ୍ତ ଦକ୍ଷ ମନ୍ତ୍ରୀଙ୍କ ଅଧୀନରେ ଫ୍ରାନ୍‌ସ ଏ ଦିଗରେ ନେତା ଥିଲା । ତେଣୁ ଜାତୀୟବାଦ ଓ କେତେକ ପରିମାଣରେ ଦେଶପ୍ରୀତି ଭାବ ବୃଦ୍ଧି ପାଇଲା । ଯେଉଁଧର୍ମ ଆଜିପର୍ଯ୍ୟନ୍ତ ମନୁଷ୍ୟ ଜୀବନରେ ଏକ ଅତ୍ୟନ୍ତ ପ୍ରଧାନ ସ୍ଥାନ ଅଧିକାର କରିଥିଲା, ତାହା ପଛକୁ ପଡ଼ିଗଲା ଏବଂ ତାହା ସ୍ଥାନରେ ନୂତନ ଭାବଧାରା ଦେଖାଦେଲା । ଏ ବିଷୟରେ ମୋର ଏହି ଚିଠିରେ ପରେ ମୁଁ ତୋତେ କିଛି କହିପାରିବି ବୋଲି ଆଶା କରେ ।

ସପ୍ତଦଶ ଶତାବ୍ଦୀ ଏହାଅପେକ୍ଷା ଆହୁରି ଉଲ୍ଲେଖଯୋଗ୍ୟ ହେବାର କାରଣ ହେଉଛି ଏଥିରେ ଆଧୁନିକ ବିଜ୍ଞାନର ମୂଳଭିତ୍ତି ସ୍ଥାପିତ ହୋଇଥିଲା ଏବଂ ଏକ ପୃଥିବୀବ୍ୟାପୀ ବଜାର ସୃଷ୍ଟି ହୋଇଥିଲା । ଏହି ବିଶାଳ ନୂତନ ବଜାର ଯୋଗୁଁ ଇଉରୋପର ପୁରାତନ ଅର୍ଥନୀତି ଓଲଟ-ପାଲଟ ହୋଇଯିବା ସ୍ୱାଭାବିକ ଏବଂ ଆମେ ଯଦି ଏହି ନୂତନ ବଜାର ବିଷୟ ଦୃଷ୍ଟିପଥରେ ରଖି ତାହାହେଲେ ପରବର୍ତ୍ତୀକାଳରେ ଇଉରୋପ, ଏସିଆ ଓ ଆମେରିକାରେ ଯାହାସବୁ ଘଟିଲା ତାହା ବୁଝି ପାରିବା । ପରେ ବିଜ୍ଞାନର ଉନ୍ନତି ହେଲା ଏବଂ ଏହି ପୃଥିବୀ ବଜାରର ଆବଶ୍ୟକତା ଏହା ଯୋଗାଇ ଦେଲା ।

ଅଷ୍ଟାଦଶ ଶତାବ୍ଦୀରେ ବିଶେଷତଃ ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଉପନିବେଶ ଓ ସାମ୍ରାଜ୍ୟ ଲାଗି ପ୍ରତିଯୋଗିତା ଫଳରେ ଖାଲି ଇଉରୋପରେ ନୁହେଁ, କାନାଡ଼ାରେ ଏବଂ ଆମେ ଦେଖିଛେ––ଭାରତରେ ମଧ୍ୟ ଯୁଦ୍ଧ ଲାଗିଲା । ଶତାବ୍ଦୀର ମଧ୍ୟ-ଭାଗରେ ଏହି ଯୁଦ୍ଧଗୁଡ଼ିକ ପରେ ପୁନର୍ବାର ଅପେକ୍ଷାକୃତ ଶାନ୍ତିକାଳ ପହଞ୍ଚିଲା । ଇଉରୋପର ଉପର ସ୍ତର ନିସ୍ତବ୍ଧ ଓ ପ୍ରାୟ ଅବିଚଳିତ ବୋଧ ହେଉଥିଲା । ଇଉରୋପର ଅସଂଖ୍ୟ ରାଜଦରବାରରେ ଅତ୍ୟନ୍ତ ଭଦ୍ର, ସଂସ୍କୃତିସମ୍ପନ୍ନ ଓ ସୁନ୍ଦର ନରନାରୀ ପୂର୍ଣ୍ଣ ରହିଥିଲେ; କିନ୍ତୁ ଏହି ଶାନ୍ତି କେବଳ ମାତ୍ର ଉପରେ ଥିଲା, ତଳ ଭାଗରେ ଆଲୋଡ଼ନ ଲାଗିଥିଲା ଏବଂ ନୂତନ ଚିନ୍ତା ଓ ଭାବଧାରା ଲୋକଙ୍କୁ ଗୋଳମାଳରେ ପକାଉଥିଲା ଏବଂ ଆନ୍ଦୋଳିତ ହେଉଥିଲା । କ୍ରମବର୍ଦ୍ଧମାନ ଦାରିଦ୍ର୍ୟ ହେତୁ ରାଜଦରବାରର ବିଳାସୀ ମହଲ ଓ କେତେକ ଉଚ୍ଚଶ୍ରେଣୀଙ୍କ ବ୍ୟତୀତ ସାଧାରଣ ଲୋକସମୂହ ଅଧିକରୁ ଅଧିକ କଷ୍ଟ ଭୋଗୁଥିଲେ । ତେଣୁ ୧୮ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଉରୋପର ଯେଉଁ ନିସ୍ତବ୍ଧତା ଥିଲା, ତାହା ଅତ୍ୟନ୍ତ ଶଙ୍କାପୂର୍ଣ୍ଣ, ଏକ ଝଡ଼ର ପୂର୍ବାଭାସ ମାତ୍ର ଥିଲା । ୧୭୮୯ ଖ୍ରୀଷ୍ଟାବ୍ଦର ଜୁଲାଇ ୧୪ ତାରିଖରେ ସର୍ବଶ୍ରେଷ୍ଠ ଇଉରୋପୀୟ ରାଜତନ୍ତ୍ରର ରାଜଧାନୀ ପ୍ୟାରିସ୍‌ରେ ଏହି ଝଡ଼ ଆରମ୍ଭ ହେଲା । ଏହା ରାଜତନ୍ତ୍ର ଏବଂ ଅନ୍ୟ ଶତ ଶତ ଅନାମୀ ଓ ଚଳନ୍ତିରେ ରହିତ ପ୍ରଥା ଏବଂ ବିଶେଷାଧିକାରକୁ ଉଡ଼ାଇ ନେଇଗଲା ।

ଏହି ଝଡ଼ ଏବଂ ପରବର୍ତ୍ତୀ ପରିବର୍ତ୍ତନ ଫ୍ରାନ୍ସରେ ଏବଂ ଆଂଶିକଭାବରେ ଅନ୍ୟ ଇଉରୋପୀୟ ରାଜ୍ୟମାନଙ୍କରେ ମଧ୍ୟ ଦୀର୍ଘକାଳ ପୂର୍ବରୁ ନୂତନ ଭାବଧାରା ଦ୍ୱାରା ପ୍ରସ୍ତୁତ ହୋଇଥିଲା । ମଧ୍ୟଯୁଗ ସାରା ଧର୍ମହିଁ ଇଉରୋପରେ ପ୍ରାଧାନ୍ୟଲାଭ କରିଥିଲା । ଏପରିକି ପରେ ସଂସ୍କାର ଆନ୍ଦୋଳନ ଉତ୍ତାରେ ଏହା ସେହିପରି ରହିଥିଲା । ରାଜନୀତିକ ବା ଅର୍ଥନୀତିକ ଯେକୌଣସି ପ୍ରଶ୍ନ ହେଉପଛକେ ତାହା ଧର୍ମଦୃଷ୍ଟିରୁ ବିଚାର କରାଯାଉଥିଲା । ଧର୍ମ ସଂଗଠିତ ହୋଇଥିଲା ଏବଂ ପୋପ୍ ବା ଚର୍ଚ୍ଚର ଉଚ୍ଚକର୍ମଚାରୀଙ୍କ ମତରେ ଅର୍ଥହିଁ ଥିଲା ଧର୍ମ । ସମାଜର ସଂଗଠନ ଏକପ୍ରକାର ଭାରତରେ ଜାତିଗଠନ ପରି ଥିଲା । ଜାତି ଧାରଣା ମୂଳରେ ପେଶା ବା କାର୍ଯ୍ୟାନୁସାରେ ଲୋକଙ୍କୁ ବିଭକ୍ତ କରିବା ଲାଗି ହୋଇଥିଲା । ବୃତ୍ତି ଅନୁସାରେ ସାମାଜିକ ଶ୍ରେଣୀ ଧାରଣାହିଁ ମଧ୍ୟଯୁଗରେ ସମାଜର ମୂଳଭିତ୍ତି ହୋଇଥିଲା । ଭାରତରେ ଏକ

ଜାତି ଭିତରେ ସାମ୍ୟ ଥିବା ପରି ଏକ ଶ୍ରେଣୀ ଭିତରେ ସମାନତା ରହିଥିଲା । ଦୁଇ ବା ତତୋଽଧିକ ଶ୍ରେଣୀ ମଧ୍ୟରେ ଅସମାନତା ରହିଥିଲା । ଏହି ଅସମାନତାହିଁ ସମଗ୍ର ସାମାଜିକ ଗଠନର ଅସଲ ଭିତ୍ତି ଥିଲା ଏବଂ କେହି ଏଥିର ବିରୋଧ କରୁ ନଥିଲେ । ଏହି ପ୍ରଥାରେ ଯେଉଁମାନେ କଷ୍ଟ ଭୋଗିଲେ ସେମାନଙ୍କୁ କୁହାଗଲା, "ତମେ ତମର ପୁରସ୍କାର ସ୍ୱର୍ଗରାଜ୍ୟରେ ପାଇବ" । ଏହିରୂପେ ଧର୍ମ ଏକ ଅନ୍ୟାୟ ସାମାଜିକ ବ୍ୟବସ୍ଥାକୁ ଧରି ରଖିବା ନିମନ୍ତେ ଚେଷ୍ଟା କଲା ଏବଂ ଲୋକଙ୍କ ମନକୁ ପରଲୋକ ଆଦି କଥା କହି ଏଥିରୁ ଅନ୍ୟ ଆଡ଼କୁ ନେବାକୁ ଚେଷ୍ଟା କଲା । ଏହା ମଧ୍ୟ ମାରଫତଦାରୀ (ଟ୍ରଷ୍ଟି) ମତ ବିଷୟରେ ପ୍ରଚାର କଲା; ଅର୍ଥାତ୍ ଧନୀଲୋକ ଗରିବଙ୍କ ପାଇଁ ଏକପ୍ରକାର ମାରଫତଦାର ହୋଇ ରହିଛନ୍ତି, ଜମିଦାର ନିଜର ଜମିକୁ ରଇତ ପାଇଁ ନିଜ 'ମାରଫତଦାରୀ'ରେ ରଖିଛି । ଏକ ଅତି ଅଡୁଆ ପରିସ୍ଥିତିକୁ ଚର୍ଚ୍ଚ ଏହି ଭାବରେ ବ୍ୟାଖ୍ୟା ଦେଇଥିଲା । ଏଥିରେ ଧନୀ ଲୋକଙ୍କର କିଛି ପାର୍ଥକ୍ୟ ଘଟିଲା ନାହିଁ ଏବଂ ଦରିଦ୍ର ଲୋକଙ୍କର କିଛି କଷ୍ଟ ଲାଘବ ହେଲା ନାହିଁ । ଏକ ଭୋକିଲା ପେଟରେ ଚର୍ଚ୍ଚର କୈଫିୟତ୍ ଖାଦ୍ୟର ସ୍ଥାନ ଦେଇପାରେ ନା ।

କାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟଙ୍କ ଭିତରେ ବିକଟ ଧର୍ମଗତ ସଂଗ୍ରାମ ଏବଂ କାଥଲିକ୍ ଓ କାଲଭିନିଷ୍ଟଙ୍କ ମଧ୍ୟରେ ଅସହିଷ୍ଣୁ ଭାବ ଏବଂ ଇନକ୍ୱିଜିସନ୍ ଏସବୁ ଅତ୍ୟନ୍ତ ଧର୍ମଗତ ଓ ସାମ୍ପ୍ରଦାୟିକ ଦୃଷ୍ଟିକୋଣ ହେତୁ ଜାତ ହୋଇଥିଲା । ଥରେ ଏକଥା ଚିନ୍ତା କରନାହିଁ ! ୟୁରୋପରେ ଲକ୍ଷ ଲକ୍ଷ ନାରୀଙ୍କୁ ବିଶେଷ ଭାବରେ ପିଉରିଟାନ୍‌ମାନଙ୍କୁ ଡାଆଣୀ ବୋଲି କହି ପୋଡ଼ି ମାରି ଦେଉଥିଲେ । ଚର୍ଚ୍ଚର ଦୃଷ୍ଟିକୋଣର ବିରୋଧ କରୁଥିବା ହେତୁ ବିଜ୍ଞାନର ନୂତନ ଭାବଧାରାକୁ ଦବାଇ ଦିଆଯାଉଥିଲା । ଏହା ଜୀବନର ଏକ ସ୍ଥାଣୁ ଓ ଗତିହୀନ ଦୃଷ୍ଟି; ଏଥିରେ ପ୍ରଗତିର ପ୍ରଶ୍ନ ନଥିଲା ।

ଆମେ ଦେଖୁ ୧୬ଶ ଶତାବ୍ଦୀଠାରୁ କ୍ରମେ ଏହି ଧାରଣା ସବୁ ବଦଳିବାକୁ ଆରମ୍ଭ କଲା । ବିଜ୍ଞାନ ଦେଖାଦେଲା ଏବଂ ଧର୍ମର ସକଳ ଦିଗରେ କର୍ତ୍ତୃତ୍ୱ କମିଗଲା, ରାଜନୀତି ଓ ଅର୍ଥନୀତି ଧର୍ମରୁ ଅଲଗା ଜିନିଷରୂପେ ବିଚାର କରାଗଲା । କୁହାଯାଏ ଯେ ୧୭ଶ ଓ ୧୮ଶ ଶତାବ୍ଦୀରେ ହେତୁବାଦର ବୃଦ୍ଧି ହେଲା, ଅର୍ଥାତ୍ ଅନ୍ଧବିଶ୍ୱାସ ବଦଳରେ କାରଣ (Reason) ସ୍ଥାନ ପାଇଲା । ବାସ୍ତବିକ ଅଷ୍ଟାଦଶ ଶତାବ୍ଦୀରେ ସହନଶୀଳତାର ଜନ୍ମ ହେଲା ବୋଲି ଧରାଯାଏ । ଏହା ଆଂଶିକ ଭାବରେ ସତ୍ୟ, କିନ୍ତୁ ପ୍ରକୃତରେ ବିଷୟ ବୋଇଲେ ଲୋକେ ପୂର୍ବରୁ ଧର୍ମକୁ ଯେପରି ଗୁରୁତ୍ୱ ଦେଉଥିଲେ, ତାହା ଏବେ ଛାଡ଼ିବାକୁ ଆରମ୍ଭ କରିଥିଲେ ।

ସହନଶୀଳତା ଓ ଉଦାସୀନତା ପ୍ରାୟ ଏକ ଜିନିଷ । ଯେତେବେଳେ ଲୋକେ କୌଣସି ବିଷୟରେ ଭୀଷଣ ଭାବରେ ବ୍ୟଗ୍ର ଥାଆନ୍ତି, ସେମାନେ ସେତେବେଳେ ସେ ବିଷୟରେ ପ୍ରାୟ ସହିଷ୍ଣୁ ହୁଅନ୍ତି ନାହିଁ, କେବଳ ଯେତେବେଳେ ସେମାନେ ଏଥିପ୍ରତି ଖୁବ୍ କମ୍ ଖାତିର କରନ୍ତି, ସେତେବେଳେହିଁ ବଡ଼ ଉଦାର ଭାବରେ ଘୋଷଣା କରନ୍ତି ଯେ ସେମାନେ ସହିଷ୍ଣୁ । ଶିଳ୍ପୋଦ୍ୟୋଗ ଓ ବଡ଼ ମେସିନର ଆଗମନ ସଙ୍ଗେ ସଙ୍ଗେ ଧର୍ମପ୍ରତି ଉଦାସୀନତା ଆହୁରି

ବର୍ତ୍ତିଲା; ବର୍ତ୍ତମାନ ୟୁରୋପରେ ପୁରାତନ ବିଶ୍ୱାସର ମୂଳଭିତ୍ତି ଖାଇଗଲା; ନୂତନ ଶିଳ୍ପ ଓ ଅର୍ଥନୀତି ଯେଉଁ ନୂତନ ସମସ୍ୟା ସୃଷ୍ଟି କଲା, ତାହା ଲୋକଙ୍କ ମନକୁ ଅଧିକାର କଲା । ଶେଷ ୟୁରୋପର ଲୋକେ ଧର୍ମ ବିଶ୍ୱାସ ବା ବର୍ଦ୍ଧିଷ୍ଣୁ ମତ ସଂକ୍ରାନ୍ତ ପ୍ରଶ୍ନରେ ପରସ୍ପରର ମଥା ଭାଙ୍ଗିବାର ଅଭ୍ୟାସ ଛାଡ଼ିଦେଲେ (ସମ୍ପୂର୍ଣ୍ଣରୂପେ ନୁହେଁ); ତାହା ପରିବର୍ତ୍ତେ ଅର୍ଥନୀତି ଓ ସାମାଜିକ ପ୍ରଶ୍ନ ଯୋଗ କଳହ ଉପୁଜିଲା ।

ଇଉରୋପର ଏହି ଧର୍ମପ୍ରଧାନ କାଳ ସହିତ ଆଜିର ଭାରତକୁ ତୁଳନା କରିବା ବଡ଼ ଆଗ୍ରହ ଓ ଶିକ୍ଷା ଜାତକ । ପ୍ରଶଂସା ଓ ଘୃଣା ଉଭୟ ଦୃଷ୍ଟିରେ ଭାରତକୁ ଅନେକ ସମୟରେ ଏକ ଧାର୍ମିକ ଓ ଆଧ୍ୟାତ୍ମିକ ଦେଶ ବୋଲି କୁହାଯାଏ । ଏହା ୟୁରୋପଠାରୁ ପୃଥକ୍ ବୋଲି ଧରାଯାଏ । ୟୁରୋପକୁ ଅଧାର୍ମିକ ଏବଂ ଜୀବନର ଭଲ ପଦାର୍ଥରେ ଅତ୍ୟନ୍ତ ପ୍ରିୟ ବୋଲି କୁହାଯାଏ । ଭାରତୀୟ ଦୃଷ୍ଟିକୋଣକୁ ଧର୍ମ କେତେଦୂର ପ୍ରଭାବିତ କରିପାରିଛି, ସେ ଦୃଷ୍ଟିରୁ ପ୍ରକୃତରେ ଦେଖିବାକୁ ଗଲେ ଏହି "ଧାର୍ମିକ" ଭାରତ ଅସାଧାରଣ ଭାବରେ ୧୬ଶ ଶତାବ୍ଦୀର ୟୁରୋପ ପରି ଅଟେ । ଅବଶ୍ୟ ଏହି ତୁଳନାକୁ ଆମେ ଅଧିକ ଦୂର ନେଇ ପାରିବା ନାହିଁ; କିନ୍ତୁ ଏହା ଅତ୍ୟନ୍ତ ସ୍ପଷ୍ଟ ଯେ ଆମର ଏଠି ଧର୍ମବିଶ୍ୱାସ ଓ ମତ ଉପରେ ଅଧିକ ଜୋର ଦେବା ହେତୁ ଆମର ରାଜନୈତିକ ଓ ସାମାଜିକ ପ୍ରଶ୍ନ ଧାର୍ମିକ ସମ୍ପ୍ରଦାୟଙ୍କ ସ୍ୱାର୍ଥ ସହିତ ମିଶିଥିବା ହେତୁ, ଆମର ସାମ୍ପ୍ରଦାୟିକ ବିବାଦ ଏବଂ ସେହି ପ୍ରକାର ସମସ୍ୟା ଫଳରେ ଏପରି ପରିସ୍ଥିତି ଉପୁଜିଛି, ଯାହା ମଧ୍ୟଯୁଗୀୟ ୟୁରୋପରେ ଦେଖାଯାଇଥିଲା । ଏଥିରେ କାର୍ଯ୍ୟକାରୀ ଓ ବସ୍ତୁବାଦୀ ପାଶ୍ଚାତ୍ୟ ଏବଂ ଆଧ୍ୟାତ୍ମିକ ଓ ପର-ଜଗତ ବିଶ୍ୱାସୀ ପ୍ରାଚ୍ୟର କୌଣସି ପ୍ରଶ୍ନ ନାହିଁ । ପାର୍ଥକ୍ୟ ହେଉଛି ଏକ ଶିଳ୍ପୋଦ୍ୟୋଗ ଓ ଯନ୍ତ୍ରଶିଳ୍ପରେ ଅତ୍ୟନ୍ତ ଉନ୍ନତ ଯୋଗୁଁ ପାଶ୍ଚାତ୍ୟ ଦେଶରେ ନାନା ହିତକର ଓ ଅହିତକର ଜିନିଷ ଦେଖାଦେଇଛି ଏବଂ ପ୍ରାଚ୍ୟ ଏବେ ସୁଦ୍ଧା ଅଧିକ ପରିମାଣରେ କୃଷିପ୍ରଧାନ ଓ ଶିଳ୍ପୋନ୍ନତିର ପୂର୍ବ ଅବସ୍ଥାରେ ପଡ଼ି ରହିଛି ।

ଏହି ସହିଷ୍ଣୁତା ଓ ହେତୁବାଦ (Rationalism) ଭାବଧାରା ୟୁରୋପରେ ଧୀରେ ଧୀରେ ହୋଇଥିଲା । ପ୍ରଥମେ ସ୍ୱତନ୍ତ୍ରଦ୍ୱାରା ଏହା ଅଧିକପରିମାଣରେ ବୃଦ୍ଧିପାଇ ନଥିଲା, ଯେହେତୁ ଲୋକେ ପ୍ରକାଶ୍ୟରେ ଖ୍ରୀଷ୍ଟଧର୍ମକୁ ସମାଲୋଚନା କରିବାକୁ ଭୟ କରୁଥିଲେ । ଏହା କରିବାର୍ଥ ଜେଲଦଣ୍ଡ ବା ଅନ୍ୟ କୌଣସି ଶାସ୍ତି । ଜଣେ ଜର୍ମାନ ଦାର୍ଶନିକ ଅତ୍ୟଧିକ ଭାବରେ କନ୍‌ଫୁସିଅସ୍‌ଙ୍କ ପ୍ରଶଂସା କରିଥିବାରୁ ତାଙ୍କୁ ପ୍ରୁସିଆରୁ ନିର୍ବାସନ କରାଯାଇଥିଲା । ଏହା ଖ୍ରୀଷ୍ଟଧର୍ମ ପ୍ରତି ଅବମାନନା ବୋଲି ଅର୍ଥ କରାଗଲା । ଯାହାହେଉ ୧୮ଶ ଶତାବ୍ଦୀରେ ଏହି ନୂତନ ଭାବଧାରା ଆହୁରି ସ୍ପଷ୍ଟ ଓ ଅଧିକ ପ୍ରଚଳିତ ହେଲା; ଏହି ବିଷୟରେ ପୁସ୍ତକମାନ ପ୍ରକାଶିତ ହେଲା । ଏହି ହେତୁବାଦ ବିଷୟକ ଏବଂ ଅନ୍ୟ ବିଷୟରେ ସେ ସମୟରେ ସମସ୍ତଙ୍କ ଭିତରେ ଫ୍ରାନ୍‌ସବାସୀ ଭଲ୍‌ଟେୟାର ହିଁ ସୁପ୍ରସିଦ୍ଧ ଥିଲେ । ତାଙ୍କୁ ଜେଲଦଣ୍ଡ ଓ ନିର୍ବାସନ ଦଣ୍ଡ ଦିଆଯାଇଥିଲା । ଶେଷରେ ସେ ଜେନେଭା ନିକଟରେ ଫର୍ଣ୍ଣିଟାରେ ବାସ

କରିଥିଲେ । ବନ୍ଦିଶାଳାରେ ଥିବାବେଳେ କାଗଜ ବା କାଳି ଦିଆଯାଉ ନଥିଲା । ତେଣୁ ସେ ପାଠ୍ୟ ସାହାଯ୍ୟରେ ବହିରେ ଲେଖାଥିବା ଧାଡ଼ି ଭିତରେ ରହିଥିବା ସ୍ଥାନରେ କାବ୍ୟ ଲେଖିଥିଲେ । ଅତି ଯୁବାବସ୍ଥାରେ ସେ ଖ୍ୟାତି ଲଭିଥିଲେ । ବାସ୍ତବିକ ଦଶବର୍ଷ ବୟସ ବେଳେ ତାଙ୍କର ଅସାଧାରଣ ଦକ୍ଷତା ଯୋଗୁଁ ଅନ୍ୟମାନଙ୍କର ଦୃଷ୍ଟି ତାଙ୍କପ୍ରତି ଆକୃଷ୍ଟ ହୋଇଥିଲା । ଭଲ୍‌ଟେୟାର ଅନ୍ୟାୟ ଓ ଧର୍ମାନ୍ଧତାକୁ ଘୃଣା କରୁଥିଲେ ଏବଂ ଏହା ବିରୁଦ୍ଧରେ ସେ ଲଢ଼ିଥିଲେ । ତାଙ୍କର ପ୍ରସିଦ୍ଧ ଚିତ୍କାର ଥିଲା (Ecrasez L'infame) ଅର୍ଥାତ୍ "ଏହି ଘୃଣିତ କଳଙ୍କକୁ (ମିଥ୍ୟା ବିଶ୍ୱାସ) ଦୂରକର ।" ସେ ଅନେକ ବର୍ଷ ବଞ୍ଚିଥିଲେ (୧୬୯୪–୧୭୭୮) ଏବଂ ବହୁସଂଖ୍ୟକ ପୁସ୍ତକ ଲେଖିଥିଲେ । ସେ ଖ୍ରୀଷ୍ଟଧର୍ମକୁ ସମାଲୋଚନା କରିଥିବାରୁ ରକ୍ଷଣଶୀଳ ଖ୍ରୀଷ୍ଟିୟାନ୍‌ମାନେ ତାଙ୍କୁ ଭୀଷଣ ଭାବରେ ଘୃଣା କରୁଥିଲେ । ତାଙ୍କର ଏକ ପୁସ୍ତକରେ ସେ ଲେଖିଛନ୍ତି–"ଯେଉଁ ବ୍ୟକ୍ତି ଧର୍ମ କିପରି ତାହା ପରୀକ୍ଷା ନକରି ଗ୍ରହଣ କରେ ସେ ଠିକ୍ ବଳଦ ଯେପରି ଗୁଳ କରିବାକୁ ବିନା ଆପତ୍ତିରେ ଗୁଳ୍ମଯାଏ ତାହାର ସଦୃଶ ।" ଭଲ୍‌ଟେୟାରଙ୍କ ଲେଖା ସବୁ ହେତୁବାଦ ଓ ନୂତନ ଭାବଧାରା ପ୍ରତି ଲୋକଙ୍କ ପ୍ରବୃତ୍ତି ଜାଗ୍ରତ କରାଇବାରେ ସାହାଯ୍ୟ କରିଥିଲା । ଫର୍ଣ୍ଣିଠାରେ ତାଙ୍କର ପୁରାତନ ଗୃହ ଏପର୍ଯ୍ୟନ୍ତ ଅନେକଙ୍କ ପକ୍ଷରେ ତୀର୍ଥସ୍ଥାନ ହୋଇ ରହିଛି ।

ଜିଅନ୍ ଜାକ୍‌ଇସ୍ ରୁଷୋ ଆଉଜଣେ ପ୍ରସିଦ୍ଧ ଲେଖକ । ସେ ଭଲ୍‌ଟେୟାରଙ୍କ ସମସାମୟିକ ଥିଲେ; ମାତ୍ର ତାଙ୍କ ଅପେକ୍ଷା କମ୍ ବୟସର ଥିଲେ । ସେ ଜେନେଭାରେ ଜାତ ହୋଇଥିଲେ ଏବଂ ଜେନେଭା ତାଙ୍କ ନାମରେ ଗର୍ବିତ ହୁଏ । ସେଠାରେ ତାଙ୍କ ପ୍ରତିକୃତି ଯେ ଦେଖିଥିଲୁ ତୋର ମନେଅଛି ତ ? ଧର୍ମ ଓ ରାଜନୀତି ସମ୍ବନ୍ଧରେ ରୁଷୋଙ୍କ ଲେଖା ଫଳରେ ମହା ଆନ୍ଦୋଳନ ଉଠିଥିଲା । ସେ ଯାହାହେଉ ତାଙ୍କର ଉପନ୍ୟାସ ଏବଂ ସାମାଜିକ ଓ ରାଜନୈତିକ ତଥ୍ୟ ସମ୍ବନ୍ଧରେ ଏକପ୍ରକାର ସାହସିକ ଲେଖା ଫଳରେ ଅନେକ ଲୋକଙ୍କମନ ନୂତନ ଭାବଧାରା ଓ ନୂତନ ପ୍ରତିଜ୍ଞାରେ ପୂର୍ଣ୍ଣ ହୋଇଯାଇଥିଲା । ତାଙ୍କର ରାଜନୀତିକ ତଥ୍ୟ ସବୁ ବର୍ତ୍ତମାନ ଅଚଳ ହୋଇଗଲାଣି; କିନ୍ତୁ ଫ୍ରାନ୍‌ସ ଲୋକଙ୍କୁ ବିରାଟ ବିପ୍ଳବ ପାଇଁ ପ୍ରସ୍ତୁତ କରିବାରେ ଏହା ପ୍ରଧାନ ଭାଗ ନେଇଥିଲା । ରୁଷୋ ବିପ୍ଳବ ଦୁର୍ଗୁର କରିନଥିଲେ । ସମ୍ଭବତଃ ସେ ଏପରି ଏକ ବିପ୍ଳବ ଆଶା କରି ନଥିଲେ; କିନ୍ତୁ ଏହା ନିଶ୍ଚୟ ଯେ ତାଙ୍କର ପୁସ୍ତକ ଓ ଭାବଧାରା ସବୁ ଲୋକଙ୍କ ମନରେ ଏପରି ବୀଜ ବପନ କଲା ଯାହା ବିପ୍ଳବ ଆକାରରେ ଫଳବତୀ ହେଲା । ତାଙ୍କର ପ୍ରସିଦ୍ଧ ପୁସ୍ତକ ହେଉଛି, "ସୋସାଲ କଣ୍ଟ୍ରାକ୍ଟ" (Du-contrat Social) ଏବଂ ଏଥିରେ ଏହି ବାକ୍ୟ ଆରମ୍ଭ ହୋଇଛି ଯେ (ମୁଁ ଏହା ମନରୁ ଲେଖୁଛି) "ମନୁଷ୍ୟ ସ୍ୱାଧୀନ ଭାବରେ ଜନ୍ମ ହୋଇଛି, ମାତ୍ର ପ୍ରତ୍ୟେକ ସ୍ଥାନରେ ବନ୍ଧନରେ ପଡ଼ିଛି ।"

ରୁଷୋ ଜଣେ ବିଖ୍ୟାତ ଶିକ୍ଷାବିତ୍ ଥିଲେ ଏବଂ ଶିକ୍ଷାଦିଗରେ ସେ ପ୍ରସ୍ତାବ କରିଥିବା ଅନେକ ନୂତନ ପ୍ରଣାଳୀ ଏବେସୁଦ୍ଧା ସ୍କୁଲମାନଙ୍କରେ ପ୍ରଚଳିତ ଅଛି ।

ଭଲଟେୟାର ଓ ରୁଷୋଙ୍କ ବ୍ୟତୀତ ୧୮ଶ ଶତାବ୍ଦୀରେ ଫ୍ରାନ୍ସରେ ଆହୁରି ଅନେକ ପ୍ରସିଦ୍ଧ ଲେଖକ ଓ ଲେଖକ ଥିଲେ । ମୁଁ କେବଳ ଆଉଜଣେ ବିଖ୍ୟାତ ବ୍ୟକ୍ତି ମଣ୍ଟେସ୍କୁଇଙ୍କ ନାମ ଉଲ୍ଲେଖ କରିବି । ସେ ଅନ୍ୟ କେତେକ ପୁସ୍ତକ ବ୍ୟତୀତ 'ଏସ୍‌ପ୍ରିଟ୍ ଡି ଲୋୟେ' Esprit de Lois) ଲେଖିଥିଲେ । ଏହି ସମୟରେ ପ୍ୟାରିସ୍‌ରେ ଏକ ଅଭିଧାନ (Encycolpaedia) ପ୍ରକାଶିତ ହୋଇଥିଲା ଏବଂ ଏଥିରେ ରାଜନୀତି ଓ ସାମାଜିକ ବିଷୟରେ ଡିଡେରଟ୍ ଓ ଅନ୍ୟାନ୍ୟ ସୂକ୍ଷ୍ମ ଲେଖକମାନଙ୍କର ପ୍ରବନ୍ଧ ସବୁ ସ୍ଥିତ ରହିଛି । ବାସ୍ତବିକ ଫ୍ରାନ୍ସରେ ବହୁ ପରିମାଣରେ ଦାର୍ଶନିକ ଓ ଚିନ୍ତାଶୀଳ ବ୍ୟକ୍ତି ପୂର୍ଣ୍ଣ ଥିଲେ ପରି ବୋଧହୁଏ ଏବଂ ଆହୁରି ଅଧିକ କଥା ହେଉଛି ସେମାନଙ୍କର ପୁସ୍ତକ ବ୍ୟାପକ ଭାବରେ ଏବଂ ବହୁସଂଖ୍ୟକ ସାଧାରଣ ଲୋକ ବି ତାଙ୍କର ଚିନ୍ତାଧାରା ସବୁ ଆଲୋଚନା କଲେ ଓ ତାଙ୍କ ତଥ୍ୟ ବିସ୍ତାର କରିବାକୁ ଲାଗିଲେ । ଏହିରୂପେ ଫ୍ରାନ୍ସରେ ଧାର୍ମିକ ଅସହିଷ୍ଣୁତା, ରାଜନୈତିକ ଓ ସାମାଜିକ ବିଶେଷାଧିକାର ବିରୁଦ୍ଧରେ ଏକ ଦୃଢ଼ ମତ ଗଢ଼ି ଉଠିଲା । ସ୍ୱାଧୀନତା ଲାଗି ଏକ ଅସ୍ପଷ୍ଟ ଅଭିଳାଷ ଲୋକଙ୍କ ମନ ଦଖଲ କରିଥିଲା । ଅଥଚ ବିଚିତ୍ର କଥା ଯେ, ଦାର୍ଶନିକ-ମାନେ ବା ଲୋକେ କେହି ରାଜାଙ୍କୁ ଛାଡ଼ିବା ନିମନ୍ତେ ପ୍ରସ୍ତୁତ ନଥିଲେ । ସେତେବେଳେ ପ୍ରଜାତନ୍ତ୍ର ଧାରଣା ସମସ୍ତଙ୍କର ହୋଇନଥିଲା ଏବଂ ଲୋକେ ଏକପ୍ରକାର ଆଦର୍ଶ ରାଜା ପାଇ ପାରିବେ ବୋଲି ଆଶାପୋଷଣ କରୁଥିଲେ—ଯେପରି ପ୍ଲେଟୋ ତାଙ୍କର ଦାର୍ଶନିକ ରାଜାର କଳ୍ପନା କରିଥିଲେ ଯେ ରାଜା କି ତାଙ୍କୁ ଦୋଷମୁକ୍ତ କରିବେ ଏବଂ କେତେକ ପରିମାଣରେ ସ୍ୱାଧୀନତା ଓ ନ୍ୟାୟ ଦାନ କରିବେ; ପୀଡ଼ିତ ଜନତା କେତେଦୂର ରାଜାଙ୍କୁ ଭଲ ପାଉଥିଲେ ସେ ବିଷୟରେ ସନ୍ଦେହ ଜାତ ହୁଏ ।

ଫ୍ରାନ୍ସ ପରି ଇଂଲଣ୍ଡରେ ଏପରି କୌଣସି ରାଜନୈତିକ ଚିନ୍ତାର ଉନ୍ନତି ହୋଇନଥିଲା । କଥିତ ଅଛି ଯେ ଇଂରେଜ ଲୋକେ ଏକ ରାଜନୈତିକ ଜୀବ ନୁହନ୍ତି, ମାତ୍ର ଫ୍ରାନ୍ସବାସୀ ରାଜନୈତିକ ଅଟନ୍ତି । ଏତଦ୍‌ଭିନ୍ନ ୧୬୮୮ ଖ୍ରୀଷ୍ଟାବ୍ଦର ଇଂରେଜ ବିପ୍ଳବ କେତେକ ପରିମାଣରେ ସଂସଦୀୟକରଣ କରିଦେଇଥିଲା । ଯାହାହେଉ ତଥାପି କେତେକ ଶ୍ରେଣୀ ଯଥେଷ୍ଟ ବିଶେଷାଧିକାର ଭୋଗ କରୁଥିଲେ । ନୂତନ ଆର୍ଥିକ ଅଭିବୃଦ୍ଧି—ଯାହା ସମ୍ବନ୍ଧରେ ମୁଁ ଶୀଘ୍ର ଆଉ ଏକ ଚିଠିରେ ବର୍ଣ୍ଣନା କରିବି, ଏବଂ ଆମେରିକା ଓ ଭାରତ ସହିତ ବେପାର ଓ ସମୃଦ୍ଧ ଇଂରେଜ ଲୋକଙ୍କ ମନ ଅଧିକାର କରିଥିବ । ଯେତେବେଳେ ସାମାଜିକ ବିରୋଧ ବିରାଟ ହୋଇଯାଏ, ସେତେବେଳେ ଭାଙ୍ଗିବାର ଆପଦରୁ ରକ୍ଷା ପାଇବାପାଇଁ ଏକ ଅସ୍ଥାୟୀ ମୀମାଂସା ହୋଇଯାଏ । ଫ୍ରାନ୍ସରେ ଏପରି କୌଣସି ମୀମାଂସାର ସ୍ଥାନ ନଥିଲା ଏବଂ ସେଥିଯୋଗୁ ଏପରି ଓଲଟପାଲଟ ହେଲା ।

ଯାହାହେଉ ଆଗ୍ରହଜନକ କଥା ଯେ ୧୮ଶ ଶତାବ୍ଦୀର ମଧ୍ୟଭାଗକୁ ଇଂଲଣ୍ଡରେ ଆଧୁନିକ ଉପନ୍ୟାସ ଦେଖାଦେଲା । ମୁଁ ତୋତେ ଆଗରୁ କହିଛି ଯେ ଗଲିଭର ଟ୍ରାଭଲ୍‌ସ ଓ ରବିନ୍‌ସନ୍ କ୍ରୁସୋ ଦୁଇଟିଯାକ ବହି ୧୮ଶ ଶତାବ୍ଦୀର ପ୍ରଥମ ଭାଗରେ ବାହାରିଥିଲା ।

ତା ପରେ ପ୍ରକୃତ ଉପନ୍ୟାସ ସବୁ ବାହାରିଲା । ଏହି ସମୟରେ ଇଂଲଣ୍ଡରେ ନୂତନ ପାଠକ ଶ୍ରେଣୀ ଦେଖାଯାଆନ୍ତି ।

ଏହି ୧୮ଶ ଶତାବ୍ଦୀରେ ଗିବନ୍ ନାମକ ଜଣେ ଇଂରେଜ ତାଙ୍କର ପ୍ରସିଦ୍ଧ "ଡିକ୍ଲାଇନ ଏଣ୍ଡ୍ ଫଲ୍ ଅଫ୍ ଦ ରୋମ ନ୍ ଏମ୍ପାୟାର" ନାମକ ପୁସ୍ତକ ଲେଖିଥିଲେ । ମୁଁ ରୋମାନ୍ ସାମ୍ରାଜ୍ୟ ବିଷୟରେ ଲେଖିଲାବେଳେ ଏକ ପୂର୍ବ ଚିଠିରେ ତାଙ୍କ ବିଷୟ ଓ ତାଙ୍କ ପୁସ୍ତକ ସମ୍ବନ୍ଧରେ ଉଲ୍ଲେଖ କରିଛି ।

## ୯୭ : ବିରାଟ ପରିବର୍ତ୍ତନ ପୂର୍ବର ୟୁରୋପ

ସେପ୍‌ଟେମ୍ବର ୨୪, ୧୯୩୨

୧୮ଶ ଶତାବ୍ଦୀର ପୂର୍ବ ପରେ ବିଶେଷତଃ ଫ୍ରାନ୍‌ସର ନରନାରୀଙ୍କ ମନର ଗତି ସମ୍ବନ୍ଧରେ କିଛିଏ ଜାଣିବା ପାଇଁ ଆମେ ଚେଷ୍ଟା କରିଥାଇଁ । ଏହା କେବଳ ଉପରୁ ଦୃଷ୍ଟିମାତ୍ର; ଏବଂ ଆମ ଆଗରେ ବଢ଼ୁଥିବା ପ୍ରେରଣାର ନୂତନ ଭାବଧାରା ଏବଂ ତାହାର ପୁରାତନ ସହିତ ଝଗଡ଼ାର ରହସ୍ୟ ପ୍ରକାଶ କଲା । ଦୃଶ୍ୟର [illegible] ପ୍ରସ୍ତାବରେ ରହିଯାଇ ଥିବାରୁ ୟୁରୋପର ଏହି ସାଧାରଣ ରଙ୍ଗମଞ୍ଚରେ ଅଭିନେତାମାନଙ୍କୁ ଆମେ ବର୍ତ୍ତମାନ ଦେଖିବା ।

ଫ୍ରାନ୍‌ସରେ ବୃଦ୍ଧ ଚତୁର୍ଦ୍ଦଶ ଲୁଇ ଶେଷରେ ୧୭୧୫ରେ ମଲେ । ସେ ଅନେକ କାଳ [illegible] ପଞ୍ଚଦଶ ଲୁଇ ନାମରେ ରାଜା ହେଲେ । ଏହା ଅଧିକ [illegible] ଶ୍ରୀ ଦୁର୍ଭିକ୍ଷିରେ ରାଜା ୧୪ଶ ଲୁଇ ଓ ୧୫ଶ ଲୁଇ ମୋଟରେ ୧୩୧ ବର୍ଷ ଫ୍ରାନ୍‌ସରେ ରାଜତ୍ୱ କଲେ । ନିଶ୍ଚୟ ପୃଥିବୀରେ ଏହା ଏକ ଅ[illegible] ଜନକ । ଚୀନରେ ଦୁଇଜଣ ମାଞ୍ଚୁ ସମ୍ରାଟ କାଙ୍ଗହି ଓ ଚିଏନ୍ ଲୁଙ୍ଗ ପ୍ରତ୍ୟେକେ [illegible] ଅଧିକ କାଳ ରାଜତ୍ୱ କରିଥିଲେ । ମାତ୍ର ସେମାନେ ଜଣକପରେ ଜଣେ ରାଜତ୍ୱ କରି ନଥିଲେ ଏବଂ ଦୁହିଙ୍କ ଭିତରେ ଏକ ତୃତୀୟ ରାଜତ୍ୱ ଥିଲା । ଅସାଧାରଣ ଭାବରେ [illegible] ଛଡ଼ା ୧୫ଶ ଲୁଇଙ୍କ ରାଜତ୍ୱ ମଧ୍ୟରେ ଏଠାରେ ଷଡ଼ଯନ୍ତ୍ରକର ବ୍ୟଭିଚାର ଓ ଚକ୍ରାନ୍ତ [illegible] ଉଲ୍ଲେଖଯୋଗ୍ୟ । ରାଜାଙ୍କ ମଧ୍ୟ [illegible] ପ୍ରକାର ଆମୋଦ ଲାଗି ଖର୍ଚ୍ଚ ହୋଇଥିଲା । [illegible] ମୁଦ୍ରା ରାଜାଙ୍କର [illegible] ରେ ଲାଗିଲା । ରାଜାଙ୍କ ପାଖରେ ଥିବା ସ୍ତ୍ରୀ ପୁରୁଷ [illegible] ସେମାନଙ୍କୁ ମଧ୍ୟ ଜମିଦାନ କରାଯାଉଥିଲା [illegible] କରୁ ଏସବୁଥିରେ ଟଙ୍କା ଅଧିକ ଭାବରେ ଜନସାଧାରଣଙ୍କ ଉପରେ ପଡ଼ିଲା । ଏହି ଶାସନର ଅସାରତା

ଓ ବ୍ୟକ୍ତିତ୍ୱର ଏକତ୍ରସଙ୍ଗରେ ଗ୍ଦ୍ଧଳନ ନଦେମ ଅଧିକ ହୁଏ । ତେଣୁ ଏହି ଶତାବ୍ଦୀ ଶେଷ ହେବା ପୂର୍ବରୁ ସେମାନେ ତାଙ୍କ ସାହାର ଶୌର୍ଯ୍ୟ [illegible] ଏକାଧିକବାରେ ଏବଂ ଶେଷରେ ଏକ ଦାହ ଭିତରେ ଯାଇ ପଡ଼ିବାରେ ବିଚିତ୍ରତା କ'ଣ ଅଛି ? ଆମକୁ ବାସ୍ତବିକ ବିସ୍ମୟ ଲାଗେ ଯେ ଏହି ପଥ ଏପରି ଦୀର୍ଘ ହୋଇଥିଲା ଏବଂ ପତନ ଏତେ ବିଳମ୍ବରେ ଘଟିଲା । ୧୫ଶ ଲୁଇ ଲୋକଙ୍କ ପ୍ରତିଶୋଧ ଓ ବିଦ୍ୱେଷରୁ ରକ୍ଷା ପାଇଗଲେ; ୧୭୭୪ରେ ତାଙ୍କ ଉତ୍ତରାଧିକାରୀ ଷୋଡ଼ଶ ଲୁଇଙ୍କୁ ଏହାର ସମ୍ମୁଖୀନ ହେବାକୁ ପଡ଼ିଲା ।

୧୫ଶ ଲୁଇଙ୍କ ଅପାରଗତା ଓ ଅଧୋଗତି ସତ୍ତ୍ୱେ ଶାସନରେ ତାଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ସମ୍ବନ୍ଧରେ କିଛି ସନ୍ଦେହ ନ ଥିଲା । ସେ ସର୍ବେସର୍ବା ଥିଲେ ଏବଂ ସେ ଯେଉଁ କାମ କରିବାକୁ ଇଚ୍ଛା କରିବେ, ତାଙ୍କର ସେ ଅଧିକାର ଉପରେ ହସ୍ତକ୍ଷେପ କରିବାକୁ କେହି ନ ଥିଲା । ୧୭୬୬ରେ ପାରିସରେ ଏକ ସଭାରେ ବକ୍ତୃତା ଦେଇ ସେ କ'ଣ କହିଥିଲେ ଶୁଣ —

"ରାଜସତ୍ତା ପୂର୍ଣ୍ଣଭାବରେ ମୋର ବ୍ୟକ୍ତିତ୍ୱରେ ନିହିତ ରହିଛି··· । କୌଣସି ଲୋକର ସାହାଯ୍ୟ ନ ନେଇ ଆଇନ ତିଆରି କରିବାର ଅଧିକାର କେବଳ ମୋର ଅଛି । ମୁଁ ପ୍ରଜାଙ୍କ ଶାନ୍ତିର ଏକମାତ୍ର ସ୍ରୋତ, ମୁଁ ତାଙ୍କର ସର୍ବଶ୍ରେଷ୍ଠ ରକ୍ଷକ । ମୋ ଛଡ଼ା ଅଲଗା ଅସ୍ତିତ୍ୱ ମୋ ପ୍ରଜାଙ୍କର ନାହିଁ । [illegible] ଜାତିର ହିତ ଓ ଅଧିକାର ରାଜାଠାରୁ ଏକ ପୃଥକ୍ ଜିନିଷ; [illegible] ଅଧିକାର ଏବଂ ମଙ୍ଗଳରେ ଓ ମୋର ହାତମୁଠାରେ ରହିଛି ।

(ଫରାସୀ ଲେଖାରୁ ଅନୂଦିତ
—ବିଶ୍ୱଇତିହାସକୀ ଝଲକ୍)

୧୮ଶ ଶତାବ୍ଦୀରୁ ଅଧିକକାଳ ପର୍ଯ୍ୟନ୍ତ ଫ୍ରାନ୍ସର ଶାସକ ଏହିପରି ଥିଲେ । ସେ [illegible] ସମଗ୍ର ୟୁରୋପରେ କର୍ତ୍ତୃତ୍ୱ କଲାପରି ବୋଧ ହେଉଥିଲା; କିନ୍ତୁ ତା ପରେ ସେ ଅନ୍ୟ ରାଜା ଓ ଲୋକମାନଙ୍କର ଅଭିଳାଷ ସହ ତାଙ୍କର ସଂଘର୍ଷ ଲାଗିଲା ଏବଂ [illegible] କରିବାକୁ ପଡ଼ିଲା । ଫ୍ରାନ୍ସର କେତେକ ପୁରାତନ ପ୍ରତିଦ୍ୱନ୍ଦୀ [illegible] ରଣକ୍ଷେତ୍ରରେ ସେପରି ପ୍ରାଧାନ୍ୟ ବିସ୍ତାର କରି ନ ଥିଲେ, କିନ୍ତୁ [illegible] ବାହାରିଲେ ଓ ଫରାସୀଶକ୍ତି ବିରୁଦ୍ଧରେ ଗଲେ । ହଲାଣ୍ଡ [illegible] ଗୌରବଜନକ କାଳପରେ ୟୁରୋପରେ ଓ ଅନ୍ୟତ୍ର ତାର ପତନ [illegible] ଆମେରିକା ଓ ଫିଲିପାଇନ୍ ଦ୍ୱୀପରେ ତାର ବହୁତ ଉପନିବେଶ ଥିଲା [illegible] ହାପ୍‌ସବର୍ଗମାନେ ଏପର୍ଯ୍ୟନ୍ତ ସାମ୍ରାଜ୍ୟର ମୁଖିଆ ପଦକୁ ଦାବି କରି [illegible] ଆସିଥିଲେ ଏବଂ ତାହା କରିଆରେ ୟୁରୋପରେ ନେତୃତ୍ୱ କରିଥିଲେ, [illegible] ପରି ପ୍ରଧାନ ନ ଥିଲେ । ଏବେ ସାମ୍ରାଜ୍ୟରେ ଅଷ୍ଟ୍ରିଆ ମୁଖ୍ୟ ରାଜ୍ୟ ଥାଇ ଏକ ରାଜ୍ୟ ପ୍ରୁସିଆ ଜାଗ୍ରତ ହୋଇଥିଲା ଏବଂ ସମାନ ପରିମା [illegible]

ହୋଇଗଲା । ଅଷ୍ଟ୍ରିଆନମାନଙ୍କ ପରେ ସିଂହାସନର ଉତ୍ତରାଧିକାରୀତ୍ୱ ନିମନ୍ତେ ଯୁଦ୍ଧ ହୋଇଥିଲା ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ମେରିଆ ଥେରେସା ନାମକ ଜଣେ ନାରୀ ରାଜତ୍ୱ କରୁଥିଲେ ।

ତୋର ମନେଥିବ, ୧୬୪୮ରେ ଓ୍ୱେଷ୍ଟଫେଲିଆ ସନ୍ଧି ଅନୁସାରେ ପ୍ରୁସିଆ ୟୁରୋପର ଏକ ପ୍ରଧାନ ଶକ୍ତି ହୋଇ ବାହାରିଲା । ସେଠାରେ ହୋଏନ୍‌ଜୋଲର୍ଣ୍ଣ ବଂଶ ରାଜତ୍ୱ କରୁଥିଲେ ଏବଂ ଅନ୍ୟ ଜର୍ମାନ ବଂଶ ଅଷ୍ଟ୍ରିଆରେ ହାପ୍‌ସବର୍ଗ ବଂଶର କର୍ତ୍ତୃତ୍ୱ ବିରୁଦ୍ଧରେ ସେମାନେ ଉଠିଲେ । ୪୬ ବର୍ଷ ପର୍ଯ୍ୟନ୍ତ (୧୭୪୦-୧୭୮୬) ପ୍ରୁସିଆ ଫ୍ରେଡ଼ରିକ୍‌ଙ୍କ ଦ୍ୱାରା ଶାସିତ ହୋଇଥିଲା, ତାଙ୍କର ସାମରିକ କୁଶଳତା ହେତୁ ତାଙ୍କୁ 'ଫ୍ରେଡ଼ରିକ୍ ଦ ଗ୍ରେଟ୍' ବୋଲି ଆଖ୍ୟା ଦିଆଯାଇଥିଲା । ୟୁରୋପର ଅନ୍ୟମାନଙ୍କ ଭଳି ସେ ଜଣେ ଏକଛତ୍ର ସମ୍ରାଟ ଥିଲେ; କିନ୍ତୁ ସେ ଦାର୍ଶନିକ ଭାବ ଦେଖାଇଥିଲେ ଏବଂ ଭଲ୍‌ଟେୟାରଙ୍କ ସହିତ ବନ୍ଧୁତ୍ୱ କରିବା ଲାଗି ଚେଷ୍ଟା କରିଥିଲେ । ସେ ଏକ ଦୃଢ଼ ସେନାବାହିନୀ ଗଢ଼ିଲେ ଏବଂ ସେ ଜଣେ କୃତୀ ସେନାପତି ଥିଲେ । ସେ ନିଜକୁ ଜଣେ ହେତୁବାଦୀ ବୋଲି କହୁଥିଲେ ଏବଂ ସେ କହି-ଥିବାର ଶୁଣାଯାଏ ଯେ, "ପ୍ରତ୍ୟେକ ଲୋକ ନିଜ ରାସ୍ତାରେ ସ୍ୱର୍ଗକୁ ଯିବା ପାଇଁ ତାକୁ ଅନୁମତି ମିଳିବା ଦରକାର ।"

୧୭ଶ ଶତାବ୍ଦୀଠାରୁ ୟୁରୋପରେ ଫରାସୀ ସଂସ୍କୃତି ପ୍ରାଧାନ୍ୟ ଲଭିଥିଲା । ୧୮ଶ ଶତାବ୍ଦୀର ମଧ୍ୟକାଳରେ ଏହା ଆହୁରି ଅଧିକରୂପେ ପରିଲକ୍ଷିତ ହେଲା ଏବଂ ଭଲଟେୟାରଙ୍କର ୟୁରୋପରେ ବିପୁଳ ଖ୍ୟାତି ହୋଇଥିଲା । ବାସ୍ତବିକ କେତେକ ଲୋକ ଏପରିକି ଏହି ଶତାବ୍ଦୀକୁ, "ଭଲଟେୟାରଙ୍କ ଶତାବ୍ଦୀ" ବୋଲି କହନ୍ତି । ଇଉରୋପର ସମସ୍ତ ରାଜ-ପରିଷଦରେ ଏପରିକି ପଶ୍ଚାଦ୍‌ଗାମୀ ସେଣ୍ଟପିଟର୍ସବର୍ଗରେ ମଧ୍ୟ ଫରାସୀ ସାହିତ୍ୟ ପଢ଼ାଗଲା ଏବଂ ସଂସ୍କୃତିସମ୍ପନ୍ନ ଓ ଶିକ୍ଷିତ ଲୋକେ ଫରାସୀ ଭାଷାରେ ଲେଖିବା ଓ କହିବା ପସନ୍ଦ କରୁଥିଲେ । ଏହିରୂପେ ପ୍ରୁସିଆର ଫ୍ରେଡ଼ରିକ୍ ଦ ଗ୍ରେଟ୍ ପ୍ରାୟ ସର୍ବଦା ଫରାସୀ ଭାଷାରେ ଲେଖୁଥିଲେ ଓ କହୁଥିଲେ । ଏପରିକି ସେ ଫରାସୀ କବିତା ଲେଖିବାକୁ ଚେଷ୍ଟା କରିଥିଲେ । ଭଲଟେୟାରଙ୍କୁ ଏହା ସଂଶୋଧନ କରି ତାଙ୍କ ଲାଗି ଭଲ କରିଦେବା ନିମନ୍ତେ ସେ କହୁଥିଲେ ।

ପ୍ରୁସିଆର ପୂର୍ବଦିଗକୁ ରୁଷ ପରବର୍ତ୍ତୀ ବର୍ଷମାନଙ୍କରେ ଏକ ପ୍ରବଳ ଶକ୍ତି ହୋଇ ଉଠିଥିଲା । ଆମେ ଚୀନ ଇତିହାସ ଆଲୋଚନା କଲାବେଳେ ରୁଷ କିପରି ସାଇବେରିଆ ଅତିକ୍ରମ କରି ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା ଏବଂ ଏପରିକି ଆଲାସ୍କା ପର୍ଯ୍ୟନ୍ତ ଯାଇଥିଲା, ତାହା ଦେଖିଥାଉଁ । ୧୭ଶ ଶତାବ୍ଦୀର ଶେଷ ବେଳକୁ ରୁଷରେ ଜଣେ ବଳିଷ୍ଠ ଶାସକ ପିଟର ଦ ଗ୍ରେଟ୍ ଥିଲେ । ରୁଷ ଯେଉଁ କେତେକ ପୁରାତନ ମଙ୍ଗୋଲୀୟ ଦୃଷ୍ଟିକୋଣ ଓ ପରମ୍ପରା ଗ୍ରହଣ କରିଥିଲା, ତାହା ଦୂର କରିବା ନିମନ୍ତେ ପିଟର ବ୍ୟଗ୍ର ଥିଲେ । ଶୁଣାଯାଏ ଯେ ସେ ରୁଷକୁ "ପାଶ୍ଚାତ୍ୟକରଣ" କରିବାକୁ ଚାହୁଁଥିଲେ । ତେଣୁ ପୁରାତନ

ପରାମର୍ଶ-ପୂର୍ଣ୍ଣ ତାଙ୍କର ପୁରୁଣା ରାଜଧାନୀ ମସ୍କୋ ଛାଡ଼ିଲେ ଏବଂ ନିଜେ ଏକ ନୂତନ ନଗର ଓ ନୂତନ ରାଜଧାନୀ ସ୍ଥାପନ କଲେ । ଏହା ହେଉଛି ଉତ୍ତରରେ ନେଭାନଦୀ କୂଳରେ ଫିନ୍‌ଲଣ୍ଡ ହ୍ରଦର ମୁହାଣ ଉପରେ ଅବସ୍ଥିତ ସେଣ୍ଟ ପିଟର୍ସବର୍ଗ । ମସ୍କୋପରି ଏହି ନଗରରେ ସ୍ୱର୍ଣ୍ଣଗମ୍ବୁଜ ବା ପ୍ରାସାଦ ନ ଥିଲା; ଏହା ଅଧିକ ଭାବରେ ପାଶ୍ଚାତ୍ୟ ଇଉରୋପର ବଡ଼ ନଗରମାନଙ୍କ ପରି ଥିଲା । ପିଟର୍ସବର୍ଗ 'ପାଶ୍ଚାତ୍ୟକରଣ'ର ପ୍ରତୀକ ହେଲା ଏବଂ ରୁଷ ଇଉରୋପୀୟ ରାଜନୀତିରେ ଅଧିକ ଭାଗ ନେବାକୁ ଆରମ୍ଭ କଲା । ବୋଧହୁଏ ତୁ ଜାଣୁ ଯେ ପିଟର୍ସବର୍ଗ ନାମ ଆଉ ନାହିଁ । ଗତ ୨୦ ବର୍ଷ ଭିତରେ ଦୁଇଥର ଏହାର ନାମ ପରିବର୍ତ୍ତିତ ହୋଇଛି । ପ୍ରଥମେ ହେଲା ପେଟ୍ରୋଗ୍ରାଡ଼ ଏବଂ ତା'ପରେ ଦ୍ୱିତୀୟଥର ହେଲା ଲେନିନ୍‌ଗ୍ରାଡ଼, ଏହିନାମ ଆଜିପର୍ଯ୍ୟନ୍ତ ରହିଛି ।

ପିଟର ଦି ଗ୍ରେଟ୍ ରୁଷରେ ଅନେକ ପରିବର୍ତ୍ତନ କରିଥିଲେ । ମୁଁ ସେଥିରୁ ଗୋଟିଏ କଥା କହିବି, ଯାହା ଜାଣି ତୁ ଖୁସି ହେବୁ । ସେ ନାରୀ ଜାତିର ଟେରେମ ନାମକ ଓଢ଼ଣା ବ୍ୟବହାର ବନ୍ଦ କରିଥିଲେ, ଏହା ସେତେବେଳେ ରୁଷରେ ପ୍ରଚଳିତ ଥିଲା । ପିଟରଙ୍କର ଭାରତ ଉପରେ ଦୃଷ୍ଟି ପଡ଼ିଥିଲା ଏବଂ ଆନ୍ତର୍ଜାତୀୟ ରାଜନୀତିରେ ସେ ଭାରତର ମୂଲ୍ୟ ବୁଝିଥିଲେ । ତାଙ୍କ ଉଇଲରେ ସେ ଲେଖିଛନ୍ତି—"ମନେରଖ ଭାରତର ବାଣିଜ୍ୟହିଁ ଦୁନିଆର ବାଣିଜ୍ୟ ଏବଂ ଯେ ଏକାକୀ ଏହା ଉପରେ କର୍ତ୍ତୃତ୍ୱ କରିପାରିବ, ସେ ଇଉରୋପର ଅଧିନାୟକ ହେବ ।" ଇଂଲଣ୍ଡ ଭାରତ ଉପରେ କର୍ତ୍ତୃତ୍ୱ ଲାଭ କଲା ପରେ ତାର ଶକ୍ତି ଯେପରି ଦ୍ରୁତବେଗରେ ବୃଦ୍ଧିପାଇଲା ସେଥିରୁ ତାଙ୍କର ଶେଷ ବାଣୀର ଯଥାର୍ଥତା ଜଣାପଡ଼ିଲା । ଭାରତର ଶୋଷଣ ଇଂଲଣ୍ଡକୁ ସମ୍ମାନ ଓ ସମ୍ପଦ ଦାନକଲା ଏବଂ କେତେ ପୁରୁଷ ପର୍ଯ୍ୟନ୍ତ ତାକୁ ପୃଥିବୀର ମୁଖ୍ୟ ଶକ୍ତି କରିଦେଲା ।

ଏକ ପାଖରେ ପ୍ରୁସିଆ ଓ ଅଷ୍ଟ୍ରିଆ ଏବଂ ଅନ୍ୟ ପାଖରେ ରୁଷ; ଏହା ମଧ୍ୟରେ ପୋଲଣ୍ଡ ଥିଲା । ଏହା ଏକ ଅନୁଗାମୀ ଦେଶ; ଏଠାର କୃଷକ ଖୁବ୍ ଦରିଦ୍ର ଥିଲେ । ଏଠାରେ କିଛି ବେପାର ବା ଶିଳ୍ପ ନ ଥିଲା ଓ ବଡ଼ ସହର ବି ନ ଥିଲା । ଏହାର ଏକ ବିଚିତ୍ର ଶାସନବିଧାନ ଥିଲା । ରାଜା ନିର୍ବାଚିତ ହେଉଥିଲା ଏବଂ କ୍ଷମତା ସାମନ୍ତ ଅଭିଜାତ ଶ୍ରେଣୀଙ୍କ ହାତରେ ରହିଥିଲା । ଏହାର ଚତୁର୍ଦ୍ଦିଗ ରାଜ୍ୟଗୁଡ଼ିକ ବଳିଷ୍ଠ ହେବା ସଙ୍ଗେ ସଙ୍ଗେ ପୋଲଣ୍ଡ ଦୁର୍ବଳ ହୋଇ ପଡ଼ିଲା । ପ୍ରୁସିଆ, ରୁଷ ଓ ଅଷ୍ଟ୍ରିଆ ଏହା ଉପରେ କ୍ଷୁଧିତ ଦୃଷ୍ଟି ପକାଇ ଥିଲେ ।

ଅଥଚ ୧୬୮୩ରେ ପୋଲଣ୍ଡର ରାଜାହିଁ ଭିଏନା ଉପରେ ଶେଷ ତୁର୍କୀ ଆକ୍ରମଣକୁ ପରାସ୍ତ କରିଥିଲେ । ଅଟୋମାନ ତୁର୍କୀମାନେ ଆଉ ମୁଣ୍ଡ ଟେକିପାରି ନଥିଲେ । ସେମାନଙ୍କର ଶକ୍ତି କ୍ଷୟ ହୋଇ ଯାଉଥିଲା ଏବଂ କ୍ରମେ ଭଙ୍ଗା ପଡ଼ି ଆସିଲା । ସେହିଦିନଠାରୁ ସେମାନେ ନିଜକୁ ରକ୍ଷା କରିବାରେ ଲାଗିଲେ ଏବଂ ଧୀରେ ଧୀରେ ଇଉରୋପରେ ତୁର୍କୀ ସାମ୍ରାଜ୍ୟ ଲୁଚିଯିବାକୁ ଆରମ୍ଭ କଲା; କିନ୍ତୁ ୧୮ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଯେଉଁ କାଳ କଥା ଆମେ ବିଚାର

କରୁଛି ସେତେବେଳେ ଇଉରୋପର ଦକ୍ଷିଣ ଓ ପୂର୍ବରେ ତୁର୍କୀ ଏକ ପ୍ରଭାବଶାଳୀ ରାଜ୍ୟ ଥିଲା ଏବଂ ତାର ସାମ୍ରାଜ୍ୟ ବାଲକାନ ଓ ହଙ୍ଗେରିଠାରୁ, ପୋଲାଣ୍ଡ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

ଦକ୍ଷିଣରେ ଇଟାଲୀ ବିଭିନ୍ନ ଶାସକଙ୍କ ଅଧୀନରେ ବିଭକ୍ତ ହୋଇଯାଇଥିଲା ଏବଂ ଇଉରୋପୀୟ ରାଜନୀତିରେ ତାର ବିଶେଷ ସ୍ଥାନ ନ ଥିଲା । ପୋପ୍ ଆଉ ସେପରି ଆଦେଶ କରିବା ଅବସ୍ଥାରେ ନ ଥିଲେ ଏବଂ ରାଜା ଓ ସମ୍ରାଟମାନେ ତାଙ୍କ ପ୍ରତି ଭକ୍ତିଭାବ ଦେଖାଇଲେ ପୁଣି ରାଜନୈତିକ ବ୍ୟାପାରରେ ତାଙ୍କୁ ଅବଜ୍ଞା କରୁଥିଲେ । କ୍ରମେ ନୂତନ ପ୍ରଥା, ପ୍ରଧାନ ଶକ୍ତିଙ୍କ ପ୍ରଥା, ଇଉରୋପରେ ଚଳିବାକୁ ଆରମ୍ଭ କଲା । ମୁଁ ତୋତେ କହିଛି, ବଳିଷ୍ଠ କେନ୍ଦ୍ରୀଭୂତ ରାଜତନ୍ତ୍ରସବୁ ରାଷ୍ଟ୍ରୀୟ ଭାବ ବଢ଼ାଇବା ଦିଗରେ ସାହାଯ୍ୟ କରିଥିଲେ । ଲୋକେ ବିଶେଷ ଭାବରେ ନିଜ ଦେଶ କଥା ଚିନ୍ତା କରିବାକୁ ଆରମ୍ଭ କଲେ । ଏହା ଆଜିକାଲି ଅତି ସାଧାରଣ କଥା ହୋଇଛି । ମାତ୍ର ଏହି କାଳ ପୂର୍ବରୁ ଅସାଧାରଣ କଥା ଥିଲା । ଫ୍ରାନ୍ସ ଇଂଲଣ୍ଡ ବା ବ୍ରିଟାନିଆ ଓ ଆହୁରି ସେହିପରି ଶକ୍ତିସବୁ ବାହାରିବାକୁ ଆରମ୍ଭ କଲା । ଏଗୁଡ଼ିକ ରାଷ୍ଟ୍ରର ପ୍ରତୀକ ପରିବୋଧ ହେଲା । ପରେ ଊନବିଂଶ ଶତାବ୍ଦୀରେ ଏଗୁଡ଼ିକ ନରନାରୀଙ୍କ ମନରେ ନିର୍ଦ୍ଦିଷ୍ଟ ଆକାର ଧାରଣ କଲା ଏବଂ ଅଦ୍ଭୁତ ଭାବରେ ତାଙ୍କର ହୃଦୟ ବିଚଳିତ କରିଦେଲା । ଏଗୁଡ଼ିକ ନୂତନ ଦେବୀ ଭାବରେ ପୂଜା ପାଇଲେ, ପ୍ରତ୍ୟେକ ଦେଶଭକ୍ତଙ୍କୁ ଏହାର ପୂଜା କରିବାକୁ ହେଲା ଏବଂ ଏହାର ନାମରେ ଓ ଏହା ତରଫରୁ ଦେଶଭକ୍ତମାନେ ପରସ୍ପର ଭିତରେ ଯୁଦ୍ଧ ଓ ହତ୍ୟା କରିବାକୁ ଲାଗିଲେ । ତୁ ଜାଣୁ କିପରି ଭାରତମାତା ଭାବ ଆମ ସମସ୍ତଙ୍କୁ ଭଲଲାଗେ ଏବଂ ପୌରାଣିକ ଓ କାଳ୍ପନିକ ଛବି ଲାଗି କିପରି ଲୋକେ ଆନନ୍ଦରେ କଷ୍ଟ ଭୋଗ କରନ୍ତି ଏବଂ ନିଜର ଜୀବନ ଦାନ କରନ୍ତି । ସେହିପରି ଅନ୍ୟ ଦେଶର ଲୋକେ ନିଜର ମାତୃଭୂମି ଲାଗି ଅନୁଭବ କରୁଥିଲେ; କିନ୍ତୁ ଏସବୁ ବହୁତ ପରେ ଘଟିଥିଲା । ବର୍ତ୍ତମାନ ପାଇଁ ମୁଁ ତୋତେ କହିବାକୁ ଚାହେଁ ଯେ ୧୮ଶ ଶତାବ୍ଦୀରେ ଏହି ଜାତୀୟତା ଓ ଦେଶପ୍ରେମର ଧାରଣ ଅଙ୍କୁରିତ ହେଲା ଫରାସୀ ଦାର୍ଶନିକମାନେ ଏହି ପ୍ରତିଷ୍ଠାରେ ସାହାଯ୍ୟ କରିଥିଲେ ଏବଂ ବିରାଟ ଫରାସୀ ବିପ୍ଳବ ଏହି ଭାବଧାରାକୁ ସ୍ଥାୟୀ କରିଥିଲେ ।

ଏହି ରାଷ୍ଟ୍ରସବୁ ପ୍ରକୃତ 'ଶକ୍ତି' ଥିଲା । ରାଜା ଆସିଲେ ଓ ଗଲେ; କିନ୍ତୁ ରାଷ୍ଟ୍ର ରହିଥାଏ । ଏହିସବୁ ଶକ୍ତିଗୁଡ଼ିକ ମଧ୍ୟରୁ କେତେକ କ୍ରମେ ଅନ୍ୟମାନଙ୍କ ଅପେକ୍ଷା ବଳୀୟାନ ହୋଇ ବାହାରିଲେ । ଏହିରୂପେ ୧୮ଶ ଶତାବ୍ଦୀର ପ୍ରଥମ ଭାଗରେ ଫ୍ରାନ୍ସ, ଇଂଲଣ୍ଡ, ଅଷ୍ଟ୍ରିଆ, ପ୍ରୁସିଆ ଓ ରୁଷ ନିର୍ଦ୍ଦିଷ୍ଟରୂପେ "ପ୍ରଧାନ ଶକ୍ତି" ଥିଲେ । ସ୍ପେନ୍ ପରି ଆଉ କେତେକ କେବଳ କଥାରେ ବଡ଼ ଥିଲେ; ମାତ୍ର ସେଗୁଡ଼ିକର ପତନ ହେଉଥିଲା ।

ଇଂଲଣ୍ଡ ଦ୍ରୁତବେଗରେ ସମ୍ପଦ ଓ ପ୍ରାଧାନ୍ୟଲାଭ କରୁଥିଲା । ଏଲିଜାବେଥ୍‌ଙ୍କ ସମୟ ପର୍ଯ୍ୟନ୍ତ ଏହା ଇଉରୋପୀୟ ଦୃଷ୍ଟିରେ ସେପରି ପ୍ରଧାନ୍ୟ ରାଜ୍ୟ ହୋଇ ନଥିଲା ଏବଂ ପୃଥିବୀ ଦୃଷ୍ଟିରେ ତ ଆହୁରି କମ ଥିଲା । ତାହାର ଲୋକସଂଖ୍ୟା କମ୍ ଥିଲା । ସମ୍ଭବତଃ

ସେତେବେଳକୁ ଏହା ୭୦ ଲକ୍ଷରୁ ବେଶୀ ନ ଥିଲା; ଏହା ବର୍ତ୍ତମାନ ଲଣ୍ଡନର ଲୋକ ସଂଖ୍ୟାଠୁ ବି ବହୁତ କମ୍; କିନ୍ତୁ ପିଉରିଟାନ୍ ବିପ୍ଳବ ଓ ରାଜା ଉପରେ ପାର୍ଲିମେଣ୍ଟର ବିଜୟ ସଙ୍ଗେ ସଙ୍ଗେ ଇଂଲଣ୍ଡର ନୂତନ ଅବସ୍ଥା ସହିତ ନିଜକୁ ମିଳାଇ ଦେଲା ଓ ଅଗ୍ରସର ହେବାରେ ଲାଗିଲା । ସ୍ପେନ୍‌ର କର୍ତ୍ତୃତ୍ୱ ଲୋପପାଇ ଯିବା ପରେ ହଲାଣ୍ଡ ମଧ୍ୟ ସେହିପରି କରିଥିଲା ।

୧୮ଶ ଶତାବ୍ଦୀରେ ଆମେରିକା ଓ ଏସିଆରେ ଉପନିବେଶ ଲାଗି ବିବାଦ ଲାଗିଥିଲା । ଏଥିରେ ଅନେକ ଇଉରୋପୀୟ ଶକ୍ତି ଭାଗ ନେଲେ; କିନ୍ତୁ ଶେଷରେ ଇଂଲଣ୍ଡ ଓ ଫ୍ରାନ୍ସ ଏହି ଦୁଇ ଦେଶ ମଧ୍ୟରେ ପ୍ରଧାନତଃ ବିବାଦ ଲାଗିଲା । ଆମେରିକା ଓ ଭାରତ ଉଭୟ ସ୍ଥାନରେ ଏହି ପ୍ରତିଯୋଗିତାରେ ଇଂଲଣ୍ଡ ଖୁବ୍ ଆଗେଇ ଗଲା । ଫ୍ରାନ୍ସ ତ ୧୫ଶ ଲୁଇଙ୍କ ଅଧୀନରେ ଅସମର୍ଥ ଭାବରେ ଶାସିତ ହେଉ ଥିଲା; ଆହୁରି ପୁଣି ଇଉରୋପୀୟ ରାଜନୀତିରେ ଅଧିକ ଲିପ୍ତ ହୋଇପଡ଼ିଲା । ୧୭୫୬-୬୩ ପର୍ଯ୍ୟନ୍ତ ଏହି ଦୁଇ ଶକ୍ତି ମଧ୍ୟରେ ତଥା ଅନ୍ୟ କେତେକଙ୍କ ଭିତରେ କିଏ ପ୍ରଭୁ ହେବ, ଏହା ନିଷ୍ପତ୍ତି ହେବା ନିମନ୍ତେ ଇଉରୋପ, କାନାଡ଼ା ଓ ଭାରତରେ ଯୁଦ୍ଧ ଲାଗିଥିଲା । ଏହି ଯୁଦ୍ଧକୁ ସପ୍ତବାର୍ଷିକ ଯୁଦ୍ଧ ବୋଲି କୁହାଯାଏ । ଫ୍ରାନ୍ସ ପରାସ୍ତ ହେଲାବେଳେ ଭାରତରେ ଏହି କୀର୍ତ୍ତି ଦେଖାଯାଇଥିଲା । କାନଡ଼ାରେ ମଧ୍ୟ ଇଂଲଣ୍ଡ ଜିତିଲା । ଇଉରୋପରେ ଇଂଲଣ୍ଡ ଏହିପରି ଏକ ନୀତି ଅନୁସରଣ କଲା; ଯେଉଁଥିଲାଗି ଏହା ସୁପରିଚିତ ହୋଇଛି । ଏହା ଅନ୍ୟମାନଙ୍କୁ ତାହାଲାଗି ଯୁଦ୍ଧରେ ଲଗାଇ ଦେଉଥିଲା । ଫ୍ରେଡ଼ରିକ୍ ଦି ଗ୍ରେଟ୍ ତାହାର ମିତ୍ର ଥିଲେ ।

ସପ୍ତବାର୍ଷିକ ଯୁଦ୍ଧର ଫଳ ଇଂଲଣ୍ଡ ପକ୍ଷରେ ଅନୁକୂଳ ହୋଇଥିଲା । ଭାରତ ଓ କାନାଡ଼ା ଉଭୟ ରାଜ୍ୟରେ ତାହାର କୌଣସି ଇଉରୋପୀୟ ପ୍ରତିଦ୍ୱନ୍ଦ୍ୱୀ ରହି ନଥିଲେ । ସମୁଦ୍ରରେ ତାର ନୌ-କର୍ତ୍ତୃତ୍ୱ ସ୍ଥାପିତ ହୋଇଥିଲା । ଏହିରୂପେ ଇଂଲଣ୍ଡ ତାର ସାମ୍ରାଜ୍ୟ ପ୍ରତିଷ୍ଠା ଓ ବିସ୍ତାର କରିବା ଏବଂ ଏକ ବିଶ୍ୱଶକ୍ତି ହେବାର ଅବସ୍ଥାରେ ଥିଲା । ପ୍ରୁସିଆର ମଧ୍ୟ ଶ୍ରେଷ୍ଠତ୍ୱ ବୃଦ୍ଧିପାଇଲା ।

ଏହି ଯୁଦ୍ଧରେ ଇଉରୋପ ପୁନର୍ବାର ଅବସନ୍ନ ହୋଇପଡ଼ିଲା ଏବଂ ପୁନର୍ବାର ମହାଦେଶର ଅପେକ୍ଷାକୃତ ନିସ୍ତବ୍ଧତା ଦେଖାଦେଲା; କିନ୍ତୁ ଏହି ନିସ୍ତବ୍ଧତା ପ୍ରୁସିଆ, ଅଷ୍ଟ୍ରିଆ ଓ ରୁଷକୁ ପୋଲଣ୍ଡ ଗ୍ରାସ କରିବାରେ ବାଧା ହେଲା ନାହିଁ । ପୋଲଣ୍ଡ ଏହି ଶକ୍ତିମାନଙ୍କ ସହିତ ଲଢିବା ଅବସ୍ଥାରେ ନଥିଲା ଏବଂ ତେଣୁ ଏହି ତିନି ବାଘଯାକ ତା ଉପରେ ପଡ଼ିଲେ ଓ ବାରମ୍ବାର ଭାଗ ବାଣ୍ଟିନେବାଦ୍ୱାରା ଶେଷକୁ ପୋଲଣ୍ଡ ଆଉ ସ୍ୱାଧୀନ ରାଜ୍ୟ ହୋଇ ରହିଲା ନାହିଁ । ୧୭୭୨, ୧୭୯୩ ଓ ୧୭୯୫ରେ ଏହା ତିନିଥର ଭାଗବଣ୍ଟା ହୋଇଥିଲା । ପ୍ରଥମଥର ପରେ ପୋଲଣ୍ଡବାସୀ ସଂସ୍କାର କରି ନିଜର ଦେଶକୁ ଦୃଢ଼କରିବା ନିମନ୍ତେ ଖୁବ୍ ଉଦ୍ୟମ କରିଥିଲେ । ସେମାନେ ଏକ ପାର୍ଲିମେଣ୍ଟ ସ୍ଥାପନ କଲେ ଏବଂ କଳା ଓ ସାହିତ୍ୟର ପୁନରୁଦ୍ଧାର ହୋଇଥିଲା; କିନ୍ତୁ ପୋଲଣ୍ଡ ଚତୁର୍ଦ୍ଦିଗରେ ଥିବା ଏକଛତ୍ର ଶାସକ-

ମାନଙ୍କ ମୂର୍ଦ୍ଧରେ ରକ୍ତ ଲାଗିଥିଲା ଏବଂ ସେମାନେ ସହଜରେ ତୃପ୍ତି ଲାଭ କରିବାର ନ ଥିଲେ । ତା' ଛଡ଼ା ସେମାନଙ୍କର ପାର୍ଲାମେଣ୍ଟଗୁଡ଼ିକ ପ୍ରତି ଆଦୌ ଶ୍ରଦ୍ଧା ନ ଥିଲା; ତେଣୁ ପୋଲଣ୍ଡବାସୀଙ୍କ ଦେଶପ୍ରୀତି ଏବଂ ତାଙ୍କର ଶ୍ରେଷ୍ଠ ବୀର କୋସିଉସ୍କୋଙ୍କ ଅଧୀନରେ ସେମାନେ ଏକ ସାହସିକ ସଂଗ୍ରାମ କରିଥିଲେ, ତା' ସତ୍ତ୍ୱେ ୧୭୯୫ରେ ଇଉରୋପ ମାନଚିତ୍ରରୁ ପୋଲଣ୍ଡ ଅନ୍ତର୍ହିତ ହୋଇଗଲା । ତାପରେ ଏହା ଲୋପ ପାଇଗଲା; କିନ୍ତୁ ପୋଲଣ୍ଡବାସୀ ତାଙ୍କ ଦେଶପ୍ରୀତି ଜୀବନ୍ତ ରଖିଥିଲେ ଓ ସ୍ୱାଧୀନତାର ସ୍ୱପ୍ନ ଦେଖିବାକୁ ଲାଗିଲେ ଏବଂ ୧୨୩ ବର୍ଷ ପରେ ତାଙ୍କର ସ୍ୱପ୍ନ ବାସ୍ତବରେ ପରିଣତ ହେଲା । ମହାସମର ପରେ ପୋଲଣ୍ଡ ପୁନର୍ବାର ଏକ ସ୍ୱାଧୀନ ଦେଶରୂପେ ଦେଖାଦେଲା ।

ମୁଁ କହିଛି ଯେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ୟୁରୋପରେ କେତେକ ପରିମାଣରେ ନିସ୍ତବ୍ଧତା ଥିଲା; କିନ୍ତୁ ଏହା ବେଶୀଦିନ ରହି ନଥିଲା ଏବଂ ଅଧିକ ଭାବରେ ଉପରେ ରହିଥିଲା । ଏହି ଶତାବ୍ଦୀର ବିଭିନ୍ନ ଘଟଣା ବିଷୟରେ ମଧ୍ୟ ମୁଁ ତୋତେ କହିଛି; କିନ୍ତୁ ୧୮ଶ ଶତାବ୍ଦୀ ବାସ୍ତବରେ ତିନୋଟି ଘଟଣା ଅର୍ଥାତ୍ ତିନୋଟି ବିପ୍ଳବ ନିମନ୍ତେ ପ୍ରସିଦ୍ଧ ଏବଂ ଏହି ତିନୋଟି ଆଗରେ ଇଉରୋପରେ ଏହି ଶହେବର୍ଷ ଭିତରେ ଅନ୍ୟ ଯାହା ସବୁ ଘଟିଥିଲା, ଅନ୍ୟାନ୍ୟ ଘଟଣାର ମହତ୍ତ୍ୱ ଲୋପ ହୋଇଯାଏ । ଏହି ତିନୋଟିଯାକ ବିପ୍ଳବ ଶତାବ୍ଦୀର ଶେଷ ୨୫ ବର୍ଷ ଭିତରେ ଘଟିଥିଲା । ତିନୋଟିଯାକ ବିଶେଷ ଧରଣର ଥିଲା—ରାଜନୈତିକ, ଶିଳ୍ପଗତ ଓ ସାମାଜିକ । ରାଜନୈତିକ ବିପ୍ଳବ ଆମେରିକାରେ ଘଟିଥିଲା । ସେଠାରେ ଥିବା ଇଂରେଜ ଉପନିବେଶଗୁଡ଼ିକ ବିଦ୍ରୋହ କରିଥିଲେ, ଫଳସ୍ୱରୂପ 'ଆମେରିକା ସମ୍ମିଳିତ ରାଷ୍ଟ୍ର' ନାମକ ଏକ ସ୍ୱାଧୀନ ପ୍ରଜାତନ୍ତ୍ର ଗଢ଼ାଗଲା । ଆମର ଅମଳରେ ଏହା ଏତେ ଅଧିକ ପ୍ରଭାବଶାଳୀ ହୋଇ ଉଠିଲା । ଶିଳ୍ପବିପ୍ଳବ ଇଂଲଣ୍ଡରେ ଆରମ୍ଭ ହେଲା, ଏହା ଅନ୍ୟ ପଶ୍ଚିମ ଇଉରୋପୀୟ ଦେଶଗୁଡ଼ିକରେ ବିସ୍ତାର ଲଭିଲା ଏବଂ ତା'ପରେ ଅନ୍ୟତ୍ର ବ୍ୟାପିଲା । ଏହା ଏକ ଶାନ୍ତିପୂର୍ଣ୍ଣ ବିପ୍ଳବ ମାତ୍ର, ଏହା ସୁଦୂରଗାମୀ ଏବଂ ବର୍ଣ୍ଣିତ ଇତିହାସରେ ପୂର୍ବର ଅନ୍ୟ ଯେକୌଣସି କାର୍ଯ୍ୟ ଅପେକ୍ଷା ସମସ୍ତ ପୃଥିବୀରେ ଏହା ଅଧିକ ପରିମାଣରେ ଜୀବନକୁ ପ୍ରଭାବିତ କରିଥିଲା । ଏହାଫଳରେ ବାଷ୍ପ ଓ ବଡ଼ ମେସିନ ଆସିଲା ଏବଂ ଶେଷରେ ଆଜି ଆମେ ଆମ ଚତୁର୍ଦ୍ଦିଗରେ ଶିଳ୍ପୋ-ଦ୍ୟୋଗର ଯେଉଁ ଅସଂଖ୍ୟ ଶାଖା ସବୁ ଦେଖୁଛୁ, ତାହା ହେଲା । ବିରାଟ ଫରାସୀ ବିପ୍ଳବ ହେଉଛି ସାମାଜିକ ବିପ୍ଳବ, ଏହା କେବଳ ଯେ ଫ୍ରାନ୍ସରେ ରାଜସତ୍ତାକୁ ଲୋପକଲା ତାହା ନୁହେଁ, ମାତ୍ର ଅସଂଖ୍ୟ ବିଶେଷାଧିକାର ମଧ୍ୟ ନାଶ କରିଦେଲା ଏବଂ ଏକ ନୂତନ ଶ୍ରେଣୀକୁ ଆଗୁଆ କଲା । ଆମକୁ ପୃଥକ୍ ଏବଂ ଟିକିଏ ବିସ୍ତୃତ ଭାବରେ ଏହି ତିନୋଟିଯାକ ବିପ୍ଳବକୁ ଅଧ୍ୟୟନ କରିବାକୁ ପଡ଼ିବ ।

ଆମେ ଦେଖିଆସିଛୁ ଯେ ଏହି ବିରାଟ ପରିବର୍ତ୍ତନଗୁଡ଼ିକ ପୂର୍ବରୁ ୟୁରୋପରେ ରାଜତନ୍ତ୍ର ସର୍ବେସର୍ବା ଥିଲା । ଇଂଲଣ୍ଡ ଓ ହଲଣ୍ଡରେ ପାର୍ଲିଆମେଣ୍ଟ ଥିଲା; କିନ୍ତୁ ଅଭିଜାତ୍ୟ ଶ୍ରେଣୀ

ଓ ଧନୀମାନଙ୍କଦ୍ୱାରା ସେଗୁଡ଼ିକ ନିୟନ୍ତ୍ରିତ ହେଉଥିଲା । ଆଇନଗୁଡ଼ିକ ଧନୀଙ୍କ ପାଇଁ, ଧନୀମାନଙ୍କ ସମ୍ପତ୍ତି ଅଧିକାର ଓ ବିଶେଷ ସୁବିଧା ରକ୍ଷା କରିବା ନିମନ୍ତେ ତିଆରି ହୋଇଥିଲା । ଶିକ୍ଷା କେବଳ ଧନୀ ଓ ସୁବିଧା ଭୋଗୀ ଶ୍ରେଣୀଙ୍କ ପାଇଁ ମିଳୁଥିଲା । ବାସ୍ତବିକ୍ ସରକାର କେବଳ ଏହି ଶ୍ରେଣୀଙ୍କ ପାଇଁ ଥିଲା । ଏହି କାଳର ପ୍ରଧାନ ସମସ୍ୟାଗୁଡ଼ିକ ଭିତରୁ ଦରିଦ୍ରର ସମସ୍ୟା ହେଉଛି ଏକତମ । ଯଦିଓ ଉପରେ ଅବସ୍ଥା କିଛିଏ ଉନ୍ନତ ହୋଇଥିଲା ତଥାପି ଦରିଦ୍ର ଲୋକଙ୍କ ଦୁର୍ଦ୍ଦଶା ବଢ଼ିଥିଲା ଏବଂ ପ୍ରକୃତରେ ତାହା ଅଧିକ ଭାବରେ ପରିଲକ୍ଷିତ ହେଲା ।

୧୮ଶ ଶତାବ୍ଦୀରେ ସାରା ୟୁରୋପର ଜାତିଗୁଡ଼ିକର ଏକ ନିଷ୍ଠୁର ଘୃଣ୍ୟସ୍ଥାନ ଦାସ ବେପାର ଚଳାଇଥିଲେ । ୟୁରୋପରେ ଦାସ ବୋଲି କେହି ନଥିଲେ ଯଦିଓ ଅର୍ଦ୍ଧଦାସ ବା ଭିଲେନ୍‌ଙ୍କ (ଜମି ଚାଷ କରୁଥିବା ଲୋକଙ୍କୁ ଏହି ନାମରେ ଡାକୁଥିଲେ) ଅବସ୍ଥା ଦାସମାନଙ୍କ ଅପେକ୍ଷା କିଛି ଭଲ ନ ଥିଲା । ଯାହାହେଉ, ଆମେରିକା ଆବିଷ୍କାର ସଙ୍ଗେ ସଙ୍ଗେ ଏହି ପୁରାତନ ଦାସ ବେପାର ଅତି ନିଷ୍ଠୁର ଆକାରରେ ପୁନର୍ବାର ପ୍ରଚଳିତ ହେଲା । ସ୍ପେନବାସୀ ଓ ପର୍ତ୍ତୁଗୀଜ୍‌ମାନେ ଆଫ୍ରିକା ଉପକୂଳରୁ ନିଗ୍ରୋମାନଙ୍କୁ ଧରି ଜମିରେ କାମ କରିବା ନିମନ୍ତେ ସେମାନଙ୍କୁ ଆମେରିକା ନେଇଯାଇ ଏହି ବେପାର ଆରମ୍ଭ କଲେ । ଏହି ଘୃଣ୍ୟ ବେପାରରେ ଇଂରେଜମାନେ ବି ପୁରାଭାଗ ନେଇଥିଲେ । ଆଫ୍ରିକାବାସୀଙ୍କୁ ଯେପରି ଭାବରେ ଶିକାର କରାଯାଉଥିଲା, ବଣ୍ୟ ପଶୁପରି ଧରାଯାଉଥିଲା ତାପରେ ଏକାଠି ଜଞ୍ଜିରରେ ବାନ୍ଧି ଦିଆଯାଇ ହେହିରୂପେ ଆମେରିକାକୁ ପଠାଯାଉଥିଲା, ଯେଉଁରୁ ନିଦାରୁଣ କଷ୍ଟଭୋଗ ସମ୍ବନ୍ଧରେ ତୋ ପକ୍ଷରେ କମ୍ବା ଆମ କାହାରି ପକ୍ଷରେ କିଛି ଧାରଣା କରିବା କଷ୍ଟକର । ବହୁସଂଖ୍ୟକ ଲୋକ ନିଜର ଯାତ୍ରା ପଥର ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପୂର୍ବରୁ ମରିଯାଉଥିଲେ । ଏହି ପୃଥିବୀରେ ଯେତେ ଲୋକ କଷ୍ଟ ଭୋଗ କରିଅଛନ୍ତି, ସେମାନଙ୍କ ଭିତରେ ବୋଧହୁଏ ସର୍ବାପେକ୍ଷା ଗୁରୁତର ବୋଝ ନିଗ୍ରୋମାନେ ବହନ କରିଛନ୍ତି । ୧୯ଶ ଶତାବ୍ଦୀରେ ବୈଧ ଭାବରେ ଦାସତ୍ୱପ୍ରଥା ଉଠାଇ ଦିଆଗଲା । ଇଂଲଣ୍ଡ ଏଥିରେ ନେତୃତ୍ୱ ନେଇଥିଲା । ଏହି ସମସ୍ୟା ନିଷ୍ପତ୍ତି କରିବା ନିମନ୍ତେ ସଂଯୁକ୍ତ ରାଷ୍ଟ୍ରରେ ଏକ ଗୃହଯୁଦ୍ଧ ଲାଗିଥିଲା । ଆଜି ସଂଯୁକ୍ତରାଷ୍ଟ୍ର ଆମେରିକାରେ ଯେଉଁ ଲକ୍ଷ ଲକ୍ଷ ନିଗ୍ରୋ ରହିଛନ୍ତି, ସେମାନେ ଏହି ଦାସମାନଙ୍କର ବଂଶଧର ।

ମୁଁ ଏହି ଶତାବ୍ଦୀରେ ଜର୍ମାନୀ ଓ ଅଷ୍ଟ୍ରିୟାରେ ସଙ୍ଗୀତର କପରି ଉନ୍ନତି ହୋଇଥିଲା, ସେ ବିଷୟରେ ଏକ ଆମୋଦଦାୟକ ବିବରଣୀ ଦେଇ ଏହି ଚିଠି ଶେଷ କରିବି । ତୁ ଜାଣୁ, ଜର୍ମାନମାନେ ୟୁରୋପୀୟ ସଙ୍ଗୀତରେ ଅଗ୍ରଣୀ । ତାଙ୍କ ଭିତରୁ କେତେକ ପ୍ରସିଦ୍ଧ ବ୍ୟକ୍ତିଙ୍କ ନାମ ୧୭ଶ ଶତାବ୍ଦୀରେ ଦେଖାଯାଏ । ଅନ୍ୟ ସ୍ଥଳପରି ଇଉରୋପରେ ସଙ୍ଗୀତ ଏକ ଧାର୍ମିକ ଉତ୍ସବର ପ୍ରାୟ ଅଙ୍ଗସ୍ୱରୂପ ଥିଲା । କ୍ରମେ ଏହା ଏଥିରୁ ପୃଥକ ହୋଇଗଲା ଏବଂ ଧର୍ମଠାରୁ ସ୍ୱତନ୍ତ୍ର ହୋଇ ସଙ୍ଗୀତ ଏକ କଳାର ରୂପ ଧାରଣ କଲା । ଅଷ୍ଟାଦଶ ଶତାବ୍ଦୀରେ

ଦୁଇଜଣ ବ୍ୟକ୍ତିଙ୍କ ନାମ ପ୍ରସିଦ୍ଧ ହୋଇଛି—ମୋଜାର୍ଟ ଓ ବିଠୋଭେନ୍ । ଉଭୟ ଅଦ୍ଭୁତ ପୁରୁଷ ଥିଲେ ଏବଂ ଉଭୟେ ସୁନ୍ଦର ଗୀତ ରଚନା କରୁଥିଲେ । ବିଠୋଭେନ୍ ସମ୍ଭବତଃ ପାଶ୍ଚାତ୍ୟରେ ସର୍ବାପେକ୍ଷା ଶ୍ରେଷ୍ଠ ସଙ୍ଗୀତ ରଚୟିତା ଥିଲେ, ମାତ୍ର ଆଶ୍ଚର୍ଯ୍ୟର କଥା ସେ ପୂରା ବଧିର ହୋଇଗଲେ ଏବଂ ତେଣୁ ସେ ଯେଉଁ ଅପୂର୍ବ ସଙ୍ଗୀତ ଅନ୍ୟମାନଙ୍କ ଲାଗି ରଚନା କରିଥିଲେ, ତାହା ନିଜେ ଶୁଣିପାରି ନଥିଲେ; କିନ୍ତୁ ସେ ସେହି ସଙ୍ଗୀତ ପ୍ରକାଶ କରିବା ପୂର୍ବରୁ ତାଙ୍କ ହୃଦୟରେ ଅବଶ୍ୟ ସଙ୍ଗୀତଧ୍ୱନି ଶୁଣିପାରିଥିବେ ।

## ୯୭ : ବଡ଼ ମେସିନ୍‌ର ପ୍ରଚଳନ

ସେପ୍‌ଟେମ୍ବର ୨୬, ୧୯୩୨

ଶିଳ୍ପ ବିପ୍ଳବ ବୋଇଲେ କ'ଣ ବୁଝାଏ, ବର୍ତ୍ତମାନ ଆମେ ବିଚାର କରିବା । ଏହା ଇଂଲଣ୍ଡରେ ଆରମ୍ଭ ହୋଇଥିଲା, ତେଣୁ ଇଂଲଣ୍ଡରେ ଏହା କିପରି ହେଲା ସଂକ୍ଷେପରେ ଆଲୋଚନା କରିବା । କୌଣସି ନିର୍ଦ୍ଦିଷ୍ଟ ତାରିଖ ମୁଁ ଦେଇପାରିବି ନାହିଁ; କାରଣ ଏହି ପରିବର୍ତ୍ତନ କିଛି କମିଆ ପରି ନିର୍ଦ୍ଦିଷ୍ଟ ତାରିଖରେ ଘଟି ନ ଥିଲା । ତଥାପି ଏହାର ବେଗ ପ୍ରଖର ହେଲା ଏବଂ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ ୧୦୦ ବର୍ଷରୁ କମ୍ ସମୟ ଭିତରେ ଏହା ଜୀବନର ଗତି ବଦଳାଇ ଦେଲା । ଏହି ଚିଠି ଜରିଆରେ ତୁ ଓ ମୁଁ ଅଧମ କାଳରୁ କେତେ ହଜାର ବର୍ଷ ପର୍ଯ୍ୟନ୍ତ ଇତିହାସ କ୍ରମଧାରା ଅନୁସରଣ କରିଛେ ଏବଂ ଆମେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରିଛେ; ମାତ୍ର ଏ ସବୁ ପରିବର୍ତ୍ତନ ଅନେକ ସ୍ଥଳରେ ବାହ୍ୟ ହୋଇଥିଲେ ସୁଦ୍ଧା ଲୋକଙ୍କର ପ୍ରଚଳିତ ଜୀବନଧାରାର କୌଣସି ଜୀବନ୍ତ ପରିବର୍ତ୍ତନ କରିପାରି ନଥିଲା । ସକ୍ରେଟିସ୍, ଅଶୋକ କିମ୍ବା ଜୁଲିୟସ୍ ସିଜର ଯଦି ହଠାତ୍ ଆସି ଭାରତରେ ଆକବରଙ୍କ ଭିଜଳାହିରେ ପହଞ୍ଚିଥାନ୍ତେ କିମ୍ବା ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଇଂଲଣ୍ଡ ଓ ଫ୍ରାନ୍ସରେ ପହଞ୍ଚନ୍ତେ, ତେବେ ଅନେକ ପରିବର୍ତ୍ତନ ଦେଖିପାରନ୍ତେ । ସେମାନେ ଏଥିରୁ କେତେକ ପରିବର୍ତ୍ତନ ହୁଏତ ପସନ୍ଦ କରିଥାନ୍ତେ, କେତେକ ନାପସନ୍ଦ କରିଥାନ୍ତେ; କିନ୍ତୁ ମୋଟାମୋଟି ଭାବରେ ଅନ୍ତତଃ ବାହାରୁ ସେମାନେ ଦୁନିଆର ପରିଚୟ ପାଇ ପାରିଥାନ୍ତେ; କାରଣ ଭାବଧାରାର କୌଣସି ଗୁରୁତର ପ୍ରଭେଦ ହୋଇ ନଥିଲା । ଆହୁରି ମଧ୍ୟ ବାହ୍ୟ ଆକାର ପ୍ରକାର ଦୃଷ୍ଟିରେ ଦେଖିଲେ, ସେମାନେ ନିଜକୁ ନିହାତ ଖାପଛଡ଼ା ବୋଲି ବୋଧ କରନ୍ତେ ନାହିଁ । ଗସ୍ତ କରିବାକୁ ଇଚ୍ଛା କଲେ ନିଜ ଅମଳରେ କଲାପରି ଘୋଡ଼ା କିମ୍ବା ଘୋଡ଼ା-ଗାଡ଼ିରେ ଚଢ଼ି ଗସ୍ତ କରନ୍ତେ ଏବଂ ଏହି ଯାତ୍ରାରେ ମଧ୍ୟ ପୂର୍ବପରି ସେତିକି ଦିନ ଲାଗନ୍ତା ।

କିନ୍ତୁ ଏହି ଚାଷୀମାନଙ୍କ ଭିତରୁ କେହି ଯଦି ଆମର ବର୍ତ୍ତମାନ ଦୁନିଆକୁ ଆସନ୍ତି, ତେବେ ସେ ଅତ୍ୟନ୍ତ ଚକିତ ହୋଇଯିବେ ଏବଂ ଏହି ଅଭିଜ୍ଞତା ତାଙ୍କପକ୍ଷରେ କ୍ଲେଶଦାୟକ ମଧ୍ୟ ହୋଇପାରେ । ସେ ଦେଖିବେ ଆଜି ଲୋକେ ଅତି ପଟୁ ଘୋଡାଠାରୁ ଅଧିକ ଦ୍ରୁତ-ବେଗରେ ଯାତ୍ରା କରିପାରୁଛନ୍ତି; ଏହି ବେଗ ଧନୁରୁ ବାହାରି ଆସୁଥିବା ଶରର ବେଗ ଅପେକ୍ଷା ଆହୁରି ଦ୍ରୁତତର । ରେଳପଥ, ବାଷ୍ପୀୟଯାନ, ମଟର ଉଡ଼ାଜାହାଜଦ୍ୱାରା ଲୋକେ ସମଗ୍ର ଜଗତରେ ଭୀଷଣ ବେଗରେ ବୁଲି ପାରୁଛନ୍ତି । ତାପରେ ସେ ଟେଲିଗ୍ରାଫ୍, ଟେଲିଫୋନ୍ ଓ୍ୱାୟାରଲେସ୍ (ବେତାର), ଆଧୁନିକ ଛାପାଖାନାରେ ପ୍ରକାଶିତ ଅସଂଖ୍ୟ ପୁସ୍ତକ, ସମ୍ବାଦପତ୍ର ଏବଂ ଅନ୍ୟ ସବୁ ଜିନିଷ ଦେଖି ଖୁସି ହେବେ । ଏସବୁ ଅଷ୍ଟାଦଶ ଶତାବ୍ଦୀ ଏବଂ ତାପରେ ଶିଳ୍ପବିପ୍ଳବ ଯେଉଁ ନୂତନ ପ୍ରକାର ଶିଳ୍ପର ପ୍ରଚଳନ କଲା, ସେଥିରୁ ଜାତ ହୋଇଛି । ସକ୍ରେଟିସ୍, ଅଶୋକ କିମ୍ବା ଜୁଲିୟସ୍ ସିଜର ଏହିସବୁ ନୂତନ ପ୍ରଣାଳୀକୁ ପସନ୍ଦ କରିବେ କି ନାପସନ୍ଦ କରିବେ, ମୁଁ କହିପାରିବି ନାହିଁ; କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ତାଙ୍କ ନିଜ ଅମଳରେ ଚଳୁଥିବା ପ୍ରଥାଠୁ ଏଗୁଡ଼ିକ ଅଧିକ ପୃଥକ୍, ଏହା ଦେଖି ପାରିବେ ।

ଶିଳ୍ପ ବିପ୍ଳବହିଁ ପୃଥିବୀକୁ ବଡ଼ ମେସିନ୍ ଆଣିଲା । ଏଇଠୁ ମେସିନ୍ ଯୁଗ ବା ମେକାନିକାଲ ଯୁଗର ଆରମ୍ଭ ହେଲା । ଅବଶ୍ୟ ଆଗରୁ ମେସିନ୍ ସବୁ ଥିଲା; କିନ୍ତୁ ଏତେ ବଡ଼ ନଥିଲା । ମେସିନ୍ କଣ ? ମଣିଷର କାମରେ ସାହାଯ୍ୟ କରିବା ଲାଗି ଏହା ଏକ ବଡ଼ ଯନ୍ତ୍ର । ମଣିଷକୁ ଗୋଟିଏ ଯନ୍ତ୍ର ତିଆରି କରିବା ଜୀବ ବୋଲି କହନ୍ତି ଏବଂ ତାହାର ଆଦିମ କାଳରୁ ସେ ଯନ୍ତ୍ରସବୁ ତିଆରି କରିଛି ଏବଂ ତାକୁ ଉନ୍ନତ କରିବାର ଚେଷ୍ଟା କରିଆସିଛି । ତାହାର ଏହି ଯନ୍ତ୍ର ଯୋଗୁଁ ତାହାଠାରୁ ଅଧିକ ଶକ୍ତିଶାଳୀ ଅନେକ ଅନ୍ୟ ଜୀବମାନଙ୍କ ଉପରେ ସେ ନିଜର କର୍ତ୍ତୃତ୍ୱ ସ୍ଥାପନ କରିପାରିଛି । ଯନ୍ତ୍ର ତାର ହାତର ପ୍ରସାର ମାତ୍ର କିମ୍ବା ଏହାକୁ ତୁମେ ତାହାର ତୃତୀୟ ହାତ କହିପାର । ଯନ୍ତ୍ରରୁ ବଡ଼ି ମେସିନ୍ ହେଲା । ଯନ୍ତ୍ର ଓ ମେସିନ୍ ମଣିଷକୁ ଜୀବଜଗତରୁ ଉପରକୁ ଉଠାଇଲା । ପ୍ରକୃତି ବନ୍ଧନରୁ ସେ ମଣିଷ ସମାଜକୁ ମୁକ୍ତ କଲା । ଯନ୍ତ୍ର ଓ ମେସିନ୍ ସାହାଯ୍ୟରେ ମଣିଷ ପକ୍ଷରେ ଜିନିଷ ଉତ୍ପନ୍ନ କରିବା ସହଜ ହେଲା । ସେ ଅଧିକ ଉତ୍ପାଦନ କରିପାରିଲା, ତଥାପି ଅଧିକ ଅବସର ବି ମିଳିଲା । ଏହାଫଳରେ ସଭ୍ୟତା; ଚିନ୍ତା ଓ ବିଜ୍ଞାନକଳାର ପ୍ରଚଳ ହୋଇପାରିଲା ।

କିନ୍ତୁ ବଡ଼ ମେସିନ୍ ଓ ତା'ର ସାଙ୍ଗସାଥୀଗୁଡ଼ିକ କେବଳ ଦୁନିଆ ପକ୍ଷରେ ଅମିଶ୍ରିତ କଲ୍ୟାଣ ରୂପେ ଆସି ନାହିଁ । ଏହା ସଭ୍ୟତା ବୃଦ୍ଧିରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଭୀଷଣ ଯୁଦ୍ଧ ଓ ଧ୍ୱଂସ ଅସ୍ତ୍ରମାନ ସୃଷ୍ଟି କରିବା ଦ୍ୱାରା ବର୍ବରତା ବଢ଼ାଇବାରେ ମଧ୍ୟ ସାହାଯ୍ୟ କଲା । ଏହା ପ୍ରଚୁର ପରିମାଣରେ ଉତ୍ପନ୍ନ କରିପାରିଲା ସତ; ମାତ୍ର ଏହି ପ୍ରଚୁରତା ଜନସାଧାରଣଙ୍କ ପାଇଁ ନୁହେଁ, ମୁଖ୍ୟତଃ କେତେକ ମୁଷ୍ଟିମେୟ ଲୋକଙ୍କ ପାଇଁ । ଏହା ଆଗ ଅପେକ୍ଷା ଧନୀର ବିଳାସ ଓ ଗରିବର ଦାରିଦ୍ର୍ୟ ମଧ୍ୟରେ ଆହୁରି ପ୍ରଭେଦ ସୃଷ୍ଟି କଲା । ଏହା ମଣିଷର ସାଧନ ଓ ଭୃତ୍ୟ ହେବା ପରିବର୍ତ୍ତେ ତାର ପ୍ରଭୁ ରୂପେ ଉପସ୍ଥିତ ହୋଇଛି । ଏକ ଦିଗରେ ଏହା

ସହଯୋଗ, ସଂଗଠନ, ନିୟମାନୁବର୍ତ୍ତିତା ଆଦି କେତେକ ଗୁଣ ଶିକ୍ଷାଦେଇଛି, ଅନ୍ୟ ଦିଗରେ ଏହା ଅଗଣିତ ନରନାରୀଙ୍କର ଜୀବନକୁ ଏକ ନିଷ୍ଫଳ କାର୍ଯ୍ୟନିର୍ଘଣ୍ଟ କରିପକାଇଛି, ଏହା ଏକ ଯନ୍ତ୍ରଚାଳିତ ବୋଝ ପରି ହେଉଛି, ସେଥିରେ ଟିକିଏ ହେଲେ ଆନନ୍ଦ ବା ସ୍ୱାଧୀନତା ନାହିଁ ।

କିନ୍ତୁ ମେସିନ୍ ହେତୁ ଯେ ସବୁ ଦୁର୍ଗୁଣ ବାହାରିଛି, ସେଥିପାଇଁ ବିଚରା ମେସିନ୍‌କୁ ଆମେ କାହିଁକି ଦୋଷ ଦେବା ? ଦୋଷ ହେଉଛି ମଣିଷର—ଯେ ଏହାର ଦୁର୍ବ୍ୟବହାର କଲା ଏବଂ ସମାଜର, ସେ ଏଥିରୁ ପୂର୍ଣ୍ଣ ଫାଇଦା ଉଠାଇପାରିଲା ନାହିଁ । ପୃଥିବୀ ବା କୌଣସି ଦେଶ ଯେ ଏଥିଲାଗି ଶିଳ୍ପବିପ୍ଳବ ଆଗରେ ସେହି ପୁରୁଣା କାଳକୁ ଫେରିଯିବ ଏହା ଚିନ୍ତାର ବାହାର ପରି ବୋଧ ହେଉଛି ଏବଂ କେତେକ ଦୁର୍ଗତିରୁ ରକ୍ଷା ପାଇବା ନିମନ୍ତେ ଶିଳ୍ପଯୁଗ ଆମକୁ ଯେଉଁ ଅସଂଖ୍ୟ ଭଲ ଜିନିଷସବୁ ଦେଇଛି, ତାକୁ ଫୋପାଡ଼ି ଦେବାଟା ବାଞ୍ଛନୀୟ କିମ୍ବା ବିଚକ୍ଷଣତା ପରି ମନେ ହେଉନାହିଁ । ସେ ଯାହାହେଉ ପଛକେ, ମେସିନ୍ ଆସିଛି ଏବଂ ରହିବ । ସୁତରାଂ ଆମ ଆଗରେ ସମସ୍ୟା ହେଉଛି—ଶିଳ୍ପ ଉଦ୍ୟୋଗ ଦ୍ୱାରା ଯେଉଁସବୁ ଭଲ ଜିନିଷ ଆସିଛି, ତାକୁ ରକ୍ଷା କରିବା ଏବଂ ଏଥିସହିତ ଥିବା ଦୋଷକୁ ଦୂର କରିବା । ଏହା ଯେଉଁ ସମ୍ପଦ ଉପୁଯାଉଛି, ତାକୁ ଆମେ ଉପଭୋଗ କରିବା ଉଚିତ, ମାତ୍ର ଦେଖିବା ଯେ ଯେଉଁମାନେ ଏହି ଧନ ଉପୁଯାଉଛନ୍ତି, ତାଙ୍କ ଭିତରେ ଯେପରି ଏହା ସମାନ ଭାବରେ ବଣ୍ଟାହୁଏ ।

ଇଂଲଣ୍ଡ ଶିଳ୍ପବିପ୍ଳବ ସମ୍ବନ୍ଧରେ ତୋତେ କିଛି କହିବାପାଇଁ ଏହି ଚିଠି ଲେଖା ହୋଇଥିଲା; କିନ୍ତୁ ମୋର ପ୍ରକୃତି ଏପରି ଯେ ମୁଁ ସିଧା ତାହା ଛାଡ଼ି ଶିଳ୍ପ ଉଦ୍ୟୋଗର ଫଳାଫଳ ଆଲୋଚନା ଆରମ୍ଭ କରିଦେଲି । ମୁଁ ତୋ ଆଗରେ ଯେଉଁ ସମସ୍ୟାଟି ରଖିଲି ତାହା ଆଜିକାଲି ଲୋକଙ୍କୁ ଘାଣ୍ଟୁଛି । ମାତ୍ର ଆଜି ପାଖରେ ପହଞ୍ଚିବା ପୂର୍ବରୁ ଆମକୁ କାଲି କଥା ଦେଖିବାକୁ ହେବ; ଶିଳ୍ପ ଉଦ୍ୟୋଗର ଫଳାଫଳ ନିରେଖିବା ପୂର୍ବରୁ ଏହା କେବେ ଓ କିପରି ଆସିଲା ଆମକୁ ବିଚାର କରିବାକୁ ହେବ । ଏହି ବିପ୍ଳବର ଗୁରୁତ୍ୱ ତୋତେ ଦେଖାଇବାପାଇଁ ମୁଁ ଏହି ମୁଖବନ୍ଧକୁ ଏତେବଡ଼ କରି ଲେଖିଲି । ଏହା ଖାଲି ଏକ ରାଜନୈତିକ ବିପ୍ଳବ ନୁହେଁ ଯେ ଉପରେ ରାଜା ଓ ଶାସକଙ୍କର ପରିବର୍ତ୍ତନ କରିଦେଲା । ବାସ୍ତବିକ ଏହି ବିପ୍ଳବ ସମସ୍ତ ବିଭିନ୍ନ ଶ୍ରେଣୀର ପ୍ରତ୍ୟେକ ଲୋକକୁ ଛୁଇଁ କଲା । ମେସିନ୍ ଓ ଶିଳ୍ପ ଉଦ୍ୟୋଗର ବିଜୟ ବୋଇଲେ ଯେଉଁ ଶ୍ରେଣୀ ମେସିନ୍‌କୁ ଆୟତ୍ତ କରିପାରିଲା, ତାହାର ବିଜୟ ବୁଝାଇଲା । ତତେ ତ ଅନେକ ଥରରୁ କହିଛି ଯେ ଯେଉଁ ଶ୍ରେଣୀ ଉତ୍ପାଦନ ପ୍ରଣାଳୀକୁ ନିଜ କବଳରେ ରଖେ, ସେହି ଶ୍ରେଣୀହିଁ ଶାସନ କରେ; ପୂର୍ବକାଳରେ ଭୂମିହିଁ ଏକ ମାତ୍ର ବୃହତ୍ ଉତ୍ପାଦନ ପ୍ରଣାଳୀ ଥିଲା ଏବଂ ସେହିହେତୁ ସେହିମାନେ ଜମିର ଅଧିକାରୀ ଅର୍ଥାତ୍ ଜମିଦାର ବା ପ୍ରଭୁ ହେଉଥିଲେ । ସାମନ୍ତ ଯୁଗରେ ଏପରି ଥିଲା । ତାପରେ ଜମିଛଡ଼ା ଅନ୍ୟ ସମ୍ପଦ ଦେଖାଦେଲା ଏବଂ ନୂଆ ଉତ୍ପାଦନ ପ୍ରଣାଳୀରେ ମାଲିକମାନଙ୍କ ସହି

ଜମିଦାର ଶ୍ରେଣୀ କ୍ଷମତା ଭୋଗ କରିବାକୁ ଲାଗିଲେ । ଏବେ ବଡ଼ ମେସିନ୍‌ର ଆବିଷ୍କାର ହେଲା । ତେଣୁ ସେଇ ଶ୍ରେଣୀ ଏହାକୁ ଆୟତ୍ତ କଲା, ସେ ଆଗୁଆ ହେଲା ଓ ସର୍ବେସର୍ବା ହେଲା ।

ସହରର ବୁର୍ଜୋୟାମାନେ କ୍ରମଶ ପ୍ରଧାନ ହୋଇ ଉଠିଲେ, ସାମନ୍ତ ଜମିଦାରମାନଙ୍କ-ସହ ଲଢ଼ାଇ କଲେ ଏବଂ କେତେକ ସ୍ଥଳରେ କେତେକ ପରିମାଣରେ ବିଜୟଲାଭ କଲେ, ଏସବୁ କଥା ଅନେକ ସ୍ଥଳରେ ଏହି ଚିଠି ଗୁଡ଼ିକରେ ମୁଁ ତତେ କହିଛି । ସାମନ୍ତ-ବାଦର ପତନ କଥା ମୁଁ ତତେ କହିଛି ଏବଂ ସମ୍ଭବତଃ ଏହା ସ୍ଥାନ କିପରି ବୁର୍ଜୋୟା ଶ୍ରେଣୀ—ନୂତନ ମଧ୍ୟବିତ୍ତ ଶ୍ରେଣୀ ଦଖଲ କଲେ ତାହା ମୁଁ ତତେ ସୂଚାଇ ଦେଇଛି । ଯଦି କହିଥାଏ, ତେବେ ମୁଁ ସଂଶୋଧନ କରିବାକୁ ଚାହେଁ; କାରଣ ମଧ୍ୟବିତ୍ତ ଶ୍ରେଣୀ ଧୀରେ ଧୀରେ କ୍ଷମତା ପାଇଲେ ଏବଂ ଆମେ ଯେଉଁ କାଳ ତଥା ଆଲୋଚନା କରୁଛେ, ସେତେବେଳେ ଏହା ହୋଇନଥିଲା । ବୁର୍ଜୋୟା ଶ୍ରେଣୀ କ୍ଷମତା ପାଇବା ନିମନ୍ତେ ଫ୍ରାନ୍‌ସରେ ଏକ ବିରାଟ ବିପ୍ଳବ ହେଲା ଏବଂ ଇଂଲଣ୍ଡରେ ସେହିପରି ଏକ ବିପ୍ଳବର ଆଶଙ୍କା ଥିଲା । ୧୬୮୮ ମସିହାର ଇଂରେଜ ବିପ୍ଳବରେ ପାର୍ଲିମେଣ୍ଟର ଜୟ ହେଲା, ମାତ୍ର ତୋର ମନେଥିବ ଅଳ୍ପସଂଖ୍ୟକ ଲୋକ ମୁଖ୍ୟତଃ ଜମିଦାରମାନଙ୍କର ପାର୍ଲିମେଣ୍ଟରେ ପ୍ରତିନିଧି ଥିଲେ । ସହରର କେତେକ ବଡ଼ ବଣିକ ହୁଏତ ଏଥିକୁ ଯାଇ ପାରୁଥିଲେ; ମାତ୍ର ମୋଟାମୋଟି ବଣିକ ଶ୍ରେଣୀ ମଧ୍ୟବିତ୍ତ ଶ୍ରେଣୀର ଏଥିରେ ଆଦୌ ସ୍ଥାନ ନଥିଲା ।

ଏହିରୂପେ ଭୂସମ୍ପତ୍ତି-ଅଧିକାରୀମାନଙ୍କ ହାତରେ ରାଜନୈତିକ କ୍ଷମତା ଥିଲା । ଇଂଲଣ୍ଡରେ ଏହିପରି ଥିଲା ଏବଂ ଅନ୍ୟ ସ୍ଥାନରେ ତ ଆହୁରି ବେଶି । ବାପ ପରେ ପୁଅ ଭୂସମ୍ପତ୍ତିର ଅଧିକାରୀ ହେଲା । ଏହିରୂପେ ରାଜନୈତିକ କ୍ଷମତା ମଧ୍ୟ ଗୋଟିଏ ଉତ୍ତରାଧିକାରୀ ସୂତ୍ର ହୋଇଗଲା । ମୁଁ ଇଂଲଣ୍ଡର 'ପକେଟ ବରୋ' କଥା ତତେ କହିପାରେ । ଅର୍ଥାତ୍ ଏହା ହେଉଛି ଅଳ୍ପ କେତେକ ଭୋଟର ଥିବା ନିର୍ବାଚନମଣ୍ଡଳୀ—ଏଥିରୁ ପାର୍ଲିଆମେଣ୍ଟକୁ ସଭ୍ୟ ଆସନ୍ତି । ଏହି ଅଳ୍ପ କେତେକ ଭୋଟର ସାଧାରଣତଃ କୌଣସି ଲୋକ ଅଧୀନରେ ଥାଆନ୍ତି ଏବଂ ତେଣୁ ବରୋ ତାହା ଅଧୀନରେ ରହିଛି ବୋଲି କୁହାଯାଏ । ଅବଶ୍ୟ ଏହିସବୁ ନିର୍ବାଚନ ପ୍ରହସନ ମାତ୍ର ଏବଂ ଭୋଟ ବିକ୍ରୀ, ପାର୍ଲିମେଣ୍ଟ ସ୍ଥାନ ବିକ୍ରୀ ଆଦି ବହୁ ବ୍ୟଭିଚାର ଏଥିରେ ହେଉଥିଲା । ଏପରି ଭାବରେ କେତେକ ମଧ୍ୟବିତ୍ତ ଶ୍ରେଣୀର କେତେ ଧନୀ ଲୋକ ମଧ୍ୟ ପାର୍ଲିମେଣ୍ଟରେ ସଭ୍ୟସ୍ଥାନ ଖରିଦ କରି ପାରୁଥିଲେ; ମାତ୍ର ଜନସାଧାରଣଙ୍କର ଏଥିରୁ କେଉଁଠାରେ ସ୍ଥାନ ନ ଥିଲା । ସେମାନେ ଉତ୍ତରାଧିକାରୀ ସୂତ୍ରେ କୌଣସି ସୁବିଧା ବା କ୍ଷମତା ପାଇ ନ ଥାନ୍ତି, ଏ କଥା ଜଣାଶୁଣା ଯେ କ୍ଷମତା ଖରିଦ କରିପାରନ୍ତେ ନାହିଁ । ତେଣୁ ଧନୀ ସୁବିଧାଭୋଗୀ ଶ୍ରେଣୀ ତାଙ୍କ ଉପରେ ସବାର ହୋଇ ତାଙ୍କୁ ଶୋଷଣ କଲେ ସେମାନେ କଣ କରନ୍ତେ ? ପାର୍ଲିମେଣ୍ଟରେ ତାଙ୍କ କଥା ପଡ଼ିବାର ବାଟ ନ ଥିଲା କିମ୍ବା ପାର୍ଲିମେଣ୍ଟକୁ ସଭ୍ୟ ନିର୍ବାଚନରେ ତାଙ୍କର କିଛି ହାତ ନ ଥିଲା । ଏପରିକି ବାହାରେ

କୌଣସି ସଭା ଶୋଭାଯାତ୍ରା କର୍ତ୍ତୃପକ୍ଷ ଅନୁମୋଦିତ ନ ଥିଲେ ଏବଂ ଜବରଦସ୍ତି ଦବାଇ ଦେଉଥିଲେ । ସେମାନେ ଅସଂଗଠିତ, ଦୁର୍ବଳ ଏବଂ ନିଃସହାୟ ଥିଲେ । କିନ୍ତୁ କଷ୍ଟ ଓ ଦୁର୍ଦ୍ଦଶା ଯେତେବେଳେ ବହୁତ ବଢ଼ିଲା, ସେତେବେଳେ ସେମାନେ ଆଇନ ଓ ଶୃଙ୍ଖଳାକୁ ଭୁଲିଗଲେ ଏବଂ ଦଙ୍ଗା ହେଲା । ତେଣୁ ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡରେ ବହୁ ପରିମାଣରେ ବିଶୃଙ୍ଖଳା ଥିଲା । ଲୋକମାନଙ୍କର ସାଧାରଣ ଆର୍ଥିକ ଅବସ୍ଥା ଖରାପ ଥିଲା । କ୍ଷୁଦ୍ର କ୍ଷୁଦ୍ର କୃଷକଙ୍କୁ ଉଚ୍ଛେଦ କରି ବଡ଼ ଜମିଦାରମାନେ ତାଙ୍କ ଇଲାକା ବଢ଼ାଇବାର ଉଦ୍ୟମ କରିବାରୁ ଏହା ଆହୁରି ଖରାପ ହେଲା । ଗାଁର ସାଧାରଣ ଜମି ସବୁ ମଧ୍ୟ ସେମାନେ ଗ୍ରାସ କଲେ । ଏ ସବୁଥିରେ ଜନସାଧାରଣଙ୍କ କଷ୍ଟ ବୃଦ୍ଧି ହେଲା । ଶାସନରେ କୌଣସି ସ୍ଥାନ ନ ଥିବାରୁ ଲୋକେ ଅସନ୍ତୋଷ ପ୍ରକାଶ କଲେ ଏବଂ ଅଧିକ ସ୍ୱାଧୀନତା ନିମନ୍ତେ ନିର୍ଦ୍ଦିଷ୍ଟ ଦାବୀମାନ ହେଲା ।

ଫ୍ରାନ୍ସରେ ଅବସ୍ଥା ଆହୁରି ଖରାପ ଥିଲା ଏବଂ ସେ ବିପ୍ଳବ ଆଡ଼କୁ ଗଲା । ଇଂଲଣ୍ଡରେ ରାଜା ସେପରି କିଛି ବଡ଼ ନ ଥିଲେ ଏବଂ ଲୋକେ ଅଧିକ କ୍ଷମତା ବାଣ୍ଟି ନେଲେ । ଏହାଛଡ଼ା ଫ୍ରାନ୍ସ ପରି ଇଂଲଣ୍ଡରେ ସେପରି କିଛି ରାଜନୈତିକ ଭାବଧାରାର ଉନ୍ମେଷ ମଧ୍ୟ ହୋଇ ନ ଥିଲା । ତେଣୁ ଇଂଲଣ୍ଡ ଏକ ବଡ଼ ପ୍ରଳୟରୁ ରକ୍ଷା ପାଇଲା ଏବଂ ଧୀରେ ଧୀରେ ଏଠାରେ ପରିବର୍ତ୍ତନ ହେଲା । ଏଥିଭିତରେ ଶିଳ୍ପ ଉଦ୍ୟୋଗ ଦ୍ୱାରା ହୋଇଥିବା ଦ୍ରୁତ ପରିବର୍ତ୍ତନ ଏବଂ ନୂତନ ଅର୍ଥନୈତିକ ପରିସ୍ଥିତି ଏହି ଗତିକୁ ଆଗେଇ ଦେଲା ।

ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡରେ ଏହିପରି ରାଜନୈତିକ ଅବସ୍ଥା ଥିଲା । ବିଦେଶୀ କାରିଗର ଆଣାଇ ଘରୋଇ ଶିଳ୍ପରେ ଇଂଲଣ୍ଡ ଆଗୁଆ ହେଲା । ଇଉରୋପରେ ହେଉଥିବା ଧର୍ମଯୁଦ୍ଧ ହେତୁ ଅନେକ ପ୍ରୋଟେଷ୍ଟାଣ୍ଟ ନିଜ ଦେଶ ଓ ଘର ଛାଡ଼ିବାକୁ ବାଧ୍ୟ ହେଲେ ଏବଂ ଇଂଲଣ୍ଡରେ ଆଶ୍ରୟ ନେଲେ । ସ୍ପେନ୍‌ବାସୀ ଯେତେବେଳେ ନେଦରଲାଣ୍ଡର ବିଦ୍ରୋହ ଦମନ କରିବାକୁ ଚେଷ୍ଟା କରୁଥିଲେ ସେତେବେଳେ ନେଦରଲାଣ୍ଡରୁ ଅନେକ କାରିଗର ଇଂଲଣ୍ଡକୁ ପଳାଇ ଗଲେ । କୁହାଯାଏ ତାଙ୍କ ଭିତରୁ ଇଂଲଣ୍ଡର ପୂର୍ବ ଅଞ୍ଚଳରେ ୩୦,୦୦୦ ବସତି ବାନ୍ଧିଲେ ଏବଂ ରାଣୀ ଏଲିଜାବେଥ୍ ତାଙ୍କ ଉପରେ ଏକ ସର୍ତ୍ତ ମାଡ଼ି-ଦେଲେ ଯେ ପ୍ରତ୍ୟେକ ଗୃହସ୍ଥ ଅନ୍ତତଃ ଜଣେ ଇଂରେଜ ଲୋକକୁ ଶିଖିବା ପାଇଁ ନିଯୁକ୍ତ କରିବ । ଇଂଲଣ୍ଡର ନିଜର ଲୁଗା ତିଆରି ଶିଳ୍ପବୃଦ୍ଧି କରିବାରେ ଏହା ସାହାଯ୍ୟ କଲା । ଏହି ସ୍ଥାପିତ ହେବା ପରେ ଇଂରେଜମାନେ ନେଦରଲାଣ୍ଡରୁ ଇଂଲଣ୍ଡକୁ ଲୁଗା ଆସିବା ନିଷେଧ କରିଦେଲେ । ଏହା ଭିତରେ ନେଦରଲାଣ୍ଡରେ ସ୍ୱାଧୀନତାର ସଂଗ୍ରାମ ଭୀଷଣ ଭାବରେ ଚାଲିଥାଏ । ତାଙ୍କର ଶିଳ୍ପ କ୍ଷତିଗ୍ରସ୍ତ ହେଲା । ଏପରି ହେଲା ଯେ ଯେଉଁଠି ପୂର୍ବରୁ ଅସଂଖ୍ୟ ନୌକାରେ ନେଦରଲାଣ୍ଡରୁ ଲୁଗା ବୋଝେଇ ହୋଇ ଇଂଲଣ୍ଡ ଆସୁଥିଲା, ଅଳ୍ପଦିନ ପରେ ତାହା ବନ୍ଦ ତ ହେଲା ଅଧିକନ୍ତୁ ଓଲଟା ଇଂରେଜୀ ଲୁଗା ନେଦରଲାଣ୍ଡକୁ ଯିବା ଆରମ୍ଭ କଲା ଏବଂ ତାର ପରିମାଣ ବଢ଼ିଲା ।

ଏହିରୂପେ ବେଲଜିୟମ୍‌ର ଓ୍ୱାଲୁନ୍‌ମାନେ ଇଂରେଜମାନଙ୍କୁ ଲୁଗା ତିଆରି ଶିଖାଇଲେ । ତା'ପରେ ଆସିଲେ ହୁଗୁଏନଟସ୍—ଏମାନେ ଫ୍ରାନ୍ସର ପ୍ରୋଟେଷ୍ଟାଣ୍ଟ ପଳାତକ । ସେମାନେ ଇଂରେଜମାନଙ୍କୁ ରେଶମ ବୁଣା ଶିଖାଇଲେ । ୧୭ଶ ଶତାବ୍ଦୀ ଶେଷ ବେଳକୁ ଇଉରୋପରୁ ବହୁ ସଂଖ୍ୟାରେ ନିପୁଣ କାରିଗର ଇଂଲଣ୍ଡକୁ ଆସିଲେ ଏବଂ ଇଂରେଜମାନେ ଅନେକ ପ୍ରକାରର ବେପାର ଯଥା—କାଗଜ ତିଆରି, କାଚ ତିଆରି, କଳ ଖେଳନା, ବଡ଼ ଘଣ୍ଟା ଓ ଗ୍ରେଟ ହାତବନ୍ଧା ଘଣ୍ଟା ତିଆରି ସେମାନଙ୍କଠାରୁ ଶିଖିଲେ ।

ତେଣୁ ଇଉରୋପରେ ଆଜି ପର୍ଯ୍ୟନ୍ତ ଅନୁନ୍ନତ ଦେଶରୂପେ ଥିବା ଇଂଲଣ୍ଡର ଏବେ ଧନ ଓ ଗୁରୁତ୍ୱ ବଢ଼ିଲା । ଲଣ୍ଡନ ମଧ୍ୟ ବୃଦ୍ଧି ପାଇଲା । ଗୋଟିଏ ପ୍ରଧାନ ବନ୍ଦର ହୋଇ ଉଠିଲା । ବହୁସଂଖ୍ୟକ ବଣିକ ଓ ବେପାରୀ ଏଠି ବାସ କଲେ । ୧୭ଶ ଶତାବ୍ଦୀର ପ୍ରଥମ ଭାଗରେ ଲଣ୍ଡନ କପରି ଏକ ପ୍ରଧାନ ବନ୍ଦର ଥିଲା ଓ ଏଥିରେ ବହୁସଂଖ୍ୟକ ଲୋକ ଥିଲେ ସେ ସମ୍ବନ୍ଧରେ ଗୋଟିଏ ମଜାର ଗପ ଅଛି । ମୁଣ୍ଡକାଟ ଶାସ୍ତି ପାଇଥିବା ଚାର୍ଲସ ପ୍ରଥମଙ୍କର ବାପ ଜେମ୍ସ ପ୍ରଥମ ଇଂଲଣ୍ଡର ରାଜା ଥିଲେ । ସେ ଏକଚ୍ଛତ୍ର ଶାସନ ଏବଂ ରାଜାଙ୍କର ଐଶ୍ୱରିକ ଅଧିକାରରେ ଖୁବ୍ ବିଶ୍ୱାସ କରୁଥିଲେ । ସେ ପାର୍ଲିମେଣ୍ଟ କିମ୍ବା ହଠାତ୍ ଗଜୁରୁଥିବା ଲଣ୍ଡନର ବଣିକମାନଙ୍କୁ ସୁଖ ପାଉ ନ ଥିଲେ ଏବଂ ରାଗିଯାଇ ସେ ରାଜଧାନୀ ଅକ୍ସଫୋର୍ଡକୁ ଉଠାଇ ନେବା ନିମନ୍ତେ ଲଣ୍ଡନର ନାଗରିକମାନଙ୍କୁ ଧମକ ଦେଲେ । ଲଣ୍ଡନର ଲର୍ଡ ମେୟର ଏଥିରେ ଆଦୌ ବିଚଳିତ ହେଲେ ନାହିଁ । ଏବଂ କହିଲେ ଯେ ଆଶା କରନ୍ତି, "ମହାମାନ୍ୟବର ଅନୁଗ୍ରହପୂର୍ବକ ଟେମସ୍ ନଦୀ ଛାଡ଼ି ଚାଲିଯିବେ ।" ଲଣ୍ଡନର ଏହି ଧନୀ ବଣିକ ଶ୍ରେଣୀ ହିଁ ପାର୍ଲିମେଣ୍ଟକୁ ସାହାଯ୍ୟ କରୁଥିଲେ ଏବଂ ଚାର୍ଲସ ପ୍ରଥମଙ୍କ ସହିତ ଲଢ଼େଇ ବେଳେ ବହୁ ପରିମାଣରେ ଅର୍ଥ ଦେଇଥିଲେ ।

ଇଂଲଣ୍ଡରେ ଏହି ଯେଉଁ ସବୁ ଶିଳ୍ପ ବୃଦ୍ଧି ପାଇଲା ଏହାକୁ ଘରୋଇ ବା କୁଟୀର ଶିଳ୍ପ କୁହାଯାଏ । ଅର୍ଥାତ କାରିଗର ବା ଶିଳ୍ପୀମାନେ ସାଧାରଣତଃ ନିଜ ଘରେ କିମ୍ବା ଛୋଟ ଛୋଟ ଦଳ ହୋଇ କାର୍ଯ୍ୟ କରୁଥିଲେ । ପ୍ରତ୍ୟେକ ବେପାରରେ ଶିଳ୍ପୀମାନଙ୍କର ଗୋଷ୍ଠୀ ବା ସଂଘ ଥିଲା । ଏହା ଭାରତର ଜାତିମାନଙ୍କ ପରି; ମାତ୍ର ଜାତି ପରି ଧର୍ମଭିତ୍ତିକ ନ ଥିଲା । ଓସ୍ତାଦ କାରିଗର ଶିଖାଳି ନିଯୁକ୍ତ କରୁଥିଲା ଏବଂ ସେମାନଙ୍କୁ ତାଙ୍କ ଶିଳ୍ପ ଶିକ୍ଷା ଦେଉଥିଲା । ତନ୍ତୀଙ୍କର ନିଜର ତନ୍ତ ଥିଲା, କଟାଳୀଙ୍କର ଆପଣା ସୂତାକଟା ଚରଖା ଥିଲା । ସୂତାକଟାର ଭଲ ପ୍ରସାର ଥିଲା ଏବଂ ସ୍ତ୍ରୀ ଓ ବାଳିକାମାନେ ଅବସର ସମୟରେ ଏହି କାର୍ଯ୍ୟ କରୁଥିଲେ । କେବେ ଅବା ଛୋଟ ଛୋଟ କାରଖାନାରେ କେତେକ ତନ୍ତ ବସିଥିଲେ ଏବଂ ତନ୍ତୀମାନେ ଏକାଠି କାମ କରୁଥିଲେ । କିନ୍ତୁ ପ୍ରତ୍ୟେକ ତନ୍ତୀ ଅଲଗା ନିଜ ତନ୍ତରେ ବୁଣେ ଏବଂ ପ୍ରକୃତରେ ଘରେ ତାର ନିଜ ତନ୍ତରେ ବୁଣିବା କିମ୍ବା ଅନ୍ୟାନ୍ୟ ଅନ୍ୟ ତନ୍ତୀମାନଙ୍କ ସହିତ ଓ ତାଙ୍କ ତନ୍ତରେ ବୁଣିବାରେ କୌଣସି ଫରକ ନ ଥିଲା ।

ଆଜି କାଲିକା କାରଖାନାରେ ଯେପରି ବଡ ବଡ଼ ମେସିନ ବସିଛି, ଏ ସ୍ଥୋଟ କାରଖାନା ସେପରି ନ ଥିଲା ।

ସେତେବେଳେ ଏହି କୁଟୀର ଶିଳ୍ପ କେବଳ ଯେ ଇଂଲଣ୍ଡରେ ପ୍ରସାର ଲଭିଥିଲା, ତା ନୁହେଁ; ସମଗ୍ର ଦୁନିଆଁରେ ଯେଉଁଠି ଶିଳ୍ପ ଥିଲା ପ୍ରତ୍ୟେକ ଦେଶରେ ଏହା ବ୍ୟାପିଥିଲା । ଭାରତରେ ମଧ୍ୟ ଏହି କୁଟୀରଶିଳ୍ପ ଖୁବ୍ ଉନ୍ନତ ଥିଲା । ଇଂଲଣ୍ଡରେ କୁଟୀର ଶିଳ୍ପ ପ୍ରାୟ ସମ୍ପୂର୍ଣ୍ଣରୂପେ ବୁଡ଼ିଲାଣି; କିନ୍ତୁ ଭାରତରେ ଏହା ବଞ୍ଚିଛି ଅଛି । ଭାରତରେ ବଡ଼ ମେସିନ ଓ ଗାଁ ଚର୍କା ଏକ ସମୟରେ କାମ କରୁଛି ଏବଂ ତୁ ତାହା ଦେଖି ତୁଳନା କରିପାରୁ, ପ୍ରଭେଦ କଣ ନଜର କରିପାରୁ । ତୁ ତ ଜାଣୁ ଆମେ ଯେଉଁ ଲୁଗା ପିନ୍ଧୁ ତାହା ହେଉଛି ଖଦୀ । ଏହା ହାତ କଟା ଓ ହାତ ବୁଣା । ଏହା ଭାରତର କୁଡ଼ିଆ ଓ ମାଟିଘରେ ତିଆରି ।

ଯାହାହେଉ, ନୂତନ ଯନ୍ତ୍ର ଆବିଷ୍କାର ଫଳରେ ଇଂଲଣ୍ଡରେ କୁଟୀର ଶିଳ୍ପରେ ଅନେକ ପ୍ରାର୍ଥକ୍ୟ ଦେଖାଗଲା । ମେସିନ୍ ଅଧିକ ଭାବରେ ମଣିଷର କାମ କଲା ଏବଂ ଅଳ୍ପ ପରିଶ୍ରମରେ ଅଧିକ ଉତ୍ପନ୍ନ କରିବା ସହଜ କରିଦିଆଗଲା । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଏସବୁ ଆବିଷ୍କାର ହେଲା । ଆର ଚିଠିରେ ଆମେ ସେ ସବୁ ବିଚାର କରିବା ।

ମୁଁ ସଂକ୍ଷେପରେ ଆମ ଖଦୀ ଆନ୍ଦୋଳନ କଥା କହୁଛି । ଏ ସମ୍ବନ୍ଧରେ ବେଶୀ ଏଠି କହିବାକୁ ଚାହେଁନାହିଁ । କିନ୍ତୁ ମୁଁ ଦର୍ଶାଇ ଦେବାକୁ ଚାହେଁ ଯେ ଏହି ଆନ୍ଦୋଳନ ଏବଂ ଚରଖା ବଡ଼ ମେସିନ ସହିତ ପ୍ରତିଯୋଗିତା କରିବା ପାଇଁ ହୋଇ ନାହିଁ । ଅନେକ ଲୋକ ଏହି ଭ୍ରମରେ ପଡନ୍ତି ଏବଂ କହନ୍ତି ଯେ ଚରଖା ଅର୍ଥ ମଧ୍ୟ-ଯୁଗକୁ ଫେରିଯିବା, ମେସିନ୍ ଛାଡ଼ିବା ଏବଂ ଶିଳ୍ପ ଉଦ୍ୟୋଗ ଫଳରେ ଯାହାସବୁ ଅସିଛି, ତାକୁ ଛାଡ଼ିବା । ଏହା ସବୁ ଭୁଲ । ନିଶ୍ଚିତ ରୂପେ କୁହାଯାଇପାରେ, ଆମ ଆନ୍ଦୋଳନ ଶିଳ୍ପଉଦ୍ୟୋଗ ଅର୍ଥାତ୍ ମେସିନ କମ୍ବା କାରଖାନା ବିରୁଦ୍ଧରେ ନୁହେଁ । ପ୍ରତ୍ୟେକ ଜନସର ଭଲ ଅଂଶଟା ଭାରତ କିପରି ଯଥାସମ୍ଭବ ଶୀଘ୍ର ପାଇବ, ଏହା ଆମର କାମନା । କିନ୍ତୁ ଭାରତର ବର୍ତ୍ତମାନ ଅବସ୍ଥା ବିଶେଷତଃ ଆମ ଚାଷୀଙ୍କର ଭୀଷଣ ଦାରିଦ୍ର୍ୟ ପ୍ରତି ଦୃଷ୍ଟି ଦେଇ ସେମାନେ ଅବସର ସମୟରେ ସୂତା କାଟ ବୋଲି ଆମେ କହୁଛୁ । ଏଥିରେ ସେମାନେ ଯେ କେବଳ ନିଜର ଅବସ୍ଥାର ସାମାନ୍ୟ ଉନ୍ନତି କରିପାରିବେ, ତାହା ନୁହେଁ; ମାତ୍ର ବିଦେଶୀ ଲୁଗା ଉପରେ ଆମେ ଯେ ନିର୍ଭର କରି ରହୁଛେ, ତାହା କମାଇ ଦେଇ ପାରିବୁ । ଏହି ଲୁଗା ଆମ ଦେଶରୁ ଏତେ ଧନ ନେଇଯାଉଛି ।

# ୪୮ : ଇଂଲଣ୍ଡରେ ଶିଳ୍ପ-ବିପ୍ଳବର ଆରମ୍ଭ

ସେପ୍ଟେମ୍ବର ୨୭, ୧୯୩୨

ଯେଉଁସବୁ ଯାନ୍ତ୍ରିକ ଉଦ୍ଭାବନ ଉତ୍ପାଦନ ପ୍ରଣାଳୀରେ ଏପରି ପ୍ରକାଣ୍ଡ ପରିବର୍ତ୍ତନ କଲା, ସେ ବିଷୟରେ ମୁଁ ତତେ କହିବି । ଆମେ ସେଗୁଡ଼ିକ ମିଲ ବା କାରଖାନାରେ ଏବେ ଦେଖିଲେ ଅତି ମାମୁଲି ଜିନିଷ ପରି ଜଣାପଡ଼େ । କିନ୍ତୁ ପ୍ରଥମେ ଚିନ୍ତାକରି ଏହା ଆବିଷ୍କାର କରିବା ଅତ୍ୟନ୍ତ ଦୁରୂହ କଥା ଥିଲା । ଏପରି ଆବିଷ୍କାର ପ୍ରଥମେ ୧୭୩୮ରେ ହେଲା । କେ ନାମକ ଜଣେ ଲୋକ ଲୁଗା ବୁଣିବା ସକାଶେ ଠକ୍‌ଠକ ତନ୍ତ ତିଆରି କଲେ । ଏହି ଆବିଷ୍କାର ହେବା ପୂର୍ବରୁ ଲୁଣ୍ଡି ଦେବାରେ ତନ୍ତୀ ମାକୁରେ କଣ୍ଟା ପୂରାଇ ଆସ୍ତେ ଆସ୍ତେ ହାତ ଚଳାଇ ସୂତା ନେବା ଆଣିବା କରୁଥିଲେ । ଠକ୍‌ଠକ ତନ୍ତଦ୍ୱାରା ଏହା ବେଗ ପାଇଲା ଏବଂ ତନ୍ତୀର ଆମଦାନୀ ଦୁଇଗୁଣ ବଢ଼ିଗଲା । ଏଥିପାଇଁ ତନ୍ତୀ ଆହୁରି ଅଧିକ ସୂତା ଦରକାର କଲା । ଏହି ଅଧିକା ସୂତା ଯୋଗାଇବା ପାଇଁ ତନ୍ତୀଙ୍କୁ ବହୁତ କଷ୍ଟ କରିବାକୁ ପଡ଼ିଲା ଏବଂ ସେମାନେ ବେଶି ସୂତା ଆମଦାନୀ କରିବାର କିଛି ଉପାୟ ଖୋଜିବାକୁ ଲାଗିଲେ । ଏକରୁ ଅଧିକ ସୂତା ବାହାର କରିବା ଚରଖା ୧୭୬୪ ରେ ହରଗ୍ରିଭସ୍ ବାହାର କରିବା ଦ୍ୱାରା ଏହି ସମସ୍ୟା ଆଂଶିକ ରୂପେ ସମାଧାନ ହେଲା । ଏହାପରେ ରିଚାର୍ଡ଼ ଅର୍କରାଇଟ୍ ଓ ଅନ୍ୟମାନେ ଆହୁରି ସବୁ ଆବିଷ୍କାର କଲେ । ଜଳଶକ୍ତି ପ୍ରଥମେ ବ୍ୟବହାର ହେଲା ଏବଂ ତାପରେ ବାଷ୍ପଶକ୍ତି ପ୍ରୟୋଗରେ ଆସିଲା । ପ୍ରଥମେ ତୁଳା ଶିଳ୍ପରେ ଏହିସବୁ ଆବିଷ୍କାରର ପ୍ରୟୋଗ ହେଲା ଏବଂ କାରଖାନା ଓ ତୁଳା ମିଲ୍‌ସବୁ ଗଢ଼ି ଉଠିଲା । ତା' ପରେ ରେଶମ ଶିଳ୍ପରେ ନୂତନ ପ୍ରଣାଳୀ ପ୍ରୟୋଗ ହେଲା ।

ଏଥିଭିତରେ ୧୭୬୫ରେ ଜେମ୍‌ସ୍‌ ୱାଟ୍ ବାଷ୍ପୀୟ କଳ ତିଆରି କଲେ । ଏହା ଗୋଟିଏ ବଡ଼ ଘଟଣା ଏବଂ ଏହିଥିରୁ କାରଖାନାର ଉତ୍ପାଦନ ପାଇଁ ବାଷ୍ପର ଉପଯୋଗ କରାଗଲା । ନୂତନ କାରଖାନାଗୁଡ଼ିକ ପାଇଁ କୋଇଲା ଦରକାର ହେଲା ଏବଂ କୋଇଲା-ଶିଳ୍ପର ଉନ୍ନତି ହେଲା । କୋଇଲା ବ୍ୟବହାରରୁ ଲୁହା ତରଳାଇବାର ନୂଆ ଉପାୟ ବାହାରିଲା; ଅର୍ଥାତ୍ ଖାଣ୍ଟି ଧାତୁ ବାହାର କରିବା ପାଇଁ ମୁଣ୍ଡା ଲୁହାକୁ ତରଳା ଗଲା । ଏହା ପରଠାରୁ ଲୁହା ଶିଳ୍ପ ଦ୍ରୁତଗତିରେ ବଢ଼ିଲା । କୋଇଲା ଖଣିମାନଙ୍କ ନିକଟରେ କୋଇଲା ଶସ୍ତାରେ ମିଳୁଥିବାରୁ ନୂଆ କାରଖାନା ସବୁ ସେଠି ତିଆରି ହେଲା ।

ଏହିରୂପେ ଲୁଗା, ଲୁହା ଓ କୋଇଲା—ଏହି ତିନୋଟି ଶିଳ୍ପ ଇଂଲଣ୍ଡରେ ଗଢ଼ି ଉଠିଲା ଏବଂ କୋଇଲା ଅଞ୍ଚଳ ଓ ଅନ୍ୟ ସୁବିଧା ସ୍ଥାନମାନଙ୍କରେ କାରଖାନା ସବୁ ଛିଡ଼ାହେଲା । ଇଂଲଣ୍ଡର ରୂପ ବଦଳି ଗଲା । ସୁଶ୍ୟାମଳ ଓ ସୁଖପ୍ରଦ ଗ୍ରାମ୍ୟ ଅଞ୍ଚଳ ଦ୍ରୁତ ଅନେକ

ଅଞ୍ଚଳରେ ନୂଆ କାରଖାନା ମୁଣ୍ଡ ଟେକିଲା—ଏଗୁଡ଼ିକର ଲମ୍ବା ଚିମ୍‌ନୀରୁ ଧୂଆଁ ବାହାରି ପାଖଆଖ ଅଞ୍ଚଳକୁ ଅନ୍ଧାରୁଆ କରି ପକାଇଲା । ଏହି କାରଖାନାଗୁଡ଼ିକ ଦେଖିବାକୁ କିଛି ସୁନ୍ଦର ନୁହେଁ—ତାର ଚାରିଆଡ଼େ ପାହାଡ଼ ପରି କୋଇଲା ଓ ମଇଳା ଗଦା । ଏହି କାରଖାନା ଚାରିପାଖେ ଯେଉଁସବୁ ନୂଆ ସହର ଗଢ଼ି ଉଠିଲା, ତାହା ମଧ୍ୟ ସେପରି ସୁନ୍ଦର ଦେଖାଯାଉ ନଥିଲା । ଲୋକେ ଯେକୌଣସି ମତେ ଏହା ଠିଆ କଲେ—କାରଣ ମାଲିକମାନଙ୍କର ତ କେବଳ ଗୋଟିଏ ଉଦ୍ଦେଶ୍ୟ ଥିଲା—ତାହା ହେଉଛି ଧନ କରିବା । ଏହି ସହରଗୁଡ଼ିକ ବଡ଼ କୁତ୍ସିତ, ବୃହତ୍ ଓ ମଇଳାପୂର୍ଣ୍ଣ ଏବଂ ଶ୍ରମିକମାନଙ୍କୁ ଏହାକୁ ଓ କାରଖାନାର ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ଅବସ୍ଥାକୁ ସହ୍ୟ କରିବାକୁ ପଡୁଥିଲା ।

ବଡ଼ ବଡ଼ ଜମିଦାରମାନେ କପରି ଶ୍ରେଷ୍ଠ ଚାଷୀମାନଙ୍କୁ ସର୍ବସ୍ୱାନ୍ତ କଲେ, ବେକାର ସମସ୍ୟା ସୃଷ୍ଟି ହେଲା, ଏହାଫଳରେ କପରି ଦଙ୍ଗା ହେଲା ଏବଂ ଅଶାନ୍ତ ଇଂଲଣ୍ଡରେ ହେଲା—ଏ ସବୁ ମୁଁ ତୋତେ କହିଥିବାର ମନେ ପଡ଼ୁଛି । ପ୍ରଥମେ ଏହି ନୂତନ ଶିଳ୍ପ ଅବସ୍ଥାକୁ ଖରାପ କଲା । ଚାଷ କ୍ଷତିଗ୍ରସ୍ତ ହେଲା ଏବଂ ବେକାରୀ ବଢ଼ିଲା । ବାସ୍ତବିକ ଗୋଟିଏ ଗୋଟିଏ ନୂତନ ଆବିଷ୍କାରଫଳରେ ମଣିଷ ଶ୍ରମ ବଦଳରେ ଯନ୍ତ୍ରଦ୍ୱାରା କାମ ଚଳିଲା । ଏହାଫଳରେ ପ୍ରାୟ ଶ୍ରମିକମାନଙ୍କୁ କାମରୁ ବାହାର କରି ଦିଆଗଲା ଏବଂ ସେମାନଙ୍କ ମଧ୍ୟରେ ଅସନ୍ତୋଷ ବଢ଼ିଲା । ସେମାନଙ୍କ ଭିତରୁ ଅନେକ ନୂତନ ମେସିନ୍‌କୁ ଘୃଣା କଲେ ଏବଂ ଏପରିକି ସେଗୁଡ଼ିକ ଭାଙ୍ଗିଦେବା ପାଇଁ ଚେଷ୍ଟା କଲେ । ଏମାନଙ୍କୁ ମେସିନ୍ ଭାଙ୍ଗିଲାବାଲା ବୋଲି କହୁଥିଲେ ।

ୟୁରୋପରେ ଏହି ମେସିନ୍ ଭଙ୍ଗା ବିଷୟରେ ଗୋଟିଏ ଦୀର୍ଘ ଇତିହାସ ରହିଛି । ୧୬ଶ ଶତାବ୍ଦୀରେ ଜର୍ମାନୀରେ ଯେତେବେଳେ ପ୍ରଥମ ସରଳ ତନ୍ତ ମେସିନ୍ ଆବିଷ୍କାର ହେଲା, ସେତିକବେଳକୁ ଏହି ତନ୍ତ ସମ୍ବନ୍ଧରେ ୧୫୭୯ ସାଲରେ ଜଣେ ଇଟାଲୀୟ ଧର୍ମଯାଜକଙ୍କର ଗୋଟିଏ ବହି ଅଛି । ଯେଉଁଥିରେ ଲେଖାଅଛି ଯେ "ଏହି ନୂତନ ଆବିଷ୍କାର ଅନେକ ଲୋକଙ୍କୁ ବେକାର କରିଦେବ ବୋଲି ଭୟ କରି" ଡାନ୍‌ଜିଗର ଟାଉନ୍ କାଉନ୍‌ସିଲ "ମେସିନ୍‌କୁ ନଷ୍ଟ କରିଦେଲେ ଏବଂ ଆବିଷ୍କାରକୁ ଗୁପ୍ତଭାବରେ ଦମନ କଲେ କିମ୍ବା ବୁଡ଼ାଇ ଦେଲେ ।" ଆବିଷ୍କାରକ ପ୍ରତି ଏପରି ବ୍ୟବହାର କରିବା ସତ୍ତ୍ୱେ ମଧ୍ୟ ପୁଣି ୧୭ଶ ଶତାବ୍ଦୀରେ ମେସିନ୍ ଦେଖାଦେଲା ଏବଂ ଏଥିହେତୁ ସମଗ୍ର ୟୁରୋପରେ ଦଙ୍ଗା ଲାଗିଲା । ଏହାର ବ୍ୟବହାର ବିରୁଦ୍ଧରେ ଅନେକ ସ୍ଥାନରେ ଆଇନ ପାସ୍ ହେଲା ଏବଂ ବଜାରରେ ଏହା ସମସ୍ତଙ୍କ ସମ୍ମୁଖରେ ଜଳାଇ ମଧ୍ୟ ଦିଆଗଲା । ପ୍ରଥମେ ଏହି ମେସିନ୍ ବାହାରିଲା ବେଳେ ବ୍ୟବହାର ହୋଇଥିଲେ ମଧ୍ୟ ଆବିଷ୍କାରମାନ ହୋଇ ପାରିବାର ସମ୍ଭାବନା ଥିଲା ଏବଂ ମେସିନ୍‌ଯୁଗ ଆହୁରି ଶୀଘ୍ର ଆସି ଯାଇଥାନ୍ତା । କିନ୍ତୁ ଏହା ଯେ ପ୍ରଚଳନ ହୋଇ ପାରିଲା ନାହିଁ; ଏଥିରୁ ପ୍ରମାଣିତ ହେଉଛି, ସେ ସମୟ ଏଥିପାଇଁ ଉପଯୋଗୀ ନ ଥିଲା । ଅବସ୍ଥା ଯେତେବେଳେ ଅନୁକୂଳ ହେଲା ସେତେବେଳେ ଇଂଲଣ୍ଡରେ ଅସଂଖ୍ୟ ଦଙ୍ଗା ହେବା ସତ୍ତ୍ୱେ ଏହା

ସ୍ଥାପିତ ହେଲା । ଶ୍ରମିକମାନଙ୍କର ମେସିନ୍ ପ୍ରତି ବିଦ୍ୱେଷ ଭାବ ଜନ୍ମିବା ସ୍ୱାଭାବିକ । କ୍ରମେ ସେମାନେ ବୁଝିପାରିଲେ ଯେ ମେସିନ୍‌ର ଦୋଷ ନାହିଁ, କିନ୍ତୁ ଅଳ୍ପ କେତେକ ଲୋକଙ୍କର ଲାଭ ପାଇଁ ଏହା ଯେପରି ବ୍ୟବହାର ହେଉଛି ସେଥିରେହିଁ ଦୋଷ ରହୁଛି । ଏବେ ଆମେ ଇଂଲଣ୍ଡରେ କଳକାରଖାନା ଓ ମେସିନର କ୍ରମୋନ୍ନତି ସମ୍ବନ୍ଧରେ ଆଲୋଚନା କରିବା ।

ନୂଆ କାରଖାନା ଅନେକ କୁଟୀରଶିଳ୍ପ ଓ ଘରୋଇ ମଜଦୁରଙ୍କୁ ଗର୍ଭସାତ୍ କଲା । ଏହି ଘରୁଆ ମଜୁରିଆଙ୍କ ପକ୍ଷରେ ମେସିନ୍ ସହିତ ପ୍ରତିଯୋଗିତା କରିବା ସମ୍ଭବ ନୁହେଁ । ତେଣୁ ସେମାନଙ୍କୁ ସେମାନଙ୍କର ଶିଳ୍ପ ଓ ବେପାର ଛାଡ଼ି ମଜୁରି ପାଇବା ଲାଗି ହୁଏତ ସେହି ଘୃଣିତ କାରଖାନାରେ ଯୋଗଦେବାକୁ ପଡ଼ିଲା, ନଚେତ୍ ବେକାରଙ୍କ ସହିତ ଯୋଗ ଦେବାକୁ ହେବ । କୁଟୀରଶିଳ୍ପର ପତନ ହଠାତ୍ ହୋଇ ନ ଥିଲା; କିନ୍ତୁ ଏହା ଶୀଘ୍ର ହେଲା । ଏହି ଶତାବ୍ଦୀ ଶେଷ ହେଲାକୁ ଅର୍ଥାତ୍ ୧୮୦୦ ବେଳକୁ ବଡ଼ କାରଖାନା ବହୁତ ଦେଖାଦେଲା । ପ୍ରାୟ ୩୦ ବର୍ଷ ପରେ ଇଂଲଣ୍ଡରେ ବାଷ୍ପୀୟ ରେଳ ଦେଖାଦେଲା । ପ୍ରଥମେ ଷ୍ଟିଫେନ୍‌ସନଙ୍କର ପ୍ରସିଦ୍ଧ କଳ ରକେଟ୍ ସାହାଯ୍ୟରେ ଏହା ଚାଲୁ ହେଲା । ତେଣୁ ସମସ୍ତ ଦେଶ ଏବଂ ପ୍ରାୟ ସବୁ ପ୍ରକାର ଶିଳ୍ପ ଜୀବନରେ ମେସିନ୍ ଆଗେଇବାକୁ ଲାଗିଲା ।

ଗୋଟିଏ ମଜାର କଥା ଯେ ଶ୍ରମିକ ଶ୍ରେଣୀ ଭିତରୁହିଁ ସବୁ ଆବିଷ୍କାରକ ବାହାରିଲେ— ଅନେକଙ୍କ ନାମ ମୁଁ ଉଲ୍ଲେଖ କରିନାହିଁ । ଏହି ଶ୍ରେଣୀ ଭିତରୁହିଁ ପ୍ରଥମ ଭାଗରେ ଅଧିକାଂଶ ଶିଳ୍ପ ଉଦ୍ୟୋଗର ନେତୃସ୍ଥାନୀୟ ଲୋକ ବାହାରିଛନ୍ତି । କିନ୍ତୁ ସେମାନଙ୍କର ଆବିଷ୍କାର ଫଳରେ ଓ ଏହାପରେ ଯେଉଁ କଳକାରଖାନା ପ୍ରଥା ଚାଲିଲା ସେଥିରେ ମାଲିକ ଓ ଶ୍ରମିକଙ୍କ ମଧ୍ୟରେ ପାର୍ଥକ୍ୟ ଆହୁରି ବଢ଼ିଗଲା । କଳକାରଖାନାର ଶ୍ରମିକ ମେସିନ୍‌ର ଗୋଟାଏ ପେଚ କଣ୍ଟା ପରି ରହିଲା । ବିରାଟ ଅର୍ଥନୀତିକ ଶକ୍ତି ଆଗରେ ସେ ସେ ଅସହାୟ— ସେ ଏହା ବୁଝିପାରିଲା ନାହିଁ, ଆୟତ୍ତକୁ ଆଣିବା ଦୂରର କଥା । ନୂଆ କାରଖାନା ସେମାନଙ୍କ ସହିତ ପ୍ରତିଯୋଗିତା କରୁଛି ଏବଂ ସେମାନେ ନିଜର ସରଳ ଓ ଆଦିମ ଘରୁଆ ଯନ୍ତ୍ର ସାହାଯ୍ୟରେ ଯାହା ତିଆରି କରୁଛନ୍ତି, ତାହା ଅପେକ୍ଷା ଶସ୍ତାରେ ଜିନିଷ ତିଆରି କରୁଛି ଓ ବିକୁଛି ଦେଖି ଶିଳ୍ପୀ ଓ କାରିଗରମାନେ ପ୍ରଥମେ କିଛି ଗୋଟାଏ ମସ୍ତବଡ଼ ଭୁଲ ରହିଛି ବୋଲି ଅନୁମାନ କଲେ । ବିନା ଦୋଷରେ ସେମାନଙ୍କୁ ନିଜର ଶ୍ରେଷ୍ଠ ଦୋକାନଗୁଡ଼ିକ ବନ୍ଦ କରିବାକୁ ପଡ଼ିଲା । ନିଜ ଶିଳ୍ପରେ ଯେତେବେଳେ ପାରିଲେ ନାହିଁ, ସେତେବେଳେ ନୂଆ ଶିଳ୍ପ ପ୍ରୟୋଗ କରି ସଫଳ ହୁଅନ୍ତେ ବା କିପରି ? ତେଣୁ ସେମାନେ ମଧ୍ୟ ଅକର୍ମା ଓ ଅର୍ଦ୍ଧାହାରୀ ଦଳଙ୍କ ସହିତ ସାମିଲ ହେଲେ । କୁହାଯାଏ ଯେ "କ୍ଷୁଧା ହେଉଛି କାରଖାନା ମାଲିକଙ୍କର "ଡ୍ରିଲ-ସର୍ଜେଣ୍ଟ" । ଶେଷକୁ ଶ୍ରମିକମାନଙ୍କୁ କାମ ଖୋଜିବାପାଇଁ ନୂଆ କାରଖାନାକୁ ଦୌଡ଼ିବାକୁ ପଡ଼ିଲା । ମାଲିକମାନେ ପ୍ରାୟ ଦୟା ଦେଖାଇଲେ ନାହିଁ । ସେମାନେ ତାଙ୍କୁ କାମ ଦେଲେ ସତ; ମାତ୍ର ଅତି ସାମାନ୍ୟ ମଜୁରିରେ, ଅଥଚ ଏହି ହେତୁ ଦୁର୍ଦ୍ଦଶାଗ୍ରସ୍ତ ଶ୍ରମିକମାନଙ୍କୁ କାରଖାନାରେ ରକ୍ତ ଢାଳିବାକୁ ପଡ଼ୁଥିଲା । ସ୍ତ୍ରୀଲୋକ ଏପରିକି ଶ୍ରେଷ୍ଠ ଶ୍ରେଷ୍ଠ

ପିଲାମାନଙ୍କୁ ମଧ୍ୟ ଅନେକ ଘଣ୍ଟା ପର୍ଯ୍ୟନ୍ତ ଦୁର୍ଗନ୍ଧମୟ ଓ ଅସ୍ୱାସ୍ଥ୍ୟକର ସ୍ଥାନମାନଙ୍କରେ କାମ କରିବାକୁ ପଡ଼ିଲା । ସେଥିଭିତରୁ ଅନେକ ପ୍ରାୟ ଅଜ୍ଞାନ ହୋଇଯାଆନ୍ତି ଏବଂ ଶ୍ରମ କରି ଥକି ପଡ଼ନ୍ତି । ତଳେ କୋଇଲାଖଣିରେ ଲୋକେ ସାରାଦିନ କାମ କରନ୍ତି ଏବଂ ଏକାବେଳକେ ଅନେକ ମାସ ପର୍ଯ୍ୟନ୍ତ ଦିବାଲୋକ ଦେଖି ପାରନ୍ତି ନାହିଁ ।

କେବଳ ମାଲିକମାନଙ୍କ ନିଷ୍ଠୁରତା ଯୋଗୁଁ ଏହା ଯେ ହେଉଥିଲା, ଏପରି ଭାବ ନାହିଁ । ସେମାନେ ପ୍ରାୟ ଜାଣିଶୁଣି ନିଷ୍ଠୁର ହେଉ ନଥିଲେ । ମାତ୍ର ସେ ପ୍ରଥାରେ ଦୋଷ ଥିଲା । ସେମାନେ ନିଜର ବ୍ୟବସାୟ ବଢ଼ାଇବାକୁ ଚାହାଁଉଥିଲେ—ପୃଥିବୀର ସୁଦୂର ଦେଶ-ମାନଙ୍କର ବଜାର ଦଖଲ କରିବା ତାଙ୍କର ଇଚ୍ଛା ଏବଂ ଏହା କରିବାପାଇଁ ସେମାନେ ଯେ କୌଣସି କାମ କରିବାକୁ ପ୍ରସ୍ତୁତ । ନୂଆ କାରଖାନା ତିଆରି ଓ ମେସିନ୍ ଆଦି ଖର୍ଚ୍ଚରେ ପ୍ରଚୁର ଅର୍ଥ ଲାଗୁଥିଲା । କାରଖାନାରେ ଉତ୍ପାଦନ ହୋଇ ସେହି ମାଲ ବଜାରରେ ବିକି ହେଲେ ଯାଇ ଧନ ଫେରି ଆସିବ । ତେଣୁ କାରଖାନା ମାଲିକମାନଙ୍କୁ କାରଖାନା ତିଆରି ପାଇଁ ଟିକିଏ ହୁସିଆର ହେବାକୁ ପଡ଼ୁଥିଲା ଏବଂ ମାଲ ବିକି ହୋଇ ଧନ ଫେରି ଆସିଲେ ଯାଇ ସେମାନେ ଅଧିକ କାରଖାନା ତିଆରି କରିବାରେ ଲାଗିଲେ । ଆଗ ଶିଳ୍ପୋଦ୍ୟୋଗ ଆରମ୍ଭ କରିବା ହେତୁ ପୃଥିବୀର ଅନ୍ୟ ଦେଶ ଅପେକ୍ଷା ଏମାନେ ଆଗୁଆ ହେଲେ ଏବଂ ଏଥିରୁ ବେଶି ଲାଭ କରିବାକୁ ଚାହୁଁ ଥିଲେ, ବାସ୍ତବିକ ସେମାନେ ଲାଭ ବି କଲେ । ତେଣୁ ନିଜର ବ୍ୟବସାୟ ବୃଦ୍ଧି ଓ ଅଧିକ ଧନ କରିବାରେ ଉନ୍ମତ୍ତ ହୋଇ ସେମାନେ ଗରିବ ମଜୁରିଆଙ୍କ ରକ୍ତ ଶୋଷଣ କଲେ; ଅଥଚ ସେମାନଙ୍କ ଶ୍ରମହିଁ ତାଙ୍କର ସମ୍ପଦର ଅବଲମ୍ବନ ।

ଏହିରୂପେ ଏହି ନୂତନ ଶିଳ୍ପ ବିଶେଷ ଭାବରେ ବଳବାନ ଦ୍ୱାରା ଦୁର୍ବଳକୁ ଶୋଷଣ କରିବାରେ ବ୍ୟବହୃତ ହେଲା । ଇତିହାସ ଆରମ୍ଭରୁ ଶକ୍ତିଶାଳୀ, ଦୁର୍ବଳକୁ ଶୋଷଣ କରୁଥିବା କଥା ଆମେ ଦେଖି ଆସିଛେ । କଳକାରଖାନା ପ୍ରଥା ଏହାକୁ ଆହୁରି ସହଜ କରିଦେଲା । ଆଇନ ଅନୁସାରେ ଦାସତ୍ୱ ନଥିଲା; କିନ୍ତୁ ପ୍ରକୃତରେ କାରଖାନା ମୂଳ ଦାସ । ଅର୍ଦ୍ଧାହାରୀ ଶ୍ରମିକର ଅବସ୍ଥା ପୁରୁଣା ଦାସ ମାନଙ୍କଠାରୁ କିଛି ଭଲ ନଥିଲା । ଆଇନ-ସବୁ ତ ମାଲିକଙ୍କ ସପକ୍ଷରେ । ଧର୍ମ ମଧ୍ୟ ତାଙ୍କ ଅନୁକୂଳରେ ଥିଲା । ଧର୍ମ ଶିଖାଉଥିଲା ଯେ ଏହି ସଂସାରରେ ଗରିବ ତା'ର ଦୁଃଖ ଦୁର୍ଦ୍ଦଶା ଭୋଗିଲେ ପରଜନ୍ମରେ ତା'ର କ୍ଷତିପୂରଣ ଭଗବାନ ତାଙ୍କୁ ଦେବାର ଆଶା କରିପାରେ । ବାସ୍ତବିକ ସମାଜ ପାଇଁ ଦରିଦ୍ରତାର ଆବଶ୍ୟକତା ଅଛି ବୋଲି ଗୋଟିଏ ସୁବିଧା ଦର୍ଶନ ଶାସକଗୋଷ୍ଠୀ ବାହାର କଲେ ଏବଂ ସେହି ହେତୁ ଅଳ୍ପ ମୂଲ ଦେବା ଧର୍ମାନୁମୋଦିତ ବୋଲି ବିବେଚିତ ହେଲା । ଗରିବକୁ ଅଧିକ ମୂଲ ଦେଲେ ସେ ସ୍ୱଚ୍ଛନ୍ଦରେ ଦିନ କାଟିବ, କଠିନ କାମ କରିବ ନାହିଁ—ଏହା ଗୋଟିଏ ଆବଶ୍ୟକ ଚିନ୍ତାଧାରା, କାରଣ ଏହି ଚିନ୍ତାଧାରା ସାହାଯ୍ୟରେ ହିଁ କାରଖାନା ମାଲିକ ଓ ଧନୀ ଲୋକଙ୍କର ବୈଷୟିକ ସ୍ୱାର୍ଥ ଚରିତାର୍ଥ ହୋଇପାରୁଥିଲା ।

ଏହି ସମୟର ବିବରଣୀ ଜାଣିଲେ ବଡ଼ ମଜା ଲାଗେ ଓ ବହୁତ ଶିକ୍ଷା ମିଳେ ଏବଂ ଜଣେ ବହୁତ କଥା ଜାଣିପାରେ । ଆମେ ଦେଖିପାରୁ, ଯନ୍ତ୍ରଚାଳିତ ଉତ୍ପାଦନ ପ୍ରଣାଳୀ ଅର୍ଥନୀତି ଓ ସମାଜ ଉପରେ କିପରି ଅଦ୍ଭୁତ ପ୍ରଭାବ ପକାଇଲା । ସମଗ୍ର ସାମାଜିକ ସ୍ଥିତି ଓଲଟିଗଲା; ନୂତନ ଶ୍ରେଣୀ ଆଗୁଆ ହୋଇ କ୍ଷମତା ପାଇଲେ; କାରିଗର ଶ୍ରେଣୀ କାରଖାନାରେ ମୂଲ ଖଟିବା ଶ୍ରେଣୀରେ ପରିଣତ ହେଲେ । ଏହା ସହ ମଧ୍ୟ ନୂତନ ଅର୍ଥନୀତି ଧର୍ମ ଓ ନୈତିକତା ସମ୍ବନ୍ଧରେ ଲୋକଙ୍କର ଭାବକୁ ଚିଆରି କଲା । ନିଜର ସ୍ୱାର୍ଥ କମ୍ପାନୀ ଶ୍ରେଣୀ ଭାବନା ସଙ୍ଗେ ମଣିଷର ବିଶ୍ୱାସ ବି ବଦଳିଲା ଏବଂ ସେମାନେ କ୍ଷମତା ପାଇବା ସଙ୍ଗେ ସଙ୍ଗେ ନିଜର ସ୍ୱାର୍ଥ ବଜାୟ ରଖିବା ନିମନ୍ତେ ଯତ୍ନବାନ ହେବାକୁ ଲାଗିଲେ । ଅବଶ୍ୟ ଏ ସବୁ କାମ ଧର୍ମର ଆବରଣରେ ହେଉଥିଲା ଏବଂ ପ୍ରତ୍ୟେକ ଆଇନର ମତଲବ ହେଉଛି ମାନବ ସମାଜର ମଙ୍ଗଳସାଧନ ବୋଲି ନିର୍ଭରତା ଦିଆଯାଉଥିଲା । ଭାରତରେ ଇଂରେଜ ଭାଇସରୟ ବା ବଡ଼ଲାଟ ଓ ଅନ୍ୟ ସହକାରୀ କର୍ମଚାରୀମାନଙ୍କଠାରୁ ଏପରି ନିର୍ମଳ କଥାସବୁ ଆମେ ବହୁତ ଶୁଣିଛେ । ସେମାନେ କେବଳ ଭାରତର ମଙ୍ଗଳ ପାଇଁ କାମ କରୁଛନ୍ତି, ଆମକୁ ସର୍ବଦା କୁହାଯାଏ । ଅଥଚ ସେମାନେ ଆମକୁ ଅର୍ଡ଼ିନାନ୍‌ସ ଓ ବନ୍ଧୁକରେ ଶାସନ କରନ୍ତି ଓ ଆମ ଲୋକଙ୍କର କଲିଜା ରକ୍ତ ଶୋଷୁଛନ୍ତି । ଆମ ଜମିଦାରମାନେ କିପରି ତାଙ୍କ ପ୍ରଜାଙ୍କୁ ଭଲ ପାଆନ୍ତି, ତାହା ଗାଇ ବୁଲନ୍ତି; କିନ୍ତୁ ସେମାନଙ୍କୁ ଶୋଷଣ ଓ ଜୋକ୍ କରିବାକୁ ଛାଡ଼ନ୍ତି ନାହିଁ—ଶେଷକୁ ସେମାନଙ୍କର ଅର୍ଦ୍ଧାହାରୀ ହାଡ଼ ଛଡ଼ା ଆଉ କିଛି ନଥାଏ । ଆମ ପୁଞ୍ଜିପତି ଓ ବଡ଼ କାରଖାନା ମାଲିକମାନେ ମଧ୍ୟ ସେମାନଙ୍କ ଶ୍ରମିକଙ୍କ ପ୍ରତି ସଦିଚ୍ଛା ପ୍ରକାଶ କରୁଥିବା ସମ୍ବନ୍ଧେ ଆମକୁ ନିର୍ଭର ବାଣୀ ଶୁଣାନ୍ତି; କିନ୍ତୁ ସେ ସଦିଚ୍ଛାଟା ଅଧିକ ମୂଲ କମ୍ପାନୀ ଶ୍ରମିକ-ମାନଙ୍କର ଅବସ୍ଥାର ଉନ୍ନତି ଦିଗରେ ପ୍ରକଟିତ ହୁଏନାହିଁ । ସମସ୍ତ ଲାଭ ନୂଆ ପ୍ରାସାଦ ତୋଳାରେ ଖର୍ଚ୍ଚ ହୁଏ, ଶ୍ରମିକର ମାଟି କୁଡ଼ିଆର ଉନ୍ନତି କରିବାପାଇଁ ନୁହେଁ ।

ଲୋକେ ନିଜ ସ୍ୱାର୍ଥ ହେତୁ ଦରକାର ବେଳେ କିପରି ନିଜକୁ ଓ ଅନ୍ୟମାନଙ୍କୁ ଠକି ବସନ୍ତି ତାହା ପ୍ରକୃତରେ ଆଶ୍ଚର୍ଯ୍ୟ କଥା । ତେଣୁ ୧୮ଶ ଶତାବ୍ଦୀ ଓ ତା ପରବର୍ତ୍ତୀକାଳର ମାଲିକ-ମାନେ ସେମାନଙ୍କ ଶ୍ରମିକଙ୍କ ଅବସ୍ଥାର ଉନ୍ନତି କରିବା ଲାଗି ସମସ୍ତ ଉଦ୍ୟମର ପ୍ରତିରୋଧ କରିବା ଆମେ ଦେଖିବାକୁ ପାଉ । ସେମାନେ କାରଖାନା ଆଇନ ଓ ଶ୍ରମିକଙ୍କର ଘର ସଂସ୍କାର ଆଇନରେ ଆପତ୍ତି ଦର୍ଶାଇଲେ ଏବଂ ଏହି ଦୁର୍ଦ୍ଦଶାର କାରଣ ଦୂରକରିବା ନିମନ୍ତେ ସମାଜର କିଛି କର୍ତ୍ତବ୍ୟ ଅଛି ବୋଲି ସ୍ୱୀକାର କଲେ ନାହିଁ । କେବଳ ଅଳସୁଆ ଲୋକହିଁ କଷ୍ଟ ଭୋଗୁଛି—ଏହି ଚିନ୍ତାରେ ସେମାନେ ନିଶ୍ଚିନ୍ତ ରହିଲେ ଏବଂ କେବେ ହେଲେ ସେମାନଙ୍କ ପରି ମଜୁରିଆମାନଙ୍କୁ ମଣିଷରୂପେ ପ୍ରାପ୍ୟ ବିଷୟରୁ ନ ଥିଲେ । ସେମାନେ ଏକ ନୂତନ ଦର୍ଶନ ଗଢ଼ିଲେ—ତାକୁ 'ଲାସେଜ୍ ଫେୟାର' କହନ୍ତି ଅର୍ଥାତ୍ ସରକାରର ବିନା ବାଧାରେ ସେମାନେ ନିଜ କାମ ପାଇଁ ଯାହା ଦରକାର, ତାହା କରିବାକୁ ଚାହୁଁଥିଲେ । ଅନ୍ୟ ଦେଶ କରିବା ପୂର୍ବରୁ ସେମାନେ କଳକାରଖାନା ବସାଇବାରୁ ଟଙ୍କଟିଏ ନେଉଥିଲେ

ପାଇଲେ । ସେମାନେ ଧନ କମାଇବା ପାଇଁ ଉନ୍ମୁକ୍ତ କ୍ଷେତ୍ର ଚାହୁଁଥିଲେ । 'ଲାସେଜ୍ ଫେୟାର' ଏକ ପ୍ରକାର ଅର୍ଦ୍ଧ ଐଶ୍ୱରିକ ତଥ୍ୟ ବୋଲି ଗୃହୀତ ହେଲା– ଏଥିରେ ଯେ ସୁବିଧା ଉଠାଇବାକୁ ଚାହେଁ, ତା' ପାଇଁ ସମସ୍ତ ସୁବିଧା ଅଛି ବୋଲି ବୁଝାଯାଉଥିଲା । ପ୍ରତ୍ୟେକ ନରନାରୀଙ୍କୁ ଅଗ୍ରସର ହେବା ନିମନ୍ତେ ଦୁନିଆର ଅବଶିଷ୍ଟ ସମସ୍ତଙ୍କ ସହ ସଂଗ୍ରାମ କରିବାକୁ ପଡ଼ିବ ଏବଂ ଯଦି ଏହି ସଂଗ୍ରାମରେ ଅନେକ ପରାସ୍ତ ହୋଇଯାଆନ୍ତି, ତେବେ ସେଥିରେ କାହାର କିଛି ଅଛି ?

ଏହି ଚଟି ସବୁରେ ମୁଁ ତତେ କହିଛି—ମଣିଷ ଓ ମଣିଷ ମଧ୍ୟରେ ସହଯୋଗ ପ୍ରବୃତ୍ତିର ବୃଦ୍ଧି ହିଁ ସଭ୍ୟତାର ଆଧାର ହେଲା; କିନ୍ତୁ 'ଲାସେଜ ଫେୟାର' ଓ ନୂତନ ପୁଞ୍ଜିବାଦ *ଜଙ୍ଗଲ ଆଇନ ଆଣି ଥୋଇଲା । 'ଘୃଷ୍ଟର ଛୁଆ ଦର୍ଶନ'' ବୋଲି କାରଲାଇଲ୍ ଏହାକୁ ଆଖ୍ୟା ଦେଇଛନ୍ତି । ଜୀବନ ଓ କର୍ମ ପାଇଁ ଏହି ନୂତନ ଆଇନ କିଏ ଗଢ଼ିଲା ? ଶ୍ରମିକମାନେ କରିନାହାନ୍ତି । ସେ ବିଷୟରେ କିଏ ପଚାରୁଛି ? ଉପରେ ଥିବା ସକଳ କାମର ଶିଳ୍ପୀମାନେ ହିଁ ଏହାର ମୂଳରେ—ସେମାନେ ନିର୍ବୋଧ ସ୍ୱାର୍ଥପରତା ନାମରେ ନିଜର ସଫଳତାରେ କୌଣସି ପ୍ରକାର ଅନ୍ତରାୟ ପସନ୍ଦ କରୁ ନଥିଲେ । ତେଣୁ ସ୍ୱାଧୀନତା ଓ ସମ୍ପତ୍ତି ଉପରେ ଅଧିକାର ବାହାନାରେ ସେମାନେ ବ୍ୟକ୍ତିଗତ ବାସଗୃହ ପରିଷ୍କାର କରିବା ଲାଗି ଏବଂ ମିଶ୍ରିତ ଜନକଙ୍କୁ ଭଲ କରିବା ପାଇଁ ହସ୍ତକ୍ଷେପ କରିବା ମଧ୍ୟ ଆପତ୍ତି କରୁଥିଲେ ।

ମୁଁ ପୁଞ୍ଜିବାଦ ଶବ୍ଦ ବ୍ୟବହାର କରିଛି । ଅନେକ କାଳ ହେଲା ସବୁ ଦେଶରେ ଗୋଟାଏ ପ୍ରକାର ପୁଞ୍ଜିବାଦ ଥିଲା, ଅର୍ଥାତ୍ ଧନ ସାହାଯ୍ୟରେ ଶିଳ୍ପ ଚାଲିଲା; କିନ୍ତୁ ବଡ଼ ମେସିନ୍ ଓ ଶିଳ୍ପଉଦ୍ୟୋଗର ଆଗମନ ସଙ୍ଗେ ସଙ୍ଗେ କାରଖାନା ବସାଇ ଉତ୍ପାଦନ କରିବା ପାଇଁ ବହୁ ଅଧିକ ପରିମାଣରେ ଧନ ଆବଶ୍ୟକ ହେଲା । ''ଶିଳ୍ପ ପୁଞ୍ଜି'' (Industry Capital) ବୋଲି ସ୍ତାଙ୍କୁ କହନ୍ତି । ଶିଳ୍ପ ବିପ୍ଳବ ପରେ ଯେଉଁ ଅର୍ଥନୈତିକ ପ୍ରଣାଳୀ ଗଢ଼ି ଉଠିଲା, ଏବେ ପୁଞ୍ଜିବାଦ ବୋଇଲେ ତାହାକୁ ହିଁ ଲକ୍ଷ୍ୟ କରି ବୁଝାଯାଏ । ଏହି ପ୍ରଥା ଅନୁସାରେ ପୁଞ୍ଜିବାଦୀମାନେ ଅର୍ଥାତ୍ ପୁଞ୍ଜିର ମାଲିକମାନେ କାରଖାନା ନିୟନ୍ତ୍ରଣ କରନ୍ତି ଏବଂ ଲାଭ ମଧ୍ୟ ନିଅନ୍ତି । ଶିଳ୍ପ ଉଦ୍ୟୋଗ ସଙ୍ଗେ ସଙ୍ଗେ ଏବେ କେବଳ ସୋଭିଏଟ୍ ଇଉନିୟନ୍ (ରୁଷ), ଓ ଅନ୍ୟ ଗୋଟିଏ ଦୁଇଟି ସ୍ଥାନ ଛଡ଼ା ସମଗ୍ର ପୃଥିବୀରେ ପୁଞ୍ଜିବାଦର ପ୍ରସାର ହେଲା । ଆରମ୍ଭ କାଳରୁ ପୁଞ୍ଜିବାଦ ଧନୀ ଓ ଦରିଦ୍ର ମଧ୍ୟରେ ପାର୍ଥକ୍ୟ ଉପରେ ଜୋର ଦେଲା । ଯନ୍ତ୍ରଚାଳିତ ଶିଳ୍ପ ଫଳରେ ଅଧିକ ଉତ୍ପାଦନ ହେଲା; ଅତଏବ ଏଥିରେ

*ଜଙ୍ଗଲ ଆଇନ—ଯେପରି ଜଙ୍ଗଲରେ ବଡ଼ ପଶୁ ଛୋଟ ପ୍ରାଣୀକୁ ମାରି ଖାଇଯାଏ, ସେହିପରି ମଣିଷ ସମାଜରେ ବଳବାନ ଦୁର୍ବଳକୁ ଶୋଷଣ କରେ, ତାକୁ ଜଙ୍ଗଲ ଆଇନ ବୋଲି କହନ୍ତି ।

ବେଶି ଧନ ଜମୁଥିଲା । ଏ ନୂଆ ସମ୍ପଦ ଅତି ଅଳ୍ପ ଲୋକ ଅର୍ଥାତ ନୂତନ ଶିଳ୍ପର ମାଲିକମାନଙ୍କ ପାଖକୁ ହିଁ ଗଲା । ଶ୍ରମିକମାନେ ଗରିବ ହୋଇ ରହିଲେ । ଅନେକାଂଶରେ ଭାରତ ଓ ଅନ୍ୟ ଦେଶର ଶୋଷଣ ହେତୁ ଇଂଲଣ୍ଡରେ ଅତି ଧୀରେ ଧୀରେ ଶ୍ରମିକମାନଙ୍କର ଅବସ୍ଥାରେ ଉନ୍ନତି ହେଲା । ମାତ୍ର ଶିଳ୍ପଦ୍ୱାରା ହେଉଥିବା ଲାଭାଂଶରେ ଶ୍ରମିକଙ୍କର ଖୁବ୍ ଅଳ୍ପଭାଗ ଥିଲା । ଶିଳ୍ପବିପ୍ଳବ ଓ ପୁଞ୍ଜିବାଦ ଉତ୍ପାଦନ ସମସ୍ୟାର ସମାଧାନ କରିଦେଲା । ନୂତନ ସଂପଦର ବଣ୍ଟନ ସମସ୍ୟା ଏହା ସମାଧାନ କରି ନ ଥିଲା । ତେଣୁ ଥିଲା ବାଲା ଓ ଓ ନ ଥିଲାବାଲାଙ୍କ ଭିତରେ ସଂଘର୍ଷ ଖାଲି ଯେ ଲାଗିରହିଲା ତାହା ନୁହେଁ, ଉତ୍କଟତର ହୋଇଉଠିଲା ।

୧୮ଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଶିଳ୍ପବିପ୍ଳବ ହେଲା । ଠିକ୍ ଏହି ସମୟରେ ଇଂରେଜମାନେ ଭାରତ ଓ କାନଡ଼ାରେ ଯୁଦ୍ଧ କରୁଥାନ୍ତି । ଏହି ସମୟରେ ହିଁ ସାତବର୍ଷିଆ ଯୁଦ୍ଧ ଲାଗିଥିଲା । ଏହି ଘଟଣାସବୁ ବହୁତ ପରିମାଣରେ ପରସ୍ପର ଉପରେ ଘାତପ୍ରତିଘାତ ହେଲା । ପଲାସୀ ଯୁଦ୍ଧ ପରେ ଓ ତା ପରବର୍ତ୍ତୀ କାଳରେ ଇଷ୍ଟଇଣ୍ଡିଆ କମ୍ପାନୀ ଓ ତାର କର୍ମଚାରୀମାନେ (କ୍ଲାଇବଙ୍କ କଥା ତୋର ମନେଥିବ) ଭାରତରୁ ଯେଉଁ ଅଜସ୍ର ଅର୍ଥ ଟାଣି ଆଣିଥିଲେ, ତାହା ନୂତନ ଶିଳ୍ପ ଆରମ୍ଭ କରିବାରେ ଖୁବ୍ ସାହାଯ୍ୟ କରିଥିଲା । ମୁଁ ତୋତେ ପ୍ରଥମରୁ କହିଛି, ଆରମ୍ଭ ବେଳେ ଶିଳ୍ପ ଉଦ୍ୟମ ବଡ଼ ବ୍ୟୟସାପେକ୍ଷ । କେତେ କାଳ ପର୍ଯ୍ୟନ୍ତ କୌଣସି ଆୟର ଆଶା ନଥାଏ; ଅଥଚ ଏହା ବହୁତ ଧନ ଗ୍ରାସ କରେ । ଧାର କିମ୍ବା ଅନ୍ୟ ଉପାୟରେ ପ୍ରଚୁର ଅର୍ଥ ନ ମିଳିଲେ ଏଥିରେ ଦାରିଦ୍ର୍ୟ ଓ ହତାଶା ଆସି ପଡ଼ିଯାଏ । ପୁଣି ଶିଳ୍ପ କାର୍ଯ୍ୟ ଆରମ୍ଭ କରି ଧନ କମାଇବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼େ । ଇଂଲଣ୍ଡ ଅତିଶୟ ଭାଗ୍ୟବାନ ଯେ, ଠିକ୍ ଯେତିକବେଳେ ତାର ଅଧିକାଂଶ ଶିଳ୍ପ ଓ କାରଖାନାର ଉନ୍ନତି ସକାଶେ ଅର୍ଥର ଆବଶ୍ୟକତା ଥିଲା, ସେତେବେଳେ ସେ ଭାରତରୁ ପ୍ରଚୁର ଅର୍ଥ ପାଇ ପାରିଲା ।

ଏହି କାରଖାନା ସବୁ ବସାଇବା ପରେ ପୁଣି ନୂତନ ଜିନିଷ ଲୋଡ଼ା ହେଲା । ଜିନିଷ ତିଆରି କରିବା ନିମନ୍ତେ କାରଖାନାମାନଙ୍କରେ କଞ୍ଚାମାଲ ଦରକାର ହେଲା । ଏହିରୂପେ ଲୁଗା ତିଆରି ପାଇଁ ତୁଳା ଦରକାର ହେଲା । କାରଖାନା ତିଆରି ମାଲ କେଉଁଠି ବିକ୍ରୀ ହେବ, ଏଥିପାଇଁ ନୂତନ ବଜାରର ଆବଶ୍ୟକତା ଆହୁରି ଅଧିକ ହେଲା । କଳକାରଖାନା ଆଗ ବସାଇ ଇଂଲଣ୍ଡ ଅନ୍ୟ ଦେଶଠାରୁ ଏଥିରେ ବହୁତ ଆଗେଇ ଗଲା । କିନ୍ତୁ ଏପରି ଆଗୁଆ ହୋଇ ସୁଦ୍ଧା ସୁବିଧା ବଜାର ପାଇବା ପାଇଁ ତାକୁ ଅସୁବିଧା ଭୋଗିବାକୁ ପଡ଼ିଲା । ଏତେବେଳେ ପୁଣି ଅତ୍ୟନ୍ତ ଅନିଚ୍ଛାସତ୍ତ୍ୱେ ଭାରତ ତାକୁ ରକ୍ଷା କଲା । ଭାରତୀୟ ଶିଳ୍ପକୁ ଧ୍ୱଂସ କରିବା ପାଇଁ ଏବଂ ବିଲାତି ଲୁଗା ଭାରତରେ ବାଧ୍ୟ କରି ଚଳାଇବା ପାଇଁ ଇଂରେଜମାନେ ଏଠାରେ ସବୁ ପ୍ରକାର କୌଶଳ ପ୍ରୟୋଗ କଲେ । ଏ ସମ୍ବନ୍ଧରେ ପରେ ବେଶୀ କହିବି । ଏଠାରେ ଏତିକି ମନେ ରଖିବାର କଥା ଯେ, ଇଂରେଜଙ୍କର ଭାରତ

ଅଧିକାର ଓ ନିଜର ଯୋଜନା ଅନୁସାରେ ତାକୁ ଜବରଦସ୍ତି ଚଳାଇବା ଯୋଗୁଁ ଇଂଲଣ୍ଡରେ ଶିଳ୍ପବିପ୍ଳବ କପରି ସାହାଯ୍ୟ ପାଇଥିଲା ।

୧୯ ଶତାବ୍ଦୀରେ ପୃଥିବୀର ସବୁ ଅଂଶରେ ଶିଳ୍ପର ପ୍ରସାର ହେଲା ଏବଂ ପୁଞ୍ଜିବାଦୀ ଶିଳ୍ପ ଇଂଲଣ୍ଡ ପରି ମଧ୍ୟ ଅନ୍ୟ ସବୁ ସ୍ଥାନରେ ଉନ୍ନତିଲାଭ କଲା । ପୁଞ୍ଜିବାଦ ଅନିବାର୍ଯ୍ୟ ରୂପେ ନୂତନ ସାମ୍ରାଜ୍ୟବାଦରେ ପରିଣତ ହେଲା; କାରଣ ପ୍ରତ୍ୟେକ ଦେଶରେ ଜିନିଷ ତିଆରି କରିବା ନିମନ୍ତେ କଞ୍ଚାମାଲ ଓ ତିଆରି ମାଲ ବିକ୍ରୀ କରିବା ପାଇଁ ବଜାର ଲୋଡ଼ା ହେଲା । ବଜାର ଓ କଞ୍ଚାମାଲ ପାଇବାର ସହଜ ଉପାୟ ହେଉଛି, କୌଣସି ଦେଶ ଦଖଲ କରିବା । ତେଣୁ ଅଧିକ ଶକ୍ତିଶାଳୀ ଦେଶମାନଙ୍କ ଭିତରେ ନୂତନ ଦେଶ ଦଖଲ କରିବା ନିମନ୍ତେ ଭୀଷଣ ଝଗଡ଼ା ଲାଗିଲା । ଏଥିରେ ମଧ୍ୟ ଭାରତ ଦଖଲ କରିଥିବା ହେତୁ ଏବଂ ନୌଶକ୍ତି ଯୋଗୁଁ ଇଂଲଣ୍ଡର ଖୁବ୍ ସୁବିଧା ହେଲା; କିନ୍ତୁ ସାମ୍ରାଜ୍ୟ-ବାଦ ଓ ତାର ଫଳାଫଳ ବିଷୟରେ ମୁଁ ପରେ କହିବି ।

ଶିଳ୍ପ ବିପ୍ଳବର ଆଗମନ ସଙ୍ଗେ ସଙ୍ଗେ ଇଂରେଜ ଅଧିକୃତ ଦୁନିଆରେ ଲାଙ୍କାସାୟାରର ବଡ଼ ଲୁଗାକଳ ମାଲିକ, ଲୁହା ଖଣି ମାଲିକମାନଙ୍କର ହିଁ ଅଧିକ ପ୍ରାଧାନ୍ୟ ଜମିଲା ।

## ୯୯ : ଆମେରିକା ଇଂଲଣ୍ଡରୁ ବିଚ୍ଛିନ୍ନ ହେଲା

ଅକ୍ଟୋବର ୨, ୧୯୩୨

ଆମେ ଏବେ ୧୮ଶ ଶତାବ୍ଦୀର ଦ୍ୱିତୀୟ ବିରାଟ ବିପ୍ଳବ ବିଷୟ ଆଲୋଚନା କରିବା । ଏହା ହେଉଛି ଇଂଲଣ୍ଡ ବିରୁଦ୍ଧରେ ଆମେରିକା ଉପନିବେଶମାନଙ୍କର ବିଦ୍ରୋହ । ଏହା କେବଳ ଏକ ରାଜନୀତିକ ବିପ୍ଳବ । ଆମେ ଯେଉଁ ଶିଳ୍ପ ବିପ୍ଳବ କଥା ଆଲୋଚନା କରିଗଲେ, ଏହା ସେପରି ଜୀବନ୍ତ ନୁହେଁ କିମ୍ବା ଏହା ପରେ ଯେଉଁ ଫରାସୀ ବିପ୍ଳବ ହୋଇ ଇଉରୋପର ସାମାଜିକ ସ୍ଥିତିକୁ ଦୋହଲାଇ ଦେଲା, ଏହା ସେପରି ନୁହେଁ, ତଥାପି ଆମେରିକାର ଏହି ରାଜନୀତିକ ପରିବର୍ତ୍ତନର ଗୁରୁତ୍ୱ ଅଛି ଏବଂ ଏଥିରେ ମହତ୍ତ୍ୱ ଫଳଲାଭ ହୋଇଥିଲା । ଯେଉଁ ଆମେରିକା ଉପନିବେଶଗୁଡ଼ିକ ସେତେବେଳେ ସ୍ୱାଧୀନ ହୋଇ-ଥିଲେ, ସେଗୁଡ଼ିକ ଆଜି ଅତ୍ୟନ୍ତ ଶକ୍ତିଶାଳୀ, ସମୃଦ୍ଧିଶାଳୀ ଏବଂ ଶିଳ୍ପ ଦିଗରେ ପୃଥିବୀରେ ସର୍ବାପେକ୍ଷା ଉନ୍ନତ ଦେଶ ହୋଇଛନ୍ତି ।

"ମେ ଫ୍ଲାଓ୍ୱାର" ନାମକ ଯେଉଁ ଜାହାଜ ୧୬୨୦ରେ ଦଳେ ପ୍ରୋଟେଷ୍ଟାଣ୍ଟଙ୍କୁ ଇଂଲଣ୍ଡରୁ ଆମେରିକାକୁ ନେଇଥିଲା, ତାହା ତୋର ମନେ ଅଛି ତ ? ସେମାନେ ଜେମସ୍ ପ୍ରଥମଙ୍କର

ଏକଛତ୍ରାଧିପତ୍ୟ କିମ୍ବା ତାଙ୍କ ଧର୍ମ ପସନ୍ଦ କରୁ ନ ଥିଲେ; ତେଣୁ ଏହି ଲୋକମାନେ ଏମାନଙ୍କୁ "ପରିବ୍ରାଜକ ପିତା" (Pilgrim father) ବୋଲି ସେହିଦିନୁ କହୁଛନ୍ତି । ଇଂଲଣ୍ଡର ଧୂଳି ନିଜ ଗୋଡ଼ରୁ ଝାଡ଼ି ସଫା କରିଦେଲେ ଏବଂ ଅଧିକ ସ୍ୱାଧୀନତା ପାଇବା ନିମନ୍ତେ ବସତି ସ୍ଥାପନ କରିବା ପାଇଁ ଆଣ୍ଟଲାଣ୍ଟିକ ସାଗର ପାରି ହୋଇ ଏହି ଅପରିଚିତ ନୂତନ ଦେଶକୁ ଚାଲିଗଲେ । ସେମାନେ ଉତ୍ତରରେ ଓହ୍ଲାଇଲେ ଏବଂ ସେ ସ୍ଥାନର ନାମ ହେଲା 'ନିଉ ପ୍ଲାଇମାଉଥ୍' । ଉପନିବେଶ ପରିବ୍ରାଜକମାନେ ଏହା ପୂର୍ବରୁ ଉତ୍ତର ଆମେରିକା ଉପକୂଳର ଅନ୍ୟ ଅଞ୍ଚଳକୁ ଯାଇଥିଲେ । ଏମାନଙ୍କ ପରେ ଅନେକ ଲୋକ ଗଲେ । ସମଗ୍ର ପୂର୍ବ ଉପକୂଳରେ ଉତ୍ତରରୁ ଦକ୍ଷିଣ ପର୍ଯ୍ୟନ୍ତ ସବୁଠାରେ ଛୋଟ ଛୋଟ ଉପନିବେଶ ସ୍ଥାପିତ ହୋଇଗଲା—କାଥଲିକ୍ ଉପନିବେଶ, ଇଂଲଣ୍ଡର କାଭାଲିୟର ସାମନ୍ତଙ୍କ ସ୍ଥାପିତ ଉପନିବେଶ, କ୍ୱେକର ଉପନିବେଶ ଆଦି । ପେନ୍‌ସିଲଭାନିଆ ଏହି ପେନ୍ ନାମକ କ୍ୱେକରଙ୍କ ନାମରୁ ହୋଇଛି । ଓଲନ୍ଦାଜ, ଜର୍ମାନ, ଡେନମାର୍କ ଏବଂ ଫରାସୀବାସୀ ବି ପହଞ୍ଚିଲେ । ଏହିପରି ସବୁ ମିଶାମିଶି ଥିଲେ; କିନ୍ତୁ ବେଶୀଭାଗ ହେଉଛନ୍ତି ଇଂରେଜ । ଓଲନ୍ଦାଜମାନେ ଗୋଟିଏ ସହର ସ୍ଥାପନ କଲେ ଏବଂ ତାର ନାମଦେଲେ 'ନିଉ ଆମଷ୍ଟରଡାମ୍' । ଏହି ସହରକୁ ଇଂରେଜମାନେ ନେଲା ପରେ ଏହାର ନାମ ବଦଳାଇ ନିଉୟର୍କ କଲେ । ଏ ନାମ ଏବେ ସୁପରିଚିତ ।

ଇଂରେଜ ଉପନିବେଶବାସୀ ବ୍ରିଟିଶ ରାଜା ଓ ପାର୍ଲିଆମେଣ୍ଟକୁ ମାନିବାକୁ ଲାଗିଲେ । ନିଜ ଅବସ୍ଥାରେ ଅସନ୍ତୁଷ୍ଟ ହୋଇ ଏବଂ ରାଜା ଓ ପାର୍ଲିଆମେଣ୍ଟର ଅନେକ କାର୍ଯ୍ୟକୁ ନାପସନ୍ଦ କରି ସେମାନଙ୍କ ଭିତରୁ ଅନେକେ ଘରଛାଡ଼ି ଚାଲି ଯାଇଥିଲେ । କିନ୍ତୁ ସେଥିରୁ ସମ୍ବନ୍ଧ ତୁଟାଇବା ତାଙ୍କର ଇଚ୍ଛା ନ ଥିଲା । କାଭାଲିୟର ଓ ରାଜାଙ୍କ ସମର୍ଥକମାନେ ଦକ୍ଷିଣ ଉପନିବେଶରେ ଥିଲେ । ସେମାନେ ଇଂଲଣ୍ଡ ପ୍ରତି ବେଶୀ ଅନୁରକ୍ତ ଥିଲେ । ଉପନିବେଶଗୁଡ଼ିକ ଅଲଗା ଥିଲେ ଏବଂ ପରସ୍ପର ସହିତ କିଛି ସମ୍ପର୍କ ପ୍ରାୟ ନ ଥିଲା । ଅଷ୍ଟାଦଶ ଶତାବ୍ଦୀ ବେଳକୁ ପୂର୍ବ ଉପକୂଳରେ ୧୩ଟି ଉପନିବେଶ ଥିଲା—ଏ ସମସ୍ତ ବ୍ରିଟିଶ ଅଧୀନରେ ଥିଲା । ଉତ୍ତରରେ କାନାଡା ଏବଂ ଦକ୍ଷିଣରେ ସ୍ପେନୀୟ ରାଜ୍ୟ ଥିଲା । ଓଲନ୍ଦାଜ୍, ଡେନମାର୍କ ଓ ଅନ୍ୟ ସବୁ ୧୩ଟି ଯାକ ଉପନିବେଶ ଗ୍ରାସ କରି ଶେଷକୁ ଇଂରେଜ କର୍ତ୍ତୃତ୍ୱ ସ୍ଥାପିତ ହେଲା । କିନ୍ତୁ ମନେରଖ ଏହିସବୁ ଉପନିବେଶ କେବଳ ଉପକୂଳରେ ଏବଂ ସାମାନ୍ୟ ଭିତରକୁ ଥିଲା । ତା ପଛକୁ ପଶ୍ଚିମ ଆଡ଼େ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ବିରାଟ ଅଞ୍ଚଳ ପଡ଼ିଥାଏ । ଏହାର ଆକୃତି ଏହି ୧୩ଟି ଉପନିବେଶର ପ୍ରାୟ ଦଶଗୁଣ ହେବ । ଏଥିରେ ରେଡ଼ ଇଣ୍ଡିୟାନ୍‌ଙ୍କ ନାନାପ୍ରକାର ଜାତି ବା ସମ୍ପ୍ରଦାୟର ଲୋକ ବାସ କରୁଥିଲେ ଏବଂ ସେମାନଙ୍କର କର୍ତ୍ତୃତ୍ୱ ଏଠି ଚାଲିଥିଲା ।

ତୋର ମନେଥିବ ଏହି ଶତାବ୍ଦୀର ମଧ୍ୟଭାଗରେ ଇଂଲଣ୍ଡ ଓ ଫ୍ରାନ୍ସ ଭିତରେ ପୃଥିବୀ-ବ୍ୟାପୀ ସଂଗ୍ରାମ ଲାଗିଲା । ଏହାକୁ ୭ ବର୍ଷିଆ ଯୁଦ୍ଧ (୧୭୫୬-୧୭୬୩) କୁହାଯାଏ ଏବଂ ଏହା ଖାଲି ଇଉରୋପରେ ନୁହେଁ, ଭାରତ ଓ କାନଡ଼ାରେ ମଧ୍ୟ ଲଢ଼ା ହୋଇଥିଲା । ଫ୍ରାନ୍ସ ଉତ୍ତର ଏହିପରି ଆମେରିକାରୁ ଲୋପ ପାଇଲା ଏବଂ ଉତ୍ତର ଆମେରିକାର ସମସ୍ତ ଉପନିବେଶ ଇଂଲଣ୍ଡର ଆୟତ୍ତାଧୀନ ହେଲା । କେବଳ କାନଡ଼ାର କ୍ୟୁବେକ୍ ପ୍ରଦେଶରେ କିଛି ଫରାସୀ, ଥିଲେ; ନଚେତ୍ ସବୁଠି ଦଣ୍ଡୁସଂଖ୍ୟାରେ ଇଂରେଜ ଥିଲେ । ଆଶ୍ଚର୍ଯ୍ୟ କଥା, ଆଜି ସୁଦ୍ଧା କ୍ୟୁବେକ୍‌ରେ ଫରାସୀ ଭାଷା ଓ ସଂସ୍କୃତି ରହିଛି—ଆଙ୍ଗ୍ଲୋ ସାକ୍ସନ ଲୋକ ଏଠି ରହୁଛନ୍ତି । ମଣ୍ଟ୍ରିଏଲ (ମଣ୍ଟ ରୟେଲରୁ ହୋଇଛି) କ୍ୟୁବେକ୍ ପ୍ରଦେଶର ସବୁଠାରୁ ବଡ଼ ସହର । ପାରିସ ଛଡ଼ା ଅନ୍ୟ ଯେ କୌଣସି ସହର ଅପେକ୍ଷା ଫରାସୀ ଭାଷାଭାଷୀ ଲୋକ ଏଠି ବେଶି ଅଛନ୍ତି ବୋଲି ମୋର ବିଶ୍ୱାସ ।

ଆଫ୍ରିକାରୁ ଆମେରିକାକୁ ନିଗ୍ରୋ ଶ୍ରମିକ ଆଣିବା ନିମନ୍ତେ ଇଉରୋପୀୟ ଦେଶମାନେ ଯେଉଁ 'ଦାସ' ବାଣିଜ୍ୟ ଚଳାଉଥିଲେ, ସେ କଥା ମୁଁ ତତେ ଆଗରୁ ଗୋଟିଏ ଚିଠିରେ କହିଛି । ସ୍ପେନୀୟ ପର୍ତ୍ତୁଗୀଜ ଓ ଇଂରେଜମାନଙ୍କ ହାତରେ ଏହି କ୍ରୂର ଓ ନିଷ୍ଠୁର ବାଣିଜ୍ୟ ଥିଲା । ବିଶେଷତଃ ଦକ୍ଷିଣ-ଆମେରିକାର ବିଶାଳ ତମାଖୁ ଚାଷ ପାଇଁ ଆମେରିକାରେ ଶ୍ରମିକ ଦରକାର ହେଉଥିଲା । ସେ ଦେଶର ଅଧିବାସୀ ତଥାକଥିତ ରେଡ଼ ଇଣ୍ଡିଆନ୍‌ମାନେ ଯାଯାବର ଥିବାରୁ କୌଣସି ସ୍ଥାନରେ ବସତି କରିବାକୁ ଭଲ ପାଉ ନ ଥିଲେ; ଏହାଛଡ଼ା ଦାସ ପରି କାର୍ଯ୍ୟ କରିବାକୁ ସେମାନେ ମଧ୍ୟ ଅସ୍ୱୀକାର କଲେ । ସେମାନେ ନଇଁଲାବାଲା ନୁହନ୍ତି; ସେମାନେ ବରଂ ବରବାଦ ହୋଇଯିବା ଶ୍ରେୟସ୍କର ମନେ କଲେ । ପରବର୍ତ୍ତୀ ବର୍ଷରେ ସେମାନଙ୍କୁ ଦବାଇ ଦିଆଯାଇଥିଲା । ବାସ୍ତବିକ ସେମାନଙ୍କୁ ଉଚ୍ଛେଦ କରାଗଲା ଏବଂ ନୂତନ ଅବସ୍ଥା ରେ ଅଧିକାଂଶ ମରିଗଲେ । ଏହି ସାରା ମହାଦେଶରେ ଦିନେ ଏମାନେ ବାସ କରୁଥିଲେ । ଆଜି ତାଙ୍କ ଭିତରୁ ବେଶୀ ନାହାନ୍ତି ।

ରେଡ଼ ଇଣ୍ଡିଆନ୍‌ମାନେ କ୍ଷେତରେ କାମ ନ କରିବାରୁ ଏବଂ ଶ୍ରମିକ ଅତ୍ୟନ୍ତ ଦରକାର ପଡ଼ିବାରୁ ଅତି ନିଷ୍ଠୁର ମଣିଷ ଶିକାର କରିବା ପ୍ରଥାରେ ଆଫ୍ରିକାର ଦୁଃଖି ଲୋକଙ୍କୁ ବାନ୍ଧିଲେ ଏବଂ ସେମାନଙ୍କୁ ସମୁଦ୍ର ପାରି କରି କ୍ରୂର ଭାବରେ ଅଣା ହେଉଥିଲା, ଯାହା ବିଶ୍ୱାସ କରି ହେବ ନାହିଁ । ଆଫ୍ରିକାର ଏହି ନିଗ୍ରୋମାନଙ୍କୁ ଦକ୍ଷିଣ ଅଞ୍ଚଳ ଅର୍ଥାତ୍ ଭର୍ଜିନିଆ କାରୋଲିନା ଓ ଜର୍ଜିଆ ଅଞ୍ଚଳକୁ ନିଆଗଲା ଏବଂ ବଡ଼ ବଡ଼ କ୍ଷେତରେ ବିଶେଷତଃ ତମାଖୁ ଚାଷରେ ସେମାନଙ୍କୁ ଦଳ ଦଳ କରି କାର୍ଯ୍ୟରେ ଖଟାଇଲେ ।

ଉତ୍ତର ଅଞ୍ଚଳରେ ଅବସ୍ଥା ଅନ୍ୟ ପ୍ରକାର ଥିଲା । "ମେ ଫ୍ଲାଉଥାର"ରେ ଆସିଥିବା ପରିବ୍ରାଜକ ପିତାମାନଙ୍କର ନୈତିକ ପରମ୍ପରା ଏବେ ବି ସେଠି ପ୍ରଚଳିତ ଥିଲା । ସେସବୁ ଲଗାଲଗି ଅଞ୍ଚଳ ଓ ଦକ୍ଷିଣ ଅଞ୍ଚଳ ପରି ବଡ଼ କ୍ଷେତ ମଧ୍ୟ ନ ଥିଲା । ଏହି ଚାଷ ଜମି

ସକଣେ ଦାସ କମ୍ପା ବେଶି ଶ୍ରମିକ ଲୋଡ଼ା ନ ଥିଲା । ଆବାଦୀ ଜମିର ଅଭାବ ଥିବାରୁ ନିଜର କ୍ଷେତ କରି ପ୍ରତ୍ୟେକ ଲୋକ ତାର ମାଲିକ ହୋଇଥିଲା । ତେଣୁ ଅଧିବାସୀଙ୍କ ଭିତରେ ଗୋଟାଏ ସାମ୍ୟଭାବ ଥିଲା ।

ଏହିପରି ଭାବରେ ଆମେ ଦେଖିଲେ ଯେ, ଏହିସବୁ ଉପନିବେଶରେ ଦୁଇଟି ଅର୍ଥନୈତିକ ପ୍ରଣାଳୀ ଗଢ଼ି ଉଠିଲା । ଉତ୍ତରରେ ଛୋଟ କ୍ଷେତ ଓ ସାମ୍ୟଭାବ ଧାରା ଏବଂ ଦକ୍ଷିଣରେ ବଡ଼ କ୍ଷେତ ଓ ଦାସତ୍ୱକୁ ମୂଳଭିତ୍ତି କରି ଏହା ଗଢ଼ି ଉଠିଲା । ଏ ଦୁଇଟିରୁ କୌଣସିଥିରେ ରେଡ଼ ଇଣ୍ଡିଆନ୍‌ମାନଙ୍କର ସ୍ଥାନ ନ ଥିଲା; ତେଣୁ ଏହି ଆଦିମ ଅଧିବାସୀମାନଙ୍କୁ ଆସ୍ତେ ଆସ୍ତେ ପଶ୍ଚିମ ଅଞ୍ଚଳକୁ ବିଦା କରିଦିଆଗଲା । ରେଡ଼ ଇଣ୍ଡିଆନ୍‌ମାନଙ୍କର ଭିତରେ କଳିଆ ଓ ଦୋଫାଙ୍କିଆ ଭାବ ହେବାରୁ ଏହା ସହଜ ହେଲା ।

ଇଂରେଜ ରାଜା ଓ ଇଂଲଣ୍ଡର ଅନେକ ବଡ଼ ବଡ଼ ଜମିଦାରମାନଙ୍କର ଏହିସବୁ ଉପନିବେଶରେ ବିଶେଷତଃ ଦକ୍ଷିଣରେ ଖୁବ୍ ସ୍ୱାର୍ଥ ଥିଲା । ସେମାନେ ଯେତେଦୂର ସମ୍ଭବ ସେଗୁଡ଼ିକୁ ଶୋଷଣ କରିବାରେ ଲାଗିଲେ । ସାତବର୍ଷିଆ ଯୁଦ୍ଧ ପରେ ଆମେରିକା ଉପନିବେଶ ଗୁଡ଼ିକରୁ ଧନ ଆଣିବା ପାଇଁ ବିଶେଷ ଚେଷ୍ଟା ହେଲା । ଇଂରେଜ ପାର୍ଲିଆମେଣ୍ଟରେ ଜମିଦାରମାନଙ୍କର ପ୍ରାଧାନ୍ୟ ଥିଲା—ସେମାନେ ଉପନିବେଶଗୁଡ଼ିକୁ ଶୋଷଣ କରିବା ପାଇଁ ଇଚ୍ଛୁକ ଥିଲେ ଏବଂ ପାର୍ଲିଆମେଣ୍ଟ ରାଜାକୁ ସାହାଯ୍ୟ କଲେ । ଟିକସ ବସିଲା ଓ ବାଣିଜ୍ୟରେ କଟକଣା ହେଲା । ତୋର ମନେଥିବ, ଏହି ସମୟ ବେଳକୁ ଇଂରେଜମାନେ ବଙ୍ଗଳାରେ ଅତ୍ୟନ୍ତ ଶୋଷଣ ଆରମ୍ଭ କଲେ ଏବଂ ଭାରତ ବେପାରରେ ନାନାପ୍ରକାର ବାଧା ଦିଆଗଲା । .

ଉପନିବେଶବାସୀମାନେ ଏହି କଟକଣା ଓ ନୂଆ ଟିକସ ପାଇଁ ଆପତ୍ତି ଦର୍ଶାଇଲେ; କିନ୍ତୁ ସାତବର୍ଷିଆ ଯୁଦ୍ଧ ପରେ ଇଂରେଜ ସରକାର ନିଜକୁ ଖୁବ୍ ବଳୁଆ ଓ ନିର୍ଦ୍ୱନ୍ଦ୍ୱ ମନେ କରୁଥିଲା ଓ ତାଙ୍କ ଆପତ୍ତିକୁ ଖାତିର କଲା ନାହିଁ । ସାତବର୍ଷିଆ ଯୁଦ୍ଧରେ ଉପନିବେଶବାସୀ ମଧ୍ୟ ଅନେକ କଥା ଶିଖିଥିଲେ । ବିଭିନ୍ନ ଉପନିବେଶର ବା ଅଞ୍ଚଳର ଲୋକ ପରସ୍ପର ସହିତ ସାକ୍ଷାତ କଲେ ଓ ପରିଚିତ ହେଲେ । ସେମାନେ ଇଂରେଜ ସେନାଙ୍କ ସହ ଫରାସୀସେନାଙ୍କ ବିରୁଦ୍ଧରେ ଲଢ଼ାଇ କରିଥିଲେ; ତେଣୁ ଲଢ଼ାଇ ଓ ଯୁଦ୍ଧର ଢଙ୍ଗ ଖେଳରେ ସେମାନେ ପରିଚିତ ଥିଲେ; ତେଣୁ ଉପନିବେଶବାସୀ ଯାହା ଅନ୍ୟାୟ ଓ ଭୁଲ ବୋଲି ମନେ କରୁଥିଲେ, ତାହା ମୁଣ୍ଡପାତି ସହି ନେବା ପାଇଁ ପ୍ରସ୍ତୁତ ନ ଥିଲେ ।

୧୭୭୩ ରେ ଘଟିବେଳ ପଡ଼ିଥିଲା । ବ୍ରିଟିଶ ସରକାର ଇଷ୍ଟଇଣ୍ଡିଆ କମ୍ପାନୀର ବୃଦ୍ଧ ତାଙ୍କ ଉପରେ ଲଦିଲା । ଇଂଲଣ୍ଡରେ ଅନେକ ଧନୀଙ୍କର ଇଷ୍ଟଇଣ୍ଡିଆ କମ୍ପାନୀରେ ଅଂଶ ଥିଲା ଏବଂ ସେମାନେ ତାର ଉନ୍ନତି ଚାହୁଁଥିଲେ । ସରକାର ଏମାନଙ୍କର ହାତମୁଠାରେ ଥିଲା ଓ ସମ୍ଭବତଃ ସରକାରୀ ମନ୍ତ୍ରୀମାନେ ବି ଇଷ୍ଟଇଣ୍ଡିଆ କମ୍ପାନୀର ବାଣିଜ୍ୟ ସହିତ ସଂପୃକ୍ତ ଥିଲେ । ତେଣୁ ସରକାର ଇଷ୍ଟଇଣ୍ଡିଆ କମ୍ପାନୀକୁ ଉତ୍ସାହିତ କରିବାକୁ ଚେଷ୍ଟା

କଲା । ଆମେରିକାକୁ ତାର ଚାହା ନେଇ ବିକ୍ରୀ କରିବାର ସୁବିଧା କରିଦେଲା । ଏଥିରେ ସ୍ଥାନୀୟ ଉପନିବେଶର ଚାହା-ବଣିକରେ କ୍ଷତି ଘଟିଲା ଏବଂ ସେମାନେ ଅସନ୍ତୁଷ୍ଟ ହେଲେ, ତେଣୁ ସେମାନେ ଏହି ବିଦେଶୀ ଚାହା ବର୍ଜନ କରିବାକୁ ସ୍ଥିର କଲେ । ୧୭୭୩ ସାଲରେ ବୋଷ୍ଟନ୍ ବନ୍ଦରରେ ଇଷ୍ଟ ଇଣ୍ଡିଆ କମ୍ପାନୀର ପ୍ରଥମ ଚାହା ଜାହାଜ ଯେତେବେଳେ ପହଞ୍ଚିଲା, ତାକୁ ବାଧା ଦିଆଗଲା । ଉପନିବେଶବାସୀ କେତେକ ଛଦ୍ମରୂପେ ରେଡ୍ ଇଣ୍ଡିଆନ ସାଜି ନୌକାମାନଙ୍କରେ ଚଢ଼ି ଚାହା ସବୁ ସମୁଦ୍ରକୁ ଫୋପାଡ଼ି ଦେଲେ । ବଡ଼ ଜନତାଙ୍କ ସାମନାରେ ପ୍ରକାଶ୍ୟରେ ଏହା କରାଗଲା । ଏହା ଏକ ଚ୍ୟାଲେଞ୍ଜ ଏବଂ ଏହାଫଳରେ ବିଦ୍ରୋହୀ ଉପନିବେଶବାସୀ ଓ ଇଂଲଣ୍ଡ ଭିତରେ ଯୁଦ୍ଧ ଲାଗିଲା ।

ଇତିହାସ ଠିକ୍ ସେହିପରି ପୁନରାବୃତ୍ତି ହୁଏ ନା, ତଥାପି ଏହା ବେଳେ ବେଳେ ଠିକ୍ ପୂର୍ବପରି କିପରି ହୁଏ, ତାହା ହିଁ ଆଶ୍ଚର୍ଯ୍ୟର କଥା । ୧୭୭୩ ରେ ବୋଷ୍ଟନ୍‌ଠାରେ ଏପରି ଚାହା ଫୋପାଡ଼ି ଦେବା ଖୁବ ପ୍ରସିଦ୍ଧ ହୋଇଯାଇଛି । ଏହାକୁ "ବୋଷ୍ଟନ୍ ଚାହା ଦଳ" ବୋଲି କହନ୍ତି । ଆଜକୁ ଅଢ଼େଇ ବର୍ଷ ତଳେ ଯେତେବେଳେ ବାପୁ (ଗାନ୍ଧିଜୀ) ତାଙ୍କର ଲୁଣ ଅଭିଯାନ ସକାଶେ ଦାଣ୍ଡିଯାତ୍ରା ଓ ଲୁଣ ଡିପୋ ଆକ୍ରମଣ ଆରମ୍ଭ କଲେ, ସେତେବେଳେ ଅନେକ ଆମେରିକାବାସୀଙ୍କର ସେହି ପୁରୁଣା "ବୋଷ୍ଟନ୍ ଚାହା ଦଳ" କଥା ସ୍ମରଣ ହେଲା । ଏବଂ ସେମାନେ ଏହି ନୂତନ "ଲୁଣ ଦଳ"କୁ ତାହା ସହିତ ତୁଳନା କଲେ ।

ଦେଢ଼ ବର୍ଷ ପରେ ୧୭୭୫ ରେ ଇଂଲଣ୍ଡ ଓ ତାର ଆମେରିକା ଉପନିବେଶ ଭିତରେ ଲଢ଼ାଇ ଲାଗିଲା । ଉପନିବେଶମାନେ କେଉଁଥିପାଇଁ ଲଢ଼ାଇ କରୁଥିଲେ ? ସ୍ୱାଧୀନତା ପାଇଁ ନୁହେଁ କି ଇଂଲଣ୍ଡରୁ ବିଚ୍ଛିନ୍ନ ହେବା ଲାଗି ନୁହେଁ । ଏପରିକି ଯୁଦ୍ଧ ଲାଗି ଦୁଇପକ୍ଷରୁ ରକ୍ତପାତ ହେବା ପରେ ସୁଦ୍ଧା ଉପନିବେଶବାସୀଙ୍କ ନେତାମାନେ ଇଂଲଣ୍ଡ ରାଜା ଜର୍ଜ ତୃତୀୟଙ୍କୁ "ଅତ୍ୟନ୍ତ ଦୟାବାନ ସର୍ବଶକ୍ତିମାନ" ବୋଲି ଡାକୁଥିଲେ ଓ ତାଙ୍କର ବିଶ୍ୱସ୍ତ ପ୍ରଜା ବୋଲି ନିଜକୁ ବିଚାରୁଥିଲେ । ଏହା ଲକ୍ଷ୍ୟ କଲେ ମଜା ଲାଗେ; କାରଣ ଏହି କଥା ବାରମ୍ବାର ଘଟିବାର ତୁ ଦେଖି ପାରିବୁ । ହଲାଣ୍ଡରେ ସ୍ପେନ୍‌ର ରାଜା ଫିଲିପ୍ ଦ୍ୱିତୀୟର ସେନା ବିରୁଦ୍ଧରେ ଭୀଷଣ ଯୁଦ୍ଧ ଲାଗିଥିଲେ ସୁଦ୍ଧା ଲୋକେ ତାଙ୍କୁ ସର୍ବଶକ୍ତିମାନ ବୋଲି ସ୍ୱୀକାର କରୁଥିଲେ । ଅନେକ ବର୍ଷ ଯୁଦ୍ଧ କଲାପରେ ହଲାଣ୍ଡ ନିଜକୁ ସ୍ୱାଧୀନ ଘୋଷଣା କଲା । ଭାରତରେ ଔପନିବେଶିକ ରାଜ୍ୟ (Domition Status) ଓ ସେହିପରି ବିଷୟ ଉପରେ ଅନେକ ଏକଡ଼ ସେକଡ଼ ହୋଇ ଶେଷକୁ ୧୯୩୦ ମସିହା ଜାନୁୟାରି ପହିଲାରେ ଜାତୀୟ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କଲା । ଆଜି ସୁଦ୍ଧା ଅନେକ ଲୋକ ସ୍ୱାଧୀନତା ନାମକୁ ଭୟ କରନ୍ତି ଔପନିବେଶିକ ଶାସନ କଥା ଭାରତରେ ଉଠାନ୍ତି । କିନ୍ତୁ ଇତିହାସରୁ ଆମେ ଶିଖୁ । ହଲାଣ୍ଡ ଓ ଆମେରିକା ର ଦୃଷ୍ଟାନ୍ତ ପରିଷ୍କାର କରିଦେଇଛି । ଯେ ଏପରି ସଂଗ୍ରାମସବୁର ପରିଣତି ହେଉଛି ସ୍ୱାଧୀନତା ।

ଉପନିବେଶ ଓ ଇଂଲଣ୍ଡ ଭିତରେ ଯୁଦ୍ଧ ଆରମ୍ଭ ହେବାର ଅଳ୍ପ ପୂର୍ବରୁ ୧୭୭୪ରେ ଓ୍ୱାଶିଙ୍ଗ୍ଟନ୍ କହିଥିଲେ ଯେ, ସମଗ୍ର ଉତ୍ତର ଆମେରିକାର ଲୋକ ସ୍ୱାଧୀନତା ଚାହାନ୍ତି ନାହିଁ । ଅଥଚ ଏହି ଓ୍ୱାଶିଙ୍ଗ୍ଟନ୍ ପୁଣି ଆମେରିକା ପ୍ରଜାତନ୍ତ୍ରର ପ୍ରଥମ ସଭାପତି ହୋଇଥିଲେ । ଯୁଦ୍ଧ ଆରମ୍ଭ ହେବା ପରେ ୧୭୭୪ରେ ଉପନିବେଶ କଂଗ୍ରେସର ୪୬ଜଣ ମୁଖିଆ ନେତା ଅତି ବିଶ୍ୱସ୍ତ ପ୍ରଜା ରୂପେ ରାଜା ଜର୍ଜ ତୃତୀୟଙ୍କୁ ନିବେଦନ କରି ବନ୍ଦ ଓ ଶାନ୍ତି ପାଇଁ ପ୍ରାର୍ଥନା କରିଥିଲେ । ସେମାନେ ଇଂଲଣ୍ଡ ଏବଂ ଆମେରିକାସ୍ଥ ସନ୍ତାନମାନଙ୍କ ସହ ସଦିଚ୍ଛା ଓ ମେଳାପ ଭାବ ଫେରାଇ ଆଣିବାକୁ ଅତ୍ୟନ୍ତ ଇଚ୍ଛୁକ ଥିଲେ । ସେମାନେ ଏକ ପ୍ରକାର ଔପନିବେଶିକ ଶାସନ ପାଇଁ ପ୍ରାର୍ଥନା କରୁଥିଲେ ଏବଂ ଓ୍ୱାଶିଙ୍ଗ୍ଟନ୍‌ଙ୍କ ଭାଷାରେ ସେମାନେ ଘୋଷଣା କଲେ ଯେ କୌଣସି ଚିନ୍ତାଶୀଳ ଲୋକ ସ୍ୱାଧୀନତା ଚାହେଁ ନାହିଁ । ଏହାକୁ "ଅଲିଭ ବ୍ରାଞ୍ଚ" ପିଟିସନ୍ (ଶାନ୍ତି ପ୍ରାର୍ଥନା) ବୋଲି କହନ୍ତି ।

କିନ୍ତୁ ଦୁଇ ବର୍ଷ ପୂର୍ବରୁ ଏହି ଦରଖାସ୍ତକାରୀଙ୍କ ଭିତରୁ ୨୫ ଜଣ ଆଉ ଏକ କାଗଜରେ ଦସ୍ତଖତ କଲେ । ତାହା ହେଉଛି ସ୍ୱାଧୀନତା ଘୋଷଣା ପତ୍ର ।

ତେଣୁ ଉପନିବେଶମାନେ ସ୍ୱାଧୀନତା ଲଢ଼େଇ ଆରମ୍ଭ କରି ନ ଥିଲେ । ସେମାନେ ଟିକସ ଓ ବେପାର କଟକଣାକୁ ଆପତ୍ତି କରୁଥିଲେ । ସେମାନଙ୍କ ଇଚ୍ଛା ବିରୁଦ୍ଧରେ ବ୍ରିଟିଶ ପାର୍ଲିଆମେଣ୍ଟ ତାଙ୍କ ଉପରେ ଟିକସ ବସାଇବା ଅଧିକାରକୁ ସେମାନେ ଅସ୍ୱୀକାର କରୁଥିଲେ । "ବିନା ପ୍ରତିନିଧିତ୍ୱରେ ଟିକସ ବସାଇବା ଅଧିକାର ନାହିଁ ।" ଏହା ତାଙ୍କର ଧ୍ୱନି ଥିଲା ଏବଂ ବ୍ରିଟିଶ ପାର୍ଲିଆମେଣ୍ଟରେ ତାଙ୍କର କେହି ପ୍ରତିନିଧି ନ ଥିଲେ ।

ଉପନିବେଶବାସୀଙ୍କର ସୈନ୍ୟ ନ ଥିଲେ; କିନ୍ତୁ ଦରକାର ବେଳେ ପଛକୁ ହଟିଯିବା ପାଇଁ ଓ ଅବସର ନେବା ଲାଗି ତାଙ୍କର ବିଶାଳ କ୍ଷେତ୍ର ପଡ଼ିଥିଲା । ସେମାନେ ଏକ ସେନା ବାହିନୀ ଗଢ଼ିଲେ ଏବଂ ସେଥିକୁ ଓ୍ୱାଶିଙ୍ଗ୍ଟନ୍ ଏହାର ସେନାପତି ହେଲେ । କେତେକ ସ୍ଥାନରେ ବିଜୟୀ ହେଲେ । ଏବଂ ନିଜର ପୁରୁଣା ଶତ୍ରୁ ଇଂଲଣ୍ଡର ପ୍ରତିଶୋଧ ନେବାର ଅନୁକୂଳ ମୁହୂର୍ତ୍ତ ଭାବି ଫରାସୀମାନେ ଉପନିବେଶଗୁଡ଼ିକୁ ସହଯୋଗ ଦେଲେ । ସ୍ପେନ ମଧ୍ୟ ଇଂଲଣ୍ଡ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଇଂଲଣ୍ଡ ଦଶା ଖରାପ ହେଲା; କିନ୍ତୁ ଯୁଦ୍ଧ ଅନେକ ବର୍ଷ ପର୍ଯ୍ୟନ୍ତ ଚାଲିଲା । ୧୭୭୬ରେ ଉପନିବେଶମାନଙ୍କ ପାଇଁ ପ୍ରସିଦ୍ଧ "ସ୍ୱାଧୀନତା ଘୋଷଣା" କରାଗଲା । ୧୭୮୨ରେ ଯୁଦ୍ଧ ଶେଷ ହେଲା ଏବଂ ଯୁଦ୍ଧରତ ଦେଶମାନଙ୍କ ଭିତରେ ୧୭୮୩ରେ ପ୍ୟାରିସରେ ଶାନ୍ତି ସନ୍ଧି ସ୍ୱାକ୍ଷରିତ ହେଲା ।

ଏହିରୂପେ ୧୩ଟିଯାକ ଆମେରିକା ଉପନିବେଶ ଗୋଟିଏ ସ୍ୱାଧୀନ ପ୍ରଜାତନ୍ତ୍ର ଦେଶ ହେଲା— ଏହାକୁ ଆମେରିକା ଯୁକ୍ତରାଷ୍ଟ୍ର କହନ୍ତି ; କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ପ୍ରତ୍ୟେକ ରାଜ୍ୟର ପରସ୍ପର ପ୍ରତି ହିଂସାଭାବ ଥିଲା ଏବଂ ପରସ୍ପରକୁ ଅଳ୍ପ ବହୁତେ ସେମାନେ ସ୍ୱାଧୀନ ବୋଲି ବିଚାରୁଥିଲେ । କ୍ରମେ ଧୀରେ ଧୀରେ ଗୋଟିଏ ଜାତୀୟତା ଭାବ ଆସିଲା । ପଶ୍ଚିମ ଅଞ୍ଚଳକୁ

କ୍ରମେ ପ୍ରସାରିତ ହୋଇ ଏହା ଏକ ବିଶାଳ ଦେଶରେ ପରିଣତ ହେଲା । ଆଧୁନିକ ଜଗତରେ ଏହାହିଁ ପ୍ରଥମ ବଡ଼ ପ୍ରଜାତନ୍ତ୍ର ଦେଶ । ସେ ସମୟରେ ଛୋଟ ସୁଇଜରଲାଣ୍ଡ ଦେଶଟି କେବଳ ପ୍ରକୃତ ପ୍ରଜାତନ୍ତ୍ର ରାଜ୍ୟ ଥିଲା । ହଲାଣ୍ଡ ପ୍ରଜାତନ୍ତ୍ରୀୟ ରାଷ୍ଟ୍ର ଥିଲେ ସୁଦ୍ଧା ଧନୀମାନଙ୍କର କର୍ତ୍ତୃତ୍ୱ ଥିଲା । ଇଂଲଣ୍ଡରେ ଖାଲି ରାଜା ଥିଲେ ତାହା ନୁହେଁ; ତାହାର ପାର୍ଲିଆମେଣ୍ଟ ମଧ୍ୟ ଏକ ଛୋଟ ଧନୀ ଜମିଦାର ଶ୍ରେଣୀଙ୍କ ହାତରେ ଥିଲା; ସୁତରାଂ ଯୁକ୍ତରାଷ୍ଟ୍ର ପ୍ରଜାତନ୍ତ୍ର ଏକ ନୂଆପ୍ରକାର ଦେଶ ହେଲା । ଇଉରୋପ ଓ ଏସିଆ ଦେଶ ପରି ଏହାର ଅତୀତ କିଛି ନାହିଁ । କେବଳ ଦକ୍ଷିଣରେ କ୍ଷେତ ଓ ଦାସ ପ୍ରଥା ଛଡ଼ା ଏଠାରେ ସାମନ୍ତବାଦ ଅମଳର କିଛି ଚିହ୍ନ ନ ଥିଲା । ଏଠାରେ ବଂଶାନୁକ୍ରମେ ସାମନ୍ତ ନ ଥିଲେ । ବୁର୍ଜୋୟା ଶ୍ରେଣୀ ବା ମଧ୍ୟବିତ୍ତ ଶ୍ରେଣୀଙ୍କର ବୃଦ୍ଧି ପାଇଁ କୌଣସି ପ୍ରତିବନ୍ଧକ ନ ଥିଲା ଏବଂ ଏମାନେ ଶୀଘ୍ର ବୃଦ୍ଧି ପାଇଲେ । ସ୍ୱାଧୀନତା ଯୁଦ୍ଧ ବେଳେ ଏହାର ଲୋକସଂଖ୍ୟା ୪୦ ଲକ୍ଷ ଥିଲା । ଦୁଇ ବର୍ଷ ପୂର୍ବେ ୧୯୩୦ ମସିହାରେ ଏହାର ଲୋକସଂଖ୍ୟା ପ୍ରାୟ ୧୨ ,୦୦୦,୦୦୦ ହୋଇଛି ।

ଜର୍ଜ ଓ୍ୱାଶିଂଟନ୍ ଯୁକ୍ତରାଷ୍ଟ୍ରର ପ୍ରଥମ ସଭାପତି ହେଲେ । ସେ ଭର୍ଜିନିଆ ଅଞ୍ଚଳର ଜଣେ ମୁଖ୍ୟ ଜମିଦାର । ପ୍ରଜାତନ୍ତ୍ରର ପ୍ରତିଷ୍ଠାତା ରୂପେ ଗଣ୍ୟ ହେଉଥିବା ଏତେବେଳର ଅନ୍ୟ ମୁଖିଆ ଲୋକଙ୍କ ନାମ ହେଉଛି ଟମାସ୍ ପେନ୍, ବେଞ୍ଜାମିନ୍ ଫ୍ରାଙ୍କ୍ଲିନ୍ ପେଟ୍ରିକ ହେନରି, ଥମାସ୍ ଜଫରସନ୍ ,ଆଦମ୍ସ୍ ଓ ଜେମ୍ସ ମାଡିସନ୍ । ବେଞ୍ଜାମିନ୍ ଫ୍ରାଙ୍କଲିନ୍ ଖୁବ୍ ମାନ୍ୟଗଣ୍ୟ ବ୍ୟକ୍ତି ଓ ଜଣେ ବୈଜ୍ଞାନିକ ଥିଲେ । ପିଲଙ୍କ ଗୁଡ଼ି ଉଡ଼ାଇ ସେ ଦେଖାଇ ଦେଇଥିଲେ ଯେ ବିଦ୍ୟୁତ ଯାହା, ମେଘର ବିଜୁଳି ସେଇଆ ।

୧୭୭୬ର ସ୍ୱାଧୀନତା ଘୋଷଣାରେ କୁହାହୋଇଥିଲା, "ସବୁ ମଣିଷ ସମାନ ହୋଇ ଜନ୍ମ ଲଭିଛନ୍ତି ।" ମାତ୍ର ଅନୁଧ୍ୟାନ କଲେ ଏହା ପ୍ରାୟ ଠିକ୍ ମନେ ହେବ ନାହିଁ; କାରଣ ଜଣେ ଦୁର୍ବଳ ତ ଜଣେ ବଳବାନ୍ । କେତେକ ଅନ୍ୟମାନଙ୍କ ଅପେକ୍ଷା ବୁଦ୍ଧିମାନ୍ ଓ ସମର୍ଥ ହୁଅନ୍ତି, କିନ୍ତୁ ଏହି ଘୋଷଣା ମୂଳରେ ଥିବା ଭାବ ସୁସ୍ପଷ୍ଟ ଓ ପ୍ରଶଂସାଯୋଗ୍ୟ । ଉପନିବେଶବାସିମାନେ ଇଉରୋପରେ ପ୍ରଚଳିତ ସାମାଜିକ ଢଙ୍ଗର ବୈଷମ୍ୟରୁ ଦୂରରେ ରହିବାକୁ ଚାହୁଁଥିଲେ । ଏହି କଥାଟି ଗୋଟିଏ ଉନ୍ନତଧରଣର ବିଷୟ । ସମ୍ଭବତଃ ସ୍ୱାଧୀନତା ଘୋଷଣାର ରଚୟିତା ମାନଙ୍କ ଭିତରୁ ଅନେକ ୧୮ ଶ ଶତାବ୍ଦୀର ଦାର୍ଶନିକ ଓ ଚିନ୍ତାଶୀଳ ଲେଖକ ଭଲ୍ଟେୟାର ଓ ରୁଷୋଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ ।

"ସବୁ ମଣିଷ ସମାନ ହୋଇ ଜନ୍ମ ଲଭନ୍ତି;" ତଥାପି ସେଠାରେ ବିଚରା ନିଗ୍ରୋ କିଛି ଅଧିକାର ନ ପାଇ ଦାସରୂପେ ଥାଏ । ତା କଥା କଣ ହେଲା ? ଶାସନବିଧାନରେ ତାହା କିପରି ଖାପ ଖାଇଲା ? ସେଥିରେ ସେ ଖାପ ଖାଇଲା ନାହିଁ ଏବଂ ଆଜିଯାଏ ମଧ୍ୟ ହୋଇ ନାହିଁ । ଅନେକ ବର୍ଷ ପରେ ଦକ୍ଷିଣ ଓ ଉତ୍ତର ଅଞ୍ଚଳ ଭିତରେ ଭୀଷଣ ଗୃହବିବାଦ ଲାଗିଥିଲା । ଫଳରେ ଦାସପ୍ରଥା ଲୋପ ହେଲା; କିନ୍ତୁ ଆମେରିକାରେ ଆଜି ସୁଦ୍ଧା ନିଗ୍ରୋ ସମସ୍ୟା ରହିଛି ।

# ୧୦୦ : ବାଷ୍ଟାଇଲର ପତନ

ଅକ୍ଟୋବର ୭, ୧୯୩୨

ଆମେ ଖୁବ୍ ସଂକ୍ଷେପରେ ୧୮ଶ ଶତାବ୍ଦୀର ଦୁଇଟି ବିପ୍ଳବ ବିଷୟ ଆଲୋଚନା କଲେ । ଏ ଚିଠିରେ ମୁଁ ତତେ ସଂକ୍ଷେପରେ ତୃତୀୟ ବିପ୍ଳବ—ଫରାସୀ ବିପ୍ଳବ କଥା କହିବି । ଏହି ତିନି ବିପ୍ଳବ ଭିତରେ ଫ୍ରାନ୍ସର ଏହି ଗୋଟିକ ହିଁ ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଇଂଲଣ୍ଡର ଯେଉଁ ଶିଳ୍ପ ବିପ୍ଳବ ଆରମ୍ଭ ହୋଇଥିଲା, ତାହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା; କିନ୍ତୁ ଏହା ଧୀରେ ଧୀରେ ଅଗ୍ରସର ହେଲା ଏବଂ ଅଧିକାଂଶ ଲୋକ ଏହାକୁ ଲକ୍ଷ୍ୟ କରିପାରି ନ ଥିଲେ । ଏହାର ପ୍ରକୃତ ମହତ୍ତ୍ୱକୁ ଅଳ୍ପ ଲୋକ ସେତେବେଳେ ବୁଝି ପାରିଥିଲେ; କିନ୍ତୁ ଫରାସୀ ବିପ୍ଳବ ବଜ୍ରପାତ ପରି ଇଉରୋପକୁ ଚମକାଇ ଦେଲା । ସେତେବେଳେ ଯାଏ ଇଉରୋପ ଅନେକ ରାଜା ଓ ସମ୍ରାଟଙ୍କ ଅଧୀନରେ ଥିଲା । ପୁରାତନ ପବିତ୍ର ରୋମାନ୍ ସାମ୍ରାଜ୍ୟର ଆଉ ଅସ୍ତିତ୍ୱ ନ ଥିଲା; କିନ୍ତୁ ଏହା କେବଳ କାଗଜରେ ରହିଥିଲା ଏବଂ ଇଉରୋପ ଉପରେ ଏହି ଭୂତର ଛାୟାପାତ ହୋଇଥିଲା । ରାଜା, ସମ୍ରାଟ, କଚେରୀ ଓ ରାଜପ୍ରାସାଦର ଦୁନିଆଁର ଗହ୍ୱର ଭିତରୁ ସାଧାରଣ ଜନତା ନାମକ ଅଦ୍ଭୁତ ଓ ଭୟାନକ ଜୀବ ଦେଖାଦେଲା । ଯୁଗ ଯୁଗ ବର୍ଦ୍ଧିତ ସ୍ୱାର୍ଥ ବା ସୁବିଧା ପ୍ରତି ଏହା ଖାତିର କଲା ନାହିଁ । ଗୋଟିଏ ରାଜାକୁ ଜବରଦସ୍ତି ଗାଦିଚ୍ୟୁତ କଲା ଏବଂ ସେହି ଦଶା ଭୋଗିବାର ଧମକ ଅନ୍ୟମାନଙ୍କୁ ଦେଲା । ଯେଉଁ ଜନତାକୁ ଏ ପର୍ଯ୍ୟନ୍ତ ଇଉରୋପର ରାଜା ଓ ଅନ୍ୟ ସମସ୍ତ ସୁବିଧାଭୋଗୀ ଲୋକେ ଅବହେଳା ଓ ଦମନ କରି ଆସିଥିଲେ, ସେହି ଜନବିଦ୍ରୋହରେ ସେମାନେ ଭୟରେ ଥରିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ।

ଏକ ଆଗ୍ନେୟଗିରି ପରି ଫରାସୀ ବିପ୍ଳବ ଉଦ୍‌ଗୀରଣ ହେଲା ତଥାପି ବିପ୍ଳବ ଓ ଆଗ୍ନେୟଗିରି ବିନା କାରଣରେ କିମ୍ବା ଦୀର୍ଘ ବିକାଶ ବିନା ହଠାତ୍ ଉତ୍ପତ୍ତି ହୁଏ ନାହିଁ । ଆମେ ଆକସ୍ମିକ ଉଦ୍‌ଗୀରଣ ଦେଖି ଓ ବିସ୍ମିତ ହେଉ; କିନ୍ତୁ ଦୀର୍ଘକାଳ ପର୍ଯ୍ୟନ୍ତ ମାଟିସ୍ତର ତଳେ କେତେକ ଶକ୍ତି ପରସ୍ପରର ବିରୋଧରେ ସଂଘର୍ଷ କରୁଥାନ୍ତି । ଅଗ୍ନିସବୁ ସମ୍ମିଳିତ ହୋଇଗଲେ ଭୂମିର କଠିନ ସ୍ତର ଆଉ ତାକୁ ସମ୍ଭାଳି ପାରେନା; ଏହାର ଉଦ୍‌ଗୀରଣ ହୁଏ ଏବଂ ପ୍ରକାଣ୍ଡ ଅଗ୍ନିଶିଖା ଆକାଶ ଭେଦ କରି ଉଠେ ଓ ବିଗଳିତ ପ୍ରସ୍ତରସବୁ ପର୍ବତ ଆକାରରେ ଜମିଯାଏ । ସେହିପରି ଯେଉଁସବୁ ଶକ୍ତି ଶେଷକୁ ବିପ୍ଳବରେ ପ୍ରକାଶ ପାଏ, ତାହା ଅନେକ କାଳ ପର୍ଯ୍ୟନ୍ତ ସମାଜର ଆବରଣ ତଳେ କାର୍ଯ୍ୟ କରୁଥାଏ । ପାଣି ଗରମ ହେଲେ ଫୁଟେ; କିନ୍ତୁ ତୁ ଜାଣୁ, ଏହା ଆସ୍ତେ ଆସ୍ତେ ଗରମ ହୋଇ ଶେଷକୁ ଯାଇ ଫୁଟିବା ଅବସ୍ଥାରେ ପହଞ୍ଚେ ।

ସରକାର ଓ ଆର୍ଥିକ ଅବସ୍ଥାଦ୍ୱାରା ବିପ୍ଳବ ସୃଷ୍ଟି ହୁଏ । ନିର୍ବୋଧ ଅଧିକାରୀବର୍ଗ ତାଙ୍କ ସରକାର ସହିତ ଖାପ ଖାଉ ନ ଥିବା ବିଷୟଗୁଡ଼ିକ ପ୍ରତି ଅନ୍ଧ ହୋଇ ଅନୁମାନ କରନ୍ତି ଯେ, ବିପ୍ଳବସବୁ ଉତ୍ତେଜନାକାରୀମାନଙ୍କ ଦ୍ୱାରା ହୁଏ । ଉତ୍ତେଜନାକାରୀମାନେ ନିଜେ ସମାଜର ପ୍ରଚଳିତ ଅବସ୍ଥାରେ ଅସନ୍ତୁଷ୍ଟ ଥାଆନ୍ତି, ତାହାର ପରିବର୍ତ୍ତନ ଚାହାନ୍ତି ଓ ସେଥିପାଇଁ କାର୍ଯ୍ୟ କରନ୍ତି । ପ୍ରତ୍ୟେକ ବୈପ୍ଳବିକ ଯୁଗରେ ଏପରି ଯଥେଷ୍ଟ ସଂଖ୍ୟାରେ ମିଳନ୍ତି । ସେମାନେ ପ୍ରଚଳିତ ଅସନ୍ତୋଷ ଓ ଆନ୍ଦୋଳନକୁ ଜାତ; କିନ୍ତୁ ଖାଲି ଜଣେ ଉତ୍ତେଜନାକାରୀର ଆଦେଶ ଅନୁସାରେ ହଜାର ହଜାର ଲୋକ ସଂଗ୍ରାମ କରିବାକୁ ବାହାରି ପଡ଼ନ୍ତି ନାହିଁ । ଅଧିକାଂଶ ଲୋକ ସର୍ବାପେକ୍ଷା ନିରାଲମ୍ବ ରହିବା ପାଇଁ କାମନା କରନ୍ତି; ସେମାନଙ୍କର ଯାହା ଥାଏ, ତାହା ହରାଇବାକୁ ଚାହାନ୍ତି ନାହିଁ; କିନ୍ତୁ ଯେତେବେଳେ ଆର୍ଥିକ ଅବସ୍ଥା ଏପରି ହୁଏ ଯେ, ସେମାନଙ୍କର ଦୈନନ୍ଦିନ କଷ୍ଟ ବୃଦ୍ଧି ପାଏ ଏବଂ ଜୀବନ ପ୍ରାୟ ଠିକ୍ ଅସହ୍ୟ ବୋଧ ହୋଇପଡ଼େ, ସେତେବେଳେ ଦୁର୍ବଳ ଲୋକ ସୁଦ୍ଧା ବିପଦ ବରଣ କରିବାକୁ ପ୍ରସ୍ତୁତ ହୋଇ ବାହାରିପଡ଼େ । ସେତେବେଳେ ଯାଇ ସେମାନେ ଉତ୍ତେଜନାକାରୀର କଥା ଶୁଣନ୍ତି । ସେ ସେମାନଙ୍କ ଦୁର୍ଦ୍ଦଶାରୁ ତ୍ରାହି ପାଇ ଗୋଟାଏ ବାଟ ଦେଖାଇ ଦେଲା ପରି ମନେହୁଏ ।

ମୋର ଅନେକ ଚିଠିରେ ମୁଁ ତଳେ ଲୋକଙ୍କର ଦୁର୍ଦ୍ଦଶା ଓ କୃଷକ ବିଦ୍ରୋହ ସମ୍ବନ୍ଧରେ କହିଛି । ଇଉରୋପ ଓ ଏସିଆର ପ୍ରତ୍ୟେକ ଦେଶରେ ଏପରି କୃଷକ ବିଦ୍ରୋହ ଘଟିଛି । ତାହା-ଫଳରେ ଅନେକ ସମୟରେ ବହୁ ରକ୍ତପାତ ଓ ଭୀଷଣ ଦମନ ହୋଇଛି । ଦୁର୍ଦ୍ଦଶାଗ୍ରସ୍ତ ହୋଇ ଲୋକେ ବିପ୍ଳବମୂଳକ କାର୍ଯ୍ୟ ଆଡ଼କୁ ଯାଆନ୍ତି; କିନ୍ତୁ ସାଧାରଣତଃ ସେମାନଙ୍କର ଲକ୍ଷ୍ୟ ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ଧାରଣା ନ ଥାଏ । ଏହି ଅସ୍ପଷ୍ଟ ଚିନ୍ତା ଓ ଆଦର୍ଶର ଅଭାବ ଯୋଗୁଁ ସେମାନଙ୍କର ଉଦ୍ୟମ ଅନେକ ସମୟରେ ବିଫଳ ହୁଏ । ଫରାସୀ ବିପ୍ଳବରେ ଆମେ ଗୋଟିଏ ନୂଆ ଜିନିଷ ଦେଖିବାକୁ ପାଉ—ଅନ୍ତତଃ ଏଡ଼େ ବିରାଟ ଆକାରରେ ଅର୍ଥନୀତିକ ପ୍ରେରଣା ସହ ବିପ୍ଳବମୂଳକ କର୍ମପନ୍ଥାର ସମ୍ମିଶ୍ରଣ ଦେଖାଦେଲା । ଏପରି ସମ୍ମିଶ୍ରଣ ଯେତେବେଳେ ଘଟେ, ସେତେବେଳେ ହିଁ ପ୍ରକୃତ ବିପ୍ଳବ ହୁଏ । ପ୍ରକୃତ ବିପ୍ଳବ ଜୀବନ ଓ ସମାଜର ପ୍ରତ୍ୟେକ ସ୍ତର ଯଥା--ରାଜନୀତିକ, ସାମାଜିକ, ଅର୍ଥନୀତିକ ଓ ଧାର୍ମିକ ସ୍ତରକୁ ସ୍ପର୍ଶ କରେ । ୧୮ଶ ଶତାବ୍ଦୀର ଶେଷ ବେଳକୁ ଫ୍ରାନ୍ସରେ ଏପରି ସବୁ ଘଟିବାର ଆମେ ଦେଖୁଁ ।

ଫରାସୀ ରାଜାମାନଙ୍କର ବିଳାସିତା, ଅକର୍ମଣ୍ୟ ଓ ବ୍ୟଭିଚାର ଏବଂ ସାଧାରଣ ଲୋକଙ୍କର ଅଶେଷ ଦାରିଦ୍ର୍ୟ ସମ୍ବନ୍ଧରେ ମୁଁ ଆଗରୁ କହିଛି । ଫରାସୀ ଲୋକଙ୍କ ମନର ଆନ୍ଦୋଳନ, ଭଲଟେୟାର, ରୁଷୋ, ମଣ୍ଟେସ୍କ୍ୟୁ ଓ ଅନ୍ୟାନ୍ୟ ଅନେକଙ୍କଦ୍ୱାରା ପ୍ରଚଳିତ ନୂତନ ଭାବଧାରା ସମ୍ବନ୍ଧରେ ମୁଁ କହିଛି । ଆର୍ଥିକ ଦୁର୍ଦ୍ଦଶା ଓ ଆଦର୍ଶବାଦ ବୃଦ୍ଧି ଏହି ଦୁଇଟି କାର୍ଯ୍ୟ ଏକ ସଙ୍ଗରେ ଗତି କରୁଥିବାର ଏବଂ ଦେଶର ଉପରେ କ୍ରିୟା ଓ ପ୍ରତିକ୍ରିୟା ହେଉଥିବାର ଆମେ ଦେଖିଲେ । କୌଣସି ଲୋକଙ୍କର ଗୋଟାଏ ଆଦର୍ଶବାଦ ଥିଲେ ହେବା ପାଇଁ ଦୀର୍ଘକାଳ

ଲାଗେ; କାରଣ ନୂତନ ଭାବ ଧୀରେ ଧୀରେ ତାଙ୍କ ଭିତରେ ପ୍ରବେଶ କରାଇବାକୁ ପଡ଼େ—କେହି ସେମାନଙ୍କର ପୁରୁଣା ଚିନ୍ତା ଓ ଧାରଣା ଛାଡ଼ିବା ଲାଗି ଆଗ୍ରହ ଦେଖାନ୍ତି ନାହିଁ। ଅନେକ ସମୟରେ ଏପରି ଦେଖାଯାଏ ଯେ, ନୂତନ ଆଦର୍ଶବାଦ ସ୍ଥାପିତ ହେଲାବେଳକୁ ଏବଂ ଶେଷରେ ଲୋକେ ନୂତନ ଚିନ୍ତାଧାରା ଗ୍ରହଣ କଲାବେଳକୁ, ଏହି ଭାବଧାରା ସବୁ ଏକ ପ୍ରକାର ପୁରୁଣା ଯୁଗର ହୋଇଥାଏ । ମଜାର କଥା ହେଉଛି, ୧୮ଶ ଶତାବ୍ଦୀର ଫରାସୀ ଦାର୍ଶନିକମାନଙ୍କ ଚିନ୍ତାଧାରା ଇଉରୋପରେ ପ୍ରାକ୍‌ଶିଳ୍ପ ଯୁଗ ଅବସ୍ଥା ଉପରେ ଭିତ୍ତି କରିଥିଲା; ଅଥଚ ଠିକ୍ ସେତିକବେଳେ ଇଂଲଣ୍ଡରେ ଶିଳ୍ପ ବିପ୍ଳବ ଆରମ୍ଭ ହୋଇଥିଲା ଏବଂ ଏହା ଶିଳ୍ପ ଓ ଜୀବନକୁ ଏପରି ପରିବର୍ତ୍ତିନ କରୁଥାଏ ଯେ ବାସ୍ତବିକ ନୂତନ ଫରାସୀ ତଥ୍ୟମାନଙ୍କ ଭିତରୁ ଅଧିକାଂଶ ମୂଳୋତ୍ପାଟନ ହେବା ଆରମ୍ଭ ହେଲା । ପରେ ପ୍ରକୃତରେ ଶିଳ୍ପ ବିପ୍ଳବ ବୃଦ୍ଧି ପାଇଲା ଏବଂ ଏଥିରେ କ'ଣ ଘଟିବ, ଏକଥା ଫରାସୀ ଦାର୍ଶନିକମାନେ ଅନୁମାନ କରିପାରି ନଥିଲେ । ଅଥଚ ସେମାନଙ୍କର ସେହି ଭାବଧାରାକୁ ଭିତ୍ତିକରି ବହୁ ପରିମାଣରେ ଫରାସୀ ବିପ୍ଳବର ଆଦର୍ଶବାଦ ସ୍ଥାପିତ ହୋଇଥିଲା, ତାହା ବଡ଼ ଶିଳ୍ପର ଆବିର୍ଭାବ ସଙ୍ଗେ ସଙ୍ଗେ ଆଂଶିକ ରୂପେ ଅକାମୀ ହୋଇଯାଇଥିଲା ।

ସେ ଯାହାହେଉ ପଛକେ, ଫରାସୀ ଦାର୍ଶନିକମାନଙ୍କର ଏହି ଭାବ ଓ ତଥ୍ୟଗୁଡ଼ିକ ବିପ୍ଳବ ଉପରେ ଶକ୍ତିଶାଳୀ ପ୍ରଭାବ ଯେ ପକାଇଥିଲା, ତାହା ପରିଷ୍କାର ଜଣାପଡ଼ୁଛି । ଏଥିପୂର୍ବରୁ ଜନତାର ବିଦ୍ରୋହ ଓ ଆନ୍ଦୋଳନର ଅନେକ ଦୃଷ୍ଟାନ୍ତ ଥିଲା; ଏବେ ସଚେତନ ଜନତାର ଆନ୍ଦୋଳନ ବା ସଚେତନ ଭାବରେ ଚାଳିତ ଜନତାର ଆନ୍ଦୋଳନର ଅପୂର୍ବ ଦୃଷ୍ଟାନ୍ତ ଦେଖାଦେଲା । ସେଥିପାଇଁ ଫ୍ରାନ୍ସର ଏହି ବିରାଟ ବିପ୍ଳବର ଏତେ ଗୁରୁତ୍ୱ ।

ମୁଁ କହିଛି, ୧୭୧୫ରେ ନିଜର ଗୋସେଇଁବାପ ଚତୁର୍ଦ୍ଦଶ ଲୁଇଙ୍କ ପରେ ପଞ୍ଚଦଶ ଲୁଇ ରାଜା ହେଲେ ଓ ୫୯ ବର୍ଷ ରାଜତ୍ୱ କରିଥିଲେ । ସେ କୁଆଡ଼େ କହିଥିଲେ, 'ମୋ ପରେ ଭୀଷଣ ବନ୍ୟା' ହେବ ଏବଂ ସେହି ଅନୁସାରେ କାର୍ଯ୍ୟ କରିଥିଲେ । ଅନନ୍ତରେ ସେ ନିଜ ଦେଶକୁ ଅତଳ ଗର୍ଭରେ ନିକ୍ଷେପ କଲେ । ବ୍ରିଟିଶ ବିପ୍ଳବ ଓ ଇଂରେଜ ରାଜାର ମସ୍ତକ-ଛେଦନରୁ ସେ କିଛି ଶିକ୍ଷା କଲେ ନାହିଁ । ୧୭୭୪ରେ ତାଙ୍କ ପରେ ତାଙ୍କ ନାତି ଷୋଡ଼ଶ ଲୁଇ ରାଜା ହେଲେ । ସେ ବଡ଼ ନିର୍ବୋଧ ଓ ବୁଦ୍ଧିହୀନ ଥିଲେ । ତାଙ୍କ ସ୍ତ୍ରୀ ଅଷ୍ଟ୍ରିଆର ହାପସ୍‌ବର୍ଗ ସମ୍ରାଟର ଗୋଟିଏ ଭଉଣୀ । ନାମ ହେଉଛି ମେରି ଅଣ୍ଟୋନେଟ୍ । ସେ ମଧ୍ୟ ବଡ଼ ନିର୍ବୋଧ ଥିଲେ; କିନ୍ତୁ ତାଙ୍କର ଗୋଟାଏ ଜିଦ୍‌ଖୋର ପ୍ରବୃତ୍ତି ଥିଲା ଏବଂ ଷୋଡ଼ଶ ଲୁଇ ପୁରାପୂରି ତାଙ୍କ ହାତମୁଠାରେ ଥିଲେ । ଲୁଇ ଅପେକ୍ଷା "ରାଜାଙ୍କର ଦୈବୀ ଅଧିକାର" ଧାରଣା ତାଙ୍କଠାରେ ବେଶୀ ଥିଲା ଏବଂ ସେ ସାଧାରଣ ଲୋକଙ୍କୁ ଘୃଣା କରୁଥିଲେ । ସେ ସ୍ୱାମୀ ଓ ସ୍ତ୍ରୀ ଦୁଇଜଣ ରାଜଗାଦୀକୁ ଲୋକେ ଘୃଣା କରିବା ଭଳି ପ୍ରତ୍ୟେକ କାର୍ଯ୍ୟ କଲେ । ବିପ୍ଳବର ଆରମ୍ଭ ବେଳେ ସୁଦ୍ଧା ରାଜପଦ ସମ୍ବନ୍ଧରେ ଫରାସୀ ଲୋକଙ୍କର କିଛି ପରିଷ୍କାର ଧାରଣା ନଥିଲା; କିନ୍ତୁ ଲୁଇ ଓ ଆଣ୍ଟୋନେଟ୍ ତାଙ୍କର କାର୍ଯ୍ୟ ଓ ବୋକାମି ଯୋଗୁଁ

ପ୍ରଜାତନ୍ତ୍ର ସ୍ଥାପନ ଅନିବାର୍ଯ୍ୟ କରିଦେଲେ । ତାଙ୍କଠାରୁ ବିଜ୍ଞ ଲୋକେ କି ଆଉ କିଛି କରନ୍ତେ ନାହିଁ । ଏପରିକି ୧୯୧୭ ମସିହାରେ ରୁଷ ବିପ୍ଳବର ଆରମ୍ଭ ପୂର୍ବରୁ ଜାର ଓ ଜାରିନା (ରାଣୀ) ସେହିପରି ନିର୍ବୋଧପଣିଆ ଦେଖାଇଥିଲେ । ଆଶ୍ଚର୍ଯ୍ୟ କଥା, ଯେତେ ସଙ୍କଟ ବଢ଼େ, ଏମାନେ ବେଶି ନିର୍ବୋଧ ପାଲଟନ୍ତି ଏବଂ ଏହିରୂପେ ନିଜର ଧ୍ୱଂସସାଧନ କରନ୍ତି । ଗୋଟିଏ ପ୍ରସିଦ୍ଧ ଲାଟିନ୍ କଥା ଅଛି, ତାହା ଏଠି ଠିକ୍ ଖାଟିବ । ତାହା ହେଉଛି, ଭଗବାନ ଯାହାଙ୍କୁ ଧ୍ୱଂସ କରିବାକୁ ଇଚ୍ଛା କରନ୍ତି, ତାଙ୍କୁ ପ୍ରଥମେ ପାଗଳ କରି ଦିଅନ୍ତି । ଠିକ୍ ସେହିପରି ସଂସ୍କୃତରେ ଲେଖାଅଛି—"ବିନାଶ କାଳେ ବିପରୀତ ବୁଦ୍ଧି" ।

ରାଜା ଓ ଏକଚ୍ଛତ୍ରାଧିପତ୍ୟର ଗୋଟିଏ ପ୍ରଧାନ ଅଙ୍ଗ ହେଉଛି ସାମରିକ ଗୌରବ । ନିଜ ଦେଶରେ କିଛି ଗଣ୍ଡଗୋଳର ସୂଚନା ମିଳିଲେ, ରାଜା କିମ୍ବା ଶାସକଗୋଷ୍ଠୀ ଲୋକଙ୍କ ମନ ଭୁଲେଇବା ପାଇଁ ଅନ୍ୟ ଦେଶରେ ସୈନ୍ୟଚାଳନା ପ୍ରତି ଆକୃଷ୍ଟ ହୁଅନ୍ତି; କିନ୍ତୁ ଏହି ସାମରିକ ପ୍ରଚେଷ୍ଟାର ଫଳ ଫ୍ରାନ୍ସରେ ଖରାପ ହୋଇଥିଲା । ସାତବର୍ଷିଆ ଯୁଦ୍ଧରେ ଫ୍ରାନ୍ସ ପରାଜିତ ହେଲା ଏବଂ ଏହା ରାଜାଙ୍କ ପକ୍ଷେ ଏକ ଆଘାତ ହେଲା । ବୁଦ୍ଧିଶୂନ୍ୟ ଭାବ କ୍ରମେ ଅଧିକରୁ ଅଧିକତର ହେଲା । ଆମେରିକାର ସ୍ୱାଧୀନତା ଯୁଦ୍ଧରେ ଫ୍ରାନ୍ସ ଯୋଗ ଦେବାରେ ଅଧିକ ଖର୍ଚ୍ଚ ହେଲା । କେଉଁଠୁ ଏ ଧନ ଆସିବ ? ସାମନ୍ତ ଓ ପୁରୋହିତମାନେ ସୁବିଧାଭୋଗୀ ଶ୍ରେଣୀ ଏବଂ ଅଧିକାଂଶ ଟିକସରୁ ସେମାନେ କ୍ଷାନ୍ତ ହେଉଥିଲେ ଓ ସେମାନଙ୍କର ନିଜ ସୁବିଧା ଛାଡ଼ିବାର ଆଦୌ ଇଚ୍ଛା ନ ଥିଲା । ଅଥଚ କେବଳ କରଜ ଶୁଝିବା ପାଇଁ ନୁହେଁ, ରାଜଦରବାରର ଅପବ୍ୟୟ ପାଇଁ ଅର୍ଥ ଉଠାଇବାକୁ ହେବ । ଜନତା ଓ ସାଧାରଣ ଲୋକଙ୍କ କଥା କିଏ ପଚାରେ ? ମୁଁ ଏଠି ଫରାସୀ ବିପ୍ଳବ ବିଷୟରେ ଇଂରେଜ ଲେଖକ କାରଲାଇଲଙ୍କ ବର୍ଣ୍ଣନା ଉଦ୍ଧାର କରିବି । ତାଙ୍କର ଲେଖନଭଙ୍ଗୀ ଗୋଟିଏ ବିଶେଷ ପ୍ରକାରର; କିନ୍ତୁ ତାଙ୍କର ଲେଖା ଅନେକ ସମୟରେ ବଡ଼ ଶକ୍ତିଶାଳୀ । ସେ କହିଛନ୍ତି—"ଶ୍ରମିକ ଲୋକଙ୍କ କଥା ତ ପଚାରିବାର ନୁହେଁ । ଅଭାଗା ! ସେମାନଙ୍କ ସଂଖ୍ୟା ପ୍ରାୟ ୨୦।୨୫ ନିୟୁତ ହେବ । ଏ ସମସ୍ତଙ୍କୁ ଆମେ ଏକାଠି କରି ଅତି ଅଜଣା ଅନ୍ଧାରୁଆ ଢଙ୍ଗରେ କହୁଁ 'ଜନସାଧାରଣ' । ପ୍ରକୃତରେ ଜନତା; କିନ୍ତୁ ଆଶ୍ଚର୍ଯ୍ୟ କଥା ହେଉଛି ଯେ ଯଦି ତମେ ନିଜର ଚିନ୍ତାକୁ ଅଗ୍ରସର କରି ତାହା ସହିତ ସମଗ୍ର ଫ୍ରାନ୍ସରେ ଏମାନଙ୍କ କ୍ଷେତକୁ, ଏମାନଙ୍କ କୁଡ଼ିଆକୁ ଯିବ, ତେବେ ଅଲଗା ଅଲଗା ବ୍ୟକ୍ତିବିଶେଷଙ୍କୁ ନେଇ ଏହି ଜନତା ଗଠିତ ବୋଲି ତମକୁ ମାଲୁମ ହେବ । ଏହି ପ୍ରତ୍ୟେକ ବ୍ୟକ୍ତିବିଶେଷର ପୃଥକ୍ ପୃଥକ୍ ହୃଦୟ ରହିଛି । ପୂର୍ବ କଷ୍ଟ ଭରିଛି, ତା'ର ଶରୀର ନିଜ ଚମଡ଼ାରେ ଘୋଡ଼ାଇ ହୋଇ ରହିଛି ଏବଂ ତମେ ତାକୁ ଟାଣିବାକୁ ଚେଷ୍ଟା କଲେ ରକ୍ତ ବାହାରିବ" ।

ଏହି ବର୍ଣ୍ଣନା ଖାଲି ୧୭୮୯ର ଫ୍ରାନ୍ସ ନାହିଁକି, ୧୯୩୨ ମସିହାର ଭାରତ ପ୍ରତି ମଧ୍ୟ ପ୍ରଯୁଜ୍ୟ । ଆମେ କ'ଣ ଭାରତର ଲକ୍ଷ ଲକ୍ଷ କୃଷକ ଓ ଶ୍ରମିକଙ୍କୁ ହେଳା ଦେଖାଇ 'ଜନସାଧାରଣ'' ଅଭାଗା ଅଦରକାରୀ ପଶୁ ପରି ଜ୍ଞାନ କରୁ ନାହୁଁକି ? ଅନେକ କାଳ

ହେଲ ସେମାନେ ଗୋଟାଏ ପଶୁ ବୋଝପରି ଅଛନ୍ତି ଏବଂ ଏବେ ମଧ୍ୟ ରହିଛନ୍ତି । ଆମେ ତାଙ୍କୁ "ସହାନୁଭୂତି" ଦେଖାଇ ଏବଂ ତାଙ୍କର ମଙ୍ଗଳ କରିବୁ ବୋଲି ଅନୁଗ୍ରହ ଦେଖାଇ କହୁ । ସେମାନେ ଆମପରି ବ୍ୟକ୍ତିବିଶେଷ ଓ ମାନବ, ଏ କଥା ପ୍ରାୟ ଆମେ ଚିନ୍ତା କରୁନା । ସ୍ମରଣ ରଖିବା ଉଚିତ ଯେ, ସେମାନେ ତାଙ୍କ ମାଟି କୁଡ଼ିଆରେ ଅଲଗା ହୋଇ ଜୀବନଯାପନ କରନ୍ତି, କ୍ଷୁଧା ଅନୁଭବ କରନ୍ତି ଏବଂ ଆମ ସମସ୍ତଙ୍କ ପରି ଅଣ୍ଟା ଓ ଯନ୍ତ୍ରଣା ବୋଧ କରନ୍ତି । ଆଇନ ଶିକ୍ଷା ପାଇ ଆମର ଅନେକ ରାଜନୀତିଜ୍ଞ ଶାସନବିଧାନ ଆଦି ବିଷୟରେ କହନ୍ତି ଓ ଚିନ୍ତା କରନ୍ତି; କିନ୍ତୁ ଯେଉଁ ମଣିଷଙ୍କ ପାଇଁ ଏହି ବିଧାନ ଓ ଆଇନ ସବୁ ପ୍ରଣୟନ ହୁଏ, ସେମାନଙ୍କୁ ଭୁଲିଯାଆନ୍ତି । ମଫସଲର ଏହି ମାଟିକୁଡ଼ିଆ ଓ ସହରର ମଇଳା ଅନ୍ଧାରୁଆ ଘରେ ବାସ କରୁଥିବା ଲୋକଙ୍କ ପକ୍ଷରେ ରାଜନୀତି ହେଉଛି କ୍ଷୁଧା ନିବାରଣ ପାଇଁ ଖାଦ୍ୟ, ଲୁଗାପଟା ଓ ଆଶ୍ରୟସ୍ଥଳୀ ।

ଷୋଡ଼ଶ ଲୁଇଙ୍କ ଅମଳରେ ଫ୍ରାନ୍ସର ଅବସ୍ଥା ଏପରି ଥିଲା । ତାଙ୍କ ରାଜୁତି ଆରମ୍ଭରେ ଖାଦ୍ୟ ଦଙ୍ଗାମାନ ହେଲା । ଅନେକ ବର୍ଷ ପର୍ଯ୍ୟନ୍ତ ଏହା ଚାଲିଲା । ମଝିରେ ଟିକିଏ ଅମିଗଲା; ପୁଣି ଖୁବ୍ ବଡ଼ କୃଷକ ବିଦ୍ରୋହ ହେଲା । ଉଇନ୍ଥାରେ ଖାଦ୍ୟଦଙ୍ଗାରେ ସେଠା ଗଭର୍ଣ୍ଣରର ଅର୍ଦ୍ଧାହାରୀ ଲୋକଙ୍କୁ କହିଥିଲା, "ଘାସ ଗଜା ହେଲାଣି, ବିଲକୁ ଯାଅ ଏବଂ ତାହା ଖାଇ ବଞ୍ଚ ।" ଅସଂଖ୍ୟ ଲୋକ ପେଷାଦାର ଭିକାରୀ ହୋଇଗଲେ । ୧୭୭୭ରେ ସରକାରୀ ହିସାବରେ ଘୋଷଣା କରାଯାଇଥିଲା ଯେ, ଫ୍ରାନ୍ସରେ ୧୧ ଲକ୍ଷ ଭିକାରୀ ଅଛନ୍ତି । ଆମେ ଏହି ଦାରିଦ୍ର୍ୟ ଓ ଦୁର୍ଦ୍ଦଶା କଥା ଆଲୋଚନା କଲାବେଳେ ଭାରତ ସର୍ବଦା ଆମ ମନରେ ଉଠିଆସେ ।

କୃଷକମାନେ ଯେ କେବଳ ଖାଦ୍ୟ ପାଇଁ ବିକଳ ହେଉଥିଲେ, ତାହା ନୁହେଁ; ଜମି ବି ଚାହୁଁଥିଲେ । ସାମନ୍ତପ୍ରଥାରେ ସାମନ୍ତମାନେ ଭୂମିର ମାଲିକ ଥିଲେ ଏବଂ ଆୟ ଫସଲର ଅଧିକାଂଶ ଭାଗ ସେମାନଙ୍କ ପାଖକୁ ଯାଉଥିଲା । କୃଷକମାନଙ୍କର କୌଣସି ପରିଷ୍କାର ଧାରଣା ନ ଥିଲା, ସ୍ପଷ୍ଟ ଲକ୍ଷ୍ୟ ନ ଥିଲା; କିନ୍ତୁ ସେମାନେ ଜମି ମାଲିକ ହେବାକୁ ଚାହୁଁଥିଲେ ଏବଂ ଯେଉଁ ସାମନ୍ତବାଦୀ ପ୍ରଥା ତାଙ୍କୁ ପେଷୁଥିଲା, ତାହାକୁ ଘୃଣା କରୁଥିଲେ । ସାମନ୍ତମାନଙ୍କୁ ଘୃଣା କରୁଥିଲେ ଏବଂ ପୁରୋହିତ ଓ ଚଳବକୁ ବାଧୁଥିବା (ଭାରତ କଥା ଭାବ !) ଲୁଣ ଟିକସ ବା 'ଗାବେଲ'କୁ ମଧ୍ୟ ଘୃଣା କରୁଥିଲେ ।

କୃଷକଙ୍କ ଅବସ୍ଥା ଏପରି ଥିବ; ଅଥଚ ରାଜା ଓ ରାଣୀ ଟଙ୍କା ଦାବୀ କରୁଥିଲେ । ସରକାର ପାଖରେ ଖର୍ଚ୍ଚ କରିବାକୁ ଧନ ନଥିଲା ଓ କରଜ ବଢ଼ିଲା । ମେରି ଆଣ୍ଟୋନେଟ୍‌ଙ୍କ ଡାକ ନାମ ହେଲା 'ଶ୍ରୀମତୀ ଅଭାବ ଦେବୀ' । ଅଧିକା ଧନ ଉଠାଇବାର କୌଣସି ରାସ୍ତା ନଥାଏ । ଶେଷକୁ ବୁଦ୍ଧି ନପାଇ ଷୋଡ଼ଶ ଲୁଇ ୧୭୮୯ ମେ ମାସରେ ଷ୍ଟେଟ୍‌ସ-ଜେନେରାଲ୍ ବୈଠକ ଡାକଲେ । ସାମନ୍ତ, ପୁରୋହିତ ଓ ସାଧାରଣ ଏହି ତିନ ଶ୍ରେଣୀର ପ୍ରତିନିଧି

ଏଥିରେ ଆଆନ୍ତି । ଏହାକୁ ସେ ରାଜ୍ୟର ଇଲାକା ବୋଲି କୁହାଯାଉଥାଏ । ଏହାର ଗଠନ ବ୍ରିଟିଶ ପାର୍ଲିମେଣ୍ଟ ପରି—ଲର୍ଡ଼ ସଭାରେ ସାମନ୍ତ ଓ ପାଦ୍ରୀ ଏବଂ ଅନ୍ୟଟି କମନ୍ସ ସଭା । ଏହି ଦୁଇଟି ଭିତରେ ଅନେକ ପାର୍ଥକ୍ୟ ଥିଲା । କେତେ ଶହ ବର୍ଷ ହେଲା ଅନ୍ତେ ଅଧିକେ ନିୟମିତରୂପେ ବ୍ରିଟିଶ ପାର୍ଲିମେଣ୍ଟର ବୈଠକ ହୋଇଆସୁଛି ଏବଂ ସେମାନଙ୍କର କାର୍ଯ୍ୟ ଚଳାଇବା ପାଇଁ କେତେକ ସୁନିର୍ଦ୍ଦିଷ୍ଟ ପ୍ରଥା, ନିୟମ ଓ ପନ୍ଥା ରହି ଆସିଲାଣି । ଏହି ଷ୍ଟେଟ୍ସ-ଜେନେରାଲର ଖୁବ୍ କମ୍ ବୈଠକ ହେଉଥିଲା ଏବଂ କୌଣସି ପ୍ରଥା ନ ଥିଲା । ଦୁଇଟିରେ ଉଚ୍ଚ ଶ୍ରେଣୀର ପ୍ରତିନିଧି ଥିଲେ । ଷ୍ଟେଟ୍ସ-ଜେନେରାଲର ସାଧାରଣ (କମନ୍ସ) ସଭାରେ ବ୍ରିଟିଶ ପାର୍ଲିମେଣ୍ଟ କମନ୍ସ ସଭା ଅପେକ୍ଷା ଅଧିକ ଉଚ୍ଚଶ୍ରେଣୀର ପ୍ରତିନିଧି ଥିଲେ । କୃଷକମାନଙ୍କର ପ୍ରତିନିଧି କେଉଁଥିରେ ନଥିଲେ ।

୧୭୮୯ ମସିହା ମେ ୪ ତାରିଖରେ ଭର୍ସେଇଠାରେ ରାଜା ଷ୍ଟେଟ୍ସ-ଜେନେରାଲ ଉଦ୍‌ଘାଟନ କଲେ; କିନ୍ତୁ ରାଜା କେବେ ଏହି ତିନିଟିଯାକକୁ ଏକାଠି ନ ଡାକିଥିବାରୁ ପ୍ରଥମେ ଦୁଃଖିତ ହେଲେ । ତୃତୀୟ ଦଳ ଅର୍ଥାତ୍ କମନ୍ସ ବା ମଧ୍ୟବିତ୍ତ ଶ୍ରେଣୀ ତାନ୍ତି କଡ଼ମଡ଼ କରିବାକୁ ଲାଗିଲେ ଏବଂ ତାଙ୍କ ସମ୍ମତି ବିନା କୌଣସି ଟିକସ ବସିପାରିବ ନାହିଁ ବୋଲି ଜିଦ୍ ଧରିଲେ । ଇଂଲଣ୍ଡରେ କମନ୍ସ ସଭା ଏ ଅଧିକାର ହାସଲ କରିଥାଏ; ସେମାନଙ୍କ ଆଗରେ ସେ ଦୃଷ୍ଟାନ୍ତ ଥାଏ । ନିକଟରେ ହୋଇଥିବା ଆମେରିକା ଉଦାହରଣ ମଧ୍ୟ ତାଙ୍କ ସାମନାରେ ଥାଏ । ସେମାନେ ଭୁଲକ୍ରମେ ମନେ କରୁଥିଲେ ଯେ, ଇଂଲଣ୍ଡ ଗୋଟିଏ ସ୍ୱାଧୀନ ଦେଶ । ବାସ୍ତବିକ ଏହା ଏକ ଭ୍ରାନ୍ତି, କାରଣ ଇଂଲଣ୍ଡରେ ଧନୀ ଓ ଜମିଦାର ଶ୍ରେଣୀଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ଓ ପ୍ରାଧାନ୍ୟ ଥିଲା । ଅତି ସୀମାବଦ୍ଧ ଭୋଟାଧିକାର ଯୋଗୁଁ ପାର୍ଲିମେଣ୍ଟରେ ସେମାନଙ୍କର ଏକଚାଟିଆ ଅଧିକାର ଥିଲା ।

ଯାହାହେଉ, ଥାର୍ଡ ଇଷ୍ଟେଟ ବା କମନ୍ସ ହଲ ଯାହା କଲା, ରାଜା ଲୁଇଙ୍କ ପକ୍ଷରେ ଏହା ଅତିମାତ୍ରା ପରି ବୋଧ ହେଲା । ସେ ସେମାନଙ୍କୁ ସଭାଗୃହରୁ ବାହାର କରିଦେଲେ । ଡେପୁଟିମାନଙ୍କର ଯିବାର ଇଚ୍ଛା ନ ଥିଲା । ସେମାନେ ନିକଟରେ ଥିବା ଗୋଟିଏ ଟେନିସ୍ ପଡ଼ିଆରେ ତତ୍‌କ୍ଷଣାତ୍ ଏକାଠି ହେଲେ ଏବଂ ଗୋଟାଏ ବିଧାନ ପ୍ରଣୟନ ନ କରିବା ପର୍ଯ୍ୟନ୍ତ ନ ଭାଙ୍ଗିବା ଲାଗି ଶପଥ କଲେ । ଏହାକୁ 'ଟେନିସ୍ ପଡ଼ିଆର ଶପଥ' ବୋଲି କହନ୍ତି । ସଙ୍କଟ ବେଳ ପଡ଼ିଥିବାରୁ ରାଜା ବଳପ୍ରୟୋଗର ଚେଷ୍ଟା କଲେ; ତାଙ୍କ ନିଜ ସୈନ୍ୟମାନେ ହୁକୁମ ମାନିବାକୁ ମନା କଲେ । ସରକାରର ପ୍ରଧାନ ସହାୟକ ହେଉଛି ସୈନ୍ୟ । ବିପ୍ଳବ ବେଳେ ଯେତେବେଳେ ସୈନ୍ୟମାନେ ତାଙ୍କ ନିଜ ଭାଇ, କୁଟୁମ୍ବ, ଜନତାଙ୍କ ଉପରେ ଗୁଳି କରିବାକୁ ଅସ୍ୱୀକାର କରନ୍ତି, ସେତେବେଳେ ପ୍ରକୃତ ସଙ୍କଟ ବେଳ ପଡ଼େ । ଲୁଇ ଉପରେ ଆତ୍ମସମର୍ପଣ କଲେ ଏବଂ ତା'ପରେ ଅତି ନିର୍ବୋଧ ଭାବରେ ନିଜ ଲୋକଙ୍କୁ ଗୁଳି କରିବା ନିମନ୍ତେ ବିଦେଶୀ ସେନା ଆଣିବା ସକାଶେ ଷଡ଼ଯନ୍ତ୍ର କଲେ । ଏହା ଲୋକଙ୍କ

ପକ୍ଷରେ ଅସହ୍ୟ ହେଲା ଏବଂ ୧୭୮୯ ମସିହା ସେହି ସ୍ମରଣୀୟ ଜୁଲାଇ ୧୪ ତାରିଖରେ ସେମାନେ ପ୍ୟାରିସ୍‌ରେ ବିଦ୍ରୋହ କରିଉଠିଲେ, ବାଷ୍ଟାଇଲ୍ * ପୁରୁଣା କଏଦୀଖାନା ଦଖଲ କଲେ ଏବଂ ବନ୍ଦୀମାନଙ୍କୁ ଖଲାସ କରି ଆଣିଲେ ।

ବାଷ୍ଟାଇଲର ପତନ ଇତିହାସରେ ଗୋଟାଏ ବିରାଟ ଘଟନା । ଏଇଥିରୁ ହିଁ ବିପ୍ଳବ ଆରମ୍ଭ ହେଲା, ଦେଶସାରା ଜନଜାଗରଣର ଏହା ହିଁ ସୂଚନା; ଏହାର ଅର୍ଥ ଫ୍ରାନ୍ସର ପୁରାତନ ସମାଜ, ସାମନ୍ତବାଦ, ବିରାଟ ରାଜକୀୟ କାରଖାନା ଓ ଅନ୍ୟ ସମସ୍ତ ସୁବିଧାର ଶେଷ ହେବା । ଇଉରୋପର ରାଜା ଓ ସମ୍ରାଟ ସମସ୍ତଙ୍କ ପକ୍ଷରେ ଏକ ଭୀଷଣ ଓ ଭୀତି-ପ୍ରଦର୍ଶକ ସୂଚନା । ବିଳାସଭୋଗୀ ଫ୍ରାନ୍ସ ଏବେ ଗୋଟାଏ ନୂଆ କଥା ଦେଖାଇଲା ଏବଂ ଇଉରୋପ ଚକିତ ହୋଇଗଲା । କେତେକ ଭୟ ଓ ସଶଙ୍କ ଦୃଷ୍ଟିରେ ଏହି କାର୍ଯ୍ୟକୁ ଲକ୍ଷ୍ୟ କଲେ ଏବଂ ଅନେକଙ୍କ ମନରେ ଆଶାର ସଞ୍ଚାର ହେଲା ଓ ସେମାନେ ଏହାକୁ ଶୁଭଦିନର ପ୍ରାରମ୍ଭ ବୋଲି ବିଚାରିଲେ । ଜୁଲାଇ ୧୪ ତାରିଖ ଆଜିସୁଦ୍ଧା ଫ୍ରାନ୍ସ ଜାତୀୟ ପର୍ବ ରୂପେ ପରିଗଣିତ ହୋଇ ଆସିଛି ଏବଂ ପ୍ରତ୍ୟେକ ବର୍ଷ ସମସ୍ତ ଦେଶରେ ଏହା ପାଳିତ ହୁଏ ।

ଜୁଲାଇ ୧୪ ତାରିଖରେ ପ୍ୟାରିସ୍‌ର ଜନତାଙ୍କ ହାତରେ ବାଷ୍ଟାଇଲ୍ ପଡ଼ିଲା । ଅଥଚ ୧୩ ତାରିଖ ସନ୍ଧ୍ୟାରେ ଭର୍ସେଇରେ ଗୋଟିଏ ରାଜକୀୟ ମଉଜ ମଜଲିସ୍ ହେଉଥାଏ—ଶାସକ-ଗୋଷ୍ଠୀ ପ୍ରାୟ ଏପରି ଅନ୍ଧ ହୋଇଯାଆନ୍ତି । ଗୀତ, ନାଚ ଚାଲିଥାଏ, ମଦ୍ୟପାନ ହେଉଥାଏ, ବିଦ୍ରୋହୀ ପ୍ୟାରିସ୍‌ରେ ବିଜୟଲାଭ କରିବା ଆଶାରେ ରାଜାରାଣୀ ଏଥିରେ ମଗ୍ନ ଥାଆନ୍ତି । ଇଉରୋପ ରାଜତନ୍ତ୍ରର ଧାରଣା ଯେପରି ଅଲୌକିକ ଥିଲା ଭାବିଲେ ବିସ୍ମୟ ଲାଗେ । ଆଧୁନିକ ଯୁଗରେ ଆମେ ପ୍ରଜାତନ୍ତ୍ରରେ ଚାଲିଲୁଣି ଏବଂ ରାଜାମାନଙ୍କୁ ଆଉ ଗୁରୁତ୍ୱ ଦେଉନାହୁଁ । ପୃଥିବୀରେ ଯେ କେତୋଟି ରାଜା ଅଛନ୍ତି, ସେମାନଙ୍କ ଉପରେ କାଳେ ବିପଦ ଆସିପାରେ, ଏଥିପାଇଁ ବଡ଼ ସତର୍କରେ ସେମାନେ ଚାଲନ୍ତି । ଏହା ସତ୍ତ୍ୱେ ଅନେକ ଲୋକ ରାଜତନ୍ତ୍ରର ବିରୋଧୀ; କାରଣ ଏହାଦ୍ୱାରା ଶ୍ରେଣୀବିଭାଗ କାଏମ ରହେ ଏବଂ ଗୋଟାଏ ବିଚ୍ଛିନ୍ନ-ଭାବ ସମାଜରୁ ଅଲଗା ରହିବା ଭାବ ବୃଦ୍ଧିପାଏ । କିନ୍ତୁ ୧୮ଶ ଶତାବ୍ଦୀର ଇଉରୋପରେ ଏପରି ନ ଥିଲା । ସେ କାଳର ଲୋକଙ୍କ ପକ୍ଷରେ ରାଜା ନ ଥାଇ କୌଣସି ଦେଶର କଳ୍ପନା କରିବା କଷ୍ଟକର ଥିଲା ବୋଧହୁଏ । ତେଣୁ ଲୁଇଙ୍କ ନିର୍ବୋଧତା ଏବଂ ବେଖାତିର ଚେଷ୍ଟା ସତ୍ତ୍ୱେ ତାଙ୍କୁ ଗାଦିଚ୍ୟୁତ କରିବା କଥା କେହି ଉଠାଉ ନଥିଲେ । ପ୍ରାୟ ଆଉରି ଦୁଇ ବର୍ଷ ପର୍ଯ୍ୟନ୍ତ ସେମାନେ ତାଙ୍କୁ ଓ ତାଙ୍କର ଷଡ଼ଯନ୍ତ୍ର ସବୁ ବରଦାସ୍ତ କଲେ ଏବଂ ଯେତେବେଳେ ସେ ପଳାଇଯିବାର ଉଦ୍ୟମ କରି ଗିରଫ ହେଲେ, ସେତେବେଳେ ଯାଇ ରାଜା ନ ରଖି ଶାସନ ଚଳାଇବା ଲାଗି ଫ୍ରାନ୍ସ ସ୍ଥିର କଲା ।

* ବାଷ୍ଟାଇଲ୍—ଫ୍ରାନ୍ସର ପ୍ୟାରିସ୍ ସହରସ୍ଥ ଏକ ବଡ଼ ଜେଲ୍; ଏଠାରେ ରାଜବନ୍ଦୀଙ୍କୁ ରଖାଯାଇ କଷ୍ଟ ଦିଆଯାଉଥିଲା ।

ମାତ୍ର ସେ କଥା ପରେ ହେଲା । ଏଥି ଭିତରେ ସେହି ଷ୍ଟେଟ୍ସ-ଜେନେରାଲ୍ ଜାତୀୟ ବ୍ୟବସ୍ଥାପକ ହେଲା ଓ ରାଜା ଏକ ବିଧାନତନ୍ତ୍ରୀୟ ବା ସୀମାବଦ୍ଧ ଶାସକରେ ପରିଣତ ହେଲେ; ଅର୍ଥାତ୍ ଆସେମ୍ବ୍ଲି ଯାହା ବିଧାନ କରିବ, ରାଜାଙ୍କୁ ତାହା କରିବାକୁ ପଡ଼ୁଥିଲା; କିନ୍ତୁ ସେ ଏହାକୁ ଘୃଣା କଲେ ଏବଂ ମେରି ଆଣ୍ଟୋନେଟ୍ ତ ଆହୁରି ବେଶି ଘୃଣା କଲେ । ପାରିସ୍‌ର ଲୋକେ ତାଙ୍କୁ ଜମାରୁ ଭଲ ପାଉ ନ ଥିଲେ ଏବଂ ସେମାନେ ନାନାପ୍ରକାର ଷଡ଼ଯନ୍ତ୍ର କରୁଛନ୍ତି ବୋଲି ତାଙ୍କୁ ସନ୍ଦେହ କଲେ । ଭର୍ସେଇରେ ସେତେବେଳେ ରାଜା ରାଣୀ ଦରବାର କରୁଥାଆନ୍ତି; ଏହା ପାରିସ୍‌ଠାରୁ ଦୂର; ତେଣୁ ତାଙ୍କ କାର୍ଯ୍ୟରେ ଲୋକେ ନଜର ରଖିବା କଷ୍ଟକର ଥିଲା । ନାନା ଗପ ଏବଂ ଭର୍ସେଇରେ ଖୁବ୍ ଭୋଜ ଓ ବିଳାସ ହେଉଥିବାର ଜନରବ ଶୁଣି ପାରିସ୍‌ର କ୍ଷୁଧିତ ଜନତା ଉତ୍ତେଜିତ ହୋଇଗଲେ । ଗୋଟାଏ ପ୍ରକାର ଅଦ୍ଭୁତ ଶୋଭାଯାତ୍ରାରେ ରାଜା ଓ ରାଣୀଙ୍କୁ ଟୁଇଲେରିସ୍ ନାମକ ପାରିସ୍‌ର ଏକ ସ୍ଥାନକୁ ନେଇ ଜେଲ ଦିଆହେଲା ।

ପର ଚିଠିରେ ମୁଁ ସେହି ବିପ୍ଳବ କଥା କହିବି ।

## ୧୦୧ : ଫରାସୀ ବିପ୍ଳବ

ଅକ୍ଟୋବର ୧୦, ୧୯୩୨

ଫରାସୀ ବିପ୍ଳବ ସମ୍ବନ୍ଧରେ ଲେଖିବା ପାଇଁ ମୋତେ ଟିକିଏ ଅସୁବିଧା ପଡ଼ୁଛି । ବିଷୟବସ୍ତୁର ଅଭାବ ଯୋଗୁଁ ନୁହେଁ, ତାହାର ପ୍ରାଚୁର୍ଯ୍ୟ ହେତୁ । ଏହି ବିପ୍ଳବ ଗୋଟାଏ ଅଦ୍ଭୁତ ଏବଂ ନିତ୍ୟ ପରିବର୍ତ୍ତନଶୀଳ ନାଟକ, ଅଲୌକିକ ଘଟଣାରେ ପରିପୂର୍ଣ୍ଣ, ଏହା ଏବେ ସୁଦ୍ଧା ଆମକୁ ମୁଗ୍ଧ କରେ, ଭୟ ଦର୍ଶାଏ ଓ ଶିହରଣ ଆଣିଥାଏ । ଅତି ନିବିଡ଼ ଓ ଗୁପ୍ତ ଆବାସ ଭିତ୍ତିରେ ରାଜା ଓ ରାଜମାତଙ୍କମାନଙ୍କର ରାଜନୀତି ନିବଦ୍ଧ ଥାଏ ଏବଂ ଗୋଟାଏ ରହସ୍ୟ ଜାଲ ଦ୍ୱାରା ଆବୃତ ହୋଇଥାଏ । ଗୋଟାଏ ଅଦ୍ୟକ୍ତ ଆବରଣ ପଛରେ ବହୁ ପାପ ଘୋଡ଼ାଇ ହୋଇଥାଏ ଏବଂ ବିରୋଧୀ ଆକାଂକ୍ଷା ଓ ଲାଳସାର ସଂଘାତକୁ ଆଡ଼ମ୍ବରପୂର୍ଣ୍ଣ ଭାଷାରେ ଲୁଚାଇ ଦିଆଯାଏ । ଏପରିକି ଏହି ସଂଘର୍ଷ ହେତୁ ଯୁଦ୍ଧ ଆରମ୍ଭ ହୋଇଗଲେ ଏବଂ ଏହି ଲୋଭ ଓ ଆକାଂକ୍ଷା ହେତୁ ବହୁସଂଖ୍ୟକ ଯୁବକଙ୍କୁ ମୃତ୍ୟୁର କରାଳ ଗ୍ରାସରେ ପଡ଼ିବାକୁ ହେଲେ ସୁଦ୍ଧା ଏପରି କୌଣସି ନୀଚ ମତଲବ ଥିବା କଥା ଶୁଣାଇ ଆମର କର୍ଣ୍ଣ ଦୂଷିତ କରାଯାଏ ନାହିଁ । ଏହା ପରିବର୍ତ୍ତେ ଉଦାର ଆଦର୍ଶ ଓ ମହତ୍ ଉଦ୍ଦେଶ୍ୟ କଥା ଆମ ଆଗରେ ରଖାଯାଏ ଏବଂ ଏଥିଲାଗି ଚରମ ତ୍ୟାଗ ଲୋଡ଼ା ବୋଲି କୁହାଯାଏ ।

କିନ୍ତୁ ବିପ୍ଳବ ଏହାଠାରୁ ଭିନ୍ନ କଥା । ଏହା କ୍ଷେତ, ଗଳି ଓ ବଜାରରୁ ଜାତ ହୁଏ ଏବଂ ଏହାର ପନ୍ଥା ବଡ଼ କର୍କଶ ଓ କଠିନ । ଯେଉଁ ଲୋକ ଏହା ଆରମ୍ଭ କରନ୍ତି, ସେମାନଙ୍କର ରାଜା ଓ ରାଜନୀତିଜ୍ଞଙ୍କ ପରି ଶିକ୍ଷା ପାଇବାର ସୁଯୋଗ ନ ଥାଏ । ସେମାନଙ୍କର ଭାଷା କିଛି ଆଡ଼ମ୍ବରପୂର୍ଣ୍ଣ ଓ ରାଜକୀୟ ନୁହେଁ—ଏଥିରେ ଅସଂଖ୍ୟ ଖଳ ଓ ମନ୍ଦ ଅଭିଳାଷ ଲୁଚି ନ ଥାଏ । ଏଥିରେ କିଛି ରହସ୍ୟ ଜାଲ ନ ଥାଏ, ତାଙ୍କ ମନର ଭାବ ଘୋଡ଼ାଇବା ପାଇଁ କିଛି ଆବରଣ ନ ଥାଏ, ଏପରିକି ସେମାନଙ୍କ ଦେହ ଘୋଡ଼ାଇବା ଲାଗି ଯଥେଷ୍ଟ ଲୁଗାପଟା ତାଙ୍କ ପାଖରେ ନ ଥାଏ । ବିପ୍ଳବର ରାଜନୀତି ରାଜା ବା ପେଶାଦାର ରାଜନୀତିଜ୍ଞଙ୍କ ଖେଳ ହୋଇ ରହିପାରେ ନା । ବାସ୍ତବତା ଯେଉଁ ଏଗୁଡ଼ିକ ଆରମ୍ଭ ହୁଏ ଏବଂ ଏହା ପଶ୍ଚାତରେ ଥାଏ ନିରାଟ ମନୁଷ୍ୟ ପ୍ରକୃତି ଓ କ୍ଷୁଧିତର ଶୂନ୍ୟ ଉଦର ।

ଆମେ ଦେଖିପାରିବା ୧୭୮୯ରୁ ୧୭୯୪ ମସିହା ପର୍ଯ୍ୟନ୍ତ ଏହି ନିଷ୍ପତ୍ତିମୂଳକ ପାଞ୍ଚ ବର୍ଷ ମଧ୍ୟରେ ଫ୍ରାନ୍ସର କ୍ଷୁଧିତ ଜନତା ବିଦ୍ରୋହ କରିଛି । ସେହିମାନେ ହିଁ ଖାଲି ରାଜନୀତିଜ୍ଞଙ୍କୁ ବାଧ୍ୟ କରାଇ ରାଜସତ୍ତା ଲୋପ କରାଇଲେ, ସାମନ୍ତବାଦ ଓ ଗୀର୍ଜାର ବିଶେଷ ସୁବିଧା ସବୁ ଲୋପ କଲେ । ସେହିମାନେ ହିଁ ଭୀଷଣ ଗିଲୋଟିନ୍‌ର (ଫାଶି) ବନ୍ଦନା କଲେ; ଅତୀତରେ ଯେଉଁମାନେ ତାଙ୍କୁ ଦମନ କରିଥିଲେ ତାଙ୍କ ବିରୁଦ୍ଧରେ ଓ ତାଙ୍କର ନୂତନ-ଲବ୍ଧ ସ୍ୱାଧୀନତା ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବାର ଯେଉଁମାନଙ୍କୁ ସନ୍ଦେହ କଲେ ସେମାନଙ୍କର ପ୍ରତିଶୋଧ ନେଲେ । ଏହି ଛିନ୍ନବସ୍ତ୍ର ପରିହିତ ରକ୍ତପଦରେ ଭ୍ରମଣ କରୁଥିବା ଜନତା ତାଙ୍କର ପୁରାତନ ଅସ୍ତ୍ର ବିପ୍ଳବକୁ ରକ୍ଷା କରିବା ନିମନ୍ତେ ରଣପ୍ରାଙ୍ଗଣକୁ ଧାଇଁଲେ ଏବଂ ତାଙ୍କ ବିରୁଦ୍ଧରେ ସମାବେଶ ହୋଇଥିବା ସମସ୍ତ ଇଉରୋପର ଶିକ୍ଷାପ୍ରାପ୍ତ ସେନାଙ୍କୁ ପଛକୁ ହଟାଇ ଦେଲେ । ଫ୍ରାନ୍ସର ଏହି ଲୋକେ ଆଶ୍ଚର୍ଯ୍ୟଜନକ ଫଳଲାଭ କଲେ; କିନ୍ତୁ କେତେ ବର୍ଷ ଭୀଷଣ କଷ୍ଟ ଓ ସଂଘର୍ଷ ପରେ ବିପ୍ଳବର ଶକ୍ତିକ୍ଷୟ ଘଟେ; ଏହାର ଘଟ ପରିବର୍ତ୍ତନ ହୁଏ ଏବଂ ନିଜର ସନ୍ତାନକୁ ନିଜେ ଗ୍ରାସ କରେ । ତା ପରେ ଆସି ପହଞ୍ଚେ ପ୍ରତି ବିପ୍ଳବ ଅବସ୍ଥା, ଯାହା ବିପ୍ଳବକୁ ଗ୍ରାସ କରେ ଏବଂ ଯେଉଁ ସାଧାରଣ ଲୋକେ 'ଉଚ୍ଚଶ୍ରେଣୀ'ଙ୍କ ଦ୍ୱାରା ଶାସିତ ହେବେ ନାହିଁ ବୋଲି ସାହାସ କରି ଏତେ କଷ୍ଟ ସହ୍ୟ କରିଥିଲେ, ସେମାନଙ୍କୁ ପୂର୍ବାବସ୍ଥାକୁ ନେଇଯାଏ । ଏହି ପ୍ରତିବିପ୍ଳବ ଭିତରୁ ନେପୋଲିୟନ୍ ଜଣେ ସମ୍ରାଟ ଓ ଏକଛତ୍ରାଧିପତି ହୋଇ ବାହାରିଲେ । କିନ୍ତୁ ନେପୋଲିୟନ୍ କିମ୍ବା ପ୍ରତିବିପ୍ଳବ ଅବସ୍ଥା କେହି ସାଧାରଣ ଜନତାକୁ ତାର ପୁରାତନ ସ୍ଥାନକୁ ଫେରାଇ ନେଇ ପାରିଲେ ନାହିଁ । ବିପ୍ଳବରେ ଯେଉଁ ପ୍ରଧାନ ବିଷୟଗୁଡ଼ିକରେ ବିଜୟ ହୋଇଥିଲା, ତାହା କେହି ନଷ୍ଟ କରିପାରି ନ ଥିଲେ, ଅଳ୍ପକ୍ଷଣ ପାଇଁ ହେଲେ ସୁଦ୍ଧା ପଦଦଳିତ ଜନତା ଯେ ତାର ଦୋହଟ ଫୋପାଡ଼ି ଦେଇପାରିଥିଲା, ଫ୍ରାନ୍ସ ଏବଂ ବାସ୍ତବିକ ଇଉରୋପ ଲୋକଙ୍କ ମନରୁ ସେହି ଗୌରବପୂର୍ଣ୍ଣ ସ୍ମୃତି କେହି ପୋଛି ଦେଇପାରି ନ ଥିଲେ ।

ବିପ୍ଳବର ପ୍ରଥମ ଅବସ୍ଥାରେ ଅନେକ ଦଳ ଓ ଗୋଷ୍ଠୀ ପ୍ରଭୁତ୍ୱ ପାଇବା ଲାଗି ଝଗଡ଼ା କରୁଥିଲେ । ରାଜପକ୍ଷବାଦୀମାନେ ଷୋଡ଼ଶ ଲୁଇଙ୍କୁ ନିରଙ୍କୁଶ ରାଜାରୂପେ ରଖିବାର ବୃଥା ଆଶା ବାନ୍ଧିଥିଲେ; ମଡ଼େରେଟ୍ ଲିବରାଲମାନେ ଶାସନବିଧାନ ଗ୍ରହୁଁଥିଲେ ଏବଂ ଗୋଟାଏ ସଙ୍କୀର୍ଣ୍ଣ କ୍ଷମତା ଦେଇ ରାଜା ରଖିବାକୁ ରାଜି ଥିଲେ । ମଡ଼େରେଟ୍ ପ୍ରଜାତନ୍ତ୍ରବାଦୀଙ୍କୁ ଜିରୋଣ୍ଡଙ୍କ ଦଳ ଏବଂ ଅଧିକ ଉଗ୍ର ପ୍ରଜାତନ୍ତ୍ରବାଦୀଙ୍କୁ ଜାକୋବିନ୍ କୁହା ହେଉଥିଲା; କାରଣ ଏମାନେ ଜାକୋବିନ୍ କନ୍‌ଭେଣ୍ଟ ପ୍ରକୋଷ୍ଠରେ ଏକତ୍ର ହେଉଥିଲେ । ଏମାନେ ହେଉଛନ୍ତି ପ୍ରଧାନ ଦଳ; ଏମାନଙ୍କ ଭିତରେ ଓ ସ୍ୱାଙ୍କ ବାହାରେ ଅନେକ ଦୁଃସାହସୀ ବି ଥାଆନ୍ତି । ଏହିସବୁ ଦଳ ଓ ବ୍ୟକ୍ତିବିଶେଷଙ୍କ ପଛକୁ ଫ୍ରାନ୍‌ସର, ବିଶେଷ ପାରିସର ଜନସାଧାରଣ ଥାଆନ୍ତି ଏବଂ ତାଙ୍କ ନିଜ ଭିତରୁ କେତେ ଅଜଣା ନେତା ବାହାରି ତାଙ୍କୁ ଗ୍ଳନା କରୁଥାନ୍ତି । ବିଦେଶରେ, ବିଶେଷତଃ ଇଂଲଣ୍ଡରେ ଭିନ୍ନ ଦେଶରୁ ଲୋକ ଆସିଥାଆନ୍ତି, ବିପ୍ଳବବେଳେ ଫ୍ରାନ୍‌ସରୁ ପଳାଇ ଯାଇଥିବା ସାମନ୍ତମାନେ ସେଠି ରହି ବିପ୍ଳବର ଷଡ଼ଯନ୍ତ୍ର କରୁଥାଆନ୍ତି । ବିପ୍ଳବୀ ଫ୍ରାନ୍‌ସ ବିରୁଦ୍ଧରେ ଇଉରୋପର ସମସ୍ତ ଶକ୍ତି ଲାଗିଥିଲେ । ପାର୍ଲିମେଣ୍ଟାରୀ ବା ଧନୀଙ୍କ-ଶାସିତ ଇଂଲଣ୍ଡ ଏବଂ ଇଉରୋପ ମହାଦେଶର ରାଜା ଓ ସମ୍ରାଟମାନେ ମଧ୍ୟ ସାଧାରଣ ଲୋକଙ୍କର ଏହି ଅଦ୍ଭୁତ ଜାଗରଣ ଦେଖି ଶଙ୍କିତ ହୋଇଯାଇଥିଲେ ଓ ଏହାକୁ ଦମନ କରିବାକୁ ଚେଷ୍ଟା କରୁଥିଲେ ।

ରାଜପକ୍ଷବାଦୀ ଓ ରାଜା ମିଳିମିଶି ଷଡ଼ଯନ୍ତ୍ର କଲେ ଏବଂ ଏଥିରେ ଜନରସ ବଢ଼ାଣ ନିକଟତର ହୋଇଗଲା । ଜାତୀୟ ପରିଷଦରେ ନରମ ଲିବରାଲ ଦଳ ହିଁ ସର୍ବପ୍ରଧାନ ଥିଲେ; ସେମାନେ ଇଂଲଣ୍ଡ ଓ ଆମେରିକା ପରି ଏକପ୍ରକାର ଶାସନ ଯୋଜନା ପ୍ରଚଳନ କରିବାକୁ ଚାହୁଁଥିଲେ । ସେମାନଙ୍କର ନେତା ଥିଲେ ମିରାବୋ । ପ୍ରାୟ ଦୁଇ ବର୍ଷ ପର୍ଯ୍ୟନ୍ତ ସେମାନେ ଆସେମ୍ବ୍ଲିରେ କ୍ଷମତାପନ୍ନ ହୋଇ ରହିଲେ ଏବଂ ବିପ୍ଳବର ପ୍ରଥମ ଅବସ୍ଥାରେ ମିଳିଥିବା ସାଫଲ୍ୟରେ ଉଲ୍ଲସିତ ହୋଇ ସେମାନେ ବହୁତ ଦୁଃସାହସିକ ଘୋଷଣା କରିଥିଲେ ଏବଂ ଅନେକ ଗୁରୁତର ପରିବର୍ତ୍ତନ କରିପାରିଥିଲେ । ବାଷ୍ଟାଇଲ୍ ପତନର ୨୦ଦିନ ପରେ ୧୭୮୯ ଅଗଷ୍ଟ ୪ ତାରିଖ ଆସେମ୍ବ୍ଲିରେ ଗୋଟିଏ ନାଟକୀୟ ଦୃଶ୍ୟ ହୋଇଥିଲା । ସାମନ୍ତମାନଙ୍କର ଅଧିକାର ଓ ସୁବିଧା ଲୋପ କରିବା ବିଷୟ ଆସେମ୍ବ୍ଲିରେ ଆଲୋଚନା ହେଉଥାଏ । ସେତେବେଳେ ଫ୍ରାନ୍‌ସ ବାୟୁମଣ୍ଡଳରେ ଥିବା ଭାବ ଲୋକଙ୍କ ମସ୍ତିଷ୍କରେ ପଶିଲା ଏବଂ ଏପରିକି ସାମନ୍ତ ପ୍ରଭୁମାନେ ନୂତନ ସ୍ୱାଧୀନତା ନିଶାରେ ଭୋଳ ହୋଇଯାଇଥିଲେ । ବଡ଼ ବଡ଼ ସାମନ୍ତ ଓ ଗିର୍ଜା ଅଧିପତିମାନେ ଆସେମ୍ବ୍ଲି ଘରେ ଉପରକୁ ଜଣ ଜଣ ହୋଇ ଉଠି ଆସି ନିଜର ସାଆନ୍ତିଆ ଅଧିକାର ଓ ବିଶେଷ ସୁବିଧା ସବୁ ଗୋଟି ଗୋଟି କରି ତ୍ୟାଗ କରୁଛନ୍ତି ବୋଲି ପ୍ରତିଯୋଗିତା କଲା ପରି ଘୋଷଣା କଲେ । ଏହା ଏକ ସାଧୁ ଓ ଦୟାଳୁଭାବ ପ୍ରଦର୍ଶନ; ଅବଶ୍ୟ କେତେକ ବର୍ଷ ପର୍ଯ୍ୟନ୍ତ ଏହା ବିଶେଷ ଫଳପ୍ରଦ ହୋଇ ନ ଥିଲା । ସମସ୍ତ ସମୟରେ ଅଥଚ ବିରାଟ

ସ୍ୱଭାବରେ ଏପରି ମନୋଭାବ ସୁବିଧାଭୋଗୀ ଶ୍ରେଣୀ ମନରେ ପ୍ରବେଶ କରେ, କିମ୍ବା ସେମାନେ ସମ୍ଭବତଃ ବୁଝିପାରନ୍ତି ଯେ, ତାଙ୍କର ସୁବିଧାସବୁ ଅସି ଶେଷ ହେବା ନିକଟତର ହେଲାଣି ଓ ଏତେବେଳେ ଗୋଟାଏ ସାଧୁ ଘୋଷଣା କରିବା ହିଁ ଉତ୍କୃଷ୍ଟ ପନ୍ଥା । ବାପୁ ଯେତେବେଳେ ଅସ୍ପୃଶ୍ୟତା ଉଠାଇ ଦେବା ନିମନ୍ତେ ଉପବାସ କରିଥିଲେ, ସେତେବେଳେ ଭାରତର ଉଚ୍ଚ ହିନ୍ଦୁମାନଙ୍କ ଭିତରେ ଆମେ ଏହିପରି ଅଦ୍ଭୁତ ଭାବ ଦେଖିଥିଲେ ଏବଂ ଯାଦୁକରର ଖେଳ ପରି ସାରା ଦେଶରେ ଗୋଟାଏ ଭାବଧାରା ଖେଳିଗଲା । ହିନ୍ଦୁମାନେ ତାଙ୍କ ନିଜ ଭାଇଙ୍କ ଉପରେ ଯେଉଁ ଜଞ୍ଜିର ପକାଉଥିଲେ, ତାହା କେତେକ ପରିମାଣରେ ହାଲୁକା ହୋଇଗଲା ଏବଂ ଯୁଗ ଯୁଗ ଧରି ଯେଉଁସବୁ ହଜାର ହଜାର ଦ୍ୱାର ଅସ୍ପୃଶ୍ୟଙ୍କ ପାଇଁ ବନ୍ଦ ଥିଲା, ସେ ସବୁ ଖୋଲା ହୋଇଗଲା ।

ତେଣୁ ଗୋଟାଏ ଆକସ୍ମିକ ଉତ୍ସାହରେ ବିପ୍ଳବୀ ଫ୍ରାନ୍ସର ଜାତୀୟ ପରିଷଦ ଅନ୍ତତଃ ଏକ ପ୍ରସ୍ତାବ ଦ୍ୱାରା ଅର୍ଦ୍ଧଦାସତ୍ୱ, ସୁବିଧାଭୋଗ, ସାଂଆନ୍ତିଆ କଚେରୀ, ସାମନ୍ତ ଓ ପାଦ୍ରୀମାନଙ୍କର ଟିକସରୁ କ୍ଷାନ୍ତ ପାଇବା ଓ ଏପରିକି ଉପାଧି ମଧ୍ୟ ଉଠାଇ ଦେଲେ । ଅଦ୍ଭୁତ କଥା ଯେ, ରାଜା ଆଉ ଯୁବା ସାମନ୍ତମାନେ ତାଙ୍କର ଉପାଧି ଅଧିକାର ହରାଇଲେ ।

ତା'ପରେ ଜାତୀୟ ପରିଷଦ ମଣିଷର ଅଧିକାର ସମ୍ବନ୍ଧରେ ଆଇନ ପାସ କରିବାକୁ ବାହାରିଲା । ଆମେରିକାର ସ୍ୱାଧୀନତା ଘୋଷଣାରୁ ବୋଧହୁଏ ଏହି ଢାଞ୍ଚା ସେମାନେ ନେଇଥିଲେ । ଆମେରିକାର ଘୋଷଣା ଅତି ସଂକ୍ଷିପ୍ତ ଓ ସରଳ ଥିଲା; କିନ୍ତୁ ଫ୍ରାନ୍ସର ବଡ଼ ଦୀର୍ଘ ଓ ଜଟିଳ ଥିଲା । ମଣିଷର ଅଧିକାର ବୋଇଲେ ଯେଉଁ ଅଧିକାରରେ ତାକୁ ସମତା, ସ୍ୱାଧୀନତା ଓ ଆନନ୍ଦ ମିଳିବ ବୋଲି କଳ୍ପନା କରାଯାଉଥିଲା, ସେ ସମୟରେ ମଣିଷର ଅଧିକାର ଘୋଷଣା ଅତ୍ୟନ୍ତ ସାହସୀ ଓ ନିର୍ଭୀକତାର ପରିଚୟ ଦେଉଥିଲା ଏବଂ ପ୍ରାୟ ଏକଶହ ବର୍ଷ ପର୍ଯ୍ୟନ୍ତ ଇଉରୋପର ଲିବରାଲ ଓ ଗଣତନ୍ତ୍ରବାଦୀଙ୍କର ଏହାହିଁ ଦାବୀ ଥିଲା; କିନ୍ତୁ ଆଜି ଏହା ରଦ୍ଦି ହୋଇଗଲାଣି । ଏଥିରେ ଆମର ଏବକାଳର ଗୋଟିଏ ହେଲେ ସମସ୍ୟା ସମାଧାନ ହୋଇ ପାରିବ ନାହିଁ । ଅନେକ କାଳ ପରେ ଲୋକେ ବୁଝିପାରିଲେ ଯେ, ଖାଲି ଆଇନରେ ସାମ୍ୟ ହୋଇ ଗଲେ ଓ ଭୋଟାଧିକାର ମିଳିଗଲେ ପ୍ରକୃତ ସମତା, ସ୍ୱାଧୀନତା ବା ଆନନ୍ଦ ମିଳେ ନାହିଁ ଏବଂ ଯାହାଙ୍କ ହାତରେ କ୍ଷମତା ଥାଏ, ସେମାନେ ଶୋଷଣର ଅନ୍ୟ ବାଟ ଦେଖନ୍ତି । ଫରାସୀ ବିପ୍ଳବ ଦିନଠାରୁ ରାଜନୈତିକ ଚିନ୍ତା ଉନ୍ନତ ହୋଇଛି ବା ବଢ଼ିଛି ଏବଂ ସମ୍ଭବତଃ ଆଜି ଅଧିକାଂଶ ଦଳ (Conservative) ମଧ୍ୟ ମନୁଷ୍ୟର ଅଧିକାର ଘୋଷଣାର ନୀତି ସବୁ ଗ୍ରହଣ କରିଯିବେ । କିନ୍ତୁ ବେଶୀ ଶ୍ରମ ନ କରି ଆମେ ଦେଖିପାରିବା ଯେ, ତାହାର ଅର୍ଥ ସେମାନେ ଯେ, ପ୍ରକୃତ ସମାନତା ଓ ସ୍ୱାଧୀନତା ଦେବାକୁ ପ୍ରସ୍ତୁତ ଅଛନ୍ତି, ତାହା ନୁହେଁ । ଏହି ଘୋଷଣାରେ ବାସ୍ତବିକ ବ୍ୟକ୍ତିଗତ ସମ୍ପତ୍ତି ରକ୍ଷା ହେବାର ବ୍ୟବସ୍ଥା ଥିଲା । ଅନ୍ୟ

କାରଣରୁ ସାମନ୍ତବାଦୀ ଅଧିକାର ଓ ବିଶେଷ ସୁବିଧା ସହିତ ସଂପୃକ୍ତ ଥିବାରୁ ବଡ଼ ବଡ଼ ସାମନ୍ତ ଓ ଗୀର୍ଜାର ମାଲିକାଣା ସବୁ ବାଜ୍ୟାପ୍ତ କରାଯାଇଥିଲା; କିନ୍ତୁ ସମ୍ପତ୍ତିକୁ ନିଜେ ଅଧିକାର କରିବା ଏକ ପବିତ୍ର ଓ ଅମୂଲ୍ୟ ଅଧିକାର ବୋଲି ମନେ କରାଯାଉଥିଲା । ସମ୍ଭବତଃ ରୁଷୀୟ ଉନ୍ନତ ରାଜନୈତିକ ଚିନ୍ତାରେ ଏବେ ସ୍ଥିର ହେଉଛି ଯେ, ବ୍ୟକ୍ତିଗତ ସମ୍ପତ୍ତି ଅନ୍ୟାୟ ଏବଂ ଯେତେଦୂର ସମ୍ଭବ ଏହା ଲୋପ ହେବା ଦରକାର ।

ମଣିଷର ଅଧିକାର ଘୋଷଣାପତ୍ର ଆଜି ଆମକୁ ଏକ ଅତି ମାମୁଲି ଦସ୍ତାବିଜ ପରି ମନେ ହୋଇପାରେ । କାଲିର ସାହସିକ ଆଦର୍ଶ ଅନେକ ସମୟରେ ଆଜି କି ମାମୁଲି କଥା ହୋଇଯାଏ । କିନ୍ତୁ ଯେଉଁ ସମୟରେ ଏହା ଘୋଷିତ ହେଲା, ଇଉରୋପ ଗୋଟାଏ ଗୃଙ୍ଖଳା ଖେଳାଇଦେଲା ଏବଂ କଷ୍ଟଭୋଗୀ ଓ ପଦଦଳିତଙ୍କ ପାଇଁ ଗୋଟିଏ ଉନ୍ନତ ଜୀବନର ଆଶା ଏହା ନେଇ ଆସିଥିଲା । କିନ୍ତୁ ରାଜା ଏହା ପସନ୍ଦ କରୁ ନଥିଲେ; ସେ ଏପରି ଧର୍ମଦ୍ରୋହରେ ଚକିତ ହୋଇ ଗଲେ ଏବଂ ଏହା ମଞ୍ଜୁର କରିବା ଲାଗି ଅସ୍ୱୀକାର କଲେ । ଏବେ ସୁଦ୍ଧା ସେ ଭର୍ସେଇରେ ଥାଆନ୍ତି । ଏହାପରେ ସ୍ତ୍ରୀ ନାରୀମାନଙ୍କ ନେତୃତ୍ୱରେ ପ୍ୟାରିସ୍‌ର ଜନତା ଭର୍ସେଇର ରାଜପ୍ରାସାଦକୁ ଆସିଲେ । ରାଜାଠାରୁ ଘୋଷଣାପତ୍ର ଦସ୍ତଖତ କରାଇଲେ ଓ ତାଙ୍କୁ ପ୍ୟାରିସ୍‌କୁ ଯିବା ପାଇଁ ବାଧ୍ୟ କଲେ । ମୋର ଗତ ଚିଠି ଶେଷ ଆଡ଼କୁ ମୁଁ ଏହି ଅଦ୍ଭୁତ ଶୋଭାଯାତ୍ରା କଥା ଉଲ୍ଲେଖ କରିଛି ।

ପରିଷଦ ଆହୁରି କେତେକ ଦରକାରୀ ସଂସ୍କାର କଲା । ଗୀର୍ଜାର ବିଶାଳ ସମ୍ପତ୍ତି ସରକାର ବାଜ୍ୟାପ୍ତ କରିନେଲା । ୮୦ଟି ବିଭାଗରେ ଫ୍ରାନ୍ସ ବିଭକ୍ତ ହେଲା ଏବଂ ମୋର ବିଶ୍ୱାସ ଏବେ ମଧ୍ୟ ଏହି ବିଭାଗ ରହିଛି । ପୁରୁଣା ସାମନ୍ତ କଚେରୀ ସ୍ଥାନରେ ଉନ୍ନତ ଆଇନ ଅଦାଲତ ସ୍ଥାପନା କରାଗଲା । ଏସବୁ ସମସ୍ତଙ୍କ ମଙ୍ଗଳ ପାଇଁ ହେଲା; କିନ୍ତୁ ଏହା ବେଶିଦୂର ଗଲାନାହିଁ । କୃଷକମାନେ ଜମି ପାଇଁ ବ୍ୟାକୁଳ ହେଉଥିଲେ ଏବଂ ସହରର ସାଧାରଣ ଲୋକେ ଖାଦ୍ୟ ପାଇଁ ଦାବୀ କରୁଥିଲେ; ସେମାନଙ୍କର ଏଥିରୁ ବିଶେଷ କିଛି ଉପକାର ହେଉନଥିଲା । ବିପ୍ଳବ ଅଟକିଗଲା ପରି ବୋଧ ହେଲା । ମୁଁ ତ ଆଗରୁ କହିଛି, ଜନତା, କୃଷକ ଓ ସହରର ସାଧାରଣ ଲୋକଙ୍କର ପରିଷଦରେ ଆଦୌ ପ୍ରତିନିଧିତ୍ୱ ନ ଥିଲା । ମିରାବୋଙ୍କ ନେତୃତ୍ୱରେ ମଧ୍ୟବିତ୍ତ ଶ୍ରେଣୀ ପରିଷଦ ନିୟନ୍ତ୍ରଣ କରୁଥିଲେ ଏବଂ ସେମାନେ ତାଙ୍କ ଉଦ୍ଦେଶ୍ୟ ପ୍ରାପ୍ତ କରିଛନ୍ତି ବୋଲି ବୋଧ କରିବା ଦିନୁଁ ହିଁ ବିପ୍ଳବକୁ ବନ୍ଦ କରିବା ନିମନ୍ତେ ଯଥାସମ୍ଭବ ଚେଷ୍ଟା କଲେ । ଏପରିକି ସେମାନେ ରାଜା ଲୁଇଙ୍କ ସହିତ ବନ୍ଧୁତା କରି ପ୍ରଦେଶର କୃଷକମାନଙ୍କୁ ଭୁଲି କଲେ । ସେମାନେ ନେତା ମିରାବୋ ପ୍ରକୃତରେ ରାଜାଙ୍କର ଗୁପ୍ତ ପରାମର୍ଶଦାତା ହୋଇଗଲେ । ଯେଉଁ ସାଧାରଣ ଲୋକେ ଏଡ଼େ ବଡ଼ ଝଡ଼ ଚୁହାଇ ଦେଇ ବାଷ୍ଟାଇଲ୍ ଦଖଲ କରିଥିଲେ, ଓ ମନେ କରିଥିଲେ ଯେ, ଏଥିରେ ସେମାନଙ୍କ

ଜର୍ଜି ର ଖପିପଡ଼ିଛୁ, ସେମାନେ ଏସବୁ ଘଟନା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ସ୍ୱାଧୀନତା ପୂର୍ବପରି ସୁଦୂର ପରାହତ ଥିଲା ଏବଂ ପୂର୍ବନବାବମାନଙ୍କ ପରି ନୂତନ ଜାତୀୟ ପରିଷଦ ମଧ୍ୟ ତାଙ୍କୁ ଦବାଇବାକୁ ଲଗିଲା ।

ଆସେମ୍ବ୍ଲି ହିଁ ପାରିସ୍ ଜନତାର ବିପ୍ଳବ କେନ୍ଦ୍ର ଥିଲା । ସେଠି ପରାସ୍ତ ହୋଇ ସେମାନେ ବିପ୍ଳବ ଶକ୍ତି ପ୍ରକାଶ କରିବାର ଆଉ ଏକ ବାଟ ପାଇଲେ । ଏହା ହେଉଛି ପାରିସ୍‌ର କମ୍ୟୁନ୍ ବା ମ୍ୟୁନିସିପାଲିଟି । କେବଳ କମ୍ୟୁନ୍ ଜାହାକି ନଗରର ପ୍ରତ୍ୟେକ ଅଞ୍ଚଳ ଯେଉଁଠୁ କିଛି ସଭ୍ୟ କମ୍ୟୁନ୍‌କୁ ନିର୍ବାଚିତ ହୋଇ ଆସନ୍ତି, ସେଠି ସବୁ ଜୀବନ୍ତ ସଂଗଠନ ଥିଲା ଓ ଜନସାଧାରଣଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ ଥିଲା । କମ୍ୟୁନ୍ ଏବଂ ବିଶେଷ ଭାବରେ ଏହିସବୁ ବିଭାଗ ବିପ୍ଳବର ଅଗ୍ରଣୀ ହେଲା ଏବଂ ମଡ଼ରେଟ୍ ଓ ମଧ୍ୟବିତ୍ତ ଶ୍ରେଣୀ ଆସେମ୍ବ୍ଲିର ବିରୋଧୀ ହୋଇ ବାହାରିଲ ।

ଏତେବେଳେ ବାଷ୍ଟାଇଲର ପତନର ବାର୍ଷିକ ଦିବସ ଆସି ପହଞ୍ଚିଲା ଏବଂ ପାରିସ୍‌ର ଲୋକେ ଜୁଲାଇ ୧୪ ତାରିଖ ଦିନ ଏକ ଉତ୍ସବ ପାଳିଲେ । ଗ୍ରେଟ୍‌ଫେଡ ଉତ୍ସବ ବୋଲି ଏହାକୁ କୁହାଯାଉଥିଲା ଏବଂ ନଗରକୁ ସଜାଇବା ସକାଶେ ମାଗଣା ଖଟିବା ପାଇଁ ପାରିସ୍‌ର ସାଧାରଣ ଲୋକେ ବାହାରିଲେ, କାରଣ ସେମାନେ ମନେକଲେ ଯେ ଏଇଟା ସେମାନଙ୍କର ନିଜର ଉତ୍ସବ ।

୧୭୯୦ ଓ ୧୭୯୧ରେ ବିପ୍ଳବ ଏପରି ଥିଲା । ଆସେମ୍ବ୍ଲି ସମସ୍ତ ବିଶୃଙ୍ଖଳା ଠିକ୍ କରାଇଥାଏ ଏବଂ ଅନେକ ପରିବର୍ତ୍ତନ ଘଟିଥାଏ; କିନ୍ତୁ ଏବେ ସୁଦ୍ଧା ପାରିସ୍‌ର ଲୋକେ ବୈପ୍ଳବିକ ଶକ୍ତିରେ ପୂର୍ଣ୍ଣ ଥା'ନ୍ତି, କୃଷକମାନେ ଲୋଲୁପ ଦୃଷ୍ଟିରେ ଭୂମି ପାଇବା ପାଇଁ ଅନାଇ ଥା'ନ୍ତି । ଏପରି ଭାବରେ ବେଶୀଦିନ ଚଳି ପାରିଲା ନାହିଁ; ହୁଏତ ବିପ୍ଳବ ବଢ଼ିବ କିମ୍ବା ଲୋପ ପାଇଯିବ । ମଡ଼ରେଟ ନେତା ମିରାବୋ ୧୮୯୧ର ପ୍ରଥମ ଭାଗରେ ମଲେ । ରାଜାଙ୍କ ସହିତ ତାଙ୍କର ଗୁପ୍ତ ଷଡ଼ଯନ୍ତ୍ର ସତ୍ତ୍ୱେ ସେ ଲୋକପ୍ରିୟ ଥିଲେ ଓ ସେମାନଙ୍କୁ ଅଟକାଇ ରଖିଥିଲେ । ୧୭୯୧ ମସିହା ଜୁନ୍ ୨୧ ତାରିଖରେ ଗୋଟିଏ ଘଟଣା ହିଁ ବିପ୍ଳବର ଗତି ପରିବର୍ତ୍ତନ କରିଦେଲା । ଏହା ହେଉଛି ରାଜା ଲୁଇ ଓ ମେରି ଆଣ୍ଟୋଏନେଟ୍‌ଙ୍କ ଛଦ୍ମବେଶରେ ପଳାୟନ ଚେଷ୍ଟା । ସେମାନେ ପ୍ରାୟ ଯାଇ ସୀମାନ୍ତରେ ପହଞ୍ଚିଥିଲେ । କିନ୍ତୁ ଭର୍ଡ଼ନ୍ ନିକଟସ୍ଥ ଭାରେନ୍‌ସଠାରେ ସେମାନଙ୍କୁ କେତେକ କୃଷକ ଚିହ୍ନି ପାରିଲେ । ସେମାନଙ୍କୁ ଅଟକାଇଲେ ଓ ସେମାନେ ପାରିସ୍‌କୁ ଅଣା ହେଲେ ।

ଏହି କାର୍ଯ୍ୟଦ୍ୱାରା ପାରିସ୍‌ର ଲୋକମାନଙ୍କ ନିକଟରେ ରାଜା ଓ ରାଣୀଙ୍କର ଭାଗ୍ୟଡ଼ୋର ବନ୍ଧା ହେଲା । ଲୋକଙ୍କ ମଧ୍ୟରେ ପ୍ରଜାତନ୍ତ୍ର ଭାବ ବଢ଼ିଲା ଏବଂ ତଥାପି ଆସେମ୍ବ୍ଲି ଓ

ସେକାଳର ସରକାର ସାଧାରଣ ଜନସାଧାରଣଠାରୁ ଏତେ ଦୂରରେ ଥିଲା ଓ ଏତେ ମାତ୍ରା ଥିଲା ଯେ ଯେଉଁ ଲୋକେ ଲୁଇଙ୍କୁ ସିଂହାସନଚ୍ୟୁତ କରିବାକୁ ଦାବି କରୁଥିଲେ, ସେମାନଙ୍କୁ ଗୁଳିମାଡ଼ ହେଉଥିଲା । ରାଜା ପଳାଇଯିବା ପରେ ତାଙ୍କୁ ବିଶ୍ୱାସଘାତକ ବୋଲି ନିନ୍ଦା କରୁଥିବାରୁ ବିପ୍ଲବର ଜଣେ ମୁଖ୍ୟ ଲୋକ ମାରାଟଙ୍କୁ କର୍ତ୍ତୃପକ୍ଷ ଶିକାର କରି ଧରିବାର ଚେଷ୍ଟା କଲେ । ସେ ପାରିସ୍ ସହରର ମଇଳା ପାଣି ଯାଉଥିବା ନଳା ଭିତରେ ଲୁଚି ରହିଲେ ଏବଂ ସେଠି ଭୀଷଣ ଚର୍ମରୋଗରେ ଆକ୍ରାନ୍ତ ହେଲେ ।

ତଥାପି ଅଦ୍ଭୁତ କଥା ଯେ, କାଗଜ କଲମରେ ସେ ଆହୁରି ବର୍ଷେ ପାଇଁ ରାଜା ହୋଇ ରହିଲେ । ୧୭୯୧ ସେପ୍ଟେମ୍ବର ମାସରେ ଜାତୀୟ ପରିଷଦର କାର୍ଯ୍ୟ ସମାପ୍ତ ହେଲା ଏବଂ ତା ବଦଳରେ ବ୍ୟବସ୍ଥାପକ ଆସେମ୍ବ୍ଲି ହେଲା । ଆଗପରି ଏହା ମଧ୍ୟ ମାତ୍ରାପନ୍ଥୀ ଥିଲା ଏବଂ କେବଳ ଉଚ୍ଚଶ୍ରେଣୀଙ୍କର ପ୍ରତିନିଧି ଏଥିରେ ଥିଲେ । ଫ୍ରାନ୍ସର ଉନ୍ନତ ଉଗ୍ର ମନୋଭାବ ଏଥିରେ ପ୍ରତିଫଳିତ ହେଉ ନଥିଲା । ବିପ୍ଳବର ଏହି ଉଷ୍ମତା ଲୋକଙ୍କ ମଧ୍ୟରେ ବ୍ୟାପିଗଲା ଏବଂ ଲୋକଙ୍କ ଭିତରେ ଗଢ଼ି ଉଠିଥିବା ଉଗ୍ର ପ୍ରଜାତନ୍ତ୍ରବାଦୀ ଜାକୋବିନ୍‌ମାନଙ୍କର ଶକ୍ତି ବୃଦ୍ଧି ହେଲା ।

ଏଥିମଧ୍ୟରେ ଭୟଚକିତ ମନରେ ଇଉରୋପୀୟ ଶକ୍ତିପୁଞ୍ଜ ଏହି ଅଦ୍ଭୁତ ଘଟଣାସବୁ ଲକ୍ଷ୍ୟ କରୁଥାନ୍ତି । କିଛିକ୍ଷଣ ଅନ୍ୟଠାରୁ ସମ୍ପତ୍ତି ଶୋଷଣ କରିବାରେ ପ୍ରୁସିଆ ଓ ରୁଷ ଲାଗି ରହିଥାନ୍ତି । ସେମାନେ ପୁରାତନ ପୋଲାଣ୍ଡ ରାଜ୍ୟକୁ ଲୋପ କରୁଥିଲେ । କିନ୍ତୁ ଏଣେ ଫ୍ରାନ୍ସର ଘଟଣାବଳୀ ବଡ଼ ଦ୍ରୁତବେଗରେ ଅଗ୍ରସର ହେଲା ଏବଂ ସେମାନଙ୍କର ଦୃଷ୍ଟି ସେଠିକି ଗଲା । ୧୭୯୦ରେ ଅଷ୍ଟ୍ରିଆ ଓ ପ୍ରୁସିଆ ସହିତ ଫ୍ରାନ୍ସର ଲଢ଼ାଇ ହେଲା । ମୁଁ ତତେ ବୋଧହୁଏ କହିଥିବି ଯେ ଏତେବେଳକୁ ନେଦରଲାଣ୍ଡର ବେଲ୍‌ଜିୟାନ୍ ଅଞ୍ଚଳ ଅଷ୍ଟ୍ରିଆ ଅଧୀନରେ ଥିଲା ଏବଂ ଏହାର ସୀମାନ୍ତ ଫ୍ରାନ୍ସ ସହିତ ଲାଗିଥିଲା । ଫ୍ରାନ୍ସ ଅଞ୍ଚଳ ଭିତରକୁ ବିଦେଶୀ ସୈନ୍ୟ ମାଡ଼ିଯାଇ ଫରାସୀ ସେନାଙ୍କୁ ପରାସ୍ତ କଲେ । ରାଜା ଏମାନଙ୍କ ସହିତ ଥିବାର ଅନୁମାନ କରାଗଲା—ଏହା କିଛି ବିନା କାରଣରେ ନୁହେଁ ଏବଂ ରାଜପକ୍ଷବାଦୀମାନଙ୍କୁ ବିଶ୍ୱାସଘାତକତାର ସନ୍ଦେହ କରାଗଲା । ତାଙ୍କ ଗୃହଆଡ଼େ ବିପଦ ବଢ଼ିବା ସଙ୍ଗେ ସଙ୍ଗେ ଫ୍ରାନ୍ସର ଲୋକେ ଅଧିକରୁ ଅଧିକ ଉତ୍ତେଜିତ ଓ ଆତଙ୍କିତ ହେଲେ । ସବୁଆଡ଼େ ସେମାନେ ବିଶ୍ୱାସଘାତକ ଓ ଗୁପ୍ତଚର ଦେଖିପାରିଲେ । ଏହି ସଙ୍କଟବେଳେ ପାରିସ୍‌ର ବିପ୍ଳବୀ କମ୍ୟୁନ୍ ନେତୃତ୍ୱ ନେଲା; ରାଜଦରବାର ବିରୁଦ୍ଧରେ ଲୋକେ ସାମରିକ ଆଇନ ଜାରି କରିଛନ୍ତି ବୋଲି ଘୋଷଣା କରିବା ପାଇଁ ଲାଲପତାକା ଉଡ଼ାଇଲେ ଏବଂ ୧୭୯୨ ମସିହା ଅଗଷ୍ଟ ୧୦ ତାରିଖରେ ରାଜପ୍ରାସାଦ ଉପରେ ଆକ୍ରମଣ ଆଦେଶ କଲେ । ରାଜା ସେମାନଙ୍କୁ ତାଙ୍କ ସ୍ୱିଜରଲାଣ୍ଡବାସୀ ରକ୍ଷକଙ୍କଦ୍ୱାରା ଗୁଳି କରିଦେଲେ । କିନ୍ତୁ ଜନତାର ବିଜୟ ହେଲା ।

ରାଜାଙ୍କୁ ଅନ୍ତର କରିବା ନିମନ୍ତେ କମ୍ୟୁନ୍ ଆସେମ୍ବ୍ଲିକୁ ବାଧ୍ୟ କଲା ଏବଂ ତାଙ୍କୁ ବନ୍ଦୀ କରାଗଲା ।

ସମସ୍ତେ ଜାଣନ୍ତି ଆଜି ଏହି ଲାଲପତାକା ପ୍ରତ୍ୟେକ ସ୍ଥାନରେ ସୋସାଲିଜିମ୍ ଓ କମ୍ୟୁନିଜିମ୍ ଏବଂ ଶ୍ରମିକଙ୍କର ପତାକା ହୋଇ ରହିଛି । ମୋର ମନେହୁଏ, ଆଗେ ଲୋକଙ୍କ ବିରୁଦ୍ଧରେ ସାମରିକ ଆଇନ ଜାରି ଘୋଷଣା କରିବା ନିମନ୍ତେ ସରକାର ତରଫରୁ ଲାଲପତାକା ଉଡ଼ୁଥିଲା । କିନ୍ତୁ ମୁଁ ଏ ବିଷୟରେ ନିଶ୍ଚିନ୍ତ ନୁହେଁ । ପାରିସ୍‌ର କମ୍ୟୁନ୍‌ଦ୍ୱାରା ଲାଲପତାକା ପ୍ରଥମେ ଲୋକଙ୍କ ତରଫରୁ ବ୍ୟବହାର ହେଲା ଏବଂ ଏହିଠାରୁ ଏହା କ୍ରମେ ଶ୍ରମିକଙ୍କ ପତାକାରୂପେ ପରିଚିତ ହେଲା ।

ରାଜାଙ୍କୁ ଗାଦିଚ୍ୟୁତ ଓ ବନ୍ଦୀ କରିବା ଯଥେଷ୍ଟ ନୁହେଁ । ସ୍ୱିସ୍ ପ୍ରହରୀଙ୍କ ଦ୍ୱାରା ଗୁଳି ଖାଇ କେତେକ ମୃତ୍ୟୁମୁଖରେ ପଡ଼ିବାରୁ ପାରିସ୍‌ର ଲୋକେ ଉତ୍ତେଜିତ ହୋଇଗଲେ ଏବଂ ଗୁପ୍ତଚର ଓ ବିଶ୍ୱାସଘାତକଙ୍କ ପ୍ରତି କ୍ରୋଧାନ୍ୱିତ ଓ ଭୟଭୀତ ହୋଇ ସେମାନେ ସନ୍ଦେହ ହେଉଥିବା ପ୍ରତ୍ୟେକ ଲୋକଙ୍କୁ ଗିରଫ କଲେ ଓ ଜେଲଖାନା ସେମାନଙ୍କ ଦ୍ୱାରା ଭର୍ତ୍ତି କରିଦେଲେ । ଗିରଫ ହୋଇଥିବା ଲୋକଙ୍କ ଭିତରୁ ଅନେକେ ଅବଶ୍ୟ ଦୋଷୀ; କିନ୍ତୁ ଅନେକ ନିର୍ଦ୍ଦୋଷ ଲୋକ ମଧ୍ୟ ଗିରଫ ହୋଇ ବନ୍ଦୀ ହୋଇଗଲେ । କିଛିଦିନ ପରେ ଲୋକଙ୍କ ଭିତରେ ପୁଣି ଏକ ଉତ୍କଟ ଭାବଧାରା ଖେଳିଗଲା ଏବଂ ସେମାନେ ବନ୍ଦୀମାନଙ୍କୁ ଜେଲଖାନାରୁ ମୁକ୍ତ କରିଆଣିଲେ ଏବଂ ଗୋଟାଏ ବିଚାର ପ୍ରହସନ କରି ଅଧିକାଂଶ ଲୋକଙ୍କୁ ମାରିଦେଲେ । ଏହାକୁ "ସେପ୍‌ଟେମ୍ବର ହତ୍ୟା" ବୋଲି କହନ୍ତି ଏବଂ ପ୍ରାୟ ଏକ ହଜାରରୁ ଅଧିକ ଲୋକ ଏଥିରେ ମଲେ । ପାରିସ୍ ଜନତାଙ୍କର ବ୍ୟାପକ ଭାବରେ ରକ୍ତପାତ ଏହା ହିଁ ପ୍ରଥମ । ଆହୁରି ଅଧିକ ରକ୍ତ ବୋହିଯିବା ପରେ ଯାଇ ଏହି ରକ୍ତତୃଷ୍ଣା ପରିତୃପ୍ତ ହେଲା ।

ଏହି ସେପ୍‌ଟେମ୍ବର ମାସରେ ଆକ୍ରମଣକାରୀ ପ୍ରୁସିଆ ଓ ଅଷ୍ଟ୍ରିଆ ସେନାଙ୍କ ଉପରେ ଫରାସୀ ସେନାଙ୍କର ପ୍ରଥମ ବିଜୟ ହେଲା । ଏହି ଯୁଦ୍ଧ ଭାଲ୍‌ମିରେ ଘଟିଥିଲା । କ୍ଷୁଦ୍ର ହେଲେ ସୁଦ୍ଧା ଏହାର ପରିଣାମ ବ୍ୟାପକ ଥିଲା, କାରଣ ଏହା ବିପ୍ଳବକୁ ରକ୍ଷା କଲା ।

୧୭୯୨ ମସିହା ସେପ୍‌ଟେମ୍ବର ୨୧ରେ ଜାତୀୟ କନ୍‌ଭେନ୍‌ସନ୍ (ସମ୍ମିଳନୀ) ହେଲା । ଆସେମ୍ବ୍ଲି ସ୍ଥାନରେ ଏହି ନୂତନ ସଂସ୍ଥା ଦେଖାଦେଲା । ପୂର୍ବୋକ୍ତ ଦୁଇଟି ଆସେମ୍ବ୍ଲି ଅପେକ୍ଷା ଏହା ଅଧିକ ଅଗ୍ରଗାମୀ ଥିଲା; କିନ୍ତୁ ଏହା କମ୍ୟୁନ୍ ପଛରେ ପଡ଼ିଥିଲା । କନ୍‌ଭେନ୍‌ସନ୍‌ର ପ୍ରଥମ କାର୍ଯ୍ୟ ହେଲା ପ୍ରଜାତନ୍ତ୍ର ଘୋଷଣା । ଅଳ୍ପଦିନ ପରେ ଷୋଡ଼ଶ ଲୁଇଙ୍କ ବିଚାର ହେଲା, ତାଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା ଏବଂ ୧୭୯୩ ଜାନୁୟାରୀ ୨୧

ତାରିଖରେ ରାଜତନ୍ତ୍ରର ପାପ ସକାଶେ ତାଙ୍କୁ ମସ୍ତକ ଦାନ କରିବାକୁ ପଡ଼ିଲା । ତାଙ୍କୁ ଗିଲୋଟିନ୍ ଦିଆଗଲା ଅର୍ଥାତ୍ ଗିଲୋଟିନ୍ ଦ୍ୱାରା ମସ୍ତକ ଵିଚ୍ଛିନ୍ନ କରାଗଲା । ଫ୍ରାନ୍ସ ଲୋକେ ନିଜ ନୌକା ନିଜେ ବୁଡ଼ାଇଲେ । ସେମାନେ ଶେଷ ପଦକ୍ଷେପ ପକାଇ ଇଉରୋପର ରାଜା ଓ ସମ୍ରାଟମାନଙ୍କୁ ବେଖାତିର କଲେ । ଏଠୁ ଫେରିଯିବାର ଉପାୟ ନ ଥିଲା । ଗିଲୋଟିନ୍ (ଫାସିକାଠ) ରାଜା ରକ୍ତରେ ରଞ୍ଜିତ ହୋଇଥାଏ ଏବଂ ଜଣେ ପ୍ରଧାନ ବିପ୍ଳବୀ ନେତା ଡାଣ୍ଟନ ସେହି ଫାସିଖୁଣ୍ଟ ପାଖରୁ ବକ୍ତୃତା କରି ଜନତାକୁ କହିଲେ ଓ ଅନ୍ୟ ରାଜାଙ୍କୁ ଚ୍ୟାଲେଞ୍ଜ କରି କହିଲେ, "ଇଉରୋପର ରାଜାମାନେ ଆମକୁ ଚ୍ୟାଲେଞ୍ଜ ଦେଇପାରନ୍ତି; ଆମେ ତାଙ୍କୁ ଗୋଟିଏ ରାଜାର ମସ୍ତକ ଉପହାର ଦେଉଛୁ ।"

---

## ୧୦୨ : ବିପ୍ଳବ ଓ ପ୍ରତିବିପ୍ଳବ

ଅକ୍ଟୋବର ୧୩, ୧୯୩୨

ରାଜା ଲୁଇ ଗଲେ । କିନ୍ତୁ ତାଙ୍କ କଥା ପୂର୍ବରୁ ବି ଫ୍ରାନ୍ସରେ ଅଦ୍ଭୁତ ପରିବର୍ତ୍ତନ ହୋଇଥିଲା । ବିପ୍ଳବର ଉତ୍ତପ୍ତତାରେ ଫ୍ରାନ୍ସ ଲୋକଙ୍କର ରକ୍ତ ଜଳି ଉଠିଥିଲା; ସେମାନଙ୍କର ଶିରପ୍ରଶିରା ଅସ୍ଥିର ହେଲା ଏବଂ ସେମାନେ ଏକ ଉଦ୍ଦାମ ଉତ୍ସାହରେ ମାତିଲେ । ପ୍ରଜାତନ୍ତ୍ର ଫ୍ରାନ୍ସ ଏକାକୀ; ରାଜାମାନଙ୍କ ଦ୍ୱାରା ଶାସିତ ସମଗ୍ର ୟୁରୋପ ତା ବିରୁଦ୍ଧରେ । ଦେଶ-ପ୍ରେମୀମାନେ ସ୍ୱାଧୀନତା ସୂର୍ଯ୍ୟଠାରୁ ଆଲୋକ ପାଇ କିପରି ଯୁଦ୍ଧ କରିପାରନ୍ତି, ତାହା ଫ୍ରାନ୍ସ ଏହି ଜଡ଼ ରାଜା ଓ ରାଜକୁମାରମାନଙ୍କୁ ଦର୍ଶାଇ ଦେଲା । ସେମାନେ କେବଳ ନିଜର ନୂତନପ୍ରାପ୍ତ ସ୍ୱାଧୀନତା ପାଇଁ ନୁହେଁ, ରାଜା ଓ ସାମନ୍ତଙ୍କ ଦ୍ୱାରା ଅତ୍ୟାଚାରିତ ସବୁ ଲୋକଙ୍କ ସ୍ୱାଧୀନତା ପାଇଁ ଲଢ଼ିବାକୁ ତିଆର । ୟୁରୋପର ଅନ୍ୟ ଦେଶମାନଙ୍କୁ ଫରାସୀ ଲୋକେ ବାର୍ତ୍ତା ପଠାଇଲେ—ତୁମ ଶାସକଙ୍କ ବିରୁଦ୍ଧରେ ଉଠ, ସମଗ୍ର ଜନତାର ବନ୍ଧୁ ବୋଲି ନିଜକୁ ଘୋଷଣା କର ଏବଂ ସମସ୍ତ ରାଜତନ୍ତ୍ରବାଦୀ ସରକାରର ଶତ୍ରୁ ହୁଅ । ଫ୍ରାନ୍ସ ହେଲା ସ୍ୱାଧୀନତାର ଜନ୍ମଦାତ୍ରୀ ଏବଂ ଏହା ଲାଗି ତ୍ୟାଗ କରିବାରେ ହିଁ ଆନନ୍ଦ ମିଳିଲା । ଏପରି ଧ୍ୱଂସୋନ୍ମାଦନାବେଳେ ତାଙ୍କର ଉଦ୍ଦାମ ଉଚ୍ଛ୍ୱାସ ସହିତ ସ୍ୱର ମିଳାଇ ଏକ ଅଦ୍ଭୁତ ସଙ୍ଗୀତ ସେମାନେ ଗାନ କଲେ—ଏହା ଗାଇ ସେମାନେ ଯୁଦ୍ଧକ୍ଷେତ୍ରକୁ ଅଗ୍ରସର ହେଲେ ସମସ୍ତ ବାଧା ଅତିକ୍ରମ କରି ଏବଂ ବିପଦ ପ୍ରତି ବେପରୁଆ ହୋଇ । ଏହା ହେଉଛି ରାଇନ୍‌ର ସେନାଙ୍କ ପାଇଁ ରାଉଜେଟ୍ ଡି ଲିସ୍‌ଲେଙ୍କ ରଚିତ ଯୁଦ୍ଧ ଗାନ । ସେହେତୁ ଏହାକୁ 'ମାର୍ସେଲିୟସ୍' ବୋଲି କହନ୍ତି ଏବଂ ଆଜି ସୁଦ୍ଧା ଫ୍ରାନ୍ସର ଜାତୀୟ ସଙ୍ଗୀତ ହୋଇ ରହିଛି । ଏହା ଫରାସୀ ଭାଷାରେ ଲେଖା (ତାହାର ହିନ୍ଦୀ ଅନୁବାଦ)—

'ମାତୃଭୂମିକା ବଚ୍ଚେଁ ! ଆଓ ଗୌରବକା ଦିନ୍ ଆୟା ହୈ,
ନିଷ୍ଠୁରତା କା ଖୂନ ଝଣ୍ଡା ଅପ୍‌ନେ ଶିର୍‌ପର ଛାୟା ହୈ ।
ଶୁନୋ, ଖୂନ୍ କ ପ୍ୟାସେ ସୈନିକ ଘୁରୌଁ ଓର ଦହାଡ଼ ରହେ,
ଗୋଦିକେ ଲାଲେ, ଲଲନାଓଁ କ ହତ୍ୟାକୋ ଉମଡ଼ ରହେ ।
ସୈନ୍ୟ ସଜାଓ ଐ ନାଗରିକୋଁ ! କରମେ ତଲ୍‌ବାର ଖିଞ୍ଚୋ !
ଇନ୍ ଦୁଷ୍ଟୋଁକେ ଅପବିତ୍ର ଖୂନ୍ ସେ ଅପନେ ଖେତୋକୋ ସିଞ୍ଚୋ ।

('ବିଶ୍ୱଇତିହାସ କୀ ଝଲକ'ରୁ ଗୃହୀତ)

ରାଜାଙ୍କର ଦୀର୍ଘଜୀବନ କାମନା କରି ବୃଥା ଗାନ ସେମାନେ କରି ନ ଥିଲେ । ତା ପରିବର୍ତ୍ତେ, ସେମାନେ ମାତୃଭୂମି ପ୍ରତି ପବିତ୍ରପ୍ରେମ ଏବଂ ପ୍ରିୟ ସ୍ୱାଧୀନତା ସଙ୍ଗୀତ ଗାନ କରିଥିଲେ ।

"ଓ, ମାତୃଭୂମିକେ ପୁଣ୍ୟପ୍ରେମ ! ଆଗେ ବଢ଼ନେଙ୍କା ରହ ହଟା !
ପ୍ରତିହିଂସା କେ ପ୍ୟାସେ ଶସ୍ତ୍ରୋଁ କୋ ତୁ ଗମେ କର ବଲପ୍ରଦାନ !
ପ୍ରିୟ ସ୍ୱତନ୍ତ୍ରତେ ! ସମର ଭିତ୍ ତୁମ୍ ନିଜ ନିଜ ସେବକଜନ କା କରେ ସହାୟ ।"

('ବିଶ୍ୱ ଇତିହାସକୀ ଝଲକ'ରୁ ଗୃହୀତ)

ଦାରୁଣ କଷ୍ଟ ଭୋଗିବାକୁ ହେଲା । ଯଥେଷ୍ଟ ଖାଦ୍ୟ କମ୍ବଳ ପୋଷାକ, ବୁଟ୍ ବା ଯୋତା ଏବଂ ଏପରି କି ଅସ୍ତ୍ରଶସ୍ତ୍ର ବି ନ ଥିଲା । ଅନେକ ସ୍ଥଳରେ ସୈନ୍ୟମାନଙ୍କ ପାଇଁ ନାଗରିକମାନଙ୍କୁ ବୁଟ୍ ଓ ଯୋତା ଛାଡ଼ିବାକୁ କୁହାହେଲା । ଅଭାବ ପଡ଼ୁଥିବା ଯେଉଁ ଖାଦ୍ୟ ସବୁ ସୈନ୍ୟଙ୍କ ପାଇଁ ଦରକାର ହେଉଥିଲା, ଦେଶହିତୈଷୀମାନେ ସେ ଖାଦ୍ୟ ଛାଡ଼ିଦେଲେ । କେତେକ ତ ପ୍ରାୟ ଉପାସ କରୁଥିଲେ । ଚମଡ଼ା, ଗୋଟେଇ ସେନ୍ଟ୍ରାମ, କଡ଼େଇ, ବାଲ୍‌ଟି ଓ ଅନ୍ୟ ଅନେକ ଘରେ ବ୍ୟବହୃତ ଜିନିଷ ମଧ୍ୟ ନିଆଗଲା । ପାରିସର ଗଳିରେ ଅନେକ ଜାଗାରେ ସାଧାରଣ ଲୋକଙ୍କ ପାଇଁ ନିଆଁ ଲିଭ କରିଦିଆଗଲା ଏବଂ ନାଗରିକମାନେ ମଧ୍ୟ ଅଗ୍ନି ଉଅଁରେ ସାହାଯ୍ୟ କଲେ । ଜିନିଷର ଖୁବ୍ ଅଭାବ ପଡ଼ିଲା; କିନ୍ତୁ ଛିନ୍ନବସ୍ତ୍ରପରିହିତା ଅଥଚ ମସ୍ତକରେ ସ୍ୱାଧୀନତା ରୂପୀ ମୁକୁଟ ପିନ୍ଧିଥିବା ସୌନ୍ଦର୍ଯ୍ୟମୟୀ ଫ୍ରାନ୍ସ ଯେତେବେଳେ ବିପଦ୍‌ଗ୍ରସ୍ତା ଏବଂ ଶତ୍ରୁ ଆସି ତା ଦ୍ୱାରରେ ଉପସ୍ଥିତ, ସେତେବେଳେ ଏଥିରେ ଯାଏ ଆସେ କେତେ ? ଫ୍ରାନ୍‌ସର ଯୁବକ ତାଙ୍କୁ ରକ୍ଷା କରିବା ନିମନ୍ତେ ଧାବମାନ ହେଲ; କ୍ଷୁଧା ଓ ତୃଷା ପ୍ରତି ଖାତିରି ନକରି ବିଜୟ ଲାଗି ଅଗ୍ରସର ହେଲା । କାର୍ଲାଇଲ କହିଛନ୍ତି, "କେବଳ ଖାଇବା ଓ କାରବାର କରିବା ଜିନିଷରେ ଆଗ୍ରହ ନେବା ଛଡ଼ା ଅନ୍ୟ କେଉଁଥିରେ ସମଗ୍ର ଜନତାର ବିଶ୍ୱାସ ଦେଖାଇବା କ୍ୱଚିତ୍ ଦେଖାଯାଏ । କିନ୍ତୁ ଯେତେବେଳେ ଏହା ଏକ ବିଶ୍ୱାସ ଗ୍ରହଣ କରେ, ସେତେବେଳେ ତା'ର ଇତିହାସ ଉଦ୍ବୋଧକ ଓ ଉଲ୍ଲେଖଯୋଗ୍ୟ ହୋଇପଡ଼େ ।" ଏକ ମହତ୍ ଉଦ୍ଦେଶ୍ୟରେ ବିପ୍ଳବୀ ନରନାରୀଙ୍କ ମନରେ ଏହି ବିଶ୍ୱାସ ଜନ୍ମିଲା । ସେହି ସ୍ମରଣୀୟ କାଳରେ ସେମାନେ ଯେଉଁ ଇତିହାସ ଗଢ଼ିଲେ, ତ୍ୟାଗ ସହିଲେ, ତାହା ଏବେ ସୁଦ୍ଧା ଆମ ମନରେ ପ୍ରଭାବ ପକାଏ ଓ ଉତ୍ତେଜନା ସୃଷ୍ଟି କରେ ।

ଏହି ବିପ୍ଳବୀ ସୈନ୍ୟମାନେ ନୂଆ କରି ସମ୍ମିଳିତ ହୋଇଥିଲେ ଏବଂ ଅର୍ଦ୍ଧତାଲିମ ହୋଇ ସୁଦ୍ଧା ଫରାସୀ ଭୂମିରୁ ସମସ୍ତ ବିଦେଶୀ ସେନାଙ୍କୁ ତଡ଼ିଦେଲେ ଏବଂ ଅଷ୍ଟ୍ରିଆ ହାତରୁ ନିମ୍ନ ନେଦରଲଣ୍ଡ (ବେଲଜିୟମ ପ୍ରଭୃତି) ମୁକ୍ତ କଲେ । ହାପସ୍‌ବର୍ଗ ବଂଶ ଚିରକାଳ ପାଇଁ ନେଦରଲଣ୍ଡ ଛାଡ଼ିଲେ; ସେ ଆଉ ଫେରି ନାହାନ୍ତି । ୟୁରୋପର ତାଲିମପ୍ରାପ୍ତ ପେଶାଦାର ସେନାମାନେ ଏହି ବିପ୍ଳବୀ ସେନାଙ୍କର ସମ୍ମୁଖୀନ ହୋଇପାରିଲେ ନାହିଁ । ଶିକ୍ଷିତ ସେନାମାନେ ଦରମା ପାଇବା ପାଇଁ ଲଢ଼ୁଥିଲେ ଏବଂ ବଡ଼ ଖୁସିଆରେ ଲଢ଼ୁଥିଲେ ।

ବିପ୍ଳବୀ ସେନାମାନେ ଏକ ଆଦର୍ଶ ପାଇଁ ଲଢ଼ୁଥିଲେ ଓ ତାହା ହାସଲ ପାଇଁ ସମସ୍ତ ପ୍ରକାର ବିପଦ ବରଣ କରିବା ନିମନ୍ତେ ପ୍ରସ୍ତୁତ ଥିଲେ । ୟୁରୋପୀୟ ସେନା ରାଜଦରବାରମାନଙ୍କର ଚୋଷି ବନ୍ଧ ମନ୍ତ୍ରର ଗଢ଼ କରୁଥିଲାବେଳେ ଏମାନଙ୍କର ପ୍ରାପ୍ୟ କିଛି ନ ଥିଲା ଏବଂ ଦ୍ରୁତପଦରେ ଗତି କରୁଥିଲେ । ଏହିରୂପେ ବିପ୍ଳବୀ ସେନାଦଳ ଯୁଦ୍ଧକ୍ଷେତ୍ରରେ ସମ୍ପୂର୍ଣ୍ଣ ନୂତନ ଧରଣର ହୋଇ ଦେଖା ଦେଲେ ଏବଂ ନୂତନ କୌଶଳ ପ୍ରୟୋଗ କରି ଲଢ଼ିଲେ । ସେମାନେ ଲଢ଼େଇର ପୁରୁଣା ପ୍ରଣାଳୀସବୁ ବଦଳାଇ ଦେଲେ ଓ ୟୁରୋପର ଅଗାମୀ ଏକଶହ ବର୍ଷ ପର୍ଯ୍ୟନ୍ତ କେତେକ ପରିମାଣରେ ସୈନ୍ୟମାନଙ୍କର ଆଦର୍ଶ ହୋଇଥିଲେ; କିନ୍ତୁ ଏମାନଙ୍କର ପ୍ରକୃତ ବଳ ଥିଲା—ଉତ୍ସାହ ଓ ସାହସ । ଏତେବେଳେ ସେମାନଙ୍କର ତଥା ବିପ୍ଳବର ଯାହା ଧ୍ୱନି ଥିଲା ତାହା ଡାନ୍‌ଟନଙ୍କର ଏହି ପ୍ରସିଦ୍ଧ ଲେଖାରୁ ଜାଣିହେବ—

"ମାତୃଭୂମିର ଶତ୍ରୁକୁ ପରାସ୍ତ କରିବା ନିମନ୍ତେ ଆମଠାରେ ସାହସ, ଖୁବ୍ ସାହସ, ସବୁଦା ସାହସ ରହିଥିବା ଦରକାର ।"

( ମୂଳ ଫରାସୀର ହିନ୍ଦି ଅନୁବାଦ 'ବିଶ୍ୱ ଇତିହାସକୀ ଝଲକ'ରୁ ଗୃହୀତ )

ଯୁଦ୍ଧ ବ୍ୟାପିଲା । ଶକ୍ତିଶାଳୀ ନୌବାହିନୀ ଥିବା ହେତୁ ଇଂଲଣ୍ଡ ଏକ ପ୍ରଭାବଶାଳୀ ଶତ୍ରୁ ହୋଇପଡ଼ିଲା । ଫ୍ରାନ୍ସ ଦ୍ରକାତଳ୍ପ ଏକ ବିଶାଳ ସ୍ଥଳସେନା ତିଆରି କରିଥିଲା; କିନ୍ତୁ ସମୁଦ୍ର-ବାହିନୀରେ ସେ ଦୁର୍ବଳ ଥିଲା । ଇଂଲଣ୍ଡ ସମଗ୍ର ଫ୍ରାନ୍ସ ବନ୍ଦରଗୁଡ଼ିକ ଘେରିଉ କରିଦେଲା । ଫ୍ରାନ୍ସରୁ ପଳାଇ ଆସି ଇଂଲଣ୍ଡରେ ଆଶ୍ରୟ ନେଇଥିବା ଫରାସୀ ଲୋକେ ଫ୍ରାନ୍ସକୁ ଫେରିଯାଇ ଲକ୍ଷ ଲକ୍ଷ ସଂଖ୍ୟାରେ ନକଲି ନୋଟ୍ (ଏହାକୁ ଆସାଇନେଟସ୍ ବୋଲି କହନ୍ତି) ଫ୍ରାନ୍ସ ଭିତରେ ଭର୍ତ୍ତି କରିଦେଲେ । ଏହିରୂପେ ସେମାନେ ଫରାସୀ ମୁଦ୍ରା ଓ ଆର୍ଥିକ ବ୍ୟବସ୍ଥା ନଷ୍ଟ କରିଦେବାକୁ ଚେଷ୍ଟା କଲେ ।

ବିଦେଶୀ ଯୁଦ୍ଧହିଁ ସର୍ବପ୍ରଧାନ ହୋଇଗଲା ଏବଂ ଦେଶର ସମସ୍ତ ଶକ୍ତି ଏଥିରେ ଗଲା । ବିପ୍ଳବ ବେଳେ ଏପରି ଯୁଦ୍ଧ ବଡ଼ ବିପଜ୍ଜନକ; କାରଣ ସାମାଜିକ ସମସ୍ୟାରୁ ବିଦେଶୀ ଶତ୍ରୁସଙ୍ଗେ ଲଢ଼ିବା ପ୍ରତି ଏହା ଦୃଷ୍ଟି ଫେରାଇ ଦିଏ ଓ ତାହାଦ୍ୱାରା ବିପ୍ଳବର ଅସଲ ଉଦ୍ଦେଶ୍ୟ ପରାହତ ହୁଏ । ବିପ୍ଳବର ଉଷ୍ମତା ସ୍ଥାନରେ ଯୁଦ୍ଧ ଜ୍ୱର ଘୋଟିଯାଏ । ଫ୍ରାନ୍ସରେ ଏହିପରି ଘଟିଲା ଏବଂ ଆମେ ଦେଖିପାରିବା ଯେ ଫ୍ରାନ୍ସରେ କେତେବେଳକୁ ଜଣେ ବୃହତ୍ ସାମରିକ ସେନାପତିର ଏକଛତ୍ର ଅଧିକାର କାଏମ୍ ହେଲା ।

ଫ୍ରାନ୍ସ ଭିତରେ ଗୋଳମାଳ ଆରମ୍ଭ ହୋଇଥିଲା । ଫ୍ରାନ୍ସର ପଶ୍ଚିମରେ ଭେଣ୍ଡି ନାମକ ସ୍ଥାନରେ ଏକ ବୃହତ୍ କୃଷକ ବିଦ୍ରୋହ ହେଲା । ଏହାର କାରଣ ହେଉଛି, ସେଠାକାର କୃଷକମାନେ ନୂତନ ସେନାରେ ଯୋଗ ଦେବାକୁ ଅସ୍ୱୀକାର କଲେ ଏବଂ ରାଜପକ୍ଷବାଦୀ ନେତା ଓ ନିର୍ବାସିତ ଲୋକେ ଏହା ଚେଷ୍ଟା କରି କରାଇଥିଲେ । ପ୍ରକୃତରେ ବିପ୍ଳବ ପାରିସ୍ ସହର ଲୋକଙ୍କ ଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ ହେଉଥିଲା । ରାଜଧାନୀର ଏହି ସହ

ପରିବର୍ତ୍ତନକୁ କୃଷକମାନେ ବୁଝିପାରୁ ନ ଥିଲେ କି ପସନ୍ଦ କରୁ ନ ଥିଲେ ଏବଂ ସେମାନେ ପଛରେ ପଡ଼ିଗଲେ । ଅତି ନିଷ୍ଠୁର ଭାବରେ ଏହି ଭେଣ୍ଡି ବିପ୍ଳବ ଦମନ କରାଗଲା । ଯୁଦ୍ଧବେଳେ, ବିଶେଷତଃ ଗୃହଯୁଦ୍ଧ ସମୟରେ ଦୁଷ୍ଟ ବୃତ୍ତିର ଉଦ୍ରେକ କରାଯାଏ ଏବଂ ସେହା ଏକ ବାସସ୍ଥାନ ପଥିକ ହୋଇଯାଏ । ଲିୟନ୍ସଠାରେ ଏକ ବିପ୍ଳବ ବିରୋଧୀ ଜାଗରଣ ଦେଖାଦେଲା । ଏହା ଦବାଇ ଦିଆଗଲା ଏବଂ ଶାସ୍ତି ସ୍ୱରୂପ ଲିୟନ୍ସ ପରି ବଡ଼ ସହରକୁ ଧ୍ୱଂସ କରିବା ପ୍ରସ୍ତାବ ହେଲା । "ଲିୟନ୍ସ ସ୍ୱାଧୀନତା ବିରୋଧରେ ଲଢ଼ାଇ କରିଛି—ଲିୟନ୍ସ ଆଉ ନାହିଁ ! ସୌଭାଗ୍ୟକ୍ରମେ ଏ ପ୍ରସ୍ତାବ ଗୃହୀତ ହେଲା ନାହିଁ, କିନ୍ତୁ ଲିୟନ୍ସ ଖୁବ୍ ନିର୍ଯାତନା ସହିଲା ।

ଏତେବେଳେ ପାରିସର ଅବସ୍ଥା କିପରି ଥିଲା ? କାହା ଅଧୀନରେ ଥିଲା ? ଏକ ନୂତନ ନିର୍ବାଚିତ କମ୍ୟୁନ୍ ଓ ତା'ର ଶାଖାମାନ ବର୍ତ୍ତମାନ ସୁଦ୍ଧା ଏ ସହରର ଜୀବନରେ ପ୍ରାଧାନ୍ୟ ଲଭିଥିଲେ । ଜାତୀୟ କନ୍‌ଭେନ୍‌ସନ୍‌ରେ ବିଭିନ୍ନ ଦଳଙ୍କ ଭିତରେ କ୍ଷମତା ପାଇଁ ବିବାଦ ହେଲା । ଏମାନଙ୍କ ଭିତରେ ମୁଖ୍ୟ ହେଉଛନ୍ତି ଗିରୋଣ୍ଡିନ୍ ଅର୍ଥାତ୍ ମାଧ୍ୟମପନ୍ଥୀ ପ୍ରଜାତନ୍ତ୍ରବାଦୀ ଏବଂ ଜାକୋବିନ୍ ଅର୍ଥାତ୍ ଉଗ୍ର ପ୍ରଜାତନ୍ତ୍ରବାଦୀ । ଜାକୋବିନ୍‌ମାନେ ଜୟୀ ହେଲେ । ୧୭୯୩ ଜୁନ୍ ପ୍ରଥମ ଭାଗରେ ଅଧିକାଂଶ ଗିରୋଣ୍ଡିନ୍ ଦଳ ଡେପୁଟିଙ୍କୁ କନ୍‌ଭେନ୍‌ସନ୍‌ରୁ ବାହାର କରିଦିଆଗଲା । ଏହା ପରେ ସାମନ୍ତବାଦୀ ଅଧିକାର ସବୁ ଲୋପ କରିବା ନିମନ୍ତେ କନ୍‌ଭେନ୍‌ସନ ଶେଷ ପଦକ୍ଷେପ ପକାଇଲେ ଏବଂ ସାମନ୍ତ ପ୍ରଭୁଙ୍କ ଅଧୀନରେ ଥିବା ଜମିସବୁ ସ୍ଥାନୀୟ କମ୍ୟୁନ୍ ବା ମ୍ୟୁନିସିପାଲିଟିକୁ ଦେଇ ଦିଆଗଲା; ଅର୍ଥାତ୍ ଏହି ଜମି ସବୁ ସାଧାରଣ ସମ୍ପତ୍ତି ହୋଇଗଲା ।

କନ୍‌ଭେନ୍‌ସନ୍‌ରେ ଜାକୋବିନ୍‌ମାନଙ୍କର ଏବେ ପ୍ରାଧାନ୍ୟ ହେଲା ଏବଂ ଏହା ଦୁଇଟି କମିଟି ନିଯୁକ୍ତ କଲା—ସାଧାରଣ ମଙ୍ଗଳ ପାଇଁ ଓ ସାଧାରଣ ନିରାପତ୍ତା ପାଇଁ କମିଟି : ଏମାନଙ୍କ ହାତରେ ବ୍ୟାପକ କ୍ଷମତା ଦିଆଗଲା । ଏହି କମିଟିଗୁଡ଼ିକ, ବିଶେଷତଃ ସାଧାରଣ ନିରାପତ୍ତା ପାଇଁ ହୋଇଥିବା କମିଟି ଶୀଘ୍ର ଶକ୍ତିଶାଳୀ ହୋଇ ପଡ଼ିଲା ଏବଂ ଲୋକେ ଏହାକୁ ଭୟ କଲେ । ବିପ୍ଳବ ଏକ ଆତଙ୍କବାଦରେ ପରିଣତ ହେବା ପର୍ଯ୍ୟନ୍ତ ସେମାନେ ଧୀରେ ଧୀରେ କନ୍‌ଭେନ୍‌ସନ୍‌କୁ ଉପଯୋଗ କଲେ । ଏ ପର୍ଯ୍ୟନ୍ତ ପ୍ରତ୍ୟେକ ଲୋକ ଉପରେ ଭୟର ଛାୟା ଥିଲା; ତାଙ୍କ ଚତୁର୍ଦ୍ଦିଗରେ ଘେରି ରହିଥିବା ବିଦେଶୀ ଶତ୍ରୁ, ଗୁପ୍ତଚର ଓ ବିଶ୍ୱାସଘାତକଙ୍କ ଭୟ ଥିଲା । ଏପରି ଲୋକ ଅନେକ ସଂଖ୍ୟାରେ ବି ଥିଲେ । ଭୟ ଲୋକକୁ ଅନ୍ଧ ଓ ହତାଶ କରି ପକାଏ ଏବଂ ଏହା ସର୍ବଦା ଅଘାତ କରୁଥିବା ଭୟରେ ବିହ୍ୱଳ ହୋଇ ୧୭୯୩ ସେପ୍‌ଟେମ୍ବର ମାସରେ କନ୍‌ଭେନ୍‌ସନ ଏକ ଭୀଷଣ ଆଇନ୍ ପାସ୍ କଲା । ଏହା ହେଉଛି, ସନ୍ଦେହୀ ଆଇନ (Law of Suspects)—ଯାହା ଉପରେ ସନ୍ଦେହ କରାଗଲା, ସେ ଆଉ ନିରାପଦ ହୋଇପାରିଲା ନାହିଁ । ସନ୍ଦେହ ନଥିବା ଲୋକ ବା କିଏ ? ଏକ ମାସ ପରେ କନ୍‌ଭେନସନ୍‌ର ୨୨ ଜଣ ଡେପୁଟିଙ୍କର ବିଚାର ବିପ୍ଳବୀ ପଞ୍ଚାୟତ କଲା ଏବଂ ଶୀଘ୍ର ମୃତ୍ୟୁଶାସ୍ତି ଦିଆଗଲା ।

ଏହିରୂପେ ଆତଙ୍କ ବ୍ୟାପିଲା । ଅପରାଧୀ ବିବେଚିତ ହେଉଥିବା ଲୋକ ପ୍ରତିଦିନ ଫାଶି-ଖୁଣ୍ଟକୁ ଯାଉଥିଲେ; ପ୍ରତିଦିନ ଦୁଇଚକିଆ ଗାଡ଼ିସବୁ ଏହି ଶିକାରମାନଙ୍କୁ ବୋହି ପାରିସର କଠିନ ପଥର ରାସ୍ତାରେ ଝଙ୍କାର ଓ ଗର୍ଜନ କରି ଚାଲୁଥିଲା ଏବଂ ଏହି ଦୁଃଖୀ ଲୋକଙ୍କୁ ଦେଖି ଲୋକେ ବ୍ୟଙ୍ଗ କରୁଥିଲେ । ଏପରିକି କନ୍‌ଭେନ୍‌ସନ୍‌ରେ ଶାସକ ଗୋଷ୍ଠୀଙ୍କ ବିରୁଦ୍ଧରେ କିଛି କହିବା ବି ବିପଜ୍ଜନକ ହେଲା; କାରଣ ଏଥିରେ ସନ୍ଦେହ ବଢ଼ିବ, ସନ୍ଦେହ ପରେ ବିଚାର ଓ ତା ପରେ ଗିଲୋଟିନ୍ । ସାଧାରଣ ମଙ୍ଗଳ ଓ ସାଧାରଣ ନିରାପତ୍ତା ପାଇଁ ଗଢ଼ା ହୋଇଥିବା କମିଟିଗୁଡ଼ିକ କନ୍‌ଭେନ୍‌ସନ୍‌କୁ ନିୟନ୍ତ୍ରଣ କଲା । ଜୀବନ ମରଣର ସକଳ କ୍ଷମତା ଏହି କମିଟିଗୁଡ଼ିକ ହାତରେ ଥିଲା ଏବଂ ଏହା ସେମାନେ ଅନ୍ୟକୁ ଦେବାକୁ ଚାହିଁଲେ ନାହିଁ । ସେମାନେ ପାରିସ କମ୍ୟୁନ୍‌ର କାର୍ଯ୍ୟରେ ଆପତ୍ତି କଲେ; ବାସ୍ତବିକ ସେମାନଙ୍କ ସହ ଯେ ଏକମତ ନହେଲା, ତାହାର ବିରୋଧ କରୁଥିଲେ । କ୍ଷମତା ଦ୍ୱାରା ଅସାଧାରଣ ଭାବରେ ଲୋକେ ଦୂଷିତ ହୋଇଯାଆନ୍ତି । ତେଣୁ ଏହି କମିଟିଗୁଡ଼ିକ କମ୍ୟୁନ୍‌କୁ ଦମନ କରିବାରେ ଲାଗିପଡ଼ିଲେ—କମ୍ୟୁନ୍‌ର ବିଭିନ୍ନ ଶାଖା ପ୍ରକୃତରେ ବିପ୍ଳବର ମେରୁଦଣ୍ଡ ଥିଲା । ସେମାନେ ଏହି ଶାଖାଗୁଡ଼ିକୁ ପ୍ରଥମେ ଦମନ କଲେ ଏବଂ ଶାଖାମାନଙ୍କୁ ଶେଷ କରି କମ୍ୟୁନ୍‌କୁ ମଧ୍ୟ ଧ୍ୱଂସ କଲେ । ଏହିରୂପେ ବିପ୍ଳବ ଅନେକ ସମୟରେ ନିଜକୁ ନିଜେ ଗ୍ରାସ କରେ । ପ୍ୟାରିସର ପ୍ରତ୍ୟେକ ଅଞ୍ଚଳରେ ଥିବା ଶାଖାମାନଙ୍କ ଉପରେ ଥିବା କର୍ତ୍ତୃପକ୍ଷଙ୍କ ସହିତ ସାଧାରଣ ଲୋକଙ୍କର ସମ୍ପର୍କ ରହିଥିଲା । ଏହି ଶିରା ପ୍ରଶିରା ଦେଇ ବିପ୍ଳବର ଲାଲ ରକ୍ତ ପ୍ରବାହିତ ହେଉଥିଲା—ଯାହା ଏହାକୁ ସାମର୍ଥ୍ୟ ଓ ଜୀବନ ଦାନ କରିଥିଲା । ୧୭୯୪ରେ ଏହି ଶାଖା ଓ କମ୍ୟୁନ୍‌କୁ ନଷ୍ଟ କରିବା ଫଳରେ ସେହି ରକ୍ତପ୍ରବାହ ବିଚ୍ଛିନ୍ନ ହୋଇଗଲା । ଏଣିକି ଏହି କମିଟିଗୁଡ଼ିକ ଉପରେ ଥିବା ସରକାରର ମୁଖପାତ୍ର ହେଲା; ଲୋକଙ୍କ ସହିତ ଜୀବନ୍ତ ସମ୍ପର୍କ ରହିଲା ନାହିଁ ଏବଂ ଅନ୍ୟ ସମସ୍ତ କର୍ତ୍ତୃତ୍ୱରେ ଥିବା ଯେ, ସେ ଆତଙ୍କ ବଳରେ ନିଜର ଇଚ୍ଛା ଅନ୍ୟମାନଙ୍କ ଉପରେ ଜବରଦସ୍ତି ଚାପିବା ଲାଗି ଚେଷ୍ଟା କଲା । ପ୍ରକୃତ ବିପ୍ଳବର କାଳ ଅନ୍ତ ହେବାର ଏହା ପ୍ରାରମ୍ଭ ମାତ୍ର । ଅନ୍ତିମ ଛଅ ମାସ ପର୍ଯ୍ୟନ୍ତ ଏହି ଆତଙ୍କ ଲାଗି ରହିଲା ଏବଂ ବିପ୍ଳବ ଚାଲିଲା । କିନ୍ତୁ ଏହାର ଶେଷ ଅବସ୍ଥା ଜଳ ଜଳ ଦେଖା ଯାଉଥିଲା ।

ଏ ଘଟଣା ବେଳେ ପ୍ୟାରିସ ଓ ଫ୍ରାନ୍‌ସର ନେତା ଥିଲା କିଏ ? ଅନେକଙ୍କ ନାମ ମନେ ପଡ଼ୁଛି । କାମିଲ ଡେସ୍‌ମାଉଲିନସ୍ ଜଣେ । ସେ ୧୭୮୯ରେ ବାଷ୍ଟାଇଲ ଆକ୍ରମଣରେ ନେତୃତ୍ୱ ନେଇଥିଲେ । ଆତଙ୍କ ରାଜୁତିବେଳେ ଟିକିଏ କୋହଳ ହେବା ମତ ପ୍ରକାଶ କରିବାକୁ କହିବାରୁ ତାଙ୍କୁ ଫାଶିର ଶିକାର ହେବାକୁ ପଡ଼ିଲା; ତା ପରେ କିଛି ଦିନ ଅନ୍ତେ ତାଙ୍କର ଯୁବତୀ ସ୍ତ୍ରୀ ମଧ୍ୟ ଫାଶି ପାଇଲେ । ତାଙ୍କ ବିନା ବଞ୍ଚିବା ଅପେକ୍ଷା ମୃତ୍ୟୁକୁ ସେ ଅଧିକ ପସନ୍ଦ କରିଥିଲେ । ଆଉ ଜଣେ ହେଉଛନ୍ତି କବି ଫାବ୍ରେ ଡ଼'ଏଗ୍ଲାଣ୍ଟାଇନ୍ ଓ ନିର୍ଦ୍ଦୟ ମରକାସ୍ୱ ଓକିଲ ଫାଉକର-ଟିନ୍‌ଭିଲ । ସମ୍ଭବତଃ ମାରାଟ ବିପ୍ଳବରେ ସର୍ବାପେକ୍ଷା ବଡ଼ ଓ

ପକ୍ଷ ଲୋକ ଥିଲେ । ସାର୍ଲୋଟ୍ କର୍ଡ଼େ ନାମକ ଜଣେ ଯୁବତୀ ତାଙ୍କୁ ଛୁରୀ ମାରି ହତ୍ୟା କରିଥିଲା । ଡାଣ୍ଟନର ଲେଖା ଆଗରୁ ଦୁଇଥର ମୁଁ ଉଲ୍ଲେଖ କରିଛି । ସେ ଖୁବ୍ ସାହସୀ, ସିଂହ ପରି ବଳବାନ୍, ମହତ୍ ଓ ଜଣେ ଲୋକପ୍ରିୟ ବକ୍ତା; କିନ୍ତୁ ତାଙ୍କୁ ବି ଫାଶିରେ ଝୁଲିବାକୁ ପଡ଼ିଲା । ସମସ୍ତଙ୍କ ଅପେକ୍ଷା ଭଲରୂପେ ଜଣାଶୁଣା ହୋଇଛନ୍ତି ରବସ୍ପିୟର । ସେ ଜାକୋବିନମାନଙ୍କର ନେତା ଏବଂ ଅତଙ୍କ ବେଳେ ପ୍ରକୃତରେ କନ୍‌ଭେନ୍‌ସନର ଡ଼ିକ୍ଟେଟର ଥିଲେ । ସେ ଏକ ଆତଙ୍କର ପ୍ରତିମୂର୍ତ୍ତି ପାଲଟିଲେ ଏବଂ ଲୋକେ ତାଙ୍କ ନାମ ଧରିଲେ ଥରି ଉଠନ୍ତି । ତଥାପି ଏ ବ୍ୟକ୍ତିଙ୍କର ସାଧୁତା ଓ ଦେଶପ୍ରୀତି ସମ୍ବନ୍ଧରେ ପ୍ରଶ୍ନ କରାଯାଇପାରେ ନା । ସେ "ନିର୍ଦ୍ଦୋଷ" ବୋଲି ପରିଚିତ ଥିଲେ । କିନ୍ତୁ ଅତ୍ୟନ୍ତ ସରଳ ଜୀବନ କଟାଇ ସୁଦ୍ଧା ସେ ନିଜକୁ ଖୁବ୍ ବଡ଼ ବୋଲି ମନେ କରୁଥିଲେ । ସେ ହୁଏତ ବିଶ୍ୱାସ କରୁଥିଲେ ଯେ ତାଙ୍କ ସହିତ ଦ୍ୱିମତ ହେବା ପ୍ରତ୍ୟେକ ବ୍ୟକ୍ତି ପ୍ରଜାତନ୍ତ୍ର ଓ ବିପ୍ଳବ ପ୍ରତି ବିଶ୍ୱାସଘାତକ । ତାଙ୍କର ସାଥି ବିପ୍ଳବୀ ନେତାସବୁ ତାଙ୍କ ନିର୍ଦ୍ଦେଶ ମତେ ଫାଶି ପାଇଛନ୍ତି । ଶେଷକୁ ଯେଉଁ କନ୍‌ଭେନ୍‌ସନ୍ ତାଙ୍କ କଥା ମାନୁଥିଲା, ତାହା ପୁଣି ତାଙ୍କ ବିପକ୍ଷରେ ଗଲା । ସେମାନେ ତାଙ୍କୁ ଅତ୍ୟାଚାରୀ ଓ ସ୍ୱେଚ୍ଛାଚାରୀ ବୋଲି କହିଲେ ଏବଂ ତାଙ୍କୁ ଓ ତାଙ୍କର ସ୍ୱେଚ୍ଛାଚାରିତା ଲୋପ କଲେ ।

ବିପ୍ଳବର ସମସ୍ତ ନେତା ଥିଲେ ଯୁବକ; ବୁଢ଼ାଙ୍କ ଦ୍ୱାରା ବିପ୍ଳବ ହୁଏ ନାହିଁ । ଅନେକ ନେତା ବଡ଼ ମହାନ୍ ଥିଲେ; କିନ୍ତୁ ସେମାନଙ୍କ ଭିତରୁ କେହି ହେଲେ, ଏପରିକି ରବସ୍ପିୟର ମଧ୍ୟ, ଏହି ମହତ୍ ନାଟକରେ ପ୍ରଧାନ ଅଭିନୟ କରି ନଥିଲେ । ବିପ୍ଳବର ପ୍ରକୃତ ଘଟଣା ଆଗରେ ସେମାନେ ଛପିଗଲେ; କାରଣ ବିପ୍ଳବ ତାଙ୍କ ଦ୍ୱାରା ସୃଷ୍ଟି ହୋଇ ନ ଥିଲା କି ସେମାନଙ୍କ ଆୟତ୍ତରେ ନଥିଲା । ଇତିହାସରେ ସମୟେ ସମୟେ ଘଟୁଥିବା ମାନବୀୟ ଭୂମିକମ୍ପରୁ ଏହା ଗୋଟିଏ । ଏହାକୁ ଧୀର ଅଥଚ ନିଶ୍ଚିତରୂପେ ତିଆରି କରେ ସାମାଜିକ ଅବସ୍ଥା, ଦୀର୍ଘକାଳ-ବ୍ୟାପୀ ଦୁର୍ଦ୍ଦଶା ଓ ସ୍ୱେଚ୍ଛାଚାରିତା ।

ଏ କଥା ଭାବିବୁ ନାହିଁ ଯେ କେବଳ ଝଗଡ଼ା ଓ ଫାଶି ଛଡ଼ା ବିପ୍ଳବ ଆଉ କିଛି କରି ନ ଥିଲା । ପ୍ରକୃତ ବିପ୍ଳବରେ ଯେଉଁ ଶକ୍ତି ଖେଳେଇ ହୋଇଯାଏ, ତାହା ସର୍ବଦା ଅତ୍ୟନ୍ତ ପ୍ରଭାବ ପକାଏ । ଏହି ଶକ୍ତିର କେତେକାଂଶ ବିଦେଶୀ ଯୁଦ୍ଧରେ ବ୍ୟୟ ହେଲା; ତଥାପି ଅନେକ ଥିଲା ଏବଂ ବହୁ ପରିମାଣରେ ସଂଗଠନ କାର୍ଯ୍ୟ ହୋଇଥିଲା । ବିଶେଷଭାବରେ ଜାତୀୟ ଶିକ୍ଷାପ୍ରଣାଳୀ ପରିବର୍ତ୍ତନ କରାଗଲା । ଆଜି ପିଲାମାନେ ଯେଉଁ ମିଟରରେ ମାପିବା ପ୍ରଣାଳୀ ସ୍କୁଲରେ ଶିଖନ୍ତି, ତାହା ଏହି ସମୟରେ ପ୍ରଚଳନ ହୋଇଥିଲା ଏବଂ ଏହା ପରିମାଣ ଓ ଆୟତନ ଓ ଓଜନ ମାପିବା ପ୍ରଣାଳୀକୁ ସରଳ କରିଦେଇଥିଲା । ଏହି ପ୍ରଣାଳୀ ଆଜି ସଭ୍ୟ ଦୁନିଆର ଅଧିକାଂଶ ଅଞ୍ଚଳରେ ବ୍ୟାପିଛି; କିନ୍ତୁ ରକ୍ଷଣଶୀଳ ଇଂଲଣ୍ଡ ଆଜି ସୁଦ୍ଧା ପୁରୁଣା ଭଣ୍ଡ ଅମଳର ଗଜ ଓ ଫର୍ଲଙ୍ଗ, ପାଉଣ୍ଡ ଓ ହଣ୍ଡ୍ରେଡ୍‌ୱେଟ୍ ଓ ସେହିପରି ପ୍ରଥାକୁ ଧରି ରଖିଛି । ଆମ ଭାରତରେ ମଧ୍ୟ ସେହି ଜଟିଳ ଧାର୍ଯ୍ୟ, ଓଜନ ଓ ସେର, ମହଣ ଆଦି ଚଳୁଛି ।

ଏହି ମିଟରରେ ମାପିବା ପ୍ରଥା ପାଇଁ ଗୋଟିଏ ପ୍ରଜାତନ୍ତ୍ର କାଲେଣ୍ଡର ବା ବର୍ଷ ପଞ୍ଜିକା ବି ଥିଲା । ପ୍ରଜାତନ୍ତ୍ର ଯେଉଁ ଦିନ ଘୋଷଣା ହେଲା ଅର୍ଥାତ୍ ୧୭୯୨ ମସିହା ସେପ୍ଟେମ୍ବର ୨୨ ତାରିଖରୁ ଏହାର ଆରମ୍ଭ । ସାତ ଦିନରେ ସପ୍ତାହ ପରିବର୍ତ୍ତେ ଦଶାହିକ ଦଶଦିନ ହେଲା ଏବଂ ଦଶମ ଦିବସଟି ଛୁଟି ହେଲା । ଏହା ୧୨ ମାସ ଥିଲା; କିନ୍ତୁ ତା ନା ବଦଳାଇ ଦିଆଗଲା । କବି ଫାବ୍ରେ ଡ୍ ଏଗ୍ଲାଣ୍ଟାଇନ୍ ମାସଗୁଡ଼ିକର ଋତୁ ଅନୁସାରେ ସୁନ୍ଦର ନାମକରଣ କଲେ । ବସନ୍ତ ମାସ ତିନୋଟି ହେଲା, ଜର୍ମିନାଲ (ଅଙ୍କୁରକ), ଫ୍ଲୋରେଆଲ (ପୁଷ୍ପକ), ପ୍ରେରିଆଲ (ଶସ୍ୟକ), ଗ୍ରୀଷ୍ମ ଋତୁ—ମେସିଡ଼ୋର, ଥର୍ମିଡ଼ର, ଫ୍ରୁକ୍‌ଟିଡ଼ର୍; ଶରତ୍ ଋତୁ—ଭେଣ୍ଡେମେୟାର, ବ୍ରୁମେୟାର, ଫ୍ରିମେୟାର ଏବଂ ଶୀତ ଋତୁ—ନିଭୋଜ, ପ୍ଲୁଭିୟୋସ୍ ଓ ଭେଣ୍ଟୋସ୍ । ପ୍ରଜାତନ୍ତ୍ର ପରେ ଏହି କାଲେଣ୍ଡର ବେଶି ଦିନ ରହିଲା ନାହିଁ ।

ଏହି ସମୟରେ ଖ୍ରୀଷ୍ଟଧର୍ମ ବିରୁଦ୍ଧରେ ଶକ୍ତିଶାଳୀ ଆନ୍ଦୋଳନ ହୋଇଥିଲା ଏବଂ "ରେଜନ" (ବିଚାର ବୁଦ୍ଧି) ପୂଜାର ପ୍ରସାର ହୋଇଥିଲା । ଏହାର ଦେଉଳ ସ୍ଥାପନା କରାଗଲା । ପ୍ରଦେଶମାନଙ୍କୁ ଏହା ଦ୍ରୁତ ଭାବରେ ବ୍ୟାପିଗଲା । ୧୭୯୩ ନଭେମ୍ବର ମାସରେ ପ୍ୟାରିସ୍‌ରେ ନୋଟରଡାମ କାଥେଡ୍ରାଲ୍‌ଠାରେ ସ୍ୱାଧୀନତା ଓ 'ବିଚାରବୁଦ୍ଧି'ର ମହୋତ୍ସବ ପାଳିତ ହୋଇଥିଲା ଏବଂ 'ବିଚାରବୁଦ୍ଧି'ର ପ୍ରତୀକ ସ୍ୱରୂପ ଏକ ସୁନ୍ଦରୀ ନାରୀ ପ୍ରତିମା ଗଢ଼ାଯାଇଥିଲା । କିନ୍ତୁ ଏହି ବିଷୟରେ ରବସ୍ପିୟର ରକ୍ଷଣଶୀଳ ଥିଲେ । ଏହି ଆନ୍ଦୋଳନ ସେ ପସନ୍ଦ କଲେ ନାହିଁ । ଡାଣ୍ଟନ ମଧ୍ୟ ସେଇଆ । ସାଧାରଣ ପାଇଁ ଥିବା ଜାକୋବିନ୍ କମିଟି ଏହା ବିରୁଦ୍ଧରେ ଥିଲା ଏବଂ ସେଥିପାଇଁ ଆନ୍ଦୋଳନର ନେତାମାନଙ୍କୁ ଫାଶି ଦିଆଗଲା । ସ୍ୱାଧୀନତା ଓ 'ବିଚାରବୁଦ୍ଧି' ଉତ୍ସବ ପରିବର୍ତ୍ତେ 'ସର୍ବଶକ୍ତିମାନ'ଙ୍କର ଉତ୍ସବ ରବସ୍ପିୟର୍ ଆୟୋଜନ କଲେ । କନ୍‌ଭେନ୍‌ସନ୍‌ର ଭୋଟରେ ସ୍ଥିର ହେଲା ଫ୍ରାନ୍‌ସ ସର୍ବଶକ୍ତିମାନଙ୍କଠାରେ ବିଶ୍ୱାସ କରେ । ରୋମାନ କାଥଲିକ ଧର୍ମ ପୁଣି ପ୍ରଚଳିତ ହେଲା ।

ପାରିସ କମ୍ୟୁନ୍ ଓ ଶାଖାଗୁଡ଼ିକ ଭାଙ୍ଗି ଦେବା ପରେ ଅବସ୍ଥା ଗୁରୁତର ହେଲା । ଜାକୋବିନ୍‌ମାନଙ୍କର ପ୍ରାଧାନ୍ୟ ଥିଲା । ସେମାନେ ସରକାର ନିୟନ୍ତ୍ରଣ କରୁଥିଲେ; କିନ୍ତୁ ତାଙ୍କ ଭିତରେ ବିବାଦ ସୃଷ୍ଟି ହେଲା । ସ୍ୱାଧୀନତା ଓ 'ବିଚାରବୁଦ୍ଧି'ର ଉତ୍ସବରେ ନେତୃତ୍ୱ ନେଇଥିବା ହେବର୍ଟ ଓ ତାଙ୍କର ସମର୍ଥକମାନଙ୍କୁ ଫାଶି ଦେବାରେ ଜାକୋବିନ୍ ଦଳରେ ପ୍ରଥମ ଝଟକା ପଡ଼ିଲା । ଫାବ୍ରେ ଡ୍' ଏଗ୍ଲାଣ୍ଟାଇନ୍‌ଙ୍କୁ ତା ପରେ ଫାଶି ଦେଲା; ୧୭୯୪ରେ ଯେତେବେଳେ ବହୁତ ଲୋକଙ୍କୁ ରବସ୍ପିୟର ଫାଶି ଦେଉଥିବାରୁ ଡାଣ୍ଟନ, କାମିଲ, ଡେସମାଉଲିନ୍‌ସ ଓ ଅନ୍ୟମାନେ ପ୍ରତିବାଦ କଲେ, ସେମାନଙ୍କୁ ମଧ୍ୟ ଫାଶି ଦିଆଗଲା । କାଳେ ଲୋକେ ଜାଣିପାରି ହସ୍ତକ୍ଷେପ କରିବେ, ଏହି ଭୟରେ ତରତରରେ ହୋଇ '୭୯୪ ଏପ୍ରିଲ ମାସରେ ଡାଣ୍ଟନଙ୍କୁ ପ୍ରାଣଦଣ୍ଡ ଦିଆଗଲା । ଏହାଦ୍ୱାରା ପ୍ୟାରିସ ଓ ମଫସଲର ଲୋକେ ବୁଝିଲେ ଯେ ବିପ୍ଳବ ଶେଷ ହୋଇଗଲା । ବିପ୍ଳବର ଏକ ସିଂହ ମରିଗଲା ଏବଂ ଅନ୍ୟ ସଙ୍ଗୀ

ଦଳ କ୍ଷମତାରେ ରହିଲେ । ଶତ୍ରୁ ପରିବେଷ୍ଟିତ ହୋଇ ଓ ଲୋକଙ୍କଠାରୁ ବିଚ୍ଛିନ୍ନ ହୋଇ ଏହି ଦଳଟି ସର୍ବଦା ଷଡ଼ଯନ୍ତ୍ରର ସନ୍ଦେହ କଲା ଏବଂ ଆତଙ୍କ ବଢ଼ାଇବା ଛଡ଼ା ନିଜକୁ ରକ୍ଷା କରିବାର ଆଉ କିଛି ବାଟ ଦେଖିଲା ନାହିଁ ।

ସୁତରାଂ ଆତଙ୍କ ଆହୁରି ରୂପ ଆକାର ଧରିଲା ଏବଂ ଦୁଇଚକିଆ ଗାଡ଼ିରେ ପୂର୍ବାପେକ୍ଷା ଶିକାର ବେଶି ବୋଝେଇ ହେଲା । ଜୁନ ମାସରେ ଗୋଟିଏ ନୂଆ ଆଇନ ପାସ୍ ହେଲା । ଏହାକୁ '୨୨ଶ ପ୍ରେରିଆଲ ଆଇନ' କହନ୍ତି । ଏଥିରେ ଲୋକଙ୍କୁ ବିଭକ୍ତ କରିବା ଲାଗି ଓ ଉତ୍ତେଜିତ କରିବା ଲାଗି ମିଥ୍ୟା ସମ୍ବାଦ ପ୍ରଚାର, ସାଧାରଣ ନୈତିକତା ହାନି ଏବଂ ସାଧାରଣ ଚରିତ୍ରକୁ ଦୂଷିତ କରିବା ଦୋଷରେ ଶାସ୍ତି ରୂପେ ପ୍ରାଣଦଣ୍ଡ ଦିଆଯିବ ବୋଲି ବ୍ୟବସ୍ଥା ରହିଲା । ରବସ୍ପିୟର ଓ ତାଙ୍କ ବାହକମାନଙ୍କ ସହ ମତଭେଦ ଘଟୁଥିବା ପ୍ରତ୍ୟେକ ଲୋକ ଏହି ଆଇନ ଜାଲରେ ପଡ଼ୁଥିଲେ । ବହୁସଂଖ୍ୟକ ଲୋକଙ୍କର ଏକାଠି ବିଚାର ହୋଇ ଶାସ୍ତି ହେଉଥିଲା । ଥରେ ୧୫୦ ଜଣଙ୍କର ଏକାଠି ବିଚାର ହୋଇଥିଲା । ଏମାନଙ୍କ ଭିତରେ ପୁଣି ବନ୍ଦୀ, ରାଜପକ୍ଷବାଦୀ ଓ ଅନ୍ୟ ସବୁ ପ୍ରକାର ଲୋକ ଥିଲେ ।

୪୭ ଦିନ ପର୍ଯ୍ୟନ୍ତ ଏହି ଆତଙ୍କ ଲାଗି ରହିଲା । ଶେଷରେ ଥର୍ମିଡ଼ର-୯ (ଜୁଲାଇ ୨୭, ୧୭୯୪)ରେ ବଦଳିଲା । ହଠାତ୍ ରବେସ୍ପିୟର ଓ ତାଙ୍କର ସମର୍ଥକଙ୍କ ବିରୁଦ୍ଧରେ କନ୍‌ଭେନ୍‌ସନ ଉଠିଲା ଏବଂ "ଅତ୍ୟାଚାରୀର ଧ୍ୱଂସ ହେଉ" ଏହି ଧ୍ୱନିରେ ସେମାନେ ତାଙ୍କୁ ଗିରଫ କଲେ, ଏପରିକି ରବସ୍ପିୟରଙ୍କୁ କହିବାକୁ ସୁଦ୍ଧା ଦେଲେ ନାହିଁ । ଯେଉଁ ଫାସି ଖୁଣ୍ଟକୁ ସେ ଏତେ ଲୋକଙ୍କୁ ପଠାଉଥିଲେ, ଦୁଇଚକିଆ ଗାଡ଼ି ତା ପରଦିନ ତାଙ୍କୁ ବି ସେଠିକି ବୋହିନେଲା, ଏହିରୂପେ ଫରାସୀ ବିପ୍ଳବ ଶେଷ ହେଲା ।

ରବସ୍ପିୟରଙ୍କର ପତନ ପରେ ପ୍ରତିବିପ୍ଳବ ଆରମ୍ଭ ହେଲା । ମାଡ଼ାଦଳ ଆମାନେ ଆଗୁଆ ହେଲେ ଏବଂ ସେମାନେ ଜାକୋବିନ୍‌ଙ୍କୁ ଧରି ତାଙ୍କୁ ଭଗ୍ନସ୍ୱପ୍ନ କଲେ । ଲାଲ ଆତଙ୍କ ପରେ ଧଳା ଆତଙ୍କ ଆସିଲା । ୧୫ ମାସ ପରେ ଅକ୍ଟୋବର ୧୭୯୫ରେ କନଭେନ୍‌ସନ ଭାଙ୍ଗିଗଲା ଏବଂ ପାଞ୍ଚଜଣ ଥିବା ଗୋଟିଏ ଡିରେକ୍ଟୋରୀ ସରକାର ହେଲା । ଏହା ନିର୍ଦ୍ଦିଷ୍ଟରୂପେ ଏକ ଦୁର୍ନେଯ୍ୟା ସରକାର ଥିଲା ଏବଂ ସାଧାରଣ ଲୋକଙ୍କୁ ଦବେଇବାକୁ ଏହା ଚେଷ୍ଟା କରିଥିଲା । ଡିରେକ୍ଟୋରୀ ଚାରି ବର୍ଷ ଫ୍ରାନ୍ସକୁ ଶାସନ କଲା ଏବଂ ଆଭ୍ୟନ୍ତରୀଣ ଗଣ୍ଡଗୋଳ ସତ୍ତ୍ୱେ ପ୍ରଜାତନ୍ତ୍ରର ଏପରି ଶକ୍ତି ଓ ପ୍ରତିଷ୍ଠା ଥିଲା ଯେ ସେମାନେ ବିଦେଶୀ ଯୁଦ୍ଧରେ ବିଜୟୀ ହୋଇଥିଲେ । ଏହା ବିରୁଦ୍ଧରେ କିଛି ବିଦ୍ରୋହ ହୋଇଥିଲା, ମାତ୍ର ତାହା ଦବାଇ ଦିଆଗଲା । ପ୍ରଜାତନ୍ତ୍ର ସେନାର ଜଣେ ସୈନ୍ୟ ନେପୋଲିୟନ ବୋନାପାର୍ଟ ସବୁ ଦବାଇ ଦେଲେ । ସେ ପାରିସ ଜନତା ଉପରେ ଗୁଳି କରିବାକୁ ସାହସ କଲେ ଓ ଅନେକଙ୍କୁ ହତ୍ୟା କଲେ । (ଏହି ହେଉଛି ବିଖ୍ୟାତ "ହୁଇଫ୍ ଅଫ୍ ଗ୍ରେପ୍ ଶଟ୍") । ଯେତେବେଳେ ପୁରୁଣା ବିପ୍ଳବୀ ସେନା ମଧ୍ୟ ଫ୍ରାନ୍ସରେ ସାଧାରଣ ଜନତାଙ୍କ ଉପରେ ଗୁଳି କରିବାରେ ବ୍ୟବହୃତ ହୋଇପାରିଲେ, ସେଥିରେ ଆଉ ଯେ ବିପ୍ଳବର ଗନ୍ଧ ମାତ୍ର ନ ଥିଲା, ଏହା ଜଣାଶୁଣା କଥା ।

ଏହିରୂପେ ବିପ୍ଳବ ଶେଷ ହେଲା ଏବଂ ଏହା ସଙ୍ଗେ ଆଦର୍ଶବାଦୀଙ୍କ ଉଜ୍ଜ୍ୱଳ ସ୍ୱପ୍ନ ଓ ଗରିବମାନଙ୍କର ଆଶା ବି ମଉଳି ଗଲା । ତଥାପି ଏହା ଯେଉଁ ଉଦ୍ଦେଶ୍ୟ ଲାଭ ପାଇଁ ଆରମ୍ଭ ହୋଇଥିଲା, ତାହା ବହୁ ପରିମାଣରେ ଲାଭ କଲା । ପ୍ରତି-ବିପ୍ଳବୀ ଅବସ୍ଥାରେ ପୁରୁଣା ଆଉ ଅର୍ଦ୍ଧଦାସତ୍ୱ ଫେରି ଆସିପାରିଲା ନାହିଁ । ଏପରିକି ବୋର୍ବନ୍ ବଂଶର ରାଜାମାନେ (ଫରାସୀ ରାଜବଂଶ ଥିଲା ବୋର୍ବନ) ଯେତେବେଳେ ବି ଫେରି ଆସିଲେ ସେମାନେ କୃଷକମାନଙ୍କ ଭିତରେ ବଣ୍ଟା ଯାଇଥିବା ଜମି ପୁଣି ନେଇଯାଇ ପାରିଲେ ନାହିଁ । ଆଗ ଅପେକ୍ଷା ସହରର ଓ ମଫସଲର ସାଧାରଣ ଲୋକ ଅଧିକ ଉନ୍ନତ ଅବସ୍ଥାରେ ରହିଲେ । ବାସ୍ତବିକ ଆତଙ୍କ ବେଳେ ମଧ୍ୟ ସେ ବିପ୍ଳବ ପୂର୍ବାପେକ୍ଷା ଭଲ ଅବସ୍ଥାରେ ଥିଲେ । ଆତଙ୍କ ତାଙ୍କ ଉପରେ ହୋଇ ନ ଥିଲା । ଉଚ୍ଚଶ୍ରେଣୀଙ୍କ ଉପରେ ହୋଇଥିଲା । ଅବଶ୍ୟ ଶେଷବେଳକୁ କେତେକ ଗରିବ ଲୋକ ମଧ୍ୟ ଏଥିଯୋଗୁଁ କଷ୍ଟ ଭୋଗିଥିଲେ ।

ବିପ୍ଳବର ପତନ ହେଲା; କିନ୍ତୁ ପ୍ରଜାତନ୍ତ୍ର ଭାବ ସାରା ଇଉରୋପରେ ପ୍ରସାର ହେଲା ଏବଂ ମଣିଷର ଅଧିକାର ଘୋଷଣାର ଯେଉଁ ନୀତି ବିଧାନ କରାଯାଇଥିଲା, ତାହାର ମଧ୍ୟ ପ୍ରଚାର ହେଲା ।

## ୧୦୩ : ସରକାରଗୁଡ଼ିକର ରୀତିନୀତି

ଅକ୍ଟୋବର ୨୭, ୧୯୩୨

ମୁଁ ଦୁଇ ସପ୍ତାହ ହେଲା ଲେଖି ନାହିଁ । ମୁଁ ଟିକିଏ ଢିଲା ହୋଇଯାଇଛି । ମୋ ଗପ ସରିଯାଉଛି ବୋଲି ଭାବି ମୁଁ ଟିକିଏ ପଛେଇ ଯାଉଛି । ଆମେ ୧୮ଶ ଶତାବ୍ଦୀ ଶେଷରେ ପହଞ୍ଚିଛେ । ୧୯ଶ ଶତାବ୍ଦୀର ଏକଶହ ବର୍ଷ ଅମେ ତଲାସ କରିବା ଏବଂ ତାପରେ ବିଂଶ ଶତାବ୍ଦୀର ଅଉ ୩୨ ବର୍ଷ ଗଲେ ଆମେ ବର୍ତ୍ତମାନ ଅବସ୍ଥାରେ ପହଞ୍ଚିବା । କିନ୍ତୁ ଅବଶିଷ୍ଟ ୧୩୨ ବର୍ଷ ବିଷୟରେ ଅନେକ କଥା କହିବାର ଅଛି । ଅଳ୍ପଦିନର ଘଟଣା ହୋଇଥିବାରୁ ଆମ ଆଗରେ ଏଗୁଡ଼ିକ ବଡ଼ ହୋଇଛି । ଅମ ମନରେ ଏହା ଭରି ରହିଛି ଏବଂ ଆଗ ଘଟଣାଗୁଡ଼ିକ ଅପେକ୍ଷା ଏଗୁଡ଼ିକ ଆମକୁ ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଧ ହେଉଛି । ଆଜି ଆମେ ଯାହା ଚତୁର୍ଦ୍ଦିଗରେ ଦେଖିପାରୁଛେ, ତାହାର ମୂଳ ରହିଛି ଏହି ବର୍ଷମାନଙ୍କରେ ଏବଂ ଗତ ଶତାବ୍ଦୀ ଓ ତାହା ପୂର୍ବବର୍ଷମାନଙ୍କରେ ଘଟିଥିବା ଘଟଣାଗୁଡ଼ିକର ବିବଡ଼ ଜଙ୍ଗଲ ଭିତରେ ତତେ ପଥ ଦେଖାଇଦେବା କିଛି ମୋ ପକ୍ଷରେ ସହଜ କଥା ନୁହେଁ । ସମ୍ଭବତଃ ଏହି କାରଣରୁ ମୁଁ ପଛଉଛି । ଶେଷକୁ ଯେତେବେଳେ ମଣିଷଜୀବନର କାହାଣୀ ୧୯୩୨

ମସିହା ପର୍ଯ୍ୟନ୍ତ ମୁଁ ବର୍ଣ୍ଣନା କରିବି, ସେତେବେଳେ କ'ଣ କରିବି ଭାବି ଆଶ୍ଚର୍ଯ୍ୟ ଲାଗେ । ସେତେବେଳକୁ ଅତୀତ ବର୍ତ୍ତମାନରେ ଲୀନ ହୋଇଯାଏ ଏବଂ ଭବିଷ୍ୟତରେ ଗ୍ରୀଷ୍ମ ତାର ଗତିରୋଧ କରେ । ସେତେବେଳେ ମୁଁ ତତେ ବା କ'ଣ ଲେଖିବି ? ସେତେବେଳେ କେଉଁ ଛଳନା ଧରି ମୁଁ କଲମ ହାତରେ ଧରି ବସିବି ଏବଂ ତୋ କଥା ଭାବି କଳ୍ପନା କରିବି ଯେ ତୁ ମୋ ପାଖରେ ବସି ମତେ ଅନେକ ପ୍ରଶ୍ନ ପଚାରୁଛୁ ଯାହାର ଉତ୍ତର ମତେ ଦେବାକୁହିଁ ହେବ ।

ଫରାସୀ ବିପ୍ଳବ ବିଷୟରେ ମୁଁ ତିନୋଟି ଚିଠି ଲେଖିଛି । ଫ୍ରାନ୍ସର ପାଞ୍ଚବର୍ଷ ଇତିହାସର ସଂକ୍ଷିପ୍ତ ବିବରଣୀ ପୂର୍ଣ୍ଣ ତିନୋଟି ଦୀର୍ଘ ଚିଠି । ଆମର ଏହି ଯୁଗ ଭ୍ରମଣରେ ଶତାବ୍ଦୀ ଏକ ଏକ ପାଦରେ ଡେଇଁ ଚାଲିଛେ ଏବଂ ମହାଦେଶ ପ୍ରତି ଈଷତ୍ ଦୃଷ୍ଟି ପକାଇ ଦେଖିଛେ ; କିନ୍ତୁ ଫ୍ରାନ୍ସରେ ୧୭୮୯ ଓ ୧୭୯୪ ବର୍ଷ ପର୍ଯ୍ୟନ୍ତ ଅମେ ଦୀର୍ଘକାଳ ଅଟକିଯାଇଛେ; ତଥାପି ତୁ ଜାଣିଲେ ଆଶ୍ଚର୍ଯ୍ୟ ହେବୁ ଯେ ମୁଁ ସଂକ୍ଷେପରେ ବର୍ଣ୍ଣନା କରିବାକୁ ଖୁବ୍ ଚେଷ୍ଟା କରିଛି ; କାରଣ ସେ ବିଷୟ ମୋ ମନ ଅଧିକାର କରିଥିଲା ଏବଂ ମୋ କଲମ ଦୌଡ଼ିବାକୁ ଚାହୁଁଥିଲା । ଇତିହାସ ଦୃଷ୍ଟିରେ ଫରାସୀବିପ୍ଳବ ମହତ୍ତ୍ୱପୂର୍ଣ୍ଣ । ଏହା ଏକ ଯୁଗ ସମାପ୍ତିର ସଙ୍କେତ ଦିଏ ଏବଂ ଏଇଠୁ ଆଉ ଗୋଟିଏ ଆରମ୍ଭ ହୁଏ ; କିନ୍ତୁ ଏହାର ନାଟକୀୟ ରୂପହିଁ ଆମର ମନ ମୁଗ୍ଧ କରେ ଏବଂ ଏହା ଆମ ସମସ୍ତିଙ୍କି ଅନେକ କଥା ଶିକ୍ଷା ଦିଏ । ଆଜି ଦୁନିଆ ପୁଣି ଦୋହଲୁଛି ଏବଂ ଆମେ ବିରାଟ ପରିବର୍ତ୍ତନର ପୂର୍ବ ଅବସ୍ଥାରେ ରହିଛେ । ଯେତେ ଶାନ୍ତିପୂର୍ଣ୍ଣ ହେଉ ପଛକେ ଆମ ନିଜ ଦେଶରେ ଆମେ ଏକ ବିପ୍ଳବ ମଝିରେ ବାସ କରୁଛେ । ତେଣୁ ଫରାସୀ ବିପ୍ଳବ ଏବଂ ଆମ ନିଜ ଅମଳରେ ଓ ଆଖି ଆଗରେ ରୁଷରେ ଘଟିଥିବା ବିପ୍ଳବରୁ ଆମେ ଅନେକ କଥା ଶିଖିପାରିବା । ଏହି ଦୁଇ ବିପ୍ଳବ ପରି ପ୍ରକୃତ ଜନବିପ୍ଳବ ଜୀବନର ନଗ୍ନ ବାସ୍ତବତା ଉପରେ ତୀବ୍ର ଆଲୋକ ପକାଏ । ବିଜୁଳି ଆଲୁଅ ପରି ସମଗ୍ର ଲୁକ୍କାୟିତ ଦୃଶ୍ୟ ବିଶେଷତଃ ଅନ୍ଧାରୁଆ ସ୍ଥାନ ସବୁ ଦର୍ଶାଇଦିଏ । ଅନ୍ତତଃ କିଛିକ୍ଷଣ ଲାଗିଲକ୍ଷ୍ୟ ସ୍ପଷ୍ଟ ଦୃଷ୍ଟିଗୋଚର ହୁଏ ଏବଂ ଖୁବ୍ ନିକଟ ହେଲା ପରି ବୋଧହୁଏ । ବିଶ୍ୱାସ ଓ ଶକ୍ତି ଜାତ ହୁଏ । ସନ୍ଦେହ ଓ ଦ୍ୱିଧା ଦୂର ହୋଇଯାଏ । କଳ୍ପିତ ଜଗତରେ ଅପେକ୍ଷାକୃତ ନିକୃଷ୍ଟବସ୍ତୁରେ ସନ୍ତୁଷ୍ଟ ହେବା ପ୍ରଶ୍ନ ଉଠେ ନାହିଁ । ବିପ୍ଳବ ସୃଷ୍ଟି କରୁଥିବା ଲୋକେ ବାଁ ଡାହାଣ କୁଆଡ଼କୁ ନ ଅନାଇ ତାର ପରି ସିଧା ଆଗକୁ ମାଡ଼ି ଚାଲନ୍ତି; ସେମାନଙ୍କର ଦୃଷ୍ଟି ଯେତେ ସରଳ ଓ ତୀକ୍ଷ୍ଣ ହୁଏ, ବିପ୍ଳବ ସେତେ ଦୂର ଆଗକୁ ମାଡ଼ିଯାଏ ; କିନ୍ତୁ ଏହା କେବଳ ବିପ୍ଳବର ଉଚ୍ଚସ୍ତରରେ ଘଟେ, ଯେତେବେଳେ କି ନେତାମାନେ ପର୍ବତ ଚୂଳରେ ଥାନ୍ତି ଏବଂ ଜନସାଧାରଣ ପର୍ବତ ପାର୍ଶ୍ୱରେ ଗତି କରୁଥାନ୍ତି । କିନ୍ତୁ ହାୟ ! ଏପରି ବେଳ ଆସି ପହଞ୍ଚେ ଯେ ତାଙ୍କୁ ପର୍ବତରୁ ତଳର ଅନ୍ଧକାରାଚ୍ଛନ୍ନ ଉପତ୍ୟକାକୁ ଓହ୍ଲାଇ ଆସିବାକୁ ପଡ଼େ ଏବଂ ବିଶ୍ୱାସ ଅନ୍ଧାରୁଆ ହୋଇଯାଏ ଓ ଶକ୍ତି ହ୍ରାସ ଘଟେ ।

ଯାଗ୍ରି ଜୀବନ ନିର୍ବାସନରେ କଟାଇ ବୃଦ୍ଧ ଭଲ୍‌ଟେୟାର ୧୭୭୮ରେ ମରିବାପାଇଁ ପ୍ୟାରିସକୁ ଫେରି ଆସିଲେ । ସେତେବେଳକୁ ତାଙ୍କ ବୟସ ୮୨ ବର୍ଷ । ପ୍ୟାରିସର ଯୁବକମାନଙ୍କୁ ଭାଷଣ ଦେଇ ସେ କହିଥିଲେ; "ଯୁବକମାନେ ଭାଗ୍ୟବାନ ; ସେମାନେ ମହତ୍ ଜିନିଷ ସବୁ ଦେଖିପାରିବେ ।" ବାସ୍ତବିକ୍ ସେମାନେ ମହତ୍ ଜିନିଷ ସବୁ ଦେଖି ପାରିଲେ ଏବଂ ସେଥିରେ ଭାଗ ନେଲେ; କାରଣ ୧୧ ବର୍ଷ ପରେ ବିପ୍ଳବ ଘଟିଲା । ଏହା ଅନେକ ଦିନ ଅପେକ୍ଷା କରି ରହିଥିଲା । "ମୁଁ ସବୁଠାରୁ ବଡ଼" ଏକଥା ୧୭ଶ ଶତାବ୍ଦୀରେ ମହାନ୍ ସମ୍ରାଟ ଚତୁର୍ଦ୍ଦଶ ଲୁଇ କହିଥିଲେ । ଅଷ୍ଟାଦଶ ଶତାବ୍ଦୀରେ ତା' ପରେ ପଞ୍ଚଦଶ ଲୁଇ କହିଲେ, "ମୋ ପରେ ଦୁନିଆ ଶେଷ ପାଇବ ।" ଏହି ନିମନ୍ତ୍ରଣ ପରେ ପ୍ରଳୟ ଆସିଲା ଓ ଷୋଡ଼ଶ ଲୁଇ ଏବଂ ତାର ସାଙ୍ଗସାଥୀ ସମସ୍ତଙ୍କି ଭସାଇ ନେଲା । ସୁବାସିତ ପଗଡ଼ି ଓ ରେଶମୀ ପାଇଜାମା ପିନ୍ଧା ସାମନ୍ତଙ୍କ ପରିବର୍ତ୍ତେ "ସାନ୍‌ସ୍ କ୍ଲୋଟସ୍" ଅର୍ଥାତ୍ ବିନା ପାଇଜାମା ପିନ୍ଧା ଲୋକେ ସମ୍ମୁଖକୁ ଆସିଲେ ଏବଂ ଫ୍ରାନ୍‌ସର ପ୍ରତ୍ୟେକ ଲୋକ ହେଲେ ନାଗରିକ ("ସିଟୋୟେନ" ବା "ସିଟୋୟେନ୍") । ନୂତନ ପ୍ରଜାତନ୍ତ୍ର ଦୁନିଆ ଆଗରେ "ସ୍ୱାଧୀନତା ସମାନତା ଓ ଭ୍ରାତୃତ୍ୱ" ଏହି ମନ୍ତ୍ର ଘୋଷଣା କଲା ।

ବିପ୍ଳବ ବେଳେ ଆତଙ୍କ ପ୍ରଚାରିତ ହୋଇଥାଏ । ବିଶେଷ ବିପ୍ଳବୀ ପଞ୍ଚାୟତ (Special revolutionary tribunal) ନିଯୁକ୍ତିଠାରୁ ରବ ସ୍ପିୟରଙ୍କ ପତନ ପର୍ଯ୍ୟନ୍ତ ୧୬ ମାସ ଭିତରେ ପ୍ରାୟ ଚାରି ହଜାର ଲୋକଙ୍କୁ ଗିଲୋଟିନ୍ ଦିଆଗଲା । ଏହି ସଂଖ୍ୟା ଟିକିଏ ବେଶି ଏବଂ ଅନେକ ନିର୍ଦ୍ଦୋଷ ଲୋକ ବି ଫାସି ଖୁଣ୍ଟରେ ଝୁଲିଥିବେ ବୋଲି ଭାବିଲା ବେଳକୁ ବଡ଼ ଭୟ ଓ ଦୁଃଖ ଲାଗେ । ତଥାପି କେତୋଟି କଥା ମନେ ରଖିଲେ ଆମେ ଫରାସୀ ଆତଙ୍କକୁ ଠିକ୍ ଦୃଷ୍ଟିରୁ ଜାଣିପାରିବା । ପ୍ରଜାତନ୍ତ୍ରକୁ ଶତ୍ରୁ, ବିଶ୍ୱାସଘାତକ ଓ ଗୁପ୍ତଚରମାନେ ଘେରି ରହିଥିଲେ ଏବଂ ଫାସି ପାଉଥିବା ଲୋକଙ୍କ ଭିତରୁ ଅଧିକାଂଶ ଜଣାଶୁଣା ଶତ୍ରୁ । ସେମାନେ ପ୍ରଜାତନ୍ତ୍ର ଧ୍ୱଂସ କରିବାପାଇଁ ଲାଗିପଡ଼ିଥିଲେ । ଆତଙ୍କ କାଳର ଶେଷ ବେଳକୁ ନିର୍ଦ୍ଦୋଷ ଲୋକ ଦୋଷୀଙ୍କ ସହ ଶାସ୍ତି ଭୋଗିଲେ । ଭୟ ମନରେ ପ୍ରବେଶ କଲେ ଦୃଷ୍ଟି ଆଛନ୍ନ ହୋଇଯାଏ ଏବଂ ଦୋଷୀ ଓ ନିର୍ଦ୍ଦୋଷ ବାଛିବା କଷ୍ଟକର ହୋଇପଡ଼େ । ଫରାସୀ ପ୍ରଜାତନ୍ତ୍ରକୁ ଅତି ସଙ୍କଟବେଳେ ବିରୁଦ୍ଧ ଦଳ ଏବଂ * ଲଫେୟେତଙ୍କ ପରି ପ୍ରଧାନ ସେନାପତିମାନଙ୍କ ବିଶ୍ୱାସଘାତକତାର ମଧ୍ୟ ସମ୍ମୁଖୀନ ହେବାକୁ ପଡ଼ିଥିଲା । ନେତାମାନଙ୍କ ପକ୍ଷରେ ମନ ସ୍ଥିର ରଖି ନ ପାରିବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ । ସେମାନେ ବିନା ବିଚାରରେ ଏଣେତେଣେ ଚାରିଆଡ଼େ ଆଘାତ କରିବାକୁ ଲାଗିଲେ ।

---

* ଫ୍ରାନ୍‌ସ ସେନାପତି ଓ ରାଜନୀତିଜ୍ଞ । ଆମେରିକା ସ୍ୱାଧୀନତା ସଂଗ୍ରାମରେ ଇଂଲଣ୍ଡ ବିରୁଦ୍ଧରେ ଲଢ଼ାଇ କରିଥିଲେ । ୧୭୮୯ରେ ଫ୍ରାନ୍‌ସ ବିପ୍ଳବର ନେତା ଥିଲେ, ୧୭୯୧ରେ ପଳାଇଗଲେ ଏବଂ ପୁଣି ନେପୋଲିଅନ୍‌ଙ୍କ ବେଳେ ଆସିଲେ ।

ଏଚ୍. ଜି. ୱେଲସ୍ ତାଙ୍କ ଲେଖା ଇତିହାସରେ ଯେପରି କହିଛନ୍ତି—ଏହି ସମୟରେ ଇଂଲଣ୍ଡ, ଆମେରିକା ଓ ଅନ୍ୟ ଦେଶମାନଙ୍କରେ କ'ଣ ଘଟୁଥିଲା, ମନେ ରଖିବା ଭଲ । ଫୌଜଦାରୀ ଆଇନ ବିଶେଷତଃ ସମ୍ପତ୍ତି ରକ୍ଷା ନିମନ୍ତେ ବଡ଼ ବର୍ବର ଢଙ୍ଗର ଥିଲା ଏବଂ ସାମାନ୍ୟ ଅପରାଧ ସକାଶେ ଲୋକେ ଫାଶି ପାଉଥିଲେ । ଆଉ କେତେକ ସ୍ଥାନରେ ଏବେ ସୁଦ୍ଧା ସରକାର ଏପରି କରୁଥିଲା । ୱେଲସ୍ କହନ୍ତି, ଏହି ସମୟରେ ଆତଙ୍କ କାଳରେ ଫ୍ରାନ୍ସରେ ଯେତେ ଲୋକ ଫାଶି ପାଇଥିଲେ, ତାହା ଅପେକ୍ଷା ଅଧିକ ଲୋକ ଏହିପରି ଭାବରେ ଇଂଲଣ୍ଡ ଓ ଆମେରିକାରେ ଫାଶିରେ ଝୁଲିଥିଲେ ।

ଏହି ଯୁଗର ଦାସବାଣିଜ୍ୟର ଭୀଷଣ ନିଷ୍ଠୁରତା ଓ ଅମାନୁଷିକତା ବିଷୟ ଚିନ୍ତା କର । ଯୁଦ୍ଧ, ବିଶେଷତଃ ଆଧୁନିକ ଯୁଦ୍ଧ କଥା ଭାବ, କିପରି ଲକ୍ଷ ଲକ୍ଷ ଯୁବକଙ୍କୁ ଯୌବନର ଆରମ୍ଭରେ ବଳିଦାନ କରାଯାଏ । ଆମ୍ଭର ପାଖକୁ ଆସି ଆମ ନିଜ ଦେଶର ଏବର ଘଟଣା ସବୁ ଦେଖ । ୧୮ ବର୍ଷ ପୂର୍ବେ ଏପ୍ରିଲ ମାସର ଏକ ସନ୍ଧ୍ୟାରେ ବର୍ଷନ୍ତ ଉତ୍ସବ ଦିବସରେ ଅମୃତସର ସହରର ଜାଲିଅନାୱାଲାବାଗରେ ଶହ ଶହ ଲୋକଙ୍କୁ ହତ୍ୟା କରାଗଲା ଏବଂ ହଜାର ହଜାର ଗୁରୁତର ଭାବରେ ଆହତ ହେଲେ । ଯେଉଁସବୁ ଷଡ଼ଯନ୍ତ୍ର, ମକଦ୍ଦମା, ସ୍ପେଶାଲ ପଞ୍ଚାୟତ ଓ ଅଡିନାନ୍ସ ସବୁ ହୋଇଛି, କେଉଁଥିପାଇଁ ? ଏହା ସବୁ ଲୋକଙ୍କୁ ଆତଙ୍କିତ ଓ ଜବରଦସ୍ତି କରିବାର ଉଦ୍ୟମ । ଦମନ ଓ ଆତଙ୍କବାଦର ବାହୁଲ୍ୟ ହିଁ ସରକାରର ନିଜ ଭୟର ମାପଯନ୍ତ୍ର । ପ୍ରତ୍ୟେକ ସରକାର—ପ୍ରତିଗାମୀ ବା ବିପ୍ଳବୀ, ବିଦେଶୀ କିମ୍ବା ସ୍ୱଦେଶୀ ଯାହା ହୋଇଥାଉ ନା କାହିଁକି ତାର ନିଜର ସ୍ଥିତି ଯେତେବେଳେ ଦୋହଲିଯିବାର ଭୟ ହୁଏ, ସେତେବେଳେ ଆତଙ୍କବାଦ ଆରମ୍ଭ କରେ । ପ୍ରତିଗାମୀ ସରକାର କେତେକ ସୁବିଧାଭୋଗୀ ଲୋକଙ୍କ ପକ୍ଷରୁ ଜନସାଧାରଣଙ୍କ ବିରୁଦ୍ଧରେ ତାହା କରେ; ବିପ୍ଳବୀ ସରକାର ଜନସାଧାରଣଙ୍କ ପକ୍ଷରୁ ମୁଷ୍ଟିମେୟ ସୁବିଧାଭୋଗୀଙ୍କ ବିରୁଦ୍ଧରେ ଲାଗେ । ବିପ୍ଳବୀ ସରକାର ଅଧିକ ସ୍ପଷ୍ଟବାଦୀ ଓ ସିଧାବାଟରେ ଯାଏ । ଏହା ପ୍ରାୟ କର ଓ କଠିନ ହୁଏ; କିନ୍ତୁ ଏଥିରେ ପରାସ୍ତ ହେବା ଭୟରେ ଏଡ଼ିଦେବାର ଚେଷ୍ଟା ବା ଶଠତା ନ ଥାଏ । ପ୍ରତିଗାମୀ ସରକାର ଏକ ଶଠତାପୂର୍ଣ୍ଣ ବାୟୁମଣ୍ଡଳ ଭିତରେ ଥାଏ; କାରଣ ଏହା ଧରାପଡ଼ିଗଲେ ଆଉ ସେ ତିଷ୍ଠି ପାରିବ ନାହିଁ । ସେ ସ୍ୱାଧୀନତା କଥା କହେ ଏବଂ ତା ପକ୍ଷରେ ଏହି ସ୍ୱାଧୀନତାର ଅର୍ଥ ହେଉଛି ନିଜ ଇଚ୍ଛାନୁସାରେ କର୍ମ କରିବା ପାଇଁ ପାଇବା ସ୍ୱାଧୀନତା । ଏହା ନ୍ୟାୟ କଥା ଉଠାଏ; ମାତ୍ର ଅନ୍ୟମାନେ ଧ୍ୱଂସ ହୋଇଯାଆନ୍ତୁ ପଛକେ, ଯେଉଁ ପ୍ରଚଳିତ ପ୍ରଣାଳୀରେ ନିଜର ଲାଭ ହେଉଥାଏ, ତାହାକୁ ରକ୍ଷା କରିବା ହିଁ ଏହା ପକ୍ଷରେ ପ୍ରକୃତ ନ୍ୟାୟ ବୋଲି ବିବେଚିତ । ସର୍ବୋପରି ଏହା ଆଇନ ଓ ଶୃଙ୍ଖଳା କଥା ଉଠାଏ ଏବଂ ଏହି ଶବ୍ଦ କାଳି ତଳେ ଲୋକଙ୍କୁ ଗୁଳି କରେ, ହତ୍ୟା କରେ, ବନ୍ଦୀ କରେ, ମୁଖବନ୍ଦ କରେ ଏବଂ ଅନ୍ୟ ସବୁ ପ୍ରକାର ବେଆଇନ ଓ ବିଶୃଙ୍ଖଳକାର୍ଯ୍ୟମାନ କରେ । "ଆଇନ ଓ ଶୃଙ୍ଖଳା" ନାମରେ ଆମର ହଜାର ହଜାର ଭାଇଙ୍କୁ ସ୍ପେଶାଲ ଟ୍ରିବ୍ୟୁନାଲରେ ବିଚାର ହୋଇ ମୃତ୍ୟୁଦଣ୍ଡ ହୋଇଛି । ଏହି

ନାମରେ ଆଜକୁ ଅଢ଼େଇ ବର୍ଷ ପୂର୍ବେ ଏପ୍ରିଲ ମାସର ଏକ ଦିବସରେ ପେଶାବାରରେ ଆମର ସାହସୀ ପଠାଣ ଭାଇଙ୍କି ବନ୍ଧୁକ ଫଏାରରେ ତୋପ ଚଳାଇ ମାରିଦିଆଗଲା । ସେମାନେ ସମ୍ପୂର୍ଣ୍ଣି ନିରସ୍ତ୍ର ଥିଲେ । ଏହି "ଆଇନ ଓ ଶୃଙ୍ଖଳା" ଦୁହାଇ ଦେଇ ବ୍ରିଟିଶ ଉଡ଼ାଜାହାଜ ବାହିନୀ ଇରାକ ଓ ଆମ ସୀମାନ୍ତ ପ୍ରଦେଶ ଗ୍ରାମମାନଙ୍କରେ ବୋମା ପକାଉଛି ଏବଂ ଅବାଧ୍ୟଭାବରେ ପୁରୁଷ, ସ୍ତ୍ରୀ ଓ ଛୋଟ ବାଳକବାଳିକାମାନଙ୍କୁ ବଧ କରୁଛି ବା ତାଙ୍କୁ ସାରାଜୀବନ ପାଇଁ ପଙ୍ଗୁ କରି ପକାଉଛି । ଲୋକେ କାଳେ ଉଡ଼ାଜାହାଜ ଆସିବା ଦେଖି ପଳାଇଯିବେ, ସେଥିପାଇଁ ଏକ ବଦମାସୀ ବୁଦ୍ଧି ପ୍ରୟୋଗ କରାଯାଇ "ଟାଇମ ଡିଲେଡ଼ ବମ୍" (ଡେରିରେ ଫୁଟିବା ବୋମା) ବ୍ୟବହାର କରାଯାଉଛି । ଏହା କୌଣସି କ୍ଷତି ନ କରି ତଳେ ପଡ଼େ ଓ କେତେକ କ୍ଷଣ ପର୍ଯ୍ୟନ୍ତ ଫୁଟେ ନା । ଗ୍ରାମର ନରନାରୀ ବିପଦ ଅତିକ୍ରମ ହୋଇଗଲାଣି ଭାବି ନିଜ ଘରକୁ ଫେରିଆସନ୍ତି । ଅଳ୍ପକ୍ଷଣ ପରେ ବୋମା ଫୁଟେ, ବଧ କରେ ଓ ଧ୍ୱଂସ କରେ ।

ଦିନକୁ ଦିନ ଲକ୍ଷ ଲକ୍ଷ ଲୋକ ଯେ ଅର୍ଦ୍ଧାହାର ଅବସ୍ଥାରେ ପଡ଼ୁଛନ୍ତି, ସେକଥା ଭାବି ଦେଖ । ଆମ ଚାରିଆଡ଼େ ଦୁର୍ଦ୍ଦଶା ଦେଖି ଆମେ ସେଥିରେ ଅଭ୍ୟସ୍ତ ହୋଇଯାଉ । ଆମେ ଭାବୁ ଯେ ଶ୍ରମିକ ଓ କୃଷକମାନେ ଆମ ଅପେକ୍ଷା ଶକ୍ତ ଏବଂ କଷ୍ଟ ସେମାନଙ୍କୁ ବେଶି ବାଧେ ନା । ଆମ ନିଜର ବିବେକଦଂଶନକୁ ଶାନ୍ତ କରିବାର ଏହା ଏକ ବୃଥା ଯୁକ୍ତି । ବିହାରରେ ଝରିଆ କୋଇଲା ଖଣିକୁ ମୁଁ ଯାଇଥିଲି । ସେଠି ଭୂମିତଳେ ଖୁବ୍ ଭିତରେ ଲମ୍ବା କଳା ଓ ଅନ୍ଧାର କୋଇଲା ସୁଡ଼ଙ୍ଗ ଭିତରେ ପୁରୁଷ ସ୍ତ୍ରୀ କାମ କରୁଥିବା ଦେଖି ମୁଁ ଯେପରି କ୍ଷୁବ୍ଧ ହୋଇଥିଲି, ତାହା ଆଦୌ ଭୁଲିପାରିବି ନାହିଁ । ଖଣି ମାଲିକଙ୍କ ପାଇଁ ଦୈନିକ ଆଠ ଘଣ୍ଟା ଶ୍ରମ ନିର୍ଦ୍ଦିଷ୍ଟ କରିଯାଉ ବୋଲି ଦାବି ହୁଏ । କେତେକ ଏଥିରେ ମଧ୍ୟ ଆପତ୍ତି କରନ୍ତି ଏବଂ ମନେ କରନ୍ତି ଯେ ଏମାନଙ୍କଠାରୁ ଆହୁରି ଅଧିକ ବେଳ ପର୍ଯ୍ୟନ୍ତ କାମ ଆଦାୟ କରି ହେବ । ମୁଁ ଯେତେବେଳେ ଏପରି ଯୁକ୍ତି ପଢ଼େ ବା ଶୁଣେ, ସେତେବେଳେ ଭୂମିତଳର ସେହି ଅନ୍ଧକାର ନର୍କକଥା ମୋର ମନେ ପଡ଼େ । ସେଠି ଅଠମିନିଟ ରହିବା ମୋ ପକ୍ଷରେ କାଠିକର ପାଠ ହୋଇଥିଲା ।

ଫାସିସ୍ଟ ଆତଙ୍କ ଏକ ଭୟାନକ କଥା । ତଥାପି ଦାରିଦ୍ର୍ୟ ଓ ବେକାରୀର ମୂଳ ଦୋଷ ସହିତ ତୁଳନା କଲେ ଏହା ଅତି ସାମାନ୍ୟ ପରି ମନେହୁଏ । ଆମର ପ୍ରଚଳିତ ରାଜନୈତିକ ଓ ସାମାଜିକ ପ୍ରଣାଳୀରେ ଥରକୁ ଥର ଯୁଦ୍ଧ ହେଲୁ ଯାହା ଦେବାକୁ ହୁଏ ଏବଂ ଆମ ସମାଜରେ ଯେତେ ଦୋଷ ଅଛି, ତାହା ତୁଳନାରେ କୌଣସି ସାମାଜିକ ବିପ୍ଳବରେ କ୍ଷତି ଯେତେ ବେଶି ହେଉ ପଛକେ, ଅତି କମ ବୋଧ ହୁଏ । ଅନେକ ଉପାଧିଧାରୀ ଓ ଧନୀ ଲୋକ ଶିକାର ହୋଇଥିବାରୁ ଫାସିସ୍ଟ ଆତଙ୍କ ସେମାନଙ୍କ ଆଗରେ ଏତେ ବଡ଼ ଦେଖାଯାଉଛି ଏବଂ ସୁବିଧାଭୋଗୀ ଶ୍ରେଣୀଙ୍କୁ ଆମେ ଏତେ ସମ୍ମାନ ଦେଖାଇ ଆସିଛୁ ଯେ ସେମାନେ ଦୁଃଖରେ ପଡ଼ିଲା ମାତ୍ରକେ ଆମର ସହାନୁଭୂତି ତାଙ୍କ ଆଡ଼କୁ ଧାଇଁଯାଏ । ଅନ୍ୟମାନଙ୍କ ପରି ସେମାନଙ୍କ

ପ୍ରତି ସହାନୁଭୂତି ଦେଖାଇବା ଭଲ; କିନ୍ତୁ ଏହା ସଙ୍ଗେ ସଙ୍ଗେ ମନେ ରଖିବା ଉଚିତ ଯେ ସେମାନଙ୍କ ସଂଖ୍ୟା ମୁଷ୍ଟିମେୟ । ଆମେ ତାଙ୍କର ମଙ୍ଗଳ କାମନା କରିପାରୁ; କିନ୍ତୁ ବାସ୍ତବରେ ଜନତାହିଁ ହେଲେ ଅସଲ ଏବଂ ମୁଷ୍ଟିମେୟଙ୍କ ପାଇଁ ଆମେ ଅଧିକ ସଂଖ୍ୟାକୁ ଗୁରୁତ୍ୱ ଦେଇ ପାରିବା ନାହିଁ । ରୁଷୋ କହିଛନ୍ତି—"ଜନସାଧାରଣ ସମଷ୍ଟିହିଁ ମାନବ ଜାତି; କିନ୍ତୁ ଜନତା ଛଡ଼ା ଅନ୍ୟଙ୍କ ସଂଖ୍ୟା ଏତେ କମ ଯେ ତାଙ୍କୁ ଗଣି କଷ୍ଟ ହେବା ଉଚିତ ନୁହେଁ ।"

ଏହି ଚିଠିରେ ନେପୋଲିୟନଙ୍କ କଥା କହିବା ମୋର ଇଚ୍ଛା ଥିଲା; କିନ୍ତୁ ମୋ ମନ ବୁଲୁଛି, କଲମ ଅନ୍ୟ ବିଷୟ ଆଡ଼କୁ ମାଡ଼ିଗଲା ଏବଂ ନେପୋଲିୟନଙ୍କ କଥା ବାକି ରହିଗଲା । ପର ଚିଠି ପର୍ଯ୍ୟନ୍ତ ସେଥିଲାଗି ଅପେକ୍ଷା କରିବାକୁ ପଡ଼ିବ ।

## ୧୦୪ ନେପୋଲିଅନ

ନଭେମ୍ବର, ୪, ୧୯୩୦

ଫରାସୀ ବିପ୍ଳବରୁ ନେପୋଲିଅନ୍ ବାହାରିଲେ । ଫ୍ରାନ୍ସ—ପ୍ରଜାତନ୍ତ୍ର ଫ୍ରାନ୍ସ ଯାହା ଦିନେ ଇଉରୋପ ରାଜାମାନଙ୍କୁ ମଧ୍ୟ ଯାହାସ କରି ଚ୍ୟାଲେଞ୍ଜ୍ ଦେଇଥିଲା, ତାହା ଏହି କ୍ଷୁଦ୍ର କର୍ସିକାବାସୀ ନିକଟରେ ନଇଁ ପଡ଼ିଲା । ସେତେବେଳେ ଫ୍ରାନ୍ସ ଏକ ଅଦ୍ଭୁତ ସୌନ୍ଦର୍ଯ୍ୟଶାଳୀ ଥିଲା । ଜଣେ ଫରାସୀ କବି ବାର୍ବିଅର ଏହାକୁ ଏକ ବଣ୍ୟଜନ୍ତୁ ସହ ତୁଳନା କରିଛନ୍ତି । ଏକ ଚମତ୍କାର ଦାମ୍ଭିକ ଘୋଟକୀ ଉନ୍ନତ ମସ୍ତକ ଓ ଉଜ୍ଜ୍ୱଳ ରୂପ ଧରି ଛିଡ଼ା ହୋଇଛି—ସେହି ସୁନ୍ଦର ପଦଗ୍ରଣୀ କନ୍ ଲଗାମ ଆଦରେ ବ୍ୟତିବ୍ୟସ୍ତ ହୋଇ ତଳକୁ ନାତ ମାରୁଛି ଏବଂ ନିଜର ହ୍ରେଷା ଶବ୍ଦରେ ପୃଥିବୀକୁ ଭୟ ଚକିତ କରି ପକାଉଛି । ଏହି ଦାମ୍ଭିକ ଘୋଟକୀ କର୍ସିକାର ଯୁବକକୁ ତା ପିଠିରେ ବସିବା ଲାଗି ସମ୍ମତ ହେଲା ଏବଂ ତାକୁ ସେହି ସେ ଅନେକ ଆଶ୍ଚର୍ଯ୍ୟଜନକ କାର୍ଯ କଲା; କିନ୍ତୁ ସେ ମଧ୍ୟ ଘୋଟକୀକୁ ପାଳିଲା ଓ ଏହି ବଣ୍ୟ ମୁକ୍ତ ବସ୍ତୁଟିର ସମସ୍ତ ବଣ୍ୟଭାବ ଓ ମୁକ୍ତ ନଷ୍ଟ କରିଦେଲା । ସେ ତାକୁ ଶୋଷଣ କରି କ୍ଳାନ୍ତ କରିପକାଇଲା । ଫଳରେ ଘୋଟକୀ ତାକୁ ଫୋପାଡ଼ି ଦେଲା ଏବଂ ନିଜେ ବି ପଡ଼ିଗଲା ।

ତାହାହେଲେ ନେପୋଲିଅନ୍ କିପରି ଲୋକ ଥିଲେ ? ସେ କ'ଣ ଜଗତର ଜଣେ ମହତ୍ତ ବୀର ? ଯାହାକୁ କହନ୍ତି କପାଳବନ୍ତ ପୁରୁଷ ? ଶକ୍ତିଶାଳୀ ଯୋଦ୍ଧା ଯେ କି ମନୁଷ୍ୟ ଜାତିର ଭାର ମୁକ୍ତ କରିଥିଲେ ? କିମ୍ବା ଏଚ୍. ଜି. ଓ୍ୱେଲ୍ସ୍. ଓ ଅନ୍ୟମାନେ କହିଲା ପରି ସେ କ'ଣ

ଜଣେ ଦୁଃସାହସୀ ଓ ଧ୍ୱଂସକାରୀ ଏବଂ ସେ ଇଉରୋପ ଓ ତାର ସଭ୍ୟତାର ଘୋର କ୍ଷତି କରିଛି ତାହା ଠିକ୍ କି ? ସମ୍ଭବତଃ ଦୁଇଟିଯାକ ବର୍ଣ୍ଣନା ଅତିରଞ୍ଜିତ ହୋଇଛି; ହୁଏତ ଉଭୟ କଥାରେ କିଛି ସତ୍ୟତା ରହିଛି । ଆମେ ସମସ୍ତେ ଭଲ ମନ୍ଦ, ବଡ଼ ଓ ଶ୍ରେଷ୍ଠର ଅଦ୍ଭୁତ ସମ୍ମିଶ୍ରଣ । ସେ ଏହିପରି ମିଶ୍ରିତ ଥିଲେ; କିନ୍ତୁ ଏହା ସହିତ ତାଙ୍କର କେତେକ ଅସାଧାରଣ ଗୁଣ ଥିଲା, ଯାହା ଆମଠାରେ ନ ଥାଏ । ତାଙ୍କର ଥିଲା ସାହସ, ଆତ୍ମବିଶ୍ୱାସ, ଦୂରଦୃଷ୍ଟି, ଅପୂର୍ବ ଶକ୍ତି ଏବଂ ପ୍ରବଳ ଅଭିଳାଷ । ସେ ଥିଲେ ଜଣେ ପ୍ରଧାନ ସେନାପତି, ଯୁଦ୍ଧକଳା ରେ ପ୍ରବୀଣ; ପୂର୍ବକାଳରେ ବିଖ୍ୟାତ ସେନାପତି ଆଲେକ୍‌ଜାଣ୍ଡର ଓ ଚେଙ୍ଗିସ୍ ଖାଁଙ୍କ ସହ ତୁଳନା କରାଯାଇପାରେ ; କିନ୍ତୁ ସେ ମଧ୍ୟ ନୀଚ, ସ୍ୱାର୍ଥପର ଓ ସ୍ୱାର୍ଥାନ୍ୱେଷୀ ଥିଲେ । ଆଦର୍ଶ ଅନୁଧ୍ୟାନ ନୁହେଁ; ମାତ୍ର ବ୍ୟକ୍ତିଗତ କ୍ଷମତା ସନ୍ଧାନ ହିଁ ତାଙ୍କ ଜୀବନର ପ୍ରଧାନ ପ୍ରେରଣା ଥିଲା । ସେ ଥରେ କହିଥିଲେ—"ମୋର ସହଚରୀ କ୍ଷମତା ! ଏହି ସହଚରୀ ପାଇବା ଲାଗି ମତେ ଏତେ କଷ୍ଟ ସହିବାକୁ ପଡ଼ିଛି ଯେ ମୋଠାରୁ ତାକୁ ଛଡ଼ାଇ ନେବାଲାଗି କାହାକୁ ଦେବି ନାହିଁ; କିମ୍ବା ଏଥିରେ କୌଣସି ଭାଗୀଦାର ପୂରାଇବି ନାହିଁ ।" ସେ ବିପ୍ଳବରୁ ଉଦ୍ଭବ ହେଲେ; ଅଥଚ ବିରାଟ ସାମ୍ରାଜ୍ୟର ସେ ସ୍ୱପ୍ନ ଦେଖିଲେ ଏବଂ ଆଲେକ୍‌ଜାଣ୍ଡରଙ୍କ ବିଜୟ କାହାଣୀ ତାଙ୍କ ମନ ଅଧିକାର କରିଥିଲା, ଏପରିକି ଇଉରୋପ ତାଙ୍କୁ ଶ୍ରେଷ୍ଠ ମନେ ହେଲା । ପ୍ରାଚ୍ୟଦେଶ, ବିଶେଷ, ଇଜିପ୍ଟ ଓ ଭାରତପ୍ରତି ମଧ୍ୟ ତାଙ୍କର ଲୋଭ ହେଲା । ସେ ୨୭ବର୍ଷ ବେଳେ ତାଙ୍କ ଜୀବନ ଆରମ୍ଭରେ କହିଥିଲେ "କେବଳ ପ୍ରାଚ୍ୟରେହିଁ ବଡ଼ ସାମ୍ରାଜ୍ୟ ଗଢ଼ି ଉଠିଛି ଏବଂ ବିରାଟ ପରିବର୍ତ୍ତନ ସବୁ ହୋଇଛି; ପ୍ରାଚ୍ୟରେ ୬୦ କୋଟି ଲୋକ ବାସ କରନ୍ତି, ତାଙ୍କ ତୁଳନାରେ ଇଉରୋପ ଏକ ମୁଠା ଶାଗ ।"

୧୭୬୯ ଖ୍ରୀଷ୍ଟାବ୍ଦରେ ଫ୍ରାନ୍‌ସ ଅଧୀନସ୍ଥ କର୍ସିକାରେ ନେପୋଲିୟନ୍ ବୋନାପାର୍ଟ ଜନ୍ମ ଲଭିଥିଲେ । ତାଙ୍କ ଦେହରେ ଫରାସୀ, କର୍ସିକା ଓ ଇଟାଲୀ ରକ୍ତ ମିଶିଥିଲା । ସେ ଫ୍ରାନ୍‌ସର ଏକ ସାମରିକ ସ୍କୁଲ୍‌ରେ ଶିକ୍ଷା ପାଇଥିଲେ ଏବଂ ବିପ୍ଳବ ବେଳେ ଜାକୋବିନ୍ କ୍ଲବର ସଭ୍ୟ ଥିଲେ । କିନ୍ତୁ ବୋଧହୁଏ ସେ କେବଳ ନିଜର ସ୍ୱାର୍ଥ ଲାଭ ପାଇଁ ଜାକୋବିନ୍‌ଙ୍କୁ ସହଯୋଗ ଦେଇଥିଲେ, ତାଙ୍କ ଆଦର୍ଶରେ ବିଶ୍ୱାସ କରୁ ନ ଥିଲେ । ୧୭୯୩ରେ ସେ ଟୁଲୋଠାରେ ପ୍ରଥମ ବିଜୟ କଲେ । ବିପ୍ଳବୀ ସରକାର ଅଧୀନରେ ସମ୍ପତ୍ତି ହରାଇବା ଆଶଙ୍କା କରି ସେଠାକାର ଧନୀ ଲୋକେ ପ୍ରକୃତରେ ଇଂରେଜମାନଙ୍କୁ ନିମନ୍ତ୍ରଣ କରିଥିଲେ ଏବଂ ଫରାସୀ ନୌ ବାହିନୀର ଅବଶିଷ୍ଟ ଅଂଶ ସେମାନଙ୍କ ହାତରେ ସମର୍ପି ଦେଲେ । ସେ କାଳର ଅନ୍ୟ ଘଟଣା ସହିତ ଏହି ବିପଦ ଶିଶୁ ପ୍ରଜାତନ୍ତ୍ର ପ୍ରତି ଏକ ଶକ୍ତ ଆଘାତ ହେଲା ଏବଂ ପ୍ରତ୍ୟେକ ପୁରୁଷ ଏପରିକି ପିଲାଙ୍କୁ ମଧ୍ୟ ସୈନ୍ୟ ଶ୍ରେଣୀଭୁକ୍ତ ହେବା ଲାଗି ଡାକରା ହେଲା । ନେପୋଲିୟନ୍ ବିଦ୍ରୋହୀଙ୍କୁ ଦମନ କଲେ ଏବଂ ସେ ଏକ ଚମତ୍କାର ଆକ୍ରମଣ କରି ଟୁଲୋରେ ଇଂରେଜମାନଙ୍କୁ ପରାସ୍ତ କରିଦେଲେ । ତାଙ୍କ ବୟସ ସେତେ ଥିଲା ଓ ୨୪ ବର୍ଷ ବୟସରେ ସେ ଜଣେ ସେନାପତି ହେଲେ । ମାତ୍ର କେତେକ ମାସ ପରେ ରୋବସ୍ପିୟରର ଫାସି ପାଇଲାବେଳେ ସେ ଟିକିଏ ବିପଦରେ ପଡ଼ିଥିଲେ

ଏବଂ ତାଙ୍କ ଦଳର ବୋଲି ତାଙ୍କୁ ସନ୍ଦେହ କରିଗଲା; କିନ୍ତୁ ପ୍ରକୃତରେ ସେ ଯେଉଁ ଦଳରେ ଥିଲେ, ତାର ସଭ୍ୟସଂଖ୍ୟା ହେଉଛି ଜଣେ ଏବଂ ତାଙ୍କ ନାମ ହେଉଛି ନେପୋଲିୟନ୍ ! ତାପରେ ଡିରେକ୍ଟରୀ ଶାସନ ହେଲା । ସେତେବେଳେ ନେପୋଲିୟନ୍ ପ୍ରମାଣ କରିଦେଲେ ଯେ ସେ ଜାକୋବିନ୍ ନୁହନ୍ତି, ପ୍ରତି ବିପ୍ଳବର ନେତା ଏବଂ ଟିକିଏ କୁଣ୍ଠା ନ କରି ସେ ସାଧାରଣ ଲୋକଙ୍କୁ ଗୁଳି କରିପାରନ୍ତି । ୧୭୯୫ ମସିହାର ଏହି ପ୍ରସିଦ୍ଧ "ହୁଇଫ୍ ଅଫ୍ ଗ୍ରେପ୍‌ଶଟ" (ଗୁଳିବୃଷ୍ଟି) ବିଷୟରେ ପୂର୍ବ ଚିଠିରେ ମୁଁ କହିଛି । ସେହି ଦିନ ନେପୋଲିୟନ୍ ପ୍ରଜାତନ୍ତ୍ର ଉପରେ ଆଘାତ କଲେ । ଦଶବର୍ଷ ଭିତରେ ସେ ପ୍ରଜାତନ୍ତ୍ରକୁ ଶେଷ କଲେ ଏବଂ ନିଜେ ଫ୍ରାନ୍ସର ସମ୍ରାଟ ହେଲେ ।

୧୭୯୬ରେ ସେ ଇଟାଲି ସୈନ୍ୟବାହିନୀର ଅଧ୍ୟକ୍ଷ ହେଲେ ଏବଂ ଉତ୍ତର-ଇଟାଲିରେ ଏକ ଚମକପ୍ରଦ ଲଢ଼ାଇରେ ଅଷ୍ଟ୍ରିଆକୁ ପରାଜିତ କରିଦେଲେ । ଫରାସୀ ସୈନ୍ୟଙ୍କ ଭିତରେ ଏବେ ସୁଦ୍ଧା କିଛି ବିପ୍ଳବର ଅଗ୍ନି ଥିଲା ; କିନ୍ତୁ ସେମାନେ ଦୁର୍ଦ୍ଦଶାଗ୍ରସ୍ତ ହୋଇଥିଲେ । ତାଙ୍କ ପାଖରେ ଉପଯୁକ୍ତ ପୋଷାକ, ଯୋତା, ଖାଦ୍ୟ ବା ଧନ କିଛି ନ ଥିଲା । ସମୃଦ୍ଧିଶାଳୀ ଇଟାଲି ସମତଳରେ ଭଲ ଜିନିଷ ମିଳିବ ଏବଂ ଖାଦ୍ୟ ମିଳିବ ଆଶା ଦେଇ ସେ ଏହି ଭଗ୍ନ-ମନୋରଥ ଓ କୋଡା ବନ୍ଧନ ସେନାଙ୍କୁ ଆଲ୍‌ପସ୍ ପାର କରାଇ ନେଇଗଲେ । ଅନ୍ୟ ପକ୍ଷରେ ଇଟାଲି ଲୋକଙ୍କୁ ମଧ୍ୟ ସେ ସ୍ୱାଧୀନତା ଦେବେ ବୋଲି ଆଶ୍ୱାସନା ଦେଲେ; ସେ ଅତ୍ୟାଚାରୀଙ୍କ ହାତରୁ ତାଙ୍କୁ ମୁକ୍ତ କରିବା ନିମନ୍ତେ ଆସିଛନ୍ତି; ଲୁଣ୍ଠନ କରିବା ଆଶା ସହିତ ବିପ୍ଳବୀ ବାକ୍ୟର ଅଦ୍ଭୁତ ସମ୍ମିଶ୍ରଣ ଓ ପ୍ରୟୋଗ ! ଏହିରୂପେ ଫରାସୀ ଓ ଇଟାଲି ଉଭୟ ଦେଶର ଲୋକଙ୍କ ମନୋଭାବକୁ ଚତୁରତାର ସହିତ ଉପଯୋଗ କଲେ ଏବଂ ସେ ନିଜେ ଅଧା ଇଟାଲିୟାନ୍ ଥିବାରୁ ଗୋଟାଏ ଭଲ ଧାରଣା ମଧ୍ୟ ଜନ୍ମିଗଲା । ବିଜୟୀ ହାସଲ ହେବାରୁ ତାଙ୍କ ସମ୍ମାନ ବଢ଼ିଲା ଏବଂ ଯଶ ବ୍ୟାପିଲା । ତାଙ୍କ ନିଜ ଢଙ୍ଗରେ ସେ ସାଧାରଣ ଯୋଦ୍ଧାଙ୍କ ଦୁଃଖରେ ଭାଗୀ ହେଉଥିଲେ ଏବଂ ସେମାନେ ମଧ୍ୟ ତାଙ୍କ ବିପଦରେ ଭାଗୀ ହେଉଥିଲେ; କାରଣ ସାଧାରଣତଃ ସବାପେକ୍ଷା ଅଧିକ ବିପଦଗ୍ରସ୍ତ ସ୍ଥାନରେ ସେ ପହଞ୍ଚୁଥିଲେ ଓ ଲଢ଼ାଇ କରୁଥିଲେ । ପ୍ରକୃତ ଦକ୍ଷତା ପ୍ରତି ତାଙ୍କର ନଜର ଥାଏ ଏବଂ ଏହା ପାଇଲେ ଏପରି କି ଯୁଦ୍ଧକ୍ଷେତ୍ରରେ ସୁଦ୍ଧା ତାକୁ ପୁରସ୍କାର ଦେଉଥିଲେ । ତାଙ୍କ ସୈନିକଙ୍କ ପକ୍ଷରେ ସେ ବାପ ପରି—ଜଣେ ଯୁବକ ପିତା ସରି ଥିଲେ ଏବଂ ଶ୍ରଦ୍ଧାରେ ସେମାନେ ତାଙ୍କୁ "ପେଟିଟ୍ କାପୋରାଲ" (ଯୁବକନେତା) ବୋଲି କହୁଥିଲେ ଏବଂ ଅନେକ ସମୟରେ କେବଳ "ତୁ" ( Tu ) ବୋଲି ଡାକୁଥିଲେ; କୋଡ଼ିଏ ତିରିଶ ବର୍ଷ ବୟସରେ ଏହି ଯୁବକ ସେନାପତି ତାଙ୍କ ସୈନ୍ୟମାନଙ୍କର ଯେ ପ୍ରିୟ ହୋଇଗଲେ ଏଥିରେ ଆଶ୍ଚର୍ଯ୍ୟ କଣ ?

ସମଗ୍ର ଉତ୍ତର ଇଟାଲିରେ ବିଜୟଲାଭ କରି ସେ ସେଠି ଅଷ୍ଟ୍ରିୟାକୁ ପରାସ୍ତ କଲେ; ଭେନିସ୍‌ର ପୁରୁଣା ପ୍ରଜାତନ୍ତ୍ରକୁ ଶେଷ କଲେ । ଗୋଟିଏ ଅବାଞ୍ଛନୀୟ ସାମ୍ରାଜ୍ୟବାଦୀ ସନ୍ଧି

କଲେ ଏବଂ ଜଣେ ମହାନ୍ ବିଜୟୀ ବୀରରୂପେ ପାରିସ୍‌ରେ ଆସି ପହଞ୍ଚିଲେ । ଫ୍ରାନ୍ସରେ ପ୍ରାଧାନ୍ୟ ବିସ୍ତାର କରିବାକୁ ସେ ଆରମ୍ଭ କରିଥାନ୍ତି; କିନ୍ତୁ ସେ ହୃଦୟଙ୍ଗମ ବୋଧ କଲେ ଯେ, କ୍ଷମତା ଦଖଲ କରିବାପାଇଁ ଏହା ଅନୁକୂଳ ସମୟ ନୁହେଁ । ତେଣୁ ସେ ଅଳ୍ପ ଏକ ସେନା ସହିତ ଇଜିପ୍ଟ ଯିବାର ବ୍ୟବସ୍ଥା କଲେ । ତାଙ୍କ ଯୁବାକାଳରୁ ପ୍ରାଚ୍ୟ ଦେଶକୁ ଯିବାର ତାଙ୍କ ଆକାଂକ୍ଷା ଥିଲା ଏବଂ ସେ ଏବେ ତାହା ପୂରଣ କରିପାରିଲେ । ଏକ ବିଶାଳ ସାମ୍ରାଜ୍ୟର ସ୍ୱପ୍ନ ଅବଶ୍ୟ ତାଙ୍କ ମନରେ ଭାସିଥିବ । ସେ ଭୂମଧ୍ୟସାଗରରେ କୌଣସି ପ୍ରକାରେ ଇଂରେଜ ନୌବାହିନୀ ଅତିକ୍ରମ କରି ଆଲେକଜାଣ୍ଡ୍ରିଆରେ ପହଞ୍ଚିଲେ ।

ଇଜିପ୍ଟ ସେତେବେଳେ ଅଟୋମାନ୍ ତୁର୍କ ସାମ୍ରାଜ୍ୟର ଅଙ୍ଗ ଥିଲା; କିନ୍ତୁ ଏହି ସାମ୍ରାଜ୍ୟର ପତନ ହୋଇଥିଲା । ପ୍ରକୃତରେ ମେମଲୁକ୍‌ମାନେ ଇଜିପ୍ଟ ଶାସନ କରୁଥିଲେ, ନାମକୁ ମାତ୍ର ତୁର୍କି ସୁଲତାନ ଅଧୀନରେ ଥିଲେ । ବିପ୍ଲବ ଓ ଅବ୍ୟବସ୍ଥାର ଇଉରୋପକୁ ହଲାଇ ଦେଲା; କିନ୍ତୁ ମେମଲୁକ୍‌ମାନେ ମଧ୍ୟଯୁଗର ସେହି ପୁରୁଣା ଢଙ୍ଗରେ ଥାଆନ୍ତି । କଥିତ ଅଛି, ନେପୋଲିୟନ୍ କାଏରୋରେ ପହଞ୍ଚିଲାକ୍ଷଣି ଜଣେ ମେମଲୁକ ସାମରିକ ସାମନ୍ତ ନିର୍ମଳ ରେଶମୀ ପରିଚ୍ଛଦ ଓ ଅସ୍ତ୍ରଶସ୍ତ୍ର ଧରି ଫରାସୀ ସେନାଙ୍କ ପାଖରେ ପହଞ୍ଚିଲା ଏବଂ ତା' ସହିତ ଏକୁଟିଆ ଯୁଦ୍ଧ କରିବା ନିମନ୍ତେ ସେମାନଙ୍କ ଖୁଲକକୁ ଚ୍ୟାଲେଞ୍ଜ୍ ଦେଇଥିଲା । ବିଚରାକୁ ଅତି କାପୁରୁଷତା ସହିତ ମାରିପକାଯାଇଥିଲା । ଅଳ୍ପ କେତେଦିନ ପରେ ନେପୋଲିୟନ୍ ପିରାମିଡ଼ ଯୁଦ୍ଧରେ ଜୟୀ ହେଲେ । ସେ ନାଟକୀୟ ଭଙ୍ଗୀକୁ ଭଲ ପାଆନ୍ତି । ପିରାମିଡ଼ ନିକଟରେ ତାଙ୍କର ସେନାଙ୍କ ଆଗରେ ଘୋଡ଼ା ଚଢ଼ି ସେ ସମ୍ବୋଧନ କଲେ, "ସୈନ୍ୟଗଣ ! ଚାଳିଶ ଶତାବ୍ଦୀ ତମ ଉପରେ ଦୃଷ୍ଟିପାତ କରୁଛି ।"

ସ୍ଥଳଯୁଦ୍ଧରେ ନେପୋଲିୟନ୍ ଶ୍ରେଷ୍ଠ ଥିଲେ ଏବଂ ସେ ଜିତିବାରେ ଲାଗିଲେ; କିନ୍ତୁ ଜଳ ଯୁଦ୍ଧରେ ସେ ଅସହାୟ ଥିଲେ । ସେ ଏହା ବୁଝିପାରିଲେ ନାହିଁ ଏବଂ ତାଙ୍କ ପାଖରେ ସମର୍ଥ ନୌସେନାପତି ବି ନଥିଲେ ପରି ମନେହୁଏ । ସେତେବେଳେ ଭୂମଧ୍ୟସାଗରରେ ଜଣେ ବିଚକ୍ଷଣ ଇଂରେଜ ସେନାପତି ଥାଆନ୍ତି । ତାଙ୍କ ନାମ ହେଉଛି ହୋରାସିଓ ନେଲ୍‌ସନ୍ । ହଠାତ୍ ଦାମ୍ଭିକତା ସହ ସସେନେ ନେଲ୍‌ସନ୍ ବନ୍ଦର ଭିତରକୁ ସିଧା ପଶିଆସିଲେ ଏବଂ ଫରାସୀ ନୌବାହିନୀକୁ ଧ୍ୱଂସ କଲେ । ଏହାକୁ ନାଇଲ ଯୁଦ୍ଧ କହନ୍ତି । ଏହିରୂପେ ଏକ ବିଦେଶୀ ରାଜ୍ୟରେ ନେପୋଲିୟନ ଫ୍ରାନ୍ସରୁ ବିଚ୍ଛିନ୍ନ ହୋଇ ରହିଲେ । ସେ ଗୁପ୍ତଭାବରେ ପଳାଇ ଆସିଲେ ଏବଂ ଫ୍ରାନ୍ସରେ ପହଞ୍ଚିଲେ; କିନ୍ତୁ ଏହା କରିବା ଦ୍ୱାରା ସେ ନିଜର ପ୍ରାଚ୍ୟ ସେନାକୁ ହରାଇଲେ ।

ବିଜୟ ଓ ସାମରିକ ଗୌରବ ପାଇଲେ କ'ଣ ହେବ, ମହାନ୍ ପ୍ରାଚ୍ୟ ଅଭିଯାନ ବିଫଳ ହୋଇଥିଲା । ମଜାର କଥା ଯେ ନେପୋଲିୟନ୍ ଇଜିପ୍ଟକୁ ଗଲାବେଳେ ତାଙ୍କ ସାଙ୍ଗରେ କେତେକ ସାଧୁ ବିଦ୍ୱାନ ଲୋକ ଏବଂ ଅଧ୍ୟାପକ ନେଇଥିଲେ । ସେମାନେ ବହି ଓ ଅନ୍ୟାନ୍ୟ କାଗଜପତ୍ର ନେଇଥିଲେ । ଏହି 'ଇନ୍‌ଷ୍ଟିଚ୍ୟୁଟ୍'ରେ ପ୍ରତିଦିନ ଆଲୋଚନା ହୁଏ ଏବଂ ଜଣେ

ମହାନ୍ ଲୋକରୂପେ ନେପୋଲିୟନ୍ ଯୋଗ ଦିଅନ୍ତି । ପଣ୍ଡିତ ଲୋକେ କେତେକ ଭଲ ବୈଜ୍ଞାନିକ ଆବିଷ୍କାର କରିଥିଲେ । ଗ୍ରୀକ୍ ଲିପି ଏବଂ ଇଜିପ୍ଟର ଦୁଇ ପ୍ରକାର ଚିତ୍ରଲେଖା ଖୋଲା ହୋଇଥିବା ଏକ ପ୍ରସ୍ତରଖଣ୍ଡ ମିଳିବାରୁ ଚିତ୍ରଲେଖା ପଦ୍ଧତିର ପୁରୁଣା ଗୋଲକଧନ୍ଦା ଦୂର ହୋଇଗଲା । ଗ୍ରୀକ୍ ସାହାଯ୍ୟରେ ଅନ୍ୟ ଲିପି ଦୁଇଟି ବାହାର କରାଗଲା । ଆଫ୍ରିକା ମଧ୍ୟ ସୁଏଜ୍‌ଠାରେ କେନାଲ ଖୋଳିବା ପ୍ରସ୍ତାବରେ ନେପୋଲିୟନ୍ ଖୁବ୍ ଆଗ୍ରହ ପ୍ରକାଶ କରିଥିଲେ ।

ଇଜିପ୍ଟରେ ଥିଲାବେଳେ ଇରାନ୍‌ର ଶାହା ଓ ଦକ୍ଷିଣ-ଭାରତର ଟିପୁ ସୁଲତାନଙ୍କ ପାଖକୁ ନେପୋଲିୟନ୍ ବାର୍ତ୍ତା ପ୍ରେରଣ କରିଥିଲେ; କିନ୍ତୁ ନୌଶକ୍ତିରେ ସେ କ୍ଷମତାହୀନ ଥିବାରୁ ଏହାର କିଛି ଫଳ ହେଲା ନାହିଁ । ନୌଶକ୍ତି ଯୋଗୁଁହିଁ ନେପୋଲିୟନ୍ ଭାଙ୍ଗି ପଡ଼ିଲେ, ନୌଶକ୍ତି ବଳରେ ହିଁ ୧୯ ଶତାବ୍ଦୀରେ ଇଂଲଣ୍ଡ ଏତେ ବଡ଼ ହୋଇ ଉଠିଲା ।

ନେପୋଲିୟନ୍ ଇଜିପ୍ଟରୁ ଫେରିଲାବେଳକୁ ଫ୍ରାନ୍‌ସ ଅବସ୍ଥା ଖରାପ ଆଡ଼କୁ ଯାଉଥିଲା । ଡିରେକ୍ଟରୀ ବଦ୍‌ନାମ ଓ ଅପ୍ରିୟ ହୋଇଥିଲା । ତେଣୁ ସମସ୍ତେ ତାଙ୍କୁ ଅନାଇ ରହିଲେ । ସେ କ୍ଷମତା ପାଇବା ପାଇଁ ଅତ୍ୟନ୍ତ ଉତ୍ସୁକ ଥିଲେ । '୭୯୯ ନଭେମ୍ବର ମାସରେ ଫେରିବାର ମାସକ ପରେ ନିଜ ଭାଇ ଲୁସିଏନ୍‌ଙ୍କ ସାହାଯ୍ୟରେ ସେ ବଳପୂର୍ବକ ଆସେମ୍ବ୍ଲି ଭାଙ୍ଗିଦେଲେ ଏବଂ ସେତେବେଳର ସେଉଁ ବିଧାନ ବଳରେ ଡିରେକ୍ଟରୀ ଶାସନ କରୁଥିଲା; ତାହାର ଇତିଶ୍ରୀ କଲେ । ଏପରି ଜବରଦସ୍ତି କାର୍ଯ୍ୟକୁ 'କୁପ୍ ଡି ଟାଟ୍' ( Coup d'etat ) କହନ୍ତି । ଏହା-ଫଳରେ ନେପୋଲିୟନ୍ ସର୍ବେସର୍ବା ହେଲେ । ଲୋକପ୍ରିୟ ଥିବାରୁ ଓ ଲୋକଙ୍କର ତାଙ୍କଠାରେ ବିଶ୍ୱାସ ଥିବାରୁ ତାଙ୍କ ପକ୍ଷରେ ଏହା କରିବା ସମ୍ଭବ ହେଲା । ଅନେକ ଦିନୁଁ ବିପ୍ଳବ କିଛି ଯାଉଥିଲା, ଏବେ ଗଣତନ୍ତ୍ର ବି ଅନ୍ତର୍ଦ୍ଧାନ ହେବା ଉପରେ ଏବଂ ଜଣେ ଲୋକପ୍ରିୟ ସେନାପତି ସେ କ୍ଷେତ୍ରରେ ପ୍ରଧାନ ହେଲେ । ଗୋଟିଏ ନୂଆ ଶାସନବିଧାନ ତିଆରି ହେଲା । ସେଥିରେ ତିନିଜଣ କନ୍‌ସଲ ରହିବାର ହେଲା (ଏହି ନାମ ପୁରାତନ ରୋମ୍‌ରୁ ନିଆଯାଇଥିଲା); କିନ୍ତୁ ଏହି ତିନିଜଣଙ୍କ ଭିତରେ ମୁଖିଆ ହେଲେ ନେପୋଲିୟନ୍ । ସେ ପୂର୍ଣ୍ଣ କ୍ଷମତା ପାଇଲେ ଏବଂ ପ୍ରଥମ କନ୍‌ସଲ ନାମ ପାଇ ଦଶବର୍ଷ ପାଇଁ ନିଯୁକ୍ତ ହେଲେ । ଶାସନବିଧାନ ଆଲୋଚନା ବେଳେ କେହି ଜଣେ ମତ ଦେଲା ଯେ ଜଣେ ସଭାପତି ରଖାଯାଉ, ତାହାଙ୍କର କୌଣସି ପ୍ରକୃତ କ୍ଷମତା ରହିବ ନାହିଁ; ଏକପ୍ରକାର ଆଳଙ୍କାରିକ ପଦବୀ ସଭାପତି କିମ୍ବା ଶାସନତାନ୍ତ୍ରିକ ରାଜାମାନଙ୍କ ପରି କାଗଜପତ୍ର ଦସ୍ତଖତ କରିବା ଓ ସଭାରେ ଉଦ୍‌ଘାଟନ କରିବା ହିଁ ତାହାର ପ୍ରଧାନ କାମ ହେବ; କିନ୍ତୁ ନେପୋଲିୟନ୍ କ୍ଷମତା ଚାହୁଁଥିଲେ—ଖାଲି ରାଜସଭାର ପୋଷାକ ନୁହେଁ । ସେ ଏପରି କ୍ଷମତାହୀନ ରାଜଆଡ଼ମ୍ବରଯୁକ୍ତ ସଭାପତି ହେବାକୁ ଚାହୁଁ ନଥିବେ । ସେ କହୁଥିଲେ—"ଏ ମୋଟା ଘୁଷୁରି ଦରକାର ନାହିଁ ।"

ଡାଇରେକ୍ଟରଙ୍କ ଦିନେ ବର୍ଷ ଲାଗି ଟମ କନ୍‌ସଲ ନିଯୁକ୍ତ କରିଥିବା ଶାସନ ବିଧାନ ଉପରେ ଲୋକଙ୍କ ଭୋଟ ନିଆଗଲା ଏବଂ ୩,୦୦୦,୦୦୦ ଅଧିକ ଭୋଟରେ ପ୍ରାୟ ସମସ୍ତେ ଏକମତ ହୋଇ ଏହାକୁ ଗ୍ରହଣ କଲେ । ନେପୋଲିୟନ୍ ସେମାନଙ୍କୁ ସ୍ୱାଧୀନତା ଓ ସୁଖ ଆଣିଦେବେ ବୋଲି ବୃଥା ଆଶା କରି ଫ୍ରାନ୍‌ସର ଲୋକେ ଆପେ ଆପେ ତାଙ୍କୁ ସମସ୍ତ କ୍ଷମତା ଅର୍ପିଦେଲେ ।

ନେପୋଲିୟନ୍‌ଙ୍କ ଜୀବନ କାହାଣୀ ବିସ୍ତୃତ ଭାବରେ ବର୍ଣ୍ଣନା କରାହେବ ନାହିଁ । ଏହା ପ୍ରବଳ କର୍ମପୂର୍ଣ୍ଣ ଏବଂ ଅଧିକରୁ ଅଧିକ କ୍ଷମତା ପାଇବା ଲାଗି ଆକାଂକ୍ଷାଭରା । 'କୁପ୍ ଡି ଟାଟ୍' ଅର୍ଥାତ୍ ଜବରଦସ୍ତି ଶାସନକ୍ଷମତା ହରିବାର ପ୍ରଥମ ଧାଡ଼ିରେ ସେ ଆଇନ ପ୍ରସ୍ତୁତ କରିବା ନିମନ୍ତେ କୋଡ଼ିଏଟି କମିଟି ନିଯୁକ୍ତ କଲେ । ସେତେବେଳକୁ ପୁଣି ନୂଆ ବିଧାନ ତିଆରି ହୋଇ ନ ଥାଏ କିମ୍ବା ପାସ୍ ହୋଇ ନଥାଏ । ତାଙ୍କର ଡିକ୍ଟେଟର ହେବାର ଏହା ପ୍ରଥମ କାର୍ଯ୍ୟ । ଦୀର୍ଘକାଳ ପର୍ଯ୍ୟନ୍ତ ଆଲୋଚନା ହେଲା ଏବଂ ନେପୋଲିୟନ୍ ବି ସେଥିରେ ଯୋଗଦେଲେ । ଶେଷରେ ୧୮୦୪ରେ ଏହି ଆଇନସବୁ ଗୃହୀତ ହେଲା । ଏହାକୁ 'ନେପୋଲିୟନ୍ କୋଡ଼୍' କହନ୍ତି । ବିପ୍ଳବର ଭାବ କିମ୍ବା ଅଧୁନିକ ଷ୍ଟାଣ୍ଡାର୍ଡ ଦୃଷ୍ଟିରୁ ଦେଖିଲେ ଏହି କୋର୍ଡ ବା ଆଇନ ସେପରି କିଛି ଉନ୍ନତ ଧରଣର ନଥିଲା; କିନ୍ତୁ ତତ୍‌କାଳୀନ ଅବସ୍ଥାରେ ଭଲ ଥିଲା ଓ ୟୁରୋପରେ କେତେକ ପରିମାଣରେ ଏକ ଆଦର୍ଶ ରୂପେ ଏହା ଶହେ ବର୍ଷ ଯାଏ ରହିଲା । ଆହୁରି ଅନେକ ପ୍ରକାରରେ ସେ ଶାସନକୁ ସରଳ ଓ କୁଶଳ କଲି । ସିଏ ପ୍ରତ୍ୟେକ କାର୍ଯ୍ୟରେ ହସ୍ତକ୍ଷେପ କଲେ ଏବଂ ତାର ଠିକଣାଠି ଖବର ଅଦ୍ଭୁତ ପ୍ରକାରରେ ମନେ ରହୁଥିଲା । ସେ ତାଙ୍କର ଅଫୁରନ୍ତ ଶକ୍ତି ଓ ବଳ ଲଗାଇ କାର୍ଯ୍ୟକରି ତାଙ୍କର ସହକର୍ମୀ ଓ ସେକ୍ରେଟାରୀମାନଙ୍କୁ କ୍ଳାନ୍ତ କରିଦେଉଥିଲେ । ଜଣେ ସହକର୍ମୀ ତାଙ୍କ ବିଷୟରେ ଲେଖିଛି, "ତାଙ୍କର ବ୍ୟବସ୍ଥିତ ବିଚକ୍ଷଣତା ସହ ଶାସନ ଓ ପରାମର୍ଶ ଇତ୍ୟାଦି ସବୁ କାମ ସେ ପ୍ରତିଦିନ ୧୮ ଘଣ୍ଟା କରିପାରୁଥିଲେ । ରାଜାମାନେ ଶହ ଶହ ବର୍ଷ ଧରି ଯାହା ଶାସନ କରିନାହାନ୍ତି, ତିନିବର୍ଷ ଭିତରେ ସେ ତାହା ଅପେକ୍ଷା ଅଧିକ ଶାସନ କରିଥିଲେ ।" ଏହା ଅତିରଞ୍ଜନ ସନ୍ଦେହ ନାହିଁ; କିନ୍ତୁ ଏ କଥା ସ୍ପଷ୍ଟ ଯେ ଅକବରଙ୍କ ପରି ନେପୋଲିୟନ୍‌ଙ୍କ ଅସାଧାରଣ ସ୍ମରଣଶକ୍ତି ଓ ସମ୍ପୂର୍ଣ୍ଣ ବ୍ୟବସ୍ଥିତ ମିଜାଜ୍ ଥିଲା । ସେ ନିଜେ କହିଥିଲେ, "ଯେତେବେଳେ ମୁଁ କୌଣସି ବିଷୟ ଭୁଲିଦିବାକୁ ଚାହୁଁଥିଲି, ସେ ଡ୍ରୟର (ଟେବୁଲର) ବନ୍ଦ କରିଦିଏ ଏବଂ ଅନ୍ୟ ବିଷୟ ଥିବା ଡ୍ରୟର ଖୋଲେ । ଡ୍ରୟରଗୁଡ଼ିକରେ ଥିବା ବିଷୟଗୁଡ଼ିକ କେବେ ମିଶାମିଶି ହୁଏନା ଏବଂ ସେଥିରେ ମୁଁ କେବେ ହଇରାଣ ହୁଏନା କିମ୍ବା ଥକିପଡ଼େ ନାହିଁ । ଯଦି ନିଦ ଦରକାର ପଡ଼େ, ମୁଁ ଡ୍ରୟର ସବୁ ବନ୍ଦ କରି ଦିଏ । ତା' ପରେ ଗାଢ଼ ନିଦ ଆସେ ।" ବାସ୍ତବିକ ଏ କଥା ଜଣାଅଛି ଯେ ସେ ଯୁଦ୍ଧ ମଝିରେ ଭୂଇଁରେ ଅଧଘଣ୍ଟା ଶୋଇପଡ଼ନ୍ତି ଏବଂ ତା ପରେ ଉଠି ପୁଣି ଥରେ ଦୀର୍ଘ ସମୟ ପର୍ଯ୍ୟନ୍ତ କାର୍ଯ୍ୟରେ ଲାଗିପଡ଼ନ୍ତି ।

ଦଶ ବର୍ଷ ପର୍ଯ୍ୟନ୍ତ ତାଙ୍କୁ ପ୍ରଥମ କନ୍‌ସଲ କରିଲେ । କ୍ଷମତାରେ ଆରୋହଣ କରି ତିନି ବର୍ଷ ପରେ ୧୮୦୨ରେ ସେ ନିଜକୁ ବଞ୍ଚିଥିବା ପର୍ଯ୍ୟନ୍ତ କନ୍‌ସଲ ରୂପେ ନିଯୁକ୍ତ କରାଇଲେ ଏବଂ ତାଙ୍କର କ୍ଷମତା ବଢ଼ିଲା । ପ୍ରଜାତନ୍ତ୍ର ଅନ୍ତ ହେଲା ଏବଂ କେବଳ ନାମକୁ ଛାଡ଼ି ଅନ୍ୟ ସବୁ ପ୍ରକାରରେ ସେ ସମ୍ରାଟ୍ ହୋଇ ରହିଲେ । ଶେଷକୁ ୧୮୦୪ରେ ଲୋକଙ୍କଠାରୁ ଭୋଟ ନେଇ ସେ ନିଜକୁ ସମ୍ରାଟ୍ ରୂପେ ଘୋଷଣା କଲେ । ସେ ଫ୍ରାନ୍‌ସରେ ସର୍ବଶକ୍ତିମାନ ଥିଲେ । ତଥାପି ତାଙ୍କ ଭିତରେ ଏବଂ ପୁରୁଣା ଏକଛତ୍ର ରାଜାଙ୍କ ଭିତରେ ବହୁତ ପାର୍ଥକ୍ୟ ଥିଲା । ସେ ସଂସ୍କାର ଓ ଐଶ୍ୱରିକ ଅଧିକାର ବଳରେ କର୍ତ୍ତୃତ୍ୱ ହାସଲ କରି ନଥିଲେ । ସେ ନିଜର କର୍ମକୁଶଳତା ଓ ଲୋକପ୍ରିୟତା ବଳରେ ଏହା କରି ପାରିଥିଲେ । ବିଶେଷତଃ କୃଷକଙ୍କ ଭିତରେ ସେ ଅଧିକ ଲୋକପ୍ରିୟ ଥିଲେ । ସେମାନେ ତାଙ୍କର ବିଶ୍ୱସ୍ତ ସମର୍ଥକ ଥିଲେ; କାରଣ ସେମାନଙ୍କ ଜମି ସେ ରକ୍ଷା କରିଛନ୍ତି ବୋଲି ସେମାନେ ବୋଧ କଲେ । ନେପୋଲିୟନ୍ ଥରେ କହିଥିଲେ— ଅଗ୍ରିମ କଷ୍ଟର ବ୍ୟୁରୋ ଓ ଜାକବିନ୍‌ଙ୍କ ମତକୁ ମୁଁ ଖାତିର କରେନା । ମୁଁ ଗୋଟିଏ ମତକୁ ସ୍ୱୀକାର କରେ । ତାହା ହେଉଛି କୃଷକଙ୍କ ମତ ।" କିନ୍ତୁ ଧାରାବାହିକ ରୂପେ ଲାଗିଥିବା ଯୁଦ୍ଧକୁ ଆଣେ ପୁଅମାନଙ୍କୁ ସୈନ୍ୟରୂପେ ଟାଣି ଟାଣି ନେବାକୁ କୃଷକମାନେ ମଧ୍ୟ କ୍ଲାନ୍ତ ହୋଇପଡ଼ିଲେ । ଏହି ସମର୍ଥନ ଚାଲିଗଲା ପରେ ନେପୋଲିୟନ୍ ଯେଉଁ ବିରାଟ ସୌଧ ଗଢ଼ିଥିଲେ, ତାହା ଦୋହଲିବାକୁ ଲାଗିଲା ।

ଦଶ ବର୍ଷ ପର୍ଯ୍ୟନ୍ତ ସେ ସମ୍ରାଟ ରହିଲେ ଏବଂ ଏହି ଦଶ ବର୍ଷ ଭିତରେ ସେ ସମଗ୍ର ୟୁରୋପ ମହାଦେଶରେ ବୁଲିଥିଲେ ଏବଂ ଅପୂର୍ବ ସାମରିକ ଅଭିଯାନ କରି ସ୍ମରଣୀୟ ଲଢ଼ାଇମାନଙ୍କରେ ଜିତିଲେ । ତାଙ୍କ ନାମ ଶୁଣିଲେ ସାରା ୟୁରୋପ ଥରହର ହେଉଥିଲା । ତାଙ୍କର ଯେପରି ୟୁରୋପ ଉପରେ ପ୍ରାଧାନ୍ୟ ଥିଲା, ସେପରି ତାଙ୍କ ପୂର୍ବରୁ ବା ତାଙ୍କ ପରେ ଆଉ କାହାର ହୋଇନାହିଁ । ମାରେଙ୍ଗୋ ୧୮୦୦ ମସିହାରେ ଯେତେବେଳେ ସ୍ୱିଜରଲଣ୍ଡରେ ବିଖ୍ୟାତ ସେଣ୍ଟ ବର୍ଣ୍ଣାର୍ଡ ପାସ ତାଙ୍କ ସୈନ୍ୟଙ୍କ ସହ ଅତିକ୍ରମ କରି ଯାଇଥିଲେ (ଯାହା ଶୀତକାଳୀନ ବରଫ ଦ୍ୱାରା ଆଚ୍ଛନ୍ନ ଥିଲା), ଉଲମ, ଅଷ୍ଟରଲିଜ୍, ଜେନା, ଇଲ୍ୟୁ, ଫ୍ରାଏଡ୍‌ଲଣ୍ଡ; ଓ୍ୱାଗ୍ରାମ ଏଗୁଡ଼ିକ ଯୁଦ୍ଧକ୍ଷେତ୍ରରେ ସେ ଜିତିଥିବା କେତେକ ବିଖ୍ୟାତ ନାମ । ତାଙ୍କ ଆଗରେ ଅଷ୍ଟ୍ରିୟା, ପ୍ରୁସିଆ ଓ ରୁଷ ମିଳେଇ ପଡ଼ିଲେ । ସ୍ପେନ୍, ଇଟାଲି, ନେଦରଲଣ୍ଡ, ଜର୍ମାନୀର ବଡ଼ ଭାଗ ଯାହାକୁ ରାଇନ କନ୍‌ଫିଡ଼ରେସନ୍ ବୋଲି କହୁଥିଲେ, ପୋଲଣ୍ଡ ଯାହାକୁ ଓ୍ୱାରସର ଡଚି ବୋଲି କହୁଥିଲେ । ସବୁ ତାଙ୍କ ଅଧୀନରେ ଥିଲା । ଅନେକ କାଳ ହେଲା କେବଳ ନାମକୁ ମାତ୍ର ବଞ୍ଚି ରହିଥିବା ପୁରାତନ ପବିତ୍ର ରୋମାନ୍ ସାମ୍ରାଜ୍ୟ ଶେଷ ପାଇଗଲା ।

ବଡ଼ ୟୁରୋପୀୟ ଦେଶଙ୍କ ଭିତରୁ କେବଳ ଇଂଲଣ୍ଡରେ କିଛି ଦୁର୍ଦ୍ଦଶା ଘଟି ନ ଥିଲା । ସମୁଦ୍ର ନେପୋଲିଅନ୍‌ଙ୍କ ପକ୍ଷରେ ଏକ ରହସ୍ୟ ପରି ଥିଲା ଏବଂ ତାହାହିଁ ଇଂଲଣ୍ଡକୁ ରକ୍ଷାକଲା ।

ସମୁଦ୍ର ହେତୁ ନିରାପଦ ରହିଥିବା ଯୋଗୁଁ ଇଂଲଣ୍ଡ ତାଙ୍କର ପ୍ରଧାନ ଓ ଅଦମ୍ୟ ଶତ୍ରୁ ଥିଲା । କିପରି ନେପୋଲିୟନ୍‌ଙ୍କ ଜୀବନ ଆରମ୍ଭରେ ନାଇଲ ଯୁଦ୍ଧରେ ନେଲ୍‌ସନ୍ ତାଙ୍କ ନୌବାହିନୀ ଧ୍ୱଂସ କରିଥିଲେ, ସେ କଥା ମୁଁ କହିଛି; ୧୮୦୫ ମସିହା ଅକ୍ଟୋବର ୨୧ ତାରିଖରେ ସ୍ପେନ୍‌ର ଦକ୍ଷିଣ ଉପକୂଳରେ ଟ୍ରାଫାଲଗାର ଅନ୍ତରୀପଠାରେ ମିଳିତ ଫରାସୀ ଓ ସ୍ପେନ୍ ନୌବାହିନୀ ବିରୁଦ୍ଧରେ ସେ ଅଧିକ ବଡ଼ ବିଜୟ ହାସଲ କରିଥିଲେ । ଏହି ସମୁଦ୍ର-ଯୁଦ୍ଧର ଠିକ୍ ପୂର୍ବରୁ ନେଲ୍‌ସନ୍ ତାଙ୍କର ନୌବାହିନୀକୁ ସଙ୍କେତ ଦେଇଥିଲେ—"ପ୍ରତ୍ୟେକ ଲୋକ ତା'ର କର୍ତ୍ତବ୍ୟ କରିବ ବୋଲି ଇଂଲଣ୍ଡ ଆଶା କରେ ।" ବିଜୟ ଅବସ୍ଥାରେ ନେଲ୍‌ସନ୍‌ଙ୍କର ମୃତ୍ୟୁ ହେଲା; କିନ୍ତୁ ତାଙ୍କର ବିଜୟ କଥା ଇଂରେଜ ଲୋକେ ଗର୍ବର ସହିତ ମନେରଖିଛନ୍ତି ଏବଂ ଲଣ୍ଡନର ଟ୍ରାଫାଲଗାର ସ୍କୋୟାର ଓ ନେଲ୍‌ସନ୍ ସ୍ତମ୍ଭରେ ତାଙ୍କର ସ୍ମୃତି ରଖିଛନ୍ତି । ସେହି ଦିନ ନେପୋଲିୟନ୍‌ଙ୍କର ଇଂଲଣ୍ଡ ଆକ୍ରମଣ କରିବା ସ୍ୱପ୍ନ ଭାଙ୍ଗି ଦେଇଥିଲେ ।

ୟୁରୋପ ମହାଦେଶର ସମସ୍ତ ବନ୍ଦର ଇଂଲଣ୍ଡ ପାଇଁ ବନ୍ଦ କରିଦେଇ ନେପୋଲିୟନ୍ ଏହାର ପ୍ରତିଶୋଧ ନେଲେ । ତାହା ସହିତ କୌଣସି ପ୍ରକାର ସମ୍ପର୍କ ରହିବ ନାହିଁ ଏବଂ ଏହି ପ୍ରକାର 'ଦୋକାନୀ ଜାତିର ଦେଶ' ଇଂଲଣ୍ଡକୁ କାବୁ କରିଦିଆଯିବ । ଇଂଲଣ୍ଡ ମଧ୍ୟ ତା' ପକ୍ଷରୁ ଏହିସବୁ ବନ୍ଦର ଅବରୋଧ କଲା ଏବଂ ନେପୋଲିୟନ୍‌ଙ୍କର ସାମ୍ରାଜ୍ୟ, ଆମେରିକା ଓ ଅନ୍ୟ ମହାଦେଶ ସହିତ ବାଧା ଦେଲା । ଇଂଲଣ୍ଡ ମଧ୍ୟ ୟୁରୋପରେ ଅକ୍ଳାନ୍ତ ଭାବରେ ଷଡ଼ଯନ୍ତ୍ର କରି ଓ ତାଙ୍କର ଶତ୍ରୁ ଓ ନିରପେକ୍ଷମାନଙ୍କୁ ପ୍ରଚୁର ସୁନା ବାଣ୍ଟି ନେପୋଲିୟନ୍‌ଙ୍କ ସହ ଲଢ଼ାଇ କଲା । ଏହି କାର୍ଯ୍ୟରେ ୟୁରୋପର କେତେକ ବଡ଼ ଅର୍ଥାଗାର ପ୍ରଧାନତଃ ରୋଥ୍‌ସ୍‌ଚାଇଲ୍ଡ଼-ମାନଙ୍କ ଦ୍ୱାରା ସେ ସାହାଯ୍ୟ ପାଇଥିଲା ।

ନେପୋଲିୟନ୍‌ଙ୍କ ବିରୁଦ୍ଧରେ ଇଂଲଣ୍ଡ ଆଉ ଏକ ଉପାୟ ଗ୍ରହଣ କଲା । ତାହା ହେଉଛି ପ୍ରଚାର । ସେତେବେଳେ ଏହା ଏକ ନୂଆ ଧରଣର ଅଭିଯାନ ଥିଲା; କିନ୍ତୁ ତା'ପରେ ଏହା ସାଧାରଣ କଥା ହୋଇଗଲାଣି । ଫ୍ରାନ୍ସରେ ବିଶେଷତଃ ନେପୋଲିୟନ୍‌ଙ୍କ ବିରୁଦ୍ଧରେ ଖବରକାଗଜରେ ଆନ୍ଦୋଳନ ସୃଷ୍ଟି କଲା । ନାନାପ୍ରକାର ଲେଖା, ବୁଲେଟିନ୍, ଖବରକାଗଜ, ନୂତନ ସମ୍ରାଟଙ୍କୁ ପରିହାସ କରି ବ୍ୟଙ୍ଗଚିତ୍ର, ମନଗଢ଼ା ସ୍ମୃତି, ମିଥ୍ୟାପୂର୍ଣ୍ଣ ଲେଖାସବୁ ଲଣ୍ଡନରୁ ବାହାରିଲା ଏବଂ ଗୁପ୍ତରୂପେ ୟୁରୋପରେ ପ୍ରବେଶ କଲା । ଆଜିକାଲି ଖବରକାଗଜରେ ମିଥ୍ୟା ପ୍ରଚାର ଆଧୁନିକ ଯୁଗର ସ୍ୱୀକୃତ ଅଙ୍ଗ ହୋଇଗଲାଣି । ୧୯୧୪-୧୮ ମହାସମର ବେଳେ ଯେଉଁସବୁ ଜାତି ଯୁଦ୍ଧରେ ପଶିଥିଲେ, ସେମାନେ ବଡ଼ ସଙ୍କୋଚରେ ଅତି ଅସାଧାରଣ ମିଥ୍ୟା ପ୍ରଚାର କରିଥିଲେ ଏବଂ ଏହି ମିଥ୍ୟା ତିଆରି ଓ ପ୍ରଚାର କାର୍ଯ୍ୟରେ ଇଂରେଜ ସରକାର ସବୁଠୁଁ ପ୍ରଥମ । ନେପୋଲିୟନ୍‌ଙ୍କ ବେଳୁଁ ଦୀର୍ଘ କାଳବ୍ୟାପୀ ଏଥିରେ ଏହା ତାଲିମ ହୋଇଛି । ଆମ ଦେଶ ସମ୍ବନ୍ଧରେ କିଛି ସତ୍ୟ ଦବାଇ ରଖାଯାଏ ଏବଂ ଏଠି ଓ ଇଂଲଣ୍ଡରେ କିପରି ଅତି ଅଦ୍ଭୁତ ମିଥ୍ୟାକଥା ସବୁ ପ୍ରଚାର କରାଯାଏ, ଏକଥା ଆମକୁ ସେ ତେବେ ଭଲରୂପେ ଜଣା ।

## ୧୦୪ : ନେପୋଲିଅନ୍‌ଙ୍କ ସମ୍ବନ୍ଧରେ ଆଉ କିଛି

ନଭେମ୍ବର ୬, ୧୯୩୨

ଗତ ଚିଠିରେ ଆମେ ଯେଉଁଠି ଛାଡ଼ିଥିଲେ ସେଠାରୁ ପୁଣି ନେପୋଲିୟନ୍‌ଙ୍କ କାହାଣୀ ଆଲୋଚନା କରିବା ।

ଫ୍ରାନ୍‌ସ ବିପ୍ଲବର ଗୌରବ ଘେନି ନେପୋଲିୟନ୍ ସବୁ ଦେଶକୁ ଗଲେ ଏବଂ ଯେଉଁସବୁ ଦେଶ ସେ ଜୟକଲେ ସେଗୁଡ଼ିକ ତାଙ୍କ ଆଗମନ ବିରୁଦ୍ଧରେ ନଥିଲେ । ସେମାନଙ୍କ ଉପରେ ମାଡ଼ି ବସିଥିବା ଅକର୍ମଣ୍ୟ ଓ ଅର୍ଦ୍ଧସାମନ୍ତ ଶାସକମାନଙ୍କ ଉପରେ ସେମାନେ ବିରକ୍ତ ହୋଇ ପଡ଼ିଥିଲେ । ଏହା ନେପୋଲିୟନଙ୍କୁ ଖୁବ୍ ସାହାଯ୍ୟ କଲା ଏବଂ ସେ ଅଗ୍ରସର ହେବା ସାଙ୍ଗେ ସାଙ୍ଗେ ସାମନ୍ତବାଦ ତାଙ୍କ ଆଗରେ ଭାଙ୍ଗିପଡ଼ିଲା । ବିଶେଷତଃ ଜର୍ମାନୀରେ ସାମନ୍ତବାଦ ଉଭେଇଗଲା । ସ୍ପେନ୍‌ରେ ସେ ଇନ୍‌କୁଇଜିସନ୍‌କୁ ସମାପ୍ତ କରିଦେଲେ; କିନ୍ତୁ ସେ ଅଜ୍ଞାତ ଭାବରେ ଯେଉଁ ଜାତୀୟତାର ପ୍ରେରଣା ଜାତ କରିଥିଲେ ତାହାହିଁ ଶେଷକୁ ତାଙ୍କ ବିରୁଦ୍ଧରେ ଗଲା ଓ ଶେଷରେ ସେ ପରାସ୍ତ ହେଲେ । ସେ ପୁରୁଣା ରାଜା ଓ ସମ୍ରାଟମାନଙ୍କୁ କାବୁ କରିପାରନ୍ତି; କିନ୍ତୁ ତାଙ୍କ ବିରୁଦ୍ଧରେ ସମଗ୍ର ଜନତା ଉଠିଲେ ପାରିବେ ନାହିଁ । ସ୍ପେନ୍ ଲୋକେ ତାଙ୍କ ବିରୁଦ୍ଧରେ ଉଠିଲେ ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ତା'ର ଶକ୍ତି ଓ ସମ୍ପଦ କ୍ଷୟ କଲେ । ଜଣେ ବିଖ୍ୟାତ ଦେଶଭକ୍ତ ବାରନ୍ ଭନ୍-ଷ୍ଟିନ୍‌ଙ୍କ ନେତୃତ୍ୱରେ ଜର୍ମାନୀ ଲୋକେ ସଙ୍ଗଠିତ ହେଲେ । ଏମାନେ ନେପୋଲିୟନ୍‌ଙ୍କର ପରମ ଶତ୍ରୁ ପାଲଟିଲେ । ଜର୍ମାନୀର ସ୍ୱାଧୀନତା ଲଢ଼ାଇ ହେଲା । ସୁତରାଂ ଯେଉଁ ଜାତୀୟତା ନେପୋଲିୟନ୍ ନିଜେ ଜାଗ୍ରତ କରାଇଥିଲେ ସମୁଦ୍ର ଶକ୍ତି ସାଙ୍ଗକୁ ଏହା ବି ତାଙ୍କ ପତନର କାରଣ ହେଲା; କିନ୍ତୁ ଯେକୌଣସି ଅବସ୍ଥାରେ ପୁଣି ଜଣେ ଡିକ୍‌ଟେଟର୍ କବଳରେ ସମଗ୍ର ୟୁରୋପ ରହିବା କଷ୍ଟକର କଥା । ନେପୋଲିୟନ୍ ସମ୍ଭବତଃ ପରେ ଠିକ୍ କହିଥିଲେ ଯେ; ମୋର ପତନ ପାଇଁ ଆଉ କାହାକୁ ନୁହେଁ, ନିଜକୁ ଦୋଷ ଦେବାର କଥା । ମୁଁ ମୋର ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥା ସକାଶେ ଦାୟୀ; ନିଜର ବଡ଼ ଶତ୍ରୁ ।

ଏହି ବିଚକ୍ଷଣ ଲୋକଙ୍କର ଅତି ଅସାଧାରଣ ଦୁର୍ବଳତା ଥିଲା । ତାଙ୍କ ଭିତରେ ସର୍ବଦା ଗୋଟାଏ ନବାବ ହେବାର ଭାବ ଥିଲା ଏବଂ ସବୁ ପୁରୁଣା ଓ ଅକର୍ମଣ୍ୟ ରାଜା ଓ ସମ୍ରାଟ-ମାନଙ୍କଠାରୁ ସମ୍ମାନ ପାଇବାର ଏକ ଅପୂର୍ବ ଅଭିଳାଷ ତାଙ୍କର ଥିଲା । ଅତି ଅସଙ୍ଗତ ଭାବରେ ସେ ନିଜର ଭାଇ ଓ ଭଉଣୀମାନଙ୍କୁ ଆଗେଇବାକୁ ଲାଗିଲେ; ଯଦିଓ ସେମାନେ ସମ୍ପୂର୍ଣ୍ଣ ଅପାରଗ ଥିଲେ । ଭାଇଙ୍କ ଭିତରୁ ଲୁସିଏନ୍ ହିଁ ଭଲ ଥିଲା । ୧୭୯୯ରେ ଜବରଦସ୍ତି ସରକାରୀ କ୍ଷମତା ନଷ୍ଟ କରିବାରେ ଏକ ସଙ୍କଟବେଳେ ସେ ନେପୋଲିୟନ୍‌ଙ୍କୁ ସାହାଯ୍ୟ କରିଥିଲା; କିନ୍ତୁ ଶେଷରେ ତାହାଙ୍କ ସହିତ ଝଗଡ଼ା ଲାଗିଲା ଓ ସେ ଇଟାଲୀକୁ ଚାଲିଗଲା ।

ଅନ୍ୟ ଗର୍ବୀ ଓ ନିର୍ବୋଧ ଭାଇଙ୍କୁ ନେପୋଲିୟନ୍ ରାଜା ଓ ଶାସକ କଲେ । ନିଜ ପରିବାରକୁ ଉଠେଇବା ନିମନ୍ତେ ତାଙ୍କର ଏକ ବିଚିତ୍ର ଓ ଅଳୀକ ଆକାଂକ୍ଷା ଥିଲା; କିନ୍ତୁ ତାଙ୍କର ଦୁଃଖ ସମୟରେ ପ୍ରତ୍ୟେକେ ତାଙ୍କ ସହିତ ପ୍ରତାରଣା କଲେ ଓ ଛାଡ଼ିଗଲେ । ଗୋଟାଏ ବଂଶ ସ୍ଥାପନା କରିବା ନିମନ୍ତେ ନେପୋଲିୟନ୍ ଭାରି ଆଗ୍ରହୀ ଥିଲେ । ତାଙ୍କ କାର୍ଯ୍ୟକାଳ ପ୍ରାରମ୍ଭରେ ଏପରିକି ଇଟାଲୀ ଅଭିଯାନରେ ଯାଇ ଖ୍ୟାତ ହେବା ପୂର୍ବରୁ ସେ ଜୋସେଫିନ୍ ଡି, ବିଉହାର୍ଣ୍ଣୟସ୍ ନାମକ ସୁନ୍ଦରୀ ଓ ଜିଦ୍‌ଖୋର ସ୍ତ୍ରୀକୁ ବିବାହ କରିଥିଲେ । ସେ ଏକ ବଂଶ ସ୍ଥାପନା ପାଇଁ ଭୀଷଣ ଉଦ୍‌ଗ୍ରୀବ ଥିଲେ । ଏହାଙ୍କ ଆଡ଼ୁ କୌଣସି ସନ୍ତାନ ନ ହେବାରେ ସେ ଅତ୍ୟନ୍ତ ହତାଶ ହୋଇଗଲେ । ତେଣୁ ସେ ଜୋସେଫିନଙ୍କୁ ଭଲ ପାଉଥିଲେ ସୁଦ୍ଧା ତାଙ୍କୁ ଛାଡ଼ପତ୍ର ଦେଇ ଆଉ ଗୋଟିଏ ସ୍ତ୍ରୀ ଲୋକଙ୍କୁ ବିବାହ କରିବା ଲାଗି ସ୍ଥିର କଲେ । ସେ ରୁଷିଆର ରାଜବଂଶରେ ବିବାହ କରିବାକୁ ଇଚ୍ଛା କଲେ, ମାତ୍ର ଜାର ରାଜି ହେଲେ ନାହିଁ । ନେପୋଲିୟନ୍ ୟୁରୋପର ପ୍ରଭୁ ହୋଇପାରନ୍ତି; କିନ୍ତୁ ତାଙ୍କ ପକ୍ଷରେ ରୁଷ ରାଜପରିବାରରେ ବିବାହ କରିବାକୁ ମନ ବଳାଇବାଟା ଟିକିଏ ଅତିମାତ୍ରା ବୋଲି ଜାର ବିଚାରିଥିଲେ । ତା'ପରେ ଅଷ୍ଟ୍ରିଆର ହାପ୍‌ସବର୍ଗ ରାଜାଙ୍କୁ ଏକରକମ ବାଧ୍ୟ କରି ନେପୋଲିୟନ୍ ତାଙ୍କ ଝିଅ ମେରି ଲୁଇସଙ୍କୁ ବିବାହ କଲେ । ତାଙ୍କ ଆଡ଼ୁ ଗୋଟିଏ ପୁଅ ହେଲା; କିନ୍ତୁ ସେ ସ୍ତ୍ରୀ ଅତି ମାତ୍ରା ନିର୍ବୁଦ୍ଧିଆ ଥିଲେ । ନେପୋଲିୟନଙ୍କୁ ଆଦୌ ଭଲ ପାଉ ନ ଥିଲେ ଓ ତାଙ୍କ ପାଇଁ ଏକ ଖରାପ ସ୍ତ୍ରୀ ହେଲେ । ସେ ଦୁଃଖରେ ପଡ଼ିଲାବେଳେ ଏହି ସ୍ତ୍ରୀ ତାଙ୍କୁ ଛାଡ଼ି ଚାଲିଗଲେ ଏବଂ ତାଙ୍କୁ ସମ୍ପୂର୍ଣ୍ଣରୂପେ ପାସୋରି ପକାଇଲେ ।

ଆଶ୍ଚର୍ଯ୍ୟ କଥା ଏହି ଲୋକଟି ନିଜ ଅମଳରେ ଏକପ୍ରକାର ସର୍ବପ୍ରଧାନ ବ୍ୟକ୍ତି ହୋଇ କିପରି ପୁରାତନ ରାଜପଦର ଶୂନ୍ୟ ମୋହରେ ପଡ଼ିଗଲେ । ଅଥଚ ଅନେକ ସମୟରେ ସେ ବିପ୍ଳବ ନାମ ଧରି କଥା କହୁଥିଲେ ଓ ଏହି ଅକର୍ମଣ୍ୟ ରାଜାଙ୍କୁ ଉପହାସ କରୁଥିଲେ । ସେ ନିଶ୍ଚିତ ରୂପେ ବିପ୍ଳବ ଓ ନୂତନ ବ୍ୟବସ୍ଥାକୁ ଉପେକ୍ଷା କରୁଥିଲେ । ପୁରୁଣା ବ୍ୟବସ୍ଥା ତାଙ୍କୁ ପୋଷେଇଲା ନାହିଁ କି ତାଙ୍କୁ ଗ୍ରହଣ କରିବାକୁ ସେ ପ୍ରସ୍ତୁତ ବି ନ ଥିଲା; ତେଣୁ ଏହି ଦୁଇ ମଝିରେ ତାଙ୍କର ପତନ ହେଲା ।

କ୍ରମେ ଏହି ସାମରିକ ଗୌରବର ଅନିବାର୍ଯ୍ୟ ଦୁଃଖଜନକ ପରିଣତି ଘଟିଲା । ତାଙ୍କ ନିଜର କେତେ ମନ୍ତ୍ରୀ ବିଶ୍ୱାସଘାତକ ହେଲେ, ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କଲେ; ଟାଲିରାଣ୍ଡ୍ ରୁଷ ଜାର ସହିତ ଷଡ଼ଯନ୍ତ୍ର କଲା ଏବଂ ଫୋସେ ଇଂଲଣ୍ଡ ସହିତ ମିଶି ଷଡ଼ଯନ୍ତ୍ର କଲା । ନେପୋଲିୟନ୍ ତାଙ୍କ ବିଶ୍ୱାସଘାତକତା ଧରିପାରିଲେ; ଅଥଚ ଆଶ୍ଚର୍ଯ୍ୟ କଥା ଯେ ସେମାନଙ୍କୁ ଖାଲି ଗାଳିଦେଇ ପୁଣି ମନ୍ତ୍ରୀରୂପେ ରଖିଥିଲେ । ବର୍ଣ୍ଣାଡୋଟ୍ ନାମକ ତାଙ୍କର ଜଣେ ସେନାପତି ତାଙ୍କ ବିରୁଦ୍ଧରେ ଗଲା ଏବଂ ଏକ ଘୋର ଶତ୍ରୁ ପାଲଟିଲା । ତାଙ୍କ ମାଆ ଓ ଭାଇ ଲୁସିଏନଙ୍କ ଛଡ଼ା ପରିବାରର ଆଉ ସମସ୍ତେ ଖରାପ ବ୍ୟବହାର କଲେ ଏବଂ ଅନେକ

ସମୟରେ ତାଙ୍କ ବିରୁଦ୍ଧରେ କାର୍ଯ୍ୟ କଲେ । ଏପରିକି ଫ୍ରାନ୍ସରେ ଅସନ୍ତୋଷ ବଢ଼ିଲା ଏବଂ ତାଙ୍କ ଡିକ୍ଟେଟରୀ ଶାସନ ଅତି କଠିନ ଓ ନିର୍ମମ ହୋଇଗଲା; ବିନା ବିଚାରରେ ଅନେକ ଲୋକଙ୍କୁ ବନ୍ଦୀ କରାଗଲା । ତାଙ୍କର ଭାଗ୍ୟବେଳ ଟଳିଲା । ତାହାଙ୍କର ଶେଷ ଅବସ୍ଥା ଦେଖିପାରି ଅନେକ ମୂଷା ତ ଜାହାଜ ଛାଡ଼ି ପଳାନ୍ତି । ସେ ବୟସରେ ଯୁବକ ହୋଇଥିଲେ ସୁଦ୍ଧା ଶାରୀରିକ ଓ ମାନସିକ ପତନ ତାଙ୍କର ଘଟିଲା । ଯୁଦ୍ଧବେଳେହିଁ ତାଙ୍କ ପେଟକୁ ମାରୁଥିଲା । କ୍ଷମତାହିଁ ତାଙ୍କୁ ଦୂଷିତ କରିପକାଇଲା । ତାଙ୍କର ପୁରୁଣା ପ୍ରତିଭା ସେହିପରି ଥିଲା; କିନ୍ତୁ ସେ ଧୀର ପଦକ୍ଷେପ କଲେ । ସେ ବେଶି ଉତ୍ତେଜିତ ହେଲେ ଓ ସନ୍ଦେହରେ ପଡ଼ିଲେ ଏବଂ ତାଙ୍କର ସେନା ବଡ଼ ଗୋଳମାଳିଆ ଧରିଗଲା ।

୧୮୧୨ରେ ବିରାଟ ସେନାବାହିନୀ ସହ (ଏହାକୁ 'ଗ୍ରାଣ୍ଡେ ଆର୍ମି' ବୋଲି କୁହାଯାଏ) ସେ ରୁଷ୍ ଆକ୍ରମଣ ପାଇଁ ବାହାରିଲେ । ସେ ରୁଷ୍‌କୁ ପରାସ୍ତ କଲେ ଏବଂ ବିଶେଷ କିଛି ବିରୋଧ ନ ପାଇ ଅଗ୍ରସର ହେଲେ । ରୁଷ୍ ସେନାମାନେ ଖାଲି ପଛଘୁଞ୍ଚା ଦେଇଗଲେ ଏବଂ ଯୁଦ୍ଧ କଲେ ନାହିଁ । ଏହି ବିରାଟ ସେନାବାହିନୀ ତାଙ୍କ ପଛେ ପଛେ ଧାଇଁ ଶେଷକୁ ଯାଇ ମସ୍କୋରେ ପହଞ୍ଚିଲେ । ଜାର ବଶ୍ୟତା ସ୍ୱୀକାର କରିବାକୁ ଇଚ୍ଛା କରୁଥିଲେ; କିନ୍ତୁ ନେପୋଲିୟନ୍‌ଙ୍କ ପୁରୁଣା ସାଥି ଓ ସେନାପତି ଫ୍ରାନ୍ସବାସୀ ବର୍ଣ୍ଣାଡ଼ୋଟ୍ ଏବଂ ନେପୋଲିୟନ୍ ବିତାଡ଼ିତ ବୋଲି ଘୋଷଣା କରିଥିବା ଜର୍ମାନୀର ଜାତୀୟବାଦୀ ନେତା ବାରେନ୍ ଭନ୍ ଷ୍ଟେନ୍— ଏହି ଦୁଇଜଣ ତାହା ନକରିବା ଲାଗି ଜାରଙ୍କୁ ପ୍ରବର୍ତ୍ତାଇଲେ । ଶତ୍ରୁକୁ ଧୂଆଁ ଅଡ଼ୁଆଳରେ ରଖିବା କ୍ରମରେ ରୁଷ୍‌ବାସୀ ନିଜର ପ୍ରିୟ ସହର ମସ୍କୋରେ ନିଆଁ ଲଗାଇଦେଲେ । ମସ୍କୋ ଜଳିଯିବା ସମ୍ବାଦ ଯେତେବେଳେ ସେଣ୍ଟ୍ ପିଟର୍ସବର୍ଗରେ ପହଞ୍ଚିଲା, ସେତେବେଳେ ଷ୍ଟେନ୍ ବା ଟେବୁଲ ପାଖରେ ବସି ନିଜ ଚଷମା ଟେକି କହିଲା—"ଏଥିପୂର୍ବରୁ ତିନି କି ଚାରି ଥର ମୁଁ ମୋର ଜିନିଷ ହରାଇଛି । ଏପରି ଜିନିଷ ସବୁ ଫୋପାଡ଼ି ଦେବାରେ ଆମେ ଅଭ୍ୟସ୍ତ ହୋଇଯିବା ଉଚିତ । ଦିନେ ତ ହେଲେ ଅବଶ୍ୟ ମରିବା । ଆମେ ଦାରପରି ହେବା ଉଚିତ ।"

ଶୀତ ଋତୁର ଆରମ୍ଭ । ନେପୋଲିୟନ୍ ଜଳନ୍ତା ମସ୍କୋ ଛାଡ଼ିଦେଇ ଫ୍ରାନ୍ସକୁ ଫେରି ଆସିବା ଲାଗି ସ୍ଥିର କଲେ । ବିରାଟ ସେନା କ୍ଳାନ୍ତ ହୋଇ ବରଫ ଦେଇ ଆସିଲେ, ରୁଷ କସାକମାନେ ତାଙ୍କ ପାଖେ ପାଖେ ଥାଆନ୍ତି; ଆକ୍ରମଣ କରୁଥାନ୍ତି, ବାରମ୍ବାର ତାଙ୍କୁ ହଇରାଣ କରୁଥାନ୍ତି ଏବଂ ତାଙ୍କ ଦଳକୁ ଖଣ୍ଡ ଖଣ୍ଡ କରିପକାଉଥାନ୍ତି । ଭୋକ, ଥଣ୍ଡା ଓ କସାକମାନଙ୍କ ଆକ୍ରମଣରେ ହଜାର ହଜାର ଜୀବନ ନଷ୍ଟ ହେଲା—ବିରାଟ ସେନା ଏକ ଭୂତ.ଆତ୍ମାର ଶୋଭାଯାତ୍ରାରେ ପରିଣତ ହୋଇଗଲେ । ସମସ୍ତେ ଖାଲିଗୋଡ଼ରେ ଛିଣ୍ଡାକନା ପିନ୍ଧି ଆହତ ଓ ବରଫରେ ଶୀତା ହୋଇ ଓ କ୍ଳାନ୍ତ ଭାବରେ ଘୋଷାରି ହୋଇ ଆସିଲେ । ନେପୋଲିୟନ୍ ମଧ୍ୟ ତାଙ୍କ ସେନାବାହିନୀ ସହ ପାଦରେ ଚାଲି ଆସିଲେ । ଏହା ଏକ ଭୟାନକ ଓ ହୃଦୟ-ବିଦାରକ ଯାତ୍ରା—ବିରାଟ ସେନା କ୍ରମେ କ୍ଷୁଦ୍ର ହୋଇଯାଇ ଶେଷକୁ ଲୋପ ହୋଇଗଲା । ଅତି ମୁଷ୍ଟିମେୟ ଲୋକ ଫେରିଲେ ।

ଏହି ରୁଷ ଅଭିଯାନ ଏକ ଦାରୁଣ ଆଘାତ ହେଲା । ଏଥିରେ ଫ୍ରାନ୍ସର ଲୋକଶକ୍ତି ନିଃଶେଷ ହୋଇଗଲା । ଅନ୍ତୁରି ମଧ୍ୟ ଏହା ନେପୋଲିଅନଙ୍କୁ ବୃଦ୍ଧ କରିପକାଇଲା ଏବଂ ସେ ଯୁଦ୍ଧକ୍ଳାନ୍ତ ଓ କାତର ହୋଇ ପଡ଼ିଲେ । କିନ୍ତୁ ତାଙ୍କୁ ଶାନ୍ତି ଦିଆଗଲା ନାହିଁ । ତାଙ୍କୁ ଶତ୍ରୁ ଘେରି ନେଇଥିଲେ ଏବଂ ସେ ପୂର୍ବପରି ବିଜୟ ଲାଭ କରୁଥିବା ବିଚକ୍ଷଣ ସେନାପତି ଥାଇ ସୁଦ୍ଧା ଜାଲ ତାଙ୍କର ଚାରିପଟରୁ ନିକଟତର ହୋଇ ଆସିଲା ଏବଂ ଏପରିକି ନେପୋଲିୟନଙ୍କର କେତେକ ବିଶ୍ୱସ୍ତ ସେନାପତି ମଧ୍ୟ ତାଙ୍କ ବିରୁଦ୍ଧରେ ଗଲେ । କ୍ଳାନ୍ତ ବିରକ୍ତ ହୋଇ ୧୮୧୪ ମସିହା ଏପ୍ରିଲ ମାସରେ ନେପୋଲିଅନ ସିଂହାସନ ତ୍ୟାଗକଲେ ।

ନେପୋଲିୟନ ବାଟରୁ ହଟିଯିବା ପରେ ୟୁରୋପର ନୂତନ ମାନଚିତ୍ର ତିଆରି କରିବା ନିମନ୍ତେ ୟୁରୋପର ଶକ୍ତିମାନଙ୍କର ଏକ କଂଗ୍ରେସ ଭିଏନାରେ ହେଲା । ଇଟାଲୀ ଭୂମଧ୍ୟସାଗରର ଏକ କ୍ଷୁଦ୍ର ଦ୍ୱୀପ ଏଲବାକୁ ନେପୋଲିୟନଙ୍କୁ ପଠାଇ ଦିଆଯାଇଥିଲା । ଫାସି ପାଇଥିବା ଲୁଇଙ୍କର ଭାଇ ବୋର୍ବନ ବଂଶର ଲୋକ ଏକ ନିର୍ଜନ ସ୍ଥାନରେ ଅଲଗା ହୋଇ ବାସ କରୁଥିଲେ । ତାଙ୍କୁ ଆଣି ଅଷ୍ଟାଦଶ ଲୁଇ ନାମରେ ଫ୍ରାନ୍ସ ସିଂହାସନରେ ବସାଇ ଦିଆଗଲା । ବୋର୍ବନମାନେ ପୁଣି ଫେରି ଆସିଲେ ଏବ ତାଙ୍କ ସହିତ ପୁରୁଣା ଅତ୍ୟାଚାରସବୁ ଫେରି ଆସିଲା । ତେଣୁ ବାଷ୍ଟାଇଲ ପତନର ୨୫ ବର୍ଷ ଭିତରେ ଯେଉଁସବୁ ଗୌରବପୂର୍ଣ୍ଣ କାର୍ଯ୍ୟ ହୋଇଥିଲା, ତାହା ଏହିରୂପେ ଅସ୍ତ ହେଲା । ଭିଏନାରେ ରଜା ଓ ତାଙ୍କ ମନ୍ତ୍ରୀମାନେ ନିଜ ନିଜ ଭିତରେ ଯୁଦ୍ଧକଲେ ଓ ନିଜ ଭିତରେ ବିବାଦ କଲେ ଏବଂ ଏହି ସମୟରେ ଶୁଭବେଳ ହେଲା । ସେମାନେ ଖୁବ୍ ଆଶ୍ୱାସ ବୋଧ କଲେ । ଗୋଟାଏ ବଡ ଆତଙ୍କ ଚାଲିଗଲା ଏବଂ ସେମାନେ ଏବେ ନିଃଶ୍ୱାସ ମାରିବେ । ଏହି ରାଜା ଓ ମନ୍ତ୍ରୀମାନଙ୍କ ଭିତରେ ନେପୋଲିୟନଙ୍କ ସହ ବିଶ୍ୱାସଘାତକତା କରୁଥିବା ଟାଲିରାଣ୍ଡ ବଡ଼ ଲୋକପ୍ରିୟ ହୋଇ ପଡ଼ିଥିଲେ ଓ କଂଗ୍ରେସରେ ଖୁବ୍ ଭାଗ ନେଇଥିଲେ । ଏହି କଂଗ୍ରେସରେ ଆଉ ଜଣେ ବିଖ୍ୟାତ ଚାଲବାଜ ଅଷ୍ଟ୍ରିୟାର ବୈଦେଶିକ ମନ୍ତ୍ରୀ ମେଟରନିକ ଥିଲେ ।

ବର୍ଷକ ନ ପୂରୁଣୁ ଏଲବାରେ ନେପୋଲିୟନ ଅସ୍ଥିର ହେଲେ ଏବଂ ଫ୍ରାନ୍ସ ମଧ୍ୟ ବୋର୍ବନମାନଙ୍କ କାର୍ଯ୍ୟରେ ଅସ୍ତବ୍ୟସ୍ତ ହୋଇ ପଡ଼ିଲା । ସେ ଚେଷ୍ଟା କରି କ୍ଷୁଦ୍ର ନୌକାରେ ପଳାଇ ଆସିଲେ ଏବଂ ୧୮୧୫ ଫେବୃୟାରୀ ୨୬ ତାରିଖରେ ଦକ୍ଷିଣ ଫ୍ରାନ୍ସର କାନେସରେ ଏକାକୀ ଓହ୍ଲାଇଲେ । କୃଷକମାନେ ଉତ୍ସାହ ସହକାରେ ତାଙ୍କୁ ଅଭ୍ୟର୍ଥନା କଲେ । ଯେଉଁ ସୈନ୍ୟମାନେ ତାଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ଯାଇଥିଲେ, ସେମାନେ ତାଙ୍କରି ପୁରୁଣା ସେନାପତି "ପେଟିଟ୍ କାପୋରାଲ"କୁ ଚିତ୍କାର କଲେ, " ଭାଇଭ୍ ଲ ଏମ୍ପରର " (ସମ୍ରାଟଙ୍କର ଜୟ), ଏବଂ ତାଙ୍କ ସହିତ ଯୋଗ ଦେଲେ । ତେଣୁ ସେ ବିଜୟୋଲ୍ଲାସରେ ପ୍ୟାରିସରେ ପହଞ୍ଚିଲେ ଏବଂ ବୋର୍ବନ ରାଜା ପଳାଇଗଲେ । କିନ୍ତୁ ୟୁରୋପର ଅନ୍ୟ ସମସ୍ତ ରାଜଧାନୀରେ ଆତଙ୍କ ଓ ବିଶୃଙ୍ଖଳା ଦେଖାଗଲା । ସେତେବେଳକୁ ଭିଏନାରେ କଂଗ୍ରେସ ବସିଥାଏ; ସେଠି

ହଠାତ୍ ସମସ୍ତ ନୃତ୍ୟ ଓ ଖେଳ ବନ୍ଦ ହୋଇଗଲା । ଗୋଟାଏ ଭୟ ସମସ୍ତ ରାଜା ଓ ମନ୍ତ୍ରୀମାନଙ୍କୁ ଗ୍ରାସ କଲା । ସେମାନେ ନିଜ ନିଜ ଭିତରେ ବିବାଦ ଭୁଲିଗଲେ ଏବଂ ନେପୋଲିଅନଙ୍କୁ ପୁଣି କିପରି ଜବତ କରିବାକୁ ହେବ, ଏହି ଚିନ୍ତାରେ ମାତିଲେ । ସୁତରାଂ ସମଗ୍ର ୟୁରୋପ ତାଙ୍କ ବିରୁଦ୍ଧରେ ଗଲେ । କିନ୍ତୁ ଫ୍ରାନ୍ସ ଯୁଦ୍ଧ କରି ଥକିପଡ଼ିଥିଲା । ନେପୋଲିୟନଙ୍କ ବୟସ ମାତ୍ର ୪୭ ବର୍ଷ ହୋଇଥିଲେ ସୁଦ୍ଧା ସେ ଏକ କ୍ଲାନ୍ତ ବୃଦ୍ଧ ଲୋକ ହୋଇ ଯାଇଥିଲେ; ଏପରିକି ତାଙ୍କ ସ୍ୱାଂମେଧା ଲୁଇ ମଧ୍ୟ ତାଙ୍କୁ ଛାଡ଼ି ଚାଲି ଯାଇଥିଲେ । ସୁତରାଂ ସମଗ୍ର ୟୁରୋପ ତାଙ୍କ ବିରୁଦ୍ଧରେ ଜୟୀ ହେଲା; କିନ୍ତୁ ଶେଷରେ ସେ ଫ୍ରାନ୍ସ ଆସିବାର ୧୦୦ ଦିନ ପରେ ବ୍ରୁସେଲ୍ସ ସହର ନିକଟସ୍ଥ ଓ୍ୱାଟର୍‌ଲୁଠାରେ ଓ୍ୱେଲିଙ୍ଗଟନ ଓ ବ୍ଲୁଚରଙ୍କ ଚାଳିତ ଇଂରେଜ ଓ ପ୍ରୁସିଆନମାନଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ତାଙ୍କର ଏହି ଫେରିବା କାଳକୁ "ଏକଶହ ଦିନ" ବୋଲି କହନ୍ତି । ଓ୍ୱାଟରଲୁରେ ଖୁବ୍ ଭୀଷଣ ଲଢ଼ାଇ ହୋଇଥିଲା ଏବଂ କେଉଁ ପକ୍ଷ ଜିତିବ କହିବା ମୁସ୍କିଲ ଥିଲା । ନେପୋଲିଅନଙ୍କ ଭାଗ୍ୟ ଖରାପ । ଏଥିରେ ଜୟୀ ହେବା ତାଙ୍କ ପକ୍ଷ ରେ ସମ୍ଭବ ହୋଇ ପାରିଥାନ୍ତା; କିନ୍ତୁ ତାହା ହୋଇ ସୁଦ୍ଧା ମିଳିତ ୟୁରୋପ ଆଗରେ କିଛି ଦିନ ପରେ ତାଙ୍କୁ ନଇଁବାକୁ ହୋଇଥାନ୍ତା । ସେ ପରାସ୍ତ ହୋଇଯିବାରୁ ତାଙ୍କର ଅନେକ ସମର୍ଥକ ତାଙ୍କ ବିରୁଦ୍ଧରେ ଯାଇ ନିଜକୁ ରକ୍ଷା କରିବାକୁ ଚେଷ୍ଟା କଲେ । ଯୁଦ୍ଧ କରିବା ନିରର୍ଥକ ଥିଲା । ସେ ଦ୍ୱିତୀୟ ଥର ସିଂହାସନ ଛାଡ଼ିଲେ ଏବଂ ଫରାସୀ ବନ୍ଦରରେ ଗୋଟିଏ ଇଂରେଜ ଜାହାଜକୁ ଯାଇ କପ୍ତାନ ପାଖରେ ନିଜକୁ ସମର୍ପଣ କରି କହିଲେ—ସେ ଇଂଲଣ୍ଡରେ ଶାନ୍ତିରେ ବାସ କରିବାକୁ ଚାହାଁନ୍ତି ।

କିନ୍ତୁ ଇଂଲଣ୍ଡ ବା ୟୁରୋପରେ ଭଦ୍ର ବା ଭଲ ବ୍ୟବହାର ଆଶା କରିବା ତାଙ୍କ ପକ୍ଷରେ ଭୁଲ । ଲୋକେ ତାଙ୍କୁ ଭୀଷଣ ଡରୁଥିଲେ । ଏଲବାରୁ ସେ ପଳାଇ ଆସିଥିଲେ । ଏଲବାରୁ ସେ ପଳାଇ ଆସିଥିବାରୁ ସେମାନେ ଉପଲବ୍ଧି କଲେ ଯେ ତାଙ୍କୁ ବହୁଦୂରରେ ଏବଂ ଖୁବ୍ ଜଗୁଆଳି ଦେଇ ରଖିବାକୁ ପଡ଼ିବ । ତେଣୁ ତାଙ୍କ ପ୍ରତିବାଦ ସତ୍ତ୍ୱେ ତାଙ୍କୁ ବନ୍ଦୀ କରାଗଲା ଏବଂ ଅଳ୍ପ କେତେକ ସାଥି ସହ ଦକ୍ଷିଣ ଆଟଲାଣ୍ଟିକ ମହାସାଗରର ଖୁବ୍ ଦୂରରେ ଥିବା ସେଣ୍ଟ ହେଲେନା ଦ୍ୱୀପକୁ ତାଙ୍କୁ ପଠାଇ ଦିଆଗଲା । "ୟୁରୋପର ବନ୍ଦୀ" ରୂପେ ତାଙ୍କୁ ବ୍ୟବହାର କରାଗଲା ଏବଂ ସେଣ୍ଟ ହେଲେନାରେ ତାଙ୍କୁ ଜଗିବା ପାଇଁ ଅନେକ ସରକାର ତାଙ୍କ କମିଶନର ସବୁ ପଠାଇଲେ; କିନ୍ତୁ ପ୍ରକୃତରେ ତାଙ୍କୁ ଜଗିବା ପାଇଁ ଇଂରେଜମାନେ ପୂର୍ଣ୍ଣ ଦାୟିତ୍ୱ ନେଇଥିଲେ । ଏପରି କି ସଂସାରରୁ ବିଚ୍ଛିନ୍ନ ହୋଇ ସେ ସୁଦୂର ଦ୍ୱୀପରେ ମଧ୍ୟ ତାଙ୍କୁ ଜଗିବା ଲାଗି ସେମାନେ ଏକ ସେନା ନେଇ ହାଜର କରିଥିଲେ । ସେଠାରେ ଥିବା ରୁଷ କମିଶନର କାଉଣ୍ଟ ବାଲମେନ ସେଣ୍ଟ ହେଲେନା ଦ୍ୱୀପ ପାହାଡ଼ ବିଷୟରେ ଲେଖିଛନ୍ତି "ଏହି ସ୍ଥାନଟି ପୃଥିବୀର ସର୍ବାପେକ୍ଷା ଦୁଃଖଦାୟକ, ବିଚ୍ଛିନ୍ନ ସ୍ଥାନ । ସେଠିକି ଯିବା ଅସମ୍ଭବ । ଏହାକୁ ରକ୍ଷା କରିବା ସବୁଠୁ ସହଜ, ଆକ୍ରମଣ କରିବା କଠିନ ଏବଂ ସର୍ବାପେକ୍ଷା ଅସାମାଜିକ ସ୍ଥାନ ।" ସେହି ଦ୍ୱୀପର ଇଂରେଜ ଗଭର୍ଣ୍ଣର ଜଣେ ଅସାଧାରଣ ଅଭଦ୍ର ବର୍ବର

ଲୋକ ଥିଲେ ଏବଂ ସେ ନେପୋଲିୟନଙ୍କ ପ୍ରତି ବଡ଼ ଖରାପ ବ୍ୟବହାର କରିଥିଲେ । ଏକ ଭଙ୍ଗା ଘରେ ଦ୍ୱୀପର ଅସ୍ୱାସ୍ଥ୍ୟକର ସ୍ଥାନରେ ତାଙ୍କୁ ରଖାଯାଇଥିଲା ଏବଂ ସେ ଓ ତାଙ୍କର ସାଥିମାନଙ୍କ ଉପରେ ଅତି ଯନ୍ତ୍ରଣାଦାୟକ କଟକଣାମାନ ରଖାଯାଇଥିଲା । ବେଳେ ବେଳେ ତାଙ୍କ ପାଖରେ ଖାଇବା ପାଇଁ ମଧ୍ୟ ଯଥେଷ୍ଟ ଖାଦ୍ୟ ନ ଥାଏ । ୟୁରୋପରେ ତାଙ୍କ ବନ୍ଧୁମାନଙ୍କ ସହିତ ଚିଠିପତ୍ର କାରବାର କରିବାକୁ ତାଙ୍କୁ ଅନୁମତି ମିଳିଲା ନାହିଁ—ଏପରି କି ତାଙ୍କର ଛୋଟ ପୁଅ ଯାହାକୁ ସେ ରୋମର ରାଜା ଉପାଧି ଦେଇଥିଲେ ତାହା ସହିତ ମଧ୍ୟ ନୁହେଁ । ବାସ୍ତବିକ ଏପରିକି ତାଙ୍କର ପୁଅର ଖବର ମଧ୍ୟ ତାଙ୍କ ପାଖରେ ପହଞ୍ଚିବା ପାଇଁ ଦିଆଯାଉ ନଥିଲା ।

ନେପୋଲିୟନଙ୍କ ସହିତ ଯେପରି ବ୍ୟବହାର କରାଗଲା, ତାହା ବାସ୍ତବିକ ଅଦ୍ଭୁତ କଥା । କିନ୍ତୁ ସେଣ୍ଟ ହେଲେନା ଗଭର୍ଣ୍ଣର ତା ସରକାରର ହାତ ପିତୁଳା ଥିଲା ଏବଂ ଏହି ବନ୍ଦୀକୁ ଅପମାନଜନକ ଓ ଖରାପ ବ୍ୟବହାର କରିବା ଇଂରେଜ ସରକାରର ଜଣାଶୁଣା ନୀତି ପରି ମନେହୁଏ । ୟୁରୋପର ଅନ୍ୟ ଶକ୍ତିମାନେ ଏଥିରେ ସମ୍ମତି ଜ୍ଞାପନ କରୁଥିଲେ । ବୁଢ଼ୀ ହୋଇଥିବା ସତ୍ତ୍ୱେ ନେପୋଲିୟନଙ୍କ ମାଆ ତାଙ୍କ ସହିତ ରହିବାକୁ ଇଚ୍ଛା ପ୍ରକାଶ କରିଥିଲେ ; କିନ୍ତୁ ଏହି ପ୍ରଧାନ ଶକ୍ତିମାନେ କହିଲେ "ନା" । ତାଙ୍କ ଡେଣା କାଟି ତାଙ୍କୁ ସୁଦୂର ଦ୍ୱୀପରେ କ୍ଷମତାହୀନ ଭାବରେ ପକାଇ ସୁଦ୍ଧା ସାରା ୟୁରୋପ କିପରି ହେଉଥିଲା ଏହି ଦୁର୍ବ୍ୟବହାର ତାହାର ଗୋଟିଏ ପ୍ରମାଣ ।

ସେଣ୍ଟ୍ ହେଲେନାରେ ସାଢ଼େ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ସେ ରହି ଜୀବନ ସମାପ୍ତି ପାଇଲେ । ଏପରି ଏକ ଅପୂର୍ବ ଶକ୍ତିଶାଳୀ ଓ ଅଭିଳାଷୀ ମନୁଷ୍ୟ ପକ୍ଷରେ ଗୋଟିଏ ଛୋଟ ଦ୍ୱୀପରେ ଏପରି ଭାବରେ ରହିବା ଏବଂ ପ୍ରତିଦିନ ନାନା ଛୋଟ ଧରଣର ଅପମାନ ସବୁ ସହିବା ଦ୍ୱାରା ସେ କିପରି କଷ୍ଟ ପାଇଥିବେ, ତାହା ଅନୁମାନ କରିବା କିଛି କଷ୍ଟକର ନୁହେଁ । ସେ ୧୮୨୧ ସାଲ ମେ ମାସରେ ମଲେ । ତାଙ୍କ ମୃତ୍ୟୁ ପରେ ସୁଦ୍ଧା ଗଭର୍ଣ୍ଣରର ଘୃଣାବ୍ୟଞ୍ଜକ ବ୍ୟବହାର ସେହିପରି ଥିଲା ଏବଂ ଗୋଟାଏ କୁତ୍ସିତ କବର ତାଙ୍କୁ ଦେଲେ । ଧୀରେ ଧୀରେ ନେପୋଲିୟନ୍ଙ୍କ ପ୍ରତି ଦୁର୍ବ୍ୟବହାର ଓ ଶାନ୍ତି ସମ୍ବାଦ ଯେତେବେଳେ ୟୁରୋପରେ ଆସି ପହଞ୍ଚିଲା (ସେତେବେଳେ ବଡ଼ ବିଳମ୍ବରେ ସମ୍ବାଦ ଆସିପାରୁଥିଲା) ସେତେବେଳେ ଇଂଲଣ୍ଡ ଓ ଅନ୍ୟାନ୍ୟ ଅନେକ ଦେଶରେ ଏହା ବିରୁଦ୍ଧରେ ମତ ପ୍ରକାଶ ପାଇଲା । ଇଂରେଜ ବୈଦେଶିକ ମନ୍ତ୍ରୀ କ୍ୟାସ୍ଲେରିଗ୍ ଏହି ଖରାପ ବ୍ୟବହାର ପାଇଁ ମୁଖ୍ୟତଃ ଦାୟୀ ଥିଲେ । ଏହି କାରଣରୁ ଏବଂ ଅତି ନିଷ୍ଠୁର ଘରୋଇ ନୀତି ହେତୁ ସେ ବଡ଼ ଅପ୍ରିୟ ହୋଇଯାଇଥିଲେ । ସେ ଏଥିରେ ଏପରି ଅପମାନ ବୋଧକଲେ ଯେ ଆତ୍ମହତ୍ୟା କଲେ ।

ମହତ୍ ଓ ଅସାଧାରଣ ଲୋକମାନଙ୍କୁ ବିଚାର କରିବା କଷ୍ଟକର; ନିଜ ଦିଗରେ ନେପୋଲିୟନ୍ ଯେ ଜଣେ ମହାନ୍ ଓ ଅସାଧାରଣ ପୁରୁଷ ଥିଲେ ଏଥିରେ ସନ୍ଦେହ ନାହିଁ ।

ସେ ଖୁବ୍ ଶକ୍ତିଶାଳୀ, ପ୍ରକୃତିର ଶକ୍ତି ପରି ଥିଲେ । ଭାବଧାରା ଓ ଦୂରଦୃଷ୍ଟିସମ୍ପନ୍ନ ହୋଇ ସୁଦ୍ଧା ଆଦର୍ଶ ଓ ନିଃସ୍ୱାର୍ଥପର ଉଦ୍ଦେଶ୍ୟର ମୂଲ୍ୟ ପ୍ରତି ସେ ଅନ୍ଧ ଥିଲେ । ସେ କର୍ତ୍ତୃତ୍ୱଲାଭ କରିବାକୁ ଏବଂ ଲୋକମାନଙ୍କୁ ଗୌରବ ଓ ସମ୍ପଦ ଦେବାର ଆଶା ଦେଇ ବଶ କରିବାକୁ ଚେଷ୍ଟା କରିଥିଲେ । ତେଣୁ ଯେତେବେଳେ ଗୌରବ ଓ କ୍ଷମତା ଭଣ୍ଡାର ତାଙ୍କ ପାଖରୁ ଖାଲି ହୋଇଗଲା, ସେତେବେଳେ ଯେଉଁସବୁ ଲୋକଙ୍କୁ ସେ ଉନ୍ନତ କରାଇଥିଲେ ସେମାନଙ୍କୁ ନିଜ ପାଖରେ ରଖାଗଲା ପରି କୌଣସି ଆଦର୍ଶ ତାଙ୍କ ପାଖରେ ନଥିଲା ଏବଂ ଅନେକେ ତାଙ୍କୁ ଛାଡ଼ି ଚାଲିଗଲେ । ତାଙ୍କ ମତରେ ଗରିବ ଓ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ଧର୍ମ ନିଜ ଭାଗ୍ୟ ଆଦରି ପଡ଼ିରହିବା ପାଇଁ ଶିକ୍ଷା ଦିଏ । ସେ ଥରେ ଖ୍ରୀଷ୍ଟଧର୍ମ ବିଷୟରେ କହିଥିଲେ—"ଯେଉଁ ଧର୍ମ ସକ୍ରେଟିସ୍ ଓ ପ୍ଲାଟୋଙ୍କୁ ଅପମାନିତ କରିଥିଲା, ତାକୁ ମୁଁ ଧର୍ମ ବୋଲି କିପରି ସ୍ୱୀକାର କରିବି ?" ଇଜିପ୍ଟରେ ସେ ମୁସଲମାନ ଧର୍ମ ପ୍ରତି ଅନୁକୂଳ ଭାବ ଦେଖାଇଥିଲେ । ସେଠା ଲୋକଙ୍କ ନିକଟରେ ପ୍ରିୟ ହେବା ଲାଗି ସେ ଯେ ଏପରି କରିଥିବେ, ଏଥିରେ ସନ୍ଦେହ ନାହିଁ । ସେ ସମ୍ପୂର୍ଣ୍ଣ ଅଧାର୍ମିକ ଥିଲେ; ତଥାପି ସେ ଧର୍ମକୁ ଉତ୍ସାହିତ କରୁଥିଲେ । କାରଣ ସେ ପ୍ରଚଳିତ ସାମାଜିକ ବ୍ୟବସ୍ଥାର ଏକ ଅଙ୍ଗ ରୂପେ ଧର୍ମକୁ ଜ୍ଞାନ କରୁଥିଲେ । ସେ କହିଛନ୍ତି, "ଧର୍ମ ସ୍ୱର୍ଗ ସହିତ ସାମ୍ୟବାଦକୁ ସଂଯୋଗ କରାଏ, ତେଣୁ ଏହା ଗରିବମାନେ ଧନୀଙ୍କୁ ହତ୍ୟା କରିବାରେ ବାଧା ଦିଏ । ଇନ୍ଜେକ୍ସନ୍ ପରି ଧର୍ମ ଫଳଦାୟକ । ଗୋଟାଏ ରହସ୍ୟ ଉଦ୍ଦୀପକ ଜିନିଷ ପ୍ରତି ଆମର ଆଗ୍ରହ ଏହା ପରିତୃପ୍ତି କରେ ଏବଂ ଅଜ୍ଞ ଲୋକଙ୍କ ହାତରୁ ଆମକୁ ରକ୍ଷା କରେ । .........ସମ୍ପତ୍ତିର ଅସମାନତା ବିନା କୌଣସି ସମାଜ ତିଷ୍ଠିପାରେ ନାହିଁ; କିନ୍ତୁ ଧର୍ମ ବିନା ସମାଜ ରହିପାରେ ନାହିଁ । ନିଜ ପାଖରେ ଲୋକ ଉପାଦେୟ ସାମଗ୍ରୀ ପାଇ ଭୋଜି କରୁଥିବା ବେଳେ ଯେତେବେଳେ ଖାଇବାକୁ ନ ପାଇ ଜଣେ ମଣିଷ ମରୁଥାଏ, ସେତେବେଳେ ଗୋଟାଏ ଉଚ୍ଚ ଶକ୍ତିରେ ବିଶ୍ୱାସ ହିଁ ତାକୁ ବଞ୍ଚାଇ ରଖେ । ସେ ବିଶ୍ୱାସ ରଖେ ଯେ ପର ଜଗତରେ ବିଭିନ୍ନ ଧରଣର ଜିନିଷପତ୍ର ବଣ୍ଟା ହେବ ।" ଶକ୍ତି ମଦରେ ମାତି ସେ କହିଛନ୍ତି, "ଆମ ଉପରେ ଆକାଶ ପଡ଼ିଗଲେ ଆମେ ଆମ ବର୍ଛା ମୁନରେ ତାକୁ ଟେକି ରଖିବୁ ।"

ତାଙ୍କଠାରେ ଗୋଟାଏ ମହତ୍ତ୍ୱର ଚୁମ୍ବକ ଥିଲା ଏବଂ ଅନେକଙ୍କଠାରୁ ସେ ଅନୁରକ୍ତ ବନ୍ଧୁତ୍ୱ ପାଇଥିଲେ । ତାଙ୍କର ଦୃଷ୍ଟି ଆକବରଙ୍କ ପରି ଆକର୍ଷକ ଥିଲା । ସେ ଥରେ କହିଥିଲେ "ମୁଁ ପ୍ରାୟ ତରବାରୀ କାଢ଼ି ନାହିଁ । ମୁଁ ମୋ ଆଖିରେ ହିଁ ଯୁଦ୍ଧରେ ଜିତିଛି, ହାତିଆର ଦ୍ୱାରା ନୁହେଁ ।" ୟୁରୋପକୁ ଯୁଦ୍ଧରେ ପୂରାଇଥିବା ଜଣେ ଲୋକ ପକ୍ଷରେ ଏପରି ଉକ୍ତି ବାସ୍ତବିକ ଅଦ୍ଭୁତ । ନିର୍ବାସନ ବେଳେ ସେ କହିଥିଲେ, ଜୋର୍‌ଜବରଦସ୍ତି ଦ୍ୱାରା କିଛି ସମାଧାନ ହୋଇପାରେ ନାହିଁ, ମଣିଷର ଭାବ ତରବାରୀ ଅପେକ୍ଷା ଅଧିକ ଶକ୍ତିଶାଳୀ । ସେ କହିଥିଲେ "ଅନ୍ୟ ସବୁକଥା ଅପେକ୍ଷା ମତେ କଣ ବେଶି ଆଶ୍ଚର୍ଯ୍ୟ ଲାଗେ ଜାଣ ? କୌଣସି ସଙ୍ଗଠନ ନିମନ୍ତେ ବଳ ପ୍ରୟୋଗର ନିଷ୍ଫଳତା । ପୃଥିବୀରେ କେବଳ ଦୁଇଟି ଶକ୍ତି ଅଛି—ଭାବ ଓ ତରବାରୀ ।

ଅନେକ ଦିନ ପରେ ସ୍ୱବଂଶୀ ତରବାରୀକୁ ଜୟ କରିବ;'' କିନ୍ତୁ ସେ ବୋନାପାର୍ଟି ନାମ ରଖି ପାରିଲେ ନାହିଁ । ସେ ତରୁ ତରିଆ ହୋଇଥିଲେ ଏବଂ ତାଙ୍କ କାର୍ଯ୍ୟକାଳ ଆରମ୍ଭରେ ସେ ତରବାରିର ପଥକୁ ବାଛିଲେ; ତରବାରି ବଳରେ ସେ ବଢ଼ିଲେ ଏବଂ ସେହି ତରବାରି ଦ୍ୱାରା ହିଁ ତାଙ୍କର ପତନ ହେଲା । ସେ ପୁଣି କହିଥିଲେ, "ଯୁଦ୍ଧ ଏ ଯୁଗର ଜିନିଷ ନୁହେଁ; ଦିନେ ବିନା ବନ୍ଧୁକ ଓ ସଙ୍ଗିନ ବିନା ବି ବିଜୟ ହାସଲ କରିହେବ ।'' ତାଙ୍କର ଦୀର୍ଘମୟ ଅଭିଳାଷ, ଅତି ସହଜରେ ଯୁଦ୍ଧରେ ଜୟଲାଭ, ହଠାତ୍ ଉନ୍ନତ ହେବାକୁ ୟୁରୋପର ଲୋକମାନଙ୍କର ତାଙ୍କ ପ୍ରତି ଥିବା ଘୃଣା ଓ ଭୟ—ଏହିସବୁ ପରିସ୍ଥିତି ତାଙ୍କ ପକ୍ଷରେ ଅସହ୍ୟ ଥିଲା । ଏଥିଯୋଗୁଁ ସେ ସ୍ଥିର ହୋଇ ରହିବା ନିମନ୍ତେ ଶାନ୍ତି ପାଇ ନଥିଲେ । ଯୁଦ୍ଧରେ ମଣିଷ ଜୀବନ ବଳି ଦେବାରେ ସେ ବେପରୁଆ ଥିଲେ; ତଥାପି କୁହାଯାଏ ଯେ କଷ୍ଟ ଭୋଗୁଥିବା ଅବସ୍ଥା ଦେଖିଲେ ସେ ବିଚଳିତ ହୋଇଯାଉଥିଲେ ।

ବ୍ୟକ୍ତିଗତ ଜୀବନ ତାଙ୍କର ସରଳ ଥିଲା । କୌଣସି ବିଳାସ ଆଦରେ ସେ ଅତିମାତ୍ରାରେ ମାତି ନ ଥିଲେ । କେବଳ ଅତିରିକ୍ତ କାମ କରୁଥିଲେ । ତାଙ୍କ ମତରେ—"ଜଣେ ଲୋକ ଯେତେ କମ୍ ଖାଉ ପଛକେ, ସେ ବହୁତ ଖାଇପକାଏ । ଜଣେ ବେଶି ଖାଇ ପୀଡ଼ିତ ହୁଏ; କିନ୍ତୁ ଅଳ୍ପ ଖାଇବା ହେତୁ ହୁଏ ନାହିଁ ।'' ଏହି ସରଳ ଜୀବନ ହେତୁ ସେ ସୁନ୍ଦର ସ୍ୱାସ୍ଥ୍ୟ ଓ ଅଦ୍ଭୁତ ଶକ୍ତି ଅର୍ଜନ କରିଥିଲେ । ସେ ଯେତେବେଳେ ଇଚ୍ଛା କରୁଥିଲେ ଏବଂ ଯେତେ କମ୍ ଘଣ୍ଟା ଥିଲେ ଶୋଇ ପାରୁଥିଲେ । ସକାଳୁ ଦ୍ୱିପ୍ରହର ପର୍ଯ୍ୟନ୍ତ ୧୦୦ ମାଇଲ ଘୋଡ଼ାରେ ଚଢ଼ିବା ତାଙ୍କ ପକ୍ଷରେ କିଛି ଅସାଧାରଣ କଥା ନଥିଲା ।

ୟୁରୋପ ମହାଦେଶ ବାହାରେ ଯିବା ନିମନ୍ତେ ତାଙ୍କର ଅଭିଳାଷ ବଢ଼ିବା ସଙ୍ଗେ ସଙ୍ଗେ ସେ ୟୁରୋପକୁ ଗୋଟିଏ ଆଇନ ଓ ଶାସନବିଶିଷ୍ଟ ଏକ ସରକାର ଓ ସଙ୍ଘ ବୋଲି ବିଶ୍ୱରିବାକୁ ଲାଗିଲେ, "ମୁଁ ସମଗ୍ର ଦେଶକୁ ମିଶାଇ ଗୋଟିଏ କରିଦେବି ।'' ତା' ପରେ ସେଣ୍ଟ୍ ହେଲେନାରେ ନିର୍ବାସିତ ହେଲା ପରେ ଏହି ଚିନ୍ତା ତାଙ୍କ ମନକୁ ଫେରିଆସିଥିଲା ଏବଂ ନିଜକୁ ବାଦ୍ ଦେଇ କହିଥିଲେ "ଶୀଘ୍ର ହେଉ ବା ପରେ ହେଉ, ଏହି ସଂଯୋଗ (ୟୁରୋପୀୟ ଦେଶସବୁର) ଘଟଣା ବଳରେ ଅବଶ୍ୟ ହେବ । ପ୍ରଥମ ପ୍ରେରଣା ଦିଆଯାଇଛି । ମୋ ଦ୍ୱାରା ପ୍ରଚଳିତ ଶାସନର ପତନ ପରେ ମୋର ମନେହୁଏ ୟୁରୋପରେ ଏକ ଜାତି ପଞ୍ଚାୟତ ଜରିଆରେ ହିଁ କେବଳ ସାମଞ୍ଜସ୍ୟ ରକ୍ଷା ହେବ ।'' ଶହେ ବର୍ଷରୁ ଅଧିକ ପରେ ପରେ ସୁଦ୍ଧା ୟୁରୋପ ଅନ୍ଧାରରେ ବୁଲୁଛି ଏବଂ ଜାତିପଞ୍ଚାୟତର ପରୀକ୍ଷା କରୁଛି ।

ସେ ଶେଷ ବାଣୀ ଲେଖିଥିଲେ । ସେଥିରେ ତାଙ୍କର ଶ୍ରେଷ୍ଠ ପୁଅକୁ ସେ ଏକ ଚିଠି ପଠାଇଥିଲେ । ଏହାକୁ ସେ ରୋମ୍‌ର ରାଜା ବୋଲି ଡାକୁଥିଲେ ଏବଂ ଅତି ନିଷ୍ଠୁର ଭାବରେ ତା'ର ସମ୍ବାଦ ସୁଦ୍ଧା ତାଙ୍କୁ ଦିଆଯାଇ ନ ଥିଲା । ତାଙ୍କ ପୁଅ ଦିନେ ରାଜା ହେବାର ସେ ଆଶା ବାନ୍ଧିଥିଲେ ଏବଂ ଶାନ୍ତିରେ ଶାସନ କରିବାକୁ ଓ କୌଣସି ପ୍ରକାର ହିଂସା ନ କରିବାକୁ

ସେ ତାଙ୍କୁ କହିଥିଲେ—"ମୁଁ ଅସ୍ତ୍ର ବଳରେ ୟୁରୋପକୁ ବାଗୁକରିବାକୁ ଚେଷ୍ଟା କରିଥିଲି । ଆଧୁନିକ କାଳରେ ବୁଝାଇ ହୃଦ୍‌ବୋଧ କରାଇବା ହିଁ ଉତ୍କୃଷ୍ଟ ପନ୍ଥା ।" କିନ୍ତୁ ରାଜୁତି କରିବାର ଭାଗ୍ୟ ପୁଅର ନଥିଲା । ବାପ ମରିବାର ୧୧ ବର୍ଷ ପରେ ଭିଏନାରେ ସେ ମରିଯାଇଥିଲା । ତାଙ୍କର ନିର୍ବାସନ ବେଳେ ସେ ଖୁବ୍ ଶାନ୍ତି ପାଇଥିଲେ ଏବଂ ସେତିକିବେଳେ ଏସବୁ ଚିନ୍ତା ତାଙ୍କ ମନକୁ ଆସିଥିଲା । ତାଙ୍କ ପକ୍ଷରେ ଭବିଷ୍ୟତ ବଂଶଧରଙ୍କୁ ପ୍ରଭାବିତ କରିବା ପାଇଁ ସମ୍ଭବତଃ ସେ ଏପରି ଲେଖିଥିଲେ । ଐଶ୍ୱର୍ଯ୍ୟ ବେଳେ ସେ ଏକ କ୍ରିୟାଶୀଳ ଲୋକ ଥିଲେ, ଦାର୍ଶନିକ ନୁହେଁ । ସେ କ୍ଷମତାକୁ ହିଁ ପୂଜା କରୁଥିଲେ; କିନ୍ତୁ ପ୍ରତି ତାଙ୍କର ପ୍ରକୃତ ଶ୍ରଦ୍ଧା ଥିଲା, କୃତ୍ରିମ ଭାବରେ ନୁହେଁ । ସେ ଜଣେ କଳାବିତ୍ ଭାବରେ ଏହାକୁ ଶ୍ରଦ୍ଧା କରୁଥିଲେ । ସେ କହିଛନ୍ତି, "ମୁଁ କ୍ଷମତା ଭଲ ପାଏ । ହଁ, ମୁଁ ଏହାକୁ ଶ୍ରଦ୍ଧା କରେ, ଯେପରି କଳାକୁ କଳାବିତ୍ କରେ; ଠିକ୍ ବଂଶୀବାଦକ ଯେପରି ତା'ର ବଂଶୀକୁ ସ୍ୱର, ତାଳ ଓ ରାଗ ପାଇବ ବୋଲି ଭଲ ପାଏ, ମୁଁ ଠିକ୍ ସେହିପରି ଭଲପାଏ;" କିନ୍ତୁ ଅତ୍ୟଧିକ କ୍ଷମତା ରହିବା ବିପଜ୍ଜନକ ଏବଂ ଯେଉଁ ବ୍ୟକ୍ତିବିଶେଷ ବା ଜାତି ଏହା କରେ, ସେ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ନିଜର ପତନ ଓ ସର୍ବନାଶ ଆଣେ । ସେହି ହେତୁ ନେପୋଲିୟନଙ୍କର ପତନ ହେଲା । ତାଙ୍କର ପତନ ହୋଇ ଭଲହେଲା ।

ଏବେ ବୋର୍ବନ୍‌ମାନେ ଫ୍ରାନ୍‌ସରେ ରାଜୁତି କଲେ । କିନ୍ତୁ କଥିତ ଅଛି, ବୋର୍ବନ୍‌ମାନେ କେବେ କିଛି ଶିଖିଲେ ନାହିଁ ଏବଂ କିଛି ପାଶୋରି ପାରିଲେ ନାହିଁ । ନେପୋଲିୟନ୍‌ଙ୍କ ମୃତ୍ୟୁର ନଅବର୍ଷ ଭିତରେ ଫ୍ରାନ୍‌ସ ସେମାନଙ୍କ ଶାସନରେ ଅଧୀର ହୋଇପଡ଼ିଲା ଏବଂ ସେମାନଙ୍କୁ ଶେଷ କଲା । ଆଉ ଏକ ରାଜବଂଶ ସ୍ଥାପନା ହେଲା ଏବଂ ନେପୋଲିୟନ୍‌ଙ୍କ ପ୍ରତି ସମ୍ମାନ ଦେଖାଇବା ନିମନ୍ତେ ଭେଣ୍ଡୋମ୍ ସ୍ତମ୍ଭରୁ ତାଙ୍କର ଯେଉଁ ପ୍ରତିମୂର୍ତ୍ତି କାଢ଼ିନିଆଯାଇଥିଲା, ତାହା ପୁଣି ସେଠାରେ ରଖାଗଲା । ବୃଦ୍ଧ ଅବସ୍ଥା ଯୋଗୁଁ ଅନ୍ଧ ହୋଇ ପଡ଼ିଥିବା ନେପୋଲିୟନ୍‌ଙ୍କର ଦୁଃଖିନୀ ମାଆ କହିଥିଲେ—"ସମ୍ରାଟ୍ ପୁଣି ପାରିସ୍‌କୁ ଫେରିଆସିଛି ।"

## ୧୦୭ : ପୃଥିବୀ ନିରୀକ୍ଷଣ

ନଭେମ୍ବର ୧୯, ୧୯୩୨

ନେପୋଲିୟନ୍ ପୃଥିବୀ ରଙ୍ଗମଞ୍ଚରେ ଏତେ ଦିନ ପ୍ରାଧାନ୍ୟ କରିଥିଲେ—ଏବେ ସେ ଗଲେ । ଶହେ ବର୍ଷ ବିତିଗଲା ଓ ଅନେକ ପୁରୁଣା ବିପଦର ଝଡ଼ ଶାନ୍ତ ହୋଇଗଲାଣି; କିନ୍ତୁ ଯେତେ କହିଛି, ତାଙ୍କ ବିଷୟରେ ଲୋକଙ୍କ ମଧ୍ୟରେ ଏବେ ମଧ୍ୟ ମତାନୈକ୍ୟ ଅଛି । ସମ୍ଭବତଃ

ନେପୋଲିୟନ୍ ଯଦି ଅନ୍ୟବେଳେ ଅଉ କିଛି ଶାନ୍ତ ସମୟରେ ଜନ୍ମ ହୋଇଥାଆନ୍ତେ, ତେବେ ଜଣେ ପ୍ରସିଦ୍ଧ ସେନାପତି ଛଡ଼ା ଆଉ କିଛି ହୋଇପାରି ନଥାନ୍ତେ ଏବଂ ତାଙ୍କୁ କେହି ପଚାରିନଥାନ୍ତେ; କିନ୍ତୁ ବିପ୍ଳବ ଓ ପରିବର୍ତ୍ତନରେ ହିଁ ଆଗକୁ ମାଡ଼ିବାର ସୁଯୋଗ ତାଙ୍କୁ ମିଳିଲା ଏବଂ ସେ ପୂରା ଫାଇଦା ଉଠାଇଲେ । ୟୁରୋପୀୟ ଦୃଶ୍ୟପଟରୁ ତାଙ୍କର ପତନ ଓ ଅନ୍ତର୍ଦ୍ଧାନ ହେବା ଦ୍ୱାରା ୟୁରୋପର ଲୋକେ ସ୍ୱସ୍ତିର ନିଃଶ୍ୱାସ ମାରୁଥିଲେ; କାରଣ ସେମାନେ ଯୁଦ୍ଧକ୍ଳାନ୍ତ ହୋଇ ଯାଇଥିଲେ । ଗୋଟିଏ ପୁରୁଷ ପର୍ଯ୍ୟନ୍ତ ସେମାନେ ପ୍ରକୃତ ଶାନ୍ତି ପାଇ ନଥିଲେ ଓ ଶାନ୍ତି ଲାଗି ଅଧୀର ହୋଇ ପଡ଼ିଥିଲେ । ୟୁରୋପର ରାଜା ଓ ସମ୍ରାଟମାନେ ଅନେକ ବର୍ଷ ପର୍ଯ୍ୟନ୍ତ ନେପୋଲିୟନ୍ ନାମ ଶୁଣିଲେ ଆତଙ୍କିତ ହେଉଥିଲେ ଏବଂ ସେମାନଙ୍କ ଅପେକ୍ଷା ଆଉ କେହି ବେଶି ଅଶାନ୍ତ ହୋଇନଥିଲେ ।

ଆମେ ଫ୍ରାନ୍ସ ଓ ୟୁରୋପରେ ଦୀର୍ଘକାଳ କଟାଇଲେ ଏବଂ ଏବେ ଆମେ ୧୯ ଶତାବ୍ଦୀର ବହୁତ ଦୂର ଚାଲିଗଲେଣି । ଏବେ ପୃଥିବୀ ଆଡ଼କୁ ଦୃଷ୍ଟି ପକାଇବା ଏବଂ ନେପୋଲିୟନ୍‌ଙ୍କର ପତନ ବେଳେ ଏହା କିପରି ଥିଲା ଦେଖିବା ।

ତୋର ମନେଥିବ, ୟୁରୋପର ପୁରୁଣା ରାଜା ଓ ତାଙ୍କ ମନ୍ତ୍ରୀମାନେ ଭିଏନାରେ କଂଗ୍ରେସରେ ଏକତ୍ର ହୋଇଥିଲେ । ଅହଲ ଡର ଚାଲିଗଲା । ଏବେ ସେ ତାଙ୍କ ଖେଳ ଆରମ୍ଭ କରିପାରନ୍ତି ଏବଂ ନିଜର ଖୁସି ମୁତାବକ ଲକ୍ଷ ଲକ୍ଷ ମନୁଷ୍ୟଙ୍କର ଭାଗ୍ୟ ନିୟନ୍ତ୍ରିତ କରିପାରନ୍ତି । ଲୋକେ କ'ଣ ଚାହାନ୍ତି, ସେଥିରେ କିଛି ଯାଏଆସେନା କିମ୍ବା ଗୋଟିଏ ଦେଶର ପ୍ରାକୃତିକ ଓ ଭାଷାଗତ ସୀମାରେଖା ପ୍ରତି ବି ଖାତିର ନାହିଁ । ରୁଷର ଜାର୍, ଇଂଲଣ୍ଡ (କାଷ୍ଟଲରିଗ୍ ଏହାର ପ୍ରତିନିଧି ଥିଲେ), ଅଷ୍ଟ୍ରିଆ (ମାଟର୍ନିକ୍ ଏହାର ପ୍ରତିନିଧି ଥିଲେ) ଓ ପ୍ରୁସିଆ ହିଁ ପ୍ରଧାନ ଶକ୍ତି ଥିଲେ; ଅବଶ୍ୟ ଟାଲିରାଣ୍ଡ ଥିଲେ । ସେ ବଡ଼ ଚତୁର, ବିଚକ୍ଷଣ ଓ ଲୋକପ୍ରିୟ । ଏକଦା ସେ ନେପୋଲିୟନ୍‌ଙ୍କର ମନ୍ତ୍ରୀ ଥିଲେ, ଏବେ ଫ୍ରାନ୍ସର ବୋର୍ବନ୍ ରାଜାଙ୍କ ମନ୍ତ୍ରୀ ବି ହୋଇଥିଲେ । ନେପୋଲିୟନ୍ ୟୁରୋପ ମାନଚିତ୍ରକୁ ପରିବର୍ତ୍ତନ କରି ଦେଇଥିଲେ, ଏମାନେ ନୃତ୍ୟ ଓ ଭୋଜି ମଧ୍ୟରେ ସେ ମାନଚିତ୍ରକୁ ପୁଣି ନୂଆ କରି କଲେ ।

ବୋର୍ବନ୍ ୧୮ଶ ଲୁଇଙ୍କୁ ଫ୍ରାନ୍ସରେ ଆଣି ବସାଇଲେ । ସ୍ପେନ୍‌ରେ ପୁଣି ଇନ୍‌କୁଇଜିସନ୍ ଫେରି ଆସିଲା । ଭିଏନାରେ ଏକତ୍ର ହୋଇଥିବା ସମ୍ରାଟ୍‌ମାନେ ପ୍ରଜାତନ୍ତ୍ର ପସନ୍ଦ କରୁ ନଥିଲେ । ତେଣୁ ସେମାନେ ହଲାଣ୍ଡରେ ପୁରାତନ ଡଚ୍ ପ୍ରଜାତନ୍ତ୍ର ପୁନଃସ୍ଥାପନା କଲେନାହିଁ । ତା ପରିବର୍ତ୍ତେ ସେମାନେ ହଲାଣ୍ଡ ଓ ବେଲଜିୟମ୍‌କୁ ନେଦରଲାଣ୍ଡ ରାଜ୍ୟରେ ଯୋଡ଼ିଦେଲେ । ଏକ ସ୍ୱତନ୍ତ୍ର ଦେଶ ଭାବରେ ପୋଲାଣ୍ଡ ରହିଲା ନାହିଁ ଏବଂ ପ୍ରୁସିଆ, ଅଷ୍ଟ୍ରିଆ ଓ ମୁଖ୍ୟତଃ ରୁଷ୍ ହିଁ ଏହାକୁ ଗ୍ରାସ କଲେ । ଭେନିସ୍ ଓ ଉତ୍ତର ଇଟାଲୀ ଅଷ୍ଟ୍ରିଆରେ ମିଶିଲା । ସୁଇଜରଲାଣ୍ଡ ଓ ରିଭେରା ମଝିରେ ଇଟାଲୀରୁ କିଛି ଓ ଫ୍ରାନ୍ସରୁ କିଛି ମିଶି ସାର୍ଡିନିଆ ରାଜ୍ୟ ହେଲା । ମଧ୍ୟ-ୟୁରୋପରେ ଗୋଟାଏ ବିଚିତ୍ର ଏବଂ ଅନିର୍ଦ୍ଦିଷ୍ଟ ଜର୍ମାନ୍ ରାଷ୍ଟ୍ର ସମଷ୍ଟି ଥିଲା; କିନ୍ତୁ ଏଥିରେ

ପ୍ରୁସିଆ ଓ ଅଷ୍ଟ୍ରିଆ ହିଁ ଦୁଇଟି ପ୍ରଧାନ ଶକ୍ତି ହୋଇ ରହିଲେ । ଆହୁରି କେତେକ ପରିବର୍ତ୍ତନ ମଧ୍ୟ ହୋଇଥିଲା । ସୁତରାଂ ଭିଏନା କଂଗ୍ରେସର ବଡ଼ବଡ଼ ଲୋକେ ନିଜ ଆଦେଶ ବଳରେ ଲୋକଇଚ୍ଛା ବିରୁଦ୍ଧରେ ବଳପୂର୍ବକ ଏଣେତେଣେ କରିଦେଲେ; ଅନ୍ୟମାନଙ୍କ ଇଚ୍ଛାରେ ସେମାନଙ୍କୁ ରହିବାକୁ ବାଧ୍ୟ କଲେ ଏବଂ ଏଥିରେ ଭବିଷ୍ୟତରେ ଗୋଳମାଳ ଓ ଯୁଦ୍ଧ ପାଇଁ ବୀଜ ବୁଣିଦେଲେ ।

୧୮୧୪-୧୮୧୫ରେ ହୋଇଥିବା ଭିଏନା କଂଗ୍ରେସର ବିଶେଷ ବିଷୟ ଥିଲା, ରାଜାମାନଙ୍କୁ ସମ୍ପୂର୍ଣ୍ଣ ନିରାପଦ କରି ରଖିବା । ଫରାସୀ ବିପ୍ଳବ ହେତୁ ସେମାନଙ୍କର ଜୀବନ ସଙ୍କଟାପନ୍ନ ହୋଇଯାଇଥିଲା ଏବଂ ସେମାନେ ନିର୍ବୋଧ ଭାବରେ ବିଶ୍ୱାସ କଲେ ଯେ ନୂତନ ବୈପ୍ଳବିକ ଚିନ୍ତାଧାରା ପ୍ରସାରରେ ସେମାନେ ବାଧା ଦେଇପାରିବେ । ରୁଷିଆର ଜାର୍, ଅଷ୍ଟ୍ରିଆର ସମ୍ରାଟ୍ ଏବଂ ପ୍ରୁସିଆର ରାଜା ନିଜକୁ ଓ ଅନ୍ୟ ରାଜଗାଦିସବୁକୁ ରକ୍ଷା କରିବା ନିମନ୍ତେ ଗୋଟାଏ 'ପବିତ୍ର ମେଣ୍ଟ' କଲେ । ମନେହେଉଛି ଯେପରି କି ଥରେ ପୁଣି ୧୪ଶ ଲୁଇ ଓ ୧୫ଶ ଲୁଇ ଅମଳକୁ ଫେରିଆସିଲେ । ଇଂଲଣ୍ଡ ଓ ୟୁରୋପର ଅନ୍ୟସବୁ ଦେଶରେ ଉଦାର ଭାବଧାରା ଦବାଇ ଦିଆଗଲା । ଫରାସୀ ବିପ୍ଳବର ଏତେ ଯନ୍ତ୍ରଣା ଭୋଗ ବୃଥା ହେବା ଦେଖି ୟୁରୋପର ଲୋକେ ହତାଶ ହୋଇ ଥିବେ ।

ଇଉରୋପର ପୂର୍ବ ଦିଗରେ ତୁର୍କୀ ବଡ଼ ଦୁର୍ବଳ ହୋଇ ପଡ଼ିଥିଲା । ଏହା ଆସ୍ତେ ଆସ୍ତେ ଧ୍ୱଂସ ଆଡ଼କୁ ଯାଉଥିଲା । ତୁର୍କି ସାମ୍ରାଜ୍ୟ ଭିତରେ ଗ୍ରୀସ୍ ବୋଲି ପରିଚିତ ଥିଲା; କିନ୍ତୁ ଏହା ଅର୍ଦ୍ଧ-ସ୍ୱାଧୀନ ଥିଲା । ୧୮୨୧ରେ ତୁର୍କିର ଅଧୀନତା ବିରୁଦ୍ଧରେ ଗ୍ରୀସ୍ ବିଦ୍ରୋହ କଲା ଏବଂ ଆଠ ବର୍ଷ ଯୁଦ୍ଧ ପରେ ଇଂଲଣ୍ଡ ଓ ଫ୍ରାନ୍ସ ସାହାଯ୍ୟରେ ନିଜର ସ୍ୱାଧୀନତା ଅର୍ଜନ କଲା । ଏହି ଯୁଦ୍ଧରେ ସ୍ୱେଚ୍ଛାସେବକ ରୂପେ ଗ୍ରୀସ୍ ପକ୍ଷରେ ଯୁଦ୍ଧ କରୁ କରୁ ଇଂରେଜ କବି ବାଇରନ୍ ମରିଥିଲେ । ସେ ଗ୍ରୀସ୍ ସମ୍ବନ୍ଧରେ କେତେକ ଅତି ସୁନ୍ଦର କବିତା ଲେଖିଛନ୍ତି । ତୁ ବୋଧହୁଏ ତା ଜାଣୁ ।

୧୮୩୦ରେ ଆଉ ଯେଉଁ ଦୁଇଟି ରାଜନୀତିକ ପରିବର୍ତ୍ତନ ଘଟିଥିଲା, ତାହା ବି ମୁଁ ଏଠି ଉଲ୍ଲେଖ କରିପାରେ । ବୋର୍ବନ୍‌ମାନଙ୍କର ଅତ୍ୟାଚାର ଓ [illegible]ନରେ ବ୍ୟତିବ୍ୟସ୍ତ ହୋଇ ଫ୍ରାନ୍ସ ସେମାନଙ୍କୁ ତଡ଼ିଦେଲେ; କିନ୍ତୁ ପ୍ରଜାତନ୍ତ୍ର ପରିବର୍ତ୍ତେ ଜଣେ ରାଜା ବାଛି ନେଲା । ଲୁଇ ଫିଲିପ୍ ରାଜଗାଦି ପାଇଲେ । ଏ ଟିକିଏ ଭଲ ବ୍ୟବହାର କଲେ ଏବଂ ଅଳ୍ପ ଅଧିକେ ଶାସନତାନ୍ତ୍ରିକ ରାଜା ହେଲେ । ସେ ୧୮୪୮ ପର୍ଯ୍ୟନ୍ତ ରାଜୁତି କରି ପାରିଲେ । ଏହି ସମୟରେ ଆଉ ଏକ ବୃହତ୍ ଉଦ୍‌ଗୀରଣ ହୋଇଥିଲା । ୧୮୩୦ରେ ବେଲଜିୟମ୍‌ରେ ମଧ୍ୟ ବିଦ୍ରୋହ ହୋଇଥିଲା । ଏହା ଫଳରେ ବେଲ୍‌ଜିୟମ୍ ଓ ହଲାଣ୍ଡ ଅଲଗା ଅଲଗା ହୋଇଗଲେ । ଅବଶ୍ୟ ବୃହତ୍ ଇଉରୋପୀୟ ଶକ୍ତିଗୁଡ଼ିକ ଗୋଟାଏ ପ୍ରଜାତନ୍ତ୍ର ସ୍ଥାପନରେ ଦୃଢ଼ ଅସନ୍ତୋଷ ପ୍ରକାଶ କଲେ; ତେଣୁ ସେମାନେ ବେଲ୍‌ଜିୟମ୍‌କୁ ଜଣେ ଜର୍ମାନ ରାଜପୁତ୍ରଙ୍କୁ

ପଠାଇ ରାଜା କରାଇଲେ । ଆଉ ଜଣେ ଜର୍ମାନ ରାଜପୁତ୍ର ଗ୍ରୀସ୍‌ର ରାଜା ହେଲେ । ଜର୍ମାନିର ବିଭିନ୍ନ ଦେଶଗୁଡ଼ିକରେ ଏପରି ରାଜପୁତ୍ର ବେଶି ସଂଖ୍ୟାରେ ଥିଲେ ପରି ମନେହେଉଛି । କୌଣସି ସିଂହାସନ ଖାଲି ହେଲେ ସେଠି ମିଳି ଯାଉଥିଲେ । ମନେଥିବ, ଏବେ ଯେଉଁ ଇଂରେଜ ରାଜବଂଶ ରାଜତ୍ୱ କରୁଛନ୍ତି, ସେମାନେ ଜର୍ମାନିର ଗ୍ଲେଟ ହାନୋଭର ଷ୍ଟେଟ୍‌ରୁ ଆସିଥିଲେ ।

ୟୁରୋପରେ ଆହୁ କେତେକ ରାଜ୍ୟରେ, ବିଶେଷତଃ ଜର୍ମାନି, ଇଟାଲି ଓ ପୋଲଣ୍ଡରେ ୧୮୩୦ରେ ବିଦ୍ରୋହ ହୋଇଥିଲା; କିନ୍ତୁ ରାଜାମାନେ ଏହି ବିଦ୍ରୋହ ଦମନ କରିଦେଇଥିଲେ । ରୁଷବାଲା ପୋଲଣ୍ଡରେ ଖୁବ୍ କରୁର ଦମନ କରିଥିଲେ, ଏପରିକି ପୋଲଣ୍ଡ ଭାଷା ପ୍ରଚଳନ ମଧ୍ୟ ନିଷେଧ କରିଦେଲେ । ଆମେ ଦେଖିବା; ୧୮୪୮ ୟୁରୋପରେ ଏକ ବିପ୍ଳବ ବର୍ଷ ଥିଲା । ୧୮୩୦ ତାହାର ପୂର୍ବାଭାସ ମାତ୍ର ।

ଇଉରୋପ ବିଷୟରେ ଏତିକି । ଆଟଲାଣ୍ଟିକ୍ ସେପାରିରେ ଯୁକ୍ତରାଷ୍ଟ୍ର କ୍ରମେ ପଶ୍ଚିମ ଆଡ଼କୁ ମାଡ଼ିଯାଏ । ଇଉରୋପୀୟ ବିବାଦ ଓ ଯୁଦ୍ଧରୁ ଦୂରରେ ରହି ଏବଂ ଅପରିମିତ ଭୂମି ପଡ଼ି ରହିଥିବାରୁ ଏଗୁଡ଼ିକ ଶୀଘ୍ର ଅଗ୍ରଗତି ଲଭୁଥିଲା ଏବଂ ଇଉରୋପର ସମକକ୍ଷ ହେଉଥିଲା । ଯାହା ହେଉ ଦକ୍ଷିଣ ଆମେରିକାରେ ବଡ଼ ପରିବର୍ତ୍ତନ ହେଲା । ଅପ୍ରତ୍ୟକ୍ଷ ରୂପେ ନେପୋଲିୟନ୍‌ଙ୍କ ଯୋଗୁଁ ଏହା ହୋଇଥିଲା । ନେପୋଲିୟନ୍ ଯେତେବେଳେ ସ୍ପେନ୍ ଜୟ କରି ତାଙ୍କର ଗୋଟିଏ ଭାଇକୁ ସେଠି ଗାଦିରେ ବସାଇଲେ, ସେତେବେଳେ ଦକ୍ଷିଣ ଆମେରିକାରେ ଥିବା ସ୍ପେନ୍‌ର ଉପନିବେଶଗୁଡ଼ିକ ବିଦ୍ରୋହକଲେ । ଏହି ରୂପେ ଆମେରିକାର ସ୍ପେନୀୟ ଉପନିବେଶ ଗୁଡ଼ିକର ସ୍ପେନ୍‌ର ପୁରାତନ ରାଜବଂଶ ପ୍ରତି ଭକ୍ତି ଯୋଗୁଁ ଏହା ସ୍ୱାଧୀନ ହୋଇପାରିଲେ । ଏହା ହେଲା ଜରୁରୀ ପନ୍ଥା । ସେ ଯାହାହେଉ, କିଛି ଦିନ ପରେ ଏହି ସମ୍ପର୍କ ତୁଟି ଯାଇଥାନ୍ତା; କାରଣ ସମଗ୍ର ଦକ୍ଷିଣ ଆମେରିକାରେ ସ୍ୱାଧୀନତା ଭାବ ବୃଦ୍ଧି ପାଉଥିଲା । ସାଇମନ୍ ବଲିଭର ଦକ୍ଷିଣ-ଆମେରିକା ସ୍ୱାଧୀନତାର ପ୍ରଧାନ ବୀର—ତାଙ୍କୁ ଏଲ୍ ଲିବର୍ଟେଡ଼ର ଅର୍ଥାତ୍ ମୁକ୍ତିଦାତା ବୋଲି କହନ୍ତି । ଦକ୍ଷିଣ-ଆମେରିକାର ବଲିଭିଆ ପ୍ରଜାତନ୍ତ୍ରର ନାମକରଣ ତାଙ୍କ ନାମ ଅନୁସାରେ ହୋଇଛି । ସୁତରାଂ ନେପୋଲିୟନ୍‌ଙ୍କର ପତନ ବେଳେ ଆମେରିକାର ସ୍ପେନ୍ ଅଧୀନ ରାଜ୍ୟଗୁଡ଼ିକ ସ୍ପେନ୍‌ଠାରୁ ବିଚ୍ଛିନ୍ନ ହେଲେ ଏବଂ ସ୍ୱାଧୀନତା ପାଇଁ ଲଢ଼ିଲେ । ନେପୋଲିୟନ୍‌ଙ୍କୁ ତଡ଼ିଦେବା ପରେ ସୁଦ୍ଧା ଏହି ସଂଗ୍ରାମର କୌଣସି ପରିବର୍ତ୍ତନ ହୋଇ ନଥିଲା ଏବଂ ନୂତନ ସ୍ପେନ୍ ବିରୁଦ୍ଧରେ ଏହା ଅନେକ ଦିନ ଚାଲିଲା । ଆମେରିକା ଉପନିବେଶରେ ଏହି ବିପ୍ଳବୀମାନଙ୍କୁ ଦମନ କରିବା ନିମନ୍ତେ କେତେକ ଇଉରୋପୀୟ ରାଜା ତାଙ୍କ ଭାଇ ସ୍ପେନ୍ ରାଜାଙ୍କୁ ସାହାଯ୍ୟ କରିବା ପାଇଁ ଇଚ୍ଛା କରିଥିଲେ । କିନ୍ତୁ ଏପରି ହସ୍ତକ୍ଷେପକୁ ଆମେରିକା ସମ୍ପୂର୍ଣ୍ଣ ରୂପେ ବନ୍ଦ କରିଦେଲା । ସେତେବେଳେ ମନ୍ରୋ ଯୁକ୍ତରାଷ୍ଟ୍ରର ସଭାପତି ଥିଲେ ଓ ସେ ଇଉରୋପୀୟ ଶକ୍ତିମାନଙ୍କୁ ଜଣାଇ ଦେଲେ ଯେ

ସେମାନେ ଯଦି ଉତ୍ତର ବା ଦକ୍ଷିଣ-ଆମେରିକା କେଉଁଠି ହସ୍ତକ୍ଷେପ କରନ୍ତି ତେବେ ତାଙ୍କୁ ଯୁକ୍ତରାଷ୍ଟ୍ର ସହିତ ଯୁଦ୍ଧ କରିବାକୁ ପଡ଼ିବ । ଏହି ଧମକରେ ଇଉରୋପୀୟ ଶକ୍ତିଗୁଡ଼ିକ ଡରିଗଲେ ଏବଂ ସେହିଦିନଠାରୁ ସେମାନେ ଅନ୍ତତଃ ବାହ୍ୟତଃ ଦକ୍ଷିଣ-ଆମେରିକାରୁ ଅଲଗା ରହିଛନ୍ତି । ସଭାପତି ମନ୍ରୋଙ୍କର ଇଉରୋପକୁ ଏହି ଧମକ ଆଜି ସୁଦ୍ଧା "ମନ୍ରୋ ଡକ୍ଟ୍ରିନ୍" ନାମରେ ପ୍ରସିଦ୍ଧ । ଦୀର୍ଘକାଳ ପର୍ଯ୍ୟନ୍ତ ଇଉରୋପର ଲୋଲୁପ ଦୃଷ୍ଟିପଥରୁ ଦକ୍ଷିଣ-ଅମେରିକା ଉପନିବେଶଗୁଡ଼ିକ ଏହାଦ୍ୱାରା ରକ୍ଷା ପାଇଲେ ଏବଂ ଉନ୍ନତି ଲାଭ କଲେ । ସେମାନେ ଇଉରୋପରୁ ଭଲଭାବରେ ରକ୍ଷାପାଇଲେ; କିନ୍ତୁ ଯୁକ୍ତରାଷ୍ଟ୍ର ହାତରୁ ତାଙ୍କୁ ରକ୍ଷା କରିବାକୁ କେହି ନଥିଲା । ଆଜି ଯୁକ୍ତରାଷ୍ଟ୍ର ତାଙ୍କ ଉପରେ ପ୍ରାଧାନ୍ୟ କରୁଛି ଏବଂ ଅନେକଗୁଡ଼ିଏ ଶ୍ରେଷ୍ଠ ପ୍ରଜାତନ୍ତ୍ର ସମ୍ପୂର୍ଣ୍ଣ ରୂପେ ତାଙ୍କ କବଳରେ ରହିଛି ।

ସ୍ପେନ୍ର ବିଶାଳ ବ୍ରାଜିଲ୍ ରାଜ୍ୟ ପର୍ତ୍ତୁଗାଲ୍ର ଉପନିବେଶ ଥିଲା । ସ୍ପେନ୍ର ଆମେରିକା ଉପନିବେଶ ଯେଉଁ ସମୟରେ ସ୍ୱାଧୀନ ହେଲା, ଏହା ମଧ୍ୟ ସେହିକବେଳେ ସ୍ୱାଧୀନ ହେଲା । ସୁତରାଂ ଆମେ ଦେଖିଲେ ଯେ ୧୮୩୦ ବେଳକୁ ସମଗ୍ର ଦକ୍ଷିଣ-ଅମେରିକା ଇଉରୋପ କର୍ତ୍ତୃତ୍ୱରୁ ସ୍ୱାଧୀନ ଥିଲା । ଅବଶ୍ୟ ଉତ୍ତର-ଅମେରିକାରେ ବ୍ରିଟିଶ ଉପନିବେଶ କାନଡ଼ା ଥିଲା ।

ଏବେ ଆମେ ଏସିଆକୁ ଆସିବା । ନିଃସନ୍ଦେହ ଭାବରେ ଭାରତରେ ଇଂରେଜମାନେହିଁ ସର୍ବପ୍ରଧାନ ଶକ୍ତି ଥିଲେ । ଇଉରୋପରେ ନେପୋଲିୟନ୍ଙ୍କ ଯୁଦ୍ଧବେଳେ ଇଂରେଜମାନେ ତାଙ୍କ ସ୍ଥିତି ଦୃଢ଼ କଲେ ଏବଂ ଏପରିକି ଜାଭା ବି ଦଖଲ କଲେ । ମହୀଶୂରରେ ଟିପୁ ସୁଲ୍ତାନଙ୍କୁ ପରାସ୍ତ କରାଯାଇଥିଲା ଏବଂ ୧୮୧୯ରେ ମରହଟ୍ଟା ଶକ୍ତି ଭାଙ୍ଗି ଦିଆଗଲା । ଯାହା ହେଉ ପଞ୍ଜାବରେ ରଣଜିତ ସିଂହଙ୍କ ଅଧୀନରେ ଗୋଟିଏ ଶିଖ୍ରାଜ୍ୟ ଥିଲା । ସମଗ୍ର ଭାରତରେ ବ୍ରିଟିଶମାନେ ପ୍ରବେଶ କରି ପ୍ରସାର ଲାଭ କରୁଥିଲେ । ପୂର୍ବରେ ଆସାମ ମିଶିଲା ଏବଂ ଆରାକାନ—ବର୍ମା—ଦ୍ୱିତୀୟ ଗ୍ରାସ ପାଇଁ ରହିଯାଇଥିଲା ।

ଭାରତରେ ବ୍ରିଟେନ୍ ପ୍ରସାର ଲାଭ କରୁଥିଲାବେଳେ ଇଉରୋପର ଅଉ ଏକ ବିରାଟ ଦେଶ ରୁଷ୍ ମଧ୍ୟ-ଏସିଆରେ ମାଡ଼ି ଯାଉଥିଲା । ପୂର୍ବରେ ଏହା ପ୍ରଶାନ୍ତ ମହାସାଗର ଓ ଚୀନ ସ୍ପର୍ଶ କରିଥିଲା । ଏବେ ମଧ୍ୟ ଏସିଆର ଶ୍ରେଷ୍ଠ ଶ୍ରେଷ୍ଠ ରାଜ୍ୟ ଦଖଲ କରି ଧୀରେ ଏହା ଠିକ୍ ଆଫଗାନିସ୍ଥାନର ସୀମାନ୍ତ ପାଖକୁ ଆସିଯାଇଥିଲା । ଏହି ରୁଷ୍-ରାକ୍ଷସ ତାଙ୍କ ଆଡ଼କୁ ମାଡ଼ି ଆସୁଛି ଦେଖି ଭାରତରେ ଇଂରେଜମାନେ ଭୟଚକିତ ହେଲେ ଏବଂ ଭୟାତୁର ହୋଇ କୌଣସି କାରଣ ନ ଥାଇ ସେମାନେ ଆଫଗାନିସ୍ଥାନ ସହିତ ଯୁଦ୍ଧ କଲେ । ଏଥିରେ କିନ୍ତୁ ଆଚ୍ଛା ପଟାଏ ପାଇଲେ ।

ଚୀନ୍ ମାଞ୍ଚୁମାନଙ୍କ ଅଧୀନରେ ଥିଲା । ଯେଉଁ ବିଦେଶୀମାନେ ଏଠିକି ବେପାର ବା ଧର୍ମ ନାମରେ ଆସୁଥିଲେ, ସେମାନଙ୍କୁ ସନ୍ଦେହ କରିବାର ଯଥେଷ୍ଟ କାରଣ ଥିଲା ଏବଂ ସେମାନଙ୍କୁ ପୂରାଇ ନ ଦେବା ପାଇଁ ଚେଷ୍ଟା କରୁଥିଲା; କିନ୍ତୁ ବିଦେଶୀମାନେ ଚୀନ୍ ଦ୍ୱାର

ନିକଟରେ ଆସି ଚିକାର କଲେ ଓ ବିଦ୍ ଆଚରଣ କଲେ; ବିଶେଷତଃ ଅଫିମ ସ୍ୱେଚ୍ଛ ବେପାରୀଙ୍କୁ ଉତ୍ସାହିତ କଲେ । ଇଷ୍ଟଇଣ୍ଡିଆ କମ୍ପାନୀର ବ୍ରିଟିଶ ଚୀନ୍ ବେପାରରେ ଏକଚ୍ଛତ୍ରିଆ ଅଧିକାର ଥିଲା । ଚୀନ୍ ସମ୍ରାଟ୍ ଅଫିମ ପ୍ରବେଶ ନିଷେଧ କଲେ; କିନ୍ତୁ ଲୁଚ୍ଚ ସ୍ୱେଚ୍ଛ ଚୁଲିଲା ଏବଂ ବିଦେଶୀମାନେ ବେଆଇନ ଭାବରେ ଅଫିମ ବେପାର ଚଳାଇଲେ । ଏହା ଫଳରେ ଇଂଲଣ୍ଡ ସହିତ ଯୁଦ୍ଧ ଲାଗିଲା । ଏହାକୁ ଅଫିମ-ଯୁଦ୍ଧ କହିବା ଠିକ୍ । ଚୀନ୍‌ବାସୀଙ୍କୁ ଅଫିମ ଖାଇବାକୁ ଇଂରେଜମାନେ ବାଧ୍ୟ କଲେ ।

୧୬୩୪ରେ ଜାପାନ ଦ୍ୱାର ବନ୍ଦ କରି ଦେଇଥିବା କଥା ମୁଁ ଅନେକ ଆଗରୁ କହି ସାରିଛି । ୧୯ଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ସମସ୍ତ ବାହାର ଲୋକଙ୍କ ପାଇଁ ଏହା ବନ୍ଦ ଥିଲା । କିନ୍ତୁ ଏହି ଯୁଦ୍ଧ ସୀମାନ୍ତ ଭିତରେ ପୁରାତନ ସୋଗନେଟ୍ ଦୁର୍ବଳ ହୋଇଯାଉଥିଲା ଏବଂ ନୂତନ ଅବସ୍ଥା ସୃଷ୍ଟି ହେଉଥିଲା । ଏଗୁଡ଼ିକ ପୁରୁଣା ପ୍ରଥାକୁ ବନ୍ଦ କରିବାକୁ ଯାଉଥିଲା । ଆହୁରି ଦକ୍ଷିଣରେ ଦକ୍ଷିଣ-ପୂର୍ବ ଏସିଆରେ ୟୁରୋପୀୟ ଶକ୍ତିମାନେ ରାଜ୍ୟ ଦଖଲ କରି ଯାଉଥିଲେ ସ୍ପେନ୍ ଏବେ ସୁଦ୍ଧା ଫିଲିପାଇନ୍ ଦ୍ୱୀପ ଦଖଲ କରିଥିଲା । ଇଂରେଜ ଓ ଡଚମାନଙ୍କଦ୍ୱାରା ପର୍ତ୍ତୁଗୀଜମାନଙ୍କୁ ତଡ଼ିଦିଆଯାଇଥିଲା । ଭିଏନା କଂଗ୍ରେସ ପରେ ଡଚ୍‌ମାନେ ଜାଭା ଓ ଅନ୍ୟ ଦ୍ୱୀପଗୁଡ଼ିକୁ ଫେରି ପାଇଲେ । ଇଂରେଜ ସିଙ୍ଗାପୁର ଓ ମାଲୟ ଦ୍ୱୀପପୁଞ୍ଜ ଆଦିକୁ ପ୍ରସାର କରୁଥିଲେ । କିଛି କିଛି ସେ ଚୀନ୍‌କୁ ଦେଇଥିଲେ ସୁଦ୍ଧା, ଅନମ, ଶ୍ୟାମ ଓ ବର୍ମା ଏବେ ସୁଦ୍ଧା ସ୍ୱାଧୀନ ଥିଲା ।

ଓ୍ୱାଟର୍‌ଲୁଠାରୁ ୧୮୩୦ ପର୍ଯ୍ୟନ୍ତ ୧୫ ବର୍ଷ ଭିତରେ ମୋଟାମୋଟି ଏହାହିଁ ପୃଥିବୀର ରାଜନୈତିକ ଅବସ୍ଥା ଥିଲା । ନିର୍ଦ୍ଦିଷ୍ଟ ରୂପେ ୟୁରୋପହିଁ ପୃଥିବୀରେ ପ୍ରଧାନ ହୋଇ ଅସୁଥାଏ । ୟୁରୋପରେ ପ୍ରତିକ୍ରିୟାହିଁ ଜୟଲାଭ କଲା । ସମ୍ରାଟ୍ ଓ ରାଜାମାନେ ଏପରିକି ଇଂଲଣ୍ଡର ପ୍ରତିଗାମୀ ପାର୍ଲିମେଣ୍ଟ ମଧ୍ୟ ବିଚାରିଲେ ଯେ ସେମାନେ ସମସ୍ତ ଉଦାର ଭାବଧାରାକୁ ଦବାଇ ପାରିଛନ୍ତି । ଏହିଭାବଧାରା ବନ୍ଦ କରିବାକୁ ସେମାନେ ଚାହୁଁଥିଲେ । ସେମାନେ ଅବଶ୍ୟ ଅକୃତକାର୍ଯ୍ୟ ହେଲେ ଏବଂ ବାରମ୍ବାର ବିଦ୍ରୋହ ହୋଇଥିଲା ।

ରାଜନୀତିକ ପରିବର୍ତ୍ତନହିଁ ପ୍ରାଧାନ୍ୟ ଲଭିଥିଲା । ତଥାପି ଇଂଲଣ୍ଡର ଶିଳ୍ପ ବିପ୍ଳବ ସଙ୍ଗେ ସଙ୍ଗେ ଉତ୍ପାଦନ, ବଣ୍ଟନ ଓ ଯାତାୟାତ ପ୍ରଣାଳୀରେ ଯେଉଁ ବିରାଟ ବିପ୍ଳବ ହେଲା, ତାହା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ନୀରବ ଅଥଚ ବିନାବାଧାରେ ଏହା ୟୁରୋପ ଓ ଉତ୍ତର-ଆମେରିକାରେ ପ୍ରସାର ଲାଭ କରୁଥିଲା ଏବଂ ଲକ୍ଷ ଲକ୍ଷ ଲୋକଙ୍କର ଦୃଷ୍ଟିକୋଣ ଓ ଆଚରଣରେ ଏବଂ ବିଭିନ୍ନ ଶ୍ରେଣୀ ସହିତ ସମ୍ବନ୍ଧରେ ମଧ୍ୟ ପରିବର୍ତ୍ତନ କରିଦେଲା । କଳକବ୍‌ଜା ପ୍ରଚଳନ ସଙ୍ଗେ ଭାବଧାରା ପରିସ୍ଫୁଟ ହୋଇଥିଲା ଏବଂ ନୂତନ ଦୁନିଆ ଗଢ଼ିଉଠୁଥିଲା । ୟୁରୋପ ଅଧିକରୁ ଅଧିକ ସମର୍ଥ ଓ ଭୟାନକ, ଲୋଭୀ, ସାମ୍ରାଜ୍ୟବାଦୀ ଓ ହୃଦୟହୀନ ହେବାକୁ ଲାଗିଲା । ନେପୋଲିୟନ୍‌ଙ୍କର ଭାବଧାରା ତାଙ୍କ ତ୍ରାସ କରିଥିଲା ପରି ବୋଧହେଉଥିଲା; କିନ୍ତୁ ସେହି ୟୁରୋପରେ ହିଁ ଏପରି ଭାବଧାରା ସବୁ ଜାତ ହେଉଥିଲା, ଯାହା ସାମ୍ରାଜ୍ୟବାଦ ସହି ଲଢ଼ିଲା ଓ ତାକୁ ଫୋପାଡ଼ି ଦେଲା ।

ଏହି ସମୟର ସାହିତ୍ୟ, କବିତା ଏବଂ ସଙ୍ଗୀତ ବିଷୟ ଲେଖିବାକୁ ଇଚ୍ଛା ହେଉଛି; କିନ୍ତୁ ମୁଁ ଆଉ କଲମକୁ ଚଲାଇବି ନାହିଁ । ଆଜି ଏହା ତାର କାମ ଯଥେଷ୍ଟ ଭାବରେ କରିଛି ।

## ୧୦୭ : ବିଶ୍ୱଯୁଦ୍ଧ ପୂର୍ବରୁ ୧୦୦ ବର୍ଷ

ନଭେମ୍ବର ୨୨, ୧୯୩୨

୧୮୧୪ରେ ନେପୋଲିୟନ୍‌ଙ୍କର ପତନ ହେଲା; ତା ପରବର୍ଷ ସେ ଏଲବାରୁ ପେଇଥିଲେ; ପୁଣି ଥରେ ପରାସ୍ତ ହେଲେ; କିନ୍ତୁ ୧୮୧୪ରେ ତାର ଶାସନ ମିଳେଇ ଯାଇଥିଲା । ଠିକ୍ ଶହେ ବର୍ଷ ପରେ ୧୯୧୪ରେ ମହାସମର ଆରମ୍ଭ ହେଲା । ଏହା ସାରା ଦୁନିଆକୁ ବ୍ୟାପିଥିଲା ଏବଂ ଯେଉଁ ଚାରି ବର୍ଷ ଚାଲିଲା ତାହା ଭିତରେ ଭୀଷଣ କ୍ଷତି ହେଲା ଓ ଦୁଃଖ ଦେଲା । ଏହି ଶହେ ବର୍ଷଟାକୁ ଆମେ କିଛିଏ ବିସ୍ତୃତ ଭାବରେ ବିଚାର କରିବା । ଏହି ସମୟ ଆରମ୍ଭ ବେଳକୁ ପୃଥିବୀ କିପରି ଥିଲା, ତାର ଗୋଟିଏ ମୋଟାମୋଟି ଧାରଣା ମୁଁ ତତେ ଗତ ଚିଠିରେ ଦେବାର ଚେଷ୍ଟା କରିଛି । ମୋର ମନେହୁଏ, ବିଭିନ୍ନ ଦେଶର ଅବସ୍ଥା ଠିକନଖି ଆଲୋଚନା କରିବା ପୂର୍ବରୁ ସମଗ୍ର ରୂପେ ଏହି ଶତାବ୍ଦୀ ପ୍ରତି ଦୃଷ୍ଟି ପକାଇ ପରୀକ୍ଷା କରିବା ଆମର ଦରକାର । ସମ୍ଭବତଃ ଏହି ରୂପେ ଏହି ଶହେ ବର୍ଷ ଭିତରର ପ୍ରଧାନ ସ୍ରୋତମାନଙ୍କ ବିଷୟରେ ଆମର ଭଲ ଧାରଣା ହେବ ଏବଂ ଆମେ ଅନ୍ୟ ଏବଂ ବେଶି ଛବିରୁ ଦେଖିପାରିବା ।

୧୮୧୪ରୁ ୧୯୧୪—ଏହି ଶହେ ବର୍ଷରୁ ଅଧିକ ଭାଗ ୧୯ଶ ଶତାବ୍ଦୀ ଭିତରେ । ଅତଏବ ଏହାକୁ ୧୯ଶ ଶତାବ୍ଦୀ ବୋଲି କହିପାରିବା—ଯଦିଓ ଏହା ଏକଦମ୍ ଠିକ୍ ହେବ ନାହିଁ ।

ଊନବିଂଶ ଶତାବ୍ଦୀ ଏକ ମୁଗ୍‌ଧକର ବେଳ; କିନ୍ତୁ ଏହାର ଅନୁମାନ କରିବା ଆମ ପକ୍ଷରେ ସହଜ କଥା ନୁହେଁ । ଏହା ଏକ ବିଶାଳ ଚିତ୍ର ଏବଂ ଆମେ ଏହାର ଅତି ନିକଟ ହୋଇଥିବାରୁ ଏଥିପୂର୍ବ ଶତାବ୍ଦୀଗୁଡ଼ିକ ଅପେକ୍ଷା ଏହା ଆମକୁ ଅଧିକ ବଡ଼ ଓ ପୂର୍ଣ୍ଣତର ବୋଲି ବୋଧହୁଏ । ଯେଉଁ ସହସ୍ର ସୂତ୍ର ଏହା ଗଢ଼ିଥିଲା, ଆମେ ଯେତେବେଳେ ତାକୁ ବାହାର କରିବାକୁ ଚେଷ୍ଟା କରିବା, ସେତେବେଳେ ବରଂ ଏହାର ବିଶାଳତା ଓ ଜଟିଳତା ଆମକୁ ବିହ୍ୱଳ କରିପାରେ ।

ଏହା ଅପୂର୍ବ ଯନ୍ତ୍ରପାତିରେ ଉନ୍ନତ ଶତାବ୍ଦୀ; ଶିଳ୍ପବିପ୍ଳବ ଧାଇଁରେ ଯନ୍ତ୍ର ବିପ୍ଳବକୁ ପ୍ରେଜ ପଥଦେଲା ଏବଂ ମଣିଷ ଜୀବନରେ ଯନ୍ତ୍ର ଅଧିକରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଲା । ମଣିଷ ପୂର୍ବରୁ ଯାହା କରିଥିଲା, ତାହା ଅପେକ୍ଷା ଏହା ଯଥେଷ୍ଟ କଲା; ତାର ଆଲସ୍ୟକୁ ସହଜ କରିଦେଲା;

ନିଜର ବଳ ଉପରେ ନିର୍ଭର କରିବା କମାଇ ଦେଲ ଏବଂ ତା ପାଇଁ ଧନ ଉତ୍ପନ୍ନ କଲା । ବିଜ୍ଞାନ ବହୁ ପରିମାଣରେ ସାହାଯ୍ୟ କଲା ଏବଂ ଯାତାୟାତ ଓ ଯାନବାହନ ଦ୍ରୁତରୁ ଦ୍ରୁତତର ହେଲା । ଘୋଡ଼ାଗାଡ଼ି ସ୍ଥାନ ରେଲବାଇ ନେଲା ; ବାଷ୍ପୀୟଯାନ ପବନର ଗତି ଅନୁସାରେ ଚାଲୁଥିବା ଜାହାଜର ସ୍ଥାନ ଦଖଲ କଲା ଏବଂ ତା ପରେ ଆସିଲା ବିରାଟ ସମୁଦ୍ରରେ ନିୟମିତ ଯାତାୟାତ କରୁଥିବା ଜାହାଜ । ଏହା ଶକ୍ତ ଓ ସୁନ୍ଦର । ଏକ ମହାଦେଶରୁ ଅନ୍ୟ ମହାଦେଶ ପର୍ଯ୍ୟନ୍ତ ବେଗରେ ଓ ନିୟମିତ ରୂପେ ଯାତାୟାତ କଲା । ଏହି ଶତାବ୍ଦୀ ଶେଷ ବେଳକୁ ମଟର ଜାତୀୟ ଯାନ ବାହାରିଲା ଏବଂ ସମଗ୍ର ପୃଥିବୀରେ ମଟରଗାଡ଼ି ବ୍ୟାପିଗଲା । ଶେଷକୁ ଆସିଲା ଉଡ଼ାଜାହାଜ । ଏହି ସମୟରେ ମଣିଷ ଗୋଟିଏ ନୂଆ ଅପୂର୍ବ ଜିନିଷ ବିଦ୍ୟୁତ୍-ଶକ୍ତି ନିୟନ୍ତ୍ରଣ କରି ଉପଯୋଗ କଲା ଏବଂ ଟେଲିଗ୍ରାମ ଓ ଟେଲିଫୋନ୍ ଦେଖାଦେଲା । ଏଗୁଡ଼ିକ ଦୁନିଆରେ ବିରାଟ ପାର୍ଥକ୍ୟ କରିଦେଲେ । ଯାତାୟାତପ୍ରଣାଳୀ ଉନ୍ନତ ଲାଭ କରିବାରୁ ଏବଂ ଅଧିକ ବେଗରେ ଲୋକେ ଯାତ୍ରା କରି ପାରିବାରୁ ପୃଥିବୀ ସଙ୍କୁଚିତ ପରି ବୋଧହେଲା ଏବଂ ଖୁବ୍ ଶ୍ରେଷ୍ଠ ମନେହେଲା । ଆଜି ଆମେ ଏ ସବୁରେ ଅଭ୍ୟସ୍ତ ହୋଇଗଲୁଣି ଏବଂ ଏ ବିଷୟରେ ବିଚିତ୍ର ଚିନ୍ତାକରୁ; କିନ୍ତୁ ଏହି ସବୁ ଉନ୍ନତି ଓ ପରିବର୍ତ୍ତନ ଆମ ଜଗତରେ ନୂତନ ଆବିର୍ଭାବ; ଗତ ଏକଶହ ବର୍ଷ ଭିତରେ ଏସବୁ ଆସିଛି ।

ଏହାକୁ ୟୁରୋପ କିମ୍ବା ପଶ୍ଚିମ-ୟୁରୋପ ଏବଂ ବିଶେଷ ଭାବରେ ଇଂଲଣ୍ଡର ଶତାବ୍ଦୀ ବୋଲି କୁହାଯାଇପାରେ । ଶିଳ୍ପ ଓ ଯନ୍ତ୍ରବିପ୍ଳବ ସେଠି ଆରମ୍ଭ ହୋଇ ଉନ୍ନତ ହୋଇଥିଲା ଏବଂ ଏହା ପଶ୍ଚିମ-ୟୁରୋପକୁ ଆଗେଇ ନେଲା । ଇଂଲଣ୍ଡ ସମୁଦ୍ରକୁ ଓ ଶିଳ୍ପରେ ପ୍ରଧାନ ଥିଲା; କିନ୍ତୁ ଧୀରେ ଧୀରେ ଅନ୍ୟ ଦେଶମାନେ ମଧ୍ୟ ଏହାର ସମକକ୍ଷ ହୋଇଗଲେ । ଏହି ନୂତନ ଯାନ୍ତ୍ରିକ ସଭ୍ୟତା ସବୁ ଆମେରିକା ଯୁକ୍ତରାଷ୍ଟ୍ର ଅନ୍ତରେ ହେଲା—ପଶ୍ଚିମରେ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ରେଲଯୋଗୁଁ ଏହା ଲାଗିଗଲା ଏବଂ ଏହି ବିରାଟ ଦେଶକୁ ଗୋଟିଏ ଜାତିରେ ପରିଣତ କଲା । ଏଗୁଡ଼ିକ ନିଜର ସମସ୍ୟା ଓ ପ୍ରସାରରେ ଅତ୍ୟନ୍ତ ବ୍ୟସ୍ତ ରହିଲେ । ୟୁରୋପ ଓ ପୃଥିବୀର ଅବଶିଷ୍ଟ ଦେଶ ବିଷୟରେ ଭାବିବାକୁ ତାଙ୍କର ସମୟ ନଥିଲା । କିନ୍ତୁ ୟୁରୋପର କୌଣସି ପ୍ରକାର ହସ୍ତକ୍ଷେପରେ ବାଧାଦେବା ଓ ଅସନ୍ତୋଷ ପ୍ରକାଶ କରିବା ସମ୍ବନ୍ଧରେ ସେମାନେ ଦୃଢ଼ ଥିଲେ । ମନ୍ରୋ ଡକ୍ଟ୍ରିନ୍ ସମ୍ବନ୍ଧରେ ତତେ ମୁଁ ଆଗରୁ କହିଯାଇଛି । ଏହା ୟୁରୋପର ଲୋଲୁପଦୃଷ୍ଟିରୁ ଦକ୍ଷିଣ-ଆମେରିକା ପ୍ରଜାତନ୍ତ୍ରଗୁଡ଼ିକୁ ରକ୍ଷାକଲା । ଏହି ପ୍ରଜାତନ୍ତ୍ରଗୁଡ଼ିକୁ ଲାଟିନ୍ ପ୍ରଜାତନ୍ତ୍ର ବୋଲି କହନ୍ତି; କାରଣ ଏଗୁଡ଼ିକୁ ସ୍ପେନ୍ ଓ ପର୍ତ୍ତୁଗାଲର ଲୋକେ ସ୍ଥାପନା କରିଥିଲେ । ଏହି ଦୁଇଟି ଦେଶ ଏବଂ ଇଟାଲୀ ଓ ଫ୍ରାନ୍ସକୁ ଲାଟିନ୍ ଦେଶ ବୋଲି କହନ୍ତି । ଅନ୍ୟ ପକ୍ଷରେ ୟୁରୋପର ଉତ୍ତରାଞ୍ଚଳ ରାଜ୍ୟଗୁଡ଼ିକ ହେଉଛନ୍ତି ଟିଉଟନିକ; ଇଂଲଣ୍ଡ ହେଉଛି ଟିଉଟନ୍‌ମାନଙ୍କ ଆଙ୍ଗ୍ଲୋ ସାକ୍ସନ ଶାଖା । ଆମେରିକା-ଯୁକ୍ତରାଷ୍ଟ୍ରର ଲୋକେ ପ୍ରଥମେ ଏହି ଆଙ୍ଗ୍ଲୋ ସାକ୍ସନ ଶାଖାରୁ ଆସିଥିଲେ; କିନ୍ତୁ ପରେ ଅବଶ୍ୟ ନାନା ପ୍ରକାର ଲୋକ ଯାଇ ସେଠି ବାସକରିଛନ୍ତି ।

ପୃଥିବୀର ଅବଶିଷ୍ଟ ଦେଶଗୁଡିକ ଶିଳ୍ପ ଓ ଯନ୍ତ୍ର ଦିଗରେ ଅନୁନ୍ନତ ଥିଲ ଏବଂ ପଶ୍ଚିମର ନୂତନ ଯାନ୍ତ୍ରିକ ସଭ୍ୟତା ସହିତ ପ୍ରତିଯୋଗିତା କରିପାରିଲ ନାହିଁ । ପୁରୁଣା କୁଟୀରଶିଳ୍ପ ଅପେକ୍ଷା ୟୁରୋପ ନୂତନ ଯନ୍ତ୍ରଶିଳ୍ପ ଆହୁରି ପ୍ରଚୁର ଭାବରେ ଓ ଶୀଘ୍ର ମାଲ ଉତ୍ପନ୍ନ କଲ, କିନ୍ତୁ ଏହିସବୁ ଜିନିଷ ଉତ୍ପନ୍ନ କରିବା ନିମନ୍ତେ କଞ୍ଚାମାଲ ଲୋଡ଼ା ହେଲ; ଏହା ବେଶି କିଛି ପଶ୍ଚିମ ୟୁରୋପରେ ନ ଥିଲ । ଜିନିଷ ଉତ୍ପନ୍ନ ହେଲ, ତାହା ବିକ୍ରୀ ହେବା ଦରକାର; ତେଣୁ ତାହା ପାଇଁ ବଜାର ଆବଶ୍ୟକ ହେଲ । ତେଣୁ ଯେଉଁସବୁ ଦେଶରେ ଏହି କଞ୍ଚାମାଲ ମିଳିବ ଏବଂ ତିଆରି ଜିନିଷ ବିକ୍ରୀ ହୋଇ ପାରିବ, ପାଶ୍ଚାତ୍ୟ ଦେଶ ସବୁ ସେ ଦେଶ ଖୋଜି ବୁଲିଲେ । ଏସିଆ ଓ ଆଫ୍ରିକା ଦୁର୍ବଳ ଥିଲେ ଏବଂ ଶିକାରୀ ପଶୁ ପରି ୟୁରୋପ ତା ଉପରେ ପଡ଼ିଲ । ସାମ୍ରାଜ୍ୟ ଖେଳରେ ଇଂଲଣ୍ଡ ଶିଳ୍ପ ଓ କୌଶଳରେ ନେତା ଥିବାରୁ ପ୍ରଥମ ହେଲ ।

ତୋର ମନେଥିବ, ୟୁରୋପୀୟମାନେ ପ୍ରଥମେ ଭାରତର ପୂର୍ବାଞ୍ଚଳକୁ ଆସିଲେ ଓ ଅନ୍ୟ ଜିନିଷ ଖରିଦ କରି ୟୁରୋପର ଦାବୀ ମେଣ୍ଟାଇବାକୁ ଲାଗିଲେ । ଏହିରୂପେ ପ୍ରାଚ୍ୟ ଜିନିଷ ୟୁରୋପକୁ ଗଲ ଏବଂ ପ୍ରାଚ୍ୟ ଯନ୍ତ୍ରତିଆରି ଅନେକ ଜିନିଷ ପାଶ୍ଚାତ୍ୟକୁ ଗଲ; ମାତ୍ର ଏବେ ଯନ୍ତ୍ରର ଉନ୍ନତି ସଙ୍ଗେ ସଙ୍ଗେ ଏହା ବଦଳିଗଲ । ପଶ୍ଚିମ ୟୁରୋପର ଶସ୍ତାମାଲସବୁ ପ୍ରାଚ୍ୟକୁ ଆସିଲ ଏବଂ ବିଲାତି ଜିନିଷ ବିକ୍ରିକୁ ଉତ୍ସାହ ଦେବା ନିମନ୍ତେ ଇଷ୍ଟଇଣ୍ଡିଆ କମ୍ପାନି ଜାଣିଶୁଣି ଭାରତର କୁଟୀରଶିଳ୍ପକୁ ମାରିଦେଲ ।

ବିଶାଳ ଏସିଆକୁ ୟୁରୋପ ମାଡ଼ିବସିଲ । ଉତ୍ତରରେ ରୁଷ ସାମ୍ରାଜ୍ୟ ସମଗ୍ର ମହା-ଦେଶରେ ହାତ ଗୋଡ଼ ଲମ୍ବାଇ ଶୋଇ ପଡ଼ିଲ । ଦକ୍ଷିଣରେ ସର୍ବାପେକ୍ଷା ଅଧିକ ଲଭଦାୟକ ଭାରତ ଉପରେ ଇଂଲଣ୍ଡ ଶକ୍ତ କଣ୍ଢେଇ ଜାରି କଲ । ପଶ୍ଚିମରେ ତୁର୍କିସାମ୍ରାଜ୍ୟ ଭାଙ୍ଗି ପଡ଼ୁଥିଲ ଏବଂ ତୁର୍କିକୁ "ୟୁରୋପର ପୀଡ଼ିତ ଲୋକ" ବୋଲି କହୁଥିଲେ । ଇରାନ୍ ନାମକୁ ମାତ୍ର ସ୍ୱାଧୀନ ଥିଲା ଏବଂ ଇଂଲଣ୍ଡ ଓ ରୁଷ୍ ଏଥିରେ ପ୍ରାଧାନ୍ୟ କରୁଥିଲେ । ଶ୍ୟାମ୍‌ର ଅଳ୍ପ ଅଂଶ ବ୍ୟତୀତ ସମଗ୍ର ଦକ୍ଷିଣ-ପୂର୍ବ ଏସିଆ, ଯଥା—ବର୍ମା, ଇଣ୍ଡୋଚୀନା, ମାଲୟ, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ଫିଲିପାଇନ୍ ପ୍ରଭୃତି ୟୁରୋପର କବଳରେ ଆସିଗଲ ସୁଦୂର ପ୍ରାଚ୍ୟରେ ଚୀନ୍‌କୁ ସମସ୍ତ ୟୁରୋପୀୟ ଶକ୍ତି ଟିକି ଟିକି କରି କାମୁଡ଼ି ଖାଇଥିଲେ ଏବଂ ତା'ଠାରୁ ସୁବିଧା ଉପରେ ସୁବିଧା ଜୋର୍‌ପୂର୍ବକ ଆଦାୟ କରାଗଲା । କେବଳ ଜାପାନ ସିଧା ହୋଇ ଛିଡାହେଲା ଏବଂ ସମ୍ମାନଜନକ ଭାବରେ ୟୁରୋପର ସମ୍ମୁଖୀନ ହେଲା । ସେ ତାର ନିଭୃତବାସରୁ ବାହାରିଆସିଥିଲ ଏବଂ ଅପୂର୍ବ ବେଗରେ ନୂତନ ଅବସ୍ଥା ସହିତ ନିଜକୁ ଖାପ ଖୁଆଇ ନେଲା ।

ଇଜିପ୍ଟ ଛଡ଼ା ଆଫ୍ରିକା ଅତ୍ୟନ୍ତ ଅନୁନ୍ନତ ଥିଲ । ଏହା ୟୁରୋପର ଯେପରି କିଛି ପ୍ରତିରୋଧ କରିପାରି ନ ଥିଲା ଏବଂ ସାମ୍ରାଜ୍ୟ ବଢ଼ାଇବାର ଉନ୍ମତ୍ତ ପ୍ରତିଦ୍ୱନ୍ଦ୍ୱିତାରେ ୟୁରୋପୀୟ ଶକ୍ତିଗୁଡ଼ିକ ଏହା ଉପରେ ପଡ଼ିଲେ ଓ ଏହି ବିଶାଳ ମହାଦେଶକୁ ବାଣ୍ଟି

ନେଲେ । ଇଜିପ୍ଟ ଭାରତକୁ ଆସିବା ବାଟରେ ଥିବାରୁ ଇଂଲଣ୍ଡ ତାହା ଦଖଲ କଲା ଏବଂ ଏଣିକି ଭାରତକୁ ଧରିରଖିବା ଇଚ୍ଛାରେହିଁ ବ୍ରିଟିଶ ନୀତି ମୁଖ୍ୟଭାବରେ ପରିଚାଳିତ ହେଲା । ୧୮୬୯ରେ ସୁଏଜ କେନାଲ ଖୋଲାହେଲା ଏବଂ ଏହା ୟୁରୋପରୁ ଭାରତ ଯାତ୍ରା ଅତି ନିକଟ କରିଦେଲା । ଏଥିଯୋଗୁଁ ଇଜିପ୍ଟ ମଧ୍ୟ ଇଂଲଣ୍ଡ ପକ୍ଷରେ ଅତ୍ୟନ୍ତ ମୂଲ୍ୟବାନ୍ ହୋଇଗଲା; କାରଣ ଇଜିପ୍ଟ ଏହି କେନାଲରେ ହସ୍ତକ୍ଷେପ କରିପାରେ ଏବଂ ଏହିରୂପେ ଭାରତକୁ ଜଳପଥ ଆଯତ୍ତ କରିପାରେ ।

ତେଣୁ ଯନ୍ତ୍ରବିପ୍ଳବ ଫଳରେ ପୁଞ୍ଜିବାଦୀ ସଭ୍ୟତା ସାରା ପୃଥିବୀରେ ବିସ୍ତାର ଲାଭ କଲା ଏବଂ ପ୍ରତ୍ୟେକ ସ୍ଥାନରେ ୟୁରୋପ ପ୍ରାଧାନ୍ୟ ଲାଭ କଲା । ପୁଞ୍ଜିବାଦ ଫଳରେ ସାମ୍ରାଜ୍ୟବାଦ ହେଲା । ଏହି ଶତାବ୍ଦୀକୁ ସାମ୍ରାଜ୍ୟବାଦୀ ଶତାବ୍ଦୀ ବୋଲି କୁହାଯାଇପାରେ; କିନ୍ତୁ ଏହି ନୂତନ ସାମ୍ରାଜ୍ୟ ଯୁଗ ରୋମ, ଚୀନ, ଭାରତ, ଆରବ ଓ ମଙ୍ଗୋଲମାନଙ୍କ ଅମଳରେ ପୁରାତନ ସାମ୍ରାଜ୍ୟବାଦ ଭିତରେ ଅତ୍ୟନ୍ତ ପ୍ରଭେଦ ଥିଲା । ଏହା ଏକ ନୂତନ ପ୍ରକାର ସାମ୍ରାଜ୍ୟ—କଞ୍ଚାମାଲ ଓ ବଜାର କ୍ଷୁଧା ଏହାର ବିଶେଷତ୍ୱ । ଏହି ନୂତନ ସାମ୍ରାଜ୍ୟବାଦ ନୂତନ ଶିଳ୍ପଉଦ୍ୟୋଗର ସନ୍ତାନ । କୁହାଯାଇଛି, "ପତାକା ପଛେ ପଛେ ବେପାର ଆସେ ।" ବିଶେଷ ଭାବରେ ବାଇବଲ ଅର୍ଥାତ୍ ଖ୍ରୀଷ୍ଟଧର୍ମ ପଛରେ ପତାକା ଆସିଛି । ପୃଥିବୀରେ ଶିଳ୍ପଦିଗରେ ଅଧିକ ଅନୁନ୍ନତ ଏବଂ ଦୁର୍ବଳ ଦେଶକୁ ଶୋଷଣ—ଏହି ଏକମାତ୍ର ଉଦ୍ଦେଶ୍ୟରେ ଧର୍ମ, ବିଜ୍ଞାନ, ନିଜ ଦେଶପ୍ରୀତି ଏହି ସବୁର ବ୍ୟବହାର କରାଗଲା । ତାହା ହେଲେ ବଡ଼ ଯନ୍ତ୍ରର ମାଲିକ, ଶିଳ୍ପଉଦ୍ୟୋଗର ରାଜାମାନେ ଅଧିକରୁ ଅଧିକ ଧନୀ ହୋଇପାରିବେ । ସତ୍ୟ ଓ ପ୍ରେମ ନାମରେ ଯାଇ ଖ୍ରୀଷ୍ଟିଆନ ପାଦ୍ରୀମାନେ ସର୍ବଦା ସାମ୍ରାଜ୍ୟର ଫାଣ୍ଡି ହେଉଥିଲେ ଏବଂ ତାଙ୍କ ଉପରେ କିଛି ବିପଦ ପଡ଼ିଲେ ତାଙ୍କ ଦେଶ ଏହି ପେଖନା କରି ସେମାନଙ୍କ ରାଜ୍ୟଦଖଲ କରିବାକୁ ବାହାରନ୍ତି ଏବଂ ସୁବିଧା ହାସଲ କରନ୍ତି ।

ଶିଳ୍ପ ଓ ସଭ୍ୟତାର ପୁଞ୍ଜିବାଦୀ ସଂଗଠନ ଫଳରେ ସାମ୍ରାଜ୍ୟବାଦ ଗଢ଼ିଉଠିଲା । ପୁଞ୍ଜିବାଦ ଫଳରେ ଜାତୀୟତାର ଭାବ ଗାଢ଼ତର ହେଲା; ସୁତରାଂ ଏହି ଶତାବ୍ଦୀକୁ ଜାତୀୟତା ଶତାବ୍ଦୀ ବୋଲି କୁହାଯାଇପାରେ । ଏହି ଜାତୀୟତାର ଅର୍ଥ କେବଳ ନିଜ ଦେଶକୁ ସ୍ନେହ କରିବା ନୁହେଁ; ଅନ୍ୟ ସବୁକୁ ଘୃଣା କରିବା । ଆପଣା ଭୂମିର ଗୌରବଗାନ ଏବଂ ଘୃଣାବ୍ୟଞ୍ଜକ ଭାବରେ ଅନ୍ୟ ସବୁ ଦେଶକୁ ଶ୍ଳେଷଞ୍ଜନ କରିବା ଯୋଗୁ ବିଭିନ୍ନ ଦେଶ ଭିତରେ ଗୋଲମାଲ ଓ ବିବାଦ ଘଟିବା ଅବଶ୍ୟମ୍ଭାବୀ । ବିଭିନ୍ନ ଇଉରୋପୀୟ ଦେଶ ଭିତରେ ଶିଳ୍ପ ପ୍ରତିଯୋଗିତା ଓ ସାମ୍ରାଜ୍ୟ ଯୋଜନା ଦ୍ୱନ୍ଦ୍ୱ ହେବାରୁ ଅବସ୍ଥା ଖରାପ ହେଲା । ୧୮୧୪-୧୫ରେ ଭିଏନା କଂଗ୍ରେସରେ ଇଉରୋପର ମାନଚିତ୍ର ଯେପରି ଛିନ୍ନଭିନ୍ନ କରାଗଲା, ସେଥିରେ ଉତ୍ତେଜନା ଆହୁରି ବଢ଼ିଲା । ଏହି ଅନୁସାରେ କେତେକ ଦେଶକୁ ଦବାଇଦିଆଗଲା ଏବଂ ଜବରଦସ୍ତି ଅନ୍ୟ ଦେଶ ଶାସନ ଅଧୀନରେ ରଖାଗଲା । ଗୋଟିଏ ଦେଶ ଭାବରେ ପୋଲଣ୍ଡ ଅନ୍ତର୍ହିତ ହେଲା ।

ଅଷ୍ଟ୍ରିଆ ହଙ୍ଗେରୀ ସାମ୍ରାଜ୍ୟ ବଡ଼ ଖରାପ ଭାବରେ ବଣ୍ଟାହୋଇଥିଲା—ଏଥିରେ ନାନାପ୍ରକାର ଲୋକ ରହୁଥିଲେ ଏବଂ ସେମାନେ ପରସ୍ପରକୁ ନାପସନ୍ଦ କରୁଥିଲେ । ଇଉରୋପର ଦକ୍ଷିଣ-ପୂର୍ବରେ ତୁର୍କୀ ସାମ୍ରାଜ୍ୟରେ ବଲକାନ୍ ଦେଶର ଅନେକ ଲୋକ ବି ସ୍ଥାନପାଇଲେ । ଇଟାଲୀ ଅନେକଗୁଡ଼ିଏ ରାଜ୍ୟରେ ବିଭକ୍ତ ହେଲା ଏବଂ ଏହାର ଗୋଟିଏ ବିଭାଗ ଅଷ୍ଟ୍ରିଆ ଅଧୀନରେ ରହିଥିଲା । ଯୁଦ୍ଧ ଓ ବିପ୍ଳବଦ୍ୱାରା ଇଉରୋପର ମାନଚିତ୍ର ବଦଳାଇବା ନିମନ୍ତେ ବାରମ୍ବାର ଉଦ୍ୟମ କରାଗଲା । ମୋର ଗତ ଚିଠିରେ ଭିଏନା କଂଗ୍ରେସ ପରେ ଯାହାସବୁ ହୋଇଥିଲା, ମୁଁ ଲେଖିଥିଲି । ଏହି ଶତାବ୍ଦୀର ଦ୍ୱିତୀୟ ଭାଗରେ ଇଟାଲି ଉତ୍ତରରେ ଅଷ୍ଟ୍ରିୟାନ୍‌ମାନଙ୍କୁ ତଡ଼ିଦେଲା ଏବଂ କେନ୍ଦ୍ରରେ ପୋପଶାସନ ମଧ୍ୟ ଟଳମଳ କରିଦେଲା । ଏହା ଏକ ମିଳିତ ଜାତି ହେଲା । ଏହା ପରେ ପ୍ରୁସିଆ ନେତୃତ୍ୱରେ ଜର୍ମାନୀ ମଧ୍ୟ ଏକତ୍ରିତ ହୋଇଗଲା । ଜର୍ମାନୀ ଦ୍ୱାରା ଫ୍ରାନ୍ସ ଅପମାନିତ ଓ ପରାସ୍ତ ହେଲା ଏବଂ ତାର ଦୁଇଟି ସୀମାନ୍ତ ପ୍ରଦେଶ ଆଲାସେକ୍ ଓ ଲରେନ୍ ଛଡ଼ାଇନିଆଗଲା ଏବଂ ସେହିଦିନଠାରୁ ସେ ପ୍ରତିଶୋଧ ନେବା ସ୍ୱପ୍ନ ଦେଖୁଥିଲା । ପଚାଶ ବର୍ଷରୁ କମ୍ ସମୟ ଭିତରେ ଗୋଟାଏ ରକ୍ତାକ୍ତ ଓ ପ୍ରଚଣ୍ଡ ପ୍ରତିଶୋଧ ନିଆଗଲା ।

ଇଂଲଣ୍ଡ ଶିଳ୍ପରେ ଅଗ୍ରଗାମୀ ଥିବାରୁ ଇଉରୋପୀୟ ଦେଶମାନଙ୍କ ଭିତରେ ସର୍ବାପେକ୍ଷା ଭାଗ୍ୟବାନ୍ ଥିଲା । ସେ ସବୁ ସୁବିଧା ପାଇଥିଲା ଏବଂ ଯାହା ଅବସ୍ଥା ଥିଲା ସେଥିରେ ସନ୍ତୁଷ୍ଟ ଥିଲା । ଏହି ନୂତନ ଧରଣ ସାମ୍ରାଜ୍ୟର ଆଦର୍ଶ ଥିଲା ଭାରତବର୍ଷ । ଏହା ଏକ ଧନଶାଳୀ ଦେଶ ଏବଂ ଏହାର ଶୋଷଣ ଫଳରେ ଅବିରାମ ଭାବରେ ଇଂଲଣ୍ଡକୁ ସୁବର୍ଣ୍ଣ ବୋହିବାକୁ ଲାଗିଲା । ଅନ୍ୟ-ସବୁ ଭାବୀ ସାମ୍ରାଜ୍ୟସ୍ଥାପୟିତାମାନେ ଇଂଲଣ୍ଡର ଏହି ଭାରତ ଦଖଲରେ ଈର୍ଷା କଲେ । ଏହି ଭାରତ ଆଦର୍ଶରେ ସେମାନେ ଅନ୍ୟ ସ୍ଥାନମାନଙ୍କରେ ସାମ୍ରାଜ୍ୟ ଗଠନ କରିବା ଲାଗି ଖୋଜି ବୁଲିଲେ । ଫରାସୀମାନେ କେତେକ ପରିମାଣରେ ସଫଳ ହେଲେ; ଜର୍ମାନ୍‌ମାନେ ଟିକିଏ ପଛରେ ପଡ଼ିଗଲେ ଏବଂ ତାଙ୍କ ପାଇଁ ଆଉ ବାକି ବିଶେଷ କିଛି ନ ଥିଲା; ତେଣୁ ଇଉରୋପର ଏହି ପ୍ରଧାନ ଶକ୍ତିମାନଙ୍କ ମଧ୍ୟରେ ସାରା ଜଗତରେ ଗୋଟାଏ ରାଜନୀତିକ ଗୃହକଳି ଖେଳିଗଲା; ପ୍ରତ୍ୟେକେ ଅଧିକରୁ ଅଧିକ ଅଞ୍ଚଳ ଗ୍ରାସ କରିବାକୁ ଚେଷ୍ଟା କରୁଥିଲେ ଏବଂ ସେହି କାର୍ଯ୍ୟରେ ନିଯୁକ୍ତ ଅନ୍ୟମାନଙ୍କ ସଙ୍ଗରେ ସଂଘର୍ଷ ଲାଗୁଥିଲା । ବିଶେଷତଃ ଇଂଲଣ୍ଡ ଓ ରୁଷ ଭିତରେ ବାରମ୍ବାର ବିବାଦ ଲାଗୁଥିଲା; କାରଣ ମଧ୍ୟ-ଏସିଆରୁ ରୁଷ୍, ଇଂଲଣ୍ଡ ଅଧିକୃତ ଭାରତ ଦଖଲ କରିବାର ଭୟ ଥିଲା । ତେଣୁ ଇଂଲଣ୍ଡ ରୁଷ୍‌ର ଗତିରୋଧ କରିବାକୁ ସର୍ବଦା ଚେଷ୍ଟା କରୁଥିଲା । ଏହି ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ରୁଷ୍ ତୁର୍କୀକୁ ପରାସ୍ତ କଲା ଓ କନ୍‌ଷ୍ଟାଣ୍ଟିନୋପଲ ଅଧିକାର କଲା । ସେତେବେଳେ ଇଂଲଣ୍ଡ ତୁର୍କୀ ସପକ୍ଷରେ ଆସି ରୁଷ୍‌କୁ ହଟାଇଦେଲା । ତୁର୍କୀ ପରି ପ୍ରୀତିଭାବ ଦେଖାଇ ଇଂଲଣ୍ଡ ଏହା କରିନଥିଲା; କିନ୍ତୁ ଅସଲ କାରଣ ହେଉଛି ରୁଷ୍‌ର ଡ଼ର ଓ ଭାରତ ହରାଇବା ଆଶଙ୍କା ।

ଜର୍ମାନୀ, ଫ୍ରାନ୍ସ ଓ ଯୁକ୍ତରାଷ୍ଟ୍ର ଇଂଲଣ୍ଡ ସହ ପ୍ରତିଯୋଗିତା କରିବାରୁ ଇଂଲଣ୍ଡର ଶିଳ୍ପ ଉଦ୍ୟୋଗରେ ନେତୃତ୍ୱ କ୍ରମେ କମିଗଲା । ଶତାବ୍ଦୀ ଶେଷ ବେଳକୁ ଅବସ୍ଥା ସାଙ୍ଘାତିକ ଆଡ଼କୁ ଆସିଲା । ଏହି ଇଉରୋପୀୟ ଶକ୍ତିମାନଙ୍କ ଲୋଭ ଆଗରେ ପୃଥିବୀ ଖୁବ୍ ଛୋଟ ବୋଧ ହେଲା । ପ୍ରତ୍ୟେକେ ପରସ୍ପରକୁ ଭୟ, ଘୃଣା ଓ ଈର୍ଷା କଲେ ଏବଂ ଏହି ଭୟ ଓ ଘୃଣା ଯୋଗୁଁ ସେମାନେ ସୈନ୍ୟ ଓ ଯୁଦ୍ଧଜାହାଜ ସଂଖ୍ୟା ବଢ଼ାଇଲେ । ଏହି ଧ୍ୱଂସ କଳ ତିଆରି କରିବା ନିମନ୍ତେ ଖୁବ୍ ପ୍ରତିଦ୍ୱନ୍ଦ୍ୱିତା ଲାଗିଲା । ଅନ୍ୟମାନଙ୍କ ସହ ଲଢ଼ାଇ କରିବା ନିମନ୍ତେ ବିଭିନ୍ନ ଦେଶ ସନ୍ଧିସୂତ୍ରରେ ଆବଦ୍ଧ ହେଲେ ଏବଂ ଶେଷରେ ଇଉରୋପରେ ଦୁଇଟି ମିଳିତ ଶକ୍ତି ପରସ୍ପରର ସମ୍ମୁଖୀନ ହେଲେ—ପ୍ରଥମ ଫ୍ରାନ୍ସ, ଏହା ସହିତ ଗୁପ୍ତ ଭାବରେ ଇଂଲଣ୍ଡ ଯୋଗ ଦେଇଥିଲା ଓ ଅନ୍ୟଟି ଜର୍ମାନୀର ନେତୃତ୍ୱରେ ହେଉଥିଲା । ଇଉରୋପ ଏକ ସେନା ଶିବିରରେ ପରିଣତ ହେଲା । ଶିଳ୍ପ, ବାଣିଜ୍ୟ ଓ ଅସ୍ତ୍ରଶସ୍ତ୍ରରେ ବରାବର ଭୀଷଣ ପ୍ରତିଯୋଗିତା ଚାଲିଲା । ପ୍ରତ୍ୟେକ ପାଶ୍ଚାତ୍ୟ ଦେଶରେ ଜାତୀୟତାର ସୂକ୍ଷ୍ମ ଭାବ ବୃଦ୍ଧି କରାଗଲା; ତାହା ହେଲେ ଜନସାଧାରଣଙ୍କୁ ଭୁଲ ବାଟରେ ପରିଚାଳନା କରାହେବ, ସେମାନେ ଅନ୍ୟ ପଡ଼ୋଶୀ ଦେଶମାନଙ୍କୁ ଘୃଣା କରିବାରେ ଲାଗିଲେ । ଏହିରୂପେ ଯୁଦ୍ଧ ପାଇଁ ମଧ୍ୟ ପ୍ରସ୍ତୁତ ରହିଲେ ।

ଏହିପରି ଭାବରେ ଏକ ଅନ୍ଧ ଜାତୀୟତା ଇଉରୋପରେ ପ୍ରାଧାନ୍ୟ କରିବାକୁ ଲାଗିଲା । ଏହା ଏକ ଅଦ୍ଭୁତ କଥା; କାରଣ ଯାତାୟାତ ପଥ ସୁଗମ ହେବା ପରେ ବିଭିନ୍ନ ଦେଶ ପରସ୍ପରର ଘନିଷ୍ଠ ସମ୍ପର୍କରେ ଆସିଥିଲେ ଏବଂ ଅନେକ ଲୋକ ଦେଶ ଗସ୍ତ କରିଥିଲେ । ଲୋକେ ନିଜର ପଡ଼ୋଶୀମାନଙ୍କୁ ଭଲରୂପେ ଜାଣି ପାରିଲେ ସେମାନଙ୍କର ବିରୁଦ୍ଧଭାବ କମିଯିବ ଏବଂ ସଙ୍କୀର୍ଣ୍ଣ ମନୋଭାବ ସ୍ଥାନରେ ବ୍ୟାପକ ଦୃଷ୍ଟିକୋଣ ହେବ ବୋଲି ଯେ କେହି ବିଚାରିବାର କଥା । ନିଃସନ୍ଦେହ ରୂପେ କେତେକ ପରିମାଣରେ ଏହା ହୋଇଥିଲା; କିନ୍ତୁ ନୂତନ ଶିଳ୍ପଜାତ ପୁଞ୍ଜିବାଦରେ ସମଗ୍ର ସମାଜର ପରିସ୍ଥିତି ଏପରି ଥିଲା ଯେ ଦେଶ ଦେଶ, ଶ୍ରେଣୀ ଶ୍ରେଣୀ ଓ ମନୁଷ୍ୟ ମନୁଷ୍ୟ ମଧ୍ୟରେ ବିବାଦ ଲାଗି ଯାଉଥିଲା ।

ପ୍ରାଚ୍ୟରେ ମଧ୍ୟ ଜାତୀୟତା ବୃଦ୍ଧି ପାଇଲା । ବିଦେଶୀମାନେ ଏହି ଦେଶମାନଙ୍କରେ ପ୍ରାଧାନ୍ୟ କରି ଶୋଷଣ କରୁଥିଲେ ଏବଂ ତାଙ୍କ ବିରୁଦ୍ଧରେ ପ୍ରତିରୋଧ ଆକାରରେ ଏହା ଦେଖାଗଲା । ପ୍ରଥମେ ପ୍ରାଚ୍ୟ ଦେଶମାନଙ୍କର ସାମନ୍ତସାହିମାନେ ବିଦେଶୀ କର୍ତ୍ତୃତ୍ୱର ପ୍ରତିରୋଧ କରିଥିଲେ; କାରଣ ସେମାନଙ୍କ ନିଜ ଅବସ୍ଥା ଯିବା ଉପରେ ବୋଲି ସେମାନେ ଅନୁଭବ କଲେ । ସେମାନେ ବିଫଳ ହେଲେ ଏହା ହେବାର କଥା । ଏକ ଧାର୍ମିକ ଦୃଷ୍ଟିକୋଣସମ୍ପନ୍ନ ନୂତନ ଜାତୀୟତାର ଆବିର୍ଭାବ ହେଲା । କ୍ରମେ ଏହି ଧର୍ମ ରଙ୍ଗ ବି ଫିକା ପଡ଼ିଗଲା ଏବଂ ପାଶ୍ଚାତ୍ୟ ଢଙ୍ଗର ଜାତୀୟତାବାଦ ଦେଖାଦେଲା । ଜାପାନରେ ବିଦେଶୀ କର୍ତ୍ତୃତ୍ୱ ଟାଣି ଦିଆଁ ଯାଇଥିଲା ଏବଂ ସେଠାରେ ଏକ ଅର୍ଦ୍ଧସାମନ୍ତ ଜାତୀୟତା ଦେଖାଦେଲା ।

ମୂଳରୁ ଏସିଆ ଇଉରୋପୀୟ ଆକ୍ରମଣ ପ୍ରତିରୋଧ କରିବାକୁ ଆରମ୍ଭ କରିଥିଲା; କିନ୍ତୁ ଇଉରୋପୀୟ ସେନାଙ୍କ ପାଖରେ ଯେଉଁ ଶକ୍ତି ଓ ନୂତନ ଅସ୍ତ୍ରଶସ୍ତ୍ର ଥିଲା, ତାହା ବୃଦ୍ଧିପାଇ ଏହି ପ୍ରତିରୋଧ ଅଧାପନ୍ତରିଆ ହୋଇଗଲା । ଇଉରୋପରେ ବିଜ୍ଞାନର ବୃଦ୍ଧି ଏବଂ ଯାନ୍ତ୍ରିକ ଶକ୍ତିର ପ୍ରଗତି ହେତୁ ପ୍ରାଚ୍ୟ ଦେଶରେ ସେତେବେଳେ ଯାହା ଥିଲା, ତାହାପେକ୍ଷା ଇଉରୋପୀୟ ସେନା ଅତ୍ୟଧିକ ଶକ୍ତିଶାଳୀ ହୋଇଗଲେ । ସୁତରାଂ ଏମାନଙ୍କ ସାମନାରେ ପ୍ରାଚ୍ୟ ଦେଶମାନେ କ୍ଷମତାହୀନ ପରି ବୋଧ କଲେ ଏବଂ ହତାଶ ହୋଇ ସେମାନଙ୍କ ମୁଣ୍ଡ ନୁଆଁଇଲେ । କେତେକ ଲୋକ କହନ୍ତି ଯେ ପ୍ରାଚ୍ୟ ଆଧ୍ୟାତ୍ମିକବାଦୀ ଏବଂ ପାଶ୍ଚାତ୍ୟ ହେଉଛି ଭୌତିକବାଦୀ—ଏପରି ମନ୍ତବ୍ୟ ଅତ୍ୟନ୍ତ ଭ୍ରମାତ୍ମକ । ୧୮ଶ ଓ ୧୯ଶ ଶତାବ୍ଦୀରେ ଯେତେବେଳେ ଇଉରୋପରେ ଶକ୍ତି ସବୁ ଆକ୍ରମଣକାରୀ ରୂପେ ଆସିଲେ, ସେତେବେଳେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ପ୍ରକୃତ ପ୍ରଭେଦ ହେଉଛି ପ୍ରାଚ୍ୟର ମଧ୍ୟଯୁଗର ପ୍ରତିଗାମୀ ଅବସ୍ଥା ଏବଂ ପାଶ୍ଚାତ୍ୟରେ ଶିଳ୍ପ ଓ ଯନ୍ତ୍ରର ପ୍ରଗତି । କେବଳ ପାଶ୍ଚାତ୍ୟ ଦେଶମାନଙ୍କର ସାମରିକ କର୍ମପଟୁତା ନୁହେଁ, ସେମାନଙ୍କର ବୈଜ୍ଞାନିକ ଓ ଯନ୍ତ୍ରବିଦ୍ୟା ସମ୍ପର୍କୀୟ ପ୍ରଗତି ଦ୍ୱାରା ପ୍ରଥମେ ଭାରତ ଓ ଅନ୍ୟ ପ୍ରାଚ୍ୟ ଦେଶଗୁଡ଼ିକ ଚମତ୍କୃତ ହୋଇଗଲେ । ସେମାନେ ସାମରିକ ଓ ଯନ୍ତ୍ରବିଦ୍ୟା ବିଷୟରେ ନିଜକୁ ଶ୍ରେଷ୍ଠ ବୋଲି ଭାବିବାକୁ ଲାଗିଲେ । ଯାହାହେଉ ଏହା ସତ୍ତ୍ୱେ ଜାତୀୟତା ବୃଦ୍ଧି ପାଇଲା ଏବଂ ବିଦେଶୀ ଆକ୍ରମଣ ପ୍ରତିରୋଧ କରିବା ଓ ବିଦେଶୀମାନଙ୍କୁ ତଡ଼ିବା ଭାବ ବଢ଼ିଲା । ୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ଗୋଟିଏ ଘଟଣା ଘଟିବାରୁ ଏସିଆର ଲୋକଙ୍କ ମନରେ ଏହାର ଖୁବ୍ ପ୍ରଭାବ ପଡ଼ିଲା । ଏହା ହେଉଛି ଜାପାନ ଦ୍ୱାରା ଜାର ଶାସିତ ରୁଷର ପରାଜୟ; କାରଣ ଜାପାନ ପରି କ୍ଷୁଦ୍ର ଦେଶ ପକ୍ଷରେ ଇଉରୋପର ଏକ ବୃହତ୍ତ ସର୍ବାପେକ୍ଷା ଅଧିକ ଶକ୍ତିଶାଳୀ ଦେଶକୁ ପରାସ୍ତ କରିବା ଦେଖି ଅଧିକାଂଶ ଲୋକ ବିସ୍ମିତ ହୋଇଗଲେ । ଏହି ବିଜୟ ଭାବ ଏସିଆ ପକ୍ଷରେ ଆନନ୍ଦଦାୟକ ହେଲା । ପାଶ୍ଚାତ୍ୟ ଆକ୍ରମଣ ବିରୁଦ୍ଧରେ ଯୁଦ୍ଧ କରିବାରେ ଜାପାନ ଏସିଆରେ ପ୍ରତିନିଧି ରୂପେ ଗଣ୍ୟ ହେଲା ଏବଂ ସେହି ସମୟରେ ସମଗ୍ର ପ୍ରାଚ୍ୟରେ ଏହା ଅତ୍ୟନ୍ତ ଲୋକପ୍ରିୟ ହୋଇଉଠିଲା । ଅବଶ୍ୟ ଜାପାନ ଏସିଆର ପ୍ରତିନିଧି ନ ଥିଲା ଏବଂ ଅନ୍ୟ ଯେକୌଣସି ଇଉରୋପୀୟ ଶକ୍ତି ପରି ସେ ନିଜ ସ୍ୱାର୍ଥ ଲାଗି ଯୁଦ୍ଧ କରିଥିଲା । ମୋର ମନେ ଅଛି, ଜାପାନ ବିଜୟ ସମ୍ବାଦ ପାଇ ମୁଁ କିପରି ଉତ୍ଫୁଲ୍ଲ ହେଉଥିଲି, ସେତେବେଳକୁ ମୁଁ ତୋହରି ବୟସର ଥିଲି ।

ସୁତରାଂ ପାଶ୍ଚାତ୍ୟ ଦେଶରେ ସାମ୍ରାଜ୍ୟବାଦ ଅଧିକରୁ ଅଧିକ ଆକ୍ରମଣମୂଳକ ହେବା ସଙ୍ଗେ ସଙ୍ଗେ ଏହାର ବିରୋଧ କରି ଯୁଦ୍ଧ କରିବା ନିମନ୍ତେ ଜାତୀୟତା ବୃଦ୍ଧି ପାଇଲା । ପଶ୍ଚିମରେ ଆରବ ଦେଶରୁ ଆରମ୍ଭ କରି ସୁଦୂର ପୂର୍ବରେ ମଙ୍ଗୋଲିୟାନ ଦେଶ ପର୍ଯ୍ୟନ୍ତ ସମଗ୍ର ଏସିଆରେ ଜାତୀୟ ଆନ୍ଦୋଳନ ଗଢ଼ି ଉଠିଲା । ପ୍ରଥମେ ସାବଧାନ ଭାବରେ ଓ ଅସ୍ତେ ଆସ୍ତେ ଉନ୍ନତି କଲା ଏବଂ ପରେ ଦାବୀ ତୀବ୍ରରୁ ତୀବ୍ରତର ହେଲା । ଭାରତରେ

ଏହା ହେଉଛି ଜାତୀୟ କଂଗ୍ରେସର ଜନ୍ମ ଓ ପିଲାବେଳେ । ସେତେବେଳକୁ ଏସିଆର ବିଦ୍ରୋହ ଆରମ୍ଭ ହୋଇଥିଲା ।

ଆମର ୧୯ଶ ଶତାବ୍ଦୀ ନିରୀକ୍ଷଣ ଇତ୍ୟାଦି ସରି ନାହିଁ । କିନ୍ତୁ ଏ ଚିଠି ଲମ୍ବା ହୋଇଗଲାଣି, ଶେଷ ହେବା ଆବଶ୍ୟକ ।

## ୧୦୮ : ଗତପଥେ ଊନବିଂଶ ଶତାବ୍ଦୀ

ନଭେମ୍ବର ୨୪, ୧୯୩୨

ମୁଁ ଗତ ଚିଠିରେ ୧୯ଶ ଶତାବ୍ଦୀର କେତେକ ପ୍ରଧାନ ପ୍ରଧାନ କଥା କହିଛି ଏବଂ ବଡ଼ ମେସିନ ଆଗମନ ପରେ ଶିଳ୍ପଜାତ ପୁଞ୍ଜିବାଦ ଫଳରେ ପଶ୍ଚିମ ଇଉରୋପରେ ଯେଉଁ କଥା ଘଟିଲା, ସେ କଥା କହିଛି । କୋଇଲା ଖଣି ଓ ଲୁହା ଖଣି ଅଧିକ ଥିବାରୁ ପଶ୍ଚିମ-ଇଉରୋପ ଏଥିରେ ନେତା ପାଲଟିଲା । ବଡ଼ ବଡ଼ ମେସିନ ତିଆରି କରିବା ଓ କାର୍ଯ୍ୟକାରୀ କରାଇବାକୁ ହେଲେ କୋଇଲା ଓ ଲୁହା ଆବଶ୍ୟକ ।

ଆମେ ଦେଖିଲେ ଏହି ପୁଞ୍ଜିବାଦରୁ ସାମ୍ରାଜ୍ୟବାଦ ଓ ଜାତୀୟତା ଜାତ ହେଲା । ଜାତୀୟତା କିଛି ନୂଆ ନୁହେଁ, ଏହା ଆଗରୁ ଥିଲା; କିନ୍ତୁ ଏହା ଅଧିକ ଉଗ୍ର ଓ ସଙ୍କୀର୍ଣ୍ଣମନା ହେଲା । ଏହା ଲୋକଙ୍କୁ ଏକତ୍ର କରିବା ସଙ୍ଗେ ସଙ୍ଗେ ବିଚ୍ଛିନ୍ନ ବି କଲା । ଏକ ଜାତୀୟ ସମଷ୍ଟିରେ ବାସ କରୁଥିବା ଲୋକଙ୍କର ପରସ୍ପର ସହିତ ଘନିଷ୍ଠ ସମ୍ପର୍କ ହେଲା; କିନ୍ତୁ ବିଭିନ୍ନ ଜାତୀୟ ଅଙ୍ଗରେ ବାସ କରୁଥିବା ଲୋକଙ୍କଠାରୁ ସେମାନେ ଅଧିକ ବିଚ୍ଛିନ୍ନ ହେବାକୁ ଲାଗିଲେ । ପ୍ରତ୍ୟେକ ଦେଶରେ ଦେଶପ୍ରେମ ବଢ଼ିବା ସଙ୍ଗେ ସଙ୍ଗେ ବିଦେଶୀ ପ୍ରତି ଅବିଶ୍ୱାସ ଓ ଘୃଣା ବୃଦ୍ଧି ପାଇଲା । ଇଉରୋପରେ ଶିଳ୍ପୋନ୍ନତ ଦେଶମାନେ ପରସ୍ପର ପ୍ରତି ଶିକାରୀ ପଶୁ ଦୃଷ୍ଟିରେ ଦେଖିଲେ । ଇଂଲଣ୍ଡ ସବୁଠାରୁ ବେଶି ଲୁଣ୍ଠିତ ପଦାର୍ଥ ପାଇଥିବାରୁ ତାହା ରଖିବାକୁ ଚେଷ୍ଟା କରିବା ସ୍ୱାଭାବିକ; କିନ୍ତୁ ଅନ୍ୟ ଦେଶମାନଙ୍କ ପାଇଁ ମୁଖ୍ୟତଃ ଜର୍ମାନଙ୍କୁ ସବୁଠାରେ ଇଂଲଣ୍ଡ ବାଟ ବନ୍ଦ କରିଦେଲା; ତେଣୁ ବିବାଦ ବଢ଼ିଲା ଓ ପ୍ରକାଶ୍ୟ ଯୁଦ୍ଧ ହେଲା । ଶିଳ୍ପଜାତ ପୁଞ୍ଜିବାଦ ଏବଂ ତାର ଶାଖା ସାମ୍ରାଜ୍ୟବାଦ ସମଗ୍ର ସ୍ଥିତିରେ ଏପରି ବିବାଦ ଓ ସଂଘର୍ଷ ଆଡ଼କୁ ଯାଇଛି । ଏହା ଭିତରେ ଯେଉଁ ବିରୋଧାତ୍ମକ ଭାବ ନିହିତ ରହିଛି, ତାହା କେବେ ସମନ୍ୱୟ ହୋଇପାରିବ ବୋଲି ମନେ ହୁଏ ନାହିଁ; କାରଣ ଏଗୁଡ଼ିକ ସଂଘର୍ଷ, ପ୍ରତିଯୋଗିତା ଓ ଶୋଷଣ ଉପରେ ପ୍ରତିଷ୍ଠିତ । ସୁତରାଂ ପ୍ରାଚ୍ୟରେ ସାମ୍ରାଜ୍ୟବାଦର ସନ୍ତାନ ଜାତୀୟତାହିଁ ତାର ବିକଟ ଶତ୍ରୁ ହେଲା ।

ଯାହାହେଉ ପୁଞ୍ଜିବାଦୀ ଚିନ୍ତା ସଭ୍ୟତାର ଏପରି ଆତ୍ମବିରୋଧ ସତ୍ତ୍ୱେ ଏହା ଅନେକ ଆବଶ୍ୟକୀୟ ଶିକ୍ଷା ଦେଲା । ଏହା ସଂଗଠନର ଶିକ୍ଷା ଦେଲା; କାରଣ ବଡ଼ ମେସିନ ଓ ପ୍ରଚୁର ପରିମାଣରେ ଶିଳ୍ପ ଚାଲୁ କରିବା ନିମନ୍ତେ ପ୍ରବଳ ସଂଗଠନ ଲୋଡ଼ା । ବଡ଼ ଉଦ୍ୟମ ହେବାରୁ ସହଯୋଗ-ପ୍ରବୃତ୍ତି ବି ବୃଦ୍ଧି ପାଇଲା । ଏହା କର୍ମକୁଶଳତା ଓ ନିୟମାନୁବର୍ତ୍ତିତା ଶିକ୍ଷା କଲା । ଏହିସବୁ ଗୁଣ ନ ଥାଇ ବଡ଼ ବଡ଼ କାରଖାନା କିମ୍ବା ରେଳ ଚଳାଇବା ସମ୍ଭବ ନୁହେଁ । ବେଳେ ବେଳେ କୁହାଯାଏ ଯେ ଏସବୁ ଗୁଣ ପାଶ୍ଚାତ୍ୟ ଦେଶମାନଙ୍କର ବିଶେଷତ୍ୱ ଏବଂ ପ୍ରାଚ୍ୟ ଦେଶରେ ସେସବୁ ଗୁଣ ନାହିଁ । ଅନ୍ୟ କେତେକ ବିଷୟ ପରି ଏଥିରେ ପ୍ରାଚ୍ୟ ପାଶ୍ଚାତ୍ୟର କୌଣସି ପ୍ରଶ୍ନ ନାହିଁ । ଶିଳ୍ପ ଉଦ୍ୟମ ଯୋଗୁଁ ଏହିସବୁ ଗୁଣର ଉନ୍ନତି ହେଲା ଏବଂ ପାଶ୍ଚାତ୍ୟ ଶିଳ୍ପୋନ୍ନତି ଲାଭ କରିବାରୁ ଏହିସବୁ ଗୁଣ ସେଠାରେ ଦେଖାଦେଲା; ଏଣେ ପ୍ରାଚ୍ୟ ପ୍ରଧାନତଃ କୃଷିସମ୍ପନ୍ନ ଦେଶ ଏବଂ ଏଠି ଶିଳ୍ପୋନ୍ନତି ନ ଥିବାରୁ ଏହାର ଅଭାବ ଦେଖାଗଲା ।

ଶିଳ୍ପଜାତ ପୁଞ୍ଜିବାଦ ଆଉ ଏକ ମହତ୍ତ୍ୱ ସେବା କଲା । ଶକ୍ତିଚାଳନା ଦ୍ୱାରା ଅର୍ଥାତ୍ ବଡ଼ ମେସିନ, କୋଇଲା ଓ ବାଷ୍ପ ସାହାଯ୍ୟରେ କିପରି ଧନ ଉତ୍ପନ୍ନ ହୋଇପାରେ, ତାହା ଏହା ଦେଖାଇଦେଲା । ପୃଥିବୀରେ ସମସ୍ତଙ୍କ ଚଳିବା ଭଳି ଯଥେଷ୍ଟ ଧନ ନାହିଁ ଏବଂ ସୁତରାଂ ବହୁଳ ପରିମାଣରେ ଗରିବ ଲୋକ ସର୍ବଦା ଅବଶ୍ୟ ରହିବେ, ଏହି ପୁରାତନ ଧାରଣା ମଧ୍ୟ ଦୂର କରିଦେଲା । ବିଜ୍ଞାନ ଓ ମେସିନ ସାହାଯ୍ୟରେ ଦୁନିଆର ଲୋକମାନଙ୍କ ପାଇଁ ଯଥେଷ୍ଟ ଖାଦ୍ୟ, ପୋଷାକ ଓ ଅନ୍ୟ ଦରକାରୀ ଜିନିଷସବୁ ଉତ୍ପନ୍ନ କରାଯାଇଥିଲା । ଏହିପରି ଭାବରେ ଅନ୍ତତଃ ସିଦ୍ଧାନ୍ତ ଦୃଷ୍ଟିରୁ ଖାଦ୍ୟ ସମସ୍ୟା ତୁଟିଗଲା ଅଥଚ ଏଇଠି ଏହା ରହିଗଲା । ଧନ ଯେ ପ୍ରଚୁର ପରିମାଣରେ ଉତ୍ପନ୍ନ ହେଲା, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଗରିବ ଯେଉଁ ଗରିବକୁ ସେହି ଗରିବ ହୋଇ ରହିଲା । ବାସ୍ତବିକ ବେଶି ଗରିବ ହୋଇପଡ଼ିଲେ । ଇଉରୋପ କବଳରେ ପ୍ରାଚ୍ୟ ଓ ଆଫ୍ରିକା ଦେଶମାନଙ୍କରେ ନୀଚ ଓ ନିର୍ଲଜ ଶୋଷଣ ଚାଲିଲା । ସେଠି ବାସ କରୁଥିବା ଦୁଃଖୀ ଲୋକଙ୍କ କଥା କେହି ପଚାରିଲେ ନାହିଁ । ଏପରି କି ପଶ୍ଚିମ ଇଉରୋପରେ ମଧ୍ୟ ଦାରିଦ୍ର୍ୟ ରହିଲା ଏବଂ ଅଧିକ ନିଶ୍ଚିତ ପରି ମନେହେଲା । କିଛି କ୍ଷଣ ସକାଶେ ପୃଥିବୀର ଅବଶିଷ୍ଟ ଅଂଶର ଶୋଷଣହିଁ ପଶ୍ଚିମ ୟୁରୋପକୁ ଧନ ବୋହିଆଣିଲା । ଉପରେ କେତେକ ମୁଷ୍ଟିମେୟ ଧନୀଙ୍କ ହାତରେ ଅଧିକ ପରିମାଣରେ ଧନ ରହିଲା; କିନ୍ତୁ ଗରିବ ଶ୍ରେଣୀଙ୍କ ଆଡ଼କୁ ମଧ୍ୟ କିଛି ଛିଟିକି ଆସିଲା ଏବଂ ସେମାନଙ୍କର ଚଳିବା ଢଙ୍ଗ ଟିକିଏ ବଢ଼ିଲା । ଲୋକସଂଖ୍ୟା ମଧ୍ୟ ବହୁତ ବୃଦ୍ଧି ପାଇଲା ।

କିନ୍ତୁ ଏସିଆ, ଆଫ୍ରିକା ଓ ଅନ୍ୟ ଶିଳ୍ପୋଦ୍ୟୋଗରେ ପଶ୍ଚାତ୍‌ପଦ ଥିବା ଦେଶମାନଙ୍କର ଶୋଷଣରେହିଁ ଏହି ଧନ ଓ ଚଳିବା ଢଙ୍ଗ ବୃଦ୍ଧି ପାଇଲା । ପୁଞ୍ଜିବାଦୀ ପ୍ରଥାର ବିରୋଧକୁ ଏହି ଶୋଷଣ ଓ ଧନସ୍ରୋତ ଲୁଚାଇ ଦେଲା । ତାହା ହେଲେ ସୁଦ୍ଧା

ଧନୀ ଦରିଦ୍ରଙ୍କ ଭିତରେ ପାର୍ଥକ୍ୟ ବଢ଼ିଲା; ଦୂରତା ବଢ଼ିଲା । ଦୁଇଟି ବିଭିନ୍ନ ରାଷ୍ଟ୍ର ଓ ଦୁଇଟି ପୃଥକ୍ ଜାତି ସୃଷ୍ଟି ହେଲ । ୧୯ଶ ଶତାବ୍ଦୀର ବିଖ୍ୟାତ ଇଂରେଜ ରାଜନୀତିଜ୍ଞ ବେଞ୍ଜାମୀନ ଡିସରେଲି ସେ ବିଷୟରେ ବର୍ଣ୍ଣନା କରିଛନ୍ତି—

"ଦୁଇଟି ଜାତି, ଯେଉଁମାନଙ୍କ ଭିତରେ କୌଣସି ଆଦାନପ୍ରଦାନ ଓ ସହାନୁଭୂତି ନାହିଁ, ପରସ୍ପରର ଆଚରଣ, ଚିନ୍ତା ଓ ଭାବ ବିଷୟରେ ଅଜ୍ଞ, ଯେପରି କି ସେମାନେ ଦୁଇଟି ବିଭିନ୍ନ ଅଞ୍ଚଳ ନିବାସୀ କିମ୍ବା ପୃଥକ୍ ପୃଥକ୍ ବାସିନ୍ଦା; ବିଭିନ୍ନ ଧାରୁରେ ଜନ୍ମ, ପୃଥକ୍ ଖାଦ୍ୟ ଖାଆନ୍ତି, ପୃଥକ୍ ଆଚରଣ ଅନୁସାରେ ଚଳନ୍ତି ଏବଂ ଏକା ଆଇନରେ ଶାସିତ ହୁଅନ୍ତି ନାହିଁ; ସେମାନେ ହେଉଛନ୍ତି ଧନୀ ଓ ଦରିଦ୍ର ।"

ଶିଳ୍ପର ନୂତନ ଅବସ୍ଥା ଫଳରେ ବହୁ ସଂଖ୍ୟାରେ ଶ୍ରମିକ ବଡ଼ ବଡ଼ କାରଖାନାମାନଙ୍କୁ ଆସିଲେ ଏବଂ ଗୋଟିଏ ନୂତନ ଶ୍ରେଣୀ ଗଢ଼ି ଉଠିଲା—ତାହା ହେଉଛି କାରଖାନା ଶ୍ରମିକ । ଏମାନେ କୃଷୀ ଓ କୃଷିଜମିରେ କାମ କରୁଥିବା ମୂଲିଆମାନଙ୍କଠାରୁ ଅନେକ ପରିମାଣରେ ଭିନ୍ନ ଢଙ୍ଗର । କୃଷକକୁ ବହୁ ପରିମାଣରେ ଋତୁ ଓ ବର୍ଷା ଉପରେ ନିର୍ଭର କରିବାକୁ ପଡ଼େ । ଏହା ତାର ଆୟତ୍ତରେ ନ ଥାଏ; ତେଣୁ ସେ ଭାବେ ଯେ ଅପ୍ରାକୃତିକ କାରଣ ହେତୁ ତାର ଦୁର୍ଦ୍ଦଶା ଓ ଦାରିଦ୍ର୍ୟ ଘଟୁଛି । ସେ କୁସଂସ୍କାରପୂର୍ଣ୍ଣ ହୋଇପଡ଼େ ଏବଂ ଆର୍ଥନୀତିକ କାରଣ ପ୍ରତି ଅବଜ୍ଞା ଦେଖାଏ ଏବଂ ଅତ୍ୟନ୍ତ ଆଳସ୍ୟ ଓ ନିରାହ ଜୀବନଯାପନ କରେ—ସେ ଏପରି ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ପଡ଼େ, ଯାହା ସେ ନିଜେ ବଦଳାଇ ପାରେ ନାହିଁ କିନ୍ତୁ କାରଖାନା ଶ୍ରମିକ ମଣିଷ ଗଢ଼ା ମେସିନରେ କାମ କରେ । ଋତୁ ଓ ବର୍ଷାକୁ ଆଦୌ ପରୁଆ ନ କରି ମାଲ ଉତ୍ପନ୍ନକରେ । ସେ ଧନ ଉତ୍ପନ୍ନକରେ; କିନ୍ତୁ ସେ ଦେଖେ ଯେ ଏଥିରୁ ଅଧିକ ପରିମାଣରେ ଅନ୍ୟମାନଙ୍କ ପାଖକୁ ଯାଏ ଏବଂ ସେ ନିଜେ ସେହିପରି ଗରିବ ହୋଇ ରହେ । ତେଣୁ ସେ ଅପ୍ରାକୃତିକ କାରଣ ବିଷୟ ଚିନ୍ତା କରେ ନାହିଁ ଏବଂ କୃଷକ ପରି ସେପରି କୁସଂସ୍କାରପୂର୍ଣ୍ଣ ହୁଏ ନାହିଁ । ତାର ଦାରିଦ୍ର୍ୟ ପାଇଁ ସେ ଭଗବାନଙ୍କୁ ଦୋଷ ଦିଏ ନାହିଁ । ସେ ସମାଜ କିମ୍ବା ସାମାଜିକ ପ୍ରଥାକୁ ଏବଂ ବିଶେଷତଃ କାରଖାନାର ପୁଞ୍ଜିପତି, ମାଲିକ ଯେ ତା ଶ୍ରମଜାତ ଲଭିରୁ ଭାଗ ନିଏ, ତାକୁ ଦୋଷ ଦିଏ । ସେ ତାର ଶ୍ରେଣୀ ସମ୍ବନ୍ଧରେ ସଚେତନ ହୁଏ ଏବଂ ଦେଖେ ଯେ ବିଭିନ୍ନ ଶ୍ରେଣୀ ଅଛନ୍ତି ଏବଂ ଉଚ୍ଚ ଶ୍ରେଣୀ ତାଙ୍କ ଶ୍ରେଣୀ ଉପରେ ଶିକାର କରୁଛନ୍ତି । ଏହା ଫଳରେ ଅସନ୍ତୋଷ ଓ ବିଦ୍ରୋହ ହୁଏ । ଅସନ୍ତୋଷର ଆରମ୍ଭ ଅସ୍ପଷ୍ଟ ଓ ନିର୍ବୋଧ ହୁଏ; ପ୍ରଥମ ଆନ୍ଦୋଳନ ଅନ୍ଧ, ଚିନ୍ତାହୀନ ଏବଂ ଦୁର୍ବଳ ହୁଏ ଏବଂ ସେଗୁଡ଼ିକୁ ସରକାର ସହଜରେ ଦମନ କରି ପକାଏ । କାରଣ ଏତେବେଳେ ସରକାର ପୁରା ମାତ୍ରାରେ ନୂତନ ମଧ୍ୟବିତ୍ତ ଶ୍ରେଣୀର ସ୍ୱାର୍ଥରକ୍ଷା କରୁଥାଏ—ଏହି ଶ୍ରେଣୀ ହାତରେ ବଡ଼ ବଡ଼ କାରଖାନା ଓ ତାର ପ୍ରସ୍ତୁତ ଜିନିଷଗୁଡ଼ିକ ଥାଏ, କିନ୍ତୁ କ୍ଷୁଧାକୁ ବେଶିଦିନ ଦମନ

କରାଯାଇପାରେ ନାହିଁ ଏବଂ ତାର ସାଥୀମାନଙ୍କସହ ମିଳିତ ହୋଇ ଦରିଦ୍ର ଶ୍ରମିକ ନୂତନ ଶକ୍ତିର ପରିଚୟ ପାଏ । ସେଗୁଡ଼ିକ ପ୍ରଥମେ ଗୁପ୍ତ ଅନୁଷ୍ଠାନ ହୋଇଥାଆନ୍ତି; କାରଣ ସରକାର ଶ୍ରମିକମାନଙ୍କୁ ସଂଗଠିତ ହେବାକୁ ସୁଦ୍ଧା ଅନୁମତି ଦିଏ ନାହିଁ । ସରକାର ଯେ ନିର୍ଦ୍ଦିଷ୍ଟ ରୂପେ ଗୋଟିଏ ଶ୍ରେଣୀର ସରକାର ଏବଂ ଶ୍ରେଣୀର ସେ ପ୍ରତିନିଧିତ୍ୱ କରୁଥାଏ, ତାର ସ୍ୱାର୍ଥ ରକ୍ଷାରେ ଲାଗିଥାଏ; ଏହା ଦିନକୁ ଦିନ ସ୍ପଷ୍ଟ ହୋଇଯାଏ । ଆଇନ ସବୁ ସେହି ଶ୍ରେଣୀ ଆଇନ । କ୍ରମେ ଶ୍ରମିକମାନେ ଶକ୍ତି ଅର୍ଜନ କରନ୍ତି ଏବଂ ସେମାନଙ୍କ ଶ୍ରମିକ ସଂଘସବୁ ଶକ୍ତିଶାଳୀ ଅନୁଷ୍ଠାନ ହୋଇଉଠେ । ବିଭିନ୍ନପ୍ରକାରର ଶ୍ରମିକମାନେ ବୁଝିପାରନ୍ତି ଯେ କ୍ଷମତାରେ ଥିବା ଶୋଷକଶ୍ରେଣୀ ବିରୁଦ୍ଧରେ ସେମାନଙ୍କର ସ୍ୱାର୍ଥ ବାସ୍ତବିକ ସମାନ; ତେଣୁ ବିଭିନ୍ନ ଶ୍ରମିକସଂଘ ଏକାଠି ସହଯୋଗ କରନ୍ତି ଏବଂ ଗୋଟିଏ ଦେଶର ସମସ୍ତ କାରଖାନା ଶ୍ରମିକ ଗୋଟିଏ ସଂଗଠିତ ଦଳରେ ପରିଣତ ହୁଅନ୍ତି । ତା ପର କାମ ହେଉଛି, ବିଭିନ୍ନ ଦେଶର ଶ୍ରମିକମାନେ ସଂଘବଦ୍ଧ ହେବା; କାରଣ ସେମାନେ ବି ଅନୁଭବ କରନ୍ତି ଯେ ସେମାନଙ୍କର ସ୍ୱାର୍ଥ ସମାନ ଓ ସମସ୍ତଙ୍କର ଶତ୍ରୁ ଗୋଟିଏ; ତେଣୁ 'ପୃଥିବୀର ଶ୍ରମିକ ଏକଜୁଟ ହୁଅ' ଚିତ୍କାର ଉଠେ ଏବଂ ଶ୍ରମିକମାନଙ୍କର "ଅନ୍ତର୍ଜାତୀୟ ଅନୁଷ୍ଠାନ"ସବୁ ଗଢ଼ି ଉଠେ । ପୁଞ୍ଜିବାଦୀ ଶିଳ୍ପ ମଧ୍ୟ ଏଥିଭିତରେ ବୃଦ୍ଧିପାଏ ଏବଂ ଅନ୍ତର୍ଜାତୀୟ ଆକାର ଧାରଣ କରେ । ତେଣୁ ଯେଉଁଠି ଏହି ଶିଳ୍ପଜାତ ପୁଞ୍ଜିବାଦ ଉନ୍ନତ ହୁଏ, ସେଠି ଶ୍ରମିକ ପୁଞ୍ଜିବାଦର ସମ୍ମୁଖୀନ ହୁଏ ।

ମୁଁ ଖୁବ୍ ଶୀଘ୍ର ଆଗକୁ ମାଡ଼ିଗଲି—ପଛକୁ ଆସିବାକୁ ପଡ଼ିବ; କିନ୍ତୁ ୧୯ଶ ଶତାବ୍ଦୀର ଦୁନିଆ ଏତେଗୁଡ଼ିଏ ଆତ୍ମବିରୋଧ ପ୍ରବୃତ୍ତିର ସମଷ୍ଟି ଯେ ତାହା ସବୁ ଦୃଷ୍ଟିପଥରେ ରଖିବା କଷ୍ଟକର । ମୁଁ ତ ଭାବି ଆଶ୍ଚର୍ଯ୍ୟ ହୁଏ; ତୁ ବା ଏହି ପୁଞ୍ଜିବାଦ, ସାମ୍ରାଜ୍ୟବାଦ ଜାତୀୟତା ଓ ଅନ୍ତର୍ଜାତୀୟତା, ଧନ ଦୌଲତ ଓ ଦାରିଦ୍ର୍ୟର ବିଚିତ୍ର ସମ୍ମିଶ୍ରଣ କିଣ ବୁଝିବୁ ? କିନ୍ତୁ ଜୀବନଟି ବି ଏକ ଅଦ୍ଭୁତ ସମ୍ମିଶ୍ରଣ । ଏହା ଯେପରି ଅଛି, ଆମକୁ ସେହିପରି ଭାବରେ ନେବାକୁ ହେବ । ତାକୁ ବୁଝିବାକୁ ପଡ଼ିବ ଏବଂ ତା ପରେ ତାକୁ ଉନ୍ନତ କରିବାକୁ ହେବ ।

ଖାପଛଡ଼ା କଥା ଅନେକ ଘଟିବାରୁ ଇଉରୋପ ଓ ଆମେରିକାରେ ଅନେକ ଲୋକ ଚିନ୍ତାରେ ପଡ଼ିଲେ । ନେପୋଲିୟନଙ୍କର ପତନ ପରେ ଏହି ଶତାବ୍ଦୀ ଆରମ୍ଭରେ କୌଣସି ଇଉରୋପୀୟ ଦେଶରେ ପ୍ରାୟ ସ୍ୱାଧୀନତା ନ ଥିଲା । କେତେକ ଦେଶରେ ରାଜାର ସ୍ୱେଚ୍ଛାଚାରିତା ଥିଲା ଏବଂ ଇଂଲଣ୍ଡ ପରି କେତେକ ଦେଶରେ ଏକ କ୍ଷୁଦ୍ର ଆଭିଜାତ୍ୟ ଓ ଧନୀ ଶ୍ରେଣୀ କ୍ଷମତାରେ ଥିଲେ । ମୁଁ ତ ତତେ କହିଛି ଯେ ପ୍ରତ୍ୟେକ ସ୍ଥାନରେ ଉଦାରଭାବାପନ୍ନ ଲୋକଙ୍କୁ ଦମନ କରାଗଲା; କିନ୍ତୁ ଏହା ସତ୍ତ୍ୱେ ଆମେରିକା ଓ ଫରାସୀ ବିପ୍ଳବ ଦ୍ୱାରା ଗଣତନ୍ତ୍ର ଓ ରାଜନୈତିକ ସ୍ୱାଧୀନତାଭାବ ପ୍ରକଟିତ ହେଲା ଏବଂ ଉଦାର ଭାବୁକମାନେ ତାହା ପସନ୍ଦ କଲେ । ବାସ୍ତବିକ ରାଷ୍ଟ୍ର ଓ ତାର ବାସିନ୍ଦାଙ୍କ ମଧ୍ୟରେ ଘଟୁଥିବା ଗଣ୍ଡଗୋଳ ଓ

ଯ୍ଟି ଲାଗି ଗଣତନ୍ତ୍ର ଏକ ଆରୋଗ୍ୟ ବଟି ପରି ଲୋକେ ବୁଝିଲେ । ଗଣତନ୍ତ୍ର ଆଦର୍ଶ ହେଉଛି, କୌଣସି ବିଶେଷ ସୁବିଧା ରହିବ ନାହିଁ; ସରକାର ବା ରାଷ୍ଟ୍ରଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ସମାନ ସାମାଜିକ ଓ ରାଜନୈତିକ ମୂଲ୍ୟ ରୂପେ ବିବେଚିତ ହେବ । ଅବଶ୍ୟ ନାନା ଭାବରେ ଲୋକଙ୍କର ପରସ୍ପରଠାରୁ ବହୁତ ପ୍ରଭେଦ ରହିଛି—କେତେକ ଅନ୍ୟମାନଙ୍କ ଅପେକ୍ଷା ବଳବାନ, କେତେକ ବୁଦ୍ଧିମାନ, କେତେକ ଅଧିକ ନିଃସ୍ୱାର୍ଥପର; କିନ୍ତୁ ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ଲୋକେ କହନ୍ତି ଯେ ସେମାନଙ୍କ ଭିତରେ ପ୍ରଭେଦ ଯାହା ଥାଉ ପଛକେ, ମଣିଷ ମାତ୍ରେ ସମସ୍ତଙ୍କର ରାଜନୈତିକ ସ୍ଥିତି ଏକା ହେବା ଦରକାର । ପ୍ରତ୍ୟେକ ଲୋକଙ୍କୁ ଭୋଟ କ୍ଷମତା ଦେବାଦ୍ୱାରା ଏହା ହୋଇ ପାରିବ । ଉନ୍ନତ, ଚିନ୍ତାଶୀଳ ଓ ଉଦାର ଲୋକେ ଗଣତନ୍ତ୍ରର ଉପକାରିତାରେ ଆନ୍ତରିକତାସହ ବିଶ୍ୱାସ କରୁଥିଲେ ଏବଂ ଏହି ଅବସ୍ଥା ଆଣିବା ନିମନ୍ତେ ସେମାନେ କଠିନ ଉଦ୍ୟମ କଲେ । ରକ୍ଷଣଶୀଳ ଓ ପ୍ରତିକ୍ରିୟାଶୀଳ ଲୋକେ ସେମାନଙ୍କର ବିରୋଧ କଲେ ଏବଂ ଫଳରେ ପ୍ରତ୍ୟେକ ଦେଶରେ ଗୋଟାଏ ବଡ଼ ସଂଘର୍ଷ ଲାଗିଲା । କେତେକ ଦେଶରେ ବିପ୍ଳବ ହେଲା । ବେଶୀ ଲୋକ ଭୋଟ ଦେବା ପୂର୍ବରୁ ଇଂଲଣ୍ଡରେ ଏକ ଗୃହବିବାଦ ଘଟିବାର ସମ୍ଭାବନା ଥିଲା । ଭୋଟ ବେଶୀ ଲୋକଙ୍କୁ ଦେବା ଅର୍ଥ ହେଉଛି ପାର୍ଲାମେଣ୍ଟକୁ ସଭ୍ୟ ନିର୍ବାଚନ କରିବା ନିମନ୍ତେ ଆଉ ଅଧିକ କେତେକ ଲୋକଙ୍କୁ ମତ ଦେବାର କ୍ଷମତା । ଯାହାହେଉ, କ୍ରମେ କ୍ରମେ ଅଧିକାଂଶ ସ୍ଥାନରେ ଗଣତନ୍ତ୍ର ବିଜୟୀ ହେଲା—ଏପରି କି ଏହି ଶତାବ୍ଦୀ ଶେଷ ବେଳକୁ ପଶ୍ଚିମ ଇଉରୋପ ଓ ଆମେରିକାର ଅଧିକାଂଶ ଲୋକ ଅନ୍ତତଃ ଭୋଟ କ୍ଷମତା ପାଇଗଲେ । ୧୯ଶ ଶତାବ୍ଦୀରେ ଗଣତନ୍ତ୍ର ହିଁ ମହାନ୍ ଆଦର୍ଶ ଥିଲା—ଏହାକୁ ଗଣତନ୍ତ୍ର ଶତାବ୍ଦୀ ବୋଲି କୁହାଯାଇପାରେ । ଶେଷରେ ଗଣତନ୍ତ୍ରର ଜୟ ହେଲା, ଅଥଚ ଏହି ବିଜୟ ହେବା ବେଳକୁ ଲୋକେ ଗଣତନ୍ତ୍ରରେ ବିଶ୍ୱାସ ହରାଇ ସାରିଥିଲେ । ସେମାନେ ଦେଖିଲେ ଏହା ଦାରିଦ୍ର୍ୟ, ଦୁର୍ଦ୍ଦଶା ଏବଂ ପୁଞ୍ଜିବାଦୀ ପ୍ରଥାର ଅନେକ ଆତ୍ମବିରୋଧ ଜିନିଷକୁ ଲୋପ କରିପାରି ନ ଥିଲା । କ୍ଷୁଧିତ ଲୋକଙ୍କୁ ଭୋଟ-କ୍ଷମତା ଦେଇ ଲାଭ କଣ ? ତା ଭୋଟ ବା କାର୍ଯ୍ୟ ଯଦି ଗୋଟିଏ ବେଳର ଖାଇବାର ଦାମ ଦେଇ କିଣାଯାଇ ପାରେ, ତେବେ ସେ ସ୍ୱାଧୀନତା ବା କିପରି ? ତେଣୁ ଗଣତନ୍ତ୍ର ବଦନାମ ହୋଇଗଲା କିମ୍ବା ଠିକ୍ କହିଲେ ରାଜନୈତିକ ଗଣତନ୍ତ୍ର ମତ ଆଉ ଫଳସମ୍ପନ୍ନ ହେଲା ନାହିଁ । କିନ୍ତୁ ଏହା ଊନବିଂଶ ଶତାବ୍ଦୀର ବାହାର କଥା ।

ଗଣତନ୍ତ୍ରରେ ସ୍ୱାଧୀନତାର ରାଜନୈତିକ ଦିଗ ହିଁ ଥିଲା । ଏହା ଏକଚ୍ଛତ୍ର ଶାସନ ଓ ଅନ୍ୟ ସ୍ୱେଚ୍ଛାଚାରୀ ଶାସନର ପ୍ରତିକ୍ରିୟା ରୂପେ ଥିଲା । ଯେଉଁ ସବୁ ଶିଳ୍ପଜାତ ସମସ୍ୟା ଉପୁଜିଥିଲା ଏବଂ ଦାରିଦ୍ର୍ୟ ବା ଶ୍ରେଣୀ ସଂଘର୍ଷ ବିଷୟରେ ଏହା କୌଣସି ବିଶେଷ ସମାଧାନର ବାଟ ବତାଇଲା ନାହିଁ । ପ୍ରତ୍ୟେକ ବ୍ୟକ୍ତିବିଶେଷ ତାର ସାମର୍ଥ୍ୟ ଅନୁସାରେ କାର୍ଯ୍ୟ କରିବ—ଏହି ଭାବ ପ୍ରତ୍ୟେକ ମନରେ ଜାଗ୍ରତ ହେବ ବୋଲି ଏହା ଜୋର ଦେଉଥିଲା ଏବଂ ଆଶା କରୁଥିଲା ଯେ ସବୁମନ୍ତେ ନିଜର ସ୍ୱାର୍ଥ ଦୃଷ୍ଟିରୁ ବ୍ୟକ୍ତିବିଶେଷ ଅବସ୍ଥା ଉନ୍ନତ

କରିବା ନିମନ୍ତେ ଚେଷ୍ଟା କରିବ ଏବଂ ଏପରି ହେଲେ ସମାଜର ମଧ୍ୟ ପ୍ରଗତି ହେବ । ଏହାକୁ ଲେସେଜ୍ ଫେୟାର (Loissez-faire) କହନ୍ତି; ମୋର ମନେ ହୁଏ ଯେ ଏ ବିଷୟରେ ମୁଁ ଉତ୍ତେ ପୂର୍ବ ଅଠିରେ କହିଛି; କିନ୍ତୁ ଏହି ବ୍ୟକ୍ତିଗତ ସ୍ୱାଧୀନତା ତଥ୍ୟ ଅସଫଳ ହେଲା; କାରଣ ମୂଳ ପାଇ କାର୍ଯ୍ୟ କରୁଥିବା ଲୋକ ସ୍ୱାଧୀନତାରୁ ଦୂରରେ ଥିଲେ ।

ଶିଳ୍ପଜାତ ପୁଞ୍ଜିବାଦ ପ୍ରଣାଳୀରେ ଯେଉଁସବୁ ବଡ଼ ଅସୁବିଧା ଉପୁଜିଲା, ତାହା ହେଉଛି ଯେଉଁମାନେ ଶ୍ରମ କରି ସମାଜର ସେବା କରୁଥିଲେ, ସେମାନଙ୍କୁ ଅଳ୍ପ ମୂଲ ଦିଆ ହେଲା; ଯେଉଁମାନେ ଶ୍ରମ କରୁ ନ ଥିଲେ, ସେହିମାନେ ହିଁ ସବୁ ସୁବିଧା ପାଇଲେ । ଏହିରୂପେ ଅସଲ ପୁରସ୍କାର ସେବାରୁ ଅଲଗା ହୋଇଗଲା । ଏହା ଫଳରେ ଏ ବିଷୟରେ ଯେଉଁମାନେ ଶ୍ରମ କରୁଥିଲେ, ସେମାନଙ୍କର ଅବନତି ଓ ଶୋଚନୀୟ ଅବସ୍ଥା ବଢ଼ିଲା ଏବଂ ଅନ୍ୟ ଦିଗରେ ଆଉ ଏକ ଶ୍ରେଣୀ ସୃଷ୍ଟି ହେଲା । ଯେଉଁମାନେ ନିଜେ କାମ ନ କରି କିମ୍ବା ଦେଶର ସମ୍ପତ୍ତିକୁ କୌଣସି ପ୍ରକାରେ ନ ବଢ଼ାଇ ଶିଳ୍ପଦ୍ୱାରା ବଞ୍ଚିଲେ ବରଂ ଶୋଷଣ କରି ରହିଲେ । ଏହା ଠିକ୍ କୃଷକମାନଙ୍କ ଅବସ୍ଥା ପରି । ସେମାନେ ଜମିରେ ଶ୍ରମ କରନ୍ତି ଏବଂ ଜମିଦାର ନିଜେ ଜମିରେ କାର୍ଯ୍ୟ ନ କରି ତାଙ୍କ ଶ୍ରମଦ୍ୱାରା ଫାଇଦା ଉଠାନ୍ତି । ଶ୍ରମ ଫଳର ଏହି ବଣ୍ଟନ ଆଉ ପ୍ରକାଶ୍ୟ ରୂପେ ଅନ୍ୟାୟ । ଶ୍ରମିକ ଏହା ଅନ୍ୟାୟ ବୋଲି ବୁଝିପାରିଲା ଓ ଅସନ୍ତୋଷ ପ୍ରକାଶ କଲା, ଅବଶ୍ୟ ବହୁ ଦିନରୁ କଷ୍ଟ ପାଉଥିବା କୃଷକ ପରି ନୁହେଁ । କାଳକ୍ରମେ ଏହି ଅସନ୍ତୋଷ ଆହୁରି ଅଧିକ ହୋଇଗଲା । ପାଶ୍ଚାତ୍ୟର ସବୁ ଶିଳ୍ପୋନ୍ନତ ଦେଶରେ ଏହି ପାର୍ଥକ୍ୟ ପରିସ୍ଫୁଟ ହେଲା ଏବଂ ଚିନ୍ତାଶୀଳ ଓ ଉଦାର ଲୋକେ ଏହି ଜଞ୍ଜାଳରୁ ଗୋଟିଏ ବାଟ କାଢ଼ିବା ପାଇଁ ଚେଷ୍ଟା କଲେ । ଏହିପରି ଭାବରେ ନୂତନ ଭାବଧାରା ପ୍ରକାଶ ପାଇଲା—ଏହା ସାମ୍ୟବାଦ ବା ସୋସାଲିଜିମ୍ । ଏହା ପୁଞ୍ଜିବାଦର ସନ୍ତାନ ଓ ତାର ଶତ୍ରୁ, ଏବଂ ସମ୍ଭବତଃ ତାକୁ ଲୋପ କରିବା ପାଇଁ ବାହାରିଲା । ଇଂଲଣ୍ଡରେ ଏହା ଏକ ମାମୁଲି ଆକାର ଧାରଣ କଲା, ଫ୍ରାନ୍ସ ଓ ଜର୍ମାନୀରେ ଏହା ଅଧିକ ବିପ୍ଳବୀ ହେଲା । ଆମେରିକା ଯୁକ୍ତରାଷ୍ଟ୍ର ପରି ଏଡ଼େ ବଡ଼ ବିଶାଳ ଦେଶରେ ଲୋକସଂଖ୍ୟା ଅପେକ୍ଷାକୃତ କମ୍ ହୋଇଥିବାରୁ ସେମାନଙ୍କର ବୃଦ୍ଧି ପାଇଁ ଖୁବ୍ ସୁଯୋଗ ଥିଲା । ତେଣୁ ପୁଞ୍ଜିବାଦ ଫଳରେ ପଶ୍ଚିମ ଇଉରୋପରେ ଯେଉଁ ଅନ୍ୟାୟ ଓ ଦୁର୍ଦ୍ଦଶା ଦେଖାଦେଲା, ତାହା ଦୀର୍ଘକାଳ ପର୍ଯ୍ୟନ୍ତ ସେହି ପରିମାଣରେ ଏ ଦେଶରେ ଦେଖାଦେଇ ନ ଥିଲା ।

ସାମ୍ୟବାଦର ଭବିଷ୍ୟତ ବକ୍ତା ହୋଇ ଜଣେ ବିଖ୍ୟାତ ଲୋକ ୧୯ ଶତାବ୍ଦୀର ମଧ୍ୟମ ଭାଗରେ ଜର୍ମାନୀରେ ଜନ୍ମଗ୍ରହଣ କଲେ ଏବଂ ଗୋଟିଏ ପ୍ରକାର ସାମ୍ୟବାଦର ସେ ହେଲେ ପିତା—ତାକୁ କମ୍ୟୁନିଜିମ୍ କହନ୍ତି । ତାଙ୍କ ନାମ ହେଉଛି କାର୍ଲମାର୍କସ । ସେ କିଛି ଜଣେ ଅସ୍ପଷ୍ଟ ଦାର୍ଶନିକ କିମ୍ବା ବୌଦ୍ଧିକ ତତ୍ତ୍ୱ ଆଲୋଚନା କରିବାଭଳି ଅଧ୍ୟାପକ ନୁହନ୍ତି ।

ସେ ଜଣେ ବାସ୍ତବବାଦୀ ଦାର୍ଶନିକ ଏବଂ ରାଜନୈତିକ ଓ ଆର୍ଥିକ ସମସ୍ୟା ଅଧ୍ୟୟନ କରିବା ଓ ପୃଥିବୀର ଦୁର୍ଦ୍ଦଶା ଦୂର କରିବାର ବାଟ ବାହାର କରିବାରେ ବୈଜ୍ଞାନିକ ପ୍ରୟୋଗ ହିଁ ତାଙ୍କର ପନ୍ଥା ଥିଲା । ସେ କହିଛନ୍ତି, ଏପର୍ଯ୍ୟନ୍ତ ଦୁନିଆକୁ ବୁଝାଇ ଦେବା କାମ ହିଁ ଦର୍ଶନଶାସ୍ତ୍ର କରିଆସିଛି; କମ୍ୟୁନିଷ୍ଟ ଦର୍ଶନ ଏହା ବଦଳାଇ ଦେବା ନିମନ୍ତେ ଇଚ୍ଛାକରେ । ଆଉ ଜଣେ ଲୋକ ଇଙ୍ଗେଲ୍‌ସଙ୍କ ସହ ସେ ଏକ "କମ୍ୟୁନିଷ୍ଟ ଇସ୍ତାହାର" ବାହାର କଲେ । ଏଥିରେ ତାଙ୍କ ଦର୍ଶନର ସୂଚନା ଦିଆଗଲା । ପରେ ଜର୍ମାନ ଭାଷାରେ ସେ ଡାସ୍ କାପିଟାଲ ବା କାପିଟାଲ (ପୁଞ୍ଜି) ନାମକ ଏକ ବୃହତ୍ ପୁସ୍ତକ ପ୍ରକାଶ କଲେ । ଏଥିରେ ସେ ପୃଥିବୀର ଇତିହାସ ବୈଜ୍ଞାନିକ ଭାବରେ ଆଲୋଚନା କଲେ ଏବଂ କେଉଁ ଦିଗରେ ସମାଜ ଉନ୍ନତି କରୁଛି ଏବଂ କିପରି ଏହି ଗତିରୁ ବେଗ ଦେଇହେବ, ଏହା ଦେଖାଇଦେଲେ । ମୁଁ ଏଠି ମାର୍କସୀୟ ଦର୍ଶନ ଆଲୋଚନା କରିବି ନାହିଁ; କିନ୍ତୁ ତୋର ମନେ ରଖିବା ଦରକାର ଯେ, ମାର୍କସଙ୍କର ଏହି ବୃହତ୍ ପୁସ୍ତକ ସାମ୍ୟବାଦ ପ୍ରଗତି ଦିଗରେ ଅଲୌକିକ ପ୍ରଭାବ ପକାଇଥିଲା ଏବଂ ଆଜି ଏହା ହେଉଛି କମ୍ୟୁନିଷ୍ଟ ରୁଷର ବାଇବଲ ବା ଧର୍ମଗ୍ରନ୍ଥ ।

ଏହି ଶତାବ୍ଦୀର ମଧ୍ୟଭାଗରେ ଆଉ ଏକ ପ୍ରସିଦ୍ଧ ପୁସ୍ତକ ଇଂଲଣ୍ଡରେ ପ୍ରକାଶିତ ହେଲା ଏବଂ ଭୀଷଣ ଗୋଳମାଳ ସୃଷ୍ଟି କଲା—ଏହା ହେଉଛି ଡାରଉଇନ୍‌ଙ୍କର ପ୍ରାଣୀଙ୍କ ଉତ୍ପତ୍ତି (Origin of Species) ଡାରଉଇନ୍ ଜଣେ ପ୍ରକୃତ ଅଧ୍ୟୟନକାରୀ ଅର୍ଥାତ ସେ ପ୍ରକୃତ ପର୍ଯ୍ୟବେକ୍ଷଣ କରି ଅଧ୍ୟୟନ କରିଥିଲେ । ବିଶେଷ ଭାବରେ ସେ ଉଦ୍ଭିଦ ଓ ଜନ୍ତୁମାନଙ୍କ ସମ୍ବନ୍ଧରେ ଜାଣିଥିଲେ । ଉଦ୍ଭିଦ ଓ ଜୀବଜନ୍ତୁ ପ୍ରକୃତିରେ କିପରି ଉନ୍ନତି ଲାଭ କରିଛି, ପ୍ରାକୃତିକ ସମ୍ପର୍କରେ ଆସି ଏକପ୍ରକାର ଜୀବ କିପରି ଅନ୍ୟ ରୂପରେ ପରିବର୍ତ୍ତିତ ହୋଇଯାଉଛି ଏବଂ କିପରି ସରଳ ଆକୃତିଗୁଡ଼ିକ କ୍ରମେ ଅଧିକ ଜଟିଳ ହୋଇଉଠୁଛି, ଏହା ସବୁ ସେ ଅନେକ ଦୃଷ୍ଟାନ୍ତ ସାହାଯ୍ୟରେ ବୁଝାଇ ଦେଇଥିଲେ । ପୃଥିବୀ, ପଶୁ ଓ ମଣିଷ ସୃଷ୍ଟି ବିଷୟରେ ଯେଉଁସବୁ ଧାର୍ମିକ ଉପଦେଶ ଥିଲା, ଏ ପ୍ରକାର ବୈଜ୍ଞାନିକ ଯୁକ୍ତି ତାହାର ସ୍ପଷ୍ଟ ବିପରୀତ । ସେତେବେଳେ ବୈଜ୍ଞାନିକ ଓ ବିଜ୍ଞାନ ଉପରେ ବିଶ୍ୱାସ କରୁଥିବା ଲୋକଙ୍କ ମଧ୍ୟରେ ଖୁବ୍ ବିତଣ୍ଡା ଚାଲିଲା । ବିଷୟବସ୍ତୁ ଉପରେ ପ୍ରକୃତରେ ବିବାଦ ହେଲା ନାହିଁ । ସାଧାରଣ ଭାବରେ ଜୀବନ ପ୍ରତି କିପରି ମନୋଭାବ ହେବ, ତାହା ଯେନ ହେଲା । ସଙ୍କୀର୍ଣ୍ଣ ଧାର୍ମିକ ମନୋଭାବରେ ବେଶି ଥାଏ ଭୟ, ଯାଦୁ ଓ କୁସଂସ୍କାର । ଯୁକ୍ତି ସହ କୌଣସି କାରଣ ଦେଖାଇ ଆଲୋଚନାକୁ ଉତ୍ସାହିତ କରାଯାଏ ନାହିଁ ଏବଂ ଲୋକଙ୍କୁ ଯାହା କୁହାଯାଏ, ତାହା ବିଶ୍ୱାସ କରିବା ଲାଗି ବାଧ୍ୟ କରାଯାଏ କାହିଁକି ବୋଲି ପ୍ରଶ୍ନ କରାଯିବ ନାହିଁ । ଅନେକ ବିଷୟରେ ରହସ୍ୟପୂର୍ଣ୍ଣ ପବିତ୍ରତା ଓ ଧର୍ମର ଆବରଣ ଦିଆଯାଏ; ସେ ଆବରଣ କାଢ଼ିବାର କିମ୍ବା ସ୍ପର୍ଶ କରିବାର କାହାର ଅଧିକାର ନାହିଁ । ବିଜ୍ଞାନର ଭାବ ଓ ପ୍ରଣାଳୀ ଏହାଠାରୁ ସମ୍ପୂର୍ଣ୍ଣ ପୃଥକ୍; କାରଣ ବିଜ୍ଞାନ ପ୍ରତ୍ୟେକ କଥାର କାରଣ ବାହାର କରିବା ପାଇଁ ଆଗ୍ରହୀ ।

କୌଣସି ଜିନିଷକୁ ଏହା ଠିକ ବୋଲି ଗ୍ରହଣ କରି ନଏନା; କିମ୍ବା କଥିତ ପବିତ୍ରତା ଯୋଗୁଁ ତାହା ଉପ୍ତ କରି ଛାଡ଼ି ଦିଏ ନାହିଁ । ଏହା ପ୍ରତ୍ୟେକ ଜିନିଷ ଭିତରକୁ ପ୍ରବେଶ କରେ ଓ କୁସଂସ୍କାରକୁ ନିରୁତ୍ସାହିତ କରେ ଏବଂ ପ୍ରୟୋଗ ଓ କାରଣସମ୍ମତ ବୋଲି ଯାହା ଠିକ ହୁଏ, ତାହା ହିଁ ଗ୍ରହଣ କରେ ।

ନିର୍ଜୀବ ଧାର୍ମିକ ଦୃଷ୍ଟିକୋଣ ସହିତ ଏହି ଲଢ଼େଇରେ ବିଜ୍ଞାନର ଭିତ ଜୟଲାଭ କଲା । ଏହିଗୁଡ଼ିକ ବିଷୟରେ ଯେଉଁମାନେ ଚିନ୍ତା କରୁଥିଲେ, ୧୮ଶ ଶତାବ୍ଦୀ ବେଳକୁ ସେମାନେ ହେତୁବାଦୀ ହୋଇଥିଲେ । ତୋର ମନେଥିବ, ବିପ୍ଳବ ପୂର୍ବରୁ ଫ୍ରାନ୍ସରେ ଯେଉଁ ଦାର୍ଶନିକ ଚିନ୍ତାଧାରାଙ୍କ ଖେଳୁଥିବା କଥା କହିଥିଲି; କିନ୍ତୁ ବର୍ତ୍ତମାନ ଏହି ପରିବର୍ତ୍ତନ ସମାଜର ଅଭ୍ୟନ୍ତରରେ ପ୍ରବେଶ କଲା । ବିଜ୍ଞାନର ପ୍ରଗତି ସାଧାରଣ ଶିକ୍ଷିତ ଲୋକଙ୍କୁ ବି ସ୍ପର୍ଶ କଲା । ସମ୍ଭବତଃ ସେ ଏ ସମ୍ବନ୍ଧରେ ଗମ୍ଭୀର ଚିନ୍ତା କଲା ନାହିଁ କିମ୍ବା ବିଜ୍ଞାନ ସମ୍ବନ୍ଧରେ ବିଶେଷ କିଛି ଜାଣି ନଥିଲା; କିନ୍ତୁ ଆବିଷ୍କାର ଓ ଉଦ୍ଭାବନଦ୍ୱାରା ଯେଉଁ ଅଲୌକିକ ବିଷୟ ତା ଆଖି ସାମନାରେ ପ୍ରକଟିତ ହେଲା, ସେଥିରେ ସେ ଚକିତ ନ ହୋଇ ରହିପାରିଲା ନାହିଁ । ରେଳବାଇ, ବିଦ୍ୟୁତ ଶକ୍ତି, ଟେଲିଗ୍ରାଫ, ଟେଲିଫୋନ, ଫୋନୋଗ୍ରାଫ ଏବଂ ଆହୁରି ଅନେକ ଜିନିଷ ଗୋଟିକ ପରେ ଗୋଟିଏ ଆସିଲା ଏବଂ ଏଗୁଡ଼ିକ ସବୁ ବୈଜ୍ଞାନିକ ପ୍ରଣାଳୀରୁ ଜାତ । ଏହା ବିଜ୍ଞାନର ବିଜୟ ବୋଲି ଉଦ୍‌ଘୋଷିତ ହେଲା । ବିଜ୍ଞାନ କେବଳ ଯେ ମଣିଷର ଜ୍ଞାନ ବଢ଼ାଇଲା ତାହା ନୁହେଁ, ପ୍ରକୃତି ଉପରେ ମଣିଷ ଅଧିକାର ଏହା ବଳରେ କରିପାରିବ ବୋଲି ବୁଝିପାରିଲା । ତେଣୁ ବିଜ୍ଞାନ ବିଜୟୀ ହେବା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ଏବଂ ଏହି ସର୍ବଶକ୍ତିମାନ ନୂତନ ଦେବତା ଆଗରେ ପୂଜା କରିବା ପାଇଁ ଲୋକେ ମୁଣ୍ଡ ନୁଆଁଇଲେ । ୧୯ଶ ଶତାବ୍ଦୀର ବିଜ୍ଞାନପ୍ରସୂତ ମଣିଷ ଅତ୍ୟନ୍ତ ଆତ୍ମତୃପ୍ତ ହୋଇ ରହିନ୍ତି ଏବଂ ନିଜ ସମ୍ବନ୍ଧରେ ନିଶ୍ଚିତ ଥାଆନ୍ତି ଏବଂ ତାଙ୍କ ମତରେ ବଡ଼ ଦୃଢ଼ ଥାଆନ୍ତି । ଅର୍ଦ୍ଧ ଶତାବ୍ଦୀ ହେଲା, ଏହି କାଳରୁ ବିଜ୍ଞାନ ଖୁବ୍ ଉନ୍ନତି କରିଛି; କିନ୍ତୁ ୧୯ଶ ଶତାବ୍ଦୀର ଏହି ଆତ୍ମତୃପ୍ତି ଓ ନିଶ୍ଚିତ ମନୋଭାବ ସମ୍ପୂର୍ଣ୍ଣ ଅଲଗା ଧରଣର ହୋଇଛି । ଆଜି ପ୍ରକୃତ ବୈଜ୍ଞାନିକ ଅନୁଭବ କରୁଛି ଯେ ଜ୍ଞାନସମୁଦ୍ର ଅତି ବିଶାଳ ଓ ଅସୀମ । ସେ ଏଥିରେ ଯାଞ୍ଚ କରିବାକୁ ଚାହେଁ; କିନ୍ତୁ ତାର ପୂର୍ବ ଲୋକଙ୍କ ଅପେକ୍ଷା ସେ ଆଜି ନମ୍ର ଓ ଅଧିକ ଦ୍ୱିଧାଯୁକ୍ତ ।

୧୯ଶ ଶତାବ୍ଦୀର ଆଉ ଏକ ବିଶିଷ୍ଟ କଥା ହେଉଛି ଯେ ପଶ୍ଚିମରେ ସାଧାରଣ ଶିକ୍ଷାର ପ୍ରଗତି ଶାସକ ଶ୍ରେଣୀର ବହୁତ ଲୋକ ଖୁବ୍ ଲାଗିପଡ଼ି ଏହାର ବିରୋଧ କରିଥିଲେ କାରଣ ସେମାନେ କହିଲେ ଯେ ଏପରି ଶିକ୍ଷା ଫଳରେ ସାଧାରଣ ଲୋକେ ଅସନ୍ତୁଷ୍ଟ, ରାଜଦ୍ରୋହୀ, ଅମାନିଆ ଓ ଅଖ୍ରୀଷ୍ଟିୟାନ ବା ଅଧର୍ମୀ ହୋଇ ପଡ଼ିବେ । ଏମାନଙ୍କ ଯୁକ୍ତି ଅନୁସାରେ ଅଜ୍ଞତା ଏବଂ ଧନୀ ଓ କ୍ଷମତାଶାଳୀ ଲୋକଙ୍କର ସ୍ୱେଚ୍ଛାକୃତ ବଶ୍ୟତା ସ୍ୱୀକାର କରିବା ହେଉଛି ଖ୍ରୀଷ୍ଟଧର୍ମ; କିନ୍ତୁ ଏହି ବିରୋଧ ସତ୍ତ୍ୱେ ପ୍ରାଥମିକ ସ୍କୁଲମାନ ସ୍ଥାପନ

ଲାଗିଗଲା ଏବଂ ସାଧାରଣ ଶିକ୍ଷା ବ୍ୟାପିଲା । ୧୯ଶ ଶତାବ୍ଦୀର ଅନ୍ୟ କେତେକ ନୂଆ କଥା ପରି ଏହା ମଧ୍ୟ ନୂତନ ଶିଳ୍ପ ଉଦ୍ୟମ ଫଳରେ ହେଲା । କାରଣ ବଡ଼ କାରଖାନା ଓ ବଡ଼ ମେସିନ ପାଇଁ ଶିଳ୍ପ ନିପୁଣତା ଦରକାର ଏବଂ ଶିକ୍ଷା ବଳରେହିଁ ଏହା ସମ୍ଭବ ହୋଇପାରେ । ସେକାଳର ସମାଜରେ ସକଳପ୍ରକାର ପ୍ରବୀଣ କର୍ମୀଙ୍କର ଅତ୍ୟନ୍ତ ଆବଶ୍ୟକତା ଥିଲା, ସାଧାରଣ ଶିକ୍ଷାଦ୍ୱାରା ଏହି ଅଭାବ ମେଣ୍ଟିଲା ।

ଏହି ବ୍ୟାପକ ପ୍ରାଥମିକ ଶିକ୍ଷା ବହୁ ସଂଖ୍ୟକ ସାକ୍ଷର ଲୋକ ସୃଷ୍ଟି କଲା । ସେମାନଙ୍କୁ ଶିକ୍ଷିତ ବୋଲି କୁହାଯାଇପାରିବ ନାହିଁ; କିନ୍ତୁ ସେମାନେ ଲେଖାପଢ଼ା କରିପାରିଲେ ଏବଂ ସମ୍ବାଦପତ୍ର ପଢ଼ିବା ଅଭ୍ୟାସ ପ୍ରସାର ହେଲା । ଶସ୍ତା ଖବରକାଗଜ ସବୁ ବାହାରିଲା ଏବଂ ଖୁବ୍ କାଟତି ହେଲା । ଲୋକଙ୍କ ମନରେ ଏହାର ଗୋଟାଏ ଶକ୍ତିଶାଳୀ ପ୍ରଭାବ ପଡ଼ିଲା । ବାସ୍ତବିକ୍ ଅନେକ ସମୟରେ ଏହା ସେମାନଙ୍କୁ ଭୁଲ ପଥରେ ଚଳାଇ ନେଲା ଏବଂ ପଡ଼ୋଶୀ ଦେଶ ବିରୁଦ୍ଧରେ ଲୋକଙ୍କୁ ମତାଇଲା ଏବଂ ଏହି ପ୍ରକାରେ ଯୁଦ୍ଧ ହେଲା; କିନ୍ତୁ ସେ ଯାହାହେଉ, ଖବରକାଗଜ (Press) ନିର୍ଦ୍ଦିଷ୍ଟ ଭାବରେ ଏକ ଶକ୍ତି ରୂପେ ରହିଲା ।

ମୁଁ ଏହି ଚିଠିରେ ଯାହାସବୁ ଲେଖିଛି ସେଥିରେ ବେଶି ଭାଗ ମୁଖ୍ୟତଃ ଇଉରୋପ ଓ ବିଶେଷ ଭାବରେ ପଶ୍ଚିମ ଇଉରୋପରେ ହୋଇଥିଲା । ଉତ୍ତର ଆମେରିକାରେ ମଧ୍ୟ କେତେକ ପରିମାଣରେ ଏହିପରି ଅବସ୍ଥା ଥିଲା । ଏସିଆ, ଜାପାନ ଓ ଆଫ୍ରିକା ପୃଥିବୀର ଅବଶିଷ୍ଟ ଅଂଶ ଅତି ନିଷ୍କ୍ରିୟ ଥିଲା ଏବଂ ଇଉରୋପର ନୀତି ଫଳରେ କଷ୍ଟ ପାଉଥିଲେ । ମୁଁ ଯାହା କହୁଛି ୧୯ଶ ଶତାବ୍ଦୀ ଇଉରୋପର ଶତାବ୍ଦୀ ବୋଲି କୁହାଯାଇ ପାରେ । ଇଉରୋପରେ ହିଁ ପ୍ରଧାନ ଥିଲା; ପୃଥିବୀ ରଙ୍ଗମଞ୍ଚରେ ଇଉରୋପ କେନ୍ଦ୍ର ସ୍ଥାନ ଦଖଲ କଲା । ଅତୀତରେ ଦୀର୍ଘକାଳ ପର୍ଯ୍ୟନ୍ତ ଏସିଆ ଇଉରୋପ ଉପରେ ପ୍ରାଧାନ୍ୟ ବିସ୍ତାର କରିଥିଲା । ଏପରି ସମୟ ଥିଲା, ଯେତେବେଳେ ସଭ୍ୟତା ଓ ପ୍ରଗତିର କେନ୍ଦ୍ର ସବୁ ଥିଲା ଇଜିପ୍ଟ, ଇରାକ, ଭାରତ, ଚୀନ, ଗ୍ରୀସ, ରୋମ ବା ଆରବ ଦେଶ । କିନ୍ତୁ ପୁରାତନ ସଭ୍ୟତାର ସମୟ ହୋଇଗଲା ଓ ଏହା ପଥର ହୋଇ ଭୂଇଁରେ ଲାଗି ଅଚଳ ହୋଇଗଲା । ପରିବର୍ତ୍ତନ ଓ ପ୍ରଗତି ପରି ଜୀବନ୍ତ ଶକ୍ତି ଏହାକୁ ଛାଡ଼ି ଚାଲିଗଲା ଏବଂ ଜୀବନ ଅନ୍ୟ ଅଞ୍ଚଳକୁ ଚାଲିଗଲା । ଏବେ ଇଉରୋପର ପାଳି ପଡ଼ିଲା ଏବଂ ଗମନାଗମନ ପଥର ଉନ୍ନତି ଫଳରେ ପୃଥିବୀର ସବୁ ଭାଗକୁ ସହଜରେ ଓ ଶୀଘ୍ର ଯିବାର ସୁବିଧା ହୋଇଯିବାରୁ ଇଉରୋପ ଅଧିକ ପ୍ରାଧାନ୍ୟ ଲାଭ କଲା ।

୧୯ଶ ଶତାବ୍ଦୀରେ ଇଉରୋପୀୟ ସଭ୍ୟତା ପ୍ରତିଷ୍ଠିତ ହେଲା—ଏହାକୁ ବୁର୍ଜୋୟା ସଭ୍ୟତା କହନ୍ତି; କାରଣ ବୁର୍ଜୋୟା ଶ୍ରେଣୀ ଶିଳ୍ପଜାତ ପୁଞ୍ଜିବାଦ ସୃଷ୍ଟି କଲେ ଓ ସେଥିରେ କର୍ତ୍ତୃତ୍ୱ ବିସ୍ତାର କଲେ । ଏହି ସଭ୍ୟତାର ଅନେକ ଖରାପ ବିଷୟ ଓ ଆତ୍ମବିରୋଧ କଥା ମୁଁ ତତେ କହୁଛି । ଆମେ ସବୁ ଭାରତରେ ଓ ପ୍ରାଚ୍ୟ ଦେଶରେ ବିଶେଷ ଭାବରେ ଏହି ଖରାପ

ବିଷୟଗୁଡ଼ିକ ଦେଖିପାରିଲେ ଏବଂ ସେଥିଯୋଗୁଁ ଦୁଃଖ ଭୋଗିଲେ । କିନ୍ତୁ ମହତ୍ତ୍ୱପୂର୍ଣ୍ଣ ଜିନିଷ କିଛି ନଥିଲେ କୌଣସି ଦେଶ ଓ ଜାତି ମହାନ୍ ହୋଇ ଉଠିପାରିବ ନାହିଁ । ପଶ୍ଚିମ ଇଉରୋପରେ ବଡ଼ ହେବାର ମସଲା ଥିଲା । ଶେଷରେ ଇଉରୋପର ସମ୍ମାନ ସାମରିକ ଶକ୍ତି ଯୋଗୁଁ ଯେତେ ନୁହେଁ, ଯେଉଁସବୁ ଗୁଣ ଯୋଗୁଁ ସେ ବଡ଼ ହେଲା ସେଥିଯୋଗୁ ବଢ଼ିଲା । ପ୍ରତ୍ୟେକ ସ୍ଥାନରେ ପ୍ରଚୁର ଭାବରେ ଜୀବନ, ଜୀବନୀ ଶକ୍ତି ଓ ନିର୍ମାଣ ଶକ୍ତି ଦେଖାଦେଲା । ବଡ଼ ବଡ଼ କବି, ଲେଖକ, ଦାର୍ଶନିକ, ବୈଜ୍ଞାନିକ, ସଙ୍ଗୀତଜ୍ଞ, ଇଞ୍ଜିନିୟର ଓ କାର୍ଯ୍ୟକ୍ଷମ ଲୋକେ ବାହାରି କଲେ । ଏଥିରେ ସନ୍ଦେହ ନାହିଁ ଯେ ଏପରି କି ପଶ୍ଚିମ ଇଉରୋପର ସାଧାରଣ ଲୋକଙ୍କ ଅବସ୍ଥା ମଧ୍ୟ ଖୁବ୍ ଉନ୍ନତ ହେଲା—ପୂର୍ବରୁ ଏପରି କେବେ ହୋଇ ନ ଥିଲା । ବଡ଼ ବଡ଼ ରାଜଧାନୀ ଲଣ୍ଡନ, ପାରିସ, ବର୍ଲିନ ଓ ନିଉୟର୍କ ବିଶାଳରୁ ବିଶାଳତର ହେଲେ । କୋଠାଘରୁ ଉଚ୍ଚତର ହେଲେ, ବିଳାସ ବଢ଼ିଲା । ମନୁଷ୍ୟ ଶ୍ରମ କମାଇବା ପାଇଁ ଏବଂ ଜୀବନର ସ୍ୱାଚ୍ଛନ୍ଦ୍ୟ ଓ ଆମୋଦ ସକାଶେ ସହସ୍ର ପ୍ରକାରେ ସୁବିଧା ହେଲା । ସଙ୍ଗତିସମ୍ପନ୍ନ ଶ୍ରେଣୀଙ୍କ ଜୀବନ ସଂସ୍କୃତ ଓ ମଧୁର ହେଲା ଏବଂ ଗୋଟାଏ ପ୍ରକାର ଆତ୍ମସନ୍ତୋଷ, ଆତ୍ମ-ପ୍ରାଚୁର୍ଯ୍ୟ ଓ ଲାଳସା ତାଙ୍କ ଭିତରେ ଜାତ ହେଲା । ତାଙ୍କ ପକ୍ଷରେ ଏହା ସତେ କି ସଭ୍ୟତାର ଆମୋଦପ୍ରମୋଦ ଦ୍ୱିପ୍ରହର !

ଏହିପରି ୧୯ଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଇଉରୋପ ଏକ ଆମୋଦପ୍ରଦ ଓ ଉନ୍ନତ ଦେଶ ହେଲା ଏବଂ ଅନ୍ତତଃ ଉପରେ ଜଣାଗଲା ସତେ କି ଏହି ମଧୁର କୃଷି ସଭ୍ୟତା ଲାଗି ରହିଥିବ ଏବଂ ଦିନକୁ ଦିନ ବିକଶିତ ହୋଇ ପ୍ରଗତି କରୁଥିବ । କିନ୍ତୁ ଏହି ଉପରସ୍ତର ଭିତରୁ ଉଙ୍କିମାରି ଅନାଇଲେ ଗୋଟାଏ ଅପୂର୍ବ ଶୃଙ୍ଖଳା ଏବଂ ଅନେକ ଅପ୍ରୀତିକର ଦୃଶ୍ୟ ଦେଖିବାକୁ ମିଳେ; କାରଣ ଏହି ଉନ୍ନତ ସଭ୍ୟତା କେବଳ ଇଉରୋପର ଉଚ୍ଚ ଶ୍ରେଣୀଙ୍କ ପାଇଁ ଏବଂ ଅନେକ ଦେଶ ଓ ଅନେକ ଲୋକଙ୍କ ଶୋଷଣ ଉପରେ ପ୍ରତିଷ୍ଠିତ । ଏଥିରେ ଯେଉଁ ସବୁ ସ୍ୱବିରୋଧ ଭାବ, ଜାତୀୟ ଘୃଣା, ସାମ୍ରାଜ୍ୟବାଦର କ୍ରୂର ଓ ନିଷ୍ଠୁର ରୂପ ଦେଖାଗଲା ସେସବୁ ମୁଁ ତତେ କହିଛି । ଏହା ଦେଖି ଏହି ୧୯ଶ ସଭ୍ୟତାର ମୋହ ବା ସ୍ଥାୟିତ୍ୱ ବିଷୟରେ ତୁ ସେପରି ନିଶ୍ଚିତ ହୋଇପାରିବୁ ନାହିଁ । ଉପରକୁ ଦେହ ଦେଖିବାକୁ ସୁନ୍ଦର; କିନ୍ତୁ ହୃଦୟରେ ଘା' ହୋଇ ଯାଇଥିଲା । ସ୍ୱାସ୍ଥ୍ୟ ଓ ପ୍ରଗତି ସମ୍ବନ୍ଧରେ ବହୁତ କଥା କୁହାଯାଇଥିଲା, କିନ୍ତୁ ବୁର୍ଜୋୟା ସଭ୍ୟତାର ଜୀବନୀଶକ୍ତି କୀଟ ଖାଇ ଯାଉଥିଲା ।

୧୯୧୪ରେ ବିସ୍ଫୋରଣ ହେବାର ଶବ୍ଦ ହେଲା । ବାସ୍ତବିକ ୪ ବର୍ଷ ୪ ମାସ ଯୁଦ୍ଧ ପରେ ଇଉରୋପ ଏଥିରୁ ଉଦ୍ଧାର ପାଇଲା; କିନ୍ତୁ ଏଥିରେ ଏପରି ଗୁରୁତର କ୍ଷତିସବୁ ହୋଇଛି, ଯାହା ଆଜି ସୁଦ୍ଧା ଉପଶମ ହୋଇ ନାହିଁ; କିନ୍ତୁ ସେ ବିଷୟରେ ମୁଁ ପରେ କହିବି ।

## ୧୦୯ : ଯୁଦ୍ଧ ଓ ଭାରତରେ ବିଦ୍ରୋହ

ନଭେମ୍ବର ୨୭, ୧୯୩୨

ଆମେ ୧୯ଶ ଶତାବ୍ଦୀ ବିଷୟରେ ଦୀର୍ଘକାଳ ପର୍ଯ୍ୟନ୍ତ ଆଲୋଚନା କଲେ । ଏବେ ପୃଥିବୀର ଆଉ କେତେକ ଅଞ୍ଚଳ ସମ୍ବନ୍ଧରେ କିଛିଏ ନଜରେଖି ଦେଖିବା । ଭାରତରୁ ଆରମ୍ଭ କରିବା ।

ଭାରତରେ ବ୍ରିଟିଶ ତାଙ୍କ ବିରୋଧୀମାନଙ୍କ ଉପରେ କିପରି ଜୟଲାଭ କଲେ, ମୁଁ ସେ କଥା ଆଗରୁ କହିଛି । ନେପୋଲିୟନ ଯୁଦ୍ଧବେଳେ ଫରାସୀମାନଙ୍କୁ ନିଶ୍ଚିତ ରୂପେ ତଡ଼ିଦିଆଗଲା । ମରହଟ୍ଟା, ମହୀଶୂରର ଟିପୁ ସୁଲତାନ ଓ ପଞ୍ଜାବର ଶିଖମାନେ ଇଂରେଜମାନଙ୍କୁ କିଛି କ୍ଷଣ ପାଇଁ ଅଟକାଇଲେ; କିନ୍ତୁ ସେମାନେ ବେଶି ଦିନ ସେମାନଙ୍କର ପ୍ରତିରୋଧ କରିପାରି ନ ଥିଲେ । ସ୍ପଷ୍ଟ ଭାବରେ ଇଂରେଜମାନେ ସବୁଠାରୁ ବଳବାନ୍ ଓ ସୁସଜ୍ଜିତ ଶକ୍ତି ଥିଲେ । ସେମାନଙ୍କର ଭଲ ଶସ୍ତ୍ର ଓ ଭଲ ସଂଗଠନ ଥିଲା ଏବଂ ସର୍ବୋପରି ନୌଶକ୍ତି ତାଙ୍କ ପକ୍ଷରେ ରହିଥିଲା । ସେମାନେ ବେଳେ ବେଳେ ପରାସ୍ତ ହେଉଥିଲେ, ତାହା ହୋଇ ସୁଦ୍ଧା ସେମାନଙ୍କୁ ଲୋପ କରାଯାଇ ପାରୁ ନ ଥିଲା; କାରଣ ନୌଯାନରେ ତାଙ୍କର ପ୍ରଭୁତ୍ୱ ଥିବାରୁ ସେମାନେ ଅନ୍ୟ ଉପାୟ ଖୋଜି ବାହାର କରୁଥିଲେ । ସ୍ଥାନୀୟ ଶକ୍ତିମାନଙ୍କ ପକ୍ଷରେ ପରାଜିତ ହେବା ଅର୍ଥ ସତ୍ୟାନାଶ ହେବା—ଏହା ସୁଧାରିବାର ଆଉ କିଛି ଉପାୟ ନ ଥାଏ । ଇଂରେଜମାନେ କେବଳ ସୁସଜ୍ଜିତ ଯୋଦ୍ଧା ଓ ଉନ୍ନତ ସଂଗଠନକାରୀ ଥିଲେ ତା ନୁହେଁ; କିନ୍ତୁ ସ୍ଥାନୀୟ ବିରୋଧୀ ଶକ୍ତିଙ୍କ ଅପେକ୍ଷା ଅତ୍ୟନ୍ତ ଚତୁର ଥିଲେ ଏବଂ ପରସ୍ପର ଭିତରେ ଥିବା କଳହରୁ ସେମାନେ ସକଳ ସୁବିଧା ଉଠାଇଲେ । ତେଣୁ ଅନିବାର୍ଯ୍ୟ ଭାବରେ ବ୍ରିଟିଶ ଶକ୍ତି ବ୍ୟାପିଲା ଏବଂ ବିରୋଧୀମାନଙ୍କୁ ଗୋଟି ଗୋଟି କରି ତଡ଼ିଦେଲେ । ଅନେକ ସମୟରେ ଅନ୍ୟମାନଙ୍କ ସାହାଯ୍ୟରେ ଏହା ହାସଲ କରନ୍ତି ଏବଂ ପରେ ସେମାନଙ୍କୁ ମଧ୍ୟ ବିଦା କରନ୍ତି । ସେତେବେଳେ ଭାରତର ସାମନ୍ତ ରାଜାମାନେ କିପରି ଦୂରଦୃଷ୍ଟିହୀନ ଥିଲେ, ତାହା ଭାବିଲେ ବିସ୍ମୟ ଲାଗେ । ବିଦେଶୀ ଶତ୍ରୁ ବିରୁଦ୍ଧରେ ମିଳିତ ହେବା କଥା ସେମାନେ କେବେ ଚିନ୍ତା କରି ନ ଥିଲେ । ପ୍ରତ୍ୟେକେ ଏକାକୀ ଲଢ଼ିଲେ ଏବଂ ହାରିଲେ—ହାରିବାର ତ କଥା ।

ବ୍ରିଟିଶ ଶକ୍ତି ବଳ ସଞ୍ଚୟ କରିବା ସଙ୍ଗେ ସଙ୍ଗେ ଅଧିକ ଆକ୍ରମଣଶୀଳ ଓ ନିର୍ଦ୍ଦୟ ହେଲା; କାରଣ ଥାଇ ବା ନ ଥାଇ ମଧ୍ୟ ଲଢ଼ାଇ ଆରମ୍ଭ କରି ଦେଉଥିଲେ । ଏହିପରି ଅନେକ ଯୁଦ୍ଧ ହେଉଥିଲା । ଏହିସବୁ ବିବରଣୀ ଦେଇ ତୋତେ ହଇରାଣ କରିବାକୁ ମୁଁ ଚାହେଁ ନା । ଯୁଦ୍ଧଗୁଡ଼ିକ କିଛି ଆମୋଦଜନକ ବିଷୟ ନୁହେଁ ଏବଂ ଇତିହାସରେ ଏଗୁଡ଼ିକୁ

ଅତ୍ୟଧିକ ଗୁରୁତ୍ୱ ଦିଆଯାଏ; କିନ୍ତୁ ସେ ସମ୍ବନ୍ଧରେ ମୁଁ କିଛି ନ କହିଲେ ପ୍ରକୃତ ଚିତ୍ର ଅସମ୍ପୂର୍ଣ୍ଣ ହୋଇ ରହିବ ।

ମୁଁ ଆଗରୁ ମହୀଶୂରର ହାଇଦର ଅଲି ଓ ବ୍ରିଟିଶଙ୍କ ସହିତ ଦୁଇଟି ଯୁଦ୍ଧ ବିଷୟରେ ଚିଠି କହିଛି । ଏଥିରେ ହାଇଦର ଅଲି ଅଧିକ ପରିମାଣରେ ସଫଳ ହୋଇଥିଲେ । ତାଙ୍କ ପୁତ୍ର ଟିପୁ ସୁଲତାନ ବ୍ରିଟିଶଙ୍କର ଏକ ଘୋର ଶତ୍ରୁ ଥିଲେ । ୧୭୯୦-୯୨ ଓ ୧୭୯୯ରେ ଦୁଇଟି ଅଧିକ ଯୁଦ୍ଧ ହେଲା ପରେ ତାଙ୍କୁ ହଟାଇ ଦିଆଗଲା । ଟିପୁ ଯୁଦ୍ଧ କରୁ କରୁ ମଲେ । ତାଙ୍କର ପୁରୁଣା ରାଜଧାନୀ ସେରିଙ୍ଗପଟ୍ଟମ୍‌ର ଧ୍ୱଂସାବଶେଷ ଏବେ ସୁଦ୍ଧା ଦେଖିପାରିବ । ଏହା ମହୀଶୂର ସହର ନିକଟରେ ଏବଂ ଏଠାରେ ଟିପୁଙ୍କୁ କବର ଦିଆଯାଇଥିଲା ।

ବ୍ରିଟିଶର ପ୍ରାଧାନ୍ୟ ବିରୁଦ୍ଧରେ ମରହଟ୍ଟାମାନେ ଛିଡ଼ା ହେଲେ । ପଶ୍ଚିମରେ ପେଶବା, ଗୋୟାଲିୟରର ସିନ୍ଧିୟା, ଇନ୍ଦୋରର ହୋଲକାର ଏବଂ ଅନ୍ୟ କେତେକ ରାଜା ଥିଲେ । କିନ୍ତୁ ୧୭୯୪ରେ ଗୋୟାଲିୟରର ସିନ୍ଧିୟା ମହାଦଜୀ ଏବଂ ୧୮୦୦ରେ ପେଶବାଙ୍କ ମନ୍ତ୍ରୀ ନାନା ଫର୍ଣ୍ଣାବିଶ ଏହି ଦୁଇ ଜଣ ରାଜନୀତିଜ୍ଞଙ୍କ ମୃତ୍ୟୁ ପରେ ମରହଟ୍ଟା ଶକ୍ତି ଖଣ୍ଡ ଖଣ୍ଡ ହୋଇଗଲା; ତଥାପି ମରହଟ୍ଟାମାନେ ଅନେକ ଦିନ ମାଡ଼ ଚଳାଇଲେ ଏବଂ ୧୮୧୯ରେ ମରହଟ୍ଟାମାନେ ଶେଷରେ ଲୋପ ପାଇଯିବା ପର୍ଯ୍ୟନ୍ତ ଇଂରେଜମାନେ ଅନେକ ଥର ପରାସ୍ତ ହୋଇଥିଲେ । ମରହଟ୍ଟା ରାଜାମାନେ ଅଲଗା ଅଲଗା ଭାବରେ ପରାଜିତ ହେଲେ; କେହି କାହାରିକି ସାହାଯ୍ୟ ନ କରି ପରସ୍ପରର ପରାଜୟ ବସି ଦେଖୁଥାନ୍ତି । ସିନ୍ଧିୟା ଓ ହୋଲକାର ବ୍ରିଟିଶ କର୍ତ୍ତୃତ୍ୱ ସ୍ୱୀକାର କରି ଅଧୀନ ଶାସକ ହୋଇ ରହିଲେ । ଏପରି କି ଆଗରୁ ବରୋଦାର ଗାଏକୋୱାଡ଼ ବିଦେଶୀ ଶକ୍ତି ସହିତ ସନ୍ଧି ସର୍ତ୍ତ କରି ନେଇଥିଲେ ।

ମରହଟ୍ଟାମାନଙ୍କ ବିଷୟ ଶେଷ କରିବା ପୂର୍ବରୁ ମଧ୍ୟ-ଭାରତରେ ଆଉ ଗୋଟିଏ ନାମ ବିଖ୍ୟାତ ହୋଇ ଉଠିଥିଲା । ସେକଥା ମୁଁ ତିଠି କହିବ । ଏହାଙ୍କ ନାମ ଅହଲ୍ୟା ବାଈ । ଏ ୧୭୬୫ରୁ ୧୭୯୫ ଯାଏ ୩୦ ବର୍ଷ ପର୍ଯ୍ୟନ୍ତ ଇନ୍ଦୋର ଶାସନ କରିଥିଲେ । ସେ ଗାଦିରେ ବସିବା ବେଳକୁ ୩୦ ବର୍ଷ ବୟସ୍କା ବିଧବା ଥିଲେ ଏବଂ ନିଜ ରାଜ୍ୟ ଶାସନ ସେ ଖୁବ୍ ଭଲ ଭାବରେ କରି ପାରିଥିଲେ । ଅବଶ୍ୟ ସେ ପରଦା ମାନୁ ନ ଥିଲେ । ମରହଟ୍ଟାମାନେ କେବେ ପରଦା ମାନନ୍ତି ନାହିଁ । ସେ ପ୍ରକାଶ୍ୟ ଦରବାରରେ ବସି ନିଜେ ରାଜ୍ୟର ସବୁ ହାଲଚାଲ ବୁଝୁଥିଲେ ଏବଂ ଇନ୍ଦୋରକୁ ଗ୍ରାମରୁ ଏକ ସମୃଦ୍ଧଶାଳୀ ସହରରେ ପରିଣତ କଲେ । ସେ ଯୁଦ୍ଧରୁ ଦୂରରେ ରହିଲେ, ଶାନ୍ତି ରଖିଲେ ଏବଂ ଭାରତର ଅଧିକାଂଶ ଭାଗ ଯେତେବେଳେ ଗୋଟାଏ ଗୋଳମାଳ ଅବସ୍ଥାରେ ଥିଲା, ସେତେବେଳେ ସେ ଏହାକୁ ଉନ୍ନତିଶାଳୀ କରି ପାରିଥିଲେ । ତାଙ୍କୁ ଯେ ମଧ୍ୟ ଭାରତରେ ଏକ ସାଧ୍ୱୀ ବୋଲି ମଣନ୍ତି ଏବଂ ସମ୍ମାନ ଦେଖାନ୍ତି, ଏଥିରେ ବିସ୍ମୟ ହେବାର କିଛି ନାହିଁ ।

ଗତ ମରହଟ୍ଟା ଯୁଦ୍ଧର ଅଳ୍ପକ୍ଷଣ ପୂର୍ବରୁ ୧୮୧୪ରୁ ୧୮୧୬ ପର୍ଯ୍ୟନ୍ତ ବ୍ରିଟିଶଙ୍କର ନେପାଳ ସହିତ ଯୁଦ୍ଧ ହୋଇଥିଲା । ପର୍ବତରେ ସେମାନେ ବଡ଼ ଅସୁବିଧା ଭୋଗିଲେ ଏବଂ ଶେଷରେ ସେମାନେ ଜିତିଲେ । ଡେରାଡ଼ୁନ ଜିଲ୍ଲା ଯେଉଁଠି ଜେଲରେ ବସି ମୁଁ ଏ ଚିଠି ଲେଖୁଛି । କୁମାଉନ୍ ଓ ନୈନିତାଲ ବ୍ରିଟିଶ ଶାସନ ଅଧୀନକୁ ଆସିଲା । ଚୀନ ସମ୍ପର୍କରେ ଲେଖିଲାବେଳେ ତତେ କହିଥିବାର ମନେପଡ଼ୁଛି କିପରି ଏକ ଚୀନ ସେନାବାହିନୀ ଅଦ୍ଭୁତ ପ୍ରକାରେ ତିବ୍ବତ ପାରି ହୋଇ ହିମାଳୟକୁ ଚାଲି ଆସିଲେ ଏବଂ ଗୁର୍ଖାମାନଙ୍କୁ ତାଙ୍କ ବାସସ୍ଥାନ ନେପାଳରେ ପରାସ୍ତ କରିଥିଲେ । ବ୍ରିଟିଶ—ନେପାଳ ଯୁଦ୍ଧ ହେବାର ୨୨ ବର୍ଷ ପୂର୍ବରୁ ଏହା ଘଟିଥିଲା । ସେହି ଦିନଠାରୁ ନେପାଳ ବାଧ୍ୟବାଧକ ଭାବରେ ଚୀନର ବଶ୍ୟତା ସ୍ୱୀକାର କରିଥିଲା; କିନ୍ତୁ ମୋର ମନେହୁଏ ଆଉ ଆଜିକାଲି ତାହା କରୁ ନାହିଁ । ଏହା ଏକ ବିଚିତ୍ର ଦେଶ, ଅତ୍ୟନ୍ତ ଅନୁନ୍ନତ, ପୃଥିବୀର ଅନ୍ୟ ଭାଗଠାରୁ ବିଚ୍ଛିନ୍ନ; ଅଥଚ ଏକ ସୁନ୍ଦର ସ୍ଥାନରେ ଅବସ୍ଥିତ ଓ ପ୍ରାକୃତିକ ସମ୍ପଦ ପୂର୍ଣ୍ଣ ରହିଛି । କାଶ୍ମୀର ବା ହାଇଦରାବାଦ ପରି ଏହା ଏକ ଅଧୀନ ଦେଶ ନୁହେଁ । ଏହାକୁ ସ୍ୱାଧୀନ ବୋଲି କହନ୍ତି; କିନ୍ତୁ ଏହାର ସ୍ୱାଧୀନତା ଯେପରି ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଅତିକ୍ରମ ନ କରେ, ସେଥିପାଇଁ ଇଂରେଜମାନେ ଜାଗ୍ରତଥାଇ ଥାଆନ୍ତି । ସାହସୀ ଓ ଯୁଦ୍ଧପ୍ରିୟ ନେପାଳବାସୀ ଗୁର୍ଖାମାନେ ଭାରତରେ ଇଂରେଜ ସେନାବାହିନୀରେ ଯୋଗ ଦିଅନ୍ତି ଏବଂ ଭାରତୀୟମାନଙ୍କୁ ଦବାଇବା ପାଇଁ ସେମାନଙ୍କୁ ବ୍ୟବହାର କରାଯାଏ ।

ପୂର୍ବଦିଗରେ ବର୍ମା ଆସାମ ପର୍ଯ୍ୟନ୍ତ ମାଡ଼ିଆସିଲା; ସୁତରାଂ ସର୍ବଦା ଅଗ୍ରସର ହେଉଥିବା ଇଂରେଜମାନଙ୍କ ସହ ସଂଘର୍ଷ ହେବା ଅନିବାର୍ଯ୍ୟ । ବର୍ମା ସହିତ ତିନୋଟି ଯୁଦ୍ଧ ହୋଇଥିଲା ଏବଂ ପ୍ରତ୍ୟେକ ଥର ଇଂରେଜମାନେ କେତେକ ଅଞ୍ଚଳ ତାଙ୍କ ରାଜ୍ୟ ସହ ଯୋଗ କରୁଥାନ୍ତି । ୧୮୨୪-୨୬ରେ ହୋଇଥିବା ପ୍ରଥମ ଯୁଦ୍ଧରେ ଆସାମ ଇଂରେଜମାନଙ୍କ ଅଧୀନକୁ ଆସିଲା; ୧୮୫୨ରେ ଦ୍ୱିତୀୟ ଯୁଦ୍ଧରେ ଦକ୍ଷିଣ-ବର୍ମା ଯୋଗ ଦେଲା । ଉତ୍ତର-ବର୍ମା, ମାଣ୍ଡାଲେ ନିକଟସ୍ଥ ତାର ରାଜଧାନୀ ଆଭା ସହିତ ସମୁଦ୍ରରୁ ଅଲଗା ହୋଇ ରହିଗଲା—ଇଂରେଜମାନଙ୍କ ଦସ୍ତାରୁ ଏକ ଶୁଷ୍କ ଅଞ୍ଚଳ ହୋଇ ରହିଲା । ୧୮୮୫ରେ ତୃତୀୟ ବର୍ମା ଯୁଦ୍ଧରେ ଏହାର ସମାପ୍ତି ହେଲା ଏବଂ ସମଗ୍ର ଦେଶଟି ଇଂରେଜମାନେ ମିଶାଇ ନେଲେ ଓ ବ୍ରିଟିଶ ସାମ୍ରାଜ୍ୟ ସହ ଯୋଗ କରିଦେଲେ । ବର୍ମା ପୋଥିପତ୍ରରେ ଚୀନର ଅଧୀନ ଥିଲା ଏବଂ ପ୍ରକୃତରେ ଏହା ନିୟମିତ ଭାବେ ସେଠାକୁ ରାଜସ୍ୱ ପଠାଉଥିଲା । ବିଚିତ୍ର କଥା ଯେ ଇଂରେଜମାନେ ବର୍ମାକୁ ସଂଯୋଗ କଲାବେଳେ ଚୀନକୁ ଏହି ରାଜସ୍ୱ ଦେବାକୁ ସମ୍ମତ ହୋଇଥିଲେ । ଏଥିରୁ ଦେଖାଯାଉଛି ଯେ, ଏପରିକି ୧୮୮୫ରେ ଚୀନର ଶକ୍ତି ସମ୍ବନ୍ଧରେ ସେମାନେ ଯଥେଷ୍ଟ ପ୍ରମାଣ ପାଇଥିଲେ, ଯଦିଓ ଚୀନ ନିଜ ଆଭ୍ୟନ୍ତରୀଣ ଗଣ୍ଡଗୋଳରେ ଏପରି ବ୍ୟସ୍ତ ଥିବାରୁ ବର୍ମା ଆକ୍ରମଣବେଳେ ସେ

ବର୍ମାକୁ ସାହାଯ୍ୟ କରିପାରି ନଥିଲା । ୧୮୮୫ ପରେ ଇଂରେଜମାନେ ଥରେ ଚୀନକୁ ରାଜସ୍ୱ ପଠାଇଥିଲେ ଏବଂ ତାପରେ ବନ୍ଦ କରିଦେଲେ ।

ବର୍ମା ଯୁଦ୍ଧ ୧୮୮୫ ପର୍ଯ୍ୟନ୍ତ ଲାଗିଲା । ମୁଁ ଏ ସବୁ ସମ୍ବନ୍ଧରେ ଏକାଠି ଆଲୋଚନା କରିବାକୁ ଇଚ୍ଛା କରିଥିଲି; କିନ୍ତୁ ଆମେ ଏବେ ଉତ୍ତର-ଭାରତକୁ ଓ ଏହି ଶତାବ୍ଦୀର ପ୍ରଥମ ଭାଗକୁ ଫେରିଯିବା । ପଞ୍ଜାବରେ ରଣଜିତ ସିଂହଙ୍କ ଅଧୀନରେ ଗୋଟିଏ ବଡ଼ ଶିଖ ରାଜ୍ୟ ଥିଲା । ଏହି ଶତାବ୍ଦୀର ଠିକ୍ ଆରମ୍ଭରେ ରଣଜିତ୍ ସିଂ ଅମୃତସରର ପ୍ରଭୁ ହେଲେ । ୧୮୨୦ ବେଳକୁ ସେ ପ୍ରାୟ ସମଗ୍ର ପଞ୍ଜାବ ଓ କାଶ୍ମୀରର ମାଲିକ ହୋଇଥିଲେ । ୧୮୩୯ରେ ତାଙ୍କର ମୃତ୍ୟୁ ହେଲା । ଶିଖ ରାଜ୍ୟ ଦୁର୍ବଳ ହୋଇ ପଡ଼ିଲା ଏବଂ ତାଙ୍କ ମୃତ୍ୟୁର ଅଳ୍ପ ଦିନ ପରେ ଭାଙ୍ଗିବାକୁ ଆରମ୍ଭ କଲା । ଶିଖମାନେ ପୁରୁଣା ପ୍ରବଚନ କହି ଉଦାହରଣ ଦିଅନ୍ତି ଯେ, ବିପଦବେଳେ ଯେ ଉଠେ, ସଫଳତା ଲାଭ କଲା ପରେ ତାର ପତନ ହୁଏ । ଶିଖମାନେ ଅତି ଅଳ୍ପସଂଖ୍ୟକ ସଂପ୍ରଦାୟ ହୋଇ ପଡ଼ିଥିଲେ ସୁଦ୍ଧା,ପରେ ମୋଗଲମାନଙ୍କ ପକ୍ଷରେ ସେମାନଙ୍କୁ ଦବାଇ ଦେବା ସମ୍ଭବ ହୋଇ ନ ଥିଲା, କିନ୍ତୁ ରାଜନୈତିକ ସଫଳତା ସଙ୍ଗେ ସଙ୍ଗେ ଏହି ସଫଳତାର ପ୍ରକୃତ ମୂଳଭିତ୍ତି ଦୁର୍ବଳ ହୋଇପଡ଼ିଲା । ଇଂରେଜ ଓ ଶିଖଙ୍କ ଭିତରେ ଦୁଇଟି ଯୁଦ୍ଧ ହୋଇଥିଲା; ପ୍ରଥମ ୧୮୪୫-୪୬ରେ ଏବଂ ଦ୍ୱିତୀୟ ୧୮୪୮-୪୯ରେ । ଦ୍ୱିତୀୟ ଯୁଦ୍ଧବେଳେ ଚୀଲିଆନଓ୍ୱାଲଠାରେ ଇଂରେଜମାନେ ଭୀଷଣ ଭାବରେ ପରାସ୍ତ ହୋଇଥିଲେ । ଶେଷକୁ ଅବଶ୍ୟ ଇଂରେଜମାନେ ପୂର୍ଣ୍ଣଭାବେ ଜୟୀ ହେଲେ ଏବଂ ପଞ୍ଜାବକୁ ମଧ୍ୟ ମିଶାଇ ଦିଆଗଲା । ତୁ କାଶ୍ମୀର ହୋଇଥିବାରୁ ତୋର ବୋଧହୁଏ ଜାଣିବାକୁ ଆଗ୍ରହ ହେବ ଯେ, ଜାମୁର ଜଣେ ରାଜା ଗୁଲାବସିଂହଙ୍କୁ ଇଂରେଜମାନେ ୭୫ ଲକ୍ଷ ଟଙ୍କାରେ କାଶ୍ମୀର ବିକ୍ରୀ କରି ଦେଇଥିଲେ । ଏହା ଗୁଲାବ ସିଂଙ୍କ ସହିତ ଚୁକ୍ତି । ଏହି କାଶ୍ମୀରର ଗରିବ ଲୋକଙ୍କୁ ଅବଶ୍ୟ ପଚରା ଯାଇ ନ ଥିଲା । କାଶ୍ମୀର ଏବେ ଇଂରେଜଙ୍କ ଅଧୀନସ୍ଥ ରାଜ୍ୟମାନଙ୍କ ଭିତରୁ ଗୋଟିଏ ହୋଇ ରହିଛି ଏବଂ ବର୍ତ୍ତମାନ ମହାରାଜା ହେଉଛନ୍ତି ଗୁଲାବ ସିଂହଙ୍କର ବଂଶଧର ।

ଅଧିକ ଉତ୍ତରକୁ ବା ପଞ୍ଜାବର ଉତ୍ତର-ପଶ୍ଚିମ ଦିଗରେ ଆଫଗାନିସ୍ଥାନ ରହିଛି ଏବଂ ଆରପାଖରେ ରୁଷ ଆଫଗାନିସ୍ଥାନର ବେଶି ଦୂରରେ ନୁହେଁ । ମଧ୍ୟ-ଏସିଆରେ ରୁଷ ସାମ୍ରାଜ୍ୟ ବିସ୍ତାରରେ ଇଂରେଜମାନେ ଆତଙ୍କ ମଣିଲେ । ସେମାନେ ଭୟ କଲେ ଯେ ରୁଷ ଭାରତ ଆକ୍ରମଣ କରିପାରେ । ୧୯ଶ ଶତାବ୍ଦୀର ପ୍ରାୟ ସମଗ୍ର କାଳଟା "ରୁଷ-ଆତଙ୍କ" ଲାଗି ରହିଥିଲା । ୧୮୩୯ ବେଳକୁ ଉତ୍ତେଜନାର କୌଣସି କାରଣ ନ ଥାଇ ଭାରତରେ ଥିବା ଇଂରେଜମାନେ ଆଫଗାନିସ୍ଥାନ ଆକ୍ରମଣ କରିଥିଲେ । ସେତେବେଳେ ଆଫଗାନ ସୀମାନ୍ତ ବ୍ରିଟିଶ ଭାରତରୁ ବହୁ ଦୂରରେ ଥିଲା ଏବଂ ପଞ୍ଜାବର ସ୍ୱାଧୀନ ଶିଖ ରାଜ୍ୟଗୁଡ଼ିକ ମଝିରେ ଥିଲା । ଯାହାହେଉ, ଶିଖମାନଙ୍କ ସହ ମିତ୍ରତା ସ୍ଥାପନ

କରି ଇଂରେଜମାନେ କାବୁଲ୍ ପର୍ଯ୍ୟନ୍ତ ଗଲେ; କିନ୍ତୁ ଆଫଗାନମାନେ ଉପଯୁକ୍ତ ପ୍ରତିଶୋଧ ନେଲେ । ସେମାନେ ଅନେକ ଅଂଶରେ ଯେତେ ଅନୁନ୍ନତ ହୋଇଥାଆନ୍ତୁ ପଛକେ ସ୍ୱାଧୀନତା ପ୍ରତି ସେମାନଙ୍କର ପ୍ରେମ ଅଛି ଓ ତାକୁ ରକ୍ଷା କରିବା ନିମନ୍ତେ ଶେଷ ପର୍ଯ୍ୟନ୍ତ ଲଢ଼ିବାକୁ ପ୍ରସ୍ତୁତ । ଏହି କାରଣରୁ ଯେ କୌଣସି ବିଦେଶୀ ସେନା ଏହା ଆକ୍ରମଣ କରିବାର ଚେଷ୍ଟା କରିଛି, ତା ପକ୍ଷରେ ଆଫଗାନିସ୍ଥାନ ଏକ "ବିରୁଡ଼ି ବସା" ରୂପେ ହୋଇ ରହିଛି । ଇଂରେଜମାନେ କାବୁଲ୍ ଓ ଦେଶର ଅନେକ ଅଂଶ ଦଖଲ୍ କଲେ ସୁଦ୍ଧା ପ୍ରତ୍ୟେକ ସ୍ଥାନରେ ହଠାତ୍ ବିଦ୍ରୋହ ଜାଗିଉଠିଲା; ସେମାନଙ୍କୁ ପଛକୁ ତଡ଼ିଦିଆଗଲା ଏବଂ ସମଗ୍ର ବ୍ରିଟିଶ ସେନା ଧ୍ୱଂସ ହୋଇଗଲା । ଏହି କ୍ଷତିର ପ୍ରତିଶୋଧ ନେବା ନିମନ୍ତେ ପରେ ଆଉ ଏକ ବ୍ରିଟିଶ ଅଭିଯାନ ହୋଇଥିଲା । ଇଂରେଜମାନେ କାବୁଲ୍ ଦଖଲ୍ କଲେ ଏବଂ ଏହି ପ୍ରସିଦ୍ଧ ବଜାରକୁ ବାରୁଦରେ ପୋଡ଼ିଦେଲେ ଏବଂ ବ୍ରିଟିଶ ସେନାମାନେ ସହରର ଅନେକ ଭାଗ ଲୁଟ କଲେ ଓ ଜାଳି ଦେଲେ । ଧାରାବାହିକ ଭାବରେ ଯୁଦ୍ଧ ନ କଲେ ଯେ ଆଫଗାନିସ୍ଥାନକୁ ପୂରାପୂରି ଇଂରେଜମାନେ ଅଧୀନରେ ରଖିପାରିବେ ନାହିଁ, ଏହା ସ୍ପଷ୍ଟ ହୋଇଗଲା; ତେଣୁ ସେମାନେ ଛାଡ଼ି ଚାଲି ଆସିଲେ ।

ପ୍ରାୟ ୪୦ ବର୍ଷ ପରେ ୧୮୭୮ରେ ଆଫଗାନିସ୍ଥାନର ଅମୀର ବା ଶାସକ ରୁଷ ସହିତ ବନ୍ଧୁତା କରିବାରୁ ଭାରତରେ ଇଂରେଜମାନେ ପୁଣି ଭୀତତ୍ରସ୍ତ ହୋଇ ପଡ଼ିଲେ । ଅନେକ ପରିମାଣରେ ଇତିହାସ ପୁଣି ଲେଉଟିଲା । ଆଉ ଗୋଟିଏ ଯୁଦ୍ଧ ହେଲା; ଇଂରେଜମାନେ ଏ ଦେଶ ଆକ୍ରମଣ କଲେ ଏବଂ ବିଜୟ ହାସଲ୍ କଲା ପରି ବୋଧହେଲା; କିନ୍ତୁ ବ୍ରିଟିଶ ପ୍ରତିନିଧି ଓ ତାର ଦଳ ଆଫଗାନମାନଙ୍କ ଦ୍ୱାରା ନିହତ ହୋଇଥିଲେ ଏବଂ ବ୍ରିଟିଶ ସେନା ପରାସ୍ତ ହେଲେ । ଇଂରେଜମାନେ ନିଜର ଆତ୍ମରକ୍ଷା କଲେ ଏବଂ ପୁଣି ଥରେ "ବିରୁଡ଼ି ବସା"ରୁ ପଳାଇ ଆସିଲେ । ତାପରେ ଅନେକ ବର୍ଷ ପର୍ଯ୍ୟନ୍ତ ଆଫଗାନିସ୍ଥାନର ଅବସ୍ଥା ବିଚିତ୍ର ଥିଲା । ଅନ୍ୟ କୌଣସି ବିଦେଶୀ ଶକ୍ତି ସହିତ କୌଣସି ପ୍ରକାର ପ୍ରତ୍ୟକ୍ଷ ସମ୍ପର୍କ କରିବା ପାଇଁ ଅମୀରଙ୍କୁ ଇଂରେଜମାନେ ଅନୁମତି ଦେଲେ ନାହିଁ କିନ୍ତୁ ସଙ୍ଗେ ସଙ୍ଗେ ସେମାନେ ତାଙ୍କୁ ବାର୍ଷିକ ଅଜସ୍ର ଧନ ଦେଲେ । '୩ ବର୍ଷ ପୂର୍ବେ ୧୯୧୯ରେ ତୃତୀୟ ଆଫଗାନ ସମର ହେଲା । ଏହା ଫଳରେ ଆଫଗାନିସ୍ଥାନ ପୂର୍ଣ୍ଣ ସ୍ୱାଧୀନତା ପାଇଲା, କିନ୍ତୁ ଆମେ ଯେଉଁ ସମୟର କଥା ଆଲୋଚନା କରୁଛେ, ଏହା ତାହାର ବାହାରେ ।

ଆଉ ସବୁ ଛୋଟ ଛୋଟ ଯୁଦ୍ଧ ମଧ୍ୟ ହୋଇଥିଲା । ଏଥିରୁ ଗୋଟିଏ ହେଉଛି ୧୮୪୩ରେ ସିନ୍ଧୁ ଯୁଦ୍ଧ—ଏହା ଅତି ନିର୍ଲଜ୍ଜ ଭାବରେ କରାଯାଇଥିଲା । ସେଠାରେ ବ୍ରିଟିଶ ଏଜେଣ୍ଟ ସିନ୍ଧମାନଙ୍କୁ ବୃଥା ଧମକ ଦେଖାଇ ଯୁଦ୍ଧ କରିବା ପାଇଁ ବାଧ୍ୟ କଲା ଏବଂ ତାପରେ ସେମାନଙ୍କୁ ଦବାଇ ଦେଇ ପ୍ରଦେଶକୁ ମିଶାଇ ନିଆଗଲା । ଲଜ୍ଜାଜନକ

ହୋଇଥିବାରୁ ପୁରସ୍କାର ରୂପେ ଧନସବୁ ବ୍ରିଟିଶ ଅଫିସରଙ୍କ ଭିତରେ ବଣ୍ଟାଗଲା । ଏଜେଣ୍ଟ (ସାର ଚାର୍ଲସ ନେପିୟର)ଙ୍କ ଭାଗରେ ପଡ଼ିଲା ୭ ଲକ୍ଷ ଟଙ୍କା । ବିବେକହୀନ ଓ ଦୁଃସାହସୀ ଇଂରେଜମାନେ ସେ ଯୁଗର ଭାରତ ପ୍ରତି ଯେ ଆକୃଷ୍ଟ ହୋଇଥିଲେ, ଏଥିରେ ବିସ୍ମିତ ହେବାର କିଛି ଗତି ନାହିଁ ।

୧୮୫୬ରେ ଆଉଧ ମଧ୍ୟ ମିଶିଲା । ସେତେବେଳେ ଏଠାରେ ସରକାରୀ ଶାସନ ଅତି ଶୋଚନୀୟ ହୋଇ ପଡ଼ିଥିଲା । ଗତ କେତେ ଦିନରୁ ସେଠାରେ ଥିବା ଶାସକମାନଙ୍କୁ 'ନବାବ ଉଜିରସ୍' ବୋଲି କହନ୍ତି । ଆରମ୍ଭରେ ଦିଲ୍ଲୀର ମୋଗଲ ସମ୍ରାଟ ନବାବ ଉଜିରସ୍ଙ୍କୁ ନିଜର ଆଉଧ ଗଭର୍ଣ୍ଣର ରୂପେ ନିଯୁକ୍ତ କରିଥିଲେ; କିନ୍ତୁ ମୋଗଲ ସାମ୍ରାଜ୍ୟର ପତନ ସଙ୍ଗେ ସଙ୍ଗେ ଆଉଧ ସ୍ୱାଧୀନ ହୋଇଗଲା । ମାତ୍ର ଏହା ଦୀର୍ଘକାଳ ରହି ନ ଥିଲା । ପରବର୍ତ୍ତୀ ନବାବ ଉଜିରସ୍ମାନେ ସମ୍ପୂର୍ଣ୍ଣରୂପେ କୌଶଳହୀନ ଓ ଦୁଷ୍ଟଚରିତ୍ର ଥିଲେ ଏବଂ ସେମାନେ କିଛି ଭଲ କରିବାକୁ ଇଚ୍ଛା କରୁଥିଲେ ସୁଦ୍ଧା ଇଷ୍ଟ ଇଣ୍ଡିଆ କମ୍ପାନୀର ବାଧା ଯୋଗୁଁ କିଛି କରିପାରୁ ନ ଥିଲେ । ସେମାନଙ୍କଠାରେ ପ୍ରକୃତ କ୍ଷମତା କିଛି ନ ଥିଲା ଏବଂ ଇଂରେଜମାନେ ଆଉଧର ଆଭ୍ୟନ୍ତରୀଣ ଶାସନ ପ୍ରତି ଆଦୌ ଦୃଷ୍ଟି ଦେଉ ନ ଥିଲେ; ତେଣୁ ଆଉଧ ଖଣ୍ଡବିଖଣ୍ଡ ହୋଇଗଲା ଏବଂ ବ୍ରିଟିଶ ରାଜ୍ୟର ଏକ ଅଂଶ ରୂପେ ପରିଣତ ହେଲା ।

ମୁଁ ଯଥେଷ୍ଟ କହିଲି ଏବଂ ସମ୍ଭବତଃ ଯୁଦ୍ଧ ଓ ରାଜ୍ୟ ସମ୍ମିଶ୍ରଣ ସମ୍ପର୍କରେ ଯଥେଷ୍ଟରୁ ଅଧିକ କହିଛି । କିନ୍ତୁ ଯେଉଁ ନୂତନ ଗତି ହେଉଥିଲା ଏବଂ କିଛିଦିନ ଧରି ଚାଲିବାକୁ ପଡ଼ିଲା, ତାହାର ଏହା ହିଁ ବାହ୍ୟ ସୂଚନା । ଭାରତରେ ଯେତେବେଳେ ଇଂରେଜ ଆସି ପହଞ୍ଚିଲେ, ସେତେବେଳକୁ ପୁରାତନ ଆର୍ଥନୀତିକ ବ୍ୟବସ୍ଥା ଭାଙ୍ଗି ପଡ଼ୁଥିଲା । ସାମନ୍ତବାଦ ଭାଙ୍ଗିଗଲା । ସେତେବେଳେ ଭାରତକୁ କୌଣସି ବିଦେଶୀ ନ ଆସିଥିଲେ ସୁଦ୍ଧା ସାମନ୍ତ ବ୍ୟବସ୍ଥା ବେଶିଦିନ ରହି ନ ଥାନ୍ତା । ଇଉରୋପ ପରି ଏହାର ସ୍ଥାନ ଏକ ନୂତନ ବ୍ୟବସ୍ଥା କ୍ରମେ ଦଖଲ କରିଥାନ୍ତା ଏବଂ ସେଥିରେ ନୂତନ ଉତ୍ପାଦକ ଶ୍ରେଣୀଙ୍କ ହାତରେ ଅଧିକ କ୍ଷମତା ରହିଥାନ୍ତା; କିନ୍ତୁ ଏହି ପରିବର୍ତ୍ତନ ଘଟିବା ପୂର୍ବରୁ କେବଳ ଭାଙ୍ଗିବା ଆରମ୍ଭ ହେଲାବେଳେ ଇଂରେଜମାନେ ଆସିଲେ ଏବଂ ଅଧିକ କିଛି କଷ୍ଟ ନ କରି କୂଳକୁ ମାଡ଼ି ଚାଲିଲେ । ଯେଉଁ ଶାସକମାନଙ୍କ ସହ ସେମାନେ ଯୁଦ୍ଧ କଲେ ଓ ଯେଉଁମାନଙ୍କୁ ପରାସ୍ତ କଲେ, ସେମାନେ ଏକ ଅତୀତ ଓ ଲୋପ ପାଇ ଆସୁଥିବା ଯୁଗର ଲୋକ ଥିଲେ । ସେମାନଙ୍କ ସମ୍ମୁଖରେ କୌଣସି ଭବିଷ୍ୟତ ନ ଥିଲା । ଏପରି ପରିସ୍ଥିତିରେ ଇଂରେଜମାନେ ସଫଳ ହେବା ସ୍ୱାଭାବିକ । ସେମାନେ ଆସି ଭାରତରେ ସାମନ୍ତ ବ୍ୟବସ୍ଥା ଲୋପ କରିବାକୁ ଦୃଢ଼ତର ହେଲେ; ତଥାପି ବିଚିତ୍ର କଥା ଯେ, ଆମେ ପରେ ଦେଖିବା, ସେମାନେ ବାହାରେ ଏହାକୁ ଟେକି ରଖିବାକୁ ଚାହିଁଲେ ଏବଂ ଏହି ରୂପେ ନୂତନ ବ୍ୟବସ୍ଥା ଦିଗରେ ଭାରତର ପ୍ରଗତିକୁ ବାଧା ଦେଲେ ।

ଏହିପରି ଭାରତରେ ଏକ ଐତିହାସିକ ସ୍ୱାଧୀନ ଇଂରେଜମାନେ ହେଲେ ଏଜେଣ୍ଟ । ଏହି ସ୍ୱାଧୀ ହିଁ ସାମନ୍ତ ଭାରତକୁ ପରିବର୍ତ୍ତିତ କରି ଆଧୁନିକ ଧରଣର ଶିଳ୍ପଜାତ ପୁଞ୍ଜିବାଦ ରାଜ୍ୟରେ ପରିଣତ କଲା । ଇଂରେଜମାନେ ନିଜେ ଏହା ବୁଝିପାରିଲେ ନାହିଁ; ଯେଉଁ ବିଭିନ୍ନ ଭାରତୀୟ ଶାସକମାନେ ସେମାନଙ୍କ ସହ ଯୁଦ୍ଧ କରିଥିଲେ, ସେମାନେ ଯେ ଏ ସମ୍ବନ୍ଧରେ କିଛି ଜାଣି ନ ଥିଲେ, ଏହା ନିଶ୍ଚୟ । ଯେଉଁ ବ୍ୟବସ୍ଥାର ପତନ ବେଳେ ପହଞ୍ଚେ, ତାହା ପ୍ରାୟ କାଳର ସୂଚନା ଦେଖିପାରେ ନାହିଁ, ଏହାର କାର୍ଯ୍ୟକାଳ ଓ ଉଦ୍ଦେଶ୍ୟ ଯେ ପୂର୍ଣ୍ଣ ହୋଇଛି, ତାହା ପ୍ରାୟ ବୁଝେ ନାହିଁ ଏବଂ ସଙ୍କଟକ୍ରମାନ ଘଟଣାବଳୀ ତାକୁ ବଳପୂର୍ବକ ହଟାଇଦେବା ପୂର୍ବରୁ ନିଜେ ଅପସରି ଯାଏ ନାହିଁ । ଇତିହାସରୁ ଶିକ୍ଷା ଏହା କ୍ୱଚିତ୍ ବୁଝେ ଏବଂ ଜଣେ କେହି କହିଲା ପରି ପୃଥିବୀ ଯେ, "ଇତିହାସର ମଇଳା କୁଣ୍ଡ" ପଛକୁ ପକାଇ ଦେଇ ଆଗକୁ ମାଡ଼ି ଚାଲିଛି, ତାହା ପ୍ରାୟ ବୁଝିପାରେ ନାହିଁ । ଏପରି କି ଭାରତର ସାମନ୍ତବାଦୀ ବ୍ୟବସ୍ଥା ଏହା ବୁଝିପାରି ନ ଥିଲା ଏବଂ ବ୍ରିଟିଶ ବିରୁଦ୍ଧରେ ବ୍ୟର୍ଥ ଲଢ଼େଇ କଲା । ଏପରି କି ଆଜି ଭାରତର ଓ ପ୍ରାଚ୍ୟ ଦେଶର ଅନ୍ୟାନ୍ୟ ସ୍ଥାନରେ ଇଂରେଜମାନେ ବୁଝିପାରୁ ନାହାନ୍ତି ଯେ, ତାଙ୍କ ଦିନକାଳ ଗତ ହେଲଣି, ସାମ୍ରାଜ୍ୟ ବେଳ ଅତୀତ ହେଲଣି ଏବଂ ବ୍ରିଟିଶ ସାମ୍ରାଜ୍ୟକୁ "ଜଳଆଗଦା" ଭିତରକୁ ଫୋପାଡ଼ି ଦେଇ ପୃଥିବୀ ଅବିରାମ ଅଗ୍ରସର ହୋଇଯାଉଛି ।

କିନ୍ତୁ ଇଂରେଜମାନେ ଭାରତରେ ବିସ୍ତାର ଲାଭ କରିଥିବାବେଳେ ଭାରତରେ ଯେଉଁ ସାମନ୍ତବାଦୀ ବ୍ୟବସ୍ଥା ଥିଲା, ତାହା ନିଜର କ୍ଷମତା ପାଇବା ନିମନ୍ତେ ଓ ବିଦେଶୀ ଶକ୍ତିକୁ ତଡ଼ିଦେବା ନିମନ୍ତେ ଏକ ଶେଷ ଚେଷ୍ଟା କଲା । ୧୮୫୭ରେ ଗୋଟିଏ ବଡ଼ ବିଦ୍ରୋହ ହେଲା । ସମଗ୍ର ଦେଶରେ ବ୍ରିଟିଶଙ୍କ ବିରୁଦ୍ଧରେ ଘୋର ଅସନ୍ତୋଷ ଓ ବିରକ୍ତି ଦେଖାଦେଲା । ଇଷ୍ଟଇଣ୍ଡିଆ କମ୍ପାନୀର ନୀତି ଥିଲା ଧନ କମାଇବା ଏବଂ ଆଉ କିଛି ନ କରିବା; ଏହାର ଅନେକ କର୍ମଚାରୀଙ୍କ ଅଜ୍ଞତା ଓ ଲୋଭ ଯୋଗୁଁ ଏହି ନୀତି ଫଳରେ ଦେଶରେ ଦୁର୍ଦ୍ଦଶା ବ୍ୟାପିଗଲା । ଏପରି କି ବ୍ରିଟିଶ ଭାରତୀୟ ସେନାକୁ ଏହା ସ୍ପର୍ଶ କଲା । ଅନେକ ଛୋଟଛୋଟ ବିଦ୍ରୋହ ହେଲା । ଅନେକ ସାମନ୍ତ ରାଜା ଓ ତାଙ୍କ ବଂଶଧର ଏହି ନୂତନ ପ୍ରଭୁ ଉପରେ ଖୁବ୍ ବିରକ୍ତ ହେବା ସ୍ୱାଭାବିକ । ତେଣୁ ଗୁପ୍ତ ଭାବରେ ଗୋଟିଏ ବଡ଼ ବିଦ୍ରୋହ ସଗଠିତ ହେଲ । ଏହି ସଗଠନ ବିଶେଷ ଭାବରେ ଯୁକ୍ତପ୍ରଦେଶ ଓ ମଧ୍ୟ ଭାରତରେ ବ୍ୟାପିଗଲା; ଅଥଚ ଭାରତୀୟମାନେ କଣ ଚିନ୍ତା କରିଛନ୍ତି ଓ କରୁଛନ୍ତି ଏ ସମ୍ବନ୍ଧରେ ଇଂରେଜମାନେ ଏପରି ଅନ୍ଧ ଥିଲେ ଯେ, ସରକାର ଏହାର ସୂଚନା ଟିକିଏ ସୁଦ୍ଧା ପାଇ ନ ଥିଲା । ମନେହୁଏ ଏକାବେଳେ ଅନେକ ସ୍ଥାନରେ ବିଦ୍ରୋହ ଆରମ୍ଭ କରିବା ପାଇଁ ଗୋଟିଏ ଦିନ ନିର୍ଦ୍ଦିଷ୍ଟ ହୋଇଥିଲା; କିନ୍ତୁ ମିରଟରେ କେତେକ ଭାରତୀୟ ସେବାବାହିନୀ ଅତି ଆଗକୁ ଚାଲିଗଲେ ଏବଂ ୧୮୫୭ ମେ ମାସ ୧୦ ତାରିଖରେ ବିଦ୍ରୋହ ଆରମ୍ଭ କରିଦେଲେ । ଏପରି ସମୟରେ ବିଦ୍ରୋହ ହେବାଦ୍ୱାରା ନେତାମାନଙ୍କର କାର୍ଯ୍ୟକ୍ରମ

ଓଲଟପାଲଟ ହୋଇଗଲା; କାରଣ ସରକାର ଏଥିରେ ସତର୍କ ହୋଇଗଲା । ଯାହାହେଉ ଏହି ବିଦ୍ରୋହ ସମସ୍ତ ଯୁକ୍ତପ୍ରଦେଶ ଓ ଦିଲ୍ଲୀ ଏବଂ ଆଂଶିକ ରୂପେ ମଧ୍ୟ ଭାରତ ଓ ବିହାରରେ ବ୍ୟାପିଗଲା । ଏହା କେବଳ ସାମରିକ ବିଦ୍ରୋହ ନୁହେଁ; ଏହା ସେ ସବୁ ଅଞ୍ଚଳରେ ଇଂରେଜଙ୍କ ବିରୁଦ୍ଧରେ ସାଧାରଣ ଜନବିଦ୍ରୋହ । ମୋଗଲ ବଂଶଧରଙ୍କ ଶେଷ ଲୋକ ଅତ୍ୟନ୍ତ ଦୁର୍ବଳ, କବି ବୃଦ୍ଧ ବାହାଦୁର ସାହାଙ୍କୁ ରାଜା ବୋଲି କେହି କେହି ଘୋଷଣା କରିଦେଲେ । ଏହି ବିଦ୍ରୋହ କ୍ରମେ ଘୃଣିତ ବିଦେଶୀ ବିରୁଦ୍ଧରେ ତଥା ଭାରତର ସ୍ୱାଧୀନତା ଯୁଦ୍ଧରେ ପରିଣତ ହୋଇଗଲା; କିନ୍ତୁ ଏହି ସ୍ୱାଧୀନତା ପୁରୁଣା ସାମନ୍ତବାଦୀ ଢଙ୍ଗର; ଏକଛତ୍ରପତି ସମ୍ରାଟ ଏହାର ମୁଖିଆ । ଏଥିରେ ସାଧାରଣ ଲୋକଙ୍କର କୌଣସି ସ୍ୱାଧୀନତା ନ ଥିଲା, କିନ୍ତୁ ବହୁ ସଂଖ୍ୟାରେ ସାଧାରଣ ଲୋକ ଏଥିରେ ଯୋଗ ଦେଲେ; କାରଣ ସେମାନେ ଇଂରେଜ ଆଗମନ ପରେ ସେମାନଙ୍କର ଦାରିଦ୍ର୍ୟ ଓ ଦୁର୍ଦ୍ଦଶା ବଢ଼ିଲା ବୋଲି ବିଚାରିଲେ ଏବଂ କେତେକ ସ୍ଥାନରେ ବଡ଼ ଜମିଦାରମାନଙ୍କ ବୃଦ୍ଧି ଥିବାର ଘଟିଛି ବୋଲି ମନେ କଲେ । ଧର୍ମଗତ ଶଙ୍କା ମଧ୍ୟ ସେମାନଙ୍କୁ ପ୍ରେରଣା ଦେଲା । ଏହି ଯୁଦ୍ଧରେ ହିନ୍ଦୁ ଓ ମୁସଲମାନମାନେ ପୂର୍ଣ୍ଣ ଭାଗ ନେଇଥିଲେ ।

ଅନେକ ମାସ ପର୍ଯ୍ୟନ୍ତ ଉତ୍ତର ଓ ମଧ୍ୟ ଭାରତରେ ଇଂରେଜ ଶାସନ ଏକ ସୂତାଖିଅ ଉପରେ ଝୁଲିଲାପରି ଥିଲା; କିନ୍ତୁ ଭାରତୀୟମାନେ ନିଜେ ହିଁ ତାଙ୍କ ବିଦ୍ରୋହର ଭାଗ୍ୟ ନିର୍ଣ୍ଣୟ କଲେ । ଶିଖ ଓ ଗୁର୍ଖାମାନେ ଇଂରେଜଙ୍କୁ ସାହାଯ୍ୟ କଲେ । ଦକ୍ଷିଣରେ ନିଜାମ, ଉତ୍ତରରେ ସିନ୍ଧିଆ ଓ ଆହୁରି କେତେକ ଦେଶୀୟ ରାଜ୍ୟ ମଧ୍ୟ ଇଂରେଜଙ୍କ ସହିତ ରହିଲେ । ଏହି ସବୁ ଦୋଷ ଛଡ଼ା ବିଦ୍ରୋହରେ ହିଁ ତାର ଅସଫଳ ମଞ୍ଜି ରହିଥିଲା । ଏହା ଏକ ମୃତ ଉଦ୍ଦେଶ୍ୟ ସାମନ୍ତବାଦ ସମାଜ ପାଇଁ ଲଢ଼ୁଥିଲା । ଏହାର କୌଣସି ଭଲ ନେତୃତ୍ୱ ନ ଥିଲା; ଏହା ଖରାପ ଭାବରେ ସଂଗଠନ କରାଯାଇଥିଲା ଏବଂ ସବୁବେଳେ ପରସ୍ପର ଭିତରେ ବିବାଦ ଲାଗୁଥିଲା । କେତେକ ବିଦ୍ରୋହୀ ମଧ୍ୟ ନିଷ୍ଠୁର ଭାବରେ ଇଂରେଜଙ୍କୁ ହତ୍ୟା କରି ନିଜର ଉଦ୍ଦେଶ୍ୟ କଳଙ୍କିତ କଲେ । ଏହି ବର୍ବର ଆଚରଣ ହିଁ ଭାରତରେ ଇଂରେଜ ଲୋକଙ୍କ ମେରୁଦଣ୍ଡ ଦୃଢ଼ କରିଦେଲା, ସେମାନେ ସେହିପରି ଭାବରେ ଏହା ଫେରାଇଦେଲେ; କିନ୍ତୁ ଏଥିରେ ଶହେ କ ହଜାରେ ଗୁଣା ଅଧିକା ମିଶାଇଦେଲେ । ବିଶେଷତଃ କାନପୁରରେ ଇଂରେଜ ପୁରୁଷ, ସ୍ତ୍ରୀ ଓ ପିଲାଙ୍କର ହତ୍ୟା ହେତୁ ଇଂରେଜମାନେ କ୍ରୁଦ୍ଧ ହେଲେ । କହନ୍ତି ଯେ, ପେଶବାଙ୍କ ବଂଶଧର ନାନା ସାହେବ ସେମାନଙ୍କୁ ନିରାପଦରେ ରଖିବେ ବୋଲି ଜବାବ ଦେଇ ପରେ ବିଶ୍ୱାସଘାତକତା କରି ମାଇଲେ । ଏହି ଅତି ଶୋଚନୀୟ କାଣ୍ଡର ସ୍ମୃତି ରୂପେ କାନପୁରରେ ସ୍ମୃତିସ୍ତମ୍ଭ ରହିଛି ।

ଅନେକ ଦୂର ଦୂର ସ୍ଥାନରେ ଜନତା ଇଂରେଜମାନଙ୍କୁ ଘେରିଗଲେ । ବେଳେବେଳେ ସେମାନଙ୍କ ପ୍ରତି ଭଲ ବ୍ୟବହାର ହୁଏ, ଅନେକ ସମୟରେ ଖରାପ

ବ୍ୟବହାର ହୁଏ । ଅତି କରୁଣ ଅବସ୍ଥାରେ ସେମାନେ ଭଲଭାବରେ ଏବଂ ସାହସର ସହିତ ଲଢ଼ାଇ କଲେ । ଆଉଟ୍ରାମ ଓ ହାଭଲକ ନାମ ସହ ବ୍ରିଟିଶ ସାହସ ଓ ସହନଶୀଳତାର ଦୃଷ୍ଟାନ୍ତ ରୂପେ ଲକ୍ଷ୍ନୌ ଅଧିକାର ରହିଛି । ୧୮୫୭ ସେପ୍ଟେମ୍ବର ମାସରେ ଦିଲ୍ଲୀ ଅଧିକାର ଓ ପତନ ହିଁ ବିଦ୍ରୋହର ଘାଟିବେଲ ପହଞ୍ଚିଲା । ଏହିଠାରୁ ଓ ପରେ ଅନେକ ମାସ ପର୍ଯ୍ୟନ୍ତ ଇଂରେଜମାନେ ବିଦ୍ରୋହ ଦମନ କଲେ । ଏହା କଲାବେଳେ ସେମାନେ ଘୃଣଆଡ଼େ ଆତଙ୍କ ସୃଷ୍ଟି କଲେ । ବିନା କୌଣସି ଉତ୍ତେଜନାରେ ବହୁସଂଖ୍ୟକ ଲୋକଙ୍କୁ ଗୁଳି କରି ଦିଆଗଲା; ତୋପ ମୁହଁରେ ଅନେକ ସଂଖ୍ୟକ ଲୋକ ଖଣ୍ଡ ଖଣ୍ଡ ହୋଇଗଲେ; ରାସ୍ତା ପାଖ ଗଛମାନଙ୍କରେ ହଜାର ହଜାର ଲୋକଙ୍କୁ ଝୁଲାଇ ମାରି ଦିଆଗଲା । ନୈଲ ନାମରେ ଜଣେ ଇଂରେଜ ସେନାପତି ଏଲ୍ଲାବାଦରୁ କାନପୁର ଯାତ୍ରା କଲେ ଏବଂ ଗଲାବେଳେ ରାସ୍ତାଯାକ ଲୋକ ଝୁଲାଇଛି ବୋଲି କହନ୍ତି—ରାସ୍ତାକଡ଼ରେ ପ୍ରାୟ ଏପରି କୌଣସି ଗୋଟିଏ ହେଲେ ଗଛ ନ'ଥିଲା, ଯାହା ଫାଶୀଖୁଣ୍ଟରେ ପରିଣତ ହୋଇ ନ ଥିଲା । ହିନ୍ଦୁତ ଗ୍ରାମମାନଙ୍କୁ ମୂଳୋତ୍ପାଟନ କରି ଧ୍ୱଂସ କରି ଦିଆଗଲା । ଏହା ସବୁ ଅତ୍ୟନ୍ତ ଭୟାନକ ଓ ଯନ୍ତ୍ରଣାଦାୟକ କାହାଣୀ ଏବଂ ତୋତେ ସବୁ ବିକଟ ସତ୍ୟ କଥା କହିବା ପାଇଁ ମୁଁ ସାହସ କରିବି ବା କିପରି ? ନାନାସାହେବ ଯାହା ବର୍ବର ଭାବରେ ଓ ବିଶ୍ୱାସଘାତକତା ରୂପେ ବ୍ୟବହାର କରିଥିଲେ, ଅନେକ ଇଂରେଜ କର୍ମଚାରୀ ଏହି ବର୍ବରତାରେ ଶହେ ଗୁଣ ବଢ଼ିଗଲେ । ଭାରତୀୟ ସେନାଙ୍କର ବିଦ୍ରୋହୀ ଜନତା କର୍ମଚାରୀ ବା ନେତା ନ ଥାଇ ନିଷ୍ଠୁର ଓ ବିଦ୍ରୋହୀ କାର୍ଯ୍ୟ ପାଇଁ ଯାହା ଦୋଷୀ, ଶିକ୍ଷିତ ବ୍ରିଟିଶ ସେନା ତାଙ୍କ କର୍ମଚାରୀଙ୍କ ଦ୍ୱାରା ପରିଚାଳିତ ହୋଇ କ୍ରୂରତା ଓ ବର୍ବରତାରେ ତାଙ୍କୁ ବହୁତ ଟପି ଯାଇଛନ୍ତି । ମୁଁ ଏହି ଦୁଇଟିର ତୁଳନା କରିବାକୁ ଚାହେଁ ନାହିଁ । ଦୁଇ ପାଖର କାରବାର ଦୁଃଖଜନକ; କିନ୍ତୁ ଆମର ଦୂଷିତ ଇତିହାସ ଆମକୁ ଭାରତୀୟ ପକ୍ଷର ବିଶ୍ୱାସଘାତକତା ଓ କ୍ରୂରତା ସମ୍ବନ୍ଧରେ ଅନେକ କଥା ଶିଖାଏ ଓ ଅନ୍ୟ ପକ୍ଷ କଥା ପ୍ରାୟ ଉଲ୍ଲେଖ କରେ ନାହିଁ । ଏକଥା ମଧ୍ୟ ମନେରଖିବା ଉଚିତ ଯେ କୌଣସି ସଂଗଠିତ ସରକାର ଯଦି ଜନତା ପ୍ରତି ସରଳ ବ୍ୟବହାର କରି କ୍ରୂରତା ପ୍ରୟୋଗ କରିବାକୁ ଚେଷ୍ଟା କରେ; ତେବେ ତାହା ତୁଳନାରେ ଗୋଟାଏ ଜନତାର ନିଷ୍ଠୁରତା କିଛି ନୁହେଁ । ଆଜି ସୁଦ୍ଧା ତୁ ଯଦି ଆମ ପ୍ରଦେଶରେ ଅନେକ ଗ୍ରାମକୁ ଯାଉ, ତେବେ ଦେଖିବୁ ବିଦ୍ରୋହ ଦମନ ବେଳେ ଲୋକଙ୍କ ଉପରେ ଯେଉଁ ଅତ୍ୟାଚାର ହୋଇଥିଲା, ତାହାର ଅବିକଳ ଓ ଭୀଷଣ ସ୍ମୃତି ଏବେ ସୁଦ୍ଧା ଅନେକଙ୍କ ମନରେ ଅଛି ।

ବିଦ୍ରୋହର ବିଭୀଷିକା ଓ ତାର ଦମନ ମଧ୍ୟରେ ଗୋଟିଏ ନାମ ଉଜ୍ଜ୍ୱଳ ଦେଖାଯାଏ । ଠିକ୍ ଅନ୍ଧକାରରେ ଉଜ୍ଜ୍ୱଳ ତାରକା ପରି । ଏ ହେଉଛନ୍ତି ଝାନ୍ସିର ରାଣୀ ଲକ୍ଷ୍ମୀବାଈ—ସେ ଜଣେ ବାଳ ବିଧବା । କୋଡ଼ିଏ ବର୍ଷ ବୟସରେ ସେ ପୁରୁଷ ବେଶ ପିନ୍ଧି ବ୍ରିଟିଶଙ୍କ ବିରୁଦ୍ଧରେ ନିଜ ଲୋକଙ୍କୁ ପରିଚାଳନା କରିବା ପାଇଁ ବାହାରିଲେ । ତାଙ୍କର ଭାବ,

ଦକ୍ଷତା ଓ ଅଟଳ ସାହସ ସମ୍ବନ୍ଧରେ ଅନେକ ଗଳ୍ପ କୁହାଯାଏ । ଏପରି କି ଯେଉଁ ଇଂରେଜ ସେନାପତି ତାଙ୍କ ବିରୁଦ୍ଧରେ ଲଢ଼ିଥିଲେ, ସେ କହିଥିଲେ ସବୁ ବିଦ୍ରୋହୀ ନେତାଙ୍କ ଭିତରେ ସେ ହେଉଛନ୍ତି ସର୍ବାପେକ୍ଷା "ଶ୍ରେଷ୍ଠ ଓ ସାହାସୀ" । ସେ ଯୁଦ୍ଧ କରୁ କରୁ ମୃତ୍ୟୁମୁଖରେ ପତିତ ହେଲେ ।

୧୮୫୭-୫୮ ବିଦ୍ରୋହ ହେଉଛି ସାମନ୍ତବାଦୀ ଭାରତର ଶେଷ ଅଗ୍ନିସଞ୍ଚାଳନ । ଏଥିରେ ଅନେକ ଜିନିଷ ଶେଷ ହେଲା । ମୋଗଲ ବଂଶ ଏଠି ଲୋପ ପାଇଲା; କାରଣ ବିନା କୌଣସି କାରଣ ବା ଉତ୍ତେଜନାରେ ଜଣେ ଇଂରେଜ କର୍ମଚାରୀ ବାହାଦୁର ଶାହାଙ୍କର ଦୁଇ ପୁଅ ଓ ନାତିଙ୍କୁ ଗୁଳି କରି ମାରି ପକାଇଲେ । ସେତେବେଳେ ଏହି ସେନାପତି ହଡ଼ସନ୍ ବାହାଦୂର ଶାହାଙ୍କୁ ଦିଲ୍ଲୀରୁ ନେଇ ଯାଇଥିଲେ । ଏହିରୂପେ ଅନାଦର ଭାବରେ ତୈମୁର, ବାବର ଓ ମୋଗଲ ବଂଶ ଶେଷ ପାଇଲା ।

ବିଦ୍ରୋହ ଯୋଗୁଁ ଭାରତରେ ଇଷ୍ଟ ଇଣ୍ଡିଆ କମ୍ପାନୀଶାସନ ବି ଶେଷ ହେଲା । ଏବେ ବ୍ରିଟିଶ ସରକାର ପ୍ରତ୍ୟକ୍ଷ ପରିଚାଳନା ନେଲା ଏବଂ ବ୍ରିଟିଶ ଗଭର୍ଣ୍ଣର ଜେନେରାଲ "ଭାଇସରାୟ" ଆକାରରେ ପ୍ରତିଷ୍ଠିତ ହୋଇ ବାହାରିଲେ । ୧୯ ବର୍ଷ ପରେ ୧୮୭୭ରେ ଇଂଲଣ୍ଡର ରାଣୀ "କାଇଜର-ଇ-ହିନ୍ଦ୍" ଉପାଧି ନେଲେ—ସିଜର ଓ ବିଜାଣ୍ଟାଇନ ସାମ୍ରାଜ୍ୟରୁ ପୁରୁଣା ଉପାଧି ଭାରତରେ ଚଳାଇଲେ । ମୋଗଲ ବଂଶ ଆଉ ରହିଲା ନାହିଁ; କିନ୍ତୁ ଏକଚ୍ଛତ୍ର ଶାସନର ଭାବ ଓ ସଙ୍କେତ ରହିଲା ଏବଂ ଆଉ ଜଣେ ବଡ଼ ମୋଗଲ ଇଂଲଣ୍ଡରେ ବସିଲେ ।

## ୧୧୦ : ଭାରତର କାରିଗର ପଥର ଭିକାରୀ

ଡିସେମ୍ବର ୧, ୧୯୩୨

୧୯ଶ ଶତାବ୍ଦୀରେ ଭାରତର ଯୁଦ୍ଧ ବର୍ଣ୍ଣନା ଶେଷ ହୋଇଛି । ମୁଁ ଏଥିରେ ଖୁସି । ଭାରତରେ ଏତିକବେଳେ ଘଟିଥିବା ଅନ୍ୟ ଗୁରୁତର ଘଟଣାମାନ ଆମେ ଏବେ ବିଚାର କରିବା । ମନେ ରଖିବା ଦରକାର ଯେ, ଭାରତର ଖର୍ଚ୍ଚରେ ଇଂଲଣ୍ଡର ମଙ୍ଗଳ ପାଇଁ ଏସବୁ ଯୁଦ୍ଧ ହୋଇଥିଲା । ନିଜର ବିଜୟ ସକାଶେ ଭାରତୀୟ ଲୋକଙ୍କଠାରୁ ଖର୍ଚ୍ଚ ଆଦାୟ କରିବା ନିମନ୍ତେ ଇଂରେଜ ଲୋକେ ଯେଉଁ ପନ୍ଥା ବାହାର କଲେ ତାହା ସଫଳ ହେଲା । ବର୍ମା ଓ ଆଫଗାନବାସୀ ଭାରତୀୟଙ୍କ ପଡ଼ୋଶୀ । ସେମାନଙ୍କ ସହ ତାଙ୍କର କୌଣସି ବିବାଦ ନ ଥିଲା, ତଥାପି ତାଙ୍କ ସହିତ ଯୁଦ୍ଧରେ ମଧ୍ୟ ଏମାନଙ୍କୁ ରକ୍ତ ଓ ଧନ ଦେବାକୁ

ପଡ଼ିଲା । ଯୁଦ୍ଧହେତୁ କେତେକ ପରିମାଣରେ ଦାରିଦ୍ର୍ୟ ଘୋଟିଲା; କାରଣ ସବୁ ଯୁଦ୍ଧରେ ଧନକ୍ଷୟ ଘଟେ । ଆମେ ଯାହା ସନ୍ଧି ସମ୍ପର୍କରେ ଦେଖିଲେ ଯୁଦ୍ଧରେ ବିଜୟୀ ପକ୍ଷର ଧନ ଧନଲାଭ ହୁଏ । ଏହି ଓ ଅନ୍ୟ କେତେକ କାରଣରୁ ଦାରିଦ୍ର୍ୟ ସତ୍ତ୍ୱେ ଅଂଶୀଦାରମାନଙ୍କୁ ପ୍ରଚୁର ଲଭ୍ୟାଂଶ ଦେବା ନିମନ୍ତେ ଇଷ୍ଟ ଇଣ୍ଡିଆ କମ୍ପାନୀରୁ ସୁନା ଓ ରୁପା ବୃଦ୍ଧି ପାଇଲା ।

ମୋର ମନେହୁଏ, ବ୍ରିଟିଶ ଶକ୍ତି ରାଜୁତି କରିବା ଆରମ୍ଭ ବେଳେ ଭାରତରେ କେତେକ ଦୁଃସାହସିକ ବଣିକ ମନଇଚ୍ଛା ବେପାର କରୁଥିଲେ ଓ ଶୋଷଣ କରୁଥିଲେ— ଏହା ମୁଁ ଆଗରୁ କହିଛି । ଏହିରୂପେ ଇଷ୍ଟ ଇଣ୍ଡିଆ କମ୍ପାନୀ ଓ ତାହାର ଏଜେଣ୍ଟମାନେ ଭାରତରୁ ସଂଗୃହୀତ ଅଜସ୍ର ଧନ ବୋହି ନେଇଗଲେ । ଏହା ପରିବର୍ତ୍ତେ ଭାରତକୁ କିଛି ଫେରିଆସୁ ନ ଥିଲା । ସାଧାରଣ ବେପାରରେ ଦେଣନେଣ ହୁଏ; କିନ୍ତୁ ୧୮ଶ ଶତାବ୍ଦୀର ଦ୍ୱିତୀୟ ଭାଗ ବେଳକୁ ପଲାସି ଯୁଦ୍ଧ ପରେ ସବୁ ଧନ ଗୋଟିଏ ଦିଗରେ ଇଂଲଣ୍ଡକୁ ଚାଲିଲା । ଏହିରୂପେ ଭାରତବର୍ଷ ତାର ପୁରାତନ ସମ୍ପଦରୁ ବଞ୍ଚିତ ହେଲା ଏବଂ ଏହି ଧନ ଇଂଲଣ୍ଡର ପରିବର୍ତ୍ତିନର ଗୋଟିଏ ଅସଲ ବେଳରେ ଶିଳ୍ପ ଉନ୍ନତି ଦିଗରେ ସାହାଯ୍ୟ କଲା । ଭାରତରେ ବାଣିଜ୍ୟ ଓ ନଗ୍ନ ଲୁଣ୍ଠନ ଉପରେ ପ୍ରତିଷ୍ଠିତ ଏହି ପ୍ରଥମ ଇଂରେଜ ଅମଳ ମୋଟାମୋଟି ୧୮ଶ ଶତାବ୍ଦୀ ଶେଷବେଳକୁ ଅସ୍ତ ହୋଇଗଲା ।

ବ୍ରିଟିଶ ଶାସନର ଦ୍ୱିତୀୟ ଭାଗ ୧୯ଶ ଶତାବ୍ଦୀରେ ଆରମ୍ଭ ହେଲା; ଏତେବେଳେ ଭାରତରୁ ବହୁତ କଞ୍ଚାମାଲ ଇଂଲଣ୍ଡର କାରଖାନାମାନଙ୍କୁ ପଠାଗଲା ଏବଂ ବିଲାତି ତିଆରି ଜିନିଷସବୁ ପାଇଁ ଭାରତ ବଜାର ହୋଇ ରହିଲା । ଭାରତର ପ୍ରଗତି ଓ ଆର୍ଥିକ ଉନ୍ନତି ବିନିମୟରେ ଏହା କରାଗଲା । ବେପାରୀ ଇଷ୍ଟ ଇଣ୍ଡିଆ କମ୍ପାନୀ ପ୍ରଥମେ ପଇସା କମାଇବା ପାଇଁ ଆସିଥିଲା ଏବଂ ଏହି ଶତାବ୍ଦୀର ପ୍ରଥମ ଭାଗବେଳକୁ ସେ ଭାରତ ଶାସନ କରିବାକୁ ଆରମ୍ଭ କଲା । ବ୍ରିଟିଶ ପାର୍ଲିଆମେଣ୍ଟ ମଧ୍ୟ ଭାରତ ବ୍ୟାପାର ପ୍ରତି ଅଧିକରୁ ଅଧିକ ଦୃଷ୍ଟି ଦେଲା । ଆମେ ତ ଗତ ଚିଠିରେ ଦେଖିଛେ । ତାପରେ ୧୮୫୭-୫୮ ବିଦ୍ରୋହ ପରେ ବ୍ରିଟିଶ ସରକାର ପ୍ରତ୍ୟକ୍ଷରୂପେ ଶାସନ ହାତକୁ ନେଲା; କିନ୍ତୁ ଏଥିର ମୂଳ ନୀତିରେ କିଛି ପରିବର୍ତ୍ତନ ଘଟିଲା ନାହିଁ, କାରଣ ଇଷ୍ଟ ଇଣ୍ଡିଆ କମ୍ପାନୀ ଯେଉଁ ଯେଉଁ ଶ୍ରେଣୀ ନିୟନ୍ତ୍ରଣ କରୁଥିଲେ, ସେହି ଶ୍ରେଣୀର ପ୍ରତିନିଧି ଥିଲା ସରକାର ।

ଭାରତ ଓ ଇଂଲଣ୍ଡର ଆର୍ଥିକ ସ୍ୱାର୍ଥ ନେଇ ସଂଘର୍ଷ ହେବାର କଥା । ଇଂଲଣ୍ଡ ପାଖରେ ସମସ୍ତ ଶକ୍ତି ଥିବାରୁ ଏହିସବୁ ସଂଘର୍ଷରେ ସର୍ବଦା ଇଂଲଣ୍ଡର ଲାଭ ହେଲା । ଏପରି କି ଇଂଲଣ୍ଡ ଶିଳ୍ପୋନ୍ନତ ହେବା ପୂର୍ବରୁ ଜଣେ ପ୍ରସିଦ୍ଧ ଇଂରେଜ ଲେଖକ ଭାରତରେ ଇଷ୍ଟ ଇଣ୍ଡିଆ କମ୍ପାନୀର କ୍ଷତିପ୍ରଦ ଫଳ ସମ୍ବନ୍ଧରେ ଲେଖିଥିଲେ । ଏହି ଲେଖକ ହେଉଛନ୍ତି ଆଡ଼ାମ୍ ସ୍ମିଥ୍—ଏହାଙ୍କୁ ରାଜନୈତିକ ଅର୍ଥଶାସ୍ତ୍ରର ପିତା ବୋଲି

କହନ୍ତି । ତାଙ୍କର "ଦି ୱେଲ୍‌ଥ ଅଫ୍ ନେସନ୍‌ସ" ନାମକ ଖଣ୍ଡିଏ ବହି ୧୭୭୬ରେ ପ୍ରକାଶିତ ହୋଇଥିଲା । ସେ ପ୍ରସିଦ୍ଧ ପୁସ୍ତକରେ ଇଷ୍ଟ ଇଣ୍ଡିଆ କମ୍ପାନୀ ବିଷୟ ଲକ୍ଷ୍ୟ କରି ସେ କହିଥିଲେ : "କେବଳ ବଣିକ କମ୍ପାନୀ ପରିଚାଳିତ ସରକାର ସମ୍ଭବତଃ ଯେ କୌଣସି ଦେଶର ସମସ୍ତ ପ୍ରକାରର ସରକାର ଅପେକ୍ଷା ଖରାପ । ଶାସନକର୍ତ୍ତା ରୂପେ ବିଚାର କରାଯାଉଥିବା ଇଷ୍ଟ ଇଣ୍ଡିଆ କମ୍ପାନୀର ସ୍ୱାର୍ଥ ହେବା ଉଚିତ ଯେ, ଭାରତବର୍ଷକୁ ଯେଉଁ ୟୁରୋପୀୟ ମାଲସବୁ ଯିବ, ତାହା ଶସ୍ତାରେ ବିକ୍ରୀ କରାଯିବ ଏବଂ ଭାରତରୁ ଯେଉଁସବୁ ଜିନିଷ ଅଣାଯିବ, ତାହା କିପରି ଅତି ମହଙ୍ଗା ଦରରେ ବିକ୍ରୀ ହେବ; କିନ୍ତୁ ବଣିକ ଭାବରେ ସେମାନଙ୍କର ସ୍ୱାର୍ଥ ଠିକ୍ ବିପରୀତ । ଶାସନକର୍ତ୍ତା ରୂପେ ଯେଉଁ ଦେଶ ଶାସନ କରିବ, ତାହାର ସ୍ୱାର୍ଥ ଯାହା ତମର ଠିକ୍ ତାହା ହେବା ଉଚିତ । କିନ୍ତୁ ବଣିକ ରୂପେ ତାଙ୍କ ସ୍ୱାର୍ଥ ପ୍ରତ୍ୟକ୍ଷ ରୂପେ ଏହି ସ୍ୱାର୍ଥର ବିରୋଧୀ ।"

ମୁଁ ଏତେ କହୁଛି, ଭାରତକୁ ଇଂରେଜମାନେ ଆସିଲା ବେଳକୁ ପୁରୁଣା ସାମନ୍ତବାଦୀ ବ୍ୟବସ୍ଥା ଭାଙ୍ଗି ପଡ଼ୁଥିଲା । ମୋଗଲ ସାମ୍ରାଜ୍ୟର ପତନ ହେତୁ ଭାରତର ଅନେକ ସ୍ଥାନରେ ରାଜନୈତିକ ଅନ୍ଧକାର ଓ ବିଶୃଙ୍ଖଳ ଅବସ୍ଥା ସୃଷ୍ଟି ହେଲା । ଜଣେ ଭାରତୀୟ ଅର୍ଥନୀତିଜ୍ଞ ରମେଶଚନ୍ଦ୍ର ଦତ୍ତ ଲେଖିଛନ୍ତି, "୧୮ ଶତାବ୍ଦୀ ବେଳକୁ ଭାରତ ଏକ ବଡ଼ ଶିଳ୍ପ ପ୍ରଧାନ ଓ କୃଷି ପ୍ରଧାନ ଦେଶ ଥିଲା ଏବଂ ଭାରତ ହାତତନ୍ତରୁ ଲୁଗା ଇଉରୋପ ଓ ଏସିଆ ବଜାରରେ ବିକ୍ରୀ ହେଉଥିଲା ।" ପୁରାତନ କାଳରେ ବିଦେଶୀ ବଜାର ଉପରେ ଭାରତର କିପରି ପ୍ରାଧାନ୍ୟ ଥିଲା, ସେ କଥା ମୁଁ ଏହିସବୁ ଚିଠିରେ କହିଛି । ଇଜିପ୍ଟର ଚାରିହଜାର ବର୍ଷର ପୁରୁଣା ମମି ( ସୁରକ୍ଷିତ ଶବ ) ସବୁ ଭାରତୀୟ ସୁନ୍ଦର ମସଲିନଦ୍ୱାରା ଆବୃତ ହୋଇଥିବାର ଦେଖାଯାଏ । ଭାରତୀୟ କାରିଗରର ଶିଳ୍ପନୈପୁଣ୍ୟ ଖ୍ୟାତି ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ବ୍ୟାପିଥିଲା । ରାଜନୈତିକ ପତନ ହେଲା ପରେ ସୁଦ୍ଧା ଭାରତର କାରିଗର ତାର ହସ୍ତପଟୁତା ହରାଇ ନ ଥିଲା । ଯେଉଁ ଇଂରେଜ ଓ ଅନ୍ୟ ବିଦେଶୀ ବଣିକମାନେ ବେପାର ଉଦ୍ଦେଶ୍ୟରେ ଭାରତକୁ ଆସିଥିଲେ, ସେମାନେ ବିଦେଶୀ ଜିନିଷ ବିକ୍ରୀ କରିବା ଉଦ୍ଦେଶ୍ୟରେ ଆସି ନ ଥିଲେ; କିନ୍ତୁ ଭାରତରେ ଯେଉଁ ସୁନ୍ଦର ଓ ସୂକ୍ଷ୍ମ ଜିନିଷ ତିଆରି ହେଉଥିଲା, ତାକୁ କିଣି ବହୁତ ଲାଭରେ ଇଉରୋପରେ ବିକ୍ରୀ କରିବା ନିମନ୍ତେ ଆସିଥିଲେ; ତେଣୁ ଇଉରୋପର ବେପାରୀମାନେ ପ୍ରଥମେ ଏଠାର କଞ୍ଚାମାଲ ପାଇଁ ଆକୃଷ୍ଟ ହୋଇ ଆସି ନ ଥିଲେ; ଭାରତରେ ପ୍ରସ୍ତୁତ ଲୁଗାପଟା ପାଇଁ ଆସିଥିଲେ । ଭାରତରେ ଶାସନ ଅଧିକାର ପାଇବା ପୂର୍ବରୁ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତୀୟ ତିଆରି ବସ୍ତ୍ର, ପଶମ ଓ ଅନ୍ୟ ସିଲାଇ ଜିନିଷ ବିଷୟ ବେପାର କରି ବହୁତ ଲାଭ କରିଥିଲେ । ବିଶେଷ ଭାବରେ ବସ୍ତ୍ରଶିଳ୍ପରେ ଅର୍ଥାତ୍ ତୁଳା, ରେଶମ ଓ ପଶମ ଜିନିଷ ତିଆରି କରିବାରେ ଭାରତୀୟମାନେ ଉଚ୍ଚତର କୁଶଳତା ଲାଭ କରିଥିଲେ । ରମେଶ ଚନ୍ଦ୍ର

ତିଭ କହିଛନ୍ତି, "ବୁଣିବା ଏକଜାତୀୟ ଶିଳ୍ପ ଥିଲା ଏବଂ ଲକ୍ଷ ଲକ୍ଷ ସ୍ତ୍ରୀଲୋକ ସୂତା କାଟୁଥିଲେ ।" ଭାରତର ବସ୍ତ୍ର ଇଂଲଣ୍ଡ, ଇଉରୋପର ଅନ୍ୟ ଦେଶମାନଙ୍କୁ ଏବଂ ଚୀନ, ଜାପାନ, ବର୍ମା, ଆରବ, ଇରାନ ଓ ଆଫ୍ରିକାର କେତେକ ଅଞ୍ଚଳକୁ ଯାଉଥିଲା ।

କ୍ଲାଇବ ୧୭୫୭ରେ ବଙ୍ଗଳାର ମୁର୍ଶିଦାବାଦ ସହରର ବର୍ଣ୍ଣନା କରି କହିଛନ୍ତି, "ଏହା ଲଣ୍ଡନ ପରି ବିସ୍ତୃତ ଜନଗହଳ ଓ ସମୃଦ୍ଧିଶାଳୀ ସହର । ପ୍ରଭେଦ ଏତିକି ଯେ, ମୁର୍ଶିଦାବାଦରେ ଲଣ୍ଡନ ଅପେକ୍ଷା ଅତ୍ୟନ୍ତ ଅଧିକ ସମ୍ପତ୍ତିଶାଳୀ ବ୍ୟକ୍ତିବିଶେଷ ନ ଥିଲେ । ଯେଉଁ ବର୍ଷ ପଲାସୀ ଯୁଦ୍ଧ ପରେ ଇଂରେଜମାନେ ନିଶ୍ଚିତରୂପେ ବଙ୍ଗଳାରେ ରାଜୁତି ସ୍ଥାପନା କଲେ ଏହା ସେହି ବର୍ଷର କଥା । ଏହି ରାଜନୈତିକ ଅଧଃପତନ ବେଳେ ବଙ୍ଗଳା ଧନଶାଳୀ ଥିଲା ଓ ଶିଳ୍ପକାର୍ଯ୍ୟରେ ପୂର୍ଣ୍ଣ ଥିଲା ଏବଂ ପୃଥିବୀର ବିଭିନ୍ନ ଅଞ୍ଚଳକୁ ଏହାର ସୁନ୍ଦର ଲୁଗା ଅଧିବସ୍ତ୍ର ପାଇଁ ପଠାଉଥିଲା । ଢାକା ସହର ବିଶେଷ ଭାବରେ ସରୁ ମଲମଲ (ମସ୍‌ଲିନ) ନିମନ୍ତେ ପ୍ରସିଦ୍ଧ ଥିଲା ଏବଂ ଏଠାରେ ପ୍ରକାଣ୍ଡ ରପ୍ତାନି ବାଣିଜ୍ୟ ହେଉଥିଲା ।

ଏହିରୂପେ ଏହି ସମୟରେ ଭାରତ କେବଳ କୃଷି ପ୍ରଧାନ ଓ ଗ୍ରାମୀଣ ଅବସ୍ଥାରୁ ବହୁତ ଉପରେ ଥିଲା । ଅବଶ୍ୟ ଭାରତ ସେତେବେଳେ ଥିଲା, ଏବେ ବି ଅଛି ଏବଂ ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରଧାନତଃ କୃଷିପ୍ରଧାନ ଦେଶ ହୋଇ ରହିବ; କିନ୍ତୁ ଗ୍ରାମ୍ୟ ଜୀବନ ଓ କୃଷି ଜୀବନ ସଙ୍ଗେ ସଙ୍ଗେ ସହର ଜୀବନ ମଧ୍ୟ ଉନ୍ନତି ଲାଭ କରିଥିଲା । ଏହିସବୁ ସହରରେ କାରିଗର ଶିଳ୍ପୀମାନେ ଏକତ୍ର ହେଉଥିଲେ ଏବଂ ସାମୂହିକ ଉତ୍ପାଦନ ହେଉଥିଲା ଅର୍ଥାତ ଏକ ଶହ ବା ଅଧିକ କାରିଗର ନିଯୁକ୍ତ କଲା ପରି ଛୋଟ ଛୋଟ କାରଖାନା ଥିଲା । ଅବଶ୍ୟ ପରେ ଯନ୍ତ୍ରଯୁଗରେ ଯେଉଁସବୁ ପ୍ରକାଣ୍ଡ କାରଖାନା ଖୋଲାଗଲା, ତାହା ସହିତ ଏହାର ତୁଳନା କରାଯାଇ ନ ପାରେ । ପଶ୍ଚିମ-ଇଉରୋପରେ ବିଶେଷତଃ ନେଦରଲାଣ୍ଡସ୍‌ରେ ଶିଳ୍ପ ଉଦ୍ୟୋଗ ଆରମ୍ଭ ହେବା ପୂର୍ବରୁ ଏପରି ଅନେକ କାରଖାନା ଥିଲା ।

ଭାରତ ଏକ ପରିବର୍ତ୍ତନଶୀଳ ଅବସ୍ଥାରେ ଥିଲା । ଏହା ଏକ ଜିନିଷ ତିଆରି କରିବା ଦେଶ ଥିଲା ଏବଂ ସହରମାନଙ୍କରେ ଏକ ବୁର୍ଜୋଆ ଶ୍ରେଣୀ ସୃଷ୍ଟି ହେଉଥିଲେ । ଏହିସବୁ କାରଖାନାର ମାଲିକମାନେ ପୁଞ୍ଜିବାଦୀ । ସେମାନେ ଶିଳ୍ପୀମାନଙ୍କୁ କଞ୍ଚା ମାଲ ଯୋଗାଉଥିଲେ । କାଳକ୍ରମେ ଇଉରୋପ ପରି ଏଠି ମଧ୍ୟ ଏହି ଶ୍ରେଣୀ ବୃଦ୍ଧି ପାଇ ଯେ ସାମନ୍ତ ଶ୍ରେଣୀର ସ୍ଥାନ ଅଧିକାର କରିଥାନ୍ତେ, ଏଥିରେ ସନ୍ଦେହ ନାହିଁ । ଠିକ୍ ଏତିକିବେଳେ ଇଂରେଜମାନେ ଆସି ହସ୍ତକ୍ଷେପ କଲେ ଏବଂ ଭାରତୀୟ ଶିଳ୍ପର ସର୍ବନାଶ ଘଟିଲା ।

ପ୍ରଥମେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତୀୟ ଶିଳ୍ପକୁ ଉତ୍ସାହିତ କରିଥିଲା; କାରଣ ଏଥିରେ ସେମାନେ ଧନ କମାଇଲେ । ବିଦେଶରେ ଭାରତୀୟ ମାଲ ବିକ୍ରୀ ଫଳରେ ଦେଶକୁ ସୁନା ଓ ରୁପା ଆସିଲା; କିନ୍ତୁ ଇଂଲଣ୍ଡରେ ଜିନିଷ ତିଆରି କରୁଥିବା ଲୋକେ ଏହି ପ୍ରତିଯୋଗିତାକୁ ପସନ୍ଦ କଲେ ନାହିଁ ଏବଂ ତେଣୁ ୧୮ଶ ଶତାବ୍ଦୀର ପ୍ରଥମ ଭାଗରେ ଇଂଲଣ୍ଡକୁ ଆସୁଥିବା ଭାରତର ଜିନିଷ ଉପରେ ଟିକସ ବସାଇବା ନିମନ୍ତେ ସେମାନେ ସରକାରକୁ ପ୍ରବର୍ତ୍ତାଇଲେ । କେତେକ ଭାରତୀୟ ଜିନିଷ ଇଂଲଣ୍ଡକୁ ଯିବା ନିଷେଧ ହୋଇଗଲା ଏବଂ ବିଶ୍ୱାସ, କେତେକ ଭାରତୀୟ ଜିନିଷ ଇଂଲଣ୍ଡରେ ସାଧାରଣତଃ ବ୍ୟବହାର କରିବା ଏକ ଅପରାଧରୂପେ ଗଣ୍ୟ ହେଲା । ଆଇନ ସାହାଯ୍ୟରେ ସେମାନେ ବର୍ଜନନୀତି ଶକ୍ତ କରିଥିଲେ । ଏଠି ବର୍ତ୍ତମାନ ଭାରତରେ ବିଲାତି ଲୁଗା ବର୍ଜନ କଥା କହିଲେ ଜଣକୁ ଜେଲରେ ରହିବାକୁ ହେବ । ଇଂଲଣ୍ଡର ଏହି ଭାରତୀୟ ମାଲ ବର୍ଜନ ନୀତିଦ୍ୱାରା ବିଶେଷ କିଛି କ୍ଷତି ହୋଇ ନ ଥାନ୍ତା; କାରଣ ଅନ୍ୟ ଅନେକ ବଜାର ଖୋଲିଥିଲା; କିନ୍ତୁ ସେତେବେଳେ ଇଷ୍ଟ ଇଣ୍ଡିଆ କମ୍ପାନୀ ଜରିଆରେ ଇଂଲଣ୍ଡ ଭାରତର ବୃହତ୍ ଅଂଶରେ କର୍ତ୍ତୃତ୍ୱ କରୁଥିଲା ଏବଂ ଭାରତୀୟ ଶିଳ୍ପ ନଷ୍ଟ କରି ବିଲାତି ଶିଳ୍ପ ପ୍ରଚଳନ କରିବା ପାଇଁ ଜାଣି-ଶୁଣି ଏକ ନୀତି ପ୍ରୟୋଗ କଲା । କୌଣସି ଶୁଳ୍କ ନ ଦେଇ ବିଲାତି ଜିନିଷ ଭାରତରେ ପ୍ରବେଶ କରିପାରିଲା । ଭାରତରେ କାରିଗର ଓ ହସ୍ତଶିଳ୍ପୀମାନଙ୍କୁ ନିର୍ଯ୍ୟାତନ କରାଗଲା ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀର କାରଖାନାରେ ସେମାନଙ୍କୁ କାର୍ଯ୍ୟ କରିବାକୁ ବାଧ କରାଗଲା । ଏହିପରି ସରବରାହ ଟିକସଦ୍ୱାରା ଭାରତ ଭିତରେ ବେପାର ମଧ୍ୟ ସଙ୍କୁଚିତ କରି ଦିଆଗଲା; ଅର୍ଥାତ୍ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଜିନିଷ ପଠାଇବାକୁ ହେଲେ କର ଦେବାକୁ ପଡ଼ୁଥିଲା ।

ଭାରତର ବସ୍ତ୍ରଶିଳ୍ପ ଏପରି ନିପୁଣ ଥିଲା ଯେ, ଇଂରେଜମାନଙ୍କ ଯାନ୍ତ୍ରିକ ଶିଳ୍ପର ଉଦୟ ମଧ୍ୟ ଏହା ସହିତ ପ୍ରତିଯୋଗିତା କରିପାରିଲା ନାହିଁ ଏବଂ ଶତକଡ଼ା ୮୦ ଶୁଳ୍କ ବସାଇ ରକ୍ଷା କରିବାକୁ ହେଲା । ୧୯ଶ ଶତାବ୍ଦୀର ପ୍ରଥମ ଭାଗରେ କେତେକ ଭାରତୀୟ ରେଶମ ଓ ତୂଳା ତିଆରି ଜିନିଷ ଇଂଲଣ୍ଡ ତିଆରି ଜିନିଷ ଅପେକ୍ଷା ଆହୁରି ଶସ୍ତାରେ ଇଂଲଣ୍ଡରେ ବିକ୍ରୀ ହେଉଥିଲା । କିନ୍ତୁ ଭାରତର ଶାସନକର୍ତ୍ତା ଇଂଲଣ୍ଡ, ଭାରତୀୟ ଶିଳ୍ପକୁ ଧ୍ୱଂସ କରିଦେବା ନିମନ୍ତେ ଲାଗିପଡ଼ିବାରୁ ଏହା ଆଉ ଉଠିଲା ପାରିଲା ନାହିଁ । ଯେ କୌଣସି ଅବସ୍ଥାରେ ମଧ୍ୟ ଯନ୍ତ୍ରଶିଳ୍ପ ଉନ୍ନତି ଲାଭ କରିବା ମାତ୍ରେ ତାହା ସହିତ ଭାରତୀୟ ହସ୍ତଶିଳ୍ପ ବେଶି ଦିନ ପ୍ରତିଯୋଗିତା କରିପାରିଲା ନାହିଁ । କାରଣ ବହୁ ପରିମାଣରେ ମାଲ ଉତ୍ପନ୍ନ କରିବା ପାଇଁ ଯନ୍ତ୍ରଶିଳ୍ପ ବେଶୀ ଉପଯୋଗୀ; ତେଣୁ ଏହା ହାତତିଆରି ଜିନିଷ ଅପେକ୍ଷା ଶସ୍ତା; କିନ୍ତୁ ଇଂଲଣ୍ଡ ବଳପୂର୍ବକ ଏହାକୁ ଆଗେଇ ଦେଲା ଓ ପରିବର୍ତ୍ତିତ ଅବସ୍ଥା ସହିତ ଭାରତ ମିଶି ଚାଲିବାରେ ବାଧା ଦେଲା ।

ତେଣୁ ଶହ ଶହ ବର୍ଷ ଧରି ଯେଉଁ ଭାରତ "ପ୍ରାଚ୍ୟ ଜଗତର ଲଙ୍କାଶାୟାର" ଥିଲା ଏବଂ ଯେ ୧୮ଶ ଶତାବ୍ଦୀର ବହୁଳ ପରିମାଣରେ ଇଉରୋପକୁ ତୁଳା ତିଆରି ଜିନିଷ ଯୋଗାଉଥିଲା, ହସ୍ତଶିଳ୍ପ ତିଆରି କରିବା ଦେଶ ଭାବରେ ନିଜର ପଦ ହରାଇଲା ଏବଂ କେବଳ ବିଲାତି ଜିନିଷର ଖାଉଟି ହୋଇରହିଲା । ସାଧାରଣ ଭାବରେ ଯନ୍ତ୍ର ବି ଭାରତରେ ପ୍ରଚଳନ ହୋଇଥାନ୍ତା; ମାତ୍ର ତାହା ଆସିଲା ନାହିଁ; କିନ୍ତୁ ଯନ୍ତ୍ର ତିଆରି ଜିନିଷସବୁ ବାହାରୁ ଆସିଲା । ଭାରତୀୟ ମାଲ୍ ନେଇ ଏବଂ ତା ବଦଳରେ ବିଦେଶରୁ ଯେଉଁ ସୁନା ଓ ରୁପା ଆଣିବା ସ୍ରୋତ ଭାରତକୁ ଛୁଟିଥିଲା, ତାହା ବଦଳିଗଲା । ଏହି ଦିନଠାରୁ ବିଦେଶୀ ମାଲ ଭାରତକୁ ଅସିଲା ଏବଂ ସୁନା ଓ ରୁପା ଏଠାରୁ ଗ୍ଲଲା ।

ଏହି ଆକ୍ରମଣରେ ଭାରତର ବସ୍ତ୍ର ଶିଳ୍ପ ପ୍ରଥମେ ଲୋପ ପାଇଲା । ଇଂଲଣ୍ଡରେ ଯନ୍ତ୍ରଶିଳ୍ପର ବୃଦ୍ଧି ସଙ୍ଗେ ସଙ୍ଗେ ଅନ୍ୟ ଭାରତୀୟ ଶିଳ୍ପର ଅବସ୍ଥା ବସ୍ତ୍ରଶିଳ୍ପ ଅନୁରୂପ ହେଲା । ସାଧାରଣତଃ କୌଣସି ଦେଶର ସରକାରର କର୍ତ୍ତବ୍ୟ ହେଉଛି ସେ ଦେଶର ଶିଳ୍ପକୁ ରକ୍ଷା କରିବା ଓ ଉତ୍ସାହିତ କରିବା; କିନ୍ତୁ ରକ୍ଷା କରିବା ଓ ଉତ୍ସାହିତ କରିବା ତ ଦୂରର କଥା, ଯେଉଁସବୁ ଶିଳ୍ପଦ୍ୱାରା ବ୍ରିଟିଶ ଶିଳ୍ପ ସହିତ ସଂଘର୍ଷ ହେଉଥିଲା, ତାକୁ ସବୁ ଇଷ୍ଟ ଇଣ୍ଡିଆ କମ୍ପାନୀ ନଷ୍ଟ କରିଦେଲା । ଭାରତରେ ଜାହାଜ ତିଆରି ଲୋପ ପାଇଲା ଏବଂ ଧାତୁ ଶିଳ୍ପର ଶ୍ରମିକମାନେ କାର୍ଯ୍ୟ କରିପାରିଲେ ନାହିଁ ଏବଂ କାଚ ଓ କାଗଜ ତିଆରି ମଧ୍ୟ କମ୍ ହୋଇଗଲା ।

ପ୍ରଥମେ ବିଦେଶୀ ଜିନିଷସବୁ ବନ୍ଦର, ସହର ଓ ତା ନିକଟ ମଫସଲରେ ପହଞ୍ଚିଲା । ରାସ୍ତା ଓ ରେଳ ତିଆରି ହେଲା ପରେ ବିଦେଶୀ ଜିନିଷସବୁ ଅଧିକରୁ ଅଧିକ ଭିତରେ ପ୍ରବେଶ କଲା ଏବଂ ପ୍ରତି ଗ୍ରାମରୁ କାରିଗରକୁ ତଡ଼ିଦେଲା । ସୁଏଜ କେନାଲ ଖୋଲା ହେବାରୁ ଭାରତ ଇଂଲଣ୍ଡର ଆହୁରି ନିକଟ ହୋଇଗଲା ଏବଂ ବିଲାତି ଜିନିଷ ଆଣିବା ଆହୁରି ଶସ୍ତା ପଡ଼ିଲା । ତେଣୁ ଅଧିକରୁ ଅଧିକ ବିଦେଶୀ ଯନ୍ତ୍ର ତିଆରି ଜିନିସ ଆସିଲା ଏବଂ ଏସବୁ ବି ଗ୍ରାମଗହଳରେ ପ୍ରବେଶ କଲା । ୧୯ଶ ଶତାବ୍ଦୀ ସାରା ଏହି ଗତି ଗ୍ଲଲା ଏବଂ ବାସ୍ତବିକ ଏବେ ସୁଦ୍ଧା ସେହିପରି ଗ୍ଲଲିଛି । ଯାହାହେଉ, ଗତ କେତେ ବର୍ଷ ପରେ ଏଥିରେ କିଛି ବାଧା ପହଞ୍ଚିଲା । ସେ ବିଷୟ ଆମେ ପରେ ଆଲୋଚନା କରିବୁ ।

ଏହି ପ୍ରସାର ଯୋଗୁଁ ଏ ବିଲାତି ଜିନିଷ ମୁଖ୍ୟତଃ ଲୁଗା ପ୍ରବେଶ ଫଳରେ ଭାରତରେ ହସ୍ତଶିଳ୍ପର ମୃତ୍ୟୁ ଘଟିଲା; କିନ୍ତୁ ଏହାର ଆହୁରି ଗୋଟିଏ ବିଭାଗ ବଡ଼ ଭୟଙ୍କର । ଯେଉଁସବୁ ଲକ୍ଷ ଲକ୍ଷ କାରିଗରଙ୍କୁ କାମରୁ ବଞ୍ଚିତ କରାଗଲା, ତାଙ୍କ ଅବସ୍ଥା କଣ ହେଲା ? ଯେଉଁ ବହୁସଂଖ୍ୟକ ତନ୍ତୀ ଓ ଅନ୍ୟ ଶ୍ରମିକ ବେକାର ହେଲେ, ତାଙ୍କ କଥା କଣ ହେଲା ? ଇଂଲଣ୍ଡରେ ମଧ୍ୟ ବଡ଼ ଶିଳ୍ପ କାରଖାନାମାନ ଆସିବା ପରେ କାରିଗରସବୁ କାର୍ଯ୍ୟରୁ ବଞ୍ଚିତ ହୋଇଥିଲେ । ସେ ଖୁବ୍ କଷ୍ଟ ସହିଲେ; କିନ୍ତୁ ନୂତନ କାରଖାନାରେ କାମ ପାଇଲେ ।

ତେଣୁ ସେମାନେ ନୂତନ ଅବସ୍ଥା ସହ ନିଜକୁ ଖାପ ଖୁଆଇ ନେଲେ । ଭାରତରେ ଆଉ ଗତ୍ୟନ୍ତର ନ ଥିଲା । କାମ କରିବା ଲାଗି କାରଖାନା ନ ଥିଲା; ଭାରତକୁ ଏକ ଆଧୁନିକ ଶିଳ୍ପୋନ୍ନତ ଦେଶ କରିବା ଇଂରେଜମାନଙ୍କର ଇଚ୍ଛା ନ ଥିଲା ଏବଂ କାରଖାନାସବୁକୁ ଉତ୍ସାହିତ କରାଗଲା ନାହିଁ । ତେଣୁ ଗରିବ ଗୃହହୀନ ଅକର୍ମା ଓ ଅର୍ଦ୍ଧାହାରୀ କାରିଗରମାନଙ୍କୁ ଜମି ଉପରେ ନିର୍ଭର କରିବାକୁ ପଡ଼ିଲା; ମାତ୍ର ଜମିରେ ମଧ୍ୟ ସେମାନେ ସୁଖ ସୁବିଧା ପାଇଲେ ନାହିଁ । ଯଥେଷ୍ଟ ଲୋକ ଆଗରୁ ଜମି ଉପରେ ନିର୍ଭର କରିଥିଲେ ଏବଂ ଜମି ମିଳୁ ନ ଥିଲା । କାରିଗରୀ ନଷ୍ଟ ହୋଇଥିବା କେତେକ କାରିଗର କୌଣସି ପ୍ରକାର କୃଷି କାର୍ଯ୍ୟ କଲେ, କିନ୍ତୁ ଅଧିକାଂଶ ଭୂମିହୀନ ଶ୍ରମିକ ହୋଇ ରହିଲେ ଏବଂ କାମ ଖୋଜି ବୁଲିଲେ । ଅନେକ ସଂଖ୍ୟକ ତ କେବଳ ଖାଇବାକୁ ନ ପାଇ ମରିଥିବେ । ୧୮୩୪ରେ ଭାରତରେ ଇଂରେଜ ଗଭର୍ଣ୍ଣର ଜେନେରାଲ ଲେଖିଥିବାର କଥିତ ଅଛି—"ବାଣିଜ୍ୟର ଇତିହାସରେ ଏପରି ଦୁର୍ଗତିର ବୋଧହୁଏ ତୁଳନା ନାହିଁ । କପା ଲୁଗାବୁଣାଳୀ ତନ୍ତୀଙ୍କ ହାଡ଼ରେ ଭାରତର ସମତଳ ଭୂମି ଧୋବଲା ଦିଶୁଥିଲା ।"

ଏହି ତନ୍ତୀ ଓ କାରିଗରଙ୍କ ଭିତରୁ ଅଧିକାଂଶ ସହର ଓ ନଗରରେ ବାସ କରୁଥିଲେ । ଏବେ ତାଙ୍କର ବ୍ୟବସାୟ ବୁଡ଼ିବାରୁ ସେମାନେ ଜମିକୁ ଫେରିଗଲେ ଓ ଗ୍ରାମରେ ପହଞ୍ଚିଲେ; ତେଣୁ ସହରର ଲୋକସଂଖ୍ୟା କମିଗଲା ଓ ଗ୍ରାମର ଲୋକସଂଖ୍ୟା ବଢ଼ିଗଲା, ଅର୍ଥାତ୍ ଅନ୍ୟ ଭାବରେ କହିଲେ ଭାରତ ଅଳ୍ପ ସହରୀ ଓ ଅଧିକ ଗ୍ରାମୀଣ ହେଲା । ଏହି ଗ୍ରାମ୍ୟକରଣ ୧୯ଶ ଶତାବ୍ଦୀ ସାରା ଚାଲିଲା ଏବଂ ଏପରି କି ଆଜି ସୁଦ୍ଧା ଏହା ସମାପ୍ତ ହୋଇ ନାହିଁ । ଏହି କାଳରେ ଭାରତର ଏପରି ଅବସ୍ଥା ପ୍ରକୃତରେ ବିଚିତ୍ର । ସମଗ୍ର ଦୁନିଆଁରେ ଯନ୍ତ୍ରଶିଳ୍ପ ଓ ଉଦ୍ୟୋଗ ଧନ୍ଦା ଯୋଗୁଁ ଗ୍ରାମରୁ ଲୋକେ ସହରକୁ ଆସିବାକୁ ଲାଗିଲେ । ଭାରତରେ ଠିକ୍ ବିପରୀତ ପ୍ରବୃତ୍ତି ଦେଖାଦେଲା । ସହର ଓ ନଗରସବୁ ଶ୍ରୀହୀନ ଏବଂ କ୍ଷୀଣ ହୋଇଗଲା । ଅତି କଷ୍ଟରେ ଜୀବନ ନିର୍ବାହ କରିବା ପାଇଁ ବେଶି ସଂଖ୍ୟାରେ ଲୋକେ କୃଷି ଉପରେ ନିର୍ଭର କରି ପଡ଼ି ରହିଥିଲେ ।

ପ୍ରଧାନ ଶିଳ୍ପ ସହ ଅନେକ ସାହାଯ୍ୟକାରୀ ଓ ସେଥିରେ ନିର୍ଭର କରୁଥିବା ଶିଳ୍ପ ମଧ୍ୟ ଉଭେଇଗଲା । ତୁଳାଭିଡ଼ା, ରଙ୍ଗ କରିବା, ରଙ୍ଗ ଛାପିବା ବହୁତ କମ୍ ହୋଇଗଲା, ହାତରେ ସୂତା କାଟିବା ବନ୍ଦ ହେଲା ଏବଂ ଲକ୍ଷ ଲକ୍ଷ ଗୃହରୁ ଚରଖା ଲୁଚିଗଲା । ଏହାର ଅର୍ଥ କୃଷକ ଠିକ୍ ଅଧିକ ଆୟ ପନ୍ଥା ହରାଇଲା; କାରଣ କୃଷକ ପରିବାରର ଲୋକେ ସୂତା କାଟିବା ଦ୍ୱାରା ଜମି ଆୟ ସହିତ ତାଙ୍କର ଆଉ ଅଧିକ ଆୟ ମିଶୁଥିଲା । ଏସବୁ ଅବଶ୍ୟ ଯନ୍ତ୍ରଶିଳ୍ପ ଆରମ୍ଭବେଳେ ପଶ୍ଚିମ ଇଉରୋପରେ ଘଟିଥିଲା; ମାତ୍ର ସେଠାରେ ପରିବର୍ତ୍ତନ ପ୍ରାକୃତିକ ଥିଲା ଏବଂ ସେଠାରେ ଗୋଟିଏ ବ୍ୟବସ୍ଥାର ମୃତ୍ୟୁ ହେଲା ପରେ ସେହି ସମୟରେ ନୂତନ ବ୍ୟବସ୍ଥା ଜନ୍ମଲାଭ କରିଥିଲା; କିନ୍ତୁ ଭାରତରେ ଏହି ପରିବର୍ତ୍ତନ ହିଂସାମୂଳକ ହେଲା । ହାତତିଆରି କୁଟୀରଶିଳ୍ପଜାତ ପୁରାତନ ସମାଜକୁ ହତ୍ୟା କରାଗଲା, କିନ୍ତୁ ଆଉ

ତାର କୌଣସି ପୁନର୍ଜନ୍ମ ହେଲ ନାହିଁ; ଇଂରେଜ ଶିଳ୍ପର ସ୍ୱାର୍ଥ ଦୃଷ୍ଟିରୁ ଇଂରେଜ କର୍ତ୍ତୃପକ୍ଷ ଏହା କରିବା ପାଇଁ ଅନୁମତି ଦେଲେ ନାହିଁ ।

ଆମେ ଦେଖିଛେ, ବ୍ରିଟିଶ ଏଠାରେ କ୍ଷମତା ପାଇଲା ବେଳକୁ ଭାରତ ହାତତିଆରି ଜିନିଷରେ ଉନ୍ନତ ଦେଶ ଥିଲା । ସାଧାରଣ ଭାବରେ ତା ପର ଅବସ୍ଥା ହୋଇଥାନ୍ତା ଦେଶକୁ ଔଦ୍ୟୋଗିକ କରିବା ଓ ବଡ଼ ମେସିନର ପ୍ରଚଳନ କରାଇବା; କିନ୍ତୁ ଆଗକୁ ଯିବା ପରିବର୍ତ୍ତେ ବ୍ରିଟିଶ ନୀତି ଫଳରେ ଭାରତ ପ୍ରକୃତରେ ପଛରେ ପଡ଼ିଗଲା । ଏପରି କି ହାତତିଆରି ଜିନିଷ ବି ଏଠାରେ ଆଉ ହେଲା ନାହିଁ ଏବଂ ପୂର୍ବାପେକ୍ଷା ଅଧିକ କୃଷିପ୍ରଧାନ ଦେଶ ହୋଇଗଲା ।

ସୁତରାଂ ଏହି ବହୁସଂଖ୍ୟକ ବେକାର କାରିଗର ଓ ଅନ୍ୟାନ୍ୟ ଲୋକଙ୍କୁ ଚାଷଦ୍ୱାରା ଚଳିବାକୁ ପଡ଼ିଲା । ଜମି ଉପରେ ଭୀଷଣ ଚାପ ପଡ଼ିଲା ଏବଂ ତାହା ସତ୍ତ୍ୱେ ଏହା ବଢ଼ି ବଢ଼ି ଚାଲିଲା । ଭାରତର ଦାରିଦ୍ର୍ୟ ସମସ୍ୟା ଏହା ଉପରେ ପ୍ରତିଷ୍ଠିତ ଏବଂ ଏହା ହିଁ ତାର ମୂଳଭିତ୍ତି । ଏହି ନୀତି ଫଳରେ ଆମର ଅଧିକାଂଶ ଦୁଃଖ ଆସିଛି । ଏହି ମୂଳ ସମସ୍ୟା ସମାଧାନ ନ ହେବାଯାଏଁ ଭାରତୀୟ କୃଷକ ଓ ଗ୍ରାମବାସୀଙ୍କ ଦାରିଦ୍ର୍ୟ ଓ ଦୁର୍ଦ୍ଦଶା ଅନ୍ତ ହେବ ନାହିଁ ।

ଅନେକ ସଂଖ୍ୟକ ଲୋକଙ୍କର ଚାଷ ଛଡ଼ା ଅନ୍ୟ କିଛି ଧନ୍ଦା ନ ଥିବାରୁ ଜମି ଉପରେ ନିର୍ଭର କରିବାକୁ ପଡ଼ିଲା । କ୍ଷେତ ଜମିକୁ ଛୋଟ ଛୋଟ ଟୁକୁରା କରି ପକାଇଲେ । ଆଉ ଅଧିକ କେଉଁଠି ପାଇବାର ନ ଥାଏ । ପ୍ରତ୍ୟେକ କୃଷକ ଗୃହ ପାଖରେ ଯାହା ଅଳ୍ପ ଜମି ଥିଲା, ସ୍ୱଚ୍ଛନ୍ଦରେ ଚଳିବା ପାଇଁ ତାହା ଅତ୍ୟନ୍ତ କମ୍ । ଖୁବ୍ ଉତ୍କୃଷ୍ଟ ସମୟରେ ମଧ୍ୟ ସେମାନଙ୍କୁ ଦାରିଦ୍ର୍ୟ ଓ ଅଧା ଉପବାସର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଅନେକ ସମୟରେ କାଳ ବି ଭଲ ନ ଥାଏ । ସେମାନେ ଋତୁ, ପାଗ ଓ ବର୍ଷା ଉପରେ ନିର୍ଭର କରନ୍ତି । ଦୁର୍ଭିକ୍ଷ ହୁଏ, ଭୀଷଣ ରୋଗ ବ୍ୟାପେ ଏବଂ ଲକ୍ଷ ଲକ୍ଷ ଲୋକ ମରିଯାଆନ୍ତି । ସେମାନେ ଗାଁ ମହାଜନ ବା ବଣିଆ ପାଖକୁ ଯାଇ ଟଙ୍କା ଧାର କରନ୍ତି ଏବଂ ସେମାନଙ୍କ ଋଣ ଦିନକୁ ଦିନ ବଢ଼ି ଚାଲିଲା । ପରିଶୋଧ କରିବାର ସମସ୍ତ ଆଶା ଓ ସମ୍ଭାବନା ବୁଡ଼ିଗଲା ଏବଂ ଜୀବନଧାରଣ କରିବା ଅତ୍ୟନ୍ତ କଠିନ ହୋଇପଡ଼ିଲା । ୧୯ଶ ଶତାବ୍ଦୀରେ ବ୍ରିଟିଶ ଶାସନ ଅମଳରେ ଭାରତୀୟ ଲୋକଙ୍କ ଭିତରୁ ଅଧିକ ସଂଖ୍ୟକ ଲୋକଙ୍କ ଅବସ୍ଥା ଏହିପରି ହେଲା ।

## ୧୧୧ : ଭାରତର ଗ୍ରାମ, କୃଷକ ଓ ଜମିଦାର

ଡିସେମ୍ବର ୨, ୧୯୩୨

ଗତ ଚିଠିରେ ଭାରତରେ ବ୍ରିଟିଶ ନୀତିର ଫଳସ୍ୱରୂପ ଭାରତୀୟ କୁଟୀରଶିଳ୍ପର ମୃତ୍ୟୁ ଏବଂ କାରିଗରମାନେ କୃଷି ଓ ଗ୍ରାମ ଉପରେ ନିର୍ଭର କରିବା କଥା ମୁଁ କହିଛି । ମୁଁ କହିଛି ଯେ ଏତେ ଲୋକ ଅନ୍ୟ କୌଣସି ବୃତ୍ତି ନ ପାଇ ଜମି ଉପରେ ବୋଝ ହୋଇ ପଡ଼ିଲେ ବା ଚାପ ପକାଇଲେ । ଏହା ହେଉଛି ଭାରତର ଗୋଟାଏ ବଡ଼ ସମସ୍ୟା । ଅଧିକଭାବରେ ଏହି ହେତୁହିଁ ଭାରତ ଦରିଦ୍ର । ଯଦି ଏହିସବୁ ଲୋକଙ୍କୁ ଜମିର ଅନ୍ୟ ଆଡ଼କୁ ଆଣି ଶିଳ୍ପ ଓ ଧନ ଉତ୍ପାଦନରେ ଅନ୍ୟ ଫନ୍ଦା ଜୁଟାଇ ଦିଆଯାଆନ୍ତା, ତାହା ହେଲେ ସେମାନେ ଯେ କେବଳ ଦେଶର ସମ୍ପଦ ବଢ଼ାନ୍ତେ ତାହା ନୁହେଁ, ଜମି ଉପରେ ଚାପ ମଧ୍ୟ ଅନେକ ପରିମାଣରେ କମିଯାଆନ୍ତା ଏବଂ ଏପରି କି କୃଷି ବି ଉନ୍ନତ କରନ୍ତା ।

ଅନେକ ସମୟରେ କୁହାଯାଏ ଯେ ଭାରତର ଲୋକସଂଖ୍ୟା ବୃଦ୍ଧି ଯୋଗୁଁ ଜମି ଉପରେ ଏପରି ଅତ୍ୟଧିକ ଚାପ ପଡ଼ୁଛି; ବ୍ରିଟିଶ ନୀତି ହେତୁ ନୁହେଁ । ଏହି ଯୁକ୍ତି ଠିକ୍ ନୁହେଁ । ଏ କଥା ସତ୍ୟ ଯେ ଗତ ୧୦୦ ବର୍ଷ ଭିତରେ ଭାରତର ଲୋକସଂଖ୍ୟା ବଢ଼ିଛି; କିନ୍ତୁ ଅଧିକାଂଶ ଦେଶର ବି ସେହିପରି ବଢ଼ିଛି । ବାସ୍ତବିକ ଇଉରୋପରେ ବିଶେଷତଃ ଇଂଲଣ୍ଡ, ବେଲଜିୟମ, ହଲଣ୍ଡ ଓ ଜର୍ମାନୀରେ ଦେଖିଲେ ଅନୁପାତରେ ଖୁବ୍ ଅଧିକ ଜନସଂଖ୍ୟା ବୃଦ୍ଧି ହୋଇଛି । ଦେଶ ବା ପୃଥିବୀର ଲୋକସଂଖ୍ୟା ବୃଦ୍ଧି ଏବଂ ଦରକାର ହେଲେ ତାକୁ କିପରି ଯୋଗାଇବାକୁ ପଡ଼ିବ ଏବଂ ସୀମାବଦ୍ଧ କରାଯାଇ ପାରିବ, ଏହା ଏକ ଗୁରୁତର ସମସ୍ୟା । ସେ ବିଷୟରେ ମୁଁ ଏଠି ଆଲୋଚନା କରିବି ନାହିଁ; କାରଣ ଅନ୍ୟ କଥାସବୁ ଗୋଳମାଳିଆ ହୋଇଯିବ; କିନ୍ତୁ ମୁଁ ଏ କଥା ପରିଷ୍କାର କହିଦେବାକୁ ଚାହେଁ ଯେ ଭାରତରେ ଜମି ଉପରେ ଚାପ ପଡ଼ିବାର ପ୍ରକୃତ କାରଣ ହେଉଛି ଚାଷ ଛଡ଼ା ଅନ୍ୟ ଫନ୍ଦା ନ ଥିବା ହେତୁ; ଲୋକସଂଖ୍ୟା ବୃଦ୍ଧି ଯୋଗୁଁ ନୁହେଁ । ଅନ୍ୟ ଫନ୍ଦା ଓ ଶିଳ୍ପ ହୋଇପାରିଲେ ଭାରତର ବର୍ତ୍ତମାନ ଲୋକସଂଖ୍ୟା ସମ୍ଭବତଃ ସହଜରେ ଭାରତରେ ରହି ଉନ୍ନତି କରିପାରିବେ । ହୁଏତ ପରେ ଆମକୁ ଲୋକସଂଖ୍ୟାବୃଦ୍ଧି ସମସ୍ୟା ସମ୍ବନ୍ଧରେ ଆଲୋଚନା କରିବାକୁ ପଡ଼ିବ ।

ଭାରତରେ ବ୍ରିଟିଶ ନୀତିର ଅନ୍ୟ କେତେକ ବିଭାଗ ଆମେ ପରୀକ୍ଷା କରିବା । ଆମେ ପ୍ରଥମେ ଗ୍ରାମ କଥା ଦେଖିବା ।

ଭାରତରେ ଗ୍ରାମ ପଞ୍ଚାୟତଗୁଡ଼ିକ ବିପ୍ଳବ ଓ ପରିବର୍ତ୍ତନ ବେଳେ ଯୁକ୍ତା କିପରି ବଞ୍ଚି ରହିଥିଲା, ସେ ସମ୍ବନ୍ଧରେ ମୁଁ ଲେଖିଛି । ଏପରି କି ୧୮୩୦ରେ ଭାରତରେ ଥିବା ଜଣେ

ଇଂରେଜ ଗଭର୍ଣ୍ଣର ସାର୍ ଚାର୍ଲସ ମେଟକାଫ୍ ଗ୍ରାମସମୂହ ସମ୍ବନ୍ଧରେ ନିମ୍ନଲିଖିତ ରୂପେ ବର୍ଣ୍ଣନା କରିଛନ୍ତି ।

"ଗ୍ରାମପଞ୍ଚାୟତ ସବୁ କ୍ଷୁଦ୍ର କ୍ଷୁଦ୍ର ପ୍ରଜାତନ୍ତ୍ର ପରି, ସେମାନଙ୍କର ନିଜର ଦରକାରି ପ୍ରତ୍ୟେକ ଜିନିଷ ସେମାନଙ୍କ ପାଖରେ ଥିଲା; ବିଦେଶୀ ସମ୍ପର୍କ ବିଷୟରେ ପ୍ରାୟ ସ୍ୱତନ୍ତ୍ର ଥିଲା । ଅନ୍ୟ କିଛି ନ ରହୁଥିବାବେଳେ ସୁଦ୍ଧା ଏଗୁଡ଼ିକ ତିଷ୍ଠି ରହୁଥିଲା । ଗ୍ରାମସମୂହର ଏହି ଇଉନିୟନ—ସେଥି ଭିତରେ ପ୍ରତ୍ୟେକ ଗ୍ରାମ ଗୋଟିଏ କ୍ଷୁଦ୍ର ଅଲଗା ରାଜ୍ୟ ପରି ଥାଏ—ସେମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଅତ୍ୟନ୍ତ ଉପଯୋଗୀ ଏବଂ ସ୍ୱାଧୀନତା ଓ ମୁକ୍ତି ଅଧିକ ଭାଗରେ ଭୋଗ କରିବା ଲାଗି ସୁବିଧାଜନକ ।"

ପୁରାତନ ଗ୍ରାମପ୍ରଣାଳୀର ଏହି ରୂପ ଅତ୍ୟନ୍ତ ପ୍ରଶଂସାବାଚକ । ଏହା ଏକପ୍ରକାର ବାକ୍ୟ ବର୍ଣ୍ଣିତ ଚିତ୍ର ପରି । ଏଥିରେ ସନ୍ଦେହ ନାହିଁ ଯେ ଗ୍ରାମମାନଙ୍କରେ ଯେ ପରିମାଣରେ ସ୍ଥାନୀୟ ସ୍ୱାଧୀନତା ଓ ସ୍ୱତନ୍ତ୍ରତା ଥିଲା, ତାହାଠାରୁ ଭଲକଥା ଏବଂ ଆହୁରି ଅନେକ ଭଲକଥା ମଧ୍ୟ ଥିଲା । କିନ୍ତୁ ଏହି ପ୍ରଣାଳୀର ଦୋଷ ପ୍ରତି ବି ଆମର ଆଖି ବୁଜିଦେବା ଉଚିତ ନୁହେଁ । ପୃଥିବୀର ଅନ୍ୟସବୁ ଅଞ୍ଚଳରୁ ବିଚ୍ଛିନ୍ନ ହୋଇ ସ୍ୱାବଲମ୍ବୀ ଗ୍ରାମ୍ୟଜୀବନ ଯାପନ କରିବା କୌଣସି ପ୍ରଗତି ଲାଗି ଅନୁକୂଳ ନୁହେଁ । ଅଧିକରୁ ଅଧିକ ଦେଶ ବା ଜାତିସହଯୋଗରେ ହିଁ ଉନ୍ନତି ଓ ପ୍ରଗତି ହୁଏ । ଜଣେ ବ୍ୟକ୍ତି ବା ଗୋଟିଏ ଗୋଷ୍ଠୀ ଯେତେ ଅଧିକ ଆପଣା ବା ତାହା ଭିତରେ ଆବଦ୍ଧ ହୋଇ ରହିବ, ସେତେ ବେଶି ସେ ବା ଗୋଷ୍ଠୀ ସ୍ୱାର୍ଥାନ୍ୱେଷୀ, ସ୍ୱାର୍ଥପର ଓ ସଙ୍କୀର୍ଣ୍ଣମନା ହୋଇଯିବାର ବିପଦ ରହିଛି । ଗ୍ରାମବାସୀଙ୍କୁ ସହରବାସୀଙ୍କ ସହ ତୁଳନା କଲେ ସଙ୍କୀର୍ଣ୍ଣମନା ଓ କୁସଂସ୍କାରପୂର୍ଣ୍ଣ ଦେଖାଯାଏ; ତେଣୁ ଗ୍ରାମସମୂହର ସମସ୍ତ ଭଲ ଅଂଶ ସହ ଗ୍ରାମ ପ୍ରଗତିର କେନ୍ଦ୍ର ହୋଇପାରେ ନାହିଁ । ଏଗୁଡ଼ିକ ବରଂ ଅଧମ ଓ ଅନୁନ୍ନତ । ହସ୍ତଶିଳ୍ପ ପ୍ରଧାନ ଅଂଶରେ ସହରରେ ବୃଦ୍ଧି ପାଇଲା । ଅବଶ୍ୟ ବହୁସଂଖ୍ୟକ ତନ୍ତୀ ଗ୍ରାମମାନଙ୍କରେ ବିସ୍ତାର ଲାଭ କରିଥିଲେ ।

ନିଜ ନିଜ ଭିତରେ କୌଣସି ସମ୍ପର୍କ ନ ରଖି ଗ୍ରାମ ସମୂହ ଅଲଗା ଭାବରେ ରହିବାର ପ୍ରକୃତ କାରଣ ହେଉଛି ଗମନାଗମନ ପନ୍ଥାର ଅଭାବ । ଗ୍ରାମମାନଙ୍କୁ ଯୋଗ କରିବାରେ ସେପରି କିଛି ରାସ୍ତା ନ ଥିଲା । ବାସ୍ତବିକ ଏହି ଭଲ ରାସ୍ତା ଅଭାବରୁ ଗ୍ରାମବ୍ୟାପାରରେ ହସ୍ତକ୍ଷେପ କରିବା ଦେଶର କେନ୍ଦ୍ର ସରକାର ପକ୍ଷରେ କଷ୍ଟକର ଥିଲା । ବଡ଼ ଓସାରିଆ ନଈ ନିକଟରେ ବା କୂଳରେ ଥିବା ଗାଁ ଓ ସହରସବୁ ନୌକା ସାହାଯ୍ୟରେ ଯାତାୟାତ ସମ୍ପନ୍ନ କରି ପାରୁଥିଲେ; କିନ୍ତୁ ସବୁ ନଦୀରେ ଏପରି କାରବାର କରି ହୁଏ ନାହିଁ । ଏହି ସହଜ ଯାତାୟାତ ପଥ ଅଭାବ ହେତୁ ଆଭ୍ୟନ୍ତରୀଣ ବାଣିଜ୍ୟରେ ବାଧା ପଡ଼ିଥିଲା ।

ଅନେକ ବର୍ଷ ପର୍ଯ୍ୟନ୍ତ ଇଷ୍ଟ ଇଣ୍ଡିଆ କମ୍ପାନୀ କେବଳ ଧନ କମାଇବାରେ ଏବଂ ତାର ଅଂଶୀଦାରମାନଙ୍କୁ ଲଭ୍ୟାଂଶ ଦେବାରେ ଲାଗିଲା । ସେମାନେ ରାସ୍ତାରେ ଖୁବ୍ କମ୍ ଖର୍ଚ୍ଚ କଲେ ଏବଂ ଶିକ୍ଷା, ପରିଷ୍କାର ପରିଚ୍ଛନ୍ନତା, ହାସପାତାଲ ଓ ଯୋଗାଯୋଗ କାମରେ ଆଦୌ ଖରଚ କଲେ ନାହିଁ । କିନ୍ତୁ ପରେ ଯେତେବେଳେ ଇଂରେଜମାନେ କଞ୍ଚାମାଲ ଖରିଦ କରିବାରେ ଓ ବିଳାତି କଳତିଆରି ଜିନିଷ ବିକ୍ରୀ କରିବାରେ ମନୋଯୋଗ ଦେଲେ, ସେତେବେଳେ ଯାତାୟାତ ପଥ ସମ୍ବନ୍ଧରେ ଅଲଗା ନୀତି ଗ୍ରହଣ କରାଗଲା । ବୃଦ୍ଧି ପାଉଥିବା ବିଦେଶୀ ବେପାର ଲାଗି ଭାରତର ସମୁଦ୍ର ଉପକୂଳରେ ନୂତନ ସହରସବୁ ଗଢ଼ିଉଠିଲା । ବମ୍ବେ, କଲିକତା, ମାନ୍ଦ୍ରାଜ ଏବଂ ପରେ କରାଚୀ—ଏହି ସହରସବୁ ତୁଳା ପ୍ରଭୃତି କଞ୍ଚାମାଲ ବିଦେଶକୁ ପଠାଇବା ନିମନ୍ତେ ସଂଗ୍ରହ କଲେ ଏବଂ ଭାରତରେ ବାଣ୍ଟିବା ଓ ବିକ୍ରୀ କରିବା ନିମନ୍ତେ ବିଦେଶରୁ ବିଶେଷତଃ ଇଂଲଣ୍ଡରୁ କଳତିଆରି ଜିନିଷ ଆଣିଲେ । ପାଶ୍ଚାତ୍ୟର ବଡ଼ ବଡ଼ ଶିଳ୍ପୋନ୍ନତ ସହର; ଯଥା—ଲିଭରପୁଲ, ମାଞ୍ଚେଷ୍ଟର, ବର୍ମିଂହାମ ଓ ସେଫିଲ୍ଡଠାରୁ ଏହି ନୂତନ ସହରଗୁଡ଼ିକ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ଓ ଇଉରୋପର ସହରଗୁଡ଼ିକ ଜିନିଷ ତିଆରି କେନ୍ଦ୍ର । ବଡ଼ ବଡ଼ କାରଖାନା ଏଠି ମାଲ ଉତ୍ପନ୍ନ କରନ୍ତି ଏବଂ ସେଠା ବନ୍ଦର ଦେଇ ଜିନିଷ ପଠାଯାଏ । ନୂତନ ଭାରତୀୟ ସହରମାନଙ୍କରେ କିଛି ଉତ୍ପନ୍ନ ହେଉ ନ ଥିଲା । ସେଗୁଡ଼ିକ ବିଦେଶୀ ବେପାରର ଗୋଦାମ ଓ ବିଦେଶୀ ଶାସନର ଚିହ୍ନ ମାତ୍ର ।

ମୁଁ ତତେ କହିଛି, ବ୍ରିଟିଶ ନୀତି ଯୋଗୁଁ ଭାରତ ଅଧିକରୁ ଅଧିକ ଗ୍ରାମୀଣ ହୋଇଗଲା ଏବଂ ଲୋକେ ସହର ଛାଡ଼ି ଗ୍ରାମ ଓ କ୍ଷେତ ଉପରେ ନିର୍ଭର କଲେ । ଏହା ସତ୍ତ୍ୱେ ଏବଂ ଏହି ପଦ୍ଧତିରେ କୌଣସି ପ୍ରକାର ବାଧା ନ ପହଞ୍ଚାଇ ସମୁଦ୍ରକୂଳରେ ଏହି ନୂତନ ସହରଗୁଡ଼ିକ ଗଢ଼ି ଉଠିଲା । ଏଗୁଡ଼ିକ ଶ୍ରେଷ୍ଠ ସହର ଓ ନଗର ବିନିମୟରେ ବୃଦ୍ଧି ପାଇଲା, ଗ୍ରାମ ନଷ୍ଟ କରି ନୁହେଁ । ଗ୍ରାମ୍ୟକରଣର ସାଧାରଣ ଗତି ମଧ୍ୟ ଚାଲିଥାଏ ।

କଞ୍ଚାମାଲ ସଂଗ୍ରହ ଓ ବିଦେଶୀ ଜିନିଷ ବଣ୍ଟନ କରିବା ଲାଗି କ୍ଷମ ହେବା ନିମନ୍ତେ ସମୁଦ୍ର କୂଳସ୍ଥିତ ଏହି ସହରଗୁଡ଼ିକର ଗ୍ରାମଗହଳ ସହିତ ସମ୍ପର୍କ ହେବା ଦରକାର । ଆଉ କେତେକ ସହର ପ୍ରଦେଶମାନଙ୍କର ରାଜଧାନୀ ବା ଶାସନର କେନ୍ଦ୍ରରୂପେ ଗଢ଼ିଉଠିଲା । ଏହିରୂପେ ଭଲ ଯାତାୟାତ ପଥ ଜରୁରୀ ହୋଇ ପଡ଼ିବାରୁ ରାସ୍ତା ତିଆରି ହେଲା ଏବଂ ତାପରେ ରେଳବାଇ ଆସିଲା । ୧୮୫୩ରେ ପ୍ରଥମେ ବମ୍ବେରେ ରେଳ ତିଆରି ହେଲା ।

ଭାରତୀୟ ହସ୍ତଶିଳ୍ପର ଧ୍ୱଂସ ଦ୍ୱାରା ଯେଉଁ ପରିବର୍ତ୍ତିତ ଅବସ୍ଥା ସୃଷ୍ଟି ହେଲା, ତାକୁ ଗ୍ରହଣ କରି ରହିବା ପୁରାତନ ଗ୍ରାମସମୂହଙ୍କ ପକ୍ଷରେ ବଡ଼ କଠିନ ବୋଧ ହେଲା; କିନ୍ତୁ ଯେତେବେଳେ ଅଧିକ ଭଲ ରାସ୍ତା ଓ ରେଳବାଇ ହେଲା ଏବଂ ସମଗ୍ର ଦେଶରେ ସେସବୁ ବିସ୍ତାର ଲାଭ କଲା, ସେତେବେଳେ ଦୀର୍ଘକାଳ ଧରି କଷ୍ଟ ରହିଥିବା ପୁରାତନ ଗ୍ରାମସମୂହ

ଶେଷରେ ଭାଙ୍ଗିଗଲା ବା ଶେଷ ପାଇଗଲା । ସାରା ଦୁନିଆ ଆସି ଦୁଆର ମୁହଁରେ ଧକ୍କା ମାରୁଥିଲାବେଳେ ଦୁନିଆରୁ ସମ୍ପର୍କ ତୁଟାଇ ଗ୍ରେଟ ଗ୍ରାମରେ ପ୍ରଜାତନ୍ତ୍ର ରହିପାରିଲା ନାହିଁ । ଗୋଟିଏ ଗ୍ରାମରେ ଜିନିଷ ଦର ବଢ଼ିବା ସଙ୍ଗେ ସଙ୍ଗେ ଅନ୍ୟ ଗ୍ରାମରେ ବି ବଢ଼ିଲା; କାରଣ ସହଜରେ ଗୋଟିଏ ଗ୍ରାମରୁ ଅନ୍ୟ ଗ୍ରାମକୁ ଜିନିଷ ପଠାଯାଇ ପାରିଲା । ବାସ୍ତବିକ ପୃଥିବୀର ଯାତାୟାତ ପଥ ଉନ୍ନତ ହେଲାପରେ କାନାଡ଼ା କିମ୍ବା ଯୁକ୍ତରାଷ୍ଟ୍ର ଆମେରିକାରେ ଗହମ ଦର ବଢ଼ିଲା; ଭାରତ ଗହମର ଦର ବି ବଢ଼ିଲା । ଘଟଣାଚକ୍ରରେ ବାଧା ପାଇ ଏହିରୂପେ ଭାରତୀୟ ଗ୍ରାମ୍ୟ ବ୍ୟବସ୍ଥା ପୃଥିବୀ ମୂଲ୍ୟ ଭିତରକୁ ଟାଣି ହୋଇଗଲା । ଗ୍ରାମରେ ପୁରୁଣା ଆର୍ଥିନୀତିକ ବ୍ୟବସ୍ଥା ଭାଙ୍ଗିପଡ଼ିଲା ଏବଂ ଯେଉଁ ନୂତନ ବ୍ୟବସ୍ଥା କୃଷକ ଉପରେ ବଳ ପ୍ରୟୋଗ କରି ଲଦି ଦିଆଗଲା, ତାହା ଦେଖି ସେ ଚକିତ ହୋଇଗଲା । ଗାଁ ହାଟ ପାଇଁ ଖାଦ୍ୟ ଓ ଅନ୍ୟ ଜିନିଷ ଉତ୍ପନ୍ନ କରିବା ପରିବର୍ତ୍ତେ ସେ ପୃଥିବୀ ବଜାର ପାଇଁ ଜିନିଷ ଉତ୍ପନ୍ନ କରିବାକୁ ଲାଗିଲା । ସେ ପୃଥିବୀର ଉତ୍ପାଦନ ଓ ଦରଦାମ ଘଣ୍ଟାଚକଟାରେ ପଡ଼ିଗଲା ଏବଂ କ୍ରମେ କ୍ରମେ ତଳକୁ ଖସିଲା । ଆଗେ ଶସ୍ୟହାନି ଘଟିଲେ ଭାରତରେ ଦୁର୍ଭିକ୍ଷ ହେଉଥିଲା ଏବଂ ଯାହା ଭରସା ଆଉ କିଛି ନଥାଏ ଓ ଦେଶର ଅନ୍ୟ ଅଞ୍ଚଳରୁ ଖାଦ୍ୟ ଆଣିବାର କିଛି ଉପଯୁକ୍ତ ଉପାୟ ନ ଥାଏ । କିନ୍ତୁ ଏବେ ଏକ ଅଦ୍ଭୁତ ଜିନିଷ ଘଟିଲା । ଯଥେଷ୍ଟ ଥିଲାବେଳେ ଅର୍ଥାତ୍ ଖାଦ୍ୟ ମିଳୁଥିବା ଭିତରେ ହିଁ ଲୋକଙ୍କୁ ଉପାସ କରିବାକୁ ପଡ଼ିଲା । ସ୍ଥାନୀୟ ଅଞ୍ଚଳରେ ଖାଦ୍ୟ ନ ମିଳରେ ରେଲଗାଡ଼ି ବା ଅନ୍ୟ ଦ୍ରୁତଗାମୀ ଯାନଦ୍ୱାରା ଅନ୍ୟ ସ୍ଥାନରୁ ଏହା ଅଣାଯାଇ ପାରିବ । ଖାଦ୍ୟ ରହିଛି, କିନ୍ତୁ କିଣିବା ପାଇଁ ଧନ ନାହିଁ । ଏହିରୂପେ ଖାଦ୍ୟର ଦୁର୍ଭିକ୍ଷ ନୁହେଁ, ଧନର ଦୁର୍ଭିକ୍ଷ ପଡ଼ିଲା । ଆହୁରି ଅଦ୍ଭୁତ କଥା ଯେ ବେଳେବେଳେ ଏହି ଅଧିକ ପ୍ରକାର କୃଷି ହିଁ କୃଷକର ଦୁର୍ଦ୍ଦଶା ବଢ଼ାଏ; ଗତ ତିନି ବର୍ଷର ଦୁର୍ଗତିରେ ଆମେ ତ ଏହା ଦେଖି ପାରିଛେ ।

ସୁତରାଂ ପୁରୁଣା ଗ୍ରାମ ବ୍ୟବସ୍ଥା ଲୋପ ପାଇଲା ଏବଂ ପଞ୍ଚାୟତ ଆଉ ତିଷ୍ଠି ପାରିଲା ନାହିଁ । ଆମର ଏଥିପାଇଁ ଦୁଃଖିତ ହେବା ଉଚିତ ନୁହେଁ; କାରଣ ଏହି ପ୍ରଥାର ବେଳ କାଳ ଗଡ଼ି ଯାଇଥିଲା ଏବଂ ଆଧୁନିକ ପରିସ୍ଥିତିରେ ଏହା ଖାପ ଖାଇଲା ନାହିଁ । କିନ୍ତୁ ପୁଣି ଥରେ ଏହି ଅବସ୍ଥା ଅନୁସାରେ ନୂତନ ଗ୍ରାମ ବ୍ୟବସ୍ଥାର ପୁନର୍ଜନ୍ମ ନ ହୋଇ ଏହା ଭାଙ୍ଗିପଡ଼ିଲା । ଏହି ପୁନର୍ଗଠନ ଓ ପୁନଃସ୍ଥାପନ କରିବାର କାର୍ଯ୍ୟ ଏବେ ସୁଦ୍ଧା ଆମ ଉପରେ ରହିଛି ।

ଆମର ଏ ପର୍ଯ୍ୟନ୍ତ ଜମି ଓ କୃଷକର ବ୍ରିଟିଶ ନୀତି ଫଳରେ କି ପରିଣତି ଘଟିଲା, ତାହା ଆଲୋଚନା କଲେ, ପ୍ରକୃତରେ ଇଷ୍ଟଇଣ୍ଡିଆ କମ୍ପାନୀର ଭୂମି ସମ୍ବନ୍ଧୀୟ ନୀତି କଅଣ ଥିଲା, ତାହା ଆଲୋଚନା କରିବା — ଅର୍ଥାତ୍ ଯେଉଁ ନୀତି ପ୍ରତ୍ୟକ୍ଷରୂପେ କୃଷକ ଓ ଭୂମି ସହିତ ସଂପୃକ୍ତ ଥିବା ଅନ୍ୟମାନଙ୍କୁ ସ୍ପର୍ଶ କରୁଥିଲା । ମୋର ଆଶଙ୍କା ହୁଏ, ଏହା ଏକ ଜଟିଳ ବ୍ୟାପାର ଏବଂ ନୀରସ ମଧ୍ୟ; କିନ୍ତୁ ଆମ ଦେଶ ଏହି ଗରିବ ଚାଷୀଙ୍କଦ୍ୱାରା ପୂର୍ଣ୍ଣ

ଏବଂ କିଏ ସେମାନଙ୍କୁ କଷ୍ଟ ଦେଉଛି, ଆମେ କିପରି ସେମାନଙ୍କର ସେବା କରିପାରିବା, ତାଙ୍କ ଅବସ୍ଥା ଉନ୍ନତ କରିପାରିବା—ଏହା ବୁଝିବା ଲାଗି ଆମର କିଛି ଉଦ୍ୟମ କରିବା ଦରକାର ।

ଆମେ ଜମିଦାର, ତାଲୁକଦାର ଓ ତାଙ୍କ ପ୍ରଜାଙ୍କ କଥା ଶୁଣୁ; ଅନେକ ପ୍ରକାର ପ୍ରଜା ବି ଅଛନ୍ତି; ସିକମ ପ୍ରଜା ବି ଅଛନ୍ତି ଅର୍ଥାତ୍ ପ୍ରଜାର ପ୍ରଜା ବି ଅଛନ୍ତି । ଏହିସବୁ ଜଟିଳତା ଭିତରକୁ ମୁଁ ତତେ ନେବି ନାହିଁ । ବ୍ୟାପକ ଭାବରେ କହିଲେ ଆଜିକାଲିକା ଜମିଦାର ହେଉଛନ୍ତି ମଧ୍ୟବର୍ତ୍ତୀ ଲୋକ—ଅର୍ଥାତ ସେମାନେ ଚାଷୀ ଓ ସରକାର ମଝିରେ ଅଛନ୍ତି । ଚାଷୀ ହେଉଛି ତାଙ୍କର ପ୍ରଜା, ସେ ତାଙ୍କୁ ଖଜଣା ଦିଏ ଅଥବା ଜମିଦାର ଅଧିକାରରେ ଅଛି ବୋଲି ଧରି ହେଉଥିବା ଜମି ଚାଷ କରିବା ହେତୁ ତାକୁ ଟିକସ ଦେବାକୁ ପଡ଼େ । ଏହିରୂପେ ଜମିରୁ ଉତ୍ପନ୍ନ ଜିନଷ ତିନି ଭାଗରେ ବିଭକ୍ତ କରାଯାଏ, ଗୋଟିଏ ଅଂଶ ଜମିଦାର ନିଏ, ଅନ୍ୟଟି ସରକାର ଏବଂ ତୃତୀୟ ଭାଗଟି ଚାଷ କରୁଥିବା ପ୍ରଜା ପାଖରେ ରହେ । ଏହିସବୁ ଭାଗ ସମାନ ବୋଲି ଭାବି ନାହିଁ । ଚାଷୀ ଜମି ଚାଷ କରେ ଏବଂ ତାର ଶ୍ରମ ହେତୁ ହଳ କରିବା, ବୁଣିବା ଓ ଅନ୍ୟ ବାରି ପ୍ରକାର କାମ ହେତୁ ଜମିରେ କିଛି ଉତ୍ପନ୍ନ ହୁଏ । ସୁତରାଂ ତାର ଶ୍ରମର ଫଳ ସେ ଭୋଗିବାର କଥା । ସରକାର ସମଗ୍ର ସମାଜର ପ୍ରତିନିଧିତ୍ୱ କରୁଥିବାରୁ ପ୍ରତ୍ୟେକର ସ୍ୱାର୍ଥ ଦୃଷ୍ଟିରୁ ତାକୁ ମହତ୍ କାମସବୁ କରିବାକୁ ପଡ଼େ । ଏହାର ସମସ୍ତ ପିଲାଙ୍କୁ ଶିକ୍ଷାଦେବା ଉଚିତ, ଭଲ ରାସ୍ତା ଓ ଯାତାୟାତର ଅନ୍ୟ ପନ୍ଥା ତିଆରି କରିବା ଦରକାର; ହାସପାତାଲ ପରିଷ୍କାର ପରିଚ୍ଛନ୍ନ ରଖିବାର ବ୍ୟବସ୍ଥା, ପାର୍କ, ଯାଦୁଘର ଏବଂ ଆହୁରି ଅନେକ ଅନ୍ୟ ଜିନଷ ରଖିବା ଉଚିତ । ଏଥିପାଇଁ ଧନ ଆବଶ୍ୟକ; ତେଣୁ ଜମିର ଉତ୍ପନ୍ନ ଶସ୍ୟରୁ ଏହା ଏକ ଭାଗ ନେବା ନ୍ୟାଯ୍ୟ । ଭାଗଟା କେତେ ହେବା ଉଚିତ, ସେ ଅଲଗା ପ୍ରଶ୍ନ । ଚାଷୀ ସରକାରକୁ ଯାହା ଦିଏ, ତାହା ସେ ଫେରିପାଇବା, ଅଥବା ତାର ସେବା ପାଇଁ, ଶିକ୍ଷା, ରାସ୍ତା ପରିଷ୍କାର ପରିଚ୍ଛନ୍ନତା ଆଦି ପାଇଁ ବ୍ୟୟିତ ହେବା ଭାବରେ ତାହା ପାଖକୁ ଫେରିଆସିବା ଉଚିତ । ବର୍ତ୍ତମାନ ଅବସ୍ଥାରେ ଭାରତବର୍ଷରେ ସରକାର ଏକ ବିଦେଶୀ ସରକାରର ପ୍ରତିନିଧି ରୂପେ ରହିଛି ଏବଂ ସେହି ହେତୁ ଆମେ ସରକାରକୁ ଘୃଣା କରୁ; କିନ୍ତୁ ଉପଯୁକ୍ତ ରୂପେ ସଂଗଠିତ ଓ ସ୍ୱାଧୀନ ଦେଶରେ ଜନତା ହିଁ ହେଉଛି ସରକାର ।

ସୁତରାଂ ଜମିରୁ ଉତ୍ପନ୍ନ ଦ୍ରବ୍ୟର ଦୁଇ ଭାଗ ଶେଷ କରିଛେ—ଏକ ଭାଗ ଚାଷୀ ପାଏ ଏବଂ ଅନ୍ୟ ଭାଗ ସରକାରକୁ ଯାଏ । ଆମେ ଦେଖିଛେ, ତୃତୀୟ ଭାଗ ଜମିଦାର ବା ମଧ୍ୟବର୍ତ୍ତୀ ଲୋକ ହାତକୁ ଯାଏ । ସେ କିଏ କରି ଏହା ପାଏ ଏବଂ କାହିଁକି ବା ସେ ଏଥିଲାଗି ଉପଯୁକ୍ତ ? କିଛି କରେ ନାହିଁ ଏବଂ ସେ ପ୍ରକୃତରେ କିଛି ନୁହେଁ । ଉତ୍ପନ୍ନ କାର୍ଯ୍ୟରେ କୌଣସି ପ୍ରକାର ସାହାଯ୍ୟ ନ ଦେଇ ସେ ଉତ୍ପନ୍ନ ଜିନଷର ଏକ ବଡ଼ ଭାଗ ନିଜ

ଖଜଣାରୂପେ ଦିଏ । ସୁତରାଂ ସେ ଗୋଟିଏ ଘୋଡ଼ାଗାଡ଼ିରେ ପଞ୍ଚମ ଚକ ହୁଏ—ସେମାନେ ଯେ କେବଳ ଅନାବଶ୍ୟକ, ତାହା ନୁହେଁ, ଜମି ଉପରେ ପ୍ରକୃତ ବୋଝ ଓ ଅନ୍ତରାୟ । ଏହି ଅନାବଶ୍ୟକ ବୋଝରେ ଚାଷୀକୁ ହିଁ ସର୍ବାପେକ୍ଷା ଅଧିକ କଷ୍ଟ ଭୋଗିବାକୁ ପଡ଼ିବା ସ୍ୱାଭାବିକ; ସେ ତାର ରୋଜଗାରର ଏକ ଅଂଶ ଜମିଦାରକୁ ଦେବାକୁ ପଡ଼େ । ଏହି କାରଣରୁ ଅନେକ ଲୋକ ମନେ କରନ୍ତି ଯେ ଜମିଦାର ବା ତାଲୁକଦାର ଏକ ଅତ୍ୟନ୍ତ ଅନାବଶ୍ୟକ ମଧ୍ୟବର୍ତ୍ତୀ ଲୋକ ଏବଂ ଜମିଦାର ପ୍ରଥା ଖରାପ ଓ ପରିବର୍ତ୍ତିତ ହେବା ଉଚିତ । ତାହାହେଲେ ମଧ୍ୟବର୍ତ୍ତୀ ଲୋକ ଉଭେଇଯିବ । ଆଜିକାଲି ଭାରତରେ ମୁଖ୍ୟଭାବରେ ତିନୋଟି ପ୍ରଦେଶରେ ବଙ୍ଗଳା, ବିହାର (ଓଡ଼ିଶା ସେତେବେଳକୁ ବିହାର ଅନ୍ତର୍ଭୁକ୍ତ ଥିଲା— ଅନୁବାଦକ) ଓ ଯୁକ୍ତ-ପ୍ରଦେଶରେ ଜମିଦାରୀ ପ୍ରଥା ଚଳୁଛି ।

ଅନ୍ୟ ପ୍ରଦେଶମାନଙ୍କରେ କୃଷକ ପ୍ରଜା ସାଧାରଣତଃ ରାଜସ୍ୱ ସିଧା ସରକାରକୁ ଦିଏ ଏବଂ ସେଠି ମଧ୍ୟବର୍ତ୍ତୀ ଲୋକ ନାହାନ୍ତି । ଏହିମାନଙ୍କୁ କେଉଁଠି କୃଷକ ସ୍ୱତ୍ୱାଧିକାରୀ ବୋଲି କହନ୍ତି, ପଞ୍ଜାବ ପରି ପ୍ରଦେଶରେ ଜମିଦାର ବୋଲି କହନ୍ତି; କିନ୍ତୁ ସେମାନେ ବଙ୍ଗଳା, ବିହାର ଏବଂ ଯୁକ୍ତ-ପ୍ରଦେଶର ବଡ଼ ବଡ଼ ଜମିଦାରଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ ।

ତୋତେ ଏ ଲମ୍ବା ବକ୍ତୃତା ଦେଲା ପରେ ମୁଁ କହିବାକୁ ଚାହେଁ ଯେ, ବଙ୍ଗଳା, ବିହାର ଓ ଯୁକ୍ତ-ପ୍ରଦେଶରେ ଯେଉଁ ଜମିଦାରୀ ପ୍ରଥା ଚଳୁଛି ଏବଂ ଯାହା ବିଷୟରେ ଆମେ ଆଜିକାଲି ଏତେ କଥା ଶୁଣୁଛୁ, ଏହା ଭାରତରେ ସମ୍ପୂର୍ଣ୍ଣ ନୂଆ କଥା । ଏହା ଇଂରେଜମାନଙ୍କ ଦ୍ୱାରା ସୃଷ୍ଟି ହୋଇଛି । ସେମାନେ ଆସିବା ପୂର୍ବରୁ ଏହା ଏଠାରେ ନ ଥିଲା ।

ପୁରାକାଳରେ ଏପରି ଜମିଦାର, ଜମି ମାଲିକ ବା ମଧ୍ୟବର୍ତ୍ତୀ ଲୋକ ନ ଥିଲେ । ଚାଷୀମାନେ ତାଙ୍କ ଉତ୍ପନ୍ନ ଦ୍ରବ୍ୟର ଏକ ଭାଗ ସିଧା ସରକାରକୁ ଦେଉଥିଲେ । ବେଳେ ବେଳେ ଗ୍ରାମର ସମସ୍ତ ଚାଷୀଙ୍କ ତରଫରୁ ଗ୍ରାମପଞ୍ଚାୟତଗୁଡ଼ିକ କାର୍ଯ୍ୟ କରୁଥିଲା । ଆକବରଙ୍କ ଅମଳରେ ତାଙ୍କର ବିଖ୍ୟାତ ଅର୍ଥମନ୍ତ୍ରୀ ରାଜା ତୋଡ଼ରମଲ୍ଲ ଅତି ଯତ୍ନର ସହିତ ଜମିଜମା ବନ୍ଦୋବସ୍ତ କରାଇଥିଲେ । ସରକାର ବା ରାଷ୍ଟ୍ର ଚାଷୀଠାରୁ ତାର ଉତ୍ପନ୍ନ ଦ୍ରବ୍ୟର ଏକ-ତୃତୀୟାଂଶ ନେବ—ଏହା ଚାଷୀ ଚାହିଁଲେ ପଇସାରୂପେ ଦେଇପାରେ ମୋଟାମୋଟି ଟିକସ ବେଶି ନ ଥିଲା ଏବଂ କ୍ରମେ ତାହା ବଢ଼ିଲା । ଏହା ପରେ ମୋଗଲ ସାମ୍ରାଜ୍ୟର ପତନ ହେଲା । କେନ୍ଦ୍ର ସରକାର ଦୁର୍ବଳ ହୋଇପଡ଼ିଲା ଏବଂ ଠିକ୍‌ରୂପେ ଟିକସ ଆଦାୟ କରିପାରିଲା ନାହିଁ । ତାପରେ ଆଦାୟର ଏକ ନୂଆ ଉପାୟ ବାହାରିଲା । ଟିକସ କଲେକ୍ଟର ନିଯୁକ୍ତ ହେଲେ; ସେମାନେ ଦରମା ପାଇବେ ନାହିଁ; କିନ୍ତୁ ଗୁମାସ୍ତା ଭାବରେ ଯାହା ଆଦାୟ କରିବେ, ତାହାର ଏକ ଦଶମାଂଶ ନିଜ ପାଇଁ ରଖିପାରିବେ । ଏମାନଙ୍କୁ ରାଜସ୍ୱଚାଷୀ, ବେଳେ ବେଳେ ଜମିଦାର ବା ତାଲୁକଦାର ବୋଲି କହନ୍ତି; କିନ୍ତୁ ମନେରଖ, ଆଜି ତାର ଯାହା ଅର୍ଥ ହୋଇଛି, ଏହାର ଅର୍ଥ ସେପରି ନ ଥିଲା ।

କେନ୍ଦ୍ର ସରକାରର ପତନ ହେବାରୁ ଏହି ପ୍ରଥା ଅଧିକ ଖରାପ ଆଡ଼କୁ ଗତି କଲା । ଏପରି ହେଲା ଯେ, କୌଣସି କୌଣସି ଅଞ୍ଚଳ ରାଜସ୍ୱ ସକାଶେ ନିଲାମ ଡାକରା ହେଲା ଏବଂ ସବୁଠାରୁ ଯେ ବେଶି ଡାକପାରିଲା, ତାହା ପାଇପାରିଲା । ଏହାର ଅର୍ଥ, ଯେଉଁ ଲୋକ ଏହି କାର୍ଯ୍ୟ ପାଇଲା, ସେ ଜଣେ ଦୁଃଖୀ କୃଷୀଠାରୁ ଯେତେ ପାରେ, ସେତେ ଆଦାୟ କରିବା ପାଇଁ ତାର ସ୍ୱାଧୀନତା ରହିଲା ଏବଂ ସେ ଏହି ସ୍ୱାଧୀନତାକୁ ପୁରାପୁରି ପ୍ରୟୋଗ କଲା । କ୍ରମେ ଏହି ରାଜସ୍ୱ କୃଷୀମାନେ ବଂଶାନୁକ୍ରମେ ଅଧିକାରୀ ହୋଇଗଲେ ଏବଂ ସରକାର ଦୁର୍ବଳ ଥିବାରୁ ତାଙ୍କୁ ତଡ଼ି ପାରିଲା ନାହିଁ ।

ପ୍ରକୃତରେ ଦେଖିବାକୁ ହେଲେ ମୋଗଲ ସମ୍ରାଟଙ୍କ ପକ୍ଷରୁ ରାଜସ୍ୱ କୃଷୀ ରୂପେ ବଙ୍ଗଳାରେ କାର୍ଯ୍ୟ କରିବା ନିମନ୍ତେ ପ୍ରଥମେ ଇଷ୍ଟଇଣ୍ଡିଆ କମ୍ପାନୀ ତଥାକଥିତ ଆଇନସଙ୍ଗତ ଉପାଧି ପାଇଥିଲା । ୧୭୬୫ରେ କମ୍ପାନୀକୁ ଏହି ଦେଓ୍ୱାନୀ ଦିଆଯାଇଥିଲା । ଏହିରୂପେ ଦିଲ୍ଲୀରେ ଥିବା ମୋଗଲ ସମ୍ରାଟଙ୍କର ଏହା ଏକ ପ୍ରକାର ଦେଓ୍ୱାନ ହେଲା; କିନ୍ତୁ ଏ ସବୁ ହେଲା କାହାଣୀ । ୧୭୫୭ ପଲାସି ଯୁଦ୍ଧ ପରେ ଇଂରେଜମାନେ ବଙ୍ଗଳାରେ ପ୍ରାଧାନ୍ୟ ବିସ୍ତାର କଲେ ଏବଂ ବିଚରା ମୋଗଲ ସମ୍ରାଟର କୌଣସିଠାରେ ଅଳ୍ପ ବା କିଛି କ୍ଷମତା ରହିଲା ନାହିଁ ।

ଇଷ୍ଟଇଣ୍ଡିଆ କମ୍ପାନୀ ଓ ତାର କର୍ମଚାରୀଗଣ ଅତ୍ୟନ୍ତ ଲୋଭୀ । ତେବେ ତ ମୁଁ କହୁଛି, ସେମାନେ ବଙ୍ଗଳା ଟେଜେରୀ ଖାଲି କରିଦେଲେ ଏବଂ ଯେଉଁଠି ଧନ ଦେଖିଲେ, ସେଠି ହାତ ପକାଇଲେ । ସେମାନେ ବଙ୍ଗଳା ଓ ବିହାରକୁ ଶୋଷଣ କରି ଅତ୍ୟଧିକ ଭୂରାଜସ୍ୱ ଆଦାୟ କରିବାକୁ ଚେଷ୍ଟା କଲେ । ଛୋଟ ଛୋଟ ରାଜସ୍ୱ କୃଷୀ ସୃଷ୍ଟି କଲେ ଏବଂ ସେମାନଙ୍କ-ଠାରୁ ଅତ୍ୟନ୍ତ ଅଧିକ ରାଜସ୍ୱ ଦାବୀକଲେ । ଅଳ୍ପଦିନ ଭିତରେ ଭୂରାଜସ୍ୱ ଦୁଇ ଗୁଣ କରି ଦିଆଗଲା ଏବଂ ନିର୍ଦ୍ଦୟ ଭାବରେ ଆଦାୟ କରାଗଲା । ଯେ ନିୟମିତ ରୂପେ ନ ଦେଲା ତାକୁ ବାହାର କରି ଦିଆଯାଇଥିଲା । ରାଜସ୍ୱ କୃଷୀ ବା ମହାଜନମାନେ କୃଷୀ ପ୍ରତି ଅତ୍ୟନ୍ତ ନିଷ୍ଠୁର ଓ ହିଂସ୍ର ବ୍ୟବହାର କଲେ । କୃଷୀମାନଙ୍କଠାରୁ ଅତିରିକ୍ତ କର ଆଦାୟ କଲେ ଓ ସେମାନଙ୍କୁ ଜମିରୁ ବେଦଖଲ କଲେ । ପଲାସି ଯୁଦ୍ଧର ୧୨ ବର୍ଷ ଭିତରେ ଏବଂ ଦେଓ୍ୱାନୀ ଦେବାର ଚାରି ବର୍ଷଭିତରେ ଇଷ୍ଟଇଣ୍ଡିଆ କମ୍ପାନୀର ଏହି ନୀତି । ତା ସାଙ୍ଗକୁ ପୁଣି ବର୍ଷା ନହେବାରୁ ବଙ୍ଗଳା ଓ ବିହାରରେ ଭୀଷଣ ଦୁର୍ଭିକ୍ଷ ପଡ଼ିଲା—ସମସ୍ତ ଲୋକସଂଖ୍ୟାର ଏକତୃତୀୟାଂଶ ପ୍ରାଣ ହରାଇଲେ । ମୁଁ ପୂର୍ବରୁ ଏକ ଚିଠିରେ ୧୭୬୯-୭୦ର ଏହି ଦୁର୍ଭିକ୍ଷ ଉଲ୍ଲେଖ କରିଛି ଏବଂ ତେବେ କହୁଛି ଯେ ଏହା ସତ୍ତ୍ୱେ ଇଷ୍ଟ ଇଣ୍ଡିଆ କମ୍ପାନୀ ପୂରା ରାଜସ୍ୱ ଅସୁଲ କରୁଥିଲା । କମ୍ପାନୀର କର୍ମଚାରୀଙ୍କ ଅଲୌକିକ କର୍ମକୁଶଳତା ଉଲ୍ଲେଖଯୋଗ୍ୟ । ଲକ୍ଷ ଲକ୍ଷ ସଂଖ୍ୟାରେ ପୁରୁଷ ନାରୀ ଓ ପିଲା ମଲେ; କିନ୍ତୁ ସେମାନେ ମୃତ ଶବରୁ ସୁଦ୍ଧା ଟଙ୍କା ଆଦାୟ କରିବାରେ ସମର୍ଥ ହେଉଥିଲେ—ତାହାହେଲେ ଇଂଲଣ୍ଡର ଧନୀ ଲୋକଙ୍କୁ ବର୍ଦ୍ଧିତ ଲାଭାଂଶ ଦେଇ ପାରିବେ ।

ଏହି ଅବସ୍ଥା ଆହୁରି କୋଡ଼ିଏ ବର୍ଷ ବା ଅଧିକା ବେଳ ପର୍ଯ୍ୟନ୍ତ ଚାଲିଲା ଏବଂ ଦୁର୍ଭିକ୍ଷ ହେଲେ ସୁଦ୍ଧା ଇଷ୍ଟଇଣ୍ଡିଆ କମ୍ପାନୀ ଟଙ୍କା ଅସୁଲିବାରେ ଲାଗିଲା ଏବଂ ସୁନ୍ଦର ବଙ୍ଗଳା ପ୍ରଦେଶ ଧ୍ୱଂସ ହୋଇଗଲା । ଏପରିକି ବଡ଼ ବଡ଼ ମକଦ୍ଦମ ମଧ୍ୟ ଭିକାରୀରେ ପରିଣତ ହେଲେ ଏବଂ ଚାଷୀଙ୍କର ଦୁର୍ଦ୍ଦଶା କିପରି ଥିଲା, ଏଥିରୁ ଅନୁମାନ କରାଯାଇପାରେ । ଅବସ୍ଥା ଏପରି ଖରାପ ହେଲା ଯେ ଇଷ୍ଟଇଣ୍ଡିଆ କମ୍ପାନୀର ଶେଷରେ ନିଦ ଭାଙ୍ଗିଲା ଏବଂ ଏହାର ପ୍ରତିକାର କରିବା ପାଇଁ ଉଦ୍ୟମ କଲା । ସେତେବେଳର ଗଭର୍ଣ୍ଣର ଜେନେରାଲ ଲର୍ଡ କର୍ଣ୍ଣୱାଲିସ ଇଂଲଣ୍ଡର ଜଣେ ବଡ଼ ଜମିଦାର ଏବଂ ବିଲାତି ଢଙ୍ଗରେ ଭାରତରେ ବି ଜମିଦାର ସୃଷ୍ଟି କରିବାକୁ ଚାହିଁଲେ । ମକଦ୍ଦମମାନେ କେତେ ଦିନ ହେଲା ଜମିଦାର ଭାବରେ କାରବାର କରୁଥାଆନ୍ତି । କର୍ଣ୍ଣୱାଲିସ ସେମାନଙ୍କ ସହିତ ଗୋଟାଏ ବନ୍ଦୋବସ୍ତ କଲେ ଏବଂ ସେହିପରି ବ୍ୟବହାର କଲେ । ଏହା ଫଳରେ ପ୍ରଥମ ଥର ପାଇଁ ଭାରତରେ ଏହି ନୂତନ ପ୍ରକାର ମଧ୍ୟବର୍ତ୍ତୀ ଲୋକ ସୃଷ୍ଟି ହେଲେ ଏବଂ ଚାଷୀମାନେ କେବଳ ପ୍ରଜା ପାଲଟିଲେ । ଇଂରେଜମାନେ ଏହି ଜମିଦାରମାନଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ ରଖିଲେ ଏବଂ ଚାଷୀଙ୍କ ପ୍ରତି ମନଇଚ୍ଛା ବ୍ୟବହାର କରିବା ପାଇଁ ତାଙ୍କୁ ଛାଡ଼ିଦେଲେ । ଜମିଦାରର ଲୋଲୁପ ଦୃଷ୍ଟିରୁ ଗରିବ ପ୍ରଜା ରକ୍ଷା ପାଇବାର ଆଉ କିଛି ବାଟ ନ ଥିଲା ।

୧୭୯୩ରେ ଲର୍ଡ କର୍ଣ୍ଣୱାଲିସଙ୍କର ବଙ୍ଗଳା ଓ ବିହାରର ଜମିଦାରମାନଙ୍କ ସହ ଏହି ବନ୍ଦୋବସ୍ତକୁ "ଚିରସ୍ଥାୟୀ ବନ୍ଦୋବସ୍ତ" କୁହନ୍ତି । "ବନ୍ଦୋବସ୍ତ ବା ସେଟଲ୍‌ମେଣ୍ଟ" ଅର୍ଥ ହେଉଛି, ପ୍ରତ୍ୟେକ ଜମିଦାର ସରକାରକୁ କେତେ ଭୂରାଜସ୍ୱ ଦେବ, ତାର ପରିମାଣ ନିର୍ଣ୍ଣୟ କରିବା । ବଙ୍ଗଳା ଓ ବିହାରରେ ଏହା ସ୍ଥାୟୀ ଭାବରେ ଧାର୍ଯ୍ୟ ହୋଇଗଲା । ଏଥିରେ ପରିବର୍ତ୍ତନ ହୋଇପାରେନା । ପରେ ଯେତେବେଳେ ବ୍ରିଟିଶ ଶାସନ ଉତ୍ତର-ପଶ୍ଚିମରେ ଆଉଧ ଓ ଆଗ୍ରାଆଡ଼କୁ ବିସ୍ତାର ଲାଭ କଲା, ସେତେବେଳେ ବ୍ରିଟିଶ ନୀତିର ପରିବର୍ତ୍ତନ ହେଲା । ସେମାନେ ବଙ୍ଗଳା ପରି ସ୍ଥାୟୀ ବନ୍ଦୋବସ୍ତ ନ କରି ଜମିଦାରମାନଙ୍କ ସହ ଅସ୍ଥାୟୀ ବନ୍ଦୋବସ୍ତ କଲେ । କିଛି ଦିନ ପରେ ସାଧାରଣତଃ ତିରିଶି ବର୍ଷରେ ଥରେ ଏହି ଅସ୍ଥାୟୀ ବନ୍ଦୋବସ୍ତ ପୁନର୍ବାର କରାଯାଏ ଏବଂ କେତେ ଭୂରାଜସ୍ୱ ଦିଆଯିବ, ତାହା ନୂଆ କରି ସ୍ଥିର ହୁଏ । ସାଧାରଣତଃ ପ୍ରତି ବନ୍ଦୋବସ୍ତରେ ଏହା ବଢ଼େ ।

ଦକ୍ଷିଣରେ ମାନ୍ଦ୍ରାଜ ଓ ତା ଚାରିଦିଗରେ ଜମିଦାରୀ ପ୍ରଥା ନାହିଁ । ଏଠି କୃଷକ ଭୂସ୍ୱତ୍ୱାଧିକାରୀ ହୋଇ ରହିଛି ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀ କୃଷକମାନଙ୍କ ସହ ପ୍ରତ୍ୟକ୍ଷ ଭାବରେ ବନ୍ଦୋବସ୍ତ କରିଥିଲା । ଏଠି ଓ ଅନ୍ୟ ସବୁ ଅଞ୍ଚଳରେ କମ୍ପାନୀ କର୍ମଚାରୀଙ୍କ ଅତୃପ୍ତ ଲାଲସା ଯୋଗୁଁ ଅତି ଉଚ୍ଚ ହାରରେ ଭୂରାଜସ୍ୱ ଧାର୍ଯ୍ୟ କରାଗଲା ଏବଂ ନିର୍ଦ୍ଦୟ ଭାବରେ ଏହା ଆଦାୟ କରାଗଲା । ଖଜଣା ନ ଦେଲେ ସଙ୍ଗେ ସଙ୍ଗେ ଦଖଲ ଉଚ୍ଛେଦ ହେଉଥିଲା; କିନ୍ତୁ ଗରିବ ବିଚରା ଯିବ କେଉଁଠିକି ? ଜମି ଉପରେ ଅଧିକ ଚାପ ହେବାରୁ ଜମି ପାଇଁ ସବୁବେଳେ

ଦାବୀ ହେଉଥିଲା; ଅର୍ଦ୍ଧାହାରୀ ଲୋକ ଯେ କୌଣସି ସର୍ତ୍ତରେ ଏହା ଗ୍ରହଣ କରିବା ପାଇଁ ଠିକ ବସିଥିଲେ । ଯେଉଁ ଦୁର୍ଦ୍ଦଶାଗ୍ରସ୍ତ କୃଷକ ଯେତେବେଳେ ଆଉ ସହିପାରୁ ନ ଥିଲା, ସେତେବେଳେ ବାରମ୍ବାର ଗୋଳମାଳ ଓ କୃଷି ସମ୍ବନ୍ଧୀୟ ଦଙ୍ଗା ହେଉଥିଲା ।

୧୯ଶ ଶତାବ୍ଦୀର ମଧ୍ୟଭାଗରେ ବଙ୍ଗଳାରେ ଆଉ ଏକ ଅତ୍ୟାଚାର ଦେଖାଦେଲା । ନୀଳ ବେପାର କରିବା ଲାଗି କେତେକ ଇଂରେଜ ସେଠାରେ ଜମିଦାର ହୋଇ ରହିଥିଲେ । ନୀଳ ଚାଷ କରିବା ନିମନ୍ତେ ସେମାନେ ତାଙ୍କ ପ୍ରଜାଙ୍କ ସହ ଅତି କଡ଼ା ସର୍ତ୍ତ ରଖିଥିଲେ । ପ୍ରଜାମାନେ ତାଙ୍କ ଜମିର କେତେକ ଅଂଶରେ ନୀଳଚାଷ କରିବାକୁ ବାଧ୍ୟ ହେଉଥିଲେ ଏବଂ ତାପରେ ଗୋଟାଏ ନିର୍ଦ୍ଦିଷ୍ଟ ଦରରେ ସେଗୁଡ଼ିକ ଇଂରେଜ ଜମିଦାର ବା ପ୍ଲାଣ୍ଟର (ଏହି ନାମରେ ସେମାନେ ପରିଚିତ ଥିଲେ)ଙ୍କୁ ବିକ୍ରୀ କରିଦେବାକୁ ପଡ଼ୁଥିଲା । ଏହି ପ୍ରଥାକୁ ପ୍ଲାଣ୍ଟେସନ ବା ଆବାଦୀ ପ୍ରଥା କୁହାଯାଏ । ପ୍ରଜାଙ୍କ ଉପରେ ଏପରି କଡ଼ା ସର୍ତ୍ତ ଲଦି ଦିଆଗଲା ଯେ, ସେମାନେ ତାହା ପୂରଣ କରିବା କଷ୍ଟକର ହେଲା । ସେତେବେଳକୁ ଇଂରେଜ ସରକାର ପ୍ଲାଣ୍ଟରମାନଙ୍କର ସହାୟ ହେଲା ଏବଂ ଏହି ସର୍ତ୍ତ ଅନୁସାରେ ନୀଳ ଚାଷ କରିବାକୁ ପ୍ରଜା ବାଧ୍ୟ ହେବା ନିମନ୍ତେ ଆଇନ ପାଶ କରି ଦିଆଗଲା । ଏହି ଆଇନ ଫଳରେ ଶାସ୍ତି ପାଇ ଏହିସବୁ ଆବାଦୀର ପ୍ରଜା କେତେକ ଦିଗରେ ପ୍ଲାଣ୍ଟରମାନଙ୍କର ଅର୍ଦ୍ଧ ଦାସ ଓ ପୂର୍ଣ୍ଣ ଦାସ ହୋଇରହିଲେ । ନୀଳ କାରଖାନାର ଏଜେଣ୍ଟମାନେ ମଧ୍ୟ ସେମାନଙ୍କୁ ଆତଙ୍କିତ କରିଥିଲେ, କାରଣ ଏହି ଇଂରେଜ ବା ଭାରତୀୟ ଏଜେଣ୍ଟମାନେ ସରକାରୀ ସାହାଯ୍ୟ ପାଇବେ ବୋଲି ନିର୍ଭର ଥାଆନ୍ତି । ବେଳେ ବେଳେ ନୀଳ ଦର କମିଗଲେ ଧାନ ପ୍ରଭୃତି ଅନ୍ୟ ଜିନିଷ ଚାଷ କଲେ ଚାଷୀ ପକ୍ଷରେ ଅଧିକ ଲାଭପ୍ରଦ ହୁଅନ୍ତା; କିନ୍ତୁ ଏହା କରିବା ପାଇଁ ତାକୁ ଅନୁମତି ମିଳିଲା ନାହିଁ । ଚାଷୀର ଏଥିରେ ଦୁଃଖ ଦୁର୍ଗତି ବଢ଼ିଯାଏ ଏବଂ ଶେଷକୁ ଆଉ ସହ୍ୟ କରି ନ ପାରି ତାଙ୍କ ମୁଣ୍ଡରେ ପୋକ ଚଢ଼ିଲା । କୃଷକମାନେ ପ୍ଲାଣ୍ଟରଙ୍କ ବିରୁଦ୍ଧରେ ଉଠି ଗୋଟିଏ କାରଖାନା ଲୁଣ୍ଠନ କଲେ । ସେମାନଙ୍କୁ ଦବାଇ ଦିଆଗଲା ।

ମୋର ଆଶଙ୍କା, ମୁଁ ଟିକିଏ ବେଶି ଭାବରେ ୧୯ଶ ଶତାବ୍ଦୀରେ କୃଷିସମ୍ବନ୍ଧୀୟ ଅବସ୍ଥାର ଚିତ୍ର ତୋ ଆଗରେ ଏ ଚିଠିରେ ଦେବାର ଚେଷ୍ଟା କରିଛି । ଭାରତୀୟ କୃଷକର ଅବସ୍ଥା କ୍ରମେ କ୍ରମେ କିପରି ଖରାପ ଆଡ଼କୁ ଗଲା, ତାହା ସହିତ ସମ୍ପର୍କରେ ଆସୁଥିବା ପ୍ରତ୍ୟେକ ଲୋକଦ୍ୱାରା ସେ କିପରି ଶୋଷିତ ହେଲା, ଟିକସ ଆଦାୟକାରୀ, ଜମିଦାର, ବଣିଆ (ମହାଜନ), ପ୍ଲାଣ୍ଟର ଓ ତାର ଏଜେଣ୍ଟଦ୍ୱାରା ଏବଂ ସବୁଠାରୁ ବଡ଼ ବଣିଆ ବ୍ରିଟିଶ ସରକାର ଦ୍ୱାରା କିପରି ଶୋଷିତ ହେଉଥିଲା, ତାହା ତୋତେ ବୁଝାଇ ଦେବା ଲାଗି ଚେଷ୍ଟା କରିଛି । ବ୍ରିଟିଶ ସରକାର ଇଷ୍ଟ ଇଣ୍ଡିଆ କମ୍ପାନୀ ଜରିଆରେ କମ୍ପାନୀ ପ୍ରତ୍ୟକ୍ଷରୂପେ ବ୍ୟବହାର କରୁଥିଲା । ଭାରତରେ ଇଂରେଜମାନଙ୍କ ଜ୍ଞାତସାରରେ ଅନୁସରଣ କରାଯାଉଥିବା ନୀତି ଉପରେ ହିଁ ଏହିସବୁ ଶୋଷଣ ପ୍ରତିଷ୍ଠିତ । କୁଟୀରଶିଳ୍ପ ଧ୍ୱଂସ କରାଯାଇ ତା ସ୍ଥାନରେ ଅନ୍ୟ କୌଣସି

ପ୍ରକାର ଶିଳ୍ପ ପ୍ରବର୍ତ୍ତନର ଉଦ୍ୟମ ହେଲା ନାହିଁ, ଅକର୍ମା କାରିଗରଙ୍କୁ ଗ୍ରାମକୁ ତଡ଼ି ଦିଆଗଲା ଏବଂ ତା ଫଳରେ ଜମି ଉପରେ ଚାପ, ଜମିଦାରୀ ପ୍ରଥା ସୃଷ୍ଟି, ନୀଳ ଆବାଦ ପ୍ରଥା, ଜମି ଉପରେ ଅତ୍ୟାଧିକ ଟିକସ ଧାର୍ଯ୍ୟ ଓ ତା ଫଳରେ ଅତି ନିର୍ଦ୍ଦୟ ଭାବରେ ଖଜଣା ଆଦାୟ ହେଲା । କୃଷକମାନଙ୍କୁ ବଣିଆ ମହାଜନ ପାଖକୁ ଯିବାକୁ ବାଧ୍ୟ କରାଗଲା ଏବଂ ତାର ଦୃଢ଼ ବନ୍ଧନରୁ ସେମାନେ ମୁକୁଳି ପାରିବାର ଉପାୟ ରହିଲା ନାହିଁ; ସମୟ ମୁତାବକ ଖଜଣା ବା ରାଜସ୍ୱ ନ ଦେଇ ପାରିବାରୁ ଅସଂଖ୍ୟ ଲୋକଙ୍କୁ ଜମିରୁ ଉଚ୍ଛେଦ କରାଗଲା ଏବଂ ସର୍ବୋପରି ପୁଲିସ, ଟିକସ ଆଦାୟକାରୀ, ଜମିଦାର ଗୁମାସ୍ତା ଓ କାରଖାନା ଏଜେଣ୍ଟଙ୍କ ସର୍ବଦା ଭୟ ପ୍ରଦର୍ଶନ—ଏହି ସବୁ କୃଷକର ଯାହା ବା ହୃଦୟ ଓ ଆତ୍ମା ଥିଲା, ତାହା ନାଶ କରିଦେଲା । ଏହାର ପରିଣତି ଆଉ କଣ ହୁଅନ୍ତା ? ଅନିବାର୍ଯ୍ୟ ରୂପେ ହତାଶ ଓ ଭୀଷଣ ବିପଦ ହିଁ ସାର ହେଲା ।

ଭୀଷଣ ଦୁର୍ଭିକ୍ଷରେ ପଡ଼ି ଲକ୍ଷ ଲକ୍ଷ ଲୋକ ମରିଗଲେ । ଆଶ୍ଚର୍ଯ୍ୟର କଥା ଯେ ଖାଦ୍ୟ ଅଭାବ ପଡ଼ିଥିଲା ବେଳେ ଓ ଏହା ଅଭାବରୁ ଲୋକେ ମରୁଥିବା ବେଳେ କେତେକ ଧନୀ ବେପାରୀଙ୍କ ଲାଭ ପାଇଁ ଖାଦ୍ୟଶସ୍ୟ ବିଦେଶକୁ ରପ୍ତାନି ହେଉଥିଲା । କିନ୍ତୁ ପ୍ରକୃତ ଶୋଚନୀୟତା ଖାଦ୍ୟ ଅଭାବରୁ ଘଟୁ ନ ଥିଲା; କାରଣ ଦେଶର ଅନ୍ୟ ଅଞ୍ଚଳରୁ ରେଲବାଇ-ଦ୍ୱାରା ଖାଦ୍ୟ ଅଣାଯାଇପାରେ, ମାତ୍ର ଏହା କିଣିବାର ଉପାୟ ନ ଥିଲା । ୧୮୭୯ରେ ଉତ୍ତର-ଭାରତ ବିଶେଷତଃ ଆମ ପ୍ରଦେଶରେ ବଡ଼ ଦୁର୍ଭିକ୍ଷ ପଡ଼ିଲା ଏବଂ ଶୁଣାଯାଏ ଯେ ଦୁର୍ଭିକ୍ଷ ଅଞ୍ଚଳର ଶତକଡ଼ା ୮୨ ଭାଗ ଲୋକ ମଲେ । ୧୫ ବର୍ଷ ପରେ ୧୮୭୬ରେ ଆଉ ଏକ ଭୀଷଣ ଦୁର୍ଭିକ୍ଷ ଉତ୍ତର ଓ ମଧ୍ୟଭାରତ ଏବଂ ଦକ୍ଷିଣ-ଭାରତରେ ଦୁଇ ବର୍ଷ ପର୍ଯ୍ୟନ୍ତ ଲାଗି ରହିଲା । ଯୁକ୍ତ ପ୍ରଦେଶ ଏଥିରେ ବଡ଼ କ୍ଷତିଗ୍ରସ୍ତ ହେଲା, ମଧ୍ୟପ୍ରଦେଶ ଓ ପଞ୍ଜାବର ଏକ ଅଞ୍ଚଳର ଲୋକେ ବି କଷ୍ଟ ପାଇଲେ । ପ୍ରାୟ ୧୦,୦୦୦,୦୦୦ ଲୋକ ମରିଥିଲେ । ପୁଣି ୨୦ ବର୍ଷ ପରେ ୧୮୯୭ରେ ଊଣାଅଧିକେ ସେହି ଅଭାଗା ଅଞ୍ଚଳରେ ପୁଣି ଏକ ଦୁର୍ଭିକ୍ଷ ପଡ଼ିଲା—ଏପରି ଭୀଷଣ ଦୁର୍ଭିକ୍ଷ ଭାରତ ଇତିହାସରେ ଆଉ ହୋଇ ନାହିଁ । ଏହି ପ୍ରଳୟଙ୍କରୀ ଦୁର୍ଭିକ୍ଷ ଉତ୍ତର ଓ ମଧ୍ୟ ଭାରତକୁ ଶେଷ କରିଦେଲା ଓ ସତ୍ୟାନାଶ ଘଟିଲା । ୧୯୦୦ ଖ୍ରୀଷ୍ଟାବ୍ଦରେ ପୁଣି ଆଉ ଏକ ଦୁର୍ଭିକ୍ଷ ପଡ଼ିଲା ।

୪୦ ବର୍ଷ ଭିତରେ ଚାରୋଟି ବଡ଼ ଦୁର୍ଭିକ୍ଷ ପଡ଼ିବା କଥା ମୁଁ ଏକ ଗ୍ରୋଟ ପରିଚ୍ଛେଦରେ ବର୍ଣ୍ଣନା କଲି । ଏହି କାଳର ନିଷ୍ଠୁରତାରେ ଯେଉଁ ଭୀଷଣ କଷ୍ଟ ଓ ଆତଙ୍କ ହୋଇଥିଲା, ତାହା ତୁ ବୁଝି ପାରିବୁ ନାହିଁ ଏବଂ ମୁଁ ବି ତତେ କହିପାରିବି ନାହିଁ । ବାସ୍ତବିକ ତୋତେ ଏହା ଜଣାଇବା ମୋର ଇଚ୍ଛା ନୁହେଁ; କାରଣ ଏହା ଜାଣିଲେ କ୍ରୋଧ ଓ ଅତ୍ୟନ୍ତ ବିରକ୍ତିକର ଭାବ ଆସିବ ଏବଂ ମୋର ଏ ବୟସରେ ତତେ ତିକ୍ତ ମନୋଭାବାପନ୍ନ କରିବାକୁ ମୁଁ ଚାହେଁ ନାହିଁ ।

ତୁ ଫ୍ଲରେନ୍ସ ନାଇଟିଙ୍ଗେଲ ନାମ ଶୁଣିଛୁ । ଏହି ସାହସୀ ଇଂରେଜ ମହିଳା ପ୍ରଥମେ ଯୁଦ୍ଧରେ ଆହତ ଲୋକ ପାଇଁ ଅତି ନିପୁଣ ସେବାଶୁଶ୍ରୂଷା ବ୍ୟବସ୍ଥା କରିଥିଲେ । ୧୮୭୮ରେ ସେ ଲେଖିଛନ୍ତି, "ପ୍ରାଚ୍ୟ ଦେଶରେ କାହିଁକି ନା ବୋଧହୁଏ ଦୁନିଆରେ ସର୍ବାପେକ୍ଷା ଦୁଃଖଦାୟକ ଦୃଶ୍ୟ ହେଉଛି ଆମର ପୂର୍ବୀୟ ସାମ୍ରାଜ୍ୟର କୃଷକ ।" ସେ "ଆମ ଆଇନ ଫଳରେ" କିପରି "ପୃଥିବୀର ସବୁଠାରୁ ଉର୍ବର ଦେଶରେ ଯେଉଁଠି ଦୁର୍ଭିକ୍ଷ ଆଦୌ ନ ଥିଲା, ସେଠି କିପରି କ୍ଲେଶ ଓ ଅତ୍ୟନ୍ତ ଅନ୍ଧାହାର ଅବସ୍ଥା ଲାଗି ରହିଛି" ତାହା ଉଲ୍ଲେଖ କରିଛନ୍ତି ।

ହିଁ, ଆମ କୃଷକଙ୍କର କୋଟରଗତ ଚକ୍ଷୁ ଓ ଅତି ନିଃସହାୟ ଦୃଷ୍ଟି ଅପେକ୍ଷା ଆଉ ସକରୁଣ ଦୃଶ୍ୟ କିଛି ନାହିଁ । ଏହି କେତେକ ବର୍ଷ ହେଲା କି ବୋଝ ଆମ କୃଷକ ବହନ କରି ନାହାନ୍ତି । ଆମର ମଧ୍ୟ ଭୁଲିବା ଉଚିତ ନୁହେଁ ଯେ, ଆମେ ଯେଉଁମାନେ ଟିକିଏ ଉନ୍ନତ ଅବସ୍ଥାରେ ଅଛୁ, ଆମେ ସବୁ ବି ଏହି ବୋଝର ଗୋଟାଏ ଅଂଶ । କି ବିଦେଶୀ, କି ଭାରତୀୟ ଆମେ ସମସ୍ତେ ଦୀର୍ଘକାଳ ହେଲା ଦୁଃଖ ଭୋଗ କରୁଥିବା କୃଷକକୁ ଶୋଷଣ କରି ଆସିଛେ ଏବଂ ତା ପିଠିରେ ଚଢ଼ୁଛେ । ଏହି ପିଠି ଭାଙ୍ଗିଯିବାରେ ଆଶ୍ଚର୍ଯ୍ୟ ହେବାର ବା କଣ ଅଛି ? କିନ୍ତୁ ଅନେକ ଦିନ ପରେ ତା ପାଖରେ ଏକ ଆଶାରେଖା ଦେଖାଗଲା; ଭଲ ବେଳ ଓ ବୋଝ ହାଲୁକା ହେବାର ଆଶା ଦିଶିଲା । ଗୋଟିଏ ଶ୍ରେଷ୍ଠ ଲୋକ ଆସି ସିଧା ତାଙ୍କ ଚକ୍ଷୁ ଭିତରକୁ ଅନାଇଲା; ତାଙ୍କର ମଉଳି ପଡ଼ିଥିବା ହୃଦୟ ଭିତରେ ପ୍ରବେଶ କଲା ଏବଂ ତାଙ୍କର ଦୀର୍ଘ ଯନ୍ତ୍ରଣା ଅନୁଭବ କଲା । ଏହି ଦୃଷ୍ଟିରେ ଯାଦୁ ଶକ୍ତିର ଅଗ୍ନି ଥିଲା ଏବଂ ତାହାର ବାଣୀରେ ଗୋଟାଏ ହୃଦୟଙ୍ଗମ କରିବା ଶକ୍ତି ବ୍ୟାକୁଳତା, ପ୍ରଚୁର ପ୍ରେମ ଓ ମୃତ୍ୟୁ ପର୍ଯ୍ୟନ୍ତ ଲାଗି ରହିବା ପରି ବିଶ୍ୱାସ ରହିଥିଲା । ଯେତେବେଳେ କୃଷକ, ଶ୍ରମିକ ଓ ଅନ୍ୟ ପଦଦଳିତ ଲୋକସବୁ ତାକୁ ଦେଖିଲେ ଓ ତା କଥା ଶୁଣିଲେ, ସେତେବେଳେ ତାଙ୍କ ମୃତ ହୃଦୟରେ ଜୀବନ ଜାଗ୍ରତ ହେଲା; ଶୃଙ୍ଖଳ ଖୋଲିଲା, ଗୋଟାଏ ଅପୂର୍ବ ଆଶା ଉଦୟ ହେଲା ଏବଂ ସେମାନେ ଆନନ୍ଦରେ ଚିତ୍କାର କରି ଉଠିଲେ, "ମହାତ୍ମା ଗାନ୍ଧିଜୀ ଜୟ" ଏବଂ ସେମାନେ ତାଙ୍କ ଦୁଃଖସାଗରରୁ ବାହାର ଆସିବା ନିମନ୍ତେ ତିଆରି ହୋଇଗଲେ । କିନ୍ତୁ ଯେଉଁ ପୁରୁଣା ଯନ୍ତ୍ର ତାଙ୍କୁ ଏତେଦିନ ଦବାଇ ରଖିଛି, ତାହା ଏତେ ସହଜରେ ଯିବାକୁ ଦେଲା ନାହିଁ । ଏହା ପୁଣି ଗତି କରି ସେମାନଙ୍କୁ ଦବାଇବା ପାଇଁ ନୂଆ ଅସ୍ତ୍ର ତିଆରି କଲା । ନୂଆ ଆଇନ, ନୂଆ ଅର୍ଡ଼ିନାନ୍ସ ଜାରି ହେଲା ଏବଂ ସେମାନଙ୍କୁ ବାନ୍ଧିବା ପାଇଁ ନୂଆ ଜଞ୍ଜିର ବାହାରିଲା । ତାପରେ ? ଏହା ମୋର କାହାଣୀ ବା ଇତିହାସର ଅଙ୍ଗ ନୁହେଁ । ଏବେ ସୁଦ୍ଧା ଏହା ଆଗାମୀ କାଲିର ଘଟଣା ହୋଇ ରହିଛି ଏବଂ ଆଗାମୀ କାଲି ଆଜିରେ ପରିଣତ ହେଲେ ଆମେ ଜାଣିପାରିବା । କିନ୍ତୁ ଏଥିରେ କଣ କାହାରି ସନ୍ଦେହ ଅଛି ?

# ୧୧୬ : ବ୍ରିଟେନ କିପରି ଭାରତ ଶାସନ କଲା

ଡିସେମ୍ବର ୬, ୧୯୩୨

୧୯ଶ ଶତାବ୍ଦୀର ଭାରତ ସମ୍ବନ୍ଧରେ ମୁଁ ତତେ ଅନେକ ଚିଠି ଲେଖି ସାରିଲିଣି । ଏହା ଏକ ଦୀର୍ଘ କାହାଣୀ ଓ ଘଟଣାଟି ଦୀର୍ଘକାଳ ଯନ୍ତ୍ରଣାଦାୟକ ମଧ୍ୟ ଏବଂ ମୁଁ ଯଦି ଏହାକୁ ବେଶି ସଂକ୍ଷେପ କରିବି, ତେବେ ମୋର ଆଶଙ୍କା, ଏହା ବୁଝିବା ତତେ ଅଧିକ କଷ୍ଟକର ହେବ । ମୁଁ ସମ୍ଭବତଃ ଅନ୍ୟ ଦେଶ ଅନ୍ୟ ଯୁଗ ଅପେକ୍ଷା ଏହି ଯୁଗର ଭାରତ ଇତିହାସ ପ୍ରତି ଅଧିକ ଦୃଷ୍ଟି ଦେଉଛି । ମୁଁ ଜଣେ ଭାରତୀୟ ଭାବରେ ଏଥିରେ ଅଧିକ ଆଗ୍ରହୀ ଏବଂ ଏ ସମ୍ବନ୍ଧରେ ଅଧିକ ଜାଣିଥିବାରୁ ମୁଁ ସମ୍ପୂର୍ଣ୍ଣରୂପେ ଲେଖିପାରିବି । କେବଳ ଇତିହାସ ଛଡ଼ା ଅନ୍ୟ ଭାବରେ ଆମର ଏହି କାଳପାଇଁ ଆଗ୍ରହ ରହିଛି । ଆମେ ଆଜି ଯେଉଁ ଭାରତ ଦେଖୁଛେ, ୧୯ଶ ଶତାବ୍ଦୀର ଏହି ଦୁର୍ଦ୍ଦଶାଗ୍ରସ୍ତ ବେଳେ ଏହା ଗଢ଼ି ଉଠିଥିଲା । ଆଜିର ଭାରତ ଯେପରି ଅଛି, ଆମକୁ ବୁଝିବାକୁ ହେଲେ ଯେଉଁସବୁ ଶକ୍ତି ତାକୁ ତିଆରି କରିଛନ୍ତି, ବା ତାର କ୍ଷତି କରିଛନ୍ତି, ତାହା ମଧ୍ୟ ଆମର ବୁଝିବା ଦରକାର । ତାହାହେଲେ ଯାଇ ଆମେ ବିଚକ୍ଷଣରୂପେ ତାର ସେବା କରିପାରିବା, କଣ କର୍ତ୍ତବ୍ୟ ତା ଜାଣିପାରିବା ଏବଂ କେଉଁ ପନ୍ଥା ଧରିବା ତାହା ଆମକୁ ବୁଝିବ ।

ମୁଁ ଭାରତ ଇତିହାସରେ ଏହି କାଳର ବିବରଣୀ ଶେଷ କରି ନାହିଁ । ଆହୁରି ଅନେକ କଥା କହିବାର ଅଛି । ଏ ଚିଠିଗୁଡ଼ିକରେ ମୁଁ ଗୋଟିଏ ବା ଅଧିକ ବିଭାଗ ଧରି ତୋତେ କିଛି ସେ ସମ୍ବନ୍ଧରେ କହିବି । ପ୍ରତ୍ୟେକ ଅଂଶ ସମ୍ବନ୍ଧରେ ମୁଁ ଅଲଗା ଅଲଗା କହିବି, ତାହାହେଲେ ବୁଝିବା ସହଜ ହେବ । ଅବଶ୍ୟ ତୁ ଦେଖିବୁ ଯେ ମୁଁ ଯେଉଁସବୁ କାର୍ଯ୍ୟ ଓ ପରିବର୍ତ୍ତନ କଥା ତତେ କହିଛି ଏବଂ ଯେଉଁସବୁ କଥା ଏଥିରେ ବା ପରେ ମୁଁ ବର୍ଣ୍ଣନା କରିବି, ସେସବୁ ଅଳ୍ପେ ଅଧିକେ ଏକ ସମୟରେ ଘଟିଥିଲା, ଗୋଟିକର ଅନ୍ୟ ଉପରେ ପ୍ରଭାବ ପଡ଼ିଥିଲା ଏବଂ ଏହା ଭିତରେ ହିଁ ୧୯ଶ ଶତାବ୍ଦୀର ଭାରତ ଜାତ ହେଲା ।

ଇଂରେଜଙ୍କର ଭାରତରେ ଏହି କାର୍ଯ୍ୟ ଓ ଦୁଷ୍କର୍ମ ବିଷୟ ପଢ଼ିଲେ ସେତେବେଳେ ଯେଉଁ ନୀତି ଅନୁସରଣ କରାଯାଉଥିଲା ଏବଂ ତା ଫଳରେ ଯେଉଁ ବ୍ୟାପକ ଦୁର୍ଗତି ଘଟିଲା, ତାହା ଜାଣି ତୁ ବଳେ ବଳେ ରାଗିଉଠିବୁ; କିନ୍ତୁ କାହା ଦୋଷରୁ ଏସବୁ ଘଟିଲା ? ଏହା ଆମ ନିଜର ଦୁର୍ବଳତା ଓ ଅଜ୍ଞତା ଯୋଗୁଁ ହୋଇ ନାହିଁ କି ? ଦୁର୍ବଳତା ଓ ନିର୍ବୋଧତା ହିଁ ସବୁବେଳେ ସ୍ୱେଚ୍ଛାଚାରିତାକୁ ନିମନ୍ତ୍ରଣ କରିଥାଏ । ବ୍ରିଟିଶ ସେତେବେଳେ ଆମର ପରସ୍ପର ବିବାଦରୁ ଫାଇଦା

ଉଠାଉଛନ୍ତି, ସେତେବେଳେ ଆମେ ନିଜ ଭିତରେ କଳହ କରିବା ହେଉଛି ଆମର ଦୋଷ । ଯଦି ଆମ ଭିତରେ ବିଭିନ୍ନ ଦଳଙ୍କ ସ୍ୱାର୍ଥପରତାକୁ ଖେଳନା କରି ସେମାନେ ଆମକୁ ବିଭକ୍ତ କରି ଦେଉଛନ୍ତି ଓ ଦୁର୍ବଳ କରି ପକାଉଛନ୍ତି, ତାହାହେଲେ ଏସବୁ କରିବା ପାଇଁ ସୁବିଧା ଦେବା ହିଁ ଇଂରେଜଙ୍କ ବଡ଼ପଣିଆର ଚିହ୍ନ; ତେଣୁ ଯଦି ତୁ ରାଗିଯାଉ, ତେବେ ଆମର ଦୁର୍ବଳତା; ଅଜ୍ଞତା ଓ ପରସ୍ପର ବିବାଦ ପାଇଁ କ୍ରୋଧ କରିବୁ; କାରଣ ଏହିଗୁଡ଼ିକ ହିଁ ଆମର ଦୁର୍ଦ୍ଦଶା ପାଇଁ ଦାୟୀ ।

ଆମେ କହୁ ବ୍ରିଟିଶଙ୍କ ଅତ୍ୟାଚାର । କାହାର ଅତ୍ୟାଚାର ? ଏଥିରେ ଲାଭ କିଏ ଉଠାଉଛି ? ସମଗ୍ର ଇଂରେଜ ଜାତି ନୁହେଁ; କାରଣ ତାଙ୍କ ଭିତରେ ଲକ୍ଷ ଲକ୍ଷ ଦୁଃଖୀ ଓ ଅତ୍ୟାଚାରିତ ହୋଇ ରହିଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ ଇଂରେଜମାନଙ୍କର ଭାରତ ଶୋଷଣରେ ଭାରତର କେତେକ ଶ୍ରେଷ୍ଠ ଗୋଷ୍ଠୀ ଓ ଶ୍ରେଣୀ ମଧ୍ୟ ସାମାନ୍ୟ ଲାଭ କରି ପାରିଛନ୍ତି । ତେଣୁ ସ୍ୱାଙ୍କ ଭିତରେ କେଉଁଠି ଆମେ ପ୍ରଭେଦ ବାହାର କରିବା ? ଏହା ବ୍ୟକ୍ତିବିଶେଷଙ୍କର ପ୍ରଶ୍ନ ନୁହେଁ, ଗୋଟିଏ ପ୍ରଥା ଯୋଗୁଁ ହେଉଛି । ଆମେ ଏକ ପ୍ରକାଣ୍ଡ ଯନ୍ତ୍ର ଅଧୀନରେ ବାସ କରୁଛେ - ତାହା ଭାରତର ଲକ୍ଷ ଲକ୍ଷ ଲୋକଙ୍କୁ ଦମନ କରିଛି ଓ ଶୋଷଣ କରିଛି । ଏହି ଯନ୍ତ୍ର ହେଉଛି ସାମ୍ରାଜ୍ୟବାଦ ଯନ୍ତ୍ର—ଶିଳ୍ପଜାତ ପୁଞ୍ଜିବାଦରୁ ଏହାର ସୃଷ୍ଟି । ଏହି ଶୋଷଣରୁ ଲାଭ ଅଧିକ ଭାଗରେ ଇଂଲଣ୍ଡକୁ ଯାଏ; କିନ୍ତୁ ଇଂଲଣ୍ଡରେ ଏହା ସମ୍ପୂର୍ଣ୍ଣ ଭାବରେ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀଙ୍କ ହାତକୁ ଯାଏ । ଏହି ଲାଭର କେତେକ ଅଂଶ ଭାରତରେ ମଧ୍ୟ ରହେ ଏବଂ କେତେକ ଶ୍ରେଣୀ ସେଥିରୁ ଲାଭ କରନ୍ତି । ଅତଏବ ଆମର ବ୍ୟକ୍ତିବିଶେଷଙ୍କ ଉପରେ ବା ଏପରି କି ସମସ୍ତ ଇଂରେଜମାନଙ୍କ ଉପରେ ରାଗିବା ନିର୍ବୋଧତା । କୌଣସି ପ୍ରଥା ଭୁଲ ଏବଂ ତାହା ଯଦି ଆମର କ୍ଷତି କରୁଥାଏ, ତାହା ହେଲେ ତାକୁ ବଦଳାଇ ଦେବାକୁ ହେବ । ଏହା ଯେ ଚାଳନା କରୁଥାଉ ସେଥିରେ କିଛି ଯାଏ ଆସେ ନାହିଁ ଏବଂ ଖରାପ ପ୍ରଥାରେ ଭଲ ଲୋକ ମଧ୍ୟ ଅସହାୟ ହୋଇ ଯାଆନ୍ତି । ପୃଥିବୀରେ ସର୍ବୋତ୍କୃଷ୍ଟ ଇଚ୍ଛା ଶକ୍ତି ପ୍ରୟୋଗ କରି ମଧ୍ୟ ତମେ ଯେତେ ରାନ୍ଧିଲେ ଗୁଣ୍ଡା ପଥର ଓ ମାଟିକୁ କେବେ ଭଲ ଖାଦ୍ୟରେ ପରିଣତ କରି ପାରିବ ନାହିଁ । ମୋର ମନେହୁଏ, ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ କଥା ଠିକ୍ ଏହିପରି । ସେଗୁଡ଼ିକ ଉନ୍ନତ କରାଯାଇ ପାରିବ ନାହିଁ, ପ୍ରକୃତ ଉନ୍ନତି କରିବାକୁ ହେଲେ ତାକୁ ସମ୍ପୂର୍ଣ୍ଣ ରୂପେ ଶେଷ କରିବାକୁ ହେବ । କିନ୍ତୁ ଏହା ହେଉଛି ମୋର ମତ । କେତେକ ଲୋକ ଏଥିରେ ଏକମତ ହୁଅନ୍ତି ନାହିଁ । କୌଣସି କଥା ଠିକ ବୋଲି ତୁ ଗ୍ରହଣ କରିବୁ ନାହିଁ ଏବଂ ବେଳ ଆସିଲେ ତୁ ନିଜର ସିଦ୍ଧାନ୍ତ ନିଜେ କରିବୁ; କିନ୍ତୁ ଗୋଟିଏ ବିଷୟରେ ଅଧିକାଂଶ ଲୋକ ଏକମତ; ଯାହା ଦୋଷ ରହିଛି ତାହା ହେଉଛି ପ୍ରଥାର, ସେଥିଲାଗି ବ୍ୟକ୍ତିବିଶେଷଙ୍କ ଉପରେ ବିରକ୍ତ ହେବା ବୃଥା । ଆମେ ଯଦି ପରିବର୍ତ୍ତନ ଚାହୁଁ, ତାହାହେଲେ ଆକ୍ରମଣ କରି ପ୍ରଥାକୁ ପରିବର୍ତ୍ତନ କରିବା ଦରକାର । ଭାରତରେ ଏହି ପ୍ରଥାର କେତେକ ମନ୍ଦ ଫଳ ଆମେ ଦେଖୁଛେ । ଆମେ ଚୀନ, ଇଜିପ୍ଟ ଓ ଆଉ ଅନ୍ୟ ଦେଶ କଥା ଆଲୋଚନା କଲେ ଦେଖିବା

ଯେ, ସେହି ପ୍ରଥା ସେହି ପୁଞ୍ଜିବାଦ, ସାମ୍ରାଜ୍ୟବାଦ କଲ ହିଁ ଅନ୍ୟ ଲୋକଙ୍କୁ ଶୋଷଣ କରିବା କାର୍ଯ୍ୟରେ ଲାଗିଛି ।

ଆମେ ଆମ କାହାଣୀ କୁ ଫେରି ଆସିବା । ଇଂରେଜ ଆସିଲା ବେଳକୁ ଭାରତୀୟ କୁଟୀର ଶିଳ୍ପର ଉନ୍ନତ ଅବସ୍ଥା କଥା ମୁଁ ତତେ କହୁଛି । ଉତ୍ପାଦନ ପ୍ରଣାଳୀର ସ୍ୱାଭାବିକ ଉନ୍ନତି ସଙ୍ଗେ ସଙ୍ଗେ କୌଣସି ବାହାର ହସ୍ତକ୍ଷେପ ବ୍ୟତିରେକେ କେତେବେଳେ ହେଲେ ଯନ୍ତ୍ରଶିଳ୍ପ ଭାରତକୁ ଆସିଥାନ୍ତା—ଏହା ସମ୍ଭବ ପରି ମନେହେଉଛି । ଦେଶରେ ଲୁହା ଓ କୋଇଲା ଥିଲା ଏବଂ ଆମେ ଇଂଲଣ୍ଡରେ ଯେପରି ଦେଖିଲେ ଏହା ନୂତନ ଶିଳ୍ପୋଦ୍ୟୋଗକୁ ଖୁବ୍ ସାହାଯ୍ୟ କଲା ଏବଂ ପ୍ରକୃତରେ ଏହା ହିଁ କେତେକାଂଶରେ ଆଣିଲା । ଶେଷରେ ଭାରତରେ ଏହା ବି ହୋଇଥାନ୍ତା । ଗୋଳମାଳିଆ ରାଜନୈତିକ ଅବସ୍ଥା ଯୋଗୁଁ ହୁଏତ ଏଥିରେ କିଛି ବିଳମ୍ବ ହୋଇଥାନ୍ତା । ଏଥିଭିତରେ ଇଂରେଜମାନେ ଯାହା ହେଉ ହସ୍ତକ୍ଷେପ କଲେ । ସେମାନେ ଯେଉଁ ଦେଶ ଓ ଜାତି ତରଫରୁ ଆସିଥିଲେ, ସେଠାରେ ଆଗରୁ ନୂତନ ବଡ଼ ଯନ୍ତ୍ରଶିଳ୍ପର ଉତ୍ପାଦନ ହୋଇ ସାରିଥିଲା । ତେଣୁ କଳ୍ପନା କରାଯାଉଥିଲା, ସେମାନେ ଭାରତରେ ଏ ପରିବର୍ତ୍ତନ କରିବେ ଏବଂ ଯେଉଁ ଶ୍ରେଣୀ ଏହା ଆଣି ପାରିବାର ଅତ୍ୟନ୍ତ ସମ୍ଭାବନା ରହିଛି, ସେଇଁକୁ ଉତ୍ସାହିତ କରିଥିବେ । ସେମାନେ ସେପରି କିଛି କଲେ ନାହିଁ । ପ୍ରକୃତରେ ସେମାନେ ଏହାର ଠିକ୍ ବିପରୀତ କଲେ । ଭାରତ ତାଙ୍କର ଏକ ପ୍ରତିଯୋଗୀ ହେବାର ସମ୍ଭାବନା ଥିବାରୁ ସେମାନେ ତାର ହସ୍ତଶିଳ୍ପ ଭାଙ୍ଗିଦେଲେ ଏବଂ ପ୍ରକୃତରେ ଯନ୍ତ୍ରଶିଳ୍ପର ବୃଦ୍ଧିକୁ ନିରୁତ୍ସାହିତ କଲେ ।

ଏହିରୂପେ ଆମେ ଭାରତରେ ଏକ ପ୍ରକାର ଅପୂର୍ବ ଅବସ୍ଥା ଦେଖୁଁ । ଆମେ ଦେଖିବାକୁ ପାଉଁ ଯେ ଇଂରେଜମାନେ ସେତେବେଳେ ଇଉରୋପରେ ସର୍ବାପେକ୍ଷା ଅଧିକ ଉନ୍ନତ ଜାତି ହୋଇ ମଧ୍ୟ ଭାରତରେ ଅତ୍ୟନ୍ତ ଅନୁନ୍ନତ ଓ ରକ୍ଷଣଶୀଳ ଶ୍ରେଣୀଙ୍କ ସହ ମିଶିଲେ । ସେମାନେ ଏକ ମୁମୂର୍ଷୁ ସାମନ୍ତ ଶ୍ରେଣୀକୁ ତେଜାଇ ଦେଲେ; ଜମିଦାର ସୃଷ୍ଟି କଲେ; ଅର୍ଦ୍ଧସାମନ୍ତ ରାଜ୍ୟମାନଙ୍କରେ ଶହ ଶହ ଭାରତୀୟ ଶାସକଙ୍କୁ ଅଧୀନ କରି ସେମାନଙ୍କୁ ସମର୍ଥନ କଲେ । ସେମାନେ ପ୍ରକୃତରେ ଭାରତରେ ସାମନ୍ତବାଦକୁ ଦୃଢ଼ୀଭୂତ କଲେ; ଅଥଚ ଏହି ଇଂରେଜମାନେ ଇଉରୋପରେ ମଧ୍ୟବିତ୍ତ ଶ୍ରେଣୀ ବା ଧନିକ ସଂସ୍ଥା ବିପ୍ଳବର ଅଗ୍ରଦୂତ ଥିଲେ—ଏହା ହିଁ ତାଙ୍କୁ ପାର୍ଲିଆମେଣ୍ଟ କ୍ଷମତା ଦେଇଥିଲା; ସେମାନେ ଶିଳ୍ପ ବିପ୍ଳବରେ ମଧ୍ୟ ଅଗ୍ରଣୀ ଥିଲେ । ଏହାର ଫଳସ୍ୱରୂପ ଶିଳ୍ପଜାତ ପୁଞ୍ଜିବାଦ ପୃଥିବୀରେ ପ୍ରଚଳନ ହେଲା । ଏହି ସବୁ ବ୍ୟାପାରରେ ସେମାନେ ଅଗ୍ରଣୀ ଥିବା ହେତୁ ତାଙ୍କର ବିରୋଧୀଙ୍କଠାରୁ ସେମାନେ ଆଗେଇ ଗଲେ ଓ ଗୋଟିଏ ବିଶାଳ ସାମ୍ରାଜ୍ୟ ସ୍ଥାପନ କରିପାରିଲେ ।

ଭାରତରେ ଇଂରେଜମାନେ କାହିଁକି ଏପରି କାର୍ଯ୍ୟ କଲେ ବୁଝିବା କିଛି କଷ୍ଟକର ନୁହେଁ । ଗଳାକଟା ପ୍ରତିଯୋଗିତା ଓ ଶୋଷଣ ଉପରେ ପୁଞ୍ଜିବାଦ ପ୍ରତିଷ୍ଠିତ ଏବଂ

ସାମ୍ରାଜ୍ୟବାଦ ଏହାର ଏକ ଉନ୍ନତ ଅବସ୍ଥା । ତେଣୁ ଇଂରେଜମାନେ କ୍ଷମତା ପାଇ ସେମାନଙ୍କର ପ୍ରକୃତ ବିରୋଧୀଙ୍କୁ ହତ୍ୟା କଲେ ଏବଂ ଜାଣିଶୁଣି ଅନ୍ୟ ବିରୋଧୀ ବୃଦ୍ଧି ହେବାରେ ବାଧା ଦେଲେ । ସେମାନଙ୍କ ପକ୍ଷରେ ଜନସାଧାରଣଙ୍କ ସହ ବନ୍ଧୁତା କରି ପାରିବା ସମ୍ଭବ ନୁହେଁ; କାରଣ ତାଙ୍କର ଭାରତରେ ରହିବାର ମୂଳ ଉଦ୍ଦେଶ୍ୟ ହେଲା ସେମାନଙ୍କୁ ଶୋଷଣ କରିବା । ଶୋଷକ ଓ ଶୋଷିତର ସ୍ୱାର୍ଥ କେବେହେଁ ସମାନ ହୋଇପାରେ ନା । ତେଣୁ ଭାରତରେ ସେତେବେଳେ ଯେଉଁ ସାମନ୍ତବାଦର ଅବଶେଷ ଥିଲା, ଇଂରେଜମାନେ ତାହାର ଆଶ୍ରା ଧରିଲେ । ଇଂରେଜମାନେ ଆସିଲାବେଳେ ସୁଦ୍ଧା ଏମାନଙ୍କଠାରେ ସେପରି କିଛି ପ୍ରକୃତ କ୍ଷମତା ନ ଥିଲା; କିନ୍ତୁ ସେମାନଙ୍କୁ ଧରି ରଖାଗଲା ଏବଂ ଦେଶରେ ଶୋଷଣର କିଛି ଅଂଶ ସେମାନଙ୍କୁ ଦେଲେ । ଯେଉଁ ଶ୍ରେଣୀର ଉପଯୋଗିତା ଶେଷ ପାଇଥିଲା ଏପରି ଠେକ ଦେଇ ରଖିବାରେ ସେମାନେ କ୍ଷଣକାଳ ପାଇଁ ସାହାଯ୍ୟ ପାଇଲେ; ଏହି ଠିକି ଯେତେବେଳେ କାଢ଼ି ନିଆହେବ, ସେତେବେଳେ ସେଗୁଡ଼ିକ ଅବଶ୍ୟ ପଡ଼ିଯିବ ଅଥବା ନୂତନ ଅବସ୍ଥା ସହିତ ନିଜକୁ ଖାପ ଖୁଆଇ ନେବ । ଭାରତରେ ଗ୍ରେଟ ବଡ଼ ହୋଇ ୬୦୦ ଦେଶୀୟ ରାଜ୍ୟ ରହିଛି ଏବଂ ଇଂରେଜଙ୍କ କୃପା ଉପରେ ନିର୍ଭର କରୁଛି । ଯୁ କେତେକ ବଡ଼ ଦେଶୀୟ ରାଜ୍ୟ କଥା ଜାଣୁ; ହାଇଦରାବାଦ, କାଶ୍ମୀର, ମହୀଶୂର, ବରୋଦା, ଗୋୟାଲିୟର ପ୍ରଭୃତି । କିନ୍ତୁ ବିଚିତ୍ର କଥା, ଅଧିକାଂଶ ଦେଶୀୟ ରାଜା ପୁରୁଣା ସାମନ୍ତମାନଙ୍କର ବଂଶଧର ନୁହନ୍ତି; ଠିକ୍ ସେହିପରି ଅଧିକାଂଶ ବଡ଼ ଜମିଦାର ବି ଅତି ପୁରାତନ ସମ୍ପ୍ରଦାୟରୁ ଆସି ନାହାନ୍ତି । ଯାହାହେଉ କୌଣସି ଚିଫ୍ ନାହାନ୍ତି—ସୂର୍ଯ୍ୟବଂଶର ପ୍ରଧାନ ଉଦୟପୁର ମହାରାଣା ଅତି ପ୍ରାକ୍-ଐତିହାସିକ କାଳର ରାଜପୁତ ନାତିଙ୍କ ସହ ତାଙ୍କର ସମ୍ବନ୍ଧ ରହିଛି । ଜୀବିତ ଲୋକଙ୍କ ଭିତରେ ତାଙ୍କ ସହିତ ଏଥିରେ ସମକକ୍ଷ ବୋଧହୁଏ ଜାପାନର ମିକାଡ଼ୋ ହୋଇ ଉଠିବେ ।

ବ୍ରିଟିଶ ଶାସନ ହିଁ ଧାର୍ମିକ ରକ୍ଷଣଶୀଳତାରେ ସାହାଯ୍ୟ କଲା । ଏହା ଅଦ୍ଭୁତ ମନେ ହୋଇପାରେ; କାରଣ ଇଂରେଜମାନେ ଉନ୍ନତ ଖ୍ରୀଷ୍ଟଧର୍ମ ମାନନ୍ତି ବୋଲି ଦାବୀ କରନ୍ତି; ଅଥଚ ସେମାନଙ୍କ ଆଗମନରେ ଭାରତରେ ହିନ୍ଦୁ ଓ ମୁସଲମାନ ଧର୍ମ ଅଧିକ ଦୃଢ଼ ହୋଇଗଲା । କେତେକାଂଶରେ ଏହି ପ୍ରତିକ୍ରିୟା ହେବା ସ୍ୱାଭାବିକ; କାରଣ ବିଦେଶୀ ଆକ୍ରମଣବେଳେ ଦେଶର ଧନ ଓ କୃଷ୍ଟି ଅଧିକ କଠୋରତାରେ ହିଁ ନିଜର ରକ୍ଷା କରିପାରନ୍ତି । ଏହି ଭାବରେ ହିଁ ହିନ୍ଦୁଧର୍ମ ଏତେ ବେଶୀ ଦୃଢ଼ ହୋଇଯାଇଛି ଏବଂ ମୁସଲମାନ ଆକ୍ରମଣ ପରେ ଜାତିପ୍ରଥା ପଶିଛି । ଏବେ ହିନ୍ଦୁ ଓ ମୁସଲମାନ ଧର୍ମ ଉପରେ ଏହିରୂପେ ପ୍ରତିକ୍ରିୟା ହେଲା । କିନ୍ତୁ ଏହାଛଡ଼ା ପ୍ରକୃତରେ ବ୍ରିଟିଶ ସରକାର ଭାରତରେ ଜାଣିଶୁଣି ଓ ଅଜ୍ଞାତସାରରେ ଉଭୟ ଭାବରେ ଏହି ଦୁଇ ଧର୍ମର ରକ୍ଷଣଶୀଳ ଭାବକୁ ସାହାଯ୍ୟ କରିଥିଲା । ଇଂରେଜ ଧର୍ମ ବା ଅନ୍ୟ ଧର୍ମ ଗ୍ରହଣରେ ଆଗ୍ରହୀ ନ ଥିଲେ; ସେମାନେ ପଇସା କମାଇବା ପାଇଁ ଆସିଥିଲେ । କାଳେ ଲୋକେ ରାଗିଯାଇ ସେମାନଙ୍କ ବିରୁଦ୍ଧରେ ଉଠିବେ, ସେଥିଲାଗି କୌଣସି ପ୍ରକାର ଧାର୍ମିକ

ବ୍ୟାପାରରେ ହସ୍ତକ୍ଷେପ କରିବାକୁ ସେମାନେ ଭୟ କରୁଥିଲେ । ତେଣୁ ଏପରି କି ଏହି ହସ୍ତକ୍ଷେପ ହେବାର ସନ୍ଦେହକୁ ଦୂର କରିବା ପାଇଁ ସେମାନେ ଚୂଢ଼ାନ୍ତରେ ଦେଶର ଧର୍ମର ଉପର ରୂପକୁ ସାହାଯ୍ୟ ଓ ରକ୍ଷା କରିବା ପର୍ଯ୍ୟନ୍ତ ଗଲେ; ଅର୍ଥାତ୍ ଧର୍ମର ବାହ୍ୟ ଆକାରକୁ ହିଁ ରକ୍ଷା କଲେ । ଅଧିକାଂଶ ବେଳେ ବାହ୍ୟ ଆକାର ହିଁ ରହିଲା, କିନ୍ତୁ ଏହା ଭିତରେ କିଛି ନ ଥିଲା ।

ରକ୍ଷଣଶୀଳ ଲୋକଙ୍କୁ ଚିଡ଼ାଇ ଦେବାର ଭୟ ହେତୁ ସରକାର ସଂସ୍କାର ବିଗରେ ସେମାନଙ୍କ ପକ୍ଷ ନେଲା । ତେଣୁ ସଂସ୍କାର ବି ପଛେଇଗଲା । କୌଣସି ବିଦେଶୀ ସରକାର ପ୍ରାୟ ସାମାଜିକ ସଂସ୍କାର ପ୍ରବର୍ତ୍ତନ କରିପାରେ ନା, କାରଣ ଏହା ଯାହା କିଛି ପରିବର୍ତ୍ତନ କରିବାକୁ ଚାହେଁ, ସେଥିରେ ଲୋକେ ଅସନ୍ତୋଷ ପ୍ରକାଶ କରନ୍ତି । ହିନ୍ଦୁ ଧର୍ମ ଓ ହିନ୍ଦୁ ଶାସ୍ତ୍ର ଅନେକ ପରିମାଣରେ ପରିବର୍ତ୍ତିତ ହୋଇଛି ଏବଂ ପ୍ରଗତି କରୁଛି, ଯଦିଚ ଆଜିକାଲି ଏହି ପ୍ରଗତି ଧୀରେ ଧୀରେ ହେଉଛି । ହିନ୍ଦୁ ଶାସ୍ତ୍ର ଅଧିକ ପରିମାଣରେ ପ୍ରଚଳିତ ରୀତି ଉପରେ ପ୍ରତିଷ୍ଠିତ । ଏ ରୀତି ବଦଳେ ଓ ବୃଦ୍ଧି ପାଏ । ହିନ୍ଦୁ ଶାସ୍ତ୍ରର ଏହି ସ୍ଥିତିସ୍ଥାପକତା ଇଂରେଜଙ୍କ ଅଧୀନରେ ଚାଲିଥିଲା ଏବଂ ଅତି ରକ୍ଷଣଶୀଳ ଲୋକଙ୍କ ପରାମର୍ଶ ଅନୁସାରେ ନୂତନ କଠୋର ନିୟମ ଏହାର ସ୍ଥାନ ଦଖଲ କଲା । ଏହିରୂପେ ଧୀରେ ଧୀରେ ହେଲେ ପୁଣି ହିନ୍ଦୁ ସମାଜର ପରିବୃଦ୍ଧି ବନ୍ଦ ହୋଇଗଲା । ମୁସଲମାନମାନେ ଏହି ନୂତନ ଅବସ୍ଥାରେ ଅଧିକ ଅସନ୍ତୋଷ ପ୍ରକାଶ କଲେ ଏବଂ ନିଜ ନିଜ ଗଣ୍ଡିରେ ଆବଦ୍ଧ ହୋଇ ରହିଲେ ।

ସ୍ୱାମୀର ଚିତାଗ୍ନିରେ ହିନ୍ଦୁ ବିଧବା ନିଜେ ଝାସ ଦେଇ ମରିବା ବା ସତୀ ପ୍ରଥା (ଭୁଲ ଭାବରେ କୁହାହୋଇଛି) ଲୋପ କରିଛନ୍ତି ବୋଲି ଇଂରେଜମାନେ ଭାରି ବାହାଦୁରି ଦେଖା'ନ୍ତି । ସେମାନଙ୍କୁ ଏଥିପାଇଁ କିଛି ବାହାଦୁରି ଦିଆଯାଇପାରେ; କିନ୍ତୁ ପ୍ରକୃତରେ ରାଜା ରାମମୋହନ ରାୟଙ୍କ ପରି ଭାରତୀୟ ସଂସ୍କାରକମାନଙ୍କର ଏ ସମ୍ବନ୍ଧରେ ଅନେକ ବର୍ଷ ପର୍ଯ୍ୟନ୍ତ ଆନ୍ଦୋଳନ ପରେ ସେମାନେ ଏହା କାର୍ଯ୍ୟରେ ପରିଣତ କଲେ । ଏହାଙ୍କ ପୂର୍ବରୁ ଅନ୍ୟ ଶାସକମାନେ ବିଶେଷତଃ ମରହଟ୍ଟାମାନେ ଏହା ନିଷେଧ କରିଥିଲେ; ପର୍ତ୍ତୁଗୀଜ ଆଲବୁକର୍କ ଏହି ପ୍ରଥା ଗୋଆରେ ଲୋପ କରିଥିଲେ । ଭାରତୀୟ ଆନ୍ଦୋଳନ ଓ ଖ୍ରୀଷ୍ଟିୟାନ ପାଦ୍ରୀଙ୍କ ଉଦ୍ୟମ ଫଳରେ ଇଂରେଜମାନେ ଏହା ବନ୍ଦ କରିଥିଲେ । ମୋର ଯେତେଦୂର ମନେ ଅଛି ଧର୍ମ ସବାନ୍ଧରେ ଇଂରେଜମାନେ ଏହି ଗୋଟିଏ ମାତ୍ର ସଂସ୍କାର ଆଣିଥିଲେ ।

ତେଣୁ ଇଂରେଜମାନେ ଦେଶର ସମସ୍ତ ଜଡ଼ବୁଦ୍ଧି ଓ ରକ୍ଷଣଶୀଳ ଲୋକଙ୍କ ସହ ମିତ୍ରତା ବାନ୍ଧିଲେ । ତାଙ୍କ କଳ କାରଖାନା ପାଇଁ ଉତ୍ପନ୍ନ କରିବା ଉଦ୍ଦେଶ୍ୟରେ ସେମାନେ ଭାରତକୁ ଖାଣ୍ଟି କୃଷିପ୍ରଧାନ ଦେଶ କରିବାକୁ ଚେଷ୍ଟା କଲେ । ଭାରତରେ କାରଖାନା ବୃଦ୍ଧିରେ ବାଧା ଦେବାକୁ ଯାଇ ସେମାନେ ବାସ୍ତବିକ ଭାରତରେ କଳ ପ୍ରବେଶ କରିବାରେ ଶୁଳ୍କ ବସାଇଲେ । ଅନ୍ୟ ଦେଶମାନେ ନିଜ ଶିଳ୍ପକୁ ଉତ୍ସାହିତ କଲେ । ଆମେ ଦେଖିବା

ଜାପାନ ତ ଔଦ୍ୟୋଗିକ ଧନ୍ଦାରେ ଦୌଡ଼ିବାକୁ ଲାଗିଲା । କିନ୍ତୁ ଭାରତରେ ଇଂରେଜ ସରକାର ଏହାର ଗୋଡ଼ କାଟିଲେ । କଳ ଉପରେ ଶୁଳ୍କ ବସିବାରୁ ଭାରତରେ ଶ୍ରମ ଶସ୍ତା ହୋଇ ମଧ୍ୟ ଇଂଲଣ୍ଡରେ ଗୋଟାଏ କାରଖାନା ତିଆରି କରିବା ଲାଗି ଯାହା ପଡ଼େ, ଭାରତରେ ତାର ଦ୍ୱିଗୁଣ ପଡ଼ିଲା । ଏହି ଶୁଳ୍କ ୧୮୬୦ ପର୍ଯ୍ୟନ୍ତ ଉଠାଇ ନିଆ ନ ଥିଲା । ଏହି ବାଧାଦେବା ନୀତିରେ କେବଳ ବିଳମ୍ବ ଘଟିଲା; କିନ୍ତୁ ଏହା ' ଅନିବାର୍ଯ୍ୟ ଗତିରୋଧ କରିପାରିଲା ନାହିଁ । ଏହି ଶତାବ୍ଦୀର ମଧ୍ୟଭାଗ ବେଳକୁ ଭା ଯନ୍ତ୍ରଶିଳ୍ପ ବୃଦ୍ଧି ଆରମ୍ଭ ହେଲା । ବ୍ରିଟିଶ ମୂଳଧନରେ ବଙ୍ଗଳାରେ ଝୋଟଶିଳ୍ପ ଆ ହେଲା । ରେଳବାଇ ଆଗମନ ଶିଳ୍ପବୃଦ୍ଧିରେ ସାହାଯ୍ୟ କଲା ଏବଂ ୧୮୮୦ ପରେ ବେଶି ଭାରତୀୟ ମୂଳଧନ ସାହାଯ୍ୟରେ ଲୁଗାକଳ ସବୁ ବମ୍ବେ ଓ ଅହମଦାବାଦରେ ଗଢ଼ି ଉଠିଲା । ଏହାପରେ ଆସିଲା ଖଣିଜ ଶିଳ୍ପ । ଲୁଗାକଳ ଛଡ଼ା ଧୀରେ ଧୀରେ ଔଦ୍ୟୋଗିକ ଧନ୍ଦା ଅଧିକ ଭାବରେ ଇଂରେଜ ମୂଳଧନରେ ହେଲା । ସରକାରର ସାହାଯ୍ୟ ନ ଥାଇ ମଧ୍ୟ ଏସବୁ ହେଲା । ସରକାର "ଲସେଜ ଫେୟାର" ନୀତି ଗ୍ରହଣ କଲା; ଅର୍ଥାତ୍ ଆପଣା ଛାଏଁ ଘଟଣା କେଉଁଠିକି ଯାଉଛି ଯାଉ ତାହା ବ୍ୟକ୍ତିଗତ ଉଦ୍ୟମରେ ହସ୍ତକ୍ଷେପ କରିବ ନାହିଁ । ବ୍ରିଟିଶ ସରକାର ଇଂଲଣ୍ଡରେ ଭାରତୀୟ ବେପାରରେ ବାଧା ଦେଇଥିଲା ଏବଂ ୧୮ଶ ଶତାବ୍ଦୀ ଓ ୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ଏହା ତାର ପ୍ରତିଯୋଗୀ ଥିଲାବେଳେ ନିଷେଧାଜ୍ଞା ଓ ଶୁଳ୍କ ବସାଇ ଏହାକୁ ଲୋପ କରିଦେଲା । ଉପରେ ବସି ସେମାନେ ପରେ "ଲାଜେସ ଫେୟାର" ନୀତି ଗ୍ରହଣ କଲେ । ଯାହାହେଉ ପ୍ରକୃତରେ ଦେଖିବାକୁ ଗଲେ ସେମାନେ କେବଳ ଉଦାସୀନ ହୋଇ ରହି ନ ଥିଲେ । ସେମାନେ ପ୍ରକୃତରେ କେତେକ ଭାରତୀୟ ଶିଳ୍ପ ବିଶେଷତଃ ବମ୍ବେ ଓ ଅହମଦାବାଦରେ ଗଢ଼ି ଉଠିଥିବା ଲୁଗାକଳକୁ ନିରୁତ୍ସାହିତ କରିଥିଲେ । ଏହି ଭାରତୀୟ ମିଲର ଉତ୍ପନ୍ନ ଜିନିଷ ଉପରେ ଟିକସ ବା ଶୁଳ୍କ ବସିଲା । ଏହାକୁ ଲୁଗା ଉପରେ ଅବକାରୀ ଟିକସ ବୋଲି କହନ୍ତି । ଭାରତୀୟ ଲୁଗା ସହିତ ଲଙ୍କାଶାୟାରରୁ ଆସୁଥିବା ବଳିତ ଲୁଗା ପ୍ରତିଯୋଗିତା କରିବାରେ ସାହାଯ୍ୟ କରିନାହିଁ ଏହାର ଉଦ୍ଦେଶ୍ୟ ଥିଲା । ପ୍ରାୟ ପ୍ରତ୍ୟେକ ଦେଶ ନିଜର ଶିଳ୍ପରକ୍ଷା କରିବା ନିମନ୍ତେ କିମ୍ବା ଟଙ୍କା ଉଠାଇବା ପାଇଁ ବିଦେଶୀ ମାଲ ଉପରେ ଶୁଳ୍କ ବସାନ୍ତି । କିନ୍ତୁ ଭାରତରେ ଇଂରେଜମାନେ ଏକ ଅତି ଅସାଧାରଣ ଓ ଅଦ୍ଭୁତ ଜିନିଷ କଲେ । ସେମାନେ ନିଜେ ଭାରତୀୟ ଜିନିଷ ଉପରେ ଟିକସ ବସାଇଲେ । ଖୁବ୍ ଆନ୍ଦୋଳନ ସତ୍ତ୍ୱେ ଏହି ଲୁଗା ଅବକାରୀ ଟିକସ ଥିଲା— ଅଳ୍ପ କେତେ ବର୍ଷ ହେଲା ଏହା ଉଠିଯାଇଛି ।

ସରକାରୀ ବିରୋଧ ସତ୍ତ୍ୱେ ଆଧୁନିକ ଶିଳ୍ପ ଧୀରେ ଧୀରେ ଭାରତରେ ବୃଦ୍ଧି ପାଇଲା । ଭାରତରେ ଧନୀଶ୍ରେଣୀ ଔଦ୍ୟୋଗିକ ଉନ୍ନତି ପାଇଁ ଅଧିକ ଚିତ୍କାର କରିବାକୁ ଲାଗିଲେ । ମୋର ମନେହୁଏ, ଅତି ବିଳମ୍ବରେ ୧୯୦୫ରେ ସରକାର ଠିକ୍ ଶିଳ୍ପ ଓ ବାଣିଜ୍ୟ ବିଭାଗ ଖୋଲିଲା; କିନ୍ତୁ ଏହା ହୋଇ ମଧ୍ୟ ପୃଥିବୀ ମହାସମର ଆରମ୍ଭ ହେବା ପୂର୍ବ ପର୍ଯ୍ୟନ୍ତ ପ୍ରାୟ କିଛି କରାଯାଇ

ନ ଥିଲା । ଏହି ଔଦ୍ୟୋଗିକ ଅବସ୍ଥା ବୃଦ୍ଧି ହେତୁ ଏହି ଶିଳ୍ପ ଶ୍ରମିକଶ୍ରେଣୀ ସୃଷ୍ଟି ହେଲା, ସେମାନେ ସହର କାରଖାନାରେ କାର୍ଯ୍ୟ କଲେ । ଉପରେ ଆଗରୁ କହିଛୁ, ଜମି ଉପରେ ଚାପ ହେତୁ ଏବଂ ମଫସଲ ଅଞ୍ଚଳରେ ଯେଉଁ ଅର୍ଦ୍ଧ ଦୁର୍ଭିକ୍ଷ ଅବସ୍ଥା ଥିଲା ସେଥିରେ ଅନେକ ଗ୍ରାମବାସୀ ବାଧ୍ୟ ହୋଇ ଏହି କାରଖାନାଗୁଡ଼ିକୁ ଏବଂ ବଙ୍ଗଳା ଓ ଆସାମରେ ଯେଉଁ ବଡ଼ ଚାଲ ଆବାଦୀ ହେଲା ସେଠିକି ଆସିଲେ । ଏହି ଚାପ ହେତୁ ଅନ୍ୟ ଦେଶରେ ଯେଉଁଠି ବେଶି ମଜୁରି ମିଳିବ ବୋଲି ଶୁଣାଗଲା, ସେଠିକି ଲୋକେ ଚାଲିଲେ । ବିଶେଷ ଭାବରେ ଦକ୍ଷିଣ-ଆଫ୍ରିକା, ଫିଜି, ମରିସସ୍ ଓ ସିଂହଳ ଲୋକେ ଗଲେ । କିନ୍ତୁ ଏହି ପରିବର୍ତ୍ତନରେ ଲୋକଙ୍କର କିଛି ଉପକାର ହେଲା ନାହିଁ । କେତେକ ଦେଶରେ ଏହି ଆଗନ୍ତୁକମାନେ ପ୍ରାୟ ଦାସ ପରି ବ୍ୟବହୃତ ହେଲେ । ଆସାମ ଚା’ ଆବାଦୀ କ୍ଷେତ୍ରରେ ସେମାନଙ୍କର ଅବସ୍ଥା ସେପରି ଭଲ ନ ଥିଲା । ନିରୁତ୍ସାହିତ ହୋଇ ଓ ଧୈର୍ଯ୍ୟହରାଇ ପରେ ସେମାନଙ୍କ ଭିତରୁ ଅନେକ ଆବାଦୀ କ୍ଷେତ୍ରରୁ ନିଜ ଘରକୁ ଫେରିବାକୁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ଗ୍ରାମରେ କୌଣସି ଜମି ପାଇଲେ ନାହିଁ; ନିଜ ଗାଁରେ ବି ଅବସ୍ଥା ସୁଧୁରିଲା ନାହିଁ ।

କାରଖାନାର ଶ୍ରମିକମାନେ ମଧ୍ୟ ଅଳ୍ପଦିନ ଭିତରେ ଦେଖିପାରିଲେ ଯେ ସାମାନ୍ୟ ଅଧିକ ମଜୁରି ବିଶେଷ କିଛି ନୁହେଁ । ସହରରେ ସବୁ ଜିନିଷ ଦାମ ବେଶୀ, ମୋଟାମୋଟି ଚଳିବା ଖରଚ ଅତି ଅଧିକ । ସେମାନେ ଯେଉଁଠି ବାସ କରୁଥିଲେ, ସେସବୁ ଅତି ଜଘନ୍ୟ ଘର; ଦୁର୍ଗନ୍ଧମୟ, ସନ୍ତସନ୍ତିଆ ଅନ୍ଧାର ଓ ଅପରିଷ୍କାର । ସେମାନଙ୍କୁ ଅତି ଖରାପ ଅବସ୍ଥାରେ ଶ୍ରମ କରିବାକୁ ପଡୁଥିଲା । ଗ୍ରାମରେ ସେମାନେ ଅନେକ ସମୟରେ ଖାଇବାକୁ ପାଉ ନ ଥିଲେ; କିନ୍ତୁ ସେମାନେ ରୌଦ୍ର ଓ ନିର୍ମଳ ବାୟୁ ଯଥେଷ୍ଟ ପାଇପାରୁ ଥିଲେ । କାରଖାନା ଶ୍ରମିକ ଖୋଲା ପବନ ପାଇଲା ନାହିଁ—ଖରା ପ୍ରାୟ ନାହିଁ । ସ୍ୱଚ୍ଛଳ ଭାବରେ ଚଳିବା ଭଳି ତାର ମଜୁରି ଯଥେଷ୍ଟ ନୁହେଁ । ସ୍ତ୍ରୀଲୋକ ଓ ପିଲାଙ୍କୁ ସୁଦ୍ଧା ଅନେକ ଘଣ୍ଟା ପର୍ଯ୍ୟନ୍ତ କାର୍ଯ୍ୟ କରିବାକୁ ପଡ଼ିଲା । ମାଆମାନେ କୋଳରେ ଥିବା ପିଲାଙ୍କୁ ନିଶା ଖୋଇବାକୁ ଲାଗିଲେ । ତାହାହେଲେ ତାଙ୍କ କାମରେ ସେ ଆଉ ବାଧା ଦେଇପାରିବେ ନାହିଁ । ଏହି ଦୁର୍ଦ୍ଦଶା ଭିତରେ କାରଖାନା ଶ୍ରମିକମାନଙ୍କୁ କାର୍ଯ୍ୟ କରିବାକୁ ହେଉଥିଲା । ସେମାନେ ପ୍ରକୃତରେ ଦୁଃଖୀ ହେଲେ ଓ ଅସନ୍ତୋଷ ବଢ଼ିଲା । ଅତ୍ୟନ୍ତ ହତାଶ ହୋଇ ବେଳେ ବେଳେ ସେମାନେ ଧର୍ମଘଟ କରୁଥିଲେ; ଅର୍ଥାତ୍ କାମ ବନ୍ଦ କରୁଥିଲେ । କିନ୍ତୁ ସେମାନେ ଦୁର୍ବଳ ଓ କ୍ଷୀଣ ଥିଲେ ଏବଂ ସହଜରେ ତାଙ୍କୁ ଦବାଇ ଦିଆଯାଇ ପାରୁଥିଲା । ଧନୀ ମାଲିକମାନେ ଏହି କାର୍ଯ୍ୟରେ ସରକାରର ବି ସହଯୋଗ ପାଉଥିଲେ । ଅତି ଧୀରେ ଧୀରେ ଏବଂ ତିକ୍ତ ଅଭିଜ୍ଞତା ପରେ ମିଳିତ କାର୍ଯ୍ୟର ମହତ୍ତ୍ୱ ସେମାନେ ବୁଝିପାରିଲେ । ଶ୍ରମିକ ସଂଘମାନ ସ୍ଥାପିତ ହେଲା ।

ଏହାସବୁ ଅତୀତ ଅବସ୍ଥାର ବର୍ଣ୍ଣନା ବୋଲି ମନେ କରିବୁ ନାହିଁ । ଭାରତର ଶ୍ରମିକ ଅବସ୍ଥାରେ କିଛି ଉନ୍ନତି ହୋଇଛି । ଗରିବ ଶ୍ରମିକର ରକ୍ଷା ପାଇଁ କେତେକ ଆଇନ ପାସ୍

ହୋଇଛି; କିନ୍ତୁ ଏବେ ସୁଦ୍ଧା ବି କାନପୁର, ବମ୍ବେ ବା କାରଖାନା ଥିବା ଅନ୍ୟ ଅନେକ ସ୍ଥାନକୁ ଗଲେ ସେଠି ଶ୍ରମିକମାନଙ୍କ ବାସସ୍ଥାନ ଦେଖି ଆଶ୍ଚର୍ଯ୍ୟ ହୋଇଯିବୁ ।

ମୁଁ ଏହି ଓ ଅନ୍ୟ ଚିଠିରେ ଭାରତରେ ଇଂରେଜ ଓ ବ୍ରିଟିଶ ସରକାର ବିଷୟରେ ଲେଖିଛି । ଏହା କିପରି ଥିଲା ଏବଂ କିପରି କାର୍ଯ୍ୟ କରୁଥିଲା ? ପ୍ରଥମେ ଏଠି ଇଷ୍ଟ ଇଣ୍ଡିଆ କମ୍ପାନୀ ଥିଲା । କିନ୍ତୁ ତା ପଛରେ ଥିଲା ବ୍ରିଟିଶ ପାର୍ଲିମେଣ୍ଟ । ୧୮୫୮ରେ ବଡ଼ ବିଦ୍ରୋହ ପରେ ବ୍ରିଟିଶ ପାର୍ଲିମେଣ୍ଟ ପ୍ରତ୍ୟକ୍ଷ ଶାସନଭାର ନେଲା ଏବଂ ପରେ ଇଂରେଜ ରାଜ-ନା, ନା-ରାଣୀ କାଇଜର-ଇ ହିନ୍ଦ ହେଲା । କାରଣ ସେତେବେଳେ ଜଣେ ରାଣୀ ସିଂହାସନରେ ଆସୀନ ଥିଲେ । ଭାରତରେ ଯେ ଗଭର୍ଣ୍ଣର ଜେନେରାଲ ଥିଲେ ସେ ଭାଇସରାୟ ହେଲେ । ସେ ଉପରେ ରହିଲେ ଏବଂ ତାଙ୍କ ଅଧୀନରେ ଅନେକ କର୍ମଚାରୀ ରହିଲେ । ଅନେକ ଅଧିକେ ଆଜିକାଲି ଯେପରି ଅଛି, ସେହିପରି ଭାରତ ବଡ଼ ବଡ଼ ପ୍ରଦେଶ ଓ ଦେଶୀୟ ରାଜ୍ୟରେ ବିଭକ୍ତ ହେଲା । ଭାରତୀୟ ଶାସକଙ୍କ ଅଧୀନରେ ଦେଶୀୟ ରାଜ୍ୟସବୁ ଅର୍ଦ୍ଧ ସ୍ୱାଧୀନ ବୋଲି ଧରାଯାଉଥିଲା; କିନ୍ତୁ ପ୍ରକୃତରେ ଦେଖିଲେ ଇଂରେଜଙ୍କ ଉପରେ ସେମାନେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି । ପ୍ରତ୍ୟେକ ବଡ଼ ଷ୍ଟେଟରେ ରେସିଡେଣ୍ଟ ନାମରେ ଜଣେ ଇଂରେଜ କର୍ମଚାରୀ ରହିଲେ ଏବଂ ଶାସନ ଉପରେ ତାଙ୍କର ସାଧାରଣ କର୍ତ୍ତୃତ୍ୱ ରହିଲା । ସେ ଆଭ୍ୟନ୍ତରୀଣ ସଂସ୍କାରରେ ଆଗ୍ରହୀ ନ ଥିଲେ ଏବଂ ତାଙ୍କ ପକ୍ଷେ ଷ୍ଟେଟର ଶାସନ କେତେ ଖରାପ ବା କେଉଁ ପୁରୁଣା ଢଙ୍ଗର ହେଲେ ସୁଦ୍ଧା କିଛି ଯାଏ ଆସେ ନାହିଁ । ଷ୍ଟେଟରେ ବ୍ରିଟିଶ କର୍ତ୍ତୃତ୍ୱ ଦୃଢ଼ କରିବାହିଁ ତାର ହେଲା ଅସଲ କାମ ।

ଭାରତ ପ୍ରାୟ ଏକ ତୃତୀୟାଂଶ ଷ୍ଟେଟରେ ବିଭକ୍ତ ହେଲା । ଅବଶିଷ୍ଟ ଦୁଇଭାଗ ଇଂରେଜ ସରକାରର ପ୍ରତ୍ୟକ୍ଷ ପରିଚାଳନାରେ ରହିଲା । ତେଣୁ ଏହି ଦୁଇ ତୃତୀୟାଂଶକୁ ବ୍ରିଟିଶ ଭାରତ ବୋଲି କୁହାଯାଏ । ବ୍ରିଟିଶ ଭାରତରେ ସମସ୍ତ ବଡ଼ କର୍ମଚାରୀ ଇଂରେଜ ରହିଲେ; କେବଳ ୧୯ଶ ଶତାବ୍ଦୀ ଶେଷ ବେଳକୁ ଅଳ୍ପ କେତେକ ଭାରତୀୟ ସେଥିରେ ପ୍ରବେଶ କଲେ । ଏହା ହୋଇ ସୁଦ୍ଧା ସମସ୍ତ କ୍ଷମତା ଓ କର୍ତ୍ତୃତ୍ୱ ସେତେବେଳେ ରହିଲା ଏବଂ ଏବେ ବି ଇଂରେଜଙ୍କ ହାତରେ ରହିଛି । ମିଲିଟାରୀ ଛଡ଼ା ଏହି ଉଚ୍ଚ କର୍ମଚାରୀ ସବୁ ଭାରତ ସିଭିଲ ସର୍ଭିସର ସଭ୍ୟ । ଏହିରୂପେ ସମସ୍ତ ଶାସନ ଏହି ଆ. ସି. ଏସ୍.ଙ୍କ ଦ୍ୱାରା ପରିଚାଳିତ ହେଲା । ଏହିପରି ନୌକରସାହି ସରକାର—ଅର୍ଥାତ୍ ଯେଉଁମାନେ ପରସ୍ପରକୁ ନିଯୁକ୍ତ କରନ୍ତି ଏବଂ ସେମାନେ ଯାହା କରନ୍ତି, ସେଥିଲାଗି ଲୋକଙ୍କ ନିକଟରେ ସେ ଦାୟୀ ନୁହନ୍ତି—ଏହାକୁହିଁ ଅମଲାତନ୍ତ୍ର କହନ୍ତି ।

ଏହି ଆଇ. ସି. ଏସ୍.ଙ୍କ ବିଷୟରେ ଆମେ ଅନେକ କଥା ଶୁଣୁ । ଏମାନେ ଏକ ବିଚିତ୍ର ଢଙ୍ଗର ଲୋକ । ସେମାନେ ଅନେକ ପ୍ରକାରେ କର୍ମକୁଶଳ । ସେମାନେ ସରକାର ସଂଗଠିତ କଲେ, ବ୍ରିଟିଶ ଶାସନ ଦୃଢ଼ କଲେ ଏବଂ ସେହି ଭାବରେ ଏଥିରେ ନିଜେ ବି ଖୁବ୍ ଲାଭବାନ

ହେଲେ । ସରକାରର ଯେଉଁ ସବୁ ବିଭାଗ ବ୍ରିଟିଶ ଶାସନ ଦୃଢ଼ କରିବାରେ ଓ ଟିକସ ଆଦାୟରେ ସାହାଯ୍ୟ କରେ, ତାହା ଦକ୍ଷତାର ସହ ସଂଗଠିତ ହୁଏ । ଅନ୍ୟ ବିଭାଗ ପ୍ରତି ଅବହେଳା ଦେଖାଯାଏ । ଲୋକଙ୍କଦ୍ୱାରା ନିଯୁକ୍ତ ନ ହୋଇ ଥିବାରୁ କିମ୍ବା ଲୋକଙ୍କ ପ୍ରତି ଦାୟୀ ନ ଥିବାରୁ ଯେଉଁ ଅନ୍ୟ ବିଭାଗ ସହ ଲୋକଙ୍କର ବେଶି ସମ୍ପର୍କ ସେଥିପ୍ରତି ଏମାନେ ପ୍ରାୟ ଦୃଷ୍ଟି ଦିଅନ୍ତି ନାହିଁ । ଏପରି ପରିସ୍ଥିତିରେ ସ୍ୱାଭାବିକ ରୂପେ ସେମାନେ ଉଗ୍ର, ଉଦ୍ଧତ ଓ ସାଧାରଣ ଜନମତ ପ୍ରତି ଉଦାସୀନ ହେଲେ । ନିଜର ସଂକୀର୍ଣ୍ଣ ଓ ସୀମାବଦ୍ଧ ଦୃଷ୍ଟିକୋଣ ହେତୁ ସେମାନେ ନିଜକୁ ପୃଥିବୀରେ ସବୁଠାରୁ ଜ୍ଞାନୀଲୋକ ବୋଲି ବିଚାରନ୍ତି । ଭାରତର ମଙ୍ଗଳ ତାଙ୍କ ପକ୍ଷରେ ପ୍ରଥମତଃ ତାଙ୍କ ନିଜ ଚାକିରିର ଉନ୍ନତି । ସେମାନେ ଏକପ୍ରକାର ପରସ୍ପର ପ୍ରଶଂସା କରିବା ସମିତି ଗଢ଼ିଛନ୍ତି ଏବଂ ବାରମ୍ବାର ନିଜର ପ୍ରଶଂସା ଗାଆନ୍ତି । ନିରଙ୍କୁଶ କ୍ଷମତା ଓ କର୍ତ୍ତୃତ୍ୱର ଅନିବାର୍ଯ୍ୟ ପରିଣତି ଏହାହିଁ ହୁଏ ଏବଂ ଭାରତୀୟ ସିଭିଲ ସର୍ଭିସହିଁ ବାସ୍ତବିକରୂପେ ଭାରତର ପ୍ରଭୁ । ବ୍ରିଟିଶ ପାର୍ଲିଆମେଣ୍ଟ ବହୁ ଦୂରରେ ଥାଇ ହସ୍ତକ୍ଷେପ କରି ପାରନ୍ତି ନାହିଁ ଏବଂ କେବେ ମଧ୍ୟ ସେମାନଙ୍କ ହସ୍ତକ୍ଷେପ କରିବା ଦରକାର ହୁଏ ନାହିଁ; କାରଣ ଏମାନେ ସେମାନଙ୍କର ଓ ବ୍ରିଟିଶ ଶିଳ୍ପର ସ୍ୱାର୍ଥରକ୍ଷା କରିବା ନିମନ୍ତେ କାର୍ଯ୍ୟ କରନ୍ତି । ଭାରତର ଲୋକଙ୍କ ସ୍ୱାର୍ଥରକ୍ଷା ବିଚାର କରିବା ପାଇଁ ସେମାନଙ୍କ ଉପରେ ପ୍ରଭାବ ପକାଇବାର ଉପାୟ ନାହିଁ । ସେମାନେ ଏପରି ଅସହିଷ୍ଣୁ ଯେ ତାଙ୍କ କାର୍ଯ୍ୟର ସମାଲୋଚନା ବି ସହି ପାରନ୍ତି ନାହିଁ ।

ତଥାପି ଭାରତୀୟ ସିଭିଲ ସର୍ଭିସରେ ଅନେକ ଭଲ, ସାଧୁ ଓ ଦକ୍ଷ ଲୋକ ଅଛନ୍ତି । କିନ୍ତୁ ନୀତିସ୍ରୋତ ବା ଯେଉଁ ସ୍ରୋତ ଭାରତରୁ ଟାଣି ନେଉଛି, ତାର ଗତି ସେମାନେ ବଦଳାଇ ପାରିବେ ନାହିଁ । ଏଇ. ସି. ଏସ୍. ମାନେ ଇଂଲଣ୍ଡର ଔଦ୍ୟୋଗିକ ଏବଂ ବ୍ୟବସାୟ ସ୍ୱାର୍ଥଲାଗି ଏଜେଣ୍ଟ ଏବଂ ଏମାନେ ଭାରତକୁ ଶୋଷଣ କରି ଚାଲିଲେ ।

ନିଜର ସ୍ୱାର୍ଥ ଏବଂ ବ୍ରିଟିଶ ଶିଳ୍ପ ସ୍ୱାର୍ଥ ରକ୍ଷା କଥା ପଡ଼ିଲେ ଭାରତର ଅମଲାତାନ୍ତ୍ରିକ ସରକାର ବଡ଼ ଦକ୍ଷତାର ସହିତ କାର୍ଯ୍ୟ କରେ । କିନ୍ତୁ ଶିକ୍ଷା ପରିଷ୍କାର ପରିଚ୍ଛନ୍ନତା, ହାତପାତାଲ ଓ ସେହିପରି ଅନ୍ୟ ଅନେକ କାର୍ଯ୍ୟ ଯଦ୍ଦ୍ୱାରା ଏକ ସୁସ୍ଥ ଓ ଉନ୍ନତ ଜାତି ଗଢ଼ାଯାଇ ପାରିବ ସେଥିରେ ଅବହେଳା ଦେଖାଯାଏ । ଅନେକ ବର୍ଷ ପର୍ଯ୍ୟନ୍ତ ଏ ସମ୍ବନ୍ଧରେ ମୂଳରୁ ଚିନ୍ତା କରାଯାଇ ନ ଥିଲା । ପୁରୁଣା ଗ୍ରାମ ପାଠଶାଳା ସବୁ ଲୋପ ପାଇଗଲା । ତାପରେ ଧୀରେ ଧୀରେ ଏବଂ କୁଣ୍ଠିତ ଭାବରେ ଅଳ୍ପ ଆରମ୍ଭ ହେଲା । ତାଙ୍କ ନିଜର ଆବଶ୍ୟକତା ହେତୁ ଏହି ଟିକିକ ଆରମ୍ଭ ହେଲା । ଇଂରେଜ ଲୋକଙ୍କଦ୍ୱାରା ସବୁ ଉଚ୍ଚ ଚାକିରି ପୂରଣ ହୋଇଗଲା, କିନ୍ତୁ ସେମାନେ ଛୋଟ ଛୋଟ ଚାକିରି ଓ କିରାଣୀଗିରି କରି ପାରିଲେ ନାହିଁ । କିରାଣୀ ଦରକାର ହେଲେ ଏବଂ କିରାଣୀ ସୃଷ୍ଟି କରିବା ପାଇଁ ପ୍ରଥମେ ଇଂରେଜ-ମାନଙ୍କଦ୍ୱାରା ସ୍କୁଲ ଓ କଲେଜ କରାଗଲା । ସେହି ଦିନଠାରୁ ଭାରତରେ ଶିକ୍ଷାର ଏହାହିଁ

ପ୍ରଧାନ ଉଦ୍ଦେଶ୍ୟ ହୋଇଛି ଏବଂ ଏଥିରୁ ବାହାରୁଥିବା ଅଧିକାଂଶ ଲୋକ କେବଳ କିରାଣୀ ହେବାଲାଗି ସମର୍ଥ । କିନ୍ତୁ ଅଳ୍ପଦିନ ପରେ ସରକାରୀ କାମ ଓ ଅନ୍ୟ ଚାକିରି ପାଇଁ ଯେତେ କିରାଣୀ ଦରକାର ତାହା ଅପେକ୍ଷା ଅଧିକ କିରାଣୀ ବାହାରିଲେ । ତେଣୁ ଅନେକ ବାଦ ପଡ଼ିଗଲେ ଓ ଏମାନେ ଶିକ୍ଷିତ ବେକାର ନାମରେ ଏକ ନୂଆ ଶ୍ରେଣୀ ସୃଷ୍ଟି ହେଲେ ।

ଏହି ନୂତନ ଇଂରେଜୀ ଶିକ୍ଷାରେ ବଙ୍ଗଳା ଆଗୁଆ ହେଲା ଓ ତେଣୁ ପ୍ରଥମେ ବହୁ ସଂଖ୍ୟାରେ ବଙ୍ଗାଳୀ ଚାକିରି ହୋଇଥିଲେ । ୧୮୫୭ରେ କଲିକତା, ବମ୍ବେ ଓ ମାନ୍ଦ୍ରାଜ ଏହି ତିନୋଟି ବିଶ୍ୱବିଦ୍ୟାଳୟ ଆରମ୍ଭ ହୋଇଥିଲା । ଏଠି ଲକ୍ଷ୍ୟ କରିବା କଥା ଯେ ଏହି ନୂତନ ଶିକ୍ଷାକୁ ମୁସଲମାନମାନେ ଆଦରରେ ଗ୍ରହଣ କରି ନ ଥିଲେ । ଏହିରୂପେ ଚାକିରିଗିରି ଓ ସରକାରୀ ଚାକିରି ପ୍ରତିଯୋଗିରେ ସେମାନେ ପଛରେ ପଡ଼ିଗଲେ । ପରେ ତାଙ୍କର ଏହା ଏକ ଆପତ୍ତିର କାରଣ ହେଲା ।

ଆଉ ଏକ ଲକ୍ଷ୍ୟ କରିବାର କଥା ହେଉଛି, ସରକାର ନିଜେ ଶିକ୍ଷାପ୍ରସାର ପାଇଁ ଉଦ୍ୟମ କରି ମଧ୍ୟ ବାଳିକାମାନଙ୍କୁ ଅବହେଳା କରିଗଲା । ଏହା କିଛି ବିସ୍ମୟର କଥା ନୁହେଁ । କିରାଣି ତିଆରି କରିବା ପାଇଁ ଶିକ୍ଷା ଦିଆଯାଉ ଥିଲା ଏବଂ ପୁରୁଷ କିରାଣି ଦରକାର ପଡ଼ୁଥିଲେ ଏ ଅନୁନ୍ନତ ସାମାଜିକ ପ୍ରଥା ଯୋଗୁଁ ସେମାନେ ହିଁ ସେତେବେଳେ କେବଳ ମିଳୁଥିଲେ । ତେଣୁ ବାଳିକାମାନଙ୍କୁ ସଂପୂର୍ଣ୍ଣରୂପେ ହେଲା କରିଗଲା ଏବଂ ଅନେକ ଦିନରେ ସେମାନଙ୍କ ପାଇଁ ଟିକିଏ କିଛି ଆରମ୍ଭ ହେଲା ।

## ୧୧୩ : ଭାରତର ପୁନର୍ଜାଗରଣ

ଡିସେମ୍ବର ୭, ୧୯୩୨

ଭାରତରେ ବ୍ରିଟିଶ ଶାସନର ଦୃଢ଼ୀକରଣ ହେବା ସଙ୍ଗେ ସଙ୍ଗେ ଯେଉଁ ନୀତି ଫଳରେ ଲୋକଙ୍କର ଦାରିଦ୍ର୍ୟ ଓ ଦୁର୍ଦ୍ଦଶା ବଢ଼ିଲା, ସେ କଥା ମୁଁ ତତେ କହିଛି । ନିଶ୍ଚୟ ଶାନ୍ତି ଏବଂ ଶୃଙ୍ଖଳିତ ସରକାର ମଧ୍ୟ ଆସିଲା ଏବଂ ମୋଗଲ ସାମ୍ରାଜ୍ୟର ପତନ ପରେ ଯେଉଁ ବିଶୃଙ୍ଖଳା ଉପୁଜିଥିଲା, ସେଥିରେ ଏ ଦୁଇଟିଯାକ ସ୍ୱାଗତ କରିଗଲା । ସଙ୍ଗଠିତ ଚୋର ଓ ଡକାୟତି ଦଳକୁ ଦମନ କରିଗଲା । କିନ୍ତୁ ଏହି ନୂତନ କର୍ତ୍ତୃତ୍ୱର ପୀଡ଼ନ ବୋଝରେ ଦଳି ହୋଇଯାଉଥିବା କଲକାରଖାନା ଓ କ୍ଷେତର ଶ୍ରମିକଙ୍କ ପକ୍ଷରେ ଏହି ଶାନ୍ତି ଓ ଶୃଙ୍ଖଳାର ଅର୍ଥ କିଛି ନାହିଁ । ମୁଁ ପୁଣି ତତେ ସ୍ମରଣ କରାଇ ଦେବାକୁ ଚାହେଁ ଯେ କୌଣସି ଏକ ଦେଶ ବା ଜାତି, ବ୍ରିଟେନ ଜନ୍ମା ଇଂରେଜମାନଙ୍କ ଉପରେ ଲାଗିବା ନିର୍ବୋଧପଣିଆ । ଆମ ପରି

ସେମାନେ ମଧ୍ୟ ପରିସ୍ଥିତିର ଶିକାର । ଇତିହାସ ଅଧ୍ୟୟନ ଆମକୁ ଦେଖାଇ ଦେଇଛି ଯେ ଜୀବନଟା ବେଳେ ବେଳେ ଅତ୍ୟନ୍ତ କ୍ରୂର ଓ ନିର୍ବେଦ । ଏଥିରେ ଉତ୍ତେଜିତ ହେବା କିମ୍ବା କେବଳ ଲୋକଙ୍କୁ ଦୋଷ ଦେବା ଅତ୍ୟନ୍ତ ମୂର୍ଖତା ଏବଂ କିଛି ଫଳ ଦିଏ ନାହିଁ । ଆମ୍ଭର ବୁଦ୍ଧିମାନର କାମ ହେଉଛି ଦାରିଦ୍ର୍ୟ, ଦୁର୍ଦ୍ଦଶା ଓ ଶୋଷଣର କାରଣ ବୁଝି ଦୂର କରିବା ନିମନ୍ତେ ଚେଷ୍ଟା କରିବା । ଆମେ ଯଦି ଏହା କରିବାରେ ବିଫଳ ହେଉ ଓ ଘଟଣା ଗତିର ପଛରେ ପଡ଼ୁ, ତାହାହେଲେ ଆମେ କଷ୍ଟ ଭୋଗିବା ନିଶ୍ଚୟ । ଏହି ଭାବରେ ଭାରତ ପଛରେ ପଡ଼ିଗଲା । ସେ ଟିକିଏ ନିର୍ଜୀବ ହୋଇଗଲା, ତାର ସମାଜ ପୁରୁଣା ଢାଞ୍ଚାର ଅନୁସାରେ ଗଢ଼ା ହୋଇଥିଲା । ତାର ସାମାଜିକ ପ୍ରଥା ସମସ୍ତ ଶକ୍ତି ଓ ଜୀବନ ହରାଇ ନିଷ୍ପେଷ୍ଟ ହୋଇଗଲା । ଭାରତ କଷ୍ଟ ଭୋଗିବାରେ ଆଶ୍ଚର୍ଯ୍ୟ ହେବାର ନୁହେଁ । କଷ୍ଟ ଦେବା ନିମନ୍ତେ ଇଂରେଜମାନେ ଏଜେଣ୍ଟ ସ୍ୱରୂପ ଆସିଲେ । ସେମାନେ ନ ଆସିଥିଲେ ହୁଏତ ଆଉ କେହି ଆସି ସେହିପରି କାମ କରିଥାନ୍ତେ ।

କିନ୍ତୁ ଇଂରେଜ ଭାରତର ଗୋଟିଏ ବଡ଼ ଉପକାର କଲେ । ତାଙ୍କର ନୂତନ ଓ ଶକ୍ତିଶାଳୀ ଜୀବନ ଦାଉରେ ଭାରତ ଦୋହଲିଗଲା ଏବଂ ଗୋଟାଏ ରାଜନୈତିକ ଏକତା ଓ ଜାତୀୟତା ଭାବ ଜାତ ହେଲା । ଯନ୍ତ୍ରଣା ଦାୟକ ହେଲେ ମଧ୍ୟ ଆମର ପୁରାତନ ଦେଶ ଓ ଲୋକଙ୍କୁ ପୁନଃଯୌବନ ଦେବା ପାଇଁ ବୋଧହୁଏ ଏପରି ଏକ କମ୍ପନର ଆବଶ୍ୟକତା ଥିଲା । କିରାଣୀ ସୃଷ୍ଟି କରିବା ପାଇଁ ହୋଇଥିବା ଇଂରେଜୀ ଶିକ୍ଷା ହେତୁ ମଧ୍ୟ ଭାରତୀୟମାନେ ପ୍ରଚଳିତ ପାଶ୍ଚାତ୍ୟ ଚିନ୍ତାଧାରା ସମ୍ପର୍କରେ ଆସିଲେ । ଇଂରେଜୀ ପଢ଼ୁଆ ଶ୍ରେଣୀ ନାମକ ଏକ ନୂଆ ଶ୍ରେଣୀ ଗଢ଼ି ଉଠିଲେ-ଏମାନଙ୍କ ସଂଖ୍ୟା କମ୍ ଏବଂ ଜନସାଧାରଣଙ୍କଠାରୁ ବିଚ୍ଛିନ୍ନ ହେଲା, କିନ୍ତୁ ନୂତନ ଜାତୀୟବାଦୀ ଆନ୍ଦୋଳନର ନେତୃତ୍ୱ ନେବାପାଇଁ ଏମାନେ ଭାଗ୍ୟ ଧରି ଆସିଥିଲେ । ପ୍ରଥମେ ଏହି ଶ୍ରେଣୀ ଇଂଲଣ୍ଡର ଓ ଇଂରେଜମାନଙ୍କର ସ୍ୱାଧୀନତା ଧାରଣାର ଭୂରି ଭୂରି ପ୍ରଶଂସା ଗାଇଲେ । ଠିକ୍ ଏତିକିବେଳେ ଇଂଲଣ୍ଡର ଲୋକେ ସ୍ୱାଧୀନତା ଓ ଗଣତନ୍ତ୍ର ସମ୍ବନ୍ଧରେ ବଡ଼ ବଡ଼ କଥା କହୁଥାଆନ୍ତି । ଏହାସବୁ ଥିଲା ନିରର୍ଥକ ଏବଂ ଭାରତରେ ଇଂଲଣ୍ଡ ନିଜ ସୁବିଧା ସକାଶେ ସ୍ୱେଚ୍ଛାଚାରୀ ଶାସନ କରୁଥିଲା । କିନ୍ତୁ ଅତି ଆଶାବାଦୀ ଭାବରେ ଆଶା କରାଯାଉଥିଲା ଯେ ଠିକ୍ ବେଳ ପହଞ୍ଚିଲେ ଇଂଲଣ୍ଡ ଭାରତକୁ ସ୍ୱାଧୀନତା ଦେବ ।

ଭାରତରେ ପାଶ୍ଚାତ୍ୟ ଭାବଧାରାର ସଂଘାତର ପ୍ରଭାବ ହିନ୍ଦୁ ଧର୍ମ ଉପରେ କେତେକ ପରିମାଣରେ ପଡ଼ିଲା । ଜନସାଧାରଣଙ୍କୁ ତାହା ସ୍ପର୍ଶ କରି ନ ଥିଲା ଏବଂ ତତେ ମୁଁ ଯାହା କହିଛି ବ୍ରିଟିଶ ସରକାର ନୀତି ପ୍ରକୃତରେ ରକ୍ଷଣଶୀଳ ଲୋକଙ୍କୁ ସାହାଯ୍ୟ କଲା । କିନ୍ତୁ ସରକାରୀ ଚାକିରିଆ ଓ ଅନ୍ୟ ବ୍ୟବସାୟୀ ଲୋକଙ୍କର ଯେଉଁ ନୂତନ ମଧ୍ୟବିତ୍ତ ଶ୍ରେଣୀ ଗଢ଼ି ଉଠୁଥିଲା, ସେମାନଙ୍କୁ ଏହା ସ୍ପର୍ଶ କଲା । ୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ପାଶ୍ଚାତ୍ୟ ଢଙ୍ଗରେ ହିନ୍ଦୁଧର୍ମର ସଂସ୍କାର କରିବାର ଉଦ୍ୟମ ବଙ୍ଗଳାରେ ହେଲା । ଅବଶ୍ୟ ଅତୀତରେ ଅସଂଖ୍ୟ

ହିନ୍ଦୁଧର୍ମ ସଂସ୍କାରକ ବାହାରିଛନ୍ତି ଏବଂ କେତେକଙ୍କ କଥା ମୁଁ ଏହିସବୁ ଚିଠିରେ ତୋତେ ଲେଖିଛି । କିନ୍ତୁ ଖ୍ରୀଷ୍ଟଧର୍ମ ଓ ପାଶ୍ଚାତ୍ୟ ଚିନ୍ତାର ଏହି ନୂତନ ଉଦ୍ୟମ ଉପରେ ନିର୍ଦ୍ଦିଷ୍ଟ ରୂପେ ପ୍ରଭାବ ପଡ଼ିଲା । ଏହି ପ୍ରଚେଷ୍ଟା ଆରମ୍ଭ କରିଥିଲେ ରାଜା ରାମମୋହନ ରାୟ । ସେ ଜଣେ ମହାନ୍ ଲୋକ ଓ ବଡ଼ ବିଦ୍ୱାନ—ସତୀଦାହ ପ୍ରଥା ଲୋପ ବିଷୟ ଆଲୋଚନା ବେଳେ ଆମେ ତାଙ୍କ ନାମ ଶୁଣିଛେଁ । ସେ ଆରବୀ, ସଂସ୍କୃତ ଓ ଆହୁରି ଅନେକ ଭାଷା ଭଲରୂପେ ଜାଣିଥିଲେ ଏବଂ ଯତ୍ନର ସହିତ ବିଭିନ୍ନ ଧର୍ମ ଅଧ୍ୟୟନ କରିଥିଲେ । ସେ ଧାର୍ମିକ ଉତ୍ସବ, ପୂଜା ପ୍ରଭୃତିର ବିରୋଧୀ ଥିଲେ ଏବଂ ସେ ସମାଜ ସଂସ୍କାର ଓ ସ୍ତ୍ରୀଶିକ୍ଷାର ପ୍ରଚାର କଲେ । ସେ ବ୍ରାହ୍ମସମାଜର ସ୍ଥାପନା କଲେ । ସଂଖ୍ୟା ହିସାବରେ ଏହା ସେତେବେଳେ ଶ୍ରେଷ୍ଠ ଥିଲା ଏବଂ ଏବେ ମଧ୍ୟ ଶ୍ରେଷ୍ଠ ଅନୁଷ୍ଠାନଟିଏ ହୋଇ ରହିଛି ଏବଂ ବଙ୍ଗଳାର ଇଂରେଜୀ ଜାଣିଥିବା ଲୋକଙ୍କ ଭିତରେ ଏହା ସୀମାବଦ୍ଧ । କିନ୍ତୁ ବଙ୍ଗଳାର ଜୀବନ ଉପରେ ଏହାର ପ୍ରଚୁର ପ୍ରଭାବ ପଡ଼ିଲା । ଠାକୁର ପରିବାର ଏହା ଗ୍ରହଣ କଲେ ଏବଂ ଅନେକ ଦିନ ପର୍ଯ୍ୟନ୍ତ କବି ରବୀନ୍ଦ୍ରନାଥଙ୍କ ପିତା ମହର୍ଷି ଦେବେନ୍ଦ୍ରନାଥ ଠାକୁର ଏହି ସମାଜର ଜଣେ ପ୍ରଧାନ ସ୍ତମ୍ଭ ଓ ସହାୟକ ଥିଲେ । ଆଉ ଜଣେ ନେତୃସ୍ଥାନୀୟ ସଭ୍ୟ ହେଉଛନ୍ତି କେଶବଚନ୍ଦ୍ର ସେନ ।

ଏହି ଶତାବ୍ଦୀରେ ପରେ ଆଉ ଏକ ଧର୍ମସଂସ୍କାର ଆନ୍ଦୋଳନ ହେଲା । ଏହା ପଞ୍ଜାବରେ ଆରମ୍ଭ ହେଲା ଏବଂ ପ୍ରତିଷ୍ଠାତା ହେଲେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ । ଆର୍ଯ୍ୟସମାଜ ବୋଲି ଆଉ ଏକ ସମିତି ଆରମ୍ଭ ହେଲା । ଏହା ହିନ୍ଦୁଧର୍ମର ଅନେକ ଜିନିଷ ଓ ଜାତିଭେଦକୁ ଅସ୍ୱୀକାର କଲା । ଏହାର ଆହ୍ୱାନ ହେଲା, "ବେଦକୁ ଫେରିଯାଅ ।" ଏହା ଉପରେ ନିଃସନ୍ଦେହ ରୂପେ ମୁସଲମାନ ଓ ଖ୍ରୀଷ୍ଟିୟାନ ଚିନ୍ତାର ପ୍ରଭାବ ପଡ଼ିଥିଲା ଏବଂ ଏହା ଏକ ସଂସ୍କାରକ ଆନ୍ଦୋଳନ ହେଲେ ମଧ୍ୟ ଏକ ଉଗ୍ର ଆକ୍ରମଣମୂଳକ ଆନ୍ଦୋଳନ । ବିଚିତ୍ର କଥା ଯେ ସବୁ ହିନ୍ଦୁ ସମ୍ପ୍ରଦାୟଙ୍କ ଭିତରେ ଆର୍ଯ୍ୟସମାଜ ଇସଲାମ ଧର୍ମର ନିକଟକୁ ଆସିଥିଲେ ସୁଦ୍ଧା ଏପରି ହେଲା ଯେ ଏହା ଇସଲାମର ବିରୋଧୀ ଓ ପ୍ରତିଦ୍ୱନ୍ଦ୍ୱୀ ହୋଇ ବାହାରିଲା । ରକ୍ଷାମୂଳକ ଓ ନିଶ୍ଚଳ ହିନ୍ଦୁଧର୍ମକୁ ଏକ ଉଗ୍ର ମିସନାରୀ ଆନ୍ଦୋଳନରେ ପରିଣତ କରିବାର ଏହା ଏକ ଉଦ୍ୟମ । ଏହା ହିନ୍ଦୁଧର୍ମ ପୁନରୁଦ୍ଧାର କରିବା ନିମନ୍ତେ ହୋଇଥିଲା । ଏକ ଜାତୀୟତାର ରୂପହିଁ ଏହି ଆନ୍ଦୋଳନକୁ ବଳ ଦାନ କଲା । ପ୍ରକୃତରେ ହିନ୍ଦୁ ଜାତୀୟତାହିଁ ମୁଣ୍ଡ ଟେକୁଥିଲା । ଏହା ହିନ୍ଦୁ ଜାତୀୟବାଦ ହୋଇଥିବାରୁ ଭାରତୀୟ ଜାତୀୟବାଦରେ ପରିଣତ ହେବା ଏହା ପକ୍ଷରେ କଷ୍ଟକର ହେଲା ।

ବ୍ରାହ୍ମସମାଜ ଅପେକ୍ଷା ଆର୍ଯ୍ୟସମାଜ ଅଧିକ ବିସ୍ତୃତ ଥିଲା । ବିଶେଷତଃ ପଞ୍ଜାବରେ ଏହା ବେଶି ବ୍ୟାପିଥିଲା । କିନ୍ତୁ ମଧ୍ୟବିତ୍ତ ଶ୍ରେଣୀ ମଧ୍ୟରେ ଏହା ସୀମାବଦ୍ଧ ଥିଲା । ସମାଜ ଖୁବ୍ ଶିକ୍ଷାମୂଳକ କାର୍ଯ୍ୟ କଲା ଏବଂ ବାଳକ ଓ ବାଳିକା ଉଭୟଙ୍କ ପାଇଁ ଅନେକ ସ୍କୁଲ ଓ କଲେଜ ସ୍ଥାପନା କରିଥିଲା ।

ଏହି ଶତାବ୍ଦୀରେ ଆଉ ଜଣେ ଧର୍ମପ୍ରଚାରକ ବାହାରିଲେ—ସେ ହେଉଛନ୍ତି ରାମକୃଷ୍ଣ ପରମହଂସ । ସେ ଜଣେ ଅଲୌକିକ ଧାର୍ମିକ ବ୍ୟକ୍ତି । କିନ୍ତୁ ମୁଁ ଯେଉଁମାନଙ୍କ କଥା ଏହି ଚିଠିରେ ଉଲ୍ଲେଖ କରିଛି, ସେ ସେମାନଙ୍କଠାରୁ ସ୍ୱତନ୍ତ୍ର । ସେ ପ୍ରଚାର ପାଇଁ କୌଣସି ଉଗ୍ର ସମିତି ସ୍ଥାପନ କରି ନ ଥିଲେ । ସେ ସେବା ଉପରେ ଜୋର୍ ଦେଲେ ଏବଂ ଦେଶର ଅନେକ ସ୍ଥାନରେ ରାମକୃଷ୍ଣ ସେବାଶ୍ରମ ସବୁ ଦୁର୍ବଳ ଓ ଦରିଦ୍ରର ସେବାକାର୍ଯ୍ୟ କରୁଛନ୍ତି । ରାମକୃଷ୍ଣ ପରମହଂସଙ୍କର ଏକ ବିଖ୍ୟାତ ଶିଷ୍ୟ ହେଉଛନ୍ତି ସ୍ୱାମୀ ବିବେକାନନ୍ଦ । ସେ ବଡ଼ ଓଜସ୍ୱିନୀ ଭାଷାରେ ଏବଂ ପ୍ରବଳଭାବରେ ଜାତୀୟତାବାଦର ପ୍ରଚାର କଲେ । ଏହା ମୁସଲମାନ ବା ଅନ୍ୟ କୌଣସି ଧର୍ମବିରୋଧୀ ନ ଥିଲା । ଆର୍ଯ୍ୟ ସମାଜର ସଙ୍କୀର୍ଣ୍ଣ ଜାତୀୟତାବାଦ ପରି ନୁହେଁ । ତାହା ହେଲେ ସୁଦ୍ଧା ବିବେକାନନ୍ଦ ଜାତୀୟତାବାଦ ହେଉଛି ହିନ୍ଦୁ ଜାତୀୟତାବାଦ ଏବଂ ହିନ୍ଦୁଧର୍ମ ଓ ସଂସ୍କୃତି ଉପରେ ଏହା ପ୍ରତିଷ୍ଠିତ ।

୧୯ଶ ଶତାବ୍ଦୀରେ ଭାରତରେ ଜାତୀୟତାର ପ୍ରଥମ ତରଙ୍ଗ ଧାର୍ମିକ ଓ ହିନ୍ଦୁଧର୍ମ-ସମ୍ପନ୍ନ ଥିଲା ଦେଖିଲେ ମଜା ଲାଗେ । ଏହି ହିନ୍ଦୁ ଜାତୀୟତାବାଦରେ ମୁସଲମାନମାନେ ସ୍ୱାଭାବିକ ରୂପେ କୌଣସି ଭାଗ ନେଇପାରି ନ ଥିଲେ । ସେମାନେ ଅଲଗା ରହିଲେ । ଇଂରେଜ ଶିକ୍ଷାରୁ ଦୂରରେ ଥିବାରୁ ଏହି ନୂତନ ଭାବଧାରା ସେମାନଙ୍କୁ ଅଳ୍ପ ସ୍ପର୍ଶ କରିଥିଲା ଏବଂ ସେମାନଙ୍କ ମଧ୍ୟରେ ଖୁବ୍ କମ୍ ବୌଦ୍ଧିକ ଶୃଙ୍ଖଳା ଖେଳୁଥିଲା । ଅନେକ ବର୍ଷ ପରେ ସେମାନେ ନିଜ କୋଠରୀରୁ ପଦାକୁ ଆସିଲେ ଏବଂ ତାପରେ ହିନ୍ଦୁଙ୍କ ପରି ସେମାନଙ୍କ ଜାତୀୟତାବାଦ ମୁସଲମାନ ଜାତୀୟତାବାଦ ରୂପ ଧରିଲା । ମୁସଲମାନ ସଂସ୍କାର ଓ କୃଷ୍ଟି ପ୍ରତି ସେମାନେ ଦୃଷ୍ଟି ଫେରାଇଲେ ଏବଂ ସଂଖ୍ୟା ଗରିଷ୍ଠ ହିନ୍ଦୁଙ୍କ ଯୋଗୁଁ ଏହା ହରାଇବେ ବୋଲି ଭୟ କରୁଥିଲେ । କିନ୍ତୁ ଏହି ଶତାବ୍ଦୀ ଶେଷ ବେଳକୁ ଏହି ମୁସଲମାନ ଆନ୍ଦୋଳନ ଆଉ ଭଲରୂପେ ପ୍ରକଟିତ ହେଲା ନାହିଁ ।

ଆଉ ଏକ ମଜାର କଥା ହେଉଛି, ହିନ୍ଦୁ ଓ ମୁସଲମାନ ଧର୍ମର ଏହି ସଂସ୍କାର ଓ ପ୍ରଗତିମୂଳକ ଆନ୍ଦୋଳନରେ ସେମାନେ ପାଶ୍ଚାତ୍ୟରୁ ନୂତନ ବୈଜ୍ଞାନିକ ଓ ରାଜନୈତିକ ଚିନ୍ତାଧାରା ସହିତ ପୁରାତନ ଧାର୍ମିକ ଧାରଣା ଓ ଆଚରଣକୁ ଖାପ ଖୁଆଇବାକୁ ଚେଷ୍ଟା କଲେ । ସେ ଏହି ପୁରୁଣା ଧାରଣା ଓ ଆଚରଣକୁ ନିର୍ଭୀକ ଭାବରେ ପରୀକ୍ଷା କରିବା ଓ ଏହାର ସମ୍ମୁଖୀନ ହେବା ନିମନ୍ତେ ପ୍ରସ୍ତୁତ ନ ଥିଲେ; ଅଥବା ଚାରିଆଡ଼େ ଯେଉଁ ବିଜ୍ଞାନ, ରାଜନୈତିକ ଓ ସାମାଜିକ ଭାବଧାରାର ନୂତନ ଦୁନିଆ ଦେଖା ଯାଉଥିଲା, ତାହାକୁ ଅବଜ୍ଞା କରି ପାରିଲେ ନାହିଁ । ତେଣୁ ସେମାନେ ଏହି ଦୁହିଁଙ୍କି ମିଳାଇବାକୁ ଚେଷ୍ଟା କଲେ ଏବଂ ନିଜ ନିଜ ଧର୍ମର ପୁରୁଣା ଧର୍ମଶାସ୍ତ୍ରସବୁ ବାହାର କରି ଦେଖାଇବାକୁ ଲାଗିଲେ ଯେ ସମସ୍ତ ଆଧୁନିକ ଭାବଧାରା ଓ ପ୍ରଗତି ବିଷୟ ଏହିସବୁ ଗ୍ରନ୍ଥରେ ରହିଛି । ଏପରି ଚେଷ୍ଟା ବିଫଳ ହେବାର କଥା । ଏହା କେବଳ ମୁକ୍ତ ଚିନ୍ତା କରିବାରେ ଲୋକଙ୍କୁ ବାଧା ଦେଲା । ଯେଉଁସବୁ ନୂତନ ଶକ୍ତି ଓ ଭାବଧାରା ଦୁନିଆକୁ ବଦଳାଉଛି, ତାକୁ ବୁଝିବାକୁ ଚେଷ୍ଟା କରିବା ଓ ସେ

ସମ୍ବନ୍ଧରେ ସାହସର ସହ ଚିନ୍ତା କରିବା ପରିବର୍ତ୍ତେ ସେମାନେ ପୁରାତନ ଆଚରଣ ଓ ସଂସ୍କାରରେ ଘାଣ୍ଟିହେବାକୁ ଲାଗିଲେ । ଆଗକୁ ଦୃଷ୍ଟି ପକାଇ ଆଗକୁ ମାଡ଼ିଯିବା ପରିବର୍ତ୍ତେ ସେମାନେ ଅଜଣା ଭାବରେ ପଛକୁ ଦୃଷ୍ଟି ପକାଇଲେ । ଯଦି ନିଜର ମୁଣ୍ଡକୁ ସର୍ବଦା ଫେରାଇ ପଛକୁ ଚାହିଁବ, ତେବେ ଆଗକୁ ମାଡ଼ି ଚାଲିବା କିଛି ସହଜ ନୁହେଁ ।

ସହରମାନଙ୍କରେ ଧୀରେ ଧୀରେ ଇଂରେଜୀ ଶିକ୍ଷିତ ଶ୍ରେଣୀ ବୃଦ୍ଧି ପାଇଲା ଏବଂ ଏହା ସହିତ ବ୍ୟବସାୟୀ ଲୋକ ଅର୍ଥାତ୍ ଓକିଲ, ଡାକ୍ତର, ବଣିକ, ବେପାରୀ ଆଦି ନୂତନ ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟି ହେଲା । ଅବଶ୍ୟ ଅତୀତରେ ଏକ ମଧ୍ୟବିତ୍ତ ଶ୍ରେଣୀ ଥିଲା, କିନ୍ତୁ ଏହା ଅନେକାଂଶରେ ବ୍ରିଟିଶ ମାନର ଆରମ୍ଭରେ ଦବାଇ ଦିଆଯାଇଥିଲା । ନୂତନ ବୁର୍ଜୋୟା ବା ମଧ୍ୟବିତ୍ତ ଶ୍ରେଣୀ ବ୍ରିଟିଶ ଶାସନର ପ୍ରତ୍ୟକ୍ଷ ଫଳ; ଏକପ୍ରକାର ସେମାନେ ଏହି ଶାସନ ଉପରେ ବଞ୍ଚି ରହିଲେ । ସେମାନେ ଅଳ୍ପ ପରିମାଣରେ ଜନସାଧାରଣଙ୍କ ଶୋଷଣରେ ଭାଗୀଦାର ହେଲେ । ବ୍ରିଟିଶ ଶାସକ ଶ୍ରେଣୀର ମୂଲ୍ୟବାନ ଖାଦ୍ୟପଦାର୍ଥର ତଳେ ଟିକିଏ ପଡ଼ିଥିବା ଅଇଁଠା ସବୁ ଏମାନେ ଗୋଟାଇ ନେଲେ । ସେମାନେ ଶ୍ରେଷ୍ଠ ଶ୍ରେଷ୍ଠ କର୍ମଚାରୀ ହୋଇ ଦେଶରେ ବ୍ରିଟିଶ ଶାସନକୁ ସାହାଯ୍ୟ କଲେ; ଅନେକ ଓକିଲ ହୋଇ ଆଇନ ଅଦାଲତ ଚାଳନାରେ ସାହାଯ୍ୟ କଲେ ଏବଂ ମାଲିମକଦ୍ଦମା ହେତୁ ଧନୀ ହେଲେ; ବ୍ରିଟିଶ ବେପାର ଓ ଶିଳ୍ପ ଭିତରେ ମଧ୍ୟସ୍ଥ ବଣିକମାନେ ଲାଭ ବା କମିଶନ ପାଇ ବ୍ରିଟିଶ ଜିନଷ ସବୁ ବିକ୍ରି କଲେ ।

ଏହି ନୂତନ ବୁର୍ଜୋୟା ଶ୍ରେଣୀର ଅଧିକାଂଶ ହେଉଛନ୍ତି ହିନ୍ଦୁ । ମୁସଲମାନଙ୍କ ତୁଳନାରେ ସେମାନଙ୍କର ଆର୍ଥିକ ଅବସ୍ଥା ଟିକିଏ ଭଲ ଥିବାରୁ ଏପରି ହେଲା ଏବଂ ଇଂରେଜୀ ଶିକ୍ଷା ସେମାନେ ଗ୍ରହଣ କରିବାରୁ ସରକାରୀ ଚାକିରି ଓ ଏହିସବୁ ବ୍ୟବସାୟ ପାଇଁ ଏହା ଅନୁମତିପତ୍ର ରୂପେ କାର୍ଯ୍ୟକଲା ମୁସଲମାନମାନେ ସାଧାରଣତଃ ଗରିବ । ଇଂରେଜମାନେ ଭାରତୀୟ ହସ୍ତଶିଳ୍ପ ଧ୍ୱଂସ କରିବା ଫଳରେ ଯେଉଁ ସବୁ ତନ୍ତୀ ପଥର ଭିକାରୀ ହେଲେ ସେମାନଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ମୁସଲମାନ । ବଙ୍ଗଳାରେ ଭାରତର ଅନ୍ୟ ସବୁ ପ୍ରଦେଶ ଅପେକ୍ଷା ଅଧିକ ମୁସଲମାନ ଅଛନ୍ତି—ଏଠି ସେମାନେ ଗରିବ ପ୍ରଜା ବା ଶ୍ରେଷ୍ଠ ଜମିଦାର । ସାଧାରଣତଃ ହିନ୍ଦୁହିଁ ଜମିଦାର ଏବଂ ଗାଁ ବଣିଆ ବା ମହାଜନ ବି ହିନ୍ଦୁ । ଗାଁ ଦୋକାନର ଏହି ବଣିଆ ଥିଲେ ମାଲିକ । ଜମିଦାର ଓ ମହାଜନ ଏହିରୂପେ ପ୍ରଜାଙ୍କ ପ୍ରତି ଅତ୍ୟାଚାର ଓ ଶୋଷଣ କରିବା ଅବସ୍ଥାରେ ଥିଲେ ଏବଂ ସେମାନେ ଏ ଅବସ୍ଥାର ପୂର୍ଣ୍ଣ ଫାଇଦା ଉଠାଇଲେ । ଏହା ଭଲଭାବରେ ମନେ ରଖିବା ଦରକାର । କାରଣ ହିନ୍ଦୁ ମୁସଲମାନଙ୍କ ଭିତରେ ବିବାଦର ମୂଳ କାରଣ ହେଉଛି ଏଇୟା ।

ଏହି ସମୟରେ ବିଶେଷତଃ ଦକ୍ଷିଣରେ ଉଚ୍ଚବର୍ଣ୍ଣ ହିନ୍ଦୁମାନେ ତଥାକଥିତ "ପତିତ" ଶ୍ରେଣୀଙ୍କୁ ଶୋଷଣ କଲେ—ଏହି ଶ୍ରେଣୀର ଅଧିକାଂଶ ଲୋକେ ଭୂମିରେ କୃଷକରନ୍ତି । ଆଜିକାଲି ଏବଂ ବିଶେଷତଃ ବାପୁ (ଗାନ୍ଧି)ଙ୍କ ଉପବାସ ଦିନଠାରୁ ଏହି ପତିତ ଶ୍ରେଣୀର ସମସ୍ୟା ଆମ ସମ୍ମୁଖକୁ ଆସିଛି । ଛୁଆଁଛୁଇଁ ଅସ୍ପୃଶ୍ୟତା ଉପରେ ଆକ୍ରମଣ କରାଯାଇଛି ଏବଂ ଶହ ଶହ ମନ୍ଦିର ଓ ଅନ୍ୟ ସ୍ଥାନସବୁ ଏହି ଶ୍ରେଣୀ ପାଇଁ ଖୋଲା ହୋଇଛି । ଏହିସବୁ ପ୍ରଶ୍ନର ଅସଲ ମୂଳରେ ଅଛି ଅର୍ଥନୈତିକ ଶୋଷଣ ଏବଂ ଏହା ନ ଗଲେ ପତିତ ଶ୍ରେଣୀ ପତିତ ହୋଇ ରହିଥିବେ । ଅସ୍ପୃଶ୍ୟମାନେ କୃଷିକ୍ଷେତ୍ରରେ ଅର୍ଦ୍ଧଦାସ ରୂପେ ରହିଛନ୍ତି—ସେମାନଙ୍କୁ ଜମି ଅଧିକାର କରିବାକୁ ଦିଆଯାଉନାହିଁ । ସେମାନଙ୍କର ଆଉସବୁ ଅସୁବିଧା ରହିଛି ମଧ୍ୟ ।

ଯଦିଓ ମୋଟାମୋଟି ଭାରତସାରା ଓ ଜନସାଧାରଣ ଅଧିକ ଦରିଦ୍ର ହୋଇ ପଡ଼ିଲେ, ତଥାପି ଦେଶର ଶୋଷଣରେ ଭାଗୀଦାର ହୋଇଥିବାରୁ ମୁଷ୍ଟିମେୟ ନୂତନ ବୁର୍ଜୋୟା ଶ୍ରେଣୀ ଉନ୍ନତି ଲାଭ କଲେ । ଓକିଲ, ଅନ୍ୟ ବ୍ୟବସାୟୀ ଲୋକ ଓ ବଣିକମାନେ କିଛି ଧନ ଜମା କଲେ । ସେମାନେ ଏହା ଖଟାଇବାକୁ ଇଚ୍ଛା କଲେ । ତାହା ହେଲେ ସେମାନେ ଏହାର ସୁଧରୁ କିଛି ଆୟ କରି ପାରିବେ । ତାଙ୍କ ଭିତରୁ ଅନେକେ ଗରିବ ଜମିଦାରଙ୍କଠାରୁ ଜମି କିଣିଲେ ଏବଂ ଏହିରୂପେ ସେମାନେ ଜମିଦାର ପାଲଟିଲେ । ଅନ୍ୟମାନେ ଇଂରେଜଶିଳ୍ପର ଅଦ୍ଭୁତ ଉନ୍ନତି ଦେଖି ଭାରତର କାରଖାନାମାନଙ୍କରେ ନିଜର ଧନ ଲଗାଇବା ପାଇଁ ଚାହିଁଲେ । ତେଣୁ ଏହି ବଡ଼ କଳକାରଖାନାମାନଙ୍କୁ ଭାରତୀୟ ଧନ ଚାଲିଲା ଏବଂ ଏକ ଭାରତୀୟ ଔଦ୍ୟୋଗିକ ପୁଞ୍ଜିବାଦୀ ଶ୍ରେଣୀ ଜାଗି ଉଠିଲା । ଆଜିକି ୫୦ ବର୍ଷ ତଳେ ୧୮୮୦ର ଏହି ଘଟଣା ।

ବୁର୍ଜୋୟା ଶ୍ରେଣୀର ଉନ୍ନତି ସଙ୍ଗେ ସଙ୍ଗେ ସେମାନଙ୍କ କ୍ଷୁଧା ବି ବଢ଼ିଲା । ସେମାନେ ଉପରକୁ ଉଠିବାକୁ ଚାହିଁଲେ, ଅଧିକ ଧନ କରିବାକୁ ଚାହିଁଲେ, ଅଧିକ ସରକାରୀ ଚାକିରୀ ପାଇବା ଇଚ୍ଛାକଲେ ଏବଂ କଳକାରଖାନା ବସାଇବା ନିମନ୍ତେ ଅଧିକ ସୁବିଧା ଦାବୀ କଲେ । ସେମାନେ ଦେଖିଲେ ଯେ ପ୍ରତ୍ୟେକ ବାଟରେ ଇଂରେଜ ତାଙ୍କୁ ବାଧା ଦେଉଛି । ସବୁ ବଡ଼ ବଡ଼ ଚାକିରିରେ ଇଂରେଜଙ୍କର ଏକଚାଟିଆ ଅଧିକାର ଏବଂ ଇଂରେଜଙ୍କ ଲାଭ ପାଇଁ ଉଦ୍ୟୋଗଧନ୍ଦା ଚାଲିଛି । ତେଣୁ ସେମାନେ ଆନ୍ଦୋଳନ କରିବାକୁ ଲାଗିଲେ ଏବଂ ଏହା ହେଉଛି ନୂତନ ଜାତୀୟବାଦ ଆନ୍ଦୋଳନର ମୂଳକଥା । ୧୮୫୭ ବିଦ୍ରୋହ ପରେ ଏବଂ ଏହାର କ୍ରୂର ଦମନ ପରେ କୌଣସି ପ୍ରକାର ଆନ୍ଦୋଳନ ବା ଉଗ୍ର ଆନ୍ଦୋଳନ କରିବାର ଇଚ୍ଛା ଲୋକଙ୍କର ଭାଙ୍ଗି ଯାଇଥିଲା । ଫିକିଏ ବଳ ସଞ୍ଚାର ନିମନ୍ତେ ତାକୁ ଅନେକ ବର୍ଷ ଲାଗିଲା ।

ଜାତୀୟତା ଭାବ ଶୀଘ୍ର ବ୍ୟାପିଲା ଏବଂ ବଙ୍ଗଳା ଏଥିରେ ନେତୃତ୍ୱ ନେଲା । ବଙ୍ଗଳା ଭାଷାରେ ନୂତନ ବହି ସବୁ ବାହାରିଲା ଏବଂ ବଙ୍ଗଳାରେ ଜାତୀୟତା ପ୍ରସାର

ଓ ଭାଷା ଉପରେ ଏହାର ଖୁବ୍ ପ୍ରଭାବ ପଡ଼ିଲା । ଏଥିରୁ ଗୋଟିଏ ବନ୍ଧୁ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କର । ଆନନ୍ଦ ମଠ ବହିରେ ଆମର ପ୍ରସିଦ୍ଧ ଗୀତ, "ବନ୍ଦେ ମାତରମ୍" ଅଛି । ଆଉ ଏକ ବଙ୍ଗଳା କାବ୍ୟ 'ନୀଳଦର୍ପଣ' ମଧ୍ୟ ଶୃଙ୍ଖଳା ସୃଷ୍ଟି କରିଥିଲା । ମୁଁ ଯେଉଁ ନୀଳ ଆବାଦୀ ପ୍ରଥା ସମ୍ବନ୍ଧରେ ଉଲ୍ଲେଖ କରିସାରିଛି, ସେହି ଆବାଦୀ ଅଧୀନରେ କାର୍ଯ୍ୟ କରୁଥିବା ବଙ୍ଗାଳୀ କୃଷକର ଦୁରବସ୍ଥା ସମ୍ବନ୍ଧରେ ଅତି ଦୁଃଖାତ୍ମକ ବର୍ଣ୍ଣନା ସବୁ ଏଥିରେ ହୋଇଥିଲା ।

ଇତ୍ୟବସରରେ ଭାରତୀୟ ପୁଞ୍ଜିର ଶକ୍ତି ମଧ୍ୟ ବଢ଼ୁଥିଲା ଏବଂ ଏହା ବୃଦ୍ଧି ପାଇଁ ଅଧିକ ସ୍ଥାନ ଦାବୀ କଲା । ଅବଶେଷରେ ୧୮୮୫ରେ ନୂତନ ବୁର୍ଜୋୟା ଶ୍ରେଣୀର ବଳିଷ୍ଠ ଲୋକ ନିଜର ଉଦ୍ଦେଶ୍ୟ ହାସଲ ପାଇଁ ଏକ ଅନୁଷ୍ଠାନ ଆରମ୍ଭ କରିବା ନିମନ୍ତେ ସ୍ଥିରକଲେ । ଏଥିଯୋଗୁଁ ୧୮୮୫ ସାଲରେ ଭାରତ ଜାତୀୟ କଂଗ୍ରେସ ସ୍ଥାପିତ ହେଲା । ତୁ ଏବଂ ଭାରତରେ ପ୍ରତ୍ୟେକ ବାଳକବାଳିକା ଭଲଭାବରେ ଜାଣନ୍ତି ଯେ ଏହି ଅନୁଷ୍ଠାନ ଆଜିକାଲି ମହାନ୍ ଓ ଶକ୍ତିଶାଳୀ ହୋଇଛି । ଏହା ଜନସାଧାରଣଙ୍କ ଦୁଃଖ କଥା ବୁଝିଲା ଏବଂ କେତେକ ପରିମାଣରେ ଜନତାର ମୁଖପାତ୍ର ହେଲା । ଏହା ଭାରତରେ ବ୍ରିଟିଶ ଶାସନର ଅସଲ ମୂଳଭିତ୍ତିକୁ ଚ୍ୟାଲେଞ୍ଜ କଲା ଏବଂ ତା ବିରୁଦ୍ଧରେ ବଡ଼ ଗଣଆନ୍ଦୋଳନ ଚଳାଇଲା । ଏହା ସ୍ୱାଧୀନତାର ବାନା ଉଡ଼ାଇଲା ଏବଂ ସ୍ୱାଧୀନତା ପାଇଁ ବୀର ପରି ଲଢ଼ିଲା । ଆଜି ସୁଦ୍ଧା ଏହି ଯୁଦ୍ଧ ଚଳାଇଛି । କିନ୍ତୁ ଏସବୁ ପରବର୍ତ୍ତୀ ଇତିହାସ । ପ୍ରଥମେ ଯେତେବେଳେ ଜାତୀୟ କଂଗ୍ରେସ ସ୍ଥାପିତ ହେଲା, ଏହା ଅତ୍ୟନ୍ତ ମାନ୍ଦା ଓ ସାବଧାନରେ ରହିବା ଭଳି ଅନୁଷ୍ଠାନ ଥିଲା । ବ୍ରିଟିଶ ରାଜସଭାକୁ ଭକ୍ତି ଦେଖାଉଥିଲା ଏବଂ ଅତ୍ୟନ୍ତ ଭଦ୍ରଭାବରେ କିଛି ଶ୍ରେଷ୍ଠ ଶ୍ରେଷ୍ଠ ସଂସ୍କାର ଦାବୀ କରୁଥିଲା । ଏହା ଧନୀ ବୁର୍ଜୋୟା ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲା, ଏପରି କି ଗରିବ ମଧ୍ୟବିତ୍ତ ଶ୍ରେଣୀ ବି ଏଥିରେ ନ ଥିଲେ । କୃଷକ ଓ ଶ୍ରମିକ ଜନସାଧାରଣଙ୍କର ଏହା ସହିତ କୌଣସି ସମ୍ପର୍କ ନ ଥିଲା । ଏହା ମୁଖ୍ୟଭାବରେ ଇଂରେଜୀ ଶିକ୍ଷିତ ଶ୍ରେଣୀର ମୁଖପାତ୍ର ଥିଲା ଏବଂ ଏହାର ସମସ୍ତ କାର୍ଯ୍ୟ ଆମର ବୈମାତୃକ ଭାଷା—ଇଂରେଜୀରେ ହେଉଥିଲା । ଏହାର ଦାବୀ ହେଲା ଜମିଦାର, ଭାରତୀୟ ପୁଞ୍ଜିବାଦ ଓ ଚାକିରି ଖୋଜୁଥିବା ଶିକ୍ଷିତ ବେକାର ଶ୍ରେଣୀର ଦାବୀ । ଜନସାଧାରଣଙ୍କର ପିଷ୍ଟ ଦାରିଦ୍ର୍ୟ କିମ୍ବା ତାଙ୍କ ଆବଶ୍ୟକତା ପ୍ରତି କିଛି ଦୃଷ୍ଟି ଦିଆଯାଉ ନ ଥିଲା । ଏମାନେ ଚାକିରିର "ଭାରତୀୟକରଣ" ଦାବୀ କଲେ ଅର୍ଥାତ୍ ସରକାରୀ ଚାକିରିରେ ଇଂରେଜ ପରିବର୍ତ୍ତେ ଅଧିକ ଭାରତୀୟଙ୍କୁ ନିଯୁକ୍ତ କରିବା ପାଇଁ ଦାବୀ କରିଗଲା । ଏହା ଦେଖିଲା ନାହିଁ ଯେ ଯେଉଁ ମେସିନ୍ ଭାରତ ଶାସନ କରୁଥିଲା, ତାହା ଯୋଗୁହିଁ ଅନ୍ୟାୟ ହେଉଥିଲା । ବିଦେଶୀ ବା ଭାରତୀୟ ଯେ କେହି ଏହି ମେସିନ୍ ଅଧିକାରୀ ହେଲେ କିଛି ପ୍ରଭେଦ ହେବ ନାହିଁ । ସାମରିକ ଓ ସିଭିଲ୍ ସର୍ଭିସ ବିଭାଗରେ ଇଂରେଜ କର୍ମଚାରୀଙ୍କ .

ସକାଶେ ବହୁତ ବ୍ୟୟ ଓ ଭାରତରୁ ଇଂଲଣ୍ଡକୁ ସୁନା ରୁପା ସ୍ରୋତ ଛୁଟୁଥିବା କଥା କଂଗ୍ରେସ ଆପତ୍ତିରେ ଦର୍ଶାଇଲା ।

କଂଗ୍ରେସ ପ୍ରଥମାବସ୍ଥାରେ କିପରି ମଡରେଟ ବା ନରମ ଥିଲା, ତାହା ଦର୍ଶାଇ ଦେବାଦ୍ୱାରା ମୁଁ ଏହାକୁ ସମାଲୋଚନା କରୁଛି କିମ୍ବା ଛୋଟ କରିବାକୁ ଚେଷ୍ଟା କରୁଛି ବୋଲି ଭାବିବୁ ନାହିଁ । ଏହା ମୋର ଉଦ୍ଦେଶ୍ୟ ନୁହେଁ, କାରଣ ମୁଁ ବିଶ୍ୱାସ କରେ ଯେ ସେତେବେଳର କଂଗ୍ରେସ ଓ ତାର ନେତାମାନେ ମହତ୍ତ୍ୱ କାମ କରିଛନ୍ତି । ଭାରତ ରାଜନୀତିର ବିରାଟ ଘଟଣାବଳୀ ଏହାକୁ ପ୍ରତି ପଦରେ ପ୍ରାୟ ଅନିଚ୍ଛାସତ୍ତ୍ୱେ ଅଧିକ ଉଗ୍ର ଅବସ୍ଥାକୁ ଟାଣିନଥିଲା । କିନ୍ତୁ ଆରମ୍ଭ ବେଳେ ତାହା ଯେପରି ହୋଇଥିଲା, ତାହାପେକ୍ଷା ଆଉ କିଛି ହୋଇପାରି ନଥାନ୍ତା । ସେତେବେଳେ ଏହାର ସ୍ଥାପୟିତାମାନଙ୍କ ପକ୍ଷରେ ଆଗେଇବା ସକାଶେ ଖୁବ୍ ସାହସ ଦରକାର ପଡ଼ୁଥିଲା । ଯେତେବେଳେ ଆମ ସହିତ ଜନତା ରହିଛି ଏବଂ ଆମକୁ ପ୍ରଶଂସା କରୁଛି, ସେତେବେଳେ ସାହସର ସହିତ ସ୍ୱାଧୀନତା କଥା କହିବା ଆମ ପକ୍ଷରେ ଖୁବ୍ ସହଜ । କିନ୍ତୁ ଗୋଟାଏ ବଡ଼ ଉଦ୍ୟମରେ ଅଗ୍ରଦୂତ ହେବା ଅତ୍ୟନ୍ତ କଷ୍ଟକର ।

୧୮୮୫ରେ ବମ୍ବେରେ ପ୍ରଥମ କଂଗ୍ରେସ ହୋଇଥିଲା । ବଙ୍ଗଳାର ଉମେଶଚନ୍ଦ୍ର ବାନାର୍ଜି ଏହାର ପ୍ରଥମ ସଭାପତି ହେଲେ । ସେ ସମୟର ଅନ୍ୟ ପ୍ରଧାନ ଲୋକ ହେଉଛନ୍ତି ସୁରେନ୍ଦ୍ରନାଥ ବାନାର୍ଜି, ବଦରୁଦ୍ଦିନ ତୟାବଜୀ ଓ ଫିରୋଜ ଶା ମେହଟା । କିନ୍ତୁ ଏ ସମସ୍ତଙ୍କ ଉପରେ ଦଦାଭାଇ ନାରୋଜୀଙ୍କ ନାମ ହେଉଛି ଶ୍ରେଷ୍ଠ—ସେ ଭାରତର ବୃଦ୍ଧ ପିତାମହ ହେଲେ (Grand old man of India) ଏବଂ ଭାରତର ଲକ୍ଷ୍ୟ ସ୍ୱରାଜ୍ୟ ବୋଲି ଏହି ଶବ୍ଦ ପ୍ରଥମେ ବ୍ୟବହାର କଲେ । ମୁଁ ଆଉ ଜଣଙ୍କ ନାମ କହିବି, କାରଣ କଂଗ୍ରେସର ପୁରୁଣା ନେତାମାନଙ୍କ ମଧ୍ୟରୁ ସେ ଏକୁଟିଆ ବଞ୍ଚି ରହିଛନ୍ତି ଓ ତୁ ତାଙ୍କୁ ଭଲରୂପେ ଜାଣୁ । ସେ ହେଉଛନ୍ତି ପଣ୍ଡିତ ମଦନମୋହନ ମାଲବ୍ୟ । ପ୍ରାୟ ୫୦ ବର୍ଷରୁ ଅଧିକ ହେବ, ସେ ଭାରତ ପାଇଁ ଲଢ଼ାଇ କରି ଆସିଛନ୍ତି ଏବଂ ବାର୍ଦ୍ଧକ୍ୟରେ ଓ ଚିନ୍ତାରେ ମଉଳିପଡ଼ି ସୁଦ୍ଧା ସେ ତାଙ୍କ ଯୁବାବସ୍ଥାରେ ଯେଉଁସବୁ ସ୍ୱପ୍ନ ଦେଖିଥିଲେ; ସେହି ସ୍ୱପ୍ନକୁ ବାସ୍ତବରେ ପରିଣତ କରିବା ନିମନ୍ତେ ଆଜି ସୁଦ୍ଧା ଲଢ଼ାଇ କରୁଛନ୍ତି ।

ଏହିରୂପେ କଂଗ୍ରେସ ବର୍ଷକୁ ବର୍ଷ ଆଗକୁ ମାଡ଼ି ଚାଲିଲା ଏବଂ ବଳ ସଞ୍ଚୟ କଲା । ଆଗକାଳର ହିନ୍ଦୁ ଜାତୀୟବାଦ ପରି ଏହା ସଂକୀର୍ଣ୍ଣ ନ ଥିଲା । ତଥାପି ଏହା ପ୍ରଧାନତଃ ହିନ୍ଦୁ ଥିଲା । କେତେ ଜଣ ନେତୃସ୍ଥାନୀୟ ମୁସଲମାନ ଏଥିରେ ଯୋଗ ଦେଲେ ଏବଂ ଏଥିରେ ସଭାପତି ହୋଇଥିଲେ ମଧ୍ୟ; କିନ୍ତୁ ମୋଟାମୋଟି ମୁସଲମାନମାନେ ସେଥିରୁ ଅଲଗା ରହିଲେ । ଏତେବେଳର ବଡ଼ ମୁସଲମାନ ନେତା ହେଉଛନ୍ତି ସାର୍ ସୟଦ୍ ଅହମଦ ଖାଁ । ସେ ଦେଖିଲେ ଯେ, ଶିକ୍ଷାର ଅଭାବ, ବିଶେଷତଃ ଆଧୁନିକ ଶିକ୍ଷାର ଅଭାବ ଯୋଗୁଁ ମୁସଲମାନମାନଙ୍କର ବହୁତ କ୍ଷତି ହୋଇଛି ଏବଂ ସେମାନଙ୍କୁ ଅନୁନ୍ନତ

କରି ରଖିଛି । ଅତଏବ ସେ ବୁଝିଲେ ଯେ, ଏହି ଶିକ୍ଷା ଗ୍ରହଣ କରିବା ନିମନ୍ତେ ସେ ମୁସଲମାନମାନଙ୍କୁ ବୁଝାଇବେ ଏବଂ ରାଜନୀତିରେ ପ୍ରବେଶ କରିବା ପୂର୍ବରୁ ଏଥିରେ ମନ ଦେବେ । ତେଣୁ କଂଗ୍ରେସରୁ ଅଲଗା ହୋଇ ରହିବା ପାଇଁ ସେ ମୁସଲମାନମାନଙ୍କୁ ପରାମର୍ଶ ଦେଲେ ଏବଂ ସେ ନିଜେ ସରକାର ସହିତ ସହଯୋଗ କଲେ । ଆଲିଗଡ଼ରେ ଗୋଟିଏ ସୁନ୍ଦର କଲେଜ ସ୍ଥାପନ କଲେ—ତାହା ଏବେ ଏକ ବିଶ୍ୱବିଦ୍ୟାଳୟ ହୋଇଗଲଣି । ମୁସଲମାନଙ୍କ ଭିତରୁ ଅଧିକ ସଂଖ୍ୟକ ଲୋକ ସାର୍ ସଇଦ୍‌ଙ୍କ ପରାମର୍ଶ ଗ୍ରହଣ କଲେ ଏବଂ ସେମାନେ କଂଗ୍ରେସରେ ଯୋଗ ଦେଲେନାହିଁ; କିନ୍ତୁ ଅଳ୍ପସଂଖ୍ୟକ ଲୋକେ ବରାବର ଏହା ସହିତ ରହିଆସିଛନ୍ତି, ଏହା ମନେ ରଖିବା ଦରକାର । ମୁଁ ଯେତେବେଳେ ଅଧିକ ସଂଖ୍ୟକ ଓ ଅଳ୍ପସଂଖ୍ୟକ କଥା କହୁଛି, ଏହି ଅଳ୍ପସଂଖ୍ୟକ ବା ଅଧିକ ସଂଖ୍ୟକ କେବଳ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ, ଇଂରେଜୀପଢ଼ୁଆ ହିନ୍ଦୁ ଓ ମୁସଲମାନମାନଙ୍କୁ ଲକ୍ଷ୍ୟ କରି ଲେଖୁଛି । କି ହିନ୍ଦୁ କି ମୁସଲମାନ ଜନତାର କଂଗ୍ରେସ ସହିତ କିଛି ସମ୍ପର୍କ ନ ଥିଲା ଏବଂ କେହି ସେତେବେଳେ କଂଗ୍ରେସର ନାମ ବି ଶୁଣି ନ ଥିଲେ । ଏପରିକି ସେତେବେଳେ ନିମ୍ନ ମଧ୍ୟବିତ୍ତ ଶ୍ରେଣୀଙ୍କ ଭିତରେ ବି ଏହା ପ୍ରବେଶ କରି ନ ଥିଲା ।

କଂଗ୍ରେସ ବୃଦ୍ଧି ପାଇଲା; କିନ୍ତୁ ଏପରିକି କଂଗ୍ରେସ ଅପେକ୍ଷା ଅଧିକ ବେଗରେ ଜାତୀୟତାର ଭାବଧାରା ଓ ସ୍ୱାଧୀନତା ପ୍ରେମ ବଢ଼ିଲା । କଂଗ୍ରେସରେ କେବଳ ଇଂରେଜୀ ଜାଣିଥିବା ଲୋକ ଥିବାରୁ ଏହାର ନିବେଦନ ଅତ୍ୟନ୍ତ ସୀମାବଦ୍ଧ ଥିଲା । କେତେକ ପରିମାଣରେ ବିଭିନ୍ନ ପ୍ରଦେଶକୁ ଏହା ନିକଟ ସମ୍ପର୍କରେ ଆଣିପାରିଲା ଏବଂ ଏକ ସାଧାରଣ ଦୃଷ୍ଟିକୋଣ ଗଢ଼ି ଉଠିଲା । କିନ୍ତୁ ଏହା ଲୋକଙ୍କ ଭିତରେ ବେଶି ପ୍ରବେଶ କରି ନ ପାରିବାରୁ ଏହାର କିଛି ଶକ୍ତି ନ ଥିଲା । ଯେଉଁ ଏକ ଘଟଣାରେ ଏସିଆରେ ଚାଞ୍ଚଲ୍ୟ ଦେଖାଗଲା, ସେ କଥା ତତେ ମୁଁ କହୁଛି । ଏହା ହେଉଛି ୧୯୦୪।୫ରେ ପ୍ରକାଣ୍ଡ ରୁଷ ଦେଶ ଉପରେ କ୍ଷୁଦ୍ର ଜାପାନର ବିଜୟ । ଅନ୍ୟ ଏସିଆ ଦେଶମାନଙ୍କ ପରି ଭାରତ ଅର୍ଥାତ୍ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ଏଥିରେ ଖୁବ୍ ପ୍ରଭାବାନ୍ୱିତ ହେଲେ ଏବଂ ସେମାନଙ୍କର ଆତ୍ମବିଶ୍ୱାସ ଜନ୍ମିଲା । ଜାପାନ ଯଦି ଏକ ଶକ୍ତିଶାଳୀ ଇଉରୋପୀୟ ଶକ୍ତି ବିରୋଧରେ ଲଢ଼ି ବିଜୟୀ ହୋଇପାରେ, ତେବେ ଭାରତ କାହିଁକି ବା ନ ହେବ ? ଅନେକ ଦିନ ପର୍ଯ୍ୟନ୍ତ ଇଂରେଜଙ୍କ ସମକ୍ଷରେ ଗୋଟାଏ ତୁଚ୍ଛ ଭାବ ଭାରତୀୟଙ୍କ ମନରେ ତ ଥିଲା । ଇଂରେଜଙ୍କର ଦୀର୍ଘଦିନ ଧରି କଠୋର ଶାସନ, ୧୮୫୭ ବିଦ୍ରୋହର ବର୍ବର ଅତ୍ୟାଚାର ଲୋକଙ୍କୁ ଦବାଇ ଦେଇଥିଲା । ଏକ ଅସ୍ତ୍ର ଆଇନଦ୍ୱାରା ସେମାନଙ୍କର ଅସ୍ତ୍ର ରଖିବାରେ ବାଧା ଦିଆଗଲା । ଭାରତକୁ ଯାହା କିଛି ଦିଆଗଲା, ସେଥିରେ ସେମାନେ ଯେ ପରାଧୀନ ଜାତି, ଦୁର୍ବଳ ଜାତି ଏ ଭାବନା ମନରେ ନିରନ୍ତର ଥାଏ । ଏପରି କି ଯେଉଁ ଶିକ୍ଷା ସେମାନଙ୍କୁ

ଦିଆଗଲା, ସେଥିରେ ଏହି ଶ୍ରେଷ୍ଠ ହୋଇଥିବାର ଭାବନା ଭର୍ତ୍ତି କରି ଦିଆଗଲା । ବିକୃତ ଓ ମିଥ୍ୟା ଇତିହାସଦ୍ୱାରା ଶିକ୍ଷା ଦିଆହେଲା ଯେ ଭାରତ ଗୋଟିଏ ଏପରି ଦେଶ, ଯେଉଁଠି ସର୍ବଦା ଅରାଜକତା ବିରାଜମାନ କରୁଥିଲା ଏବଂ ହିନ୍ଦୁ ଓ ମୁସଲମାନ ପରସ୍ପରର ଗଳା କାଟୁଥିଲେ । ଇଂରେଜମାନେ ଆସି ହିଁ ଏହି ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାରୁ ଦେଶକୁ ରକ୍ଷା କଲେ; ଓ ଏହାକୁ ଶାନ୍ତି ଏବଂ ପ୍ରଗତି ଦେଲେ । ବାସ୍ତବିକ ପ୍ରକୃତ ଘଟଣା ବା ଇତିହାସ ପ୍ରତି ଦୃଷ୍ଟି ନ ଦେଇ ଇଉରୋପୀୟମାନେ ଏଥିରେ ବିଶ୍ୱାସ କରୁଥିଲେ ଏବଂ ଘୋଷଣା କଲେ ଯେ ସମଗ୍ର ଏସିଆ ଏକ ଅନୁନ୍ନତ ମହାଦେଶ ଏବଂ ଏହା ଅବଶ୍ୟ ଇଉରୋପ ଅଧୀନରେ ରହିବ ।

ତେଣୁ ଜାପାନ ବିଜୟ ଏସିଆକୁ ଜାଗ୍ରତ କଲା । ଭାରତରେ ଆମ ଭିତରୁ ଅଧିକାଂଶଙ୍କ ମନରେ ଯେଉଁ ଶ୍ରେଷ୍ଠକାଷ୍ଠ ଗୋଟାଏ ଭାବ ଥିଲା, ତାହା କମିଗଲା । ଜାତୀୟବାଦୀ ଭାବନା ଅଧିକ ବ୍ୟାପକ ଭାବରେ ବିଶେଷତଃ ବଙ୍ଗଳା ଓ ମହାରାଷ୍ଟ୍ରରେ ପ୍ରସାର ଲାଭ କଲା । ଠିକ୍ ଏତିକିବେଳେ ଏପରି ଏକ ଘଟଣା ଘଟିଲା, ଯାହା ବଙ୍ଗଳାର ଗଭୀରତମ ପ୍ରଦେଶକୁ ଦୋହଲାଇ ଦେଲା ଏବଂ ସମଗ୍ର ଭାରତରେ ବିଶୃଙ୍ଖଳା ସୃଷ୍ଟି କଲା । ବିରାଟ ବଙ୍ଗଳା ପ୍ରଦେଶକୁ (ସେତେବେଳେ ବିହାର ମଧ୍ୟ ଏହାର ଅନ୍ତର୍ଗତ ଥିଲା) ବ୍ରିଟିଶ ସରକାର ଦୁଇ ଭାଗରେ ବିଭକ୍ତ କଲା—ଏଥିରୁ ଗୋଟିଏ ହେଲା ପୂର୍ବ ବଙ୍ଗ । ବଙ୍ଗଳାର ବୁର୍ଜୋୟାମାନଙ୍କର ବଢ଼ୁଥିବା ଜାତୀୟଭାବ ଏହାର ବିରୋଧ କଲା । ସନ୍ଦେହ କଲେ ଯେ, ଏହିପରି ସେମାନଙ୍କୁ ବିଭକ୍ତ କରି ଇଂରେଜ ଦୁର୍ବଳ କରିଦେବାକୁ ଚାହେଁ । ପୂର୍ବ ବଙ୍ଗଳାରେ ଅଧିକ ସଂଖ୍ୟକ ମୁସଲମାନ ଅଛନ୍ତି; ତେଣୁ ଏହି ବିଭାଗଦ୍ୱାରା ଗୋଟିଏ ହିନ୍ଦୁ ମୁସଲମାନ ପ୍ରଶ୍ନ ମଧ୍ୟ ଉଠିଲା । ବଙ୍ଗଳାରେ ଏକ ଜବରଦସ୍ତ ଇଂରେଜ ବିରୋଧୀ ଆନ୍ଦୋଳନର ଉଦୟ ହେଲା । ଅଧିକାଂଶ ଜମିଦାର ଏଥିରେ ଯୋଗ ଦେଲେ ଏବଂ ଭାରତୀୟ ପୁଞ୍ଜିବାଦୀମାନେ ମଧ୍ୟ । ସେତେବେଳେ ପ୍ରଥମ ହୋଇ ସ୍ୱଦେଶୀ ଚିତ୍କାର ଉଠିଲା ଏବଂ ଏହା ସଙ୍ଗେ ସଙ୍ଗେ ବିଲାତି ଜିନିଷ ବର୍ଜନ କଥା ବି ଉଠିଲା—ଏହା ଅବଶ୍ୟ ଭାରତୀୟ ଶିଳ୍ପ ଓ ମୂଳଧନକୁ ସାହାଯ୍ୟ କଲା । ଏହି ଆନ୍ଦୋଳନ ବି କେତେକ ପରିମାଣରେ ଜନସାଧାରଣଙ୍କ ମଧ୍ୟରେ ପ୍ରବେଶ କଲା ଏବଂ ହିନ୍ଦୁଧର୍ମରୁ ଏହା ଆଂଶିକ ଭାବରେ ପ୍ରେରଣା ପାଇଲା । ଏହା ସାଙ୍ଗେ ସାଙ୍ଗେ ବଙ୍ଗଳାରେ ବୈପ୍ଲବିକ ହିଂସା ମତବାଦୀ ବାହାରିଲେ ଏବଂ ଭାରତୀୟ ରାଜନୀତିରେ ବୋମା ପ୍ରଥମେ ଦେଖାଦେଲା । ବଙ୍ଗଳା ଆନ୍ଦୋଳନର ଜଣେ ବିଚକ୍ଷଣ ନେତା ହେଉଛନ୍ତି ଅରବିନ୍ଦ ଘୋଷ । ସେ ଏବେ ସୁଦ୍ଧା ବଞ୍ଚିଛନ୍ତି । କିନ୍ତୁ ଦୀର୍ଘ କାଳ ହେଲା ସେ ଫରାସୀ ଭାରତର ପଣ୍ଡିଚେରୀରେ ଏକ ଅବକାଶ ଜୀବନ ବିତାଉଛନ୍ତି ।

ପଶ୍ଚିମ ଭାରତରେ ମହାରାଷ୍ଟ୍ର ଦେଶରେ ଏତିକିବେଳେ ଖୁବ୍ ବିଶୃଙ୍ଖଳା ଦେଖାଦେଲା ଏବଂ ହିନ୍ଦୁ ଧର୍ମରେ ସଞ୍ଚିତ ଏକ ଉଗ୍ର ଜାତୀୟବାଦର ପୁନରୁଦ୍ଧାର ଦେଖାଦେଲା । ବାଳ

ଗଙ୍ଗାଧର ତିଳକ ନାମରେ ଜଣେ ପ୍ରସିଦ୍ଧ ନେତା ବାହାରିଲେ—ଭାରତ ସାରା ସେ ଲୋକମାନ୍ୟ ରୂପେ ପରିଚିତ । ତିଳକ ଜଣେ ବଡ଼ ବିଦ୍ୱାନ ଥିଲେ, ସେ ପ୍ରାଚ୍ୟର ପୁରାତନ ପଦ୍ଧତି ଏବଂ ପାଶ୍ଚାତ୍ୟର ଆଧୁନିକ ଗଣିତ ସମ୍ବନ୍ଧରେ ଅନୁରୂପ ଜ୍ଞାନୀ ଥିଲେ, ସେ ଜଣେ ବଡ଼ ରାଜନୀତିଜ୍ଞ; କିନ୍ତୁ ସର୍ବୋପରି ସେ ଜଣେ ମହାନ ଜନନାୟକ ଥିଲେ । ଏ ପର୍ଯ୍ୟନ୍ତ ଜାତୀୟ କଂଗ୍ରେସର ନେତାମାନେ କେବଳ ଇଂରେଜୀପଢ଼ୁଆ ଲୋକଙ୍କୁ ଆବେଦନ କରୁଥିଲେ; ସେମାନଙ୍କୁ ଜନସାଧାରଣ ଜାଣି ନଥିଲେ । ନୂତନ ଭାରତର ରାଜନୈତିକ ନେତାଙ୍କ ଭିତରୁ ତିଳକ ପ୍ରଥମେ ଜନସାଧାରଣଙ୍କ ପାଖରେ ପହଞ୍ଚିଲେ ଏବଂ ସେମାନଙ୍କଠାରୁ ଶକ୍ତି ଅର୍ଜନ କଲେ । ତାଙ୍କର କ୍ରିୟାଶୀଳ ବ୍ୟକ୍ତିତ୍ୱ ନୂତନ ଶକ୍ତି ଓ ଅଟଳ ବିଶ୍ୱାସ ଆଣି ଦେଲା ଏବଂ ବଙ୍ଗଳାର ତ୍ୟାଗ ଓ ଜାତୀୟତାର ନୂତନ ଭାବଧାରା ଏଥି ସହିତ ମିଶିବାରୁ ଏହା ଭାରତ ରାଜନୀତିର ରୂପ ବଦଳାଇ ଦେଲା ।

୧୯୦୬, ୧୯୦୭ ଓ ୧୯୦୮ରେ ଏହି ଆନ୍ଦୋଳନ ବେଳେ କଂଗ୍ରେସ କଣ କରୁଥିଲା ? ଜାତୀୟ ଭାବର ଏହି ଜାଗରଣ ବେଳେ ଜାତିକୁ ନେତୃତ୍ୱ ଦେବା ଦୂରର କଥା, କଂଗ୍ରେସ ନେତାମାନେ ପଛେଇ ଗଲେ । ସେମାନେ ଏକ ଶାନ୍ତିପୂର୍ଣ୍ଣ ରାଜନୀତି କରିବାରେ ଅଭ୍ୟସ୍ତ ଥିଲେ; ଏଥିରେ ଜନତାର ସମ୍ବନ୍ଧ ନ ଥିଲା । ସେମାନେ ବଙ୍ଗଳାର ପ୍ରଚଣ୍ଡ ଉତ୍ସାହକୁ ପସନ୍ଦ କରୁ ନ ଥିଲେ କିମ୍ବା ମହାରାଷ୍ଟ୍ରରେ ନୂତନ ଅଟଳ ଭାବ ଯାହାର ପ୍ରତିନିଧି ଥିଲେ ତିଳକ, ତାହା ମଧ୍ୟ ସେମାନେ ଭଲ ମଣୁ ନ ଥିଲେ । ସେମାନେ ସ୍ୱଦେଶୀ ପ୍ରଶଂସା ଗାନ କଲେ; କିନ୍ତୁ ବିଲାତି ଜିନିଷ ବର୍ଜନରେ ଇତସ୍ତତଃ ହେଲେ । କଂଗ୍ରେସରେ ଦୁଇଟି ଦଳ ଦେଖା ଦେଲେ—ତିଳକ ଓ କେତେକ ବଙ୍ଗାଳୀ ନେତାଙ୍କ ନେତୃତ୍ୱରେ ଚରମ ଦଳ ଏବଂ ପୁରୁଣା କଂଗ୍ରେସ ନେତାଙ୍କ ଅଧୀନରେ ମୋଡ଼ରେ ନରମ ଦଳ । ନରମ ଦଳଙ୍କ ଭିତରେ ସବୁଠାରୁ ଖ୍ୟାତନାମା ଥିଲେ ଜଣେ ଯୁବକ—ଗୋପାଳକୃଷ୍ଣ ଗୋଖଲେ । ସେ ଜଣେ ଖୁବ୍ ଦକ୍ଷ ଲୋକ ଏବଂ ସେବାରେ ନିଜର ଜୀବନ ନିୟୋଗ କଲେ । ଗୋଖଲେ ମଧ୍ୟ ମହାରାଷ୍ଟ୍ରର ଲୋକ । ବିରୋଧୀ ଦଳ ପକ୍ଷରୁ ତିଳକ ଓ ସେ ସମ୍ମୁଖୀନ ହେଲେ ଏବଂ ଶେଷରେ ୧୯୦୭ରେ ବିବାଦ ହେଲା ଏବଂ କଂଗ୍ରେସ ବିଭକ୍ତ ହୋଇଗଲା । ନରମମାନେ କଂଗ୍ରେସ ପରିଚାଳନା କଲେ—ଚରମବାଦୀମାନଙ୍କୁ ତଡ଼ି ଦିଆଗଲା । ନରମମାନେ ଜିତିଲେ; କିନ୍ତୁ ଏଥିରେ ଦେଶରେ ସେମାନେ ଲୋକପ୍ରିୟତା ହରାଇଲେ; କାରଣ ତିଳକଙ୍କ ଦଳ ଲୋକଙ୍କ ଭିତରେ ଆହୁରି ଅଧିକ ଆଦରଣୀୟ ହୋଇଥିଲେ । କଂଗ୍ରେସ ଦୁର୍ବଳ ହୋଇଗଲା ଏବଂ କେତେକ ବର୍ଷ ପର୍ଯ୍ୟନ୍ତ ତାର କିଛି ପ୍ରଭାବ ରହିଲା ନାହିଁ ।

ଏତେବେଳେ ସରକାରର ଅବସ୍ଥା କଣ ଥିଲା ? ଭାରତୀୟ ଜାତୀୟତାବାଦର ବୃଦ୍ଧିରେ ଏହା ଉପରେ କିପରି ପ୍ରତିକ୍ରିୟା ହେଲା ? ସରକାର କୌଣସି ଦାବୀ ବା ଯୁକ୍ତିକୁ ଯଦି ପସନ୍ଦ ନ କଲେ, ତେବେ ତାକୁ ଖଣ୍ଡନ କରିବାର ଗୋଟିଏ ମାତ୍ର ଉପାୟ ତାକୁ ଜଣା—ତାହା ହେଉଛି ଲାଠି ପ୍ରୟୋଗ । ତେଣୁ ସରକାର ଅତ୍ୟାଚାର ଆରମ୍ଭ କଲା ଏବଂ ଲୋକଙ୍କୁ

ଜେଲକୁ ପଠାଇଲା, ପ୍ରେସ ଆଇନ କରି ସମ୍ବାଦପତ୍ରକୁ ଦମନ କରାଗଲା ଏବଂ ଯେଉଁମାନଙ୍କୁ ସରକାର ଭଲ ପାଉ ନ ଥିଲା ତାଙ୍କୁ ଜଗିବା ପାଇଁ ବହୁ ସଂଖ୍ୟକ ଗୁପ୍ତ ପୁଲିସ ଓ ଗୋଇନ୍ଦା ନିଯୁକ୍ତ କରାଗଲା । ସେହି ଦିନଠାରୁ ଭାରତରେ ସି. ଆଇ. ଡ଼ି. ଖ୍ୟାତନାମା ଭାରତୀୟ ରାଜନୀତିଜ୍ଞମାନଙ୍କର ଚିରନ୍ତନ ସହଚର ହୋଇଛନ୍ତି । ଅନେକ ବଙ୍ଗଳା ନେତା ଜେଲ ଦଣ୍ଡ ପାଇଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଲା ଲୋକମାନ୍ୟ ତିଲକଙ୍କର —ସେ ଛଅ ବର୍ଷ ଶାସ୍ତି ପାଇଲେ । ସେ ମାଣ୍ଡାଲେ ଜେଲରେ ଥିବାବେଳେ ଗୋଟିଏ ପ୍ରସିଦ୍ଧ ପୁସ୍ତକ "ଗୀତା ରହସ୍ୟ" ଲେଖିଥିଲେ । ଲାଲା ଲଜପତ ରାୟଙ୍କୁ ମଧ୍ୟ ବର୍ମା ପଠାଇ ଦିଆଗଲା ।

କିନ୍ତୁ ଅତ୍ୟାଚାରରେ ବଙ୍ଗଳା ଦବିଲା ନାହିଁ । ତେଣୁ ଅନ୍ତତଃ କେତେକ ଲୋକଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଶାସନଗତ କେତେକ ସଂସ୍କାର ଶୀଘ୍ର ଘୋଷଣା କରି ଦିଆଗଲା । ସେତେବେଳେ ନୀତି ଥିଲା ଜାତୀୟତାବାଦୀ ଲୋକମାନଙ୍କୁ ବିଭକ୍ତ କରିଦେବା—ଏହି ନୀତି ଆଗେ ଥିଲା, ଏବେ ମଧ୍ୟ ରହିଛି । ମାଡ଼ାମାନଙ୍କୁ "ଏକଜିଦ କରି" ଆଣିବାକୁ ହେବ ଏବଂ ଚରମ ଦଳକୁ ଦବାଇବାକୁ ହେବ । ୧୯୦୮ରେ ଏହି ନୂତନ ସଂସ୍କାର ଘୋଷିତ ହେଲା— ଏହାକୁ "ମର୍ଲେ ମିଣ୍ଟୋ ଶାସନ ସଂସ୍କାର" କହନ୍ତି । ସେମାନେ ମାଡ଼ାମାନଙ୍କୁ ଏକଜିଦ କରିବାରେ" ସଫଳ ହେଲେ—ସେମାନେ ଏଥିରେ ସନ୍ତୁଷ୍ଟ ହୋଇଗଲେ । ଚରମ ଦଳର ନେତା ଜେଲରେ ଥିବାରୁ ସେମାନେ ହତୋତ୍ସାହ ହୋଇପଡ଼ିଲେ ଏବଂ ଜାତୀୟ ଆନ୍ଦୋଳନ ଦୁର୍ବଳ ହୋଇଗଲା । ଯାହାହେଉ ବଙ୍ଗଳାରେ ବଙ୍ଗଭଙ୍ଗ ସମ୍ବନ୍ଧରେ ଆନ୍ଦୋଳନ ଚାଲିଲା ଏବଂ ସଫଳ ହେଲା । ୧୯୧୧ରେ ବ୍ରିଟିଶ ସରକାର ବଙ୍ଗଭଙ୍ଗ ପ୍ରସ୍ତାବ ବଦଳାଇ ଦେଲେ । ଏହି ବିଜୟରେ ବଙ୍ଗାଳୀଙ୍କ ହୃଦୟରେ ନୂତନ ଜୀବନ ପଶିଲା । କିନ୍ତୁ ୧୯୦୭ ଆନ୍ଦୋଳନର ବଳ ଭାଙ୍ଗି ପଡ଼ିଥିଲା ଏବଂ ଭାରତ ରାଜନୈତିକ ଉଦାସୀନତାରେ ପ୍ରବେଶ କଲା ।

୧୯୧୧ରେ ଦିଲ୍ଲୀ ନୂତନ ରାଜଧାନୀ ହେବ ବୋଲି ଘୋଷିତ ହେଲା । ଦିଲ୍ଲୀ ଅନେକ ସାମ୍ରାଜ୍ୟର ରାଜଧାନୀ ହୋଇଛି ଏବଂ ଅନେକ ସାମ୍ରାଜ୍ୟ ଏଠି କବର ବି ପାଇଛି ।

୧୯୧୪ରେ ଯେତେବେଳେ ପୃଥିବୀଯୁଦ୍ଧ ଇଉରୋପରେ ଲାଗିଲା, ସେତେବେଳେ ଭାରତର ଅବସ୍ଥା ଏପରି ଥିଲା ଏବଂ ଏକ ଶହ ବର୍ଷ ପରେ ସମର ଶେଷ ହେଲା । ଏହି ଯୁଦ୍ଧ ମଧ୍ୟ ଭାରତକୁ ବହୁ ପରିମାଣରେ ସ୍ପର୍ଶ କଲା; କିନ୍ତୁ ସେ ସମ୍ବନ୍ଧରେ ମୁଁ ପରେ କହିବି ।

ମୁଁ ଟିକିଏ ବେଶି ଭାବରେ ୧୯ଶ ଶତାବ୍ଦୀର ଭାରତ ବିଷୟରେ ବର୍ଣ୍ଣନା କଲି । ମୁଁ ତତେ ୧୯୧୮ ସାଲ ପର୍ଯ୍ୟନ୍ତ ନେଇ ଆସିଲିଣି । ଏବେ ଆମେ ଭାରତ ଛାଡ଼ି ଏବଂ ପର ଚିଠିରେ ଚୀନକୁ ଯିବା । ସେଠି ଆଉ ଏକ ପ୍ରକାର ସାମ୍ରାଜ୍ୟବାଦ ଶୋଷଣର ପରୀକ୍ଷା କରିବା ।

## ୧୧୪ : ବ୍ରିଟେନ ଚୀନରେ ଜବରଦସ୍ତି ଅଫେମ ଚଳାଇଲା

ଡିସେମ୍ବର ୧୪, ୧୯୩୨

ମୁଁ ଟିକିଏ ବିସ୍ତୃତ ଆକାରରେ ଭାରତରେ ଔଦ୍ୟୋଗିକ ଓ ଯାନ୍ତ୍ରିକ ବିପ୍ଳବର ଫଳାଫଳ ଏବଂ ନୂତନ ସାମ୍ରାଜ୍ୟବାଦ କିପରି ଭାରତରେ କାର୍ଯ୍ୟ କରୁଥିଲା, ତାହା ତତେ କହିଛି । ମୁଁ ଭାରତୀୟ ହୋଇଥିବାରୁ ଏକ ପକ୍ଷର ଲୋକ ଏବଂ ମୋର ଆଶଙ୍କା ପକ୍ଷପାତରୂପେ ନ ଦେଖି ରହିପାରିବି ନାହିଁ; କିନ୍ତୁ ମୁଁ ଚେଷ୍ଟା କରିଛି ଏବଂ ମୁଁ ଚାହେଁ ଯେ ତୁ ମଧ୍ୟ ଜାତୀୟତାବାଦୀ ଭାବରେ ଗୋଟିଏ ପାଖର ଯଥାର୍ଥତା ପ୍ରମାଣ କରିବାକୁ ଚେଷ୍ଟା ନ କରି ଜଣେ ବୈଜ୍ଞାନିକରୂପେ ନିରପେକ୍ଷ ଭାବରେ ଏହିସବୁ ପ୍ରଶ୍ନର ପରୀକ୍ଷା କରିବାକୁ ଚେଷ୍ଟା କରିବୁ । ଜାତୀୟତା ଭଲ, କିନ୍ତୁ ଏହା ଏକ ଅବିଶ୍ୱାସୀ ସାଥୀ ଏବଂ ଏହାର ବିବରଣୀ ନିରାପଦଜନକ ନୁହେଁ । ଅନେକ ଘଟଣାରେ, ବିଶେଷତଃ ଯେତେବେଳେ ଆମ ବା ଆମ ଦେଶ ସମ୍ପର୍କରେ ପ୍ରଶ୍ନ ଉଠେ, ଏହା ଆମକୁ ଅନ୍ଧ କରି ପକାଏ ଏବଂ ବେଳେ ବେଳେ ସତ୍ୟକୁ ବିକୃତ କରେ । ତେଣୁ ଆଧୁନିକ ଭାରତ ଇତିହାସ ଆଲୋଚନା କଲାବେଳେ ଆମକୁ ସତର୍କ ହେବାକୁ ହେବ; ତାହା ନ ହେଲେ ଆମେ ଆମର ଦୁର୍ଭାଗ୍ୟ ପାଇଁ ସମସ୍ତ ଦୋଷ ବ୍ରିଟିଶଙ୍କ ଉପରେ ଲଦି ଦେବୁ ।

ବ୍ରିଟେନର କଳକାରଖାନା ମାଲିକ ଓ ପୁଞ୍ଜିବାଦୀଙ୍କଦ୍ୱାରା ୧୯ଶ ଶତାବ୍ଦୀରେ ଭାରତ କିପରି ଶୋଷିତ ହେଲା, ତାହା ଦେଖିଲା ପରେ ଆମେ ଏବେ ଏସିଆର ଆଉ ଏକ ବଡ଼ ଦେଶ, ଭାରତର ପୁରୁଣାକାଳିଆ ସାଥୀ, ସବୁ ଦେଶ ଭିତରେ ପୁରାତନ ଚୀନ ଦେଶକୁ ଯିବା । ଆମେ ଏଠି ପାଶ୍ଚାତ୍ୟ ଦେଶ ଗୋଟାଏ ଅଲଗା ଧରଣର ଶୋଷଣ କରିବାର ଦେଖିବା । ଭାରତ ପରି ଚୀନ କୌଣସି ଏକ ଇଉରୋପୀୟ ଶକ୍ତିର ଅଧୀନ ବା ଉପନିବେଶ ହୋଇ ନ ଥିଲା । ୧୯ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସେ ଦେଶକୁ ସମ୍ମିଳିତ କରି ରଖିବା ପାଇଁ ଏକ ଦୃଢ଼ କେନ୍ଦ୍ର ଶାସନ ଥିବାରୁ ସେ ଏଥିରୁ ରକ୍ଷା ପାଇଥିଲା । ଆମେ ଦେଖିଲେ, ମୋଗଲ ସାମ୍ରାଜ୍ୟର ପତନ ବେଳକୁ ଏହାର ୧୦୦ ବର୍ଷ ପୂର୍ବରୁ ଭାରତ ଖଣ୍ଡ ଖଣ୍ଡ ହୋଇ ଯାଇଥିଲା । ୧୯ଶ ଶତାବ୍ଦୀରେ ଚୀନ ଦୁର୍ବଳ ହୋଇ ପଡ଼ିଲା । କିନ୍ତୁ ତେବେ ସୁଦ୍ଧା ଏହା ଶେଷ ପର୍ଯ୍ୟନ୍ତ ଏକାଠି ହୋଇ ରହିଲା ଏବଂ ବିଦେଶୀ ଶକ୍ତିମାନଙ୍କ ଭିତରେ ପରସ୍ପର ପ୍ରତି ଈର୍ଷା ଯୋଗୁଁ ଚୀନର ଦୁର୍ବଳତାରୁ ଅତ୍ୟଧିକ ସୁବିଧା ଉଠାଇବାରେ ସେମାନେ ବାଧା ପାଇଲେ ।

ମୁଁ ଚୀନ ସମ୍ବନ୍ଧରେ ମୋର ଗତ ଚିଠିରେ ଚୀନ ସହିତ ନିଜର ବାଣିଜ୍ୟ ବଢ଼ାଇବା ପାଇଁ ଇଂରେଜମାନେ ଯେଉଁ ଉଦ୍ୟମ କରିଥିଲେ, ତାହା କହିଛି । ଇଂରେଜ

ରାଜା ତୃତୀୟ ଜର୍ଜଙ୍କ ଚିଠିର ଉତ୍ତରରେ ମଞ୍ଚୁ ସମ୍ରାଟ ଚୀଏନ ଲୁଙ୍ଗ୍ ଯେଉଁ ଉପରପାହ୍ୱଆରୁ ଦୟା କରିବା ଢଙ୍ଗରେ ଚିଠି ଲେଖିଥିଲେ ସେଥିରୁ ଦୀର୍ଘ ଅଂଶ ମୁଁ ଉଦ୍ଧୃତ କରିଥିଲି । ଏହା ୧୭୯୨ ବେଳର କଥା । ଏତେବେଳେ ଇଉରୋପରେ ଯେଉଁ ଝଡ଼ ବତାସ ଲଗିଥିଲା, ତୋର ମନେ ପଡ଼ିପାରେ—ଫରାସୀ ବିପ୍ଳବ ଏତିକବେଳେ ଲାଗିଥିଲା । ଏହା ପଛେ ପଛେ ଆସିଲା ନେପୋଲିୟନ ଓ ନେପୋଲିୟନ ଅମଳର ଯୁଦ୍ଧ । ଏହି ସମୟରେ ସାରା ଇଂଲଣ୍ଡ ବ୍ୟସ୍ତ ଥିଲା ଏବଂ ନେପୋଲିୟନ ବିରୁଦ୍ଧରେ ପାଣି ଛଡ଼ାଇ ଲଢ଼ାଇ କରୁଥାଏ । ତେଣୁ ନେପୋଲିୟନର ପତନହୋଇ ଇଂଲଣ୍ଡ ନିଃଶ୍ୱାସ ନ ମାରିବା ପର୍ଯ୍ୟନ୍ତ ତା ପକ୍ଷରେ ଚୀନରେ ବେପାର ବିସ୍ତାର କରିବା ପ୍ରଶ୍ନ ନ ଥିଲା । ଅଳ୍ପ ଦିନ ପରେ ୧୮୧୬ରେ ଆଉ ଏକ ଇଂରେଜ ପ୍ରତିନିଧି ଦଳ ଚୀନକୁ ପଠାଗଲା । କିନ୍ତୁ କପରି ରୀତିନୀତି ମାନିବାକୁ ହେବ, ସେ ସମ୍ବନ୍ଧରେ କିଛିଏ ଅସୁବିଧା ପଡ଼ିଥିଲା ଏବଂ ଚୀଓ ସମ୍ରାଟ ବ୍ରିଟିଶ ପ୍ରତିନିଧି ଲର୍ଡ଼ ଆମହର୍ଷ୍ଟଙ୍କ ସହି ସାକ୍ଷାତ କରିବାକୁ ଅସ୍ୱୀକାର କରିଦେଲେ ଏବଂ ଫେରିଯିବା ପାଇଁ ଆଦେଶ କଲେ । ତାଙ୍କର ଯେଉଁ ରୀତି ପାଳିବାର କଥା, ତାକୁ କହନ୍ତି କୋଟାଓ—ଏକ ପ୍ରକାରେ ତଳେ ଶୋଇ ପ୍ରଣାମ କରିବା କଥା । ବୋଧହୁଏ ତୁ "କାଉଟାଓ୍ୟାଙ୍ଗ୍" ଶବ୍ଦ ଶୁଣିଥିବୁ ।

ତେଣୁ କିଛି ହେଲା ନାହିଁ । ଇତ୍ୟବସରରେ ଏକ ନୂଆ ବେପାର ପ୍ରଚଳନ ହେଲା—ଅଫିମ ବେପାର ବୋଧହୁଏ । ଏହାକୁ ଏକ ନୂତନ ବେପାର ବୋଲି କହିବା ଠିକ୍ ହେବ ନାହିଁ; କାରଣ ୧୫ଶ ଶତାବ୍ଦୀ ବେଳୁ ଭାରତରୁ ଏଠିକି ଅଫିମ ରପ୍ତାନୀ ହେଉଥିଲା । ଅତୀତରେ ଭାରତ ଚୀନକୁ ଅନେକ ଭଲ ଜିନିଷ ଦେଇଛି । ଅଫିମ ପଠାଇବାଟା ପ୍ରକୃତରେ ଖରାପ ଜିନିଷ; କିନ୍ତୁ ଏହି ବେପାର ସୀମାବଦ୍ଧ ଥିଲା । ଇଉରୋପୀୟମାନଙ୍କ ହେତୁ ୧୯ଶ ଶତାବ୍ଦୀରେ ଏହା ବଢ଼ିଲା ଏବଂ ବିଶେଷଭାବରେ ଇଷ୍ଟଇଣ୍ଡିଆ କମ୍ପାନୀର ଇଂରେଜ ବେପାର ଉପରେ ଏକଚାଟିଆ ଅଧିକାର ଥିଲା । କଥିତ ଅଛି ଯେ, ପୂର୍ବ ଦିଗରେ ଜାହାଜୀମାନେ ତମାଖୁ ସହି ଏହାକୁ ମିଶାଇ ଦେଉଥିଲେ ଏବଂ ତାପରେ ମେଲେରିୟାରୁ ରକ୍ଷା ପାଇବା ପାଇଁ ଫୁଙ୍କୁଥିଲେ । ଏମାନେ ହିଁ ଅଫିମ ଟାଣିବା ଚୀନରେ ଶିଖାଇଲେ; କିନ୍ତୁ ବଡ଼ ଖରାପ ଭାବରେ ଏଠିକି ଗଲା; କାରଣ ଚୀନରେ ଖାଲି ଅଫିମ ଟାଣିଲେ । ଲୋକଙ୍କ ଉପରେ ଏହାର ଫଳ ହେତୁ ଏବଂ ଆହୁରି ମଧ୍ୟ ଦେଶରୁ ଅଫିମ ବେପାରରେ ପ୍ରଚୁର ଧନ ଚାଲିଯାଉଥିବାରୁ ଚୀନ ସରକାର ଏ ଅଭ୍ୟାସ ବନ୍ଦ କରି ଦେବାକୁ ଚାହୁଁଥିଲେ ।

୧୮୦୦ ଖ୍ରୀଃରେ ଚୀନ ସରକାର ଏକ ଆଦେଶ ବା ହୁକୁମନାମା ଜାରି କରି କୌଣସି ଉଦ୍ଦେଶ୍ୟରେ ଅଫିମ ପ୍ରବେଶ ବାରଣ କରିଦେଲେ । କିନ୍ତୁ ବିଦେଶୀଙ୍କର ଏହା ଏକ ଲାଭଦାୟକ ବେପାର । ସେମାନେ ଗୋପନୀୟ ଭାବରେ ଅଫିମ ଦେଶ ଭିତରେ ପୂରାଇବାକୁ ଲାଗିଲେ ଏବଂ ଏଥିପ୍ରତି ନଜର ନ ରଖିବା ଲାଗି ଚୀନ ସରକାରୀ

କର୍ମଚାରୀଙ୍କୁ ଲାଞ୍ଚ ଦେଲେ । ସେହିହେତୁ ଚୀନ ସରକାର ଏକ ନିୟମ ଜାରି କରିଦେଲେ ଯେ ତାଙ୍କ କର୍ମଚାରୀମାନେ ବିଦେଶୀ ବଣିକଙ୍କ ସହିତ ସାକ୍ଷାତ କରିବେ ନାହିଁ । କୌଣସି ବିଦେଶୀକୁ ଚୀନ ବା ମଞ୍ଚୁ ଭାଷା ଶିକ୍ଷା ଦେଲେ କଠିନ ଶାସ୍ତି ଦେବାର ବ୍ୟବସ୍ଥା ହେଲା, କିନ୍ତୁ ଏସବୁର କିଛି ଫଳ ହେଲା ନାହିଁ । ଅଫିମ ବେପାର ଚାଲିଲା ଏବଂ ସମ୍ଭବତଃ ପ୍ରଚୁର ଭାବରେ ଲାଞ୍ଚ ଚାଲିଥିଲା । ବାସ୍ତବିକ ୧୮୩୪ରେ ଯେତେବେଳେ ବ୍ରିଟିଶ ସରକାର ଚୀନ ବାଣିଜ୍ୟରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଏକଚାଟିଆ ଅଧିକାର ଶେଷ କରି ଦେଇ ସବୁ ଇଂରେଜ ବଣିକଙ୍କ ପାଇଁ ଏହା ଉନ୍ମୁକ୍ତ କରିଦେଲା, ସେତେବେଳେ ଅବସ୍ଥା ଆହୁରି ଖରାପ ହୋଇଗଲା ।

ହଠାତ୍ ଲୁଚି ଅଫିମ ଯିବା ପରିମାଣ ବୃଦ୍ଧି ପାଇଲା ଏବଂ ଶେଷରେ ଏହା ଦବାଇ ଦେବା ପାଇଁ ଦୃଢ଼ ପ୍ରତିକାର କରିବା ସକାଶେ ଚୀନ ସରକାର ସ୍ଥିର କଲା । ଏଥିପାଇଁ ସେମାନେ ଜଣେ ଭଲ ଲୋକ ବାଛିଲେ । ଏହି ଚୋରି ଅଫିମ ଆସିବା ବନ୍ଦ କରିବା ପାଇଁ ଲିନ୍-ସେ-ସି ସ୍ପେଶାଲ ଅଫିସର ରୂପେ ନିଯୁକ୍ତ ହେଲେ ଏବଂ ସେ ଶୀଘ୍ର କଠିନ ବ୍ୟବସ୍ଥା କଲେ । ସେ ଏହି ବେଆଇନ ବାଣିଜ୍ୟର ପ୍ରଧାନ କେନ୍ଦ୍ର ଦକ୍ଷିଣରେ ଥିବା କାଣ୍ଟନକୁ ଗଲେ ଏବଂ ବିଦେଶୀ ବଣିକଙ୍କ ପାଖରେ ଥିବା ସମସ୍ତ ଅଫିମ ତାଙ୍କ ପାଖରେ ଦାଖଲ କରିବା ନିମନ୍ତେ ସେମାନଙ୍କୁ ଆଦେଶ କଲେ । ସେମାନେ ଏହି ହୁକୁମ ମାନିବାକୁ ଅସ୍ୱୀକାର କଲେ; ତେଣୁ ଲିନ୍ ଏହା ମାନିବାକୁ ସେମାନଙ୍କୁ ବାଧ୍ୟ କଲେ । ସେ ସେମାନଙ୍କୁ ତାଙ୍କ କାରଖାନାରେ ସବୁଠାରୁ ଅଲଗା କରି ରଖିଲେ, ଚୀନର ଶ୍ରମିକ ଓ ଚାକରମାନଙ୍କୁ ତାଙ୍କଠାରୁ ଛଡ଼ାଇ ଆଣିଲେ ଏବଂ ବାହାରୁ କୌଣସି ପ୍ରକାର ଖାଦ୍ୟ ତାଙ୍କ ପାଖକୁ ଯିବାକୁ ଦେଲେ ନାହିଁ । ଏହି କର୍ମପ୍ରବଣତା ଓ ସମ୍ପୂର୍ଣ୍ଣ କାର୍ଯ୍ୟ ଫଳରେ ବିଦେଶୀ ବଣିକମାନେ ବାଟକୁ ଆସିଲେ ଏବଂ ୨୦, ୦୦୦ ପେଟି ଅଫିମ ଚୀନ ହାତରେ ଦେଲେ । ଏହିସବୁ ଅଫିମ ଗୋପନୀୟ ଭାବରେ ବ୍ୟବହାର ପାଇଁ ଥିଲା ଏବଂ ତାହା ସବୁ ଲିନ୍ ନଷ୍ଟ କରିଦେଲେ । ଲିନ୍ ବିଦେଶୀ ବଣିକମାନଙ୍କୁ କହିଲେ ଯେ, କୌଣସି ଜାହାଜର କାପ୍ତାନ ଆଦୌ ଅଫିମ ଆଣିବେ ନାହିଁ ବୋଲି ମୁଚୁଲିକା ଲେଖି ନ ଦେଲେ ସେ କାଣ୍ଟନରେ କୌଣସି ଜାହାଜ ପ୍ରବେଶ କରାଇବାକୁ ଦେବେ ନାହିଁ । ଏହି ପ୍ରତିଶ୍ରୁତି ଭାଙ୍ଗିଲେ ଚୀନ ସରକାର ଜାହାଜ ଓ ତାର ସମସ୍ତ ଜିନିଷକୁ ବାଜ୍ୟାପ୍ତ କରିନେବେ । କମିଶନର ଲିନ୍ ଖାଣ୍ଟି ଲୋକ ଥିଲେ । ତାଙ୍କୁ ଯେଉଁ କାର୍ଯ୍ୟ ଦିଆଗଲା, ତାହା ସେ ଉତ୍ତମରୂପେ ନିର୍ବାହ କଲେ; କିନ୍ତୁ ଏହାର ପରିଣତି ଚୀନ ପକ୍ଷରେ କଷ୍ଟଦାୟକ ହେବ ବୋଲି ସେ ବୁଝିପାରି ନ ଥିଲେ ।

ଏହାର ପରିଣତି ସ୍ୱରୂପ ବ୍ରିଟେନ ସହିତ ଯୁଦ୍ଧ ହେଲା, ଚୀନ ପରାସ୍ତ ହେଲା ଏକ ଅପମାନଜନକ ସନ୍ଧି ହେଲା ଏବଂ ଯେଉଁ ଅଫିମକୁ ଚୀନ ନିଷେଧ କରିବାକୁ ଚାହିଁଥିଲା, ତାହା ତାଙ୍କ ଗଳାରେ ବଳପୂର୍ବକ ଭର୍ତ୍ତି କରି ଦିଆଗଲା । ଚୀନବାସୀଙ୍କ ପକ୍ଷରେ ଅଫିମ ଭଲ ବା

ଖରାପ ହେଲେ ଏଥିରେ କିଛି ଯାଏ ଆସେ ନା; ଚୀନ ସରକାର ବନ୍ଦ କରିବାକୁ ଚାହୁଁଥିଲେ, ସେଥିରେ କିଛି ଯାଏ ଆସେ ନା; କିନ୍ତୁ ଦେଖିବାର କଥା ହେଉଛି ବ୍ରିଟିଶ ବଣିକଙ୍କ ପାଇଁ ଚୀନ ଭିତରକୁ ଅଫିମ ନେବା ଏକ ଲାଭଜନକ ବେପାର ଏବଂ ଏହି ଆୟ ହରାଇବା ସହ୍ୟ କରିବା ପାଇଁ ବ୍ରିଟେନ ପ୍ରସ୍ତୁତ ନ ଥିଲା । କମିଶନର ଲିନ୍ ଯେଉଁ ଅଫିମ ନଷ୍ଟ କରିଦେଲେ ସେଥିରୁ ଅଧିକାଂଶ ଇଂରେଜ ବଣିକମାନଙ୍କର ଥିଲା; ତେଣୁ ଜାତୀୟ ସମ୍ମାନ ରକ୍ଷା ନାମରେ ୧୮୪୦ରେ ବ୍ରିଟେନ ଚୀନ ସହିତ ଯୁଦ୍ଧ ଲଗାଇଲା । ଏହାକୁ ଅଫିମ ଯୁଦ୍ଧ ଠିକ୍ ଭାବରେ କୁହାଯାଏ, କାରଣ ଚୀନରେ ବଳପୂର୍ବକ ଅଫିମ ଭର୍ତ୍ତି କରିବା ଅଧିକାର ଲାଗି ଯୁଦ୍ଧ ହୋଇଥିଲା ଏବଂ ଜୟୀ ବି କଲେ ।

ଯେଉଁ ବ୍ରିଟିଶ ନୌବାହିନୀ କାଣ୍ଟନ ଓ ଅନ୍ୟ ସ୍ଥାନ ସବୁ ଘେରାଉ କଲେ, ତାହା ବିରୁଦ୍ଧରେ ଚୀନ କିଛି କରିପାରିଲା ନାହିଁ । ଦୁଇବର୍ଷ ପରେ ସେ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ ହେଲା ଏବଂ ୧୮୪୨ ନାନକିଙ୍ଗ୍ ସନ୍ଧି ସର୍ତ୍ତରେ ଧାର୍ଯ୍ୟ ହେଲା ଯେ ବିଦେଶୀ ବାଣିଜ୍ୟ ପାଇଁ ପାଞ୍ଚଟି ବନ୍ଦର ଖୋଲା ରହିବ । ଏହାର ଅର୍ଥ, ବିଶେଷ ଭାବରେ ସେତେବେଳେ ଅଫିମ ବେପାର ଚାଲିବା ସୁବିଧା ହେଲା । କାଣ୍ଟନ, ସାଙ୍ଘାଇ, ଆମଏ, ନିଙ୍ଗ୍‌ପୋ ଓ ଫୁଚୌ—ଏହି ପାଞ୍ଚଟି ବନ୍ଦର । ଏଗୁଡ଼ିକୁ "ସନନ୍ଦ ବନ୍ଦର" ବୋଲି କହନ୍ତି । କାଣ୍ଟନ ନିକଟସ୍ଥ ହଙ୍ଗ୍‌କଙ୍ଗ୍ ଦ୍ୱୀପ ମଧ୍ୟ ବ୍ରିଟେନ ଦଖଲ କଲା ଏବଂ ଯେଉଁ ଅଫିମ ନଷ୍ଟ ହୋଇଥିଲା, ତାର କ୍ଷତିପୂରଣ ରୂପେ ବହୁ ପରିମାଣରେ ଧନ ଆଦାୟ କଲା । ଚୀନ ଉପରେ ଜବରଦସ୍ତି ଲଦା ହୋଇଥିବା ଯୁଦ୍ଧ ଖର୍ଚ୍ଚ ବି ଅସୁଲ କଲା ।

ଏହିରୂପେ ବ୍ରିଟେନ ଅଫିମରେ ବିଜୟୀ ହେଲା । ସେତେବେଳେ ଇଂଲଣ୍ଡର ରାଣୀ ଭିକ୍ଟୋରିଆ ରାଜଗାଦିରେ । ଚୀନ ସମ୍ରାଟ ତାଙ୍କ ପାଖକୁ ଏକ ବ୍ୟକ୍ତିଗତ ନିବେଦନ ପଠାଇ ଚୀନ ଉପରେ ବଳପୂର୍ବକ ଅଫିମ ବେପାର ଲଦିବା ଦ୍ୱାରା ଏହାର କିପରି ମନ୍ଦ ଫଳ ଲୋକଙ୍କ ଉପରେ ହେଉଛି, ଅତି ଭଦ୍ର ଭାବରେ ତାହା ଜଣାଇଲେ । ରାଣୀଙ୍କ ନିକଟରୁ କିଛି ଜବାବ ଆସିଲା ନାହିଁ । ଠିକ୍ ୫୦ ବର୍ଷ ପୂର୍ବେ ତାଙ୍କ ପୂର୍ବବର୍ତ୍ତୀ ସମ୍ରାଟ ଚିଏନ୍ ଲୁଙ୍ଗ ଅଲଗା ଭାବରେ ଇଂଲଣ୍ଡ ରାଜାଙ୍କୁ ଲେଖିଥିଲେ ।

ପଶ୍ଚିମର ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ସହିତ ଚୀନ ଗୋଳମାଳର ଏହା ହେଲା ଆରମ୍ଭ । ତାହାର ଅଲଗା ରହିବା ଶେଷ ପାଇଲା । ତାକୁ ବିଦେଶୀ ବାଣିଜ୍ୟ ଗ୍ରହଣ କରିବାକୁ ହେଲା; ଆହୁରି ପୁଣି ଅଧିକ ଖ୍ରୀଷ୍ଟିଆନ ପାଦ୍ରୀ ମଧ୍ୟ ସେ ଦେଶକୁ ଗଲେ । ସାମ୍ରାଜ୍ୟବାଦର ଅଗ୍ରଦୂତ ରୂପେ ଏହି ପାଦ୍ରୀମାନେ ଚୀନରେ ବଡ଼ ଭାଗ ନେଲେ । ଚୀନର ପରବର୍ତ୍ତୀ ଅନେକ ଗଣ୍ଡଗୋଳ ସହିତ ଏହି ପାଦ୍ରୀମାନେ ସମ୍ପୃକ୍ତ ଥିଲେ । ସେମାନଙ୍କ ଆଚରଣ ବେଳେ ବେଳେ ବଡ଼ ଅମାନ୍ୟ ଓ ଅସହ୍ୟ ଥିଲା; କିନ୍ତୁ ସେମାନଙ୍କର ଚୀନ ଅଦାଲତରେ ବିଚାର ହୋଇପାରୁ ନ ଥିଲା । ସନ୍ଧି ଅନୁସାରେ ପାଶ୍ଚାତ୍ୟ ଦେଶରୁ

ଯାଇଥିବା ବିଦେଶୀମାନଙ୍କଠାରେ ଚୀନ ଆଇନ ବା ଚୀନ ନ୍ୟାୟ ପ୍ରଯୁଜ୍ୟ ହେବ ନାହିଁ । ସେମାନଙ୍କର ନିଜ ଅଦାଲତରେ ବିଚାର ହେବ । ଏହାକୁ ଅନ୍ୟ ଦେଶିକତା (Extra territoriality) ବୋଲି କହନ୍ତି—ଏହା ଏବେ ବି ଅଛି ଏବଂ ଲୋକେ ଏଥିରେ ଅସନ୍ତୁଷ୍ଟ । ପାଦ୍ରୀଙ୍କ ଦ୍ୱାରା ନୂଆ ଧର୍ମ ଦୀକ୍ଷା ନେଇଥିବା ଲୋକେ ବି ଏହି 'ଅନ୍ୟ ଦେଶିକତା'ରେ ବିଶେଷ ରକ୍ଷା ଦାବୀ କଲେ । ସେମାନେ କୌଣସି ପ୍ରକାରେ ଏହାର ହକଦାର ନୁହନ୍ତି; କିନ୍ତୁ ସେଥିରେ କିଛି ଯାଏ ଆସେ ନା; କାରଣ ଗୋଟିଏ ଶକ୍ତିଶାଳୀ ସାମ୍ରାଜ୍ୟବାଦ ଦେଶର ପ୍ରତିନିଧି ବଡ଼ ବଡ଼ ପାଦ୍ରୀମାନେ ତାଙ୍କ ପଛରେ ଥିଲେ । ଏହି ରୂପେ ଗ୍ରାମ ଗ୍ରାମ ଭିତରେ ବିବାଦ ଲାଗିଲି ଏବଂ ଯେତେବେଳେ ଅତ୍ୟଧିକ ଭାବରେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ, ସେତେବେଳେ ଗ୍ରାମବାସୀ ବା ଅନ୍ୟମାନେ ଉତ୍ତେଜିତ ହଉଥିଲେ । ପାଦ୍ରୀମାନଙ୍କ ଉପରେ ଆକ୍ରମଣ କଲେ; କେତେବେଳେ ସେମାନଙ୍କୁ ହତ୍ୟା କଲେ । ତା ପରେ ପଛରେ ଥିବା ସାମ୍ରାଜ୍ୟବାଦ ଶକ୍ତି ମାଡ଼ିଆସିଲି ଏବଂ ଏହାର ଉପଯୁକ୍ତ କ୍ଷତିପୂରଣ ଆଦାୟ କଲି । ୟୁରୋପୀୟ ଶକ୍ତିମାନେ ଚୀନରେ ତାଙ୍କ ପାଦ୍ରୀମାନଙ୍କ ହତ୍ୟା ଫଳରେ ଯେପରି ଲାଭବାନ ହୋଇଛନ୍ତି, ଏପରି ଅନ୍ୟ କୌଣସିଥିରେ ଲାଭ ପାଇ ନାହାନ୍ତି; କାରଣ ପ୍ରତ୍ୟେକ ଥର ଏପରି ହତ୍ୟାଲାଗି ସେମାନେ ଅଧିକ ସୁବିଧା ଦାବୀ କଲେ ଓ ହାସଲ ବି କଲେ ।

ଖ୍ରୀଷ୍ଟଧର୍ମ ଦୀକ୍ଷା ଗ୍ରହଣ କରିଥିବା ଜଣେ ଲୋକ ଚୀନରେ ଅତି ଭୀଷଣ ଓ କ୍ରୂର ବିଦ୍ରୋହ କରିଥିଲି । ଏହା ହେଉଛି ଟେପିଙ୍ଗ ବିଦ୍ରୋହ—ଜଣେ ଅର୍ଦ୍ଧ ପାଗଳ ହୁଙ୍ଗ୍‌ସିନ୍ ଚୂଆନ ଦ୍ୱାରା ୧୮୫୦ରେ ଆରମ୍ଭ ହୋଇଥିଲି । ଏହି ଧର୍ମୋନ୍ମତ୍ତ ଲୋକ ଖୁବ୍ ସଫଳ ହେଲି ଏବଂ "ମୂର୍ତ୍ତି ପୂଜକଙ୍କୁ ହତ୍ୟା କର" ଏହି ଯୁଦ୍ଧ ଡାକରା ଦେଇ ଗ୍ରାମଆଡ଼େ ବୁଲିଲି ଏବଂ ବହୁ ସଂଖ୍ୟକ ଲୋକଙ୍କୁ ହତ୍ୟା କରାଗଲି । ଏହି ବିଦ୍ରୋହ ଫଳରେ ଚୀନର ଅଧା ଅଞ୍ଚଳ ଧ୍ୱଂସ ହୋଇଗଲି ଏବଂ ହିସାବରେ ଦେଖାଯାଇଛି ଯେ ୧୨ ବର୍ଷ କମ୍ବା ସେହି ସମୟରେ ଅନ୍ତତଃ ୨୦,୦୦୦,୦୦୦ ଲୋକ ଏହି ହେତୁ ମରିଛନ୍ତି । ଅବଶ୍ୟ ଏହି ବିଦ୍ରୋହ ଏବଂ ଏହା ସଙ୍ଗେ ସଙ୍ଗେ ଯେଉଁ ସବୁ ହତ୍ୟାକାଣ୍ଡ ହେଲା, ସେଥିପାଇଁ ଖ୍ରୀଷ୍ଟିଆନ ପାଦ୍ରୀ ବା ବିଦେଶୀ ଶକ୍ତିମାନଙ୍କୁ ଦାୟୀ କରିବା ଠିକ୍ ନୁହେଁ । ପ୍ରଥମେ ପାଦ୍ରୀମାନେ ଏହାକୁ ଆଶୀର୍ବାଦ କରୁଥିଲେ; କିନ୍ତୁ ପରେ ହୁଙ୍ଗ୍‌କୁ ସେମାନେ ଅସ୍ୱୀକାର କଲେ । ଯାହା ହେଉ ଚୀନ ସରକାର ବିଶ୍ୱାସ କରିବାକୁ ଲାଗିଲା ଯେ ଏଥିପାଇଁ ଖ୍ରୀଷ୍ଟିଆନ ପାଦ୍ରୀମାନେ ଦାୟୀ । ସେତେବେଳେ ଓ ପରେ ପାଦ୍ରୀଙ୍କ କାର୍ଯ୍ୟକଳାପକୁ ଚୀନବାସୀ କିପରି ବେଶି ନାପସନ୍ଦ କରୁଥିଲେ, ଏହା ଏହି ବିଶ୍ୱାସରୁ ବୁଝାପଡ଼େ । ସେମାନଙ୍କ ପକ୍ଷରେ ପାଦ୍ରୀମାନେ ଧର୍ମ ଓ ସଦିଚ୍ଛା ଘେନି ଆସି ନ ଥିଲେ । ସେମାନେ ହେଉଛନ୍ତି ସାମ୍ରାଜ୍ୟବାଦର ଏଜେଣ୍ଟ । ଜଣେ ଇଂରେଜ ଲେଖକ କହିଲି ପରି "ପ୍ରଥମେ ପାଦ୍ରୀ, ତାପରେ ବନ୍ଧୁକବାହୀ ଜାହାଜ, ତା ପରେ ଦେଶଗ୍ରାସ—ଚୀନବାସୀଙ୍କ ମନରେ ଏହାହିଁ ଲିପିବଦ୍ଧ ରହିଛି ।" ଏହା ମନେ

ରଖିବା ଭଲ; କାରଣ ଚୀନ ସଂକ୍ରାନ୍ତ ଗୋଳମାଳରେ ଅନେକ ସମୟରେ ପାଦ୍ରୀଙ୍କ କଥା ପଡ଼େ ।

ଜଣେ ଉନ୍ମତ୍ତ ଅନ୍ଧ ଲୋକ ନେତୃତ୍ୱରେ ଗୋଟାଏ ବିଦ୍ରୋହ ଏପରି ସଫଳତାର ସହ ଗଠିତହେଲା ଏବଂ ଦମନ ହୋଇପାରିଲା ନାହିଁ—ଏହା ଏକ ଅସାଧାରଣ କଥା । ଏଥିର ପ୍ରକୃତ କାରଣ ହେଉଛି ଚୀନରେ ପୁରୁଖା ବ୍ୟବସ୍ଥା ଭାଙ୍ଗି ପଡ଼ୁଥିଲା । ମୋର ମନେହୁଏ, ମୁଁ ଚିଠି ଚୀନ ସମ୍ବନ୍ଧରେ ଲେଖିଥିବା ଗତ ଚିଠିରେ କିଛି ଦାଉ, ପରିବର୍ତ୍ତନଶୀଳ ଆର୍ଥିକ ବ୍ୟବସ୍ଥା ଓ ଲୋକଙ୍କ ଭିତରେ ବୃଦ୍ଧି ପାଇଥିବା ଅସନ୍ତୋଷ ସମ୍ବନ୍ଧରେ କହିଛି । ମଞ୍ଚୁ ସରକାର ବିରୁଦ୍ଧରେ ଘରଆଡ଼େ ଗୁପ୍ତ ସମିତିମାନ ହେଲ ଏବଂ ବିଦ୍ରୋହ କଥା ଆଲୋଚନା ହେଉଥିଲା । ଅଫିମ ଓ ଅନ୍ୟ ଜିନିଷରେ ବିଦେଶୀ ବାଣିଜ୍ୟ ଅବସ୍ଥାକୁ ଆହୁରି ଖରାପ କଲା । ଅତୀତରେ ଚୀନରେ ଅବଶ୍ୟ ବିଦେଶୀ ବାଣିଜ୍ୟ ଥିଲା; କିନ୍ତୁ ବର୍ତ୍ତମାନ ଅବସ୍ଥା ଭିନ୍ନ ରକମ ହେଲା । ପାଶ୍ଚାତ୍ୟର ବଡ଼ କଲକାରଖାନାରେ ଅତି ଶୀଘ୍ର ବହୁତ ମାଲ ଉତ୍ପନ୍ନ ହେଉଥିଲା ଏବଂ ଦେଶରେ ଏହା ବିକ୍ରୀ ହୋଇପାରୁ ନ ଥିଲା; ତେଣୁ ତାକୁ ଅନ୍ୟତ୍ର ବଜାର ଖୋଜିବାକୁ ପଡ଼ିଲା । ଏହି ପ୍ରେରଣାରେ ହିଁ ସେମାନେ ଚୀନ ଓ ଭାରତକୁ ଆସିଲେ । ଏହିସବୁ ଜିନିଷ ବିଶେଷତଃ ଅଫିମ, ପୁରୁଣା ବେପାର ବ୍ୟବସ୍ଥାକୁ ଓଲଟପାଲଟ କରିଦେଲା ଏବଂ ଆର୍ଥିକ ଗଣ୍ଡଗୋଳ ଆହୁରି ଖରାପ କରିଦେଲା । ଭାରତ ପରି ଚୀନ ବଜାରରେ ମଧ୍ୟ ପୃଥିବୀ ଦରଦାମ ସଙ୍ଗରେ ବଜାରରେ ଆଞ୍ଚ ଆସିଲା । ଏହା ସହିତ ପୁଣି ଲୋକଙ୍କ ଅସନ୍ତୋଷ ଓ ଦୁର୍ଦ୍ଦଶା ଟେପିଙ୍ଗ୍ ବିଦ୍ରୋହକୁ ବଳଶାଳୀ କଲା ।

ପାଶ୍ଚାତ୍ୟ ଶକ୍ତିମାନଙ୍କର ଚୀନରେ ହସ୍ତକ୍ଷେପ ଓ ଉଗ୍ରତା ବୃଦ୍ଧି ପାଇଥିବା ବେଳେ ସେ ଦେଶର ଏହିପରି ଅବସ୍ଥା ଥିଲା । ଚୀନ ସେମାନଙ୍କର ଦାବୀ ପୂରଣ କରିବା ବିରୁଦ୍ଧରେ କିଛି ଯେ ନ କରିପାରିଲା, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଆମେ ଦେଖିବା ୟୁରୋପୀୟ ଶକ୍ତିପୁଞ୍ଜ ଓ ପରେ ଜାପାନ ଚୀନ ଏହି ଗୋଳମାଳିଆ ଓ ଅସୁବିଧା ଅବସ୍ଥାର ପୂର୍ଣ୍ଣ ସୁବିଧା ଉଠାଇ ତାହାଠାରୁ ଅଧିକ ସୁବିଧା ଓ ଅଞ୍ଚଳ କପରି ଆଦାୟ କଲେ । ବାସ୍ତବିକ ୟୁରୋପୀୟ ଶକ୍ତିମାନଙ୍କର ପରସ୍ପର ପ୍ରତି ବିରୋଧଭାବ ଓ ଈର୍ଷା ନଥିଲେ ଚୀନ ଅବସ୍ଥା ଭାରତପରି ହୋଇଥାଆନ୍ତା ଏବଂ ଏକ ବା ଅଧିକ ପାଶ୍ଚାତ୍ୟ ଓ ଜାପାନର ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ହୋଇଥାଆନ୍ତା ଏବଂ ତାର ଅଧୀନ ହୋଇ ଯାଇଥାଆନ୍ତା ।

୧୯ଶ ଶତାବ୍ଦୀରେ ଚୀନର ଅର୍ଥନୈତିକ ଓଲଟପାଲଟ, ଟେପିଙ୍ଗ ବିଦ୍ରୋହ, ପାଦ୍ରୀ ଓ ବିଦେଶୀ ଆକ୍ରମଣ କଥା ଉଲ୍ଲେଖ କରି ସାଧାରଣ ପୃଷ୍ଠଭୂମିକା ତୋତେ ଜଣାଇବାକୁ ଯାଇ ମୁଁ ଅସଲ କାରଣରୁ କିଛିବେ ଅନ୍ୟ ଆଡ଼କୁ ଚାଲିଯାଇଛି; କିନ୍ତୁ ବୁଦ୍ଧି ସମ୍ମତ ଭାବରେ ଘଟଣାବଳୀର ବର୍ଣ୍ଣନା ବୁଝିବାକୁ ହେଲେ ଏ ସମ୍ବନ୍ଧରେ କିଛି ଜାଣିବା ତାଙ୍କ ପଏରେ

ଆବଶ୍ୟକ; କାରଣ ଐତିହାସିକ ଘଟଣା ସବୁ ଯାଦୁ ପରି ଘଟେ ନା । କେତେକ ବିଭିନ୍ନ କାରଣ ଯୋଗୁଁ ସେସବୁ ଘଟେ; କିନ୍ତୁ ଅନେକ ସମୟରେ ଏସବୁ କାରଣ ଲୁପ୍ତ ହୋଇଥାଏ । ଘଟଣାଗୁଡ଼ିର ସୁପ୍ତ ଅବସ୍ଥାରେ ଥାଏ । ଏତେଦିନ ପର୍ଯ୍ୟନ୍ତ ଚୀନର ଯେଉଁ ମଞ୍ଚୁ ଶାସକମାନେ ଏତେ ବଡ଼ ଓ ଶକ୍ତିଶାଳୀ ଥିଲେ, ସେମାନେ ଭାଗ୍ୟଚକ୍ରର ଏପରି ପରିବର୍ତ୍ତନ ଦେଖି ଚକିତ ହୋଇ ଯାଇଥିଲେ । ସେମାନଙ୍କର ନଜର ଅତୀତ କାଳରେହିଁ ତାଙ୍କ ପତନର ମୂଳ ହେତୁ, ଏକଥା ବୋଧହୁଏ ସେମାନେ ଦେଖିପାରି ନ ଥିଲେ; ପାଶ୍ଚାତ୍ୟର ଔଦ୍ୟୋଗିକ ଉନ୍ନତି ଓ ଚୀନର ଅର୍ଥନୀତି ଅବସ୍ଥା ଉପରେ ତାଙ୍କ ଶୋଚନୀୟ ପରିଣତି ସେମାନେ ଅନୁଭବ କଲେ ନାହିଁ । "ବର୍ବର" ବିଦେଶୀଙ୍କ ହସ୍ତକ୍ଷେପ ସେମାନେ ବହୁତ ପରିମାଣରେ ବିରୋଧ କଲେ । ସେତେବେଳେ ସମ୍ରାଟ ଏହିସବୁ ହସ୍ତକ୍ଷେପ କଥାକୁ ଲକ୍ଷ୍ୟ କରି ଏକ ଆନନ୍ଦଦାୟକ ପୁରୁଣା ଚୀନ ଢଙ୍ଗ ବ୍ୟବହାର କରିଥିଲେ । ସେ କହିଲେ ଯେ ତାଙ୍କ ନିଜ ବଗିଚା ପାଖରେ ଆଉ କାହାରିକୁ ଘଙ୍ଗୁଡ଼ି ମାରିବା ପାଇଁ ସେ ଅନୁମତି ଦେବେ ନାହିଁ । କିନ୍ତୁ ପୁରାତନ ସାହିତ୍ୟର ରହସ୍ୟଜନକ ଲେଖା ଓ ଜ୍ଞାନ ଦୁର୍ଭାଗ୍ୟ ଅବସ୍ଥା ବେଳେ ଗୋଟାଏ ନିର୍ମଳ ବିଶ୍ୱାସ ଓ ଅଲୌକିକ ଧୈର୍ଯ୍ୟ ଦାନ କଲେ ମଧ୍ୟ ବିଦେଶୀଙ୍କ ପ୍ରତିରୋଧ ପାଇଁ ଯଥେଷ୍ଟ ନୁହେଁ ।

ନାନ୍‌କିଙ୍ଗ୍ ସନ୍ଧି ଫଳରେ ଚୀନରେ ବ୍ରିଟେନର ଦ୍ୱାର ଖୋଲିଗଲା; କିନ୍ତୁ ସମସ୍ତ ମୋଟା ଲାଭ ବ୍ରିଟେନ ନିଜେ ନେଇପାରିଲା ନାହିଁ । ଫ୍ରାନ୍ସ ଓ ଆମେରିକା ପହଞ୍ଚିଲେ ଏବଂ ଚୀନ ସହିତ ବାଣିଜ୍ୟ ଚୁକ୍ତି କଲେ । ଚୀନ ଅସହାୟ ଥିଲା ଏବଂ ତା ପରେ ଏ ଯେଉଁ ବାଧ୍ୟବାଧକତା କରାଗଲା, ସେଥିରେ ସେ ବିଦେଶୀଙ୍କ ପ୍ରତି ଶ୍ରଦ୍ଧାଭାବ ବା ସମ୍ମାନ ଦେଖାଇଲା ନାହିଁ । ଏହି "ବର୍ବର" ଙ୍କ ଉପସ୍ଥିତିରେ ମଧ୍ୟ ସେ ଅସନ୍ତୋଷ ଜାହିର କଲା । ବିଦେଶୀମାନେ ମଧ୍ୟ ପୁରାପୁରି ସନ୍ତୁଷ୍ଟ ହୋଇ ନ ଥିଲେ । ସେମାନଙ୍କର ଚୀନକୁ ଶୋଷଣ କରିବା କ୍ଷୁଧା ବଢ଼ିଲା । ବ୍ରିଟିଶ ପୁଣି ନେତୃତ୍ୱ ନେଲା ।

ବିଦେଶୀଙ୍କ ପକ୍ଷରେ ଏହା ଏକ ମାହେନ୍ଦ୍ର ବେଳ ଥିଲା; କାରଣ ଚୀନ ଟେପିଙ୍ଗ୍ ବିଦ୍ରୋହରେ ବ୍ୟସ୍ତ ଥିଲା ଏବଂ କୌଣସି ପ୍ରତିବନ୍ଧ କରିପାରିଲା ନାହିଁ; ତେଣୁ ଯୁଦ୍ଧ ବନ୍ଦ ଲାଗି ଏକ ପେଖନା ଖୋଜିବାରେ ଇଂରେଜମାନେ ଲାଗିପଡ଼ିଲେ । ୧୮୫୬ରେ କାଣ୍ଟନର ଚୀନା ଭାଇସରୟ ଜଳଦସ୍ୟୁ ଅପରାଧରେ ଗୋଟିଏ ଜାହାଜର ଚୀନା କାପ୍ତାନଙ୍କୁ ଗିରଫ କଲେ । ଏହି ଜାହାଜ ଚୀନାମାନଙ୍କର ଥିଲା ଏବଂ କୌଣସି ବିଦେଶୀ ଏଥିରେ ଲିପ୍ତ ନ ଥିଲେ; କିନ୍ତୁ ହଂକଂ ସରକାରଠାରୁ ଏକ ଅନୁମତି ପତ୍ର ପାଇ ଏହା ବ୍ରିଟିଶ ପତାକା ଉଡ଼ାଉଥିଲା । ଏପରି ହେଲା ଯେ, ଦେହି ଅନୁମତି ପତ୍ରର ସମୟ ଅତୀତ ହୋଇ ଯାଇଥିଲା । ଯାହାହେଉ ନଦୀକୂଳର ମେଣ୍ଢାଳୁଆ ଓ ଗଧିଆ ଗପପରି ଏହି କାରଣ ଦେଖାଇ ବ୍ରିଟିଶ ସରକାର ଯୁଦ୍ଧ ଆରମ୍ଭ କଲା ।

ଇଂଲଣ୍ଡରୁ ଚୀନକୁ ସୈନ୍ୟ ପଠାଗଲା । ଠିକ୍ ଏହି ସମୟରେ ୧୮୫୭ରେ ଭାରତୀୟ ବିଦ୍ରୋହ ଆରମ୍ଭ ହେଲା ଏବଂ ଏହିସବୁ ସୈନ୍ୟଙ୍କୁ ଭାରତକୁ ପଠାଇ ଦିଆଗଲା । ଏହି ବିଦ୍ରୋହ ଦମନ ପର୍ଯ୍ୟନ୍ତ ଚୀନ ଯୁଦ୍ଧ ବନ୍ଦ ରହିଲା । ୧୮୫୮ରେ ଦ୍ୱିତୀୟ ଚୀନ ଯୁଦ୍ଧ ଆରମ୍ଭ ହେଲା । ଚୀନର କୌଣସି ସ୍ଥାନରେ ଜଣେ ଫରାସୀ ମିସନାରୀଙ୍କ ହତ୍ୟା ହୋଇଛି ବୋଲି ଦେଖାଇ ଏଥିଭିତରେ ଫରାସୀ ବି ଏଥିରେ ଯୋଗ ଦେବାର ପେଷନା ବାହାର କଲେ; ତେଣୁ ଚୀନ ଟେପିଙ୍ଗ ବିଦ୍ରୋହରେ ସମସ୍ତ ଶକ୍ତି ଖଟାଇଥିଲାବେଳେ ଇଂରେଜ ଓ ଫରାସୀମାନେ ଚୀନାମାନଙ୍କ ଉପରେ ପୁଅପର ମାଡ଼ିଗଲେ । ବ୍ରିଟିଶ ଓ ଫରାସୀ ସରକାର ରୁଷ ଓ ଆମେରିକା ଯୁକ୍ତରାଷ୍ଟ୍ରକୁ ଏଥିରେ ଯୋଗ ଦେବା ନିମନ୍ତେ ପ୍ରବର୍ତ୍ତାଇଲେ, କିନ୍ତୁ ସେମାନେ ରାଜି ହେଲେ ନାହିଁ । ସେମାନେ ଯାହାହେଉ, ଲୁଟର ଭାଗ ନେବା ପାଇଁ ସମ୍ପୂର୍ଣ୍ଣରୂପେ ପ୍ରସ୍ତୁତ ଥିଲେ । ପ୍ରକୃତରେ କୌଣସି ଯୁଦ୍ଧ କରିବାକୁ ପଡ଼ି ନ ଥିଲା ଏବଂ ଅଧିକ ସୁବିଧା ହାସଲ କରି ୟୁରୋପୀୟ ଶକ୍ତି ଚୀନ ସହି ନୂତନ ସନ୍ଧି କଲେ । ବିଦେଶୀ ବାଣିଜ୍ୟ ପାଇଁ ଅଧିକ ବନ୍ଦର ଖୋଲି ଦିଆଗଲା ।

କିନ୍ତୁ ଦ୍ୱିତୀୟ ଚୀନ ଯୁଦ୍ଧ କାହାଣୀ ଏ ପର୍ଯ୍ୟନ୍ତ ଶେଷ ହୋଇ ନାହିଁ । ଏହି ନାଟକର ଆଉ ଏକ ଦୃଶ୍ୟ ଥିଲା—ଏହାର ଆହୁରି ଶୋଚନୀୟ ପରିଣତି ହେଲା । ସନ୍ଧି ହେଲା ପରେ ସମ୍ପୃକ୍ତ ସରକାର ତାହା ମଞ୍ଜୁର ବା ଗ୍ରହଣ କରିବା ପ୍ରଥା ଚାଲି ଆସିଛି । ବ୍ୟବସ୍ଥା ହେଲା ଯେ ଏହି ନୂତନ ସନ୍ଧିର ମଞ୍ଜୁରୀ ବର୍ଷକ ଭିତରେ ପେକିଙ୍ଗରେ ହେବ । ଏହାର ବେଳ ଯେତେବେଳେ ପହଞ୍ଚିଲା, ସେତେବେଳେ ରୁଷରୁ ସ୍ଥଳପଥରେ ରୁଷ ପ୍ରତିନିଧି ପେକିଙ୍ଗରେ ଆସି ସିଧା ପହଞ୍ଚିଲେ । ଅନ୍ୟ ତିନୋଟିଯାକ ଶକ୍ତି ଜଳପଥରେ ଆସିଲେ ଏବଂ ପିହୋ ନଦୀରେ ପେକିଙ୍ଗ ପର୍ଯ୍ୟନ୍ତ ତାଙ୍କ ନୌକା ଆଣିବାକୁ ଚାହିଁଲେ । ସେତେବେଳେ ଏହି ସହର ଉପରେ ଟେପିଙ୍ଗ ବିଦ୍ରୋହର ଭୟ ଥିଲା ଏବଂ ତେଣୁ ପିହୋ ନଦୀରେ ଦୁର୍ଗ କରାଯାଇଥିଲା । ତେଣୁ ନଦୀବାଟେ ନ ଆସି ଆହୁରି ଉତ୍ତରାଞ୍ଚଳରେ ସ୍ଥଳପଥରେ ଆସିବା ନିମନ୍ତେ ଚୀନ ସରକାର ବ୍ରିଟିଶ, ଫରାସୀ ଓ ଆମେରିକା ପ୍ରତିନିଧିମାନଙ୍କୁ କହିଲା । ଏହା କିଛି ଅନ୍ୟାୟ ଅନୁରୋଧ ନୁହେଁ । ଆମେରିକାବାଲା ଏଥିରେ ସମ୍ମତ ହୋଇଗଲେ; କିନ୍ତୁ ବ୍ରିଟିଶ ଓ ଫରାସୀ ହେଲେ ନାହିଁ । ଦୁର୍ଗ ନିର୍ମାଣ ହୋଇ ଅବରୋଧ କରିଥିବା ସତ୍ତ୍ୱେ ସେମାନେ ପିହୋ ପର୍ଯ୍ୟନ୍ତ ବଳପୂର୍ବକ ଆସିବାକୁ ଚେଷ୍ଟା କଲେ । ଚୀନାମାନେ ତାଙ୍କ ଉପରେ ଗୁଳି କଲେ ଏବଂ ସେମାନଙ୍କୁ ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇ ଫେରିଯିବାକୁ ପଡ଼ିଲା ।

ହିଂସ୍ର ଓ ଅତି ଗର୍ବୀ ଚୀନ ସରକାର ଯାତାୟାତ ପରିବର୍ତ୍ତନ କରି ବା ଅନୁରୋଧ ରକ୍ଷା କରିବା କଥା ଯେତେବେଳେ ଶୁଣିଲା ନାହିଁ, ସେ ଏ କଥା ସହ୍ୟ କରନ୍ତେ କିପରି ? ପ୍ରତିଶୋଧ ନେବା ପାଇଁ ଅଧିକ ସୈନ୍ୟ ପଠାଗଲା । ୧୮୬୦ରେ ସେମାନେ ପୁରୁଣା ପେକିଙ୍ଗ ସହର ଭିତରେ ମାଡ଼ିଗଲେ ଏବଂ ସହରରେ ଥିବା ଗୋଟିଏ ଅତି ମନୋହର ପ୍ରାସାଦ ପୋଡ଼ିଦେଲେ । ଲୁଟ କରି ଓ ସହରକୁ ଧ୍ୱଂସ କରି ହିଁ ସେମାନେ ପ୍ରତିଶୋଧ

ନେଲେ । ଏହା ହେଉଛି ସମ୍ରାଟଙ୍କର ଗ୍ରୀଷ୍ମକାଳୀନ ପ୍ରାସାଦ ୟୁଏନ୍-ମିଙ୍ଗ୍-ୟୁଏନ୍—ଚିଏନ୍ ଲୁଙ୍ଗଙ୍କ ରାଜୁତିବେଳେ ଏହା ପୂର୍ଣ୍ଣ ହୋଇଥିଲା । କଳା ଓ ସାହିତ୍ୟର ଅମୂଲ୍ୟ ସମ୍ପଦ ଏଠି ଭରି ଥିଲା—ଚୀନ ଯେଉଁସବୁ ଉତ୍କୃଷ୍ଟ ଜିନିଷ ଉତ୍ପନ୍ନ କରିଥିଲା, ତାହା ଉଠି ଥିଲା । ହଜାରେ ବର୍ଷ ହେଲା ଚୀନ ଯେଉଁସବୁ କାର୍ଯ୍ୟ ପାଇଁ ପ୍ରସିଦ୍ଧି ଲାଭ କରିଛି, ଅତ୍ୟନ୍ତ ସୁନ୍ଦର ପୁରୁଣା ପିତ୍ତଳ କାମ, ଅଦ୍ଭୁତ କାରୁକାର୍ଯ୍ୟପୂର୍ଣ୍ଣ ଚୀନା ମାଟିବାସନ, ପାଣ୍ଡୁଲିପି, ଚିତ୍ର ଏବଂ ପ୍ରତ୍ୟେକ ପ୍ରକାର ଶିଳ୍ପ ଓ ସୂକ୍ଷ୍ମକଳା ସବୁ ଏଠାରେ ପରିପୂର୍ଣ୍ଣ ଥିଲା । ଇଂରେଜ ଓ ଫରାସୀ ସେନାବାହିନୀମାନେ ପ୍ରଚଣ୍ଡ ଲୁଣ୍ଠନକାରୀ—ସେମାନେ ଏହି ସମ୍ପଦ ଲୁଟ କଲେ ଏବଂ ପ୍ରକାଣ୍ଡ ନିଆଁ ହୁଳା ଲଗାଇ ତାହା ସବୁ ପୋଡ଼ିଦେଲେ । ଅନେକ ଦିନ ପର୍ଯ୍ୟନ୍ତ ଏହା ଜଳୁଥାଏ । ହଜାର ହଜାର ବର୍ଷର ସଂସ୍କୃତିରେ ଗଢ଼ା ଚୀନାବାସୀ ଏହି ନିର୍ବୋଧ କାମ ଯୋଗୁଁ ସର୍ବଦା ତାଙ୍କ ହୃଦୟରେ ଆଘାତ ଲାଗି ରହିଲା ଏବଂ ଧ୍ୱଂସକାରୀମାନେ ଅତି ଅଜ୍ଞ, ବର୍ବର ଏବଂ କେବଳ ହତ୍ୟା କରିବା ଓ ଧ୍ୱଂସ କରିବା ଛଡ଼ା ଆଉ କିଛି ଜାଣନ୍ତି ନାହିଁ । ଏ କଥା ଭାବିବାଟା କଣ ଆଶ୍ଚର୍ଯ୍ୟ କଥା ? ହୁନ, ମଙ୍ଗୋଲ ଓ ପୁରୁଣାକାଳର ଆଉ ଅନେକ ଧ୍ୱଂସକାରୀ ବର୍ବରଙ୍କ ସ୍ମୃତି ଏଥିରେ ତାଙ୍କ ମନରେ ଜାଗ୍ରତ ହୋଇଥିବ ।

କିନ୍ତୁ ଚୀନାମାନେ ତାଙ୍କୁ କିପରି ଭାବୁଛନ୍ତି, ସେ କଥା ପ୍ରତି ଏହି ବିଦେଶୀ "ବର୍ବରମାନେ" ଖାତିର କଲେ ନାହିଁ । ସେମାନେ ନିଜର ବନ୍ଧୁକବାହୀ ନୌକା ଓ ଯୁଦ୍ଧର ଆଧୁନିକ ଅସ୍ତ୍ର ବଳରେ ନିଜକୁ ନିରାପଦ ମଣିଲେ । ଶହ ଶହ ବର୍ଷର ପରିଶ୍ରମ ଫଳରେ ଧନ ଓ ଅମୂଲ୍ୟ ସମ୍ପଦ ସଂଗ୍ରହ କରାଯାଇଥିଲା, ତାହା ନ ରହିଲେ ତାଙ୍କର ପରୁଆ କଣ ଅଛି ? ସେମାନେ ଚୀନର କଳା ଓ ସଂସ୍କୃତି ପ୍ରତି କାହିଁକି ବା ଖାତିର କରନ୍ତେ ?

"ଯାହା ପଛକେ ହେଉ, ଆମର ତୋପ ବନ୍ଧୁକ ରହିଛି; ସେମାନଙ୍କର ନାହିଁ ।"

## ୧୧୪ : ଅସୁବିଧା ମଧ୍ୟରେ ଚୀନ

ଡିସେମ୍ବର ୨୪, ୧୯୩୨

୧୮୬୦ରେ ପେକିଙ୍ଗର ବିଖ୍ୟାତ ରାଜକୀୟ ଗ୍ରୀଷ୍ମକାଳୀନ ପ୍ରାସାଦ ଇଂରେଜ ଓ ଫରାସୀମାନେ ଧ୍ୱଂସ କରିଥିବା କଥା ଗତ ଚିଠିରେ ମୁଁ କହିଛି । ଚୀନାମାନେ ପତାକା ସମ୍ବନ୍ଧରେ ହୋଇଥିବା ସନ୍ଧି ଭାଙ୍ଗିଦେବାରୁ ଶାସ୍ତିସ୍ୱରୂପ ଏହା କରାହୋଇଥିଲା ବୋଲି ବୋଧ କୁହାଯାଏ । କେତେକ ଚୀନାସୈନ୍ୟ ହୁଏତ ଏପରି ଅପରାଧ ପାଇଁ ଦୋଷୀ

ହୋଇଥାଇ ପାରନ୍ତି; କିନ୍ତୁ ବ୍ରିଟିଶ ଓ ଫରାସୀମାନେ ଜାଣିଶୁଣି ଯେଉଁ ନୃଶଂସତା କରିଥିଲେ, ତାହା କଳ୍ପନାତୀତ । କେତେକ ମୂର୍ଖ ସୈନ୍ୟଙ୍କର ଏ କାମ ନୁହେଁ, ଶାସନ କ୍ଷମତା ହାତରେ ଥିବା ଲୋକଙ୍କର ଏ କାର୍ଯ୍ୟ । ଏପରି ଘଟଣା କାହିଁକି ଘଟେ ? ଇଂରେଜ ଓ ଫରାସୀମାନେ ସଭ୍ୟ ଓ ସଂସ୍କୃତ ଲୋକ—କେତେକ ଭାବରେ ଆଧୁନିକ ସଭ୍ୟତାର ସେମାନେ ନେତା; ତଥାପି ନିଜର ବ୍ୟକ୍ତିଗତ ଜୀବନରେ ଭଦ୍ର ଓ ବିଚାରବନ୍ତ ଏହି ଲୋକେ ସାଧାରଣ ବ୍ୟବହାର ଓ ଅନ୍ୟ ଲୋକଙ୍କ ସହି ସଂଘର୍ଷବେଳେ ସେମାନଙ୍କ ସଭ୍ୟତା ଓ ଭଦ୍ରତା ସବୁ ଭୁଲିଯାଆନ୍ତି । ବ୍ୟକ୍ତି-ବିଶେଷଙ୍କର ପରସ୍ପର ପ୍ରତି ବ୍ୟବହାର ଓ ଦେଶର ଦେଶ ପ୍ରତି ବ୍ୟବହାର ଭିତରେ ଅଦ୍ଭୁତ ପାର୍ଥକ୍ୟ ଦେଖାଯାଏ । ସନ୍ତାନସନ୍ତତି ବାଳକବାଳିକାମାନଙ୍କୁ ଅଧିକ ସ୍ୱାର୍ଥପର ନ ହେବା ଲାଗି ଅନ୍ୟମାନଙ୍କ ସମ୍ବନ୍ଧରେ ଚିନ୍ତା କରିବା ନିମନ୍ତେ ଏବଂ ଠିକ୍ ଭାବରେ ବ୍ୟବହାର କରିବା ନିମନ୍ତେ ଶିକ୍ଷା ଦିଆଯାଏ । ଆମକୁ ଏହା ଶିଖାଇବା ଆମ ଶିକ୍ଷାର ଉଦ୍ଦେଶ୍ୟ ଏବଂ କେତେକ ପରିମାଣରେ ଆମେ ଏହା ଶିଖୁ ଏବଂ ତାପରେ ଯୁଦ୍ଧ ଆସେ, ଆମେ ଆମର ପୁରୁଣା ଶିକ୍ଷା ଭୁଲିଯାଉ ଏବଂ ଆମ ଭିତରର ପାଶବିକତା ବାହାରିପଡ଼େ; ତେଣୁ ଭଦ୍ରଲୋକେ ବି ପଶୁ ପରି ଆଚରଣ କରନ୍ତି ।

ଏକାଭଳିଆ ଦୁଇ ଜାତି ଫରାସୀ ଓ ଜର୍ମାନଙ୍କ ଭିତରେ ଲଢ଼ାଇ ବେଳେ ବି ସେହିପରି ହୁଏ; କିନ୍ତୁ ବିଭିନ୍ନ ଜାତି ମଧ୍ୟରେ ସଂଘର୍ଷ ଲାଗିଲେ ଏହା ଆହୁରି ଖରାପ ହୁଏ; ବିଶେଷତଃ ଯେତେବେଳେ ଇଉରୋପୀୟମାନେ ଏସିଆ ଓ ଆଫ୍ରିକାର ଲୋକ ଓ ଜାତିମାନଙ୍କର ସମ୍ମୁଖୀନ ହୁଅନ୍ତି, ଏହି ବିଭିନ୍ନ ଜାତି ପରସ୍ପରକୁ ଜାଣି ନ ଥାନ୍ତି; କାରଣ ପ୍ରତ୍ୟେକର ଦ୍ୱାର ଅନ୍ୟ ପାଇଁ ରୁଦ୍ଧ । ଅଜ୍ଞତା ଯେଉଁଠି ଅଛି, ସେଠି ସୁହୃଦଭାବ ଆସିପାରେ ନା । ଜାତି-ବିଦ୍ୱେଷ ଓ ତିକ୍ତତା ବଢ଼େ ଏବଂ ଯେତେବେଳେ ଦୁଇ ଜାତି ଭିତରେ କଜିଆ ଲାଗେ, ସେତେବେଳେ ଖାଲି ଯେ ରାଜନୈତିକ ଯୁଦ୍ଧ ହୁଏ ତାହା ନୁହେଁ, ତାଠାରୁ ଆହୁରି ଖରାପ ଜାତିଗତ ଯୁଦ୍ଧ ଲାଗେ । ଏହା ଦେଖିଲେ ୧୮୫୭ରେ ଭାରତ ବିଦ୍ରୋହ ବେଳର ଭୀଷଣତା ଏବଂ ପ୍ରାଧାନ୍ୟ ଲଭିଥିବା ଇଉରୋପୀୟ ଶକ୍ତିମାନଙ୍କର ଏସିଆ ଓ ଆଫ୍ରିକା ପ୍ରତି କ୍ରୂରତା ଓ ନୃଶଂସତା ଜଣାପଡ଼େ ।

ଏହାସବୁ ଅତି ଦୁଃଖ ଓ ନିର୍ବୋଧ କଥା ପରି ଲାଗେ; କିନ୍ତୁ ଯେଉଁଠି ଗୋଟିଏ ଜାତିର ଅନ୍ୟ ଜାତି ଉପରେ ପ୍ରାଧାନ୍ୟ ଥାଏ, ଗୋଟିଏ ଦେଶର ଲୋକ ଅନ୍ୟ ଉପରେ, ଏକ ଶ୍ରେଣୀ ଅପର ଶ୍ରେଣୀ ଉପରେ ପ୍ରାଧାନ୍ୟ ବିସ୍ତାର କରିଥାନ୍ତି, ସେଠି ଅସନ୍ତୋଷ, ବିବାଦ ଓ ବିଦ୍ରୋହ ହେବା ବାଧ୍ୟ ଏବଂ ଶୋଷିତ ଦେଶ ବା ଲୋକେ ବା ଶ୍ରେଣୀ ତାର ଶୋଷକଠାରୁ ମୁକ୍ତ ପାଇବା ନିମନ୍ତେ ଉଦ୍ୟମ କରନ୍ତି । ଅଜି ଆମର ପ୍ରଚଳିତ ସମାଜର ମୂଳ ଭିତ୍ତି ହେଉଛି ଏକ ଅନ୍ୟ ଉପରେ ଶୋଷଣ କରିବା । ଏହାକୁ ପୁଞ୍ଜିବାଦ କହନ୍ତି ଏବଂ ଏଇଥିରୁ ସାମ୍ରାଜ୍ୟବାଦ ବାହାରିଛି ।

୧୯ଶ ଶତାବ୍ଦୀରେ ବଡ଼ ବଡ଼ ମେସିନ ଓ ଔଦ୍ୟୋଗିକ ଉନ୍ନତି ହେତୁ ଇଉରୋପୀୟ ଦେଶମାନେ ଏବଂ ଆମେରିକା ଯୁକ୍ତରାଷ୍ଟ୍ର ଧନୀ ଓ ପ୍ରଭାବଶାଳୀ ହୋଇ ଉଠିଲେ । ସେମାନେ ଭାବିବାକୁ ଲାଗିଲେ ଯେ, ସେମାନେ ହେଉଛନ୍ତି ପୃଥିବୀର ପ୍ରଭୁ ଏବଂ ଅନ୍ୟ ଜାତିମାନେ ତାଙ୍କଠାରୁ ଅନେକ ଶ୍ରେଷ୍ଠ ଏବଂ ସେମାନଙ୍କର ଆଶ୍ରା ଲାଗି ପଥ ପରିଷ୍କାର କରିଦେବା ଉଚିତ । ପ୍ରକୃତିର ଶକ୍ତିକୁ ଆୟତ୍ତ କରି ପାରିବାକୁ ସେମାନେ ଅନ୍ୟମାନଙ୍କ ପ୍ରତି ଉଗ୍ର ଓ ବୋଙ୍ଗ ହୋଇ ପଡ଼ିଲେ । ସେମାନେ ଭୁଲିଗଲେ ଯେ ସଭ୍ୟ ମାନବ ଯେ କେବଳ ପ୍ରକୃତିକୁ ଆୟତ୍ତ କରିବେ ତାହା ନୁହେଁ, ନିଜର ସଂଯମ ବି ଦରକାର; ତେଣୁ ଆମେ ଦେଖୁଁ ଯେ, ୧୯ଶ ଶତାବ୍ଦୀରେ ପ୍ରଗତିଶୀଳ ଜାତିମାନେ ଅନେକ ଭାବରେ ଅନ୍ୟମାନଙ୍କଠାରୁ ଆଗୁଆ ଥିଲେ ସୁଦ୍ଧା ବେଳେ ବେଳେ ଏପରି ଆଚରଣ କରନ୍ତି, ଯାହା ଅତି ଅନୁନ୍ନତ ବର୍ବରଙ୍କୁ ସୁଦ୍ଧା ସରମ ଲାଗିବ । ସମ୍ଭବତଃ ଏହା ଜାଣିଲେ ଖାଲି ୧୯ଶ ଶତାବ୍ଦୀରେ ନୁହେଁ, ଆଜି ସୁଦ୍ଧା ଇଉରୋପୀୟ ଜାତିମାନେ ଏସିଆ ଓ ଆଫ୍ରିକା ପ୍ରତି ଯେପରି ଆଚରଣ ଦେଖାଇ ଆସିଛନ୍ତି, ତୁ ବୁଝିପାରିବୁ ।

ଭାବିବୁ ନାହିଁ ଯେ ମୁଁ ନିଜର ସୁବିଧା ସକାଶେ ଇଉରୋପୀୟ ଶକ୍ତିମାନଙ୍କୁ ଆମ ସହିତ ବା ଅନ୍ୟ ଜାତିମାନଙ୍କ ସହ ତୁଳନା କରୁଛି । ଏହା ନୁହେଁ, ଆମ ସମସ୍ତଙ୍କ ଦୋଷ ରହିଛି ଓ ଆମର ତ ବହୁତ ଖରାପ ଦୋଷ ଅଛି; ନଚେତ୍ ଆମେ ଆଜି ଯେତେ ତଳେ ପଡ଼ିଛେ ସେପରି ହୋଇ ନ ଥାନ୍ତେ ।

ଆମେ ଏବେ ଚୀନକୁ ଫେରିଯିବା । ଗ୍ରୀଷ୍ମକାଳୀନ ରାଜପ୍ରାସାଦ ଧ୍ୱଂସ କରି ବ୍ରିଟିଶ ଓ ଫରାସୀମାନେ ସେମାନଙ୍କ ଶକ୍ତିର ପରିଚୟ ଦେଲେ । ଏହା ପରେ ପରେ ସେମାନେ ପୁରାତନ ସନ୍ଧିକୁ ମଞ୍ଜୁର କରିବା ନିମନ୍ତେ ଚୀନକୁ ବାଧ୍ୟ କଲେ ଏବଂ ତାଠାରୁ ନୂଆ ନୂଆ ସୁବିଧା ହାସଲ କଲେ । ଏହି ସର୍ତ୍ତ ଅନୁସାରେ ଚୀନ ସରକାରଦ୍ୱାରା ବିଦେଶୀ କର୍ମଚାରୀଙ୍କ ଅଧୀନରେ ସାଙ୍ଘାଇରେ ଚୀନା କଷ୍ଟମସ୍ ସର୍ଭିସ (Customs Service) ସଂଗଠନ କରାଗଲା । ଏହାକୁ "ଇମ୍ପେରିଆଲ ମାରିଟାଇମ୍ କଷ୍ଟମ୍ସ୍" କୁହା ହେଉଥିଲା ।

ଇତ୍ୟବସରରେ ଯେଉଁ ଟେପିଙ୍ଗ ବିଦ୍ରୋହ ଚୀନକୁ ଦୁର୍ବଳ କରିଥିଲା, ଏବଂ ବିଦେଶୀ ଶକ୍ତିକୁ ସୁଯୋଗ ଦେଲା, ତାହା ତଥାପି ଲାଗିଥାଏ । ଶେଷରେ ୧୮୬୪ରେ ଜଣେ ଚୀନା ଗଭର୍ଣ୍ଣର ଲିହୁଙ୍ଗ୍ ଚାଙ୍ଗ ଏହାକୁ ଶେଷଥର ପାଇଁ ଦବାଇଦେଲେ । ଏ ଚୀନର ଜଣେ ନେତୃସ୍ଥାନୀୟ ରାଜନୀତିଜ୍ଞ ଥିଲେ ।

ଯେତେବେଳେ ଆତଙ୍କବାଦଦ୍ୱାରା ଇଂଲଣ୍ଡ ଓ ଫ୍ରାନ୍ସ ଚୀନରୁ ସୁବିଧା ହାସଲ କରିବାରେ ଲାଗିଥାନ୍ତି, ସେତେବେଳେ ଅଧିକ ଶାନ୍ତିପୂର୍ଣ୍ଣ ଉପାୟରେ ଉତ୍ତରରେ ରୁଷ ଅଲୌକିକ ସଫଳତା ଲାଭ କରିଥିଲା । ଠିକ୍ କେତେ ବର୍ଷ ପୂର୍ବରୁ କନଷ୍ଟାଣ୍ଟିନୋପଲ ଦଖଲ କରିବା ନିମନ୍ତେ ଆତୁର ହୋଇ ରୁଷ ଇଉରୋପରେ ତୁର୍କୀ ଆକ୍ରମଣ କରିଥିଲା ।

ଇଂଲଣ୍ଡ ଓ ଫ୍ରାନସ ରୁଷର ଶକ୍ତି ବୃଦ୍ଧି ଦେଖି ଆତଙ୍କ ଗଣୁଥିଲେ ଏବଂ ତେଣୁ ସେମାନେ ତୁର୍କୀ ସହିତ ଯୋଗ ଦେଲେ ଓ ୧୮୫୪-୫୬ରେ କ୍ରିମିୟାନ ଯୁଦ୍ଧରେ ରୁଷକୁ ପରାସ୍ତ କଲେ । ପଶ୍ଚିମରେ ପରାସ୍ତ ହୋଇ ରୁଷ ପୂର୍ବ ଆଡ଼କୁ ଦୃଷ୍ଟି ଫେରାଇଲା ଏବଂ ଖୁବ୍ ସଫଳ ହେଲା । ଉତ୍ତର-ପଶ୍ଚିମରେ ସମୁଦ୍ରକୁ ଲାଗି ସହର ଓ ଭ୍ଲାଡ଼ିଭୋଷ୍ଟକ ବନ୍ଦର ସହ ଏକ ପ୍ରଦେଶ ରୁଷକୁ ଦେବା ନିମନ୍ତେ ଶାନ୍ତିପୂର୍ଣ୍ଣ ଉପାୟଦ୍ୱାରା ଚୀନକୁ ପ୍ରବର୍ତ୍ତାଇଲେ । ଜଣେ ବିଚକ୍ଷଣ ଯୁବକ ରୁଷ କର୍ମଚାରୀ ମୁରାଭିଏଫ୍‌ଙ୍କ ଯୋଗୁଁ ଏହି ବିଷୟ ହୋଇଥିଲା । ଏହିପରି ସ୍ୱଭାବରେ ଇଂଲଣ୍ଡ ଓ ଫ୍ରାନ୍‌ସ ତିନି ବର୍ଷ କାଳ ଯୁଦ୍ଧ ଓ ବୁଦ୍ଧିହୀନ ଭାବରେ ଧ୍ୱଂସ କରି ପାଇପାରି ନ ଥିଲେ । ରୁଷ ବନ୍ଧୁତା ସୂତ୍ରରେ ତାହାଠୁଁ ଅଧିକ ପାଇପାରିଲା ।

୧୮୬୦ରେ ଅବସ୍ଥା ଏପରି ଥିଲା । ୧୯ଶ ଶତାବ୍ଦୀ ଶେଷ ବେଳକୁ ମାଞ୍ଚୁ ମାନଙ୍କର ଯେଉଁ ମହାନ ଚୀନାସାମ୍ରାଜ୍ୟ ପ୍ରାୟ ଅର୍ଦ୍ଧେକ ଏସିଆ ଉପରେ ପ୍ରାଧାନ୍ୟ କରିଥିଲା, ତାହା ଏବେ ଭ୍ରଷ୍ଟ ଓ ଅପମାନିତ ହେଲା । ସୁଦୂର ଇଉରୋପର ପାଶ୍ଚାତ୍ୟ ଶକ୍ତିମାନେ ଆସି ତାକୁ ପରାସ୍ତ କଲେ ଓ ଅପମାନିତ କଲେ; ଏକ ଆଭ୍ୟନ୍ତରିଣ ବିଦ୍ରୋହ ସାମ୍ରାଜ୍ୟକୁ ଏକ ପ୍ରକାର ଓଲଟାଇ ଦେଲା । ଏହିସବୁ ଚୀନକୁ ସମ୍ପୂର୍ଣ୍ଣରୂପେ ଦୋହଲାଇ ଦେଲା । ଏଥିରୁ ପରିଷ୍କାର ଜଣାପଡ଼ିଲା ଯେ, ସବୁ ଠିକ୍ ନ ଥିଲା ଏବଂ ନୂତନ ଅବସ୍ଥା ଓ ବିଦେଶୀ ଭୟର ସମ୍ମୁଖୀନ ହେବା ନିମନ୍ତେ ଦେଶକୁ ପୁନର୍ଗଠନ କରିବା ନିମନ୍ତେ କିଛି ଉଦ୍ୟମ ହେଲା; ତେଣୁ ଏହି ୧୮୬୦କୁ ଏକ ନୂତନ ଯୁଗ ଆରମ୍ଭ ବୋଲି କୁହାଯାଇପାରେ—ଏତେବେଳେ ଚୀନ ବିଦେଶୀ ଆକ୍ରମଣ ପ୍ରତିରୋଧ କରିବା ନିମନ୍ତେ ପ୍ରସ୍ତୁତ ହୋଇଗଲା । ଚୀନର ପଡ଼ୋଶୀ ଜାପାନ ମଧ୍ୟ ସେତେବେଳେ ସେହି ପ୍ରକାରେ ବ୍ୟସ୍ତ ଥିଲା ଏବଂ ଏହାକୁ ସେ ମଧ୍ୟ ଏକ ଦୃଷ୍ଟାନ୍ତ ରୂପେ ନେଲା । ଚୀନ ଅପେକ୍ଷା ଜାପାନ ଅଧିକ କୃତକାର୍ଯ୍ୟ ହେଲା; କିନ୍ତୁ କିଛି କ୍ଷଣ ନିମନ୍ତେ ଚୀନ ବିଦେଶୀ ଶକ୍ତିଙ୍କର ପ୍ରତିରୋଧ କରିପାରିଥିଲା ।

ବୁର୍ଲିଙ୍ଗେମ ନାମକ ଜଣେ ଆମେରିକାନଙ୍କ ଅଧୀନରେ ଏକ ଚୀନା ମିସନ ସନ୍ଧି ସୂତ୍ରରେ ଆବଦ୍ଧ ଶକ୍ତିମାନଙ୍କ ନିକଟକୁ ପଠାଗଲା ଏବଂ ସେ ଏମାନଙ୍କଠାରୁ ଏକ ପ୍ରକାର ଭଲ ଚୁକ୍ତି ଆଣିବାରେ କୃତକାର୍ଯ୍ୟ ହେଲେ । ଏ ଜଣେ ଚୀନର ପରମ ବନ୍ଧୁ । ୧୮୬୮ରେ ଏକ ନୂତନ ଚୀନ ଆମେରିକା ସନ୍ଧି ସ୍ୱାକ୍ଷରିତ ହେଲା ଏବଂ ମଜାର କଥା ଯେ, ଯୁକ୍ତରାଷ୍ଟ୍ରକୁ ଚୀନ ଶ୍ରମିକ ସୁବିଧା ଓ ଅନୁଗ୍ରହ ଦେଖାଇବା ପାଇଁ ଯୁକ୍ତରାଷ୍ଟ୍ରକୁ ପଠାଇବାକୁ ଚୀନ ସରକାର ବି ରାଜି ହୋଇଗଲା । ସେତେବେଳେ ଯୁକ୍ତରାଷ୍ଟ୍ର ତାର ପାଶ୍ଚାତ୍ୟ ପ୍ରଶାନ୍ତମହାସାଗର ରାଜ୍ୟର ବିଶେଷତଃ କାଲିଫୋର୍ଣ୍ଣିଆକୁ ଉନ୍ନତ କରିବାରେ ଲାଗିଥିଲା ଏବଂ ସେଠି ଶ୍ରମିକଙ୍କ ଅଭାବ ପଡ଼ିଥିଲା; ତେଣୁ ସେମାନେ ଚୀନରୁ ଶ୍ରମିକ ରପ୍ତାନୀ କଲେ; କିନ୍ତୁ ଏହା ପୁଣି ଗଣ୍ଡଗୋଳର ସୂତ୍ରପାତ କଲା । ଆମେରିକାବାସୀ ଶସ୍ତା ଚୀନ ଶ୍ରମିକ ଆସିବାରେ ଆପତ୍ତି ଉଠାଇଲେ ଏବଂ ଦୁଇ ସରକାର ଭିତରେ ବିବାଦ ଲାଗିଲା । ପରେ ଯୁକ୍ତରାଷ୍ଟ୍ର ସରକାର ଚୀନା ଶ୍ରମିକ ନିବା ବନ୍ଦ କରିଦେଲେ ଏବଂ ଏପରି ଅପମାନଜନକ

ବ୍ୟବହାରରେ ଚୀନ ଲୋକେ ବଡ଼ ଅସନ୍ତୋଷ ପ୍ରକାଶ କଲେ । ସେମାନେ ଆମେରିକା ଜିନିଷ ବର୍ଜନ କଲେ; କିନ୍ତୁ ଏହା ସବୁ ଏକ ଦୀର୍ଘ କାହାଣୀ—ବିଂଶ ଶତାବ୍ଦୀର କଥା । ଆମର ବର୍ତ୍ତମାନ ସେଠିକି ଯିବା ଦରକାର ନାହିଁ ।

ଟେପିଙ୍ଗ୍ ବିଦ୍ରୋହ ଦମନ ହୋଇଛି କି ନାହିଁ, ଏତିକିବେଳେ ମଞ୍ଚୁମାନଙ୍କ ବିରୁଦ୍ଧରେ ଆଉ ଏକ ବିଦ୍ରୋହ ଆରମ୍ଭ ହେଲା । ଏହା ଚୀନ ଦେଶରେ ହେଲା ନାହିଁ, ସୁଦୂର ପଶ୍ଚିମରେ ଏସିଆର କେନ୍ଦ୍ର ସ୍ଥାନ ତୁର୍କିସ୍ଥାନରେ ହେଲା । ଏଠି ବେଶି ସଂଖ୍ୟାରେ ମୁସଲମାନ ବାସ କରନ୍ତି; ମୁସଲମାନ ଜାତି ତାଙ୍କ ନେତା ୟାକୁବ୍ ବେଗ୍‌ଙ୍କ ନେତୃତ୍ୱରେ ୧୮୬୩ରେ ଉଠିଲେ ଏବଂ ଚୀନ କର୍ମଚାରୀଙ୍କୁ ବାହାର କରିଦେଲେ । ଏହି ସ୍ଥାନୀୟ ବିଦ୍ରୋହ ବିଷୟରେ ଦୁଇଟି କାରଣ ଆମର ଜାଣିବାର କଥା । ରୁଷ ଏହି ସୁବିଧା ଦେଖି ଚୀନ ଅଞ୍ଚଳ ଦଖଲ କରିବାକୁ ଚେଷ୍ଟା କଲା । ଯେତେବେଳେ ଚୀନ ବିପଦରେ ପଡ଼ିଥାଏ, ସେତେବେଳେ କୌଶଳ କରି—ଏପରି କରିବା ଅବଶ୍ୟ ଗୋଟାଏ ବେଶ୍ ଇଉରୋପୀୟ ବୁଦ୍ଧିର ଖେଳ ହୋଇ ଯାଇଥିଲା; କିନ୍ତୁ ଆଶ୍ଚର୍ଯ୍ୟ କଥା, ଚୀନ ସମ୍ମତ ହେବାକୁ ଅସ୍ୱୀକାର କଲା ଏବଂ ଶେଷରେ ରୁଷକୁ ବାହାର କରିଦେଲା । ମଧ୍ୟ-ଏସିଆର ଚୀନ ସେନାପତି ସୋ ସୁଙ୍ଗ୍ ଟାଙ୍ଗ୍‌ଙ୍କ ୟାକୁବ୍ ବେଗ୍‌ଙ୍କ ବିରୁଦ୍ଧରେ ଏକ ଅସାଧାରଣ ଅଭିଯାନ ଯୋଗୁଁ ଏହା ହୋଇପାରିଲା । ଏହି ସେନାପତି ଅତି ସ୍ୱଚ୍ଛନ୍ଦଭାବରେ କଥାଟାକୁ ନେଲେ । ସେ ଧୀରେ ଧୀରେ ଅଗ୍ରସର ହେଲେ । ବିଦ୍ରୋହୀମାନଙ୍କ ନିକଟରେ ପହଞ୍ଚିଲା ବେଳକୁ ବର୍ଷ ବର୍ଷ ବିତିଗଲା । ପ୍ରକୃତରେ ଗଛ ଲଗାଇ ନିଜର ବ୍ୟବହାର ପାଇଁ ଫଳ ପାଚିଲେ ଖାଦ୍ୟଶସ୍ୟ ନେବା ନିମନ୍ତେ ଦୀର୍ଘକାଳ ପର୍ଯ୍ୟନ୍ତ ସେ ନିଜର ସୈନ୍ୟଙ୍କୁ ଦୁଇଥର ବାଟରେ ଅଟକାଇ ଥିଲେ । ସୈନ୍ୟଙ୍କୁ ଖାଦ୍ୟ ଯୋଗାଇବା ସବୁଦା ଏକ କଷ୍ଟକର କାମ ଏବଂ ଗୋବି ମରୁଭୂମି ପାର ହେଲା ବେଳକୁ ଏହା ଆହୁରି କଠିନତର ହୋଇଥିବ । ତେଣୁ ସେନାପତି ସୋ ଏହାର ଏକ ନୂତନ ପ୍ରକାରେ ସମାଧାନ କଲେ । ସେ ତାପରେ ୟାକୁବ୍ ବେଗ୍‌ଙ୍କୁ ପରାସ୍ତ କଲେ ଏବଂ ବିଦ୍ରୋହ ଶେଷ କରିଦେଲେ । ସାମରିକ ଦୃଷ୍ଟିରୁ ତାଙ୍କର କାସଗର, ତୁର୍ଫାନ ଓ ୟାରକନ୍ଦ ପ୍ରଭୃତିର ଅଭିଯାନ ଏକ ଆଶ୍ଚର୍ଯ୍ୟଜନକ ବ୍ୟାପାର ବୋଲି କୁହାଯାଏ ।

ମଧ୍ୟ ଏସିଆରେ ରୁଷ ସହ ସନ୍ତୋଷଜନକ ଭାବରେ ବ୍ୟବସ୍ଥା କରି ସାରିଲା ପରେ ଚୀନର ସୁବିସ୍ତୃତ ଅଥଚ ମୂଳତଃ ବିଭକ୍ତ ସାମ୍ରାଜ୍ୟର ଆଉ ଏକ ଅଞ୍ଚଳରେ ଚୀନ ସରକାର ପୁଣି ଗୋଳମାଳରେ ପଡ଼ିଲା । ଚୀନର ଅଧୀନସ୍ଥ ଦେଶ ଆନାମରେ ଏହା ହେଲା । ଫରାସୀମାନଙ୍କର ଏଥିରେ ହାତ ଥିଲା ଏବଂ ଚୀନ ଓ ଫ୍ରାନ୍ସ ଭିତରେ ଲଢ଼ାଇ ଚାଲିଲା । ପୁଣି ଥରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଯେ ଚୀନ ଭଲଭାବରେ ଏଥିରୁ ଉତୁରିଲା ଏବଂ ଫ୍ରାନ୍ସଦ୍ୱାରା ଦବିଯାଇ ନ ଥିଲା । ୧୮୮୫ରେ ଗୋଟାଏ ସନ୍ତୋଷଜନକ ସନ୍ଧି ହେଲା ।

ଚୀନର ଏହି ନୂତନ ଶକ୍ତିର ସୂଚନା ଦେଖି ସାମ୍ରାଜ୍ୟବାଦୀ ଶକ୍ତିମାନେ ଯଥେଷ୍ଟରୂପେ ପ୍ରଭାବିତ ହେଲେ । ମନେହେଲା ଯେପରି ୧୮୬୦ ପରେ ଯେଉଁ ଦୁର୍ବଳତା ତାର ଥିଲା, ତାହା ସେ ପୂରଣ କରିଛି । ସଂସ୍କାର କଥା ଚାଲିଲା ଏବଂ ଅନେକ ଲୋକ ଭାବିଲେ ଯେ, ଚୀନ ପୁଣି ଶକ୍ତିଶାଳୀ ହେଲା । ଏହି କାରଣରୁ ଇଂଲଣ୍ଡ ୧୮୮୬ରେ ବର୍ମା ମିଶାଇ ନେଲା ପରେ ପ୍ରତି ଦଶ ବର୍ଷରେ ଚୀନକୁ କର ଦେବାକୁ ପ୍ରତିଶ୍ରୁତି ଦେଇଥିଲା ।

କିନ୍ତୁ ଚୀନ ତଥାପି ତାର ଶତ୍ରୁମାନଙ୍କୁ ତଡ଼ିପାରି ନ ଥିଲା । ଏବେ ସୁଦ୍ଧା ତା ଲାଗି ଯଥେଷ୍ଟ ଅପମାନ, ଦୁଃଖ ଦୁର୍ଦ୍ଦଶା ସହିତ ହୋଇଥିଲା । ତାର ଦୋଷ କେବଳ ସୈନ୍ୟ ବା ନୌବାହିନୀର ଦୁର୍ବଳତା ହେତୁ ନୁହେଁ, ଆହୁରି ଗଭୀରତମ ସ୍ଥାନରେ ଏହା ଥିଲା । ଏହାର ସମଗ୍ର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ଭାଙ୍ଗି ପଡ଼ୁଥିଲା । ମୁଁ ତତେ ଆଗରୁ ଯାହା କହିଛି, ୧୯ଶ ଶତାବ୍ଦୀରେ ଏହା ଖୁବ୍ ଖରାପ ଅବସ୍ଥାରେ ଥିଲା—ସେତେବେଳେ ମଞ୍ଚୁମାନଙ୍କ ବିରୁଦ୍ଧରେ ଅନେକ ଗୁପ୍ତ ସମିତି ସ୍ଥାପିତ ହୋଇଥିଲା । ବିଦେଶୀ ଏବଂ ଶିଳ୍ପୋନ୍ନତ ଦେଶମାନଙ୍କ ସହ ସମ୍ପର୍କ ଆସିବା ଫଳରେ ଅବସ୍ଥା ଖରାପ ହେଲା । ୧୮୬୦ ପରେ ଚୀନରେ ଯେଉଁ ବଳ ସଞ୍ଚାର ହେବା ଭାବ ଦେଖାଗଲା, ସେଥିରେ ବାସ୍ତବତା ନ ଥିଲା । କେତେକ ଶକ୍ତିଶାଳୀ କର୍ମଚାରୀ ବିଶେଷତଃ ଲି-ହୁଙ୍ଗ୍-ଚାଙ୍ଗଙ୍କଦ୍ୱାରା ଏଠିସେଠି ସ୍ଥାନୀୟ ସଂସ୍କାର କିଛି ହୋଇଥିଲା; କିନ୍ତୁ ଏହା ସମସ୍ୟାର ମୂଳ କମ୍ପା ବୀଜକୁ ଯେଉଁ ରୋଗ ଦୁର୍ବଳ କରିଥିଲା, ତାହା ଆରୋଗ୍ୟ କରିପାରି ନ ଥିଲା ।

ଏହି କେତେ ବର୍ଷ ଚୀନର ମୁଖିଆରୂପେ ଜଣେ ବଳବାନ୍ ଶାସକ ଥିବାରୁ ବାହାରକୁ ଏପରି ଶକ୍ତିର ପରିଚୟ ମିଳୁଥିଲା । ଏ ହେଉଛନ୍ତି ଜଣେ ଅଲୌକିକ ନାରୀ ସାମାଜ୍ଞୀ ଡାଓଜେର ଜୂ-ସି । ତାଙ୍କର ଶ୍ରେଷ୍ଠ ଶିଶୁ ସନ୍ତାନ ନାମକୁମାତ୍ର ସମ୍ରାଟ ଥିବାରୁ ୨୬ ବର୍ଷ ବୟସରେ ସ୍ୱାଙ୍କ ହାତକୁ କ୍ଷମତା ଆସିଲା । ସେ ୪୬ ବର୍ଷ ପର୍ଯ୍ୟନ୍ତ ତେଜୋସ୍ୱୀନ ଭାବରେ ଚୀନ ଶାସନ କଲେ । ସେ ଖୁବ୍ ଦକ୍ଷ କର୍ମଚାରୀ ନିଯୁକ୍ତ କଲେ ଏବଂ ନିଜର ଶକ୍ତି ବଳରେ ସେମାନଙ୍କୁ ମୁଗ୍ଧ କରିଥିଲେ । ଅନେକାଂଶରେ ଏହି କାରଣରୁ ଏବଂ ତାଙ୍କ ଯୋଗୁଁ ପୂର୍ବ ବର୍ଷମାନଙ୍କ ଅପେକ୍ଷା ଚୀନ ଅଧିକ ସାହସିକ ଶକ୍ତିର ପରିଚୟ ଦେଲା ।

କିନ୍ତୁ ଇତ୍ୟବସରେ ସଙ୍କୀର୍ଣ୍ଣ ସାଗର ସେପାରିରେ ଜାପାନ ଅଦ୍ଭୁତ କାର୍ଯ୍ୟସବୁ କରୁଥିଲା ଏବଂ ପରିବର୍ତ୍ତନମାନ କରୁଥିଲା, ତେଣୁ ଆମେ ଏବେ ଜାପାନକୁ ଯିବା ।

## ୧୧୭ : ଜାପାନ ଆଗକୁ ଧାଇଁଲା

ଡିସେମ୍ବର ୨୭, ୧୯୩୨

ମୁଁ ଅନେକ ଥର ତଳେ ଜାପାନ ବିଷୟରେ ଲେଖିଥିଲି । ପ୍ରାୟ ୫ ମାସ ପୂର୍ବେ ଏହି ଦେଶ କିପରି ଅଦ୍ଭୁତ ଭାବରେ ୧୭ଶ ଶତାବ୍ଦୀରେ ନିଜକୁ ଘରଭିତରେ ବନ୍ଦ କରି ରଖିଥିଲା, ତାହା କହିଥିଲି । ୧୬୪୧ରୁ ପ୍ରାୟ ୨୦୦ ବର୍ଷରୁ ଅଧିକ କାଳ ପର୍ଯ୍ୟନ୍ତ ଜାପାନ ଲୋକେ ପୃଥିବୀର ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ହୋଇ ରହିଲେ । ଏହି ୨୦୦ ବର୍ଷରେ ଇଉରୋପ, ଏସିଆ, ଆମେରିକା ଏବଂ ଏପରି କି ଆଫ୍ରିକାରେ ବଡ଼ ବଡ଼ ପରିବର୍ତ୍ତନମାନ ହୋଇଛି । ଏହି ସମୟରେ ଘଟିଥିବା କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣା ବିଷୟ ମୁଁ ତତେ କହିଛି । କିନ୍ତୁ ଏହି ଅବରୁଦ୍ଧ ଦେଶରେ କୌଣସି ସମ୍ବାଦ ପହଞ୍ଚୁନଥିଲା; ବାହାରର କୌଣସି ବାୟୁ ଆସି ଜାପାନର ପୁରାତନ ଜଗତର ସାମନ୍ତବାଦୀ ବାୟୁକୁ ଦୂଷିତ କରି ନ ଥିଲା । ପ୍ରାୟ ମନେହେଲା; ସତେ କି କାଳର ଗତି ଓ ପରିବର୍ତ୍ତନ ବନ୍ଦ ହୋଇଗଲାଣି ଏବଂ ୧୭ଶ ଶତାବ୍ଦୀର ମଧ୍ୟଭାଗ ଅବସ୍ଥା ଧରି ରଖିଛି, କାରଣ କାଳ ବିତିଗଲେ ସୁଦ୍ଧା ଏକାଭଳି ଚିତ୍ର ଆଖି ଆଗରେ ଥାଏ । ଜାପାନ ସେହିପରି ସାମ୍ରାଜ୍ୟବାଦୀ ଥାଏ—ଜମିଦାର ଶ୍ରେଣୀ କ୍ଷମତାରେ ଥାନ୍ତି । ସମ୍ରାଟଙ୍କର ସାମାନ୍ୟ କ୍ଷମତା ଥାଏ; ଗୋଟିଏ ବଡ଼ ସମ୍ପ୍ରଦାୟର ନେତା ଶୋଗୁନ୍ ହିଁ ପ୍ରକୃତ ଶାସକ ହୋଇଥାଏ । ଭାରତର କ୍ଷତ୍ରିୟମାନଙ୍କ ପରି ସମୁରାଇ ନାମକ ଏକ ଯୋଦ୍ଧା ଜାତି ଏଠି ଥାଆନ୍ତି । ସାମନ୍ତ ପ୍ରଭୁ ଓ ସମୁରାଇମାନେ ହିଁ ଶାସକ ଶ୍ରେଣୀ । ଅନେକ ସମୟରେ ବିଭିନ୍ନ ପ୍ରଭୁ ଓ ସମ୍ପ୍ରଦାୟଙ୍କ ଭିତରେ ପରସ୍ପରର ବିବାଦ ଲାଗେ; କିନ୍ତୁ କୃଷକ ଓ ଅନ୍ୟ ସମସ୍ତଙ୍କୁ ଶୋଷଣ କରିବାରେ ଓ ଅତ୍ୟାଚାର କରିବାରେ ସମସ୍ତେ ସହଯୋଗ କରୁଥିଲେ ।

ତଥାପି ଜାପାନରେ ଶାନ୍ତି ଥିଲା । ଦୀର୍ଘକାଳ ଯେଉଁ ଗୃହ ବିବାଦ ଲାଗି ଦେଶକୁ କ୍ଳାନ୍ତ କରି ପକାଇଥିଲା, ତାହାପରେ ଏହି ଶାନ୍ତିକୁ ସେମାନେ ସ୍ୱାଗତ କଲେ । କେତେକ ବଡ଼ ଯୁଦ୍ଧରତ ସାମନ୍ତ ଡିଏମ୍ୟୋନମାନେ ଦବିଗଲେ । ଗୃହବିବାଦର କ୍ଷତକୁ ଧୀରେ ଧୀରେ ଜାପାନ ପୂରଣ କରିବାକୁ ଲାଗିଲା । ଲୋକଙ୍କ ମନ ବେଶି ଶିଳ୍ପ, କଳା, ସାହିତ୍ୟ ଓ ଧର୍ମ ଆଡ଼କୁ ଗଲା । ଖ୍ରୀଷ୍ଟଧର୍ମକୁ ଦବାଇ ଦିଆଯାଇଥିଲା, ବୌଦ୍ଧ ଧର୍ମର ପୁନରୁଦ୍ଧାର ହେଲା ଏବଂ ତାପରେ ଆସିଲା ଶିଣ୍ଟୋ, ଏହା ଜାପାନର ପୂର୍ବପୁରୁଷଙ୍କର ପୂଜା । ସାମାଜିକ ଆଚରଣ ଓ ନୀତିର ଆଦର୍ଶରୂପେ ଚୀନର ମହର୍ଷି କନ୍‌ଫ୍ୟୁସିଅସ୍‌ଙ୍କୁ ଲୋକେ ମାନିଲେ । ସରକାରୀ ସମ୍ପର୍କ ଓ ସାମନ୍ତମାନଙ୍କ ଭିତରେ କଳାର ଉନ୍ନତି ହେଲା । କେତେକ ଭାବରେ ଇଉରୋପର ମଧ୍ୟମ ଯୁଗ ପରି ଅବସ୍ଥା ଥିଲା ।

କିନ୍ତୁ ପରିବର୍ତ୍ତନରୁ ଅଲଗା ରହିବା ସେପରି ସହଜ କଥା ନୁହେଁ ଏବଂ ଯଦିଓ ବାହାର ସମ୍ପର୍କ ବନ୍ଦ ହୋଇଥିଲା, ଜାପାନ ଭିତରେ ପରିବର୍ତ୍ତନ ହେଉଥାଏ—ଅବଶ୍ୟ ଅନ୍ୟ ପ୍ରକାର ଅପେକ୍ଷା ଏଥିରେ ଖୁବ୍ ଧୀରେ ଧୀରେ ହେଉଥାଏ । ଅନ୍ୟ ଦେଶମାନଙ୍କ ପରି ସାମନ୍ତବାଦୀ ବ୍ୟବସ୍ଥା ଅର୍ଥନୈତିକ ପତନ ଆଡ଼କୁ ଗତି କଲା । ଶାନ୍ତି ବଢ଼ିଲା ଏବଂ ରାଜ୍ୟ ଶାସନର ମୁଖିଆ ଥିବାରୁ ଶୋଗୁନ ଏହି ଆଘାତର ଶିକାର ହେଲା । ଶିଣ୍ଟୋ ପୂଜା ବଢ଼ିବାରୁ ଲୋକେ ସମ୍ରାଟଙ୍କୁ ବେଶି ମାନିଲେ । ସେ ସମ୍ରାଟ ସୂର୍ଯ୍ୟଙ୍କର ପ୍ରତ୍ୟକ୍ଷ ବଂଶଧର ବୋଲି ଧରାଯାଇଥିଲା । ଏହିରୂପେ ସେଠାରେ ଥିବା ଅସନ୍ତୋଷ ଭିତରୁ ଏକ ଜାତୀୟତାର ଭାବ ଜାତ ହେଲା ଏବଂ ଏକ ଆର୍ଥିକ ପତନ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଏହି ଭାବଦ୍ୱାରା ପରିବର୍ତ୍ତନ ଏବଂ ପୃଥିବୀ ପାଇଁ ଜାପାନ ଖୋଲା ହେବା ଅନିବାର୍ଯ୍ୟ ହୋଇ ଉଠିଲା ।

ବିଦେଶୀ ଶକ୍ତିମାନେ ଜାପାନର ଦ୍ୱାର ଖୋଲିବା ପାଇଁ ଅନେକ ଉଦ୍ୟମ କରିଥିଲେ, କିନ୍ତୁ ସେମାନେ ସମସ୍ତେ ବିଫଳ ହେଲେ । ୧୯ଶ ଶତାବ୍ଦୀର ମଧ୍ୟଭାଗରେ ଆମେରିକା ଯୁକ୍ତରାଷ୍ଟ୍ର ଏଥିରେ ବିଶେଷ ଭାବରେ ଆଗ୍ରହୀ ହେଲା । ସେମାନେ ସେହି ସମୟରେ ପଶ୍ଚିମରେ କାଲିଫୋର୍ଣ୍ଣିଆ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥାନ୍ତି ଏବଂ ସାନଫ୍ରାନସିସ୍କୋ ଏକ ପ୍ରଧାନ ବନ୍ଦର ହୋଇ ଗଢ଼ି ଉଠୁଥାଏ । ଚୀନରେ ଯେଉଁ ନୂତନ ବାଣିଜ୍ୟର ସୁବିଧା ମିଳିଲା, ତାହା ଲାଭଜନକ ଥିଲା, ମାତ୍ର ପ୍ରଶାନ୍ତ ମହାସାଗର ଦେଇ ଯାତ୍ରା ବଡ଼ ଦୀର୍ଘ, ତେଣୁ ଏହି ଦୀର୍ଘ ଯାତ୍ରାପଥରେ ଜାପାନର ଏକ ବନ୍ଦରରେ ପହଞ୍ଚି ଯୋଗାଣ ନେବା ନିମନ୍ତେ ସେମାନେ ଚାହୁଁଥିଲେ । ଏହି କାରଣରୁ ଜାପାନର ଦ୍ୱାର ଉନ୍ମୁକ୍ତ କରିବା ପାଇଁ ଆମେରିକା ବାରମ୍ବାର ଉଦ୍ୟମ କରିଥିଲା ।

୧୮୫୩ରେ ଆମେରିକା ରାଷ୍ଟ୍ରପତିଙ୍କଠାରୁ ଏକ ଚିଠି ନେଇ ଆମେରିକାର ଏକ ଯୁଦ୍ଧ ଜାହାଜଦଳ ଜାପାନ ଆସିଲେ । ଏହି ବାଷ୍ପୀୟ ଜାହାଜ ପ୍ରଥମେ ଜାପାନ ଲୋକେ ଦେଖିଲେ । ବର୍ଷକ ପରେ ଶୋଗୁନ ଦୁଇଟି ବନ୍ଦର ଖୋଲି ଦେବା ଲାଗି ସମ୍ମତ ହେଲା । ବ୍ରିଟିଶ, ରୁଷ ଓ ହଲାଣ୍ଡବାସୀମାନେ ଏ ଖବର ପାଇ ଅଳ୍ପ କେତେ ଦିନ ପରେ ଆସିଲେ ଏବଂ ଶୋଗୁନ ସହିତ ସେହିପରି ସନ୍ଧି କଲେ, ତେଣୁ ୨୧୩ ବର୍ଷ ପରେ ଜାପାନ ପୁନର୍ବାର ପୃଥିବୀ ପାଇଁ ଖୋଲା ହେଲା ।

କିନ୍ତୁ ଆଗରେ ଗୋଳମାଳ ଦେଖାଗଲା । ବିଦେଶୀ ଶକ୍ତିମାନଙ୍କ ସମ୍ମୁଖରେ ଶୋଗୁନ ନିଜକୁ ସମ୍ରାଟ ବୋଲି ଦେଖାଇ ହୋଇଥିଲା । ସେ ଆଉ ଲୋକପ୍ରିୟ ନ ଥିଲା ଏବଂ ତା ବିରୁଦ୍ଧରେ ଓ ତାର ବୈଦେଶିକ ସନ୍ଧି ବିରୁଦ୍ଧରେ ଗୋଟାଏ ବଡ଼ ଆନ୍ଦୋଳନ ଉଠିଲା । କେତେକ ବିଦେଶୀ ମଧ୍ୟ ବଧ ହେଲେ ଏବଂ ଏହା ଫଳରେ ବିଦେଶୀମାନେ ଏକ ନୌଆକ୍ରମଣ କଲେ । ଅବସ୍ଥା ଅଧିକରୁ ଅଧିକ ଅସୁବିଧାଜନକ ହେଲା ଏବଂ ଶେଷରେ ୧୮୬୭ରେ ଶୋଗୁନ୍‌କୁ ତାର କାମରୁ ଇସ୍ତଫା ଦେବା ନିମନ୍ତେ କୁହାହେଲା । ଏହିରୂପେ

ତୋର ମନେଅଛି କି ନାହିଁ . ୧୬୦୩ରେ ଆୟେୟାସୁଠାରୁ ଆରମ୍ଭ ହୋଇଥିବା ତୋକାଗାଓ୍ୱା ଶୋଗୁନେଟ୍ ଶେଷ ପାଇଲା । କେବଳ ସେତିକି ନୁହେଁ, ପ୍ରାୟ ୭୦୦ ବର୍ଷ ପର୍ଯ୍ୟନ୍ତ ଯେଉଁ ଶୋଗୁନେଟ୍ ପ୍ରଥା ଚାଲି ଆସିଥିଲା, ତାହାର ବି ଅନ୍ତ ହେଲା ।

ନୂତନ ସମ୍ରାଟ ବର୍ତ୍ତମାନ ନିଜ ଅବସ୍ଥା ବୁଝିପାରିଲେ । ସେ ୧୪ ବର୍ଷ ବୟସ୍କ ବାଳକ ସମ୍ରାଟ ମୁତ୍ସୁହିତୋ ନାମରେ ସିଂହାସନ ଆରୋହଣ କରିଥାଏ । ୧୮୬୭ ରୁ ୧୯୧୨ ପର୍ଯ୍ୟନ୍ତ ୪୫ ପର୍ଯ୍ୟନ୍ତ ସେ ରାଜୁତି କଲା ଏବଂ ଏହି ସମୟକୁ ମେଜି (କମ୍ପା ଶିକ୍ଷିତ ଶାସନ) ଯୁଗ ବୋଲି କହନ୍ତି । ତାଙ୍କ ରାଜୁତିବେଳେ ଜାପାନ ଆଗକୁ ମାଡ଼ି ଚାଲିଲା ଏବଂ ପାଶ୍ଚାତ୍ୟ ଦେଶମାନଙ୍କ ଅନୁକରଣ କରି ଅନେକ ବିଷୟରେ ସେମାନଙ୍କର ସମାନସ୍କନ୍ଧ ହୋଇଗଲା । ଏକବିଂଶକାଳ ଭିତରେ ଏହି ସମ୍ରାଟ ପରିବର୍ତ୍ତନ ଅତି ଅଲୌକିକ ଓ ଇତିହାସରେ ଏହାର ତୁଳନା ନାହିଁ । ଜାପାନ ଏକ ବୃହତ୍ ଶିଳ୍ପୋନ୍ନତ ଦେଶ ହୋଇଗଲା ଏବଂ ପାଶ୍ଚାତ୍ୟ ଦେଶମାନଙ୍କ ପରି ଏକ ସମ୍ରାଜ୍ୟବାଦୀ ଓ ଲୁଣ୍ଠନକାରୀ ଦେଶ ହୋଇଉଠିଲା । ପ୍ରଗତିର ସମସ୍ତ ବାହ୍ୟିକ ସଙ୍କେତ ତାଠାରେ ଥିଲା । ଶିଳ୍ପ ଦିଗରେ ସେ ତାର ଗୁରୁ ବିଦେଶୀମାନଙ୍କଠାରୁ ଆହୁରି ଆଗକୁ ଚାଲିଗଲା । ତାର ଲୋକସଂଖ୍ୟା ଶୀଘ୍ର ବୃଦ୍ଧି ହେଲା । ତାହାର ଜାହାଜସବୁ ପୃଥିବୀ ସାରା ବୁଲିଲା । ସେ ଏକ ପ୍ରଧାନ ଶକ୍ତି ହୋଇ ଉଠିଲା ଏବଂ ତା କଥା ଅନ୍ତର୍ଜାତିକ ବ୍ୟାପାରରେ ସମ୍ମାନର ସହିତ ଶୁଣିଲେ । ତଥାପି ଏହିସବୁ ବିରାଟ ପରିବର୍ତ୍ତନ ସେ ଦେଶର ଅନ୍ତରରେ ଗଭୀରତମ ପ୍ରଦେଶକୁ ସ୍ପର୍ଶ କରି ନ ଥିଲା । ଏହିସବୁ ପରିବର୍ତ୍ତନକୁ ଉପରେଠାଉରିଆ କହିବା ଠିକ୍ ହେବ ନାହିଁ । କାରଣ ଏହା ତାହାଠାରୁ ବହୁ ଅଧିକ ଥିଲା, କିନ୍ତୁ ଶାସକମାନଙ୍କର ଦୃଷ୍ଟିକୋଣ ତଥାପି ସାଆନ୍ତିଆ ଢଙ୍ଗରେ ଥିଲା ଏବଂ ସେମାନେ ଏହି ମୌଳିକ ସଂସ୍କାର ସାମନ୍ତବାଦୀ ଧାରାରେ ମିଶାଇବାକୁ ଚେଷ୍ଟା କଲେ । ସେମାନେ ଅନେକ ପରିମାଣରେ କୃତକାର୍ଯ୍ୟ ହେଲା ପରି ବୋଧ ହେଲା ।

ସାମନ୍ତବାଦର କେତେକ ଦୂରଦୃଷ୍ଟି ସମ୍ପନ୍ନ ଲୋକ ହିଁ ଏହି ବିରାଟ ପରିବର୍ତ୍ତନ ପାଇଁ ଦାୟୀ—ସେମାନଙ୍କୁ "ବୃଦ୍ଧ ରାଜନୀତିଜ୍ଞ" ବୋଲି କୁହାଯାଏ । ଯେତେବେଳେ ଜାପାନରେ ବିଦେଶୀ ବିରୋଧ ଦଙ୍ଗାବେଳେ ବିଦେଶୀ ଯୁଦ୍ଧ ଜାହାଜରୁ ବୋମା ବର୍ଷଣ ହେଲା, ସେତେବେଳେ ଜାପାନୀମାନେ ନିଜର ଅସହାୟ ଅବସ୍ଥା ବୁଝିପାରିଲେ ଏବଂ ଅତ୍ୟନ୍ତ ଅପମାନ ବୋଧ କଲେ । ନିଜର ଭାଗ୍ୟକୁ ଅଭିଶାପ ଦେବା ଓ ବାଳ ଛିଣ୍ଡାଇବା ପରିବର୍ତ୍ତେ ସେମାନେ ଏହି ପରାଜୟ ଅପମାନରୁ ଏକ ଉପଦେଶ ଶିକ୍ଷା କରିବା ପାଇଁ ସ୍ଥିର କଲେ । ବୃଦ୍ଧ ରାଜନୀତିଜ୍ଞମାନେ ସଂସ୍କାର କାର୍ଯ୍ୟପନ୍ଥା ଧାର୍ଯ୍ୟ କଲେ ଏବଂ ଏମାନେ ତାହା ପାଳିଲେ ।

ପୁରୁଣା ସାଆନ୍ତିଆ ରୀତିନୀତି ଓ ପ୍ରଥା ଲୋପ ହେଲା । ସମ୍ରାଟଙ୍କ ରାଜଧାନୀ କୋୟୋଟୋରୁ ୟେଡ଼ୋକୁ ନିଆହେଲା । ଏହାକୁ ଟୋକିଓ ନାମ ଦିଆଯାଇଛି । ଏକ ନୂତନ ଶାସନ ବିଧାନ ଘୋଷଣା କରାଗଲା—ସେଥିରେ ଦୁଇଟି ପାର୍ଲିଆମେଣ୍ଟ ରହିଲା—ନିମ୍ନ ପାର୍ଲିଆମେଣ୍ଟ ନିର୍ବାଚିତ ହେବ ଏବଂ ଉପର ଘର ମନୋନୀତ ହେବ । ଶିକ୍ଷା, ଆଇନ,

ଶିଳ୍ପ ଏବଂ ପ୍ରାୟ ପ୍ରତ୍ୟେକ ଜିନିଷରେ ପରିବର୍ତ୍ତନ ହେଲା । କାରଖାନାମାନ ଗଢ଼ି ଉଠିଲା ଏବଂ ଆଧୁନିକ ସୈନ୍ୟ ଓ ନୌବାହିନୀ ଗଢ଼ା ହେଲା । ବିଦେଶୀ ଦେଶମାନଙ୍କରୁ ବିଶେଷଜ୍ଞମାନଙ୍କୁ ଅଣା ହେଲା ଏବଂ ଜାପାନୀ ଛାତ୍ରମାନଙ୍କୁ ଇଉରୋପ ଓ ଆମେରିକାକୁ ପଠାଗଲା – ଭାରତୀୟମାନେ ପୂର୍ବେ ଯେପରି ହୋଇଛନ୍ତି, ସେପରି ବାରିଷ୍ଟର ଆଦି ହେବା ପାଇଁ ନୁହେଁ ବୈଜ୍ଞାନିକ ଓ ଶିଳ୍ପ ଶିକ୍ଷାରେ ଦକ୍ଷ ହେବା ନିମନ୍ତେ ।

ସମ୍ରାଟ ନାମରେ ବୃଦ୍ଧ ରାଜନୀତିଜ୍ଞମାନେ ଏସବୁ କାମ କଲେ । ସମ୍ରାଟ ନୂତନ ପାର୍ଲିମେଣ୍ଟ ଓ ଅନ୍ୟ ସବୁ ସତ୍ତ୍ୱେ ଆଇନ ଅନୁସାରେ ଜାପାନୀ ସାମ୍ରାଜ୍ୟର ଏକଚ୍ଛତ୍ର ଶାସକ ହୋଇ ରହିଲେ । ସେମାନେ ସଂସ୍କାର ଦିଗରେ ଅଗ୍ରସର ହେବା ସଙ୍ଗେ ସଙ୍ଗେ ସମ୍ରାଟ-ପୂଜା-ଭାବ ମଧ୍ୟ ବିସ୍ତାର କଲେ । ଏହା ଏକ ଅଦ୍ଭୁତ ସମ୍ମିଶ୍ରଣ, ଏକ ପକ୍ଷରେ କାରଖାନା, ଆଧୁନିକ ଶିଳ୍ପ ଓ ପାର୍ଲିମେଣ୍ଟାରୀ ଶାସନର ସମସ୍ତ ସଙ୍କେତ ଏବଂ ଅନ୍ୟ ଦିଗରେ ଐଶ୍ୱରିକ ସମ୍ରାଟର ମଧ୍ୟକାଳୀନ ଢଙ୍ଗର ପୂଜା । ଅଳ୍ପ ଦିନ ପାଇଁ ସୁଦ୍ଧା ଏହି ଦୁଇଟି ଏକ ସାଙ୍ଗରେ କିପରି ଚାଲିଲା, ତାହା ବୁଝିବା କଷ୍ଟକର, ତଥାପି ଏ ଦୁହେଁ ଏକାଠି ଅଗ୍ରସର ହେଲେ ଏବଂ ଆଜି ସୁଦ୍ଧା ଅଲଗା ହୋଇ ନାହିଁ । ବୃଦ୍ଧ ରାଜନୀତିଜ୍ଞମାନେ ସମ୍ରାଟଙ୍କ ପ୍ରତି ଏହି ଭକ୍ତିଭାବର ଦୁଇ ପ୍ରକାର ଉପଯୋଗ କଲେ । ସଂସ୍କାରକୁ ସେମାନେ ରକ୍ଷଣଶୀଳ ଓ ସାମନ୍ତବାଦୀ ଶ୍ରେଣୀଙ୍କ ଉପରେ ବଳପୂର୍ବକ ପ୍ରଚଳନ କଲେ, ଏମାନେ ଏହାର ପ୍ରତିରୋଧ କରିଥାନ୍ତେ, କିନ୍ତୁ ସମ୍ରାଟ ନାମର ମର୍ଯ୍ୟାଦା ଆଗରେ ଦବି ଗଲେ ଏବଂ ଯେଉଁ ଅଧିକ ପ୍ରଗତିଶୀଳ ଲୋକ ଅଧିକ ବେଗରେ ଯିବାକୁ ଚାହୁଁଥିଲେ, ତାଙ୍କ ଗତିରୋଧ କଲେ ଏବଂ ସମସ୍ତ ପ୍ରକାର ସାମନ୍ତବାଦ ଦୂର କରିଦେଲେ ।

୧୯ଶ ଶତାବ୍ଦୀର ଅଧା ଶେଷ ହେଲାବେଳକୁ ଚୀନ ଓ ଜାପାନ ଭିତରେ ପାର୍ଥକ୍ୟ ଅଲୌକିକ । ଜାପାନ ଅତି ଦ୍ରୁତବେଗରେ ପାଶ୍ଚାତ୍ୟ ରୀତିରେ ଗଢ଼ି ଉଠିଲା; ଆମେ ଦେଖିଛେ ଏବଂ ପରେ ଆହୁରି ଦେଖିବା ଚୀନ ଅତି ଅସାଧାରଣ ଅସୁବିଧାରେ ଜଡ଼ିତ ହୋଇ ପଡ଼ିଲା । ଏହା କାହିଁକି ହେଲା ? ଚୀନର ବିଶାଳତା, ତାର ପ୍ରବଳ ଲୋକସଂଖ୍ୟା ଓ ଆକୃତି ହେତୁ ପରିବର୍ତ୍ତନ କଷ୍ଟକର ହେଲା । ଭାରତ ମଧ୍ୟ ଏହି ଜଣାଯାଉଥିବା ବଳୀୟାନ ଶକ୍ତି—ବିଶାଳ ଆକୃତି ଓ ଲୋକସଂଖ୍ୟା ହେତୁ ଦୁଃଖ ଭୋଗୁଛି । ଚୀନ ସରକାର ମଧ୍ୟ ଯଥେଷ୍ଟ ରୂପେ କେନ୍ଦ୍ରୀଭୂତ ହୋଇପାରି ନ ଥିଲା; ଅର୍ଥାତ୍ ଦେଶର ପ୍ରତ୍ୟେକ ଅଞ୍ଚଳରେ ବହୁ ପରିମାଣରେ ସ୍ୱାୟତ୍ତ ଶାସନ ଥିଲା; ତେଣୁ ଜାପାନ ପରି କେନ୍ଦ୍ର ସରକାର ପକ୍ଷରେ ହସ୍ତକ୍ଷେପ କରି ବଡ଼ ବଡ଼ ପରିବର୍ତ୍ତନମାନ କରିବା ସହଜ ନ ଥିଲା । ତାପରେ ମଧ୍ୟ ହଜାର ହଜାର ବର୍ଷ ଧରି ଚୀନର ବିରାଟ ସଭ୍ୟତା ଗଢ଼ି ଉଠିଥିଲା ଏବଂ ତାର ଜୀବନ ସହିତ ଅତି ନିବିଡ଼ ଭାବରେ ଜଡ଼ିତ ହୋଇ ଯାଇଥିଲା । ଏହା ସହଜରେ ଦୂର କରି ହେବାର ନୁହେଁ । ପୁଣି ଆମେ ଚୀନକୁ ଭାରତ ସହିତ ତୁଳନା କରିପାରୁ । ଅନ୍ୟ ପାଖରେ ଜାପାନ ଚୀନ ସଭ୍ୟତାରୁ ଶିଖିଲା ଏବଂ ଅତି ଶୀଘ୍ର ତାହା ବଦଳାଇ ଦେଇ ପାରିଲା । ବାରମ୍ବାର

ଇଉରୋପୀୟ ଶକ୍ତିମାନଙ୍କର ହସ୍ତକ୍ଷେପ ମଧ୍ୟ ଚୀନ ପକ୍ଷରେ ଆଉ ଏକ ଅନ୍ତରାୟ । ଚୀନ ଏକ ବିଶାଳ ମହାଦେଶ । ଜାପାନ ଦ୍ୱୀପ ପରି ସେ ନିଜକୁ ସମ୍ପର୍କ ଛିଡ଼ାଇ ରଖିପାରନ୍ତା ନାହିଁ । ଉତ୍ତର ଓ ଉତ୍ତର-ପଶ୍ଚିମରେ ରୁଷ ତା ସୀମା ସ୍ପର୍ଶ କରୁଛି; ଦକ୍ଷିଣ-ପଶ୍ଚିମରେ ବ୍ରିଟିଶ ସାମ୍ରାଜ୍ୟ ରହିଛି; ଦକ୍ଷିଣରେ ଫ୍ରାନ୍‌ସ ମୁଣ୍ଡ ଟେକୁଛି, ଏହି ଇଉରୋପୀୟ ଶକ୍ତିଗୁଡ଼ିକ ଚୀନଠାରୁ ବଡ଼ ବଡ଼ ସୁବିଧା ସବୁକୁ କୌଣସିମତେ ମାରନେଲେ ଏବଂ ଖୁବ୍ ବାଣିଜ୍ୟ ସୁବିଧା କରି ପକାଇଲେ । ଏହିସବୁ ସ୍ୱାର୍ଥଯୋଗୁଁ ହସ୍ତକ୍ଷେପ କରିବା ନିମନ୍ତେ ସେମାନଙ୍କୁ ଯଥେଷ୍ଟ ପେଖନା ମିଳିଗଲା ।

ତେଣୁ ଚୀନ ଯେତେବେଳେ ଅନ୍ଧ ଭାବରେ ସଂଗ୍ରାମ କରୁଥିଲା ଏବଂ ସଫଳ ନ ହେଲେ ସୁଦ୍ଧା ନୂତନ ଅବସ୍ଥା ସହିତ ନିଜକୁ ଖାପ ଖୁଆଇ ନେବାକୁ ଚେଷ୍ଟା କରୁଥିଲା, ସେତେବେଳେ ଜାପାନ ଆଗକୁ ମାଡ଼ି ଚାଲିଲା । ତଥାପି ଆଉ ଏକ ଅଦ୍ଭୁତ ଘଟଣା ଲକ୍ଷ୍ୟ କରିବା ଯୋଗ୍ୟ । ଜାପାନ ପାଶ୍ଚାତ୍ୟ କଳକାରଖାନା ଓ ଶିଳ୍ପ ପ୍ରଚଳନ କଲା ଏବଂ ଆଧୁନିକ ସୈନ୍ୟ ଓ ନୌବାହିନୀ ସହ ଏକ ଉନ୍ନତ ଔଦ୍ୟୋଗିକ ଶକ୍ତିର ଆବରଣ ପିନ୍ଧିଲା; କିନ୍ତୁ ସେ ଏତେ ଶୀଘ୍ର ଇଉରୋପର ନୂତନ ଚିନ୍ତା ଓ ଭାବଧାରା ଗ୍ରହଣ କଲା ନାହିଁ । ସେ ସେଠାକାର ବ୍ୟକ୍ତିବିଶେଷ ଓ ସାମାଜିକ ସ୍ୱାଧୀନତାର ଧାରଣା ଜୀବନ ଓ ସମାଜ ପ୍ରତି ବୈଜ୍ଞାନିକ ଦୃଷ୍ଟିକୋଣ ଗ୍ରହଣ କଲା ନାହିଁ । ହୃଦୟରେ ତାହା ସାମନ୍ତବାଦୀ ଓ ପ୍ରଭୁତ୍ୱ ବ୍ୟଞ୍ଜକ ହୋଇ ରହିଲା ଏବଂ ପୃଥିବୀର ଅବଶିଷ୍ଟ ଦେଶ ବହୁ କାଳରୁ ଯେଉଁ ସମ୍ରାଟ ପୂଜା ବନ୍ଦ କରି ସାରିଥିଲେ, ତାହା ଅଦ୍ଭୁତ ଭାବରେ କରିବାକୁ ଲାଗିଲା । ଜାପାନୀମାନଙ୍କର ଭାବପ୍ରବଣତା ଓ ଆତ୍ମତ୍ୟାଗ ଏବଂ ଦେଶପ୍ରତି ଘନିଷ୍ଠରୂପେ ଏହି ସମ୍ରାଟଙ୍କ ପ୍ରତି ଥିବା ରାଜଭକ୍ତି ସହିତ ମିଶ୍ରିତ । ଜାତୀୟତା ଏବଂ ଦୈବପ୍ରସୂତ ସମ୍ରାଟର ପୂଜା ଏକାବେଳେ ହେଲା । ଅନ୍ୟ ପକ୍ଷରେ ଚୀନ ବଡ଼ ବଡ଼ କଳକାରଖାନା ଓ ଶିଳ୍ପ ଏତେ ଶୀଘ୍ର ଗ୍ରହଣ କଲା ନାହିଁ; କିନ୍ତୁ ଚୀନାମାନେ ଅଥବା ଅନ୍ତତଃ ଆଧୁନିକ ଚୀନ ପାଶ୍ଚାତ୍ୟ ଚିନ୍ତା, ଭାବଧାରା ଓ ବୈଜ୍ଞାନିକ ଦୃଷ୍ଟିକୋଣରେ ସ୍ୱାଗତ କଲା । ଏଗୁଡ଼ିକରେ ସେମାନଙ୍କ ନିଜ ଚିନ୍ତାଧାରାଠାରୁ ବିଶେଷ ପ୍ରଭେଦ ନ ଥିଲା; ସୁତରାଂ ଆମେ ଦେଖିବା ଯଦିଓ ଆଧୁନିକ ଚୀନ ଅଧିକ ଭାବରେ ପାଶ୍ଚାତ୍ୟ ସଭ୍ୟତାର ଭାବ ଗ୍ରହଣ କଲା, ଜାପାନ ତାକୁ ପଛରେ ପକାଇ ଚାଲିଲା; କାରଣ ତାହା ଏହି ପୋଷାକ ପିନ୍ଧିଲା, ଅଥଚ ତାର ଭାବକୁ ଅବଜ୍ଞା କଲା । ସେ ଏହି ଅସ୍ତ୍ରଶସ୍ତ୍ର ସହିତ ପୋଷାକରେ ଶକ୍ତି ଥିବାରୁ ଇଉରୋପ ଜାପାନକୁ ପ୍ରଶଂସା କଲା ଏବଂ ସେମାନେ ତାକୁ ନିଜର ଭ୍ରାତୃଭାବରେ ବାନ୍ଧିଲେ; କିନ୍ତୁ ଚୀନ ଦୁର୍ବଳ ଥିଲା ଏବଂ ତୋପବନ୍ଧୁକ ଆଦି ତା ପାଖରେ ନ ଥିଲା, ତେଣୁ ଇଉରୋପୀୟମାନେ ତାର ଚିନ୍ତା ଓ ଭାବଧାରା ପ୍ରତି ଖାତିର ନ କରି ତାକୁ ଅପମାନିତ କଲେ, ତାହା ସହିତ ଯୁଦ୍ଧ କଲେ ଓ ଶୋଷଣ କଲେ ।

ଜାପାନ ଖାଲି ଶିଳ୍ପ ମାମଲାରେ ନୁହେଁ, ସାମ୍ରାଜ୍ୟବାଦୀ ଆକ୍ରମଣରେ ମଧ୍ୟ ଇଉରୋପର ଅନୁକରଣ କଲା । ସେ ଇଉରୋପୀୟ ଶକ୍ତିଗୁଡ଼ିକର ଜଣେ ଅତ୍ୟଧିକ ବିଶ୍ୱସ୍ତ ଛାତ୍ର ଥିଲା ।

ଯାହା ଶିଖିଲା, ସେଥିରେ ନିଜର ଆହୁରି ଉନ୍ନତି କଲା । ତାର ପ୍ରକୃତ ଅସୁବିଧା ହେଲା, ନୂତନ ଉଦ୍ୟୋଗ ଧନ୍ଦା ଓ ପୁରାତନ ସାମନ୍ତବାଦ ଭିତରେ ବୈଷମ୍ୟ । ଉଭୟଙ୍କୁ ଏକ ସଙ୍ଗରେ ଚଳାଇବାର ଉଦ୍ୟମ ଫଳରେ ସେ ଆର୍ଥିକ ସମାନତା ରକ୍ଷା କରିପାରିଲା ନାହିଁ । ଟିକସ ଅତ୍ୟଧିକ ଥିଲା ଏବଂ ଲୋକେ ଅସନ୍ତୋଷ ଭାବ ପ୍ରକାଶ କଲେ । ନିଜ ଘରର ଗୋଳମାଳ ଏଡ଼ାଇବା ପାଇଁ ସେ ସେହି ପୁରୁଣା ଉପାୟ ଧରିଲା—ବିଦେଶରେ ଯୁଦ୍ଧ ଓ ସାମ୍ରାଜ୍ୟବାଦକୁ ଆକ୍ରମଣ କରି ଲୋକଙ୍କର ଦୃଷ୍ଟି ତେଣିକି ଟାଣିନେଲା । ଯେପରି ଶିଳ୍ପ ବିପ୍ଳବ ଫଳରେ ଇଂଲଣ୍ଡ ଓ ପରେ ଅନ୍ୟ ପାଶ୍ଚାତ୍ୟ ଇଉରୋପୀୟ ଶକ୍ତିସବୁ ବିଦେଶକୁ ଯାଇ ଦେଶ ଜୟ କରିବା ପାଇଁ ବାଧ୍ୟ ହୋଇଥିଲେ, ସେହିପରି ଏହାର ନୂତନ ଶିଳ୍ପ ଉଦ୍ୟମ ମଧ୍ୟ କଞ୍ଚାମାଲ ଓ ବଜାର ପାଇଁ ଅନ୍ୟ ଦେଶ ପ୍ରତି ଦୃଷ୍ଟି ପକାଇବାକୁ ବାଧ୍ୟ ହେଲା । ଉତ୍ପାଦନ ବଢ଼ିଲା ଏବଂ ଲୋକସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇଲା । ଅଧିକରୁ ଅଧିକ ଖାଦ୍ୟ ଓ କଞ୍ଚାମାଲ ଦରକାର ହେଲା । ସେ ତାହା କେଉଁଠୁ ପାଇବ ? ତାହାର ପାଖ ପଡ଼ୋଶୀ ହେଉଛି ଚୀନ ଓ କୋରିଆ । ଚୀନରେ ବେପାରର ସୁବିଧା ଥିଲା; କିନ୍ତୁ ତାହା ଏକ ବହୁ ଲୋକସଂଖ୍ୟା ବିଶିଷ୍ଟ ଦେଶ । ଯାହାହେଉ, ଚୀନ ସାମ୍ରାଜ୍ୟର ଉତ୍ତର-ପୂର୍ବାଞ୍ଚଳ ମାଞ୍ଚୁରିଆରେ ଉନ୍ନତି ଓ ଉପନିବେଶ ପାଇଁ ଯଥେଷ୍ଟ ଖୋଲା ସ୍ଥାନ ଥିଲା, ତେଣୁ କୋରିଆ ଓ ମାଞ୍ଚୁରିଆ ପ୍ରତି ଜାପାନ କ୍ଷୁଧାତୁର ଭାବରେ ଦୃଷ୍ଟି ପକାଇଲା ।

ଜାପାନ ବି ଦେଖିଲା ଯେ ପାଶ୍ଚାତ୍ୟ ଶକ୍ତିମାନେ ଚୀନରୁ ବହୁତ ସୁବିଧା ଭୋଗ କରୁଛନ୍ତି ଓ ଏପରି କି ସେ ଦେଶ ଦଖଲ କରିବାକୁ ଚେଷ୍ଟା କରୁଛନ୍ତି । ସେ ଏହା ଆଦୌ ପସନ୍ଦ କଲା ନାହିଁ । ଯଦି ଏହିସବୁ ଶକ୍ତି ତା ଦେଶର ଠିକ୍ ଅନ୍ୟ ଦିଗରେ ସୁସ୍ଥାପିତ ହୋଇଯିବେ, ତେବେ ତାର ନିରାପତ୍ତାରେ ବାଧା ପହଞ୍ଚିପାରେ ଏବଂ ଅନ୍ତତଃ ସେହି ମହାଦେଶରେ ତାର ପ୍ରବେଶ ହୋଇପାରିବ ନାହିଁ ।

ବାହାର ଜଗତକୁ ନିଜର ଦ୍ୱାର ଉନ୍ମୁକ୍ତ କରିବାର କୋଡ଼ିଏ ବର୍ଷରୁ କମ୍ ସମୟ ଭିତରେ ଜାପାନ ଚୀନ ପ୍ରତି ଆକ୍ରମଣମୂଳକ ହେବାକୁ ଲାଗିଲା । ସେମାନେ କେତେକ କେଉଟଙ୍କ ଜାହାଜ ଭାଙ୍ଗିଯିବାରୁ ମରିଯାଇଥିଲେ; ସେଥିପାଇଁ ଘୋଟ ବିବାଦ ଲାଗିଲା ଏବଂ ଏହି ଆଳରେ ଜାପାନ ଚୀନଠାରୁ କ୍ଷତିପୂରଣ ଦାବୀ କରିବାର ଗୋଟାଏ ସୁଯୋଗ ପାଇଗଲା । ଚୀନ ପ୍ରଥମେ ମନା କଲା, କିନ୍ତୁ ତା ପରେ ଯୁଦ୍ଧର ଧମକ ଦେବାରୁ ଏବଂ ସେତେବେଳେ ଆନାମଠାରେ ଫରାସୀ ସହିତ ଲଢ଼ୁଥିବାରୁ ତାକୁ ଜାପାନ ଆଗରେ ମୁଣ୍ଡ ନୁଆଁଇବାକୁ ପଡ଼ିଲା । ଏହା ୧୮୭୮ର ଘଟଣା । ଜାପାନ ଏହି ବିଜୟରେ ଅତି ଉତ୍ଫୁଲ୍ଲ ହେଲା ଏବଂ ସଙ୍ଗେ ସଙ୍ଗେ ଆଉ ବିଜୟ ଲାଗି ଖୋଜି ବୁଲିଲା । କୋରିଆ ବେଶ୍ ଲୋଭନୀୟ ମନେହେଲା ଏବଂ ଗୋଟାଏ ସାମାନ୍ୟ କାରଣରେ ତାହା ସହିତ କଜିଆ ଲଗାଇ ତାକୁ ଜାପାନ ଆକ୍ରମଣ କଲା—କେତେ ଟଙ୍କା ଦେବାକୁ ତାକୁ ବାଧ୍ୟ କଲା ଏବଂ ଜାପାନୀ ବେପାର ପାଇଁ କେତେକ ବନ୍ଦର ଉନ୍ମୁକ୍ତ ହେଲା ।

କୋରିଆ ଦୀର୍ଘକାଳ ଧରି ଚୀନର ଅଧୀନ ରାଜ୍ୟ ଥିଲା । ସେ ଚୀନରୁ ସାହାଯ୍ୟ ଚାହିଁଲା; କିନ୍ତୁ ଚୀନ ସାହାଯ୍ୟ କରିବାକୁ ଅକ୍ଷମ ଥିଲା । ଜାପାନର ଅଧିକ ପ୍ରଭାବ ବଢ଼ିଯିବ ବୋଲି ଆଶଙ୍କା କରି ଚୀନ ସରକାର ବର୍ତ୍ତମାନ ପାଇଁ ଆତ୍ମସମର୍ପଣ କରିବା ନିମନ୍ତେ କୋରିଆକୁ ପରାମର୍ଶ ଦେଲା ଏବଂ ଜାପାନକୁ ରୋକିବା ପାଇଁ ପାଶ୍ଚାତ୍ୟ ଦେଶମାନଙ୍କ ସହିତ ସନ୍ଧି କରିବାକୁ ମନା କଲା । ତେଣୁ ୧୮୮୨ରୁ କୋରିଆ ପୃଥିବୀ ଲୋକଙ୍କ ପାଇଁ ଖୋଲା ହେଲା । କିନ୍ତୁ ଜାପାନ ଏତିକରେ ସନ୍ତୁଷ୍ଟ ହେବାର ନୁହେଁ । ଚୀନର ଅସୁବିଧାର ସୁଯୋଗ ନେଇ ସେ ପୁଣି କୋରିଆ ପ୍ରଶ୍ନ ଉଠାଇଲା ଏବଂ କୋରିଆ ଉପରେ ଗୋଟିଏ ମିଳିତ ରକ୍ଷାକବଚ କରିବା ପାଇଁ ଚୀନ ସରକାରକୁ ରାଜି କରାଇଲା; ଅର୍ଥାତ୍ କୋରିଆ, ଚୀନ ଓ ଜାପାନ ଉଭୟଙ୍କର ଅଧୀନ ଦେଶ ହେଲା । ଏହା ସମସ୍ତଙ୍କ ପାଇଁ ଅତ୍ୟନ୍ତ ଅସନ୍ତୋଷଜନକ ବ୍ୟବସ୍ଥା । ଗୋଲମାଲ ହେବାର କଥା । ଜାପାନ ବାସ୍ତବିକ ଗୋଲମାଲ ଚାହୁଁଥିଲା ଏବଂ ୧୮୯୪ରେ ସେ ଚୀନକୁ ଯୁଦ୍ଧ କରିବା ପାଇଁ ବାଧ୍ୟ କଲା ।

୧୮୯୪-୯୫ରେ ଚୀନ ଜାପାନ ଯୁଦ୍ଧ ଏକପ୍ରକାର ଜାପାନ ପକ୍ଷରେ ମାଡ଼ିଯିବା ସଙ୍ଗେ ସମାନ । ତାର ସେନା ଓ ନୌବାହିନୀ ଆଧୁନିକ ଧରଣର; ଚୀନାମାନେ ବର୍ତ୍ତମାନ ପୁରୁଣା ଢଙ୍ଗର ଓ ଅପାରଗ ଥିଲେ । ଜାପାନ ସବୁଠି ଜୟ କଲା ଏବଂ ଚୀନକୁ ସନ୍ଧି କରିବା ନିମନ୍ତେ ବାଧ୍ୟ କଲା । ଏହା ଫଳରେ ପାଶ୍ଚାତ୍ୟ ଶକ୍ତିମାନଙ୍କ ପରି ସେ ସମାନ ଆସନରେ ରହିଲା । କୋରିଆ ସ୍ୱାଧୀନ ବୋଲି ଘୋଷଣା କରାଗଲା; କିନ୍ତୁ ଏହା ଜାପାନୀ କର୍ତ୍ତୃତ୍ୱର ଏକ ଆବରଣ ମାତ୍ର । ଚୀନ ଜାପାନକୁ ମାଞ୍ଚୁରିଆରେ ଲିଆଓଟୁଙ୍ଗ୍ ଅଞ୍ଚଳ, ପୋର୍ଟଆର୍ଥର, ଫର୍ମୋଜା ଓ ଅନ୍ୟାନ୍ୟ କେତେକ ଦ୍ୱୀପ ଦେବାକୁ ବାଧ୍ୟ ହେଲା ।

କ୍ଷୁଦ୍ର ଜାପାନଦ୍ୱାରା ଚୀନର ଭୀଷଣ ପରାଜୟରେ ଜଗତ ଚକିତ ହୋଇଗଲା । ସୁଦୂର ପ୍ରାଚ୍ୟରେ ଏପରି ଏକ ପ୍ରଭାବଶାଳୀ ଶକ୍ତିର ଆବିର୍ଭାବରେ ପାଶ୍ଚାତ୍ୟ ଶକ୍ତିମାନେ ଆନନ୍ଦିତ ହେଲେ ନାହିଁ । ଏପରି କି ଚୀନ-ଜାପାନ ଯୁଦ୍ଧବେଳେ ଜାପାନ ଜୟ କରୁଥିବା ପରି ଜଣାପଡ଼ୁଥିବା ସମୟରେ ଏହି ଶକ୍ତିମାନେ ତାକୁ ସାବଧାନ କରାଇ ଦେଇଥିଲେ ଯେ ଜାପାନ ଚୀନର କୌଣସି ଅଂଶ ମିଶାଇ ନେବାରେ ସେମାନେ କେବେହେଁ ସମ୍ମତି ଦେଇପାରିବେ ନାହିଁ । ଏହା ସତ୍ତ୍ୱେ ସେ ଗୋଟିଏ ପ୍ରଧାନ ବନ୍ଦର ପୋର୍ଟଆର୍ଥର ସହିତ ଲିଆଓଟୁଙ୍ଗ ଅଞ୍ଚଳ ନେଇଗଲା । କିନ୍ତୁ ଏହା ରଖିବାକୁ ତାକୁ ଅନୁମତି ଦିଆଗଲା ନାହିଁ । ତିନୋଟି ବଡ଼ ଶକ୍ତି ରୁଷ, ଜର୍ମାନୀ ଓ ଫ୍ରାନ୍ସ ଏହା ଛାଡ଼ି ଦେବାପାଇଁ ଜୋର ଦେଲେ ଏବଂ ଅତ୍ୟନ୍ତ ବିରକ୍ତି ଓ କ୍ରୋଧ ସହିତ ତାକୁ ଏହା କରିବାକୁ ପଡ଼ିଲା । ଏହି ତିନି ଶକ୍ତିର ସମ୍ମୁଖୀନ ହେଲା ପରି ବଳ ତାର ନ ଥିଲା ।

କିନ୍ତୁ ଏ ଅପମାନ ଜାପାନ ମନେ ରଖିଲା । ଏହା ତା ମନରେ ଆଘାତ ଦେଲା ଏବଂ ବଡ଼ ସଂଗ୍ରାମ ପାଇଁ ତାକୁ ପ୍ରସ୍ତୁତ କରାଗଲା । ନଅ ବର୍ଷ ପରେ ରୁଷ ସହିତ ଏହି ସଂଗ୍ରାମ ବେଳ ପହଞ୍ଚିଲା ।

ଇତ୍ୟବସରେ ଚୀନ ଉପରେ ବିଜୟ ହାସଲ କରି ସୁଦୂର ପ୍ରାଚ୍ୟରେ ପ୍ରଧାନ ଶକ୍ତି ରୂପେ ଜାପାନ ନିଜର ସ୍ଥିତି ହାସଲ କରିନେଲା । ଚୀନର ସମସ୍ତ ଦୁର୍ବଳତା ପଦାରେ ପଡ଼ିଲା ଏବଂ ପାଶ୍ଚାତ୍ୟ ଶକ୍ତିଙ୍କ ମନରୁ ତା ପ୍ରତି ସମସ୍ତ ଭୟ ତୁଟିଗଲା । ଗୋଟିଏ ଶବ ବା ମୁମୂର୍ଷୁ ଲୋକ ଉପରେ ଶାଗୁଣା ପଡ଼ିଲା ପରି ସେମାନେ ଏହା ଉପରେ ପଡ଼ିଲେ ଓ ନିଜ ପାଇଁ ଯେତେ ସମ୍ଭବ ନେବାର ଉଦ୍ୟମ କଲେ । ଫ୍ରାନ୍ସ, ରୁଷ, ଇଂଲଣ୍ଡ, ଜର୍ମାନୀ ସମସ୍ତେ ଚୀନ ଉପକୂଳରେ ସମୁଦ୍ର ବନ୍ଦର ଓ ସୁବିଧା ନେବାପାଇଁ ଧାଇଁଲେ । ସୁବିଧା ହାସଲ ପାଇଁ ଗୋଟାଏ ଅପବିତ୍ର ଓ ଅସୁନ୍ଦର ଯୁଦ୍ଧ ଲାଗିଲା । ପ୍ରତି ଶ୍ରେଷ୍ଠ କଥାରେ ଅଧିକା ସୁବିଧା ଦାବୀର ପେଶକଶ କରାଗଲା । ଦୁଇ ଜଣ ମିସନାରୀ ହତ୍ୟା ହୋଇଥିବା ହେତୁ ଜର୍ମାନୀ ପୂର୍ବରେ ଶାଣ୍ଟୁଙ୍ଗ ଅଞ୍ଚଳରେ କିଉଚାଉ ବଳପୂର୍ବକ ଦଖଲ କଲା । ଜର୍ମାନୀ ଏହା ନେବା ହେତୁ ଅନ୍ୟ ଶକ୍ତିମାନେ ଏହି ଲୁଣ୍ଠିତ ପଦାର୍ଥରୁ ଅଂଶ ଦାବୀ କଲେ । ତିନି ବର୍ଷରୁ ଜାପାନକୁ ଯେଉଁ ପୋର୍ଟଆର୍ଥର ବନ୍ଦରକୁ ବଞ୍ଚିତ କରାଯାଇଥିଲା, ରୁଷ ତାହା ନେଲା । ରୁଷର ପୋର୍ଟଆର୍ଥର ପାଖକୁ ଇଂଲଣ୍ଡ ୱେ-ହେ-ୱେ ନେଲା । ଫ୍ରାନ୍ସ ଆନାମରେ ଏକ ବନ୍ଦର ଓ ଅଞ୍ଚଳ ନେଲା । ଟ୍ରାନ୍ସସାଇବେରିଆନ ରେଲବାଇକୁ ବିସ୍ତାର କରି ଉତ୍ତର ମାଞ୍ଚୁରିଆ ମଧ୍ୟରେ ଏକ ରେଲ ରାସ୍ତା ନିର୍ମାଣ କରିବା ପାଇଁ ରୁଷ ଅନୁମତି ନେଲା ।

ଏହି ନିର୍ଲଜ ଲୁଟତରାଜ—ଅତି ଅସାଧାରଣ । ଅବଶ୍ୟ ନିଜ ଅଞ୍ଚଳ ଛାଡ଼ିବା ବା ସୁବିଧା ଦେବାଟା ଚୀନ ପ୍ରତି ଆନନ୍ଦଦାୟକ ନୁହେଁ । ସେ ପ୍ରତ୍ୟେକ ଥର କୌଶଳ ଓ ବୋମା ଧମକରେ ଏଥିରେ ସମ୍ମତ ହେବାକୁ ବାଧ୍ୟ ହେଉଥିଲା । ଏହି ନିନ୍ଦନୀୟ ଆଚରଣକୁ ଆମେ କଣ କହିବା ? ଦିନ ଦିପହରେ ଡକାୟତି ! ଦସ୍ୟୁତା । ସାମ୍ରାଜ୍ୟବାଦର ଏହାହିଁ ରୀତି । ବେଳ ବେଳେ ଏହା ଗୁପ୍ତ ଭାବରେ କାର୍ଯ୍ୟକରେ; ବେଳେ ବେଳେ ଏହା ନିଜର କାର୍ଯ୍ୟକୁ ଗୋଟାଏ ପବିତ୍ର ଭାବଧାରା ଆବରଣରେ ଘୋଡ଼ାଇ ଦିଏ ଏବଂ ଅନ୍ୟମାନଙ୍କର ମଙ୍ଗଳ କରିବାକୁ ଯାଉଛି ବୋଲି ଗୋଟାଏ ଶଠତାପୂର୍ଣ୍ଣ ଛଳନା କରେ । କିନ୍ତୁ ୧୮୯୮ରେ ଚୀନରେ କୌଣସି ଛଳନା ବା ଆବରଣ ନ ଥିଲା । ନଗ୍ନରୂପେ ଅତି କୁତ୍ସିତରୂପେ ପ୍ରକାଶ ପାଇଲା ।

## ୧୧୭ : ଜାପାନ ହସ୍ତରେ ରୁଷର ପରାଜୟ

ଡିସେମ୍ବର ୨୯, ୧୯୩୨

ମୁଁ ତତେ ସୁଦୂର ପ୍ରାଚ୍ୟ ବିଷୟରେ ଲେଖି ଆସିଛି ଏବଂ ସେହି କାହାଣୀ ପୁଣି ଲେଖିବି । ମୁଁ ଅତୀତର ବିବାଦ ଓ ଯୁଦ୍ଧସମ୍ବନ୍ଧରେ ତୋ ମନ ଉପରେ କାହିଁକି ଏପରି

ବୋର୍ଦ୍ଦ ଲଢ଼ିବାକୁ ଚାହୁଁଛି ଏଥିରେ କି ଆଶ୍ଚର୍ଯ୍ୟ ହୋଇପାରୁ । ଏଗୁଡ଼ିକ କିଛି ଆନନ୍ଦଦାୟକ ବିଷୟ ନୁହେଁ—ଏହା ଶେଷ ହୋଇଛି ଓ ଯାଇଛି । ମୁଁ ସେଗୁଡ଼ିକ ଉପରେ ଜୋର ଦେବାକୁ ଚାହେଁ ନା; କିନ୍ତୁ ଆଜି ସୁଦୂର ପ୍ରାଚ୍ୟରେ ଯାହା ସବୁ ଘଟୁଛି, ସେସବୁ ଗଣ୍ଡଗୋଳର ମୂଳ ଏଇଥିରେ ଅଛି; ତେଣୁ ଆଧୁନିକ ସମସ୍ୟା ସବୁ ବୁଝିବା ନିମନ୍ତେ ଏ ସମ୍ବନ୍ଧରେ କିଛି ଜ୍ଞାନ ଆବଶ୍ୟକ । ଭାରତ ପରି ଚୀନ ଆଜି ପୃଥିବୀର ବଡ଼ ସମସ୍ୟାମାନଙ୍କ ଭିତରୁ ଗୋଟିଏ । ମୁଁ ଲେଖିବା ବେଳେ ସୁଦ୍ଧା ବର୍ତ୍ତମାନ ଜାପାନର ମାଞ୍ଚୁରିଆ ଦଖଲ ବିଷୟ ନେଇ ଖୁବ୍ ଅଧିକ କଳହ ଲାଗିଛି ।

ପାଶ୍ଚାତ୍ୟ ଶକ୍ତିମାନଙ୍କର ଯୁଦ୍ଧଜାହାଜ ସାହାଯ୍ୟରେ କିପରି ୧୮୯୮ରେ ଚୀନରୁ ସୁବିଧା ହାସଲ ପାଇଁ କାମୁଡ଼ାକାମୁଡ଼ି ଲାଗିଥିଲା; ସେ କଥା ମୁଁ ତୋତେ ଗତ ଚିଠିରେ କହିଛି । ସେମାନେ ଭଲ ବନ୍ଦର ଅଧିକାର କଲେ ଏବଂ ବନ୍ଦରକୁ ଲାଗିଥିବା ପ୍ରଦେଶମାନଙ୍କରେ ଖଣି ଖୋଳିବା, ରେଲବାଇ ତିଆରି କରିବା ଆଦି ସକଳ ପ୍ରକାର ଅଧିକାର ହାସଲ କଲେ । ତଥାପି ଅଧିକ ସୁବିଧା ପାଇଁ ଦାବୀ କରୁଥାନ୍ତି । ବିଦେଶୀ ସରକାରମାନେ ଚୀନରେ "ପ୍ରଭାବିତ ଅଞ୍ଚଳ" (Spheres of influence) ବିଷୟ କହିବାକୁ ଲାଗିଲେ । ଗୋଟିଏ ଦେଶକୁ ବିଭକ୍ତ କରିବା ନିମନ୍ତେ ଆଧୁନିକ ସାମ୍ରାଜ୍ୟବାଦୀ ସରକାରମାନଙ୍କର ଏହା ହେଉଛି ଭଦ୍ର ଉପାୟ । ଦଖଲ ଓ ନିୟନ୍ତ୍ରଣର ନାନାପ୍ରକାର ପରିମାଣ ଅଛି । ମିଶାଇ ଦେବା ଅର୍ଥ ହେଉଛି ପୂର୍ଣ୍ଣ ଅଧିକାର, 'ପ୍ରୋଟେକ୍ଟରେଟ୍' ବା ସଂରକ୍ଷିତ ହେଉଛି ଟିକିଏ କମ୍ ନିୟନ୍ତ୍ରଣ, "ପ୍ରଭାବିତ ଅଞ୍ଚଳ" ଏହାଠାରୁ ବି କମ୍, କିନ୍ତୁ ଏସବୁ ଗୋଟିଏ ଆଡ଼କୁ ଦର୍ଶାଇ ଦିଏ; ଏକ ପାଦ ପରେ ଅନ୍ୟ ପାଦକୁ ଯିବାର ବାଟ ପରିଷ୍କାର କରେ । ବାସ୍ତବିକ ଆମେ ସମ୍ଭବତଃ ପରେ ଆଲୋଚନା ବେଳେ ଦେଖିବା ଯେ ସଂଯୋଗ (Annsxation) ଏକ ପୁରୁଣା ଓ ତ୍ୟାଜ୍ୟ ପ୍ରଣାଳୀ—ଏହାଦ୍ୱାରା ଜାତି ଜାତି ଭିତରେ ବହୁତ ଗଣ୍ଡଗୋଳ ଉପୁଜୁଛି । କୌଣସି ଏକ ଦେଶ ଉପରେ ଅର୍ଥନୈତିକ କର୍ତ୍ତୃତ୍ୱ ହାସଲ କରି ଅନ୍ୟ ବିଷୟ ପ୍ରତି ଯାଣ୍ଡି ନ ହେବା ଖୁବ୍ ସହଜ ।

ତେଣୁ ଚୀନକୁ ବିଭକ୍ତ କରିବା ଆସନ୍ନ ପ୍ରାୟ ମନେ ହେଲା ଏବଂ ଜାପାନ ସମ୍ପୂର୍ଣ୍ଣ ରୂପେ ଭୟ ଚକିତ ହୋଇଗଲା । ତାର ଚୀନ ବିଷୟର ଫଳ ପାଶ୍ଚାତ୍ୟ ଶକ୍ତିଗୁଡ଼ିକ ନେଲା ପରି ବୋଧ ହେଲା ଏବଂ ଚୀନ ଖଣ୍ଡ ଖଣ୍ଡ ହୋଇଯିବାର ସେ ଅସହାୟ ଭାବରେ ଦେଖୁଥାଏ । ସର୍ବୋପରି ରୁଷ ତାକୁ ପୋର୍ଟ ଆର୍ଥର ଦଖଲ କରିବାରେ ବାଧା ଦେଇଥିବାରୁ ଓ ଶେଷରେ ନିଜେ ତାହା ନେଇଥିବାରୁ ରୁଷ ଉପରେ ତାର କ୍ରୋଧ ହେଲା ।

ଯାହାହେଉ ଆଉ ଏକ ପ୍ରଧାନ ଶକ୍ତି ଚୀନରୁ ଏହି ସୁବିଧା ହାସଲ କରିବା କିମ୍ବା ତାକୁ ଭାଗ ଭାଗ କରିବା ଯୋଜନା ପାଇଁ କାମୁଡ଼ା କାମୁଡ଼ିରେ ଏ ପର୍ଯ୍ୟନ୍ତ ଭାଗ ନେଇ ନ ଥିଲା । ଏ ହେଉଛି ଆମେରିକା ଯୁକ୍ତରାଷ୍ଟ୍ର । ଅନ୍ୟମାନଙ୍କ ଅପେକ୍ଷା ଅଧିକ ଧାର୍ମିକ ଥିବାରୁ

ସେମାନେ ଯେ ଅଲଗା ରହିଥିଲେ ତାହା ନୁହେଁ, ସେମାନେ ନିଜର ବିଶାଳ ଦେଶର ଉନ୍ନତିରେ ଲାଗି ପଡ଼ିଥିଲେ । ସେମାନେ ପଶ୍ଚିମରେ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିବାରୁ ନୂତନ ଅଞ୍ଚଳସବୁ ଉନ୍ନତ କରିବା ଦରକାର ପଡ଼ିଲା ଏବଂ ସେମାନଙ୍କର ସମସ୍ତ ଶକ୍ତି ଓ ଧନ ଏଥିରେ ଲାଗିଲା । ବାସ୍ତବିକ ଏହି ଉଦ୍ଦେଶ୍ୟରେ ବହୁ ପରିମାଣରେ ଇଉରୋପୀୟ ମୂଳଧନ ବି ଆମେରିକାରେ ଲାଗିଥିଲା । କିନ୍ତୁ ଏହି ଶତାବ୍ଦୀ ଶେଷବେଳକୁ ଆମେରିକା ବାଲା ଅନ୍ୟ ଦେଶରେ ଟଙ୍କା ଖଟାଇବା ଲାଗି ବାହାରିଲେ । ସେମାନେ ଚୀନ ପ୍ରତି ଦୃଷ୍ଟି ପକାଇଲେ ଏବଂ ଶେଷରେ ବୋଧହୁଏ ନିଜ ସହିତ ସଂଯୋଗ କରିନେବା ନିମନ୍ତେ ଇଉରୋପୀୟ ଶକ୍ତିମାନେ ଯେ ନିଜ ଭିତରେ "ପ୍ରଭାବିତ ଅଞ୍ଚଳ" ବିଭକ୍ତ କରିବାରେ ଲାଗିଥିଲେ । ଆମେରିକା ଏହା ବଡ଼ ନାପସନ୍ଦ ଦୃଷ୍ଟିରେ ଦେଖିଲା । ଆମେରିକାକୁ ସେମାନେ ଛାଡ଼ି ଦେଇଥିଲେ । ତେଣୁ ଚୀନରେ "ଉନ୍ମୁକ୍ତ ଦ୍ୱାର" ନୀତି ପାଇଁ ଆମେରିକା ଜୋର୍ ଦେଲା । ଏହାର ଅର୍ଥ ଚୀନରେ ବେପାର ବଣିଜ କରିବା ନିମନ୍ତେ ସମସ୍ତଙ୍କୁ ସମାନ ସୁବିଧା ମିଳିବ । ଅନ୍ୟ ଶକ୍ତିମାନେ ଏଥିରେ ରାଜି ହେଲେ ।

ଏହି ପୁନଃ ପୁନଃ ଆକ୍ରମଣରେ ଚୀନ ସରକାର ସମ୍ପୂର୍ଣ୍ଣ ଭାବରେ ଆତଙ୍କିତ ହୋଇପଡ଼ିଲେ ଏବଂ ସଂସ୍କାର ଓ ପୁନର୍ଗଠନର ଆବଶ୍ୟକତା ଉପଲବ୍ଧି କଲେ । ସେମାନେ ସେଥିପାଇଁ ଚେଷ୍ଟା କଲେ; କିନ୍ତୁ ବାରମ୍ବାର ନୂଆ ନୂଆ ସୁବିଧା ପାଇଁ ଦାବୀ ହେବାରୁ ଏଥିରେ ସଫଳ ହେବା ନିମନ୍ତେ ସୁଯୋଗ ମିଳିଲା ନାହିଁ । କେତେ ବର୍ଷ ହେଲା ଡାଓଜେର ସାମ୍ରାଜ୍ଞୀ ଜୁ ସି ଅବସର ନେଇଥିଲେ । ସେ ଜଣେ ରକ୍ଷାକର୍ତ୍ତ୍ରୀ ହୋଇପାରନ୍ତି ବୋଲି ଚୀନ ଲୋକେ ତାଙ୍କ ଉପରେ ନିର୍ଭର କଲେ । ସେତେବେଳର ସମ୍ରାଟ ଗୋଟାଏ କୁଚକ୍ର ହେବାର ସନ୍ଦେହ କରି ତାଙ୍କୁ ଜେଲରେ ପୂରାଇବା ପାଇଁ ଇଚ୍ଛା କଲେ । କିନ୍ତୁ ଏହି ବୃଦ୍ଧା ମହିଳା ତାଙ୍କୁ କ୍ଷମତାଚ୍ୟୁତ କରିଦେଇ ନିଜେ ସମସ୍ତ ଭାର ନେଇ ଏହାର ପ୍ରତିଶୋଧ ନେଲେ । ସେ ଜାପାନ ପରି ଆମୂଳ ସଂସ୍କାର କରିବା ଦିଗରେ କୌଣସି କାର୍ଯ୍ୟ କଲେ ନାହିଁ; କିନ୍ତୁ ଏକ ଆଧୁନିକ ସୈନ୍ୟବାହିନୀ ଗଢ଼ିବାରେ ସେ ମନ ଦେଲେ । ସେ ଦେଶରକ୍ଷା ନିମନ୍ତେ ସ୍ଥାନୀୟ ଦଳ ସବୁ ଗଢ଼ିବାରେ ଉତ୍ସାହ ଦେଲେ । ଏହି ସ୍ଥାନୀୟ ସେନାଙ୍କୁ "ଆଇ ହୋ ଚ୍ୱାନ୍" ବା ନ୍ୟାୟସଂଯୁକ୍ତ ମିଳନ ଦଳ ବୋଲି କୁହାହେଉଥିଲା । ବେଳେବେଳେ ଏହାକୁ 'ଆଇ ହୋ ଚ୍ୱାନ୍' ବା "ନ୍ୟାୟସଂଯୁକ୍ତ ମିଳନ ମୁଷ୍ଟି" ବୋଲି କୁହାହେଉଥିଲା । ବନ୍ଦର ସହରମାନଙ୍କରେ ଥିବା ଇଉରୋପୀୟମାନଙ୍କ ପାଖରେ ଏହି ପଛ ନାମଟି ପହଞ୍ଚିଲା ଏବଂ ସେମାନେ ଏହାକୁ "ମଲ୍ଲ" ବୋଲି ଅନୁବାଦ କଲେ—ଏହା ଏକ ସୁନ୍ଦର ବାକ୍ୟାଂଶର ବିକୃତ ଅନୁବାଦ ।

ବିଦେଶୀମାନେ ଚୀନାମାନଙ୍କ ପ୍ରତି ଓ ଚୀନ ପ୍ରତି ଯେଉଁ ଅସଂଖ୍ୟ ଅପମାନ ଦେଇଥିଲେ ଏବଂ ସେଇଥିଲାଗି ବିଦେଶୀ ଆକ୍ରମଣର ପ୍ରତିକ୍ରିୟା ରୂପେ ଏହି "ମଲ୍ଲ" ସବୁ ଦେଶପ୍ରେମ ଭାବ ନେଇ ବାହାରିଲେ । ସେମାନେ ଯେ ବିଦେଶୀଙ୍କୁ ଭଲ ପାଉ ନ ଥିଲେ;

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ତାଙ୍କ ଆଗରେ ବିଦେଶୀ ହେଲେ ଅନ୍ୟାୟର ପ୍ରତିମୂର୍ତ୍ତି । ପାଦ୍ରୀମାନେ ବହୁ ପରିମାଣରେ ଖରାପ ବ୍ୟବହାର କରିଥିଲେ ଏବଂ ଏମାନେ ପାଦ୍ରୀମାନଙ୍କୁ ଘୃଣା କରୁଥିଲେ ଏବଂ ଚୀନା ଖ୍ରୀଷ୍ଟିୟାନମାନଙ୍କୁ ଏମାନେ ଦେଶର ବିଶ୍ୱାସଘାତକ ବୋଲି ବିଚାରୁଥିଲେ । ଏମାନେ ହେଉଛନ୍ତି ପୁରାତନ ଚୀନର ପ୍ରତିନିଧି—ନୂତନ ବ୍ୟବସ୍ଥାରୁ ଚୀନକୁ ରକ୍ଷା କରିବା ନିମନ୍ତେ ସେମାନେ ଶେଷ ଚେଷ୍ଟା କଲେ । ଏପରି ଭାବରେ ଉଦ୍ୟମ ସଫଳ ହେବାର ସମ୍ଭାବନା ନ ଥିଲା ।

ଏହି ଦେଶପ୍ରେମୀ, ବିଦେଶୀବିରୋଧୀ, ପାଦ୍ରୀବିରୋଧୀ, ରକ୍ଷଣଶୀଳ ଲୋକ ଓ ପାଶ୍ଚାତ୍ୟବାସୀଙ୍କ ଭିତରେ ବିବାଦ ହେବାର କଥା । ସଂଘର୍ଷ ହେଲା, ଜଣେ ଇଂରେଜ ପାଦ୍ରୀଙ୍କୁ ହତ୍ୟା କରାଗଲା; ଅନେକ ଇଉରୋପୀୟାନ ଓ ବହୁସଂଖ୍ୟକ ଚୀନା ଖ୍ରୀଷ୍ଟିୟାନଙ୍କୁ ବଧ କରାଗଲା । ଏହି ଦେଶପ୍ରେମୀ ମଲ୍ଲ ଆନ୍ଦୋଳନକୁ ଦବାଇବା ପାଇଁ ବିଦେଶୀ ସରକାର ସବୁ ଦାବୀ କଲେ । ଯେଉଁମାନେ ହତ୍ୟା ଅପରାଧରେ ଦୋଷୀ ଥିଲେ, ଚୀନ ସରକାର ତାଙ୍କୁ ଶାସ୍ତି ଦେଲା; କିନ୍ତୁ ନିଜର ସନ୍ତାନକୁ ଏପରି ଭାବରେ ସେ ଦବାଇଥାନ୍ତା ବା କିପରି ? ଏଥି ଭିତରେ ମଲ୍ଲ ଆନ୍ଦୋଳନ ଅତି ଶୀଘ୍ର ବିସ୍ତାର ଲାଭ କଲା । ବିଦେଶୀ ମନ୍ତ୍ରୀମାନେ ଏଥିରେ ଆତଙ୍କିତ ହୋଇ ସେମାନଙ୍କ ଯୁଦ୍ଧ ଜାହାଜରୁ ସୈନ୍ୟ ଅଣାଇଲେ ଏବଂ ଏଥିରେ ଚୀନାମାନେ ଭାବିଲେ ଯେ ବିଦେଶୀ ଆକ୍ରମଣ ଆରମ୍ଭ ହୋଇଗଲା । ଶୀଘ୍ର ସଂଘର୍ଷ ଲାଗିଲା । ଜର୍ମାନ ମନ୍ତ୍ରୀଙ୍କୁ ହତ୍ୟା କରାଗଲା ଏବଂ ପେକିଙ୍ଗରେ ବିଦେଶୀ ଦୂତାବାସକୁ ଅଧିକାର କରାଗଲା ।

ଏହି ଦେଶପ୍ରେମୀ ମଲ୍ଲ ଆନ୍ଦୋଳନ ସହ ସହାନୁଭୂତି ଦେଖାଇ ଚୀନର ଅନେକ ଅଞ୍ଚଳ ଅସ୍ତ୍ର ଧରି ତେଜି ଉଠିଲା; କିନ୍ତୁ କେତେକ ପ୍ରଦେଶର ଭାଇସରୟମାନେ ଏଥିରେ ନିରପେକ୍ଷ ରହିଲେ ଏବଂ ବିଦେଶୀ ଶକ୍ତିଙ୍କୁ ଏହାଦ୍ୱାରା ସାହାଯ୍ୟ କଲେ । ଏଥିରେ ସନ୍ଦେହ ନାହିଁ ଯେ ଡାଓଜେର ସାମ୍ରାଜ୍ଞୀ ମଲ୍ଲମାନଙ୍କ ସହିତ ସହାନୁଭୂତି ଦେଖାଇଥିଲେ; କିନ୍ତୁ ପ୍ରକାଶ୍ୟଭାବରେ ସେ ସେମାନଙ୍କ ସହ ସଂପୃକ୍ତ ନ ଥିଲେ । ବିଦେଶୀମାନେ ଦେଖାଇବାକୁ ଚେଷ୍ଟା କଲେ ଯେ, ମଲ୍ଲମାନେ ଦସ୍ୟୁ, କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ୧୯୦୦ ସାଲର ଏ ବିଦ୍ରୋହରେ ବିଦେଶୀ ହସ୍ତକ୍ଷେପରୁ ଚୀନକୁ ମୁକ୍ତ କରିବା ନିମନ୍ତେ ଏହା ଏକ ଦେଶପ୍ରେମୀ ଉଦ୍ୟମ ମାତ୍ର । ସେତେବେଳେ ଶୁଳ୍କାଳୟମାନଙ୍କର ଇନ୍‌ସପେକ୍ଟର ଜେନେରାଲରୂପେ ଥିବା ସାର୍ ରବର୍ଟ ହାର୍ଟ ନାମକ ଚୀନର ଜଣେ ଉଚ୍ଚ କର୍ମଚାରୀ ଦୂତାବାସକୁ ଦଖଲ ହେବା ସମ୍ବନ୍ଧରେ ଅନୁସନ୍ଧାନ କରିଥିଲେ । ସେ କହନ୍ତି ଯେ, ବିଦେଶୀମାନେ ବିଶେଷତଃ ପାଦ୍ରୀମାନେ ଚୀନର ମନୋଭାବ ଉପରେ ଆଘାତ କରିବାରେ ଦୋଷୀ ଏବଂ ଏହି ବିଦ୍ରୋହ ଦେଶ ଭିତରୁ ଜାତ । ଏହାର ଲକ୍ଷ୍ୟର ଯଥାର୍ଥତା ସମ୍ବନ୍ଧରେ ପ୍ରଶ୍ନ କରାଯାଇପାରେ ନା ଓ ତା ବିରୁଦ୍ଧରେ "ଜୋର୍ କରି କିଛି କୁହାଯାଇପାରେ ନା ।"

ଏପରି ହଠାତ୍ ଯୋକ ଚଢ଼ିବାର ଦେଖି ପାଶ୍ଚାତ୍ୟ ଶକ୍ତିମାନେ ବଡ଼ ଉତ୍ତେଜିତ ହୋଇଗଲେ । ସେମାନେ ସୈନ୍ୟ ପଠାଇବାକୁ ଲାଗିଲେ—ପେକିଙ୍ଗରେ ତାଙ୍କ ନିଜ ଲୋକଙ୍କୁ ଯେ ଗିରଫ କରାଯାଇଥିଲା, ତାଙ୍କୁ ରକ୍ଷା କରିବା ଓ ବଞ୍ଚାଇବା ନିମନ୍ତେ ଏପରି କରିବାରେ ଯଥାର୍ଥତା ଥିଲା । ଦୂତାବାସଗୁଡ଼ିକୁ ମୁକ୍ତ କରିବା ନିମନ୍ତେ ଜଣେ ଜର୍ମାନ ସେନାପତି ଅଧୀନରେ ଏକ ଅନ୍ତର୍ଜାତୀୟ ସେନା ଗଲା । ଚୀନରେ ହୁନମାନଙ୍କ ପରି ବ୍ୟବହାର କରିବା ନିମନ୍ତେ ଜର୍ମାନୀର କାଇଜର ସୈନ୍ୟମାନଙ୍କୁ କହିଲେ ଏବଂ ସମ୍ଭବତଃ ଏହି ଆଦେଶରେ ଇଂରେଜମାନେ ହୁନ ଶବ୍ଦ ବ୍ୟବହାର ଦେଖି ପୃଥିବୀ ଯୁଦ୍ଧ ବେଳେ ଜର୍ମାନମାନଙ୍କୁ ହୁନ ବୋଲି ଡାକିଲେ ।

କାଇଜରଙ୍କ ପରାମର୍ଶ ଖାଲି ତାଙ୍କ ନିଜ ସେନା ନୁହେଁ, ସମସ୍ତ ବିଦେଶୀ ସେନା ମଧ୍ୟ ପାଳନ କଲେ । ଏହି ସେନାମାନେ ପେକିଙ୍ଗ୍‌କୁ ଅଗ୍ରସର ହେଲାବେଳେ ଲୋକଙ୍କ ପ୍ରତି ଏପରି ବ୍ୟବହାର କଲେ ଯେ, ଅନେକ ସଂଖ୍ୟକ ଲୋକ ତାଙ୍କ ହାତରେ ପଡ଼ିବା ଭୟରେ ଆତ୍ମହତ୍ୟା କରିଥିଲେ । ସେତେବେଳେ ଚୀନା ନାରୀମାନେ ତାଙ୍କ ପାଦ ଖ୍ରେଞ୍ଚ କରିଥାନ୍ତି ଏବଂ ସହଜରେ ଦୌଡ଼ିପାରୁ ନ ଥିଲେ; ତେଣୁ ଅନେକେ ନିଜକୁ ବଧ କଲେ । ଏହି ଭାବରେ ମିଳିତ ସେନା ଅଗ୍ରସର ହେଲେ ଏବଂ ତାଙ୍କ ପଶ୍ଚାତରେ ମୃତ୍ୟୁ, ଆତ୍ମହତ୍ୟା ଓ ଜ୍ୱଳନ୍ତ ଗ୍ରାମମାନ ଛାଡ଼ି ଦେଇ ଗଲେ । ଏହି ମିଳିତ ସେନାଙ୍କ ସହ ରହିଥିବା ଜଣେ ଇଂରେଜ ଖବରକାଗଜ ସମ୍ବାଦଦାତା ଲେଖିଛନ୍ତି—

"ଏସବୁ ଏପରି ଜିନିଷ ଯେ ମୁଁ ଲେଖିବି ନାହିଁ ଏବଂ ଇଂଲଣ୍ଡରେ ଏହା ଛପା ନ ହେବାର କଥା; କାରଣ ଏହା ବତାଇଦିଏ ଯେ ଆମର ପାଶ୍ଚାତ୍ୟ ସଭ୍ୟତା ବର୍ବରତା ଉପରେ ଗୋଟାଏ ପିତ୍ତଳ ପାଲିସ ମାତ୍ର । କୌଣସି ଯୁଦ୍ଧ ବିଷୟରେ ପ୍ରକୃତ ସତ୍ୟ କେବେ ଲେଖା ହୋଇ ନାହିଁ ଏବଂ ଏହା କିଛି ସେଥିରୁ ବହିର୍ଭୂତ ନୁହେଁ ।"

ଏହିସବୁ ସେନା ପେକିଙ୍ଗ୍‌ରେ ପହଞ୍ଚିଲେ ଏବଂ ଦୂତାବାସକୁ ମୁକ୍ତ କଲେ । ତାପରେ ପେକିଙ୍ଗ୍‌କୁ ଧ୍ୱଂସ କରିବାରେ ଲାଗିଲେ । "ପିଜାରୋ*ଙ୍କ ସମୟରେ ଏହା ସର୍ବାପେକ୍ଷା ବୃହତ୍ତ ଲୁଣ୍ଠନ ଯାତ୍ରା ।" ପେକିଙ୍ଗ୍‌ର କଳା ସମ୍ପଦ ଏକ ଅପରିପକ୍ୱ ଓ ଅସଭ୍ୟ ଲୋକଙ୍କ ହାତରେ ପଡ଼ିଲା । ସେମାନେ ଏହାର ମୂଲ୍ୟ ବୁଝି ନ ଥିଲେ । ଏହି ଲୁଟ୍‌ରେ ପାଦ୍ରୀମାନେ ଯେ ମୁଖ୍ୟ ଭାଗ ନେଇଥିଲେ, ଏହା ଅତ୍ୟନ୍ତ ଦୁଃଖର କଥା । ଦଳେ ଦଳେ ଲୋକ ଘର

---

* ପିଜାରୋ ଜଣେ ଅତ୍ୟାଚାରୀ ସ୍ପେନ ବାସୀ—ଦକ୍ଷିଣ ଆମେରିକାର ପେରୁ ଦେଶ ଜୟ କରିଥିଲେ—ସେଠି ଖୁବ୍ ନିର୍ଦ୍ଦୟ ବ୍ୟବହାର କରିଥିଲେ । ଶେଷରେ ଜଣେ ସିପାହୀ ତାଙ୍କୁ ହତ୍ୟା କଲା ।

ଘର ଭୂଲ୍ ଏସବୁ ଜିନିଷ ସେମାନଙ୍କର ବୋଲି ନୋଟିସ ଜାରି କରିଦେଲେ । ଗୋଟିଏ ଘରର ସମ୍ପଦ ସବୁ ବନ୍ଦୀ କରି ନେଇ ପୁଣି ଆଉ ଏକ ବଡ଼ ଘରକୁ ବାହାରିଲେ ।

ବିଭିନ୍ନ ଶକ୍ତିଙ୍କର ବିରୋଧ ଏବଂ ଆଂଶିକଭାବରେ ଯୁକ୍ତରାଷ୍ଟ୍ର ଆମେରିକା ସରକାରର ମନୋଭାବ ଯୋଗୁଁ ଚୀନ ଖଣ୍ଡ ଖଣ୍ଡ ହେବାରୁ ରକ୍ଷା ପାଇଲା; କିନ୍ତୁ ତାକୁ ଘୋର ଅପମାନ ସହିବାକୁ ପଡ଼ିଲା । ତା ଉପରେ ସବୁ ପ୍ରକାର ଅପମାନ ଲଦାହେଲା; ପେକିଙ୍ଗ୍‌ରେ ଏକ ସ୍ଥାୟୀ ବିଦେଶୀ ସେନା ରହିବ ଏବଂ ରେଲ୍‌ୱେ ଜଗିବାକୁ ବି ସୈନ୍ୟ ରହିବେ; ଅନେକ ଦୁର୍ଗ ଧ୍ୱଂସ କରିବାକୁ ପଡ଼ିଲା; କୌଣସି ବିଦେଶୀ ବିରୋଧୀ ସୋସାଇଟିର ସଭ୍ୟ ହେଲେ ମୃତ୍ୟୁ ଶାସ୍ତିର ବ୍ୟବସ୍ଥା ହେଲା; ଆହୁରି ଅଧିକ ବାଣିଜ୍ୟ ସୁବିଧା ସବୁ ଦିଆଗଲା ଏବଂ କ୍ଷତିପୂରଣ ସ୍ୱରୂପ ପ୍ରଚୁର ପରିମାଣରେ ଧନ ଅସୁଲ କରାଗଲା ଏବଂ ସବୁଠାରୁ ଅତି ଭୟଙ୍କର ମାତ୍ର ହେଉଛି ଚୀନ ସରକାରକୁ ମଲ୍ଲ ଆନ୍ଦୋଳନର ଦେଶପ୍ରେମୀ ନେତାମାନଙ୍କୁ "ବିଦ୍ରୋହୀ" ବୋଲି ମୃତ୍ୟୁ ଶାସ୍ତି ଦେବାକୁ ପଡ଼ିଲା । ୧୯୦୧ରେ ଯେଉଁ "ପେକିଙ୍ଗ୍ ପ୍ରୋଟୋକଲ୍" ଅର୍ଥାତ୍ ପେକିଙ୍ଗ୍‌ର ଆଦର୍ଶ ଦଲିଲ ହୋଇଥିଲା, ତାହା ଏହିପରି ଥିଲା ।

ଚୀନ ସଦର ବିଶେଷତଃ ପେକିଙ୍ଗ୍‌ରେ ଯେତେବେଳେ ଏସବୁ ହେଉଥିଲା, ସେତେବେଳେ ରୁଷ ସରକାର ଉପସ୍ଥିତ ଗୋଳମାଳିଆ ଅବସ୍ଥାର ସୁବିଧା ଉଠାଇ ସାଇବେରିଆ ପାର କରି ଅନେକ ସୈନ୍ୟ ମାଞ୍ଚୁରିଆ ପଠାଇଲେ । ଚୀନ ଶକ୍ତିହୀନ ଥିଲା; ଏହା କେବଳ ପ୍ରତିବାଦ କରିପାରେ । କିନ୍ତୁ ଏପରି ହେଲା ଯେ, ଏପରି ଏକ ବିସ୍ତୃତ ଅଞ୍ଚଳ ରୁଷ ସରକାର ଦଖଲ କରି ନେବାଟା ଅନ୍ୟ ଶକ୍ତିମାନେ ଭାରି ନାପସନ୍ଦ କଲେ । ଏଥିରେ ଜାପାନୀ ସରକାର ଅଧିକ ବ୍ୟଗ୍ର ଓ ଆତଙ୍କିତ ହୋଇ ପଡ଼ିଲା; ତେଣୁ ରୁଷକୁ ଫେରିଯିବା ନିମନ୍ତେ ଶକ୍ତିମାନେ ବାଧ୍ୟ କଲେ ଏବଂ ରୁଷ ସରକାର ଏକ ସାଧୁ ଘୋଷଣା ଓ ବିସ୍ମୟସ୍ୱଭାବ ଦେଖାଇ ତାର ମହତ୍ତ୍ୱ ଉଦ୍ଦେଶ୍ୟ ପ୍ରତି ଯେ ଲୋକେ ସନ୍ଦେହ କରିପାରନ୍ତି, ଏଥିରେ ତାଟକା ହେଲା ଏବଂ ଶକ୍ତିମାନଙ୍କୁ ନିର୍ଭର ଜବାବ ଦେଲା ଯେ, ଚୀନର ନିରଙ୍କୁଶ ଅଧିକାରରେ କୌଣସି ପ୍ରକାର ହସ୍ତକ୍ଷେପ କରିବା ତାଙ୍କର ଆଦୌ ମତଲବ ନୁହେଁ ଏବଂ ମାଞ୍ଚୁରିଆରେ ରୁଷ ରେଲବାଇ ଉପରେ ଥିବା ଗୋଳମାଳ ଶାନ୍ତ ହୋଇଗଲେ ସୈନ୍ୟ ଫେରାଇ ଆଣିବ । ପ୍ରତ୍ୟେକେ ସନ୍ତୁଷ୍ଟ ହୋଇଗଲେ ଏବଂ ଏଥିରେ ସନ୍ଦେହ ନାହିଁ ଯେ, ମିତ୍ର ଶକ୍ତିମାନେ ନିଜର ଅଲୌକିକ ନିଃସ୍ୱାର୍ଥପରତା ଓ ସାଧୁଭାବ ନିମନ୍ତେ ପରସ୍ପରକୁ ଅଭିନନ୍ଦନ କରିଥିବେ; କିନ୍ତୁ ସେ ଯାହାହେଉ, ରୁଷ ସୈନ୍ୟ ମାଞ୍ଚୁରିଆରେ ରହିଲେ ଓ କୋରିଆ ପର୍ଯ୍ୟନ୍ତ ବିସ୍ତାର କଲେ ।

ରୁଷର ମାଞ୍ଚୁରିଆ ଓ କୋରିଆ ଅଗ୍ରଗତିରେ ଜାପାନର ଖୁବ୍ କ୍ରୋଧ ଜାତ ହେଲା । ନୀରବରେ କିନ୍ତୁ ବିଶେଷ ଭାବରେ ସେମାନେ ଯୁଦ୍ଧ ଲାଗି ପ୍ରସ୍ତୁତ ହେଲେ । ୧୮୯୫ରେ ଯେତେବେଳେ ତିନୋଟି ୟୁରୋପୀୟ ଶକ୍ତି ଜାପାନ ବିରୁଦ୍ଧରେ ମିଳିତ ହେଲେ, ଚୀନ

ଯୁଦ୍ଧ ପରେ ତାଙ୍କୁ ପୋର୍ଟ ଆର୍ଥର୍ ଛାଡ଼ିବା ପାଇଁ ବାଧ୍ୟ କରାଗଲା । ସେ କଥା ସେମାନେ ମନେ ରଖିଥିଲେ ଏବଂ ଏହା ଶୁଣି ଥରେ ଘଟିବାରେ ସେମାନେ ବାଧା ଦେଲେ । ସେମାନେ ଦେଖିଲେ ଯେ ଇଂଲଣ୍ଡ ମଧ୍ୟ ରୁଷର ଅଗ୍ରଗତିକୁ ଭୟ କରୁଛି ଓ ତାକୁ ରୋକିବାକୁ ଚାହେଁ । ୧୯୦୨ରେ ଏକ ଇଂରେଜ ଜାପାନ ଚୁକ୍ତି ହେଲା – ସୁଦୂର ପ୍ରାଚ୍ୟରେ ଉଭୟ ଶକ୍ତିଙ୍କ ଭିତରୁ କାହା ଉପରେ ଜୋର୍ ପ୍ରୟୋଗ ମିଳିତ ହୋଇ କେହି କରିବାରେ ବାଧା ଦେବା ନିମନ୍ତେ ଏହା ହୋଇଥିଲା । ଜାପାନ ଏବେ ନିରାପଦ ମଣିଲା . ଏବଂ ରୁଷ ପ୍ରତି ଅଧିକ ଆକ୍ରମଣମୂଳକ ମନୋଭାବ ହେଲା । ସେ ଦାବୀ କଲା ଯେ, ରୁଷ ସୈନ୍ୟ ମାଞ୍ଚୁରିଆରୁ ଫେରାଇ ନେବା ଦରକାର । କିନ୍ତୁ ସେତେବେଳର ନିର୍ବୋଧ ଜାର ସରକାର ଜାପାନକୁ ଘୃଣା ଦୃଷ୍ଟିରେ ଦେଖୁଥିଲା ଏବଂ ଜାପାନ ଯୁଦ୍ଧ କରିବ ବୋଲି ସେ ଆଦୌ ବିଶ୍ୱାସ କରୁ ନ ଥିଲା ।

୧୯୦୪ର ପ୍ରଥମ ଭାଗରେ ଦୁଇ ଦେଶ ଭିତରେ ଯୁଦ୍ଧ ଆରମ୍ଭ ହେଲା । ଜାପାନ ଏଥିଲାଗି ପୂର୍ଣ୍ଣ ଭାବରେ ପ୍ରସ୍ତୁତ ହେଲା ଏବଂ ଜାପାନ ଲୋକେ ତାଙ୍କ ସରକାରର ପ୍ରଚାର ଓ ସମ୍ରାଟ-ପୂଜା ଭାବ ଯୋଗୁଁ ଦେଶପ୍ରେମ ଭାବନାରେ ପୂରି ଉଠିଲେ । ଅନ୍ୟ ପକ୍ଷରେ ରୁଷ ସଂପୂର୍ଣ୍ଣଭାବେ ଅପ୍ରସ୍ତୁତ ଥିଲା ଏବଂ ବାରମ୍ବାର ଲୋକଙ୍କୁ ଦମନ କରିବା ଦ୍ୱାରା ହିଁ ତା ସରକାର ଶାସନ କରିପାରୁଥିଲା । ଦେଢ଼ ବର୍ଷ ଯୁଦ୍ଧ ଚାଲିଲା ଏବଂ ସମଗ୍ର ଏସିଆ, ଇଉରୋପ ଓ ଆମେରିକାର ଜଳ ଓ ସ୍ଥଳ ଉଭୟ ପଥରେ ଜାପାନର ବିଜୟ ଦେଖିଲେ । ଅଦ୍ଭୁତ ତ୍ୟାଗ ଓ ଅସଂଖ୍ୟ ନରହତ୍ୟା ପରେ ପୋର୍ଟ ଆର୍ଥର ଜାପାନୀଙ୍କ ହାତରେ ପଡ଼ିଲା । ସୁଦୂର ପ୍ରାଚ୍ୟକୁ ସମୁଦ୍ର ପଥରେ ଇଉରୋପରୁ ରୁଷ ଏକ ବିରାଟ ଯୁଦ୍ଧ-ନୌବାହିନୀ ପଠାଇଲା । ପୃଥିବୀର ଅର୍ଦ୍ଧେକ ଅତିକ୍ରମ କରି ସାରିବା ପରେ ହଜାର ହଜାର ମାଇଲ ଜଳଯାତ୍ରାରେ କ୍ଳାନ୍ତ ହୋଇ ଏହି ବିଶାଳ ଯୁଦ୍ଧଜାହାଜ ଜାପାନ ସମୁଦ୍ରରେ ପହଞ୍ଚିଲା ଏବଂ ସେଠି ଜାପାନ ଓ କୋରିଆ ମଧ୍ୟରେ ସଂକୀର୍ଣ୍ଣ ପ୍ରଣାଳୀରେ ନୌ ସେନାପତି ସହ ଜାହାଜକୁ ଜାପାନୀମାନେ ବୁଡ଼ାଇଦେଲେ । ଏଥିରେ ପ୍ରାୟ ସମସ୍ତ ନୌକା ବୁଡ଼ି ନଷ୍ଟ ହୋଇଗଲା ।

ପରାସ୍ତ ପରେ ପରାସ୍ତ ହୋଇ ଜାର ଶାସିତ ରୁଷ ବଡ଼ କ୍ଷତିଗ୍ରସ୍ତ ହେଲା; ରୁଷର ଅନେକ ସଞ୍ଚିତ ଶକ୍ତି ଥିଲା; ୧୦୦ ବର୍ଷ ପୂର୍ବେ ଏହି ରୁଷ ନେପୋଲିୟନକୁ ପରାସ୍ତ କରି ନ ଥିଲା କି ? କିନ୍ତୁ ସେତେବେଳେ ପ୍ରକୃତ ରୁଷ, ରୁଷର ସାଧାରଣ ଲୋକେ କହି ପାରୁଥିଲେ ।

ଏହିସବୁ ଚିଠିରେ ମୁଁ ବାରମ୍ବାର ରୁଷ, ଇଂଲଣ୍ଡ, ଫ୍ରାନ୍ସ, ଚୀନ, ଜାପାନ ଇତ୍ୟାଦିକୁ ଏପରି ଉଲ୍ଲେଖ କରୁଛି, ଯେପରି କି ଏସବୁ ଜୀବନ୍ତ ଶକ୍ତି । ଏହା ମୋର ଏକ ଖରାପ ଅଭ୍ୟାସ—ବହିରୁ ଓ ସମ୍ବାଦପତ୍ରରୁ ମୁଁ ଏହା ହାସଲ କରିଛି; କିନ୍ତୁ ମୋର କହିବାର ହେଉଛି ରୁଷ ସରକାର, ଇଂଲଣ୍ଡ ସରକାର ଓ ସେହିପରି ଆଉ ସବୁ । ଏ ସବୁ

ସରକାର ହୁଏ ତ ଗୋଟିଏ ଶ୍ରେଷ୍ଠ ଗୋଷ୍ଠୀ ଛଡ଼ା ଆଉ କାହାର ପ୍ରତିନିଧିତ୍ୱ ନ କରିପାରନ୍ତି କିମ୍ବା ଗୋଟିଏ ଶ୍ରେଣୀର ପ୍ରତିନିଧି ହୋଇ ଥାଇପାରନ୍ତି କିନ୍ତୁ ସେସବୁ ସମଗ୍ର ଲୋକମାନଙ୍କ ପ୍ରତିନିଧିତ୍ୱ କରୁଥିଲେ ବୋଲି କହିବା ବା ଭାବିବା ଠିକ୍ ହେବ ନାହିଁ । ୧୯ଶ ଶତାବ୍ଦୀରେ ଇଂରେଜ ସରକାର ଏକ ଶ୍ରେଷ୍ଠ ସମ୍ପତ୍ତିସମ୍ପନ୍ନ ଶ୍ରେଣୀର ପ୍ରତିନିଧିତ୍ୱ କରୁଥିଲେ ବୋଲି କୁହାଯାଇପାରେ—ଜମିର ମାଲିକ ଓ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ପାର୍ଲିମେଣ୍ଟ ନିୟନ୍ତ୍ରଣ କରୁଥିଲେ । ଏ ସବୁ ବ୍ୟାପାରରେ ଅତି ଅଧିକ ସଂଖ୍ୟକ ଲୋକଙ୍କର କିଛି କହିବାର ନ ଥାଏ । ଆଜି ମଧ୍ୟ ଭାରତରେ ବେଳେ ବେଳେ ଶୁଣାଯାଏ ଯେ, ଭାରତ ଲିଗ୍ ଅଫ୍ ନେସନ୍‌ସ କିମ୍ବା ଗୋଲଟେବୁଲ ସମ୍ମିଳନୀ କିମ୍ବା ଅନ୍ୟ କୌଣସି ସ୍ଥାନକୁ ପ୍ରତିନିଧି ପଠାଉଛି, ଏହାର କୌଣସି ଅର୍ଥ ନାହିଁ । ଏହି ତଥାକଥିତ ପ୍ରତିନିଧିମାନଙ୍କୁ ଲୋକ-ସାଧାରଣ ପ୍ରତିନିଧିସ୍ୱରୂପ ନ ବାଛିବା ପର୍ଯ୍ୟନ୍ତ ଭାରତର ପ୍ରତିନିଧି ବୋଲି କୁହାଯାଇପାରେ ନା । ସେମାନେ ତେଣୁ ଭାରତ ସରକାରର ମନୋନୀତ ଲୋକ—ଭାରତ ସରକାର ନା ଯାହା ଆଉ ପଛକେ ଏହା ବ୍ରିଟିଶ ସରକାରର ଏକ ବିଭାଗ ମାତ୍ର । ରୁଷରେ ରୁଷ-ଜାପାନ ଯୁଦ୍ଧବେଳେ ଗୋଟିଏ ଏକଚ୍ଛତ୍ର ରାଜ୍ୟ ଥିଲା । ରୁଷରେ ଜାର୍ ହିଁ ସବୁଠାରୁ ଏକଚ୍ଛତ୍ର ରାଜା ଥିଲି ଏବଂ ସେ ଏକ ଅତ୍ୟନ୍ତ ନିର୍ବୋଧ ଏକଚ୍ଛତ୍ର ରାଜା । ଶ୍ରମିକ ଓ କୃଷକମାନଙ୍କୁ ସୈନ୍ୟବଳରେ ଦବାଇ ରଖା ହୋଇଥିଲି ଏବଂ ଏପରି କି ମଧ୍ୟବିତ୍ତ ଶ୍ରେଣୀଙ୍କର ମଧ୍ୟ ସରକାରରେ କୌଣସି ପ୍ରକାର ହାତ ନ ଥିଲା । ଅନେକ ସାହସୀ ରୁଷ ଯୁବକ ନିଜର ମସ୍ତକ ଉତ୍ତୋଳନ କଲେ ଏବଂ ଏହି ଅତ୍ୟାଚାର ବିରୁଦ୍ଧରେ ହାତମୁଠା କଲେ ଓ ସ୍ୱାଧୀନତା ପାଇଁ ଯୁଦ୍ଧରେ ନିଜର ଜୀବନ ଉତ୍ସର୍ଗ କଲେ । ଅନେକ ବାଳିକା ବି ସେହିପରି ଜୀବନ ଦେଲେ; ସୁତରାଂ ମୁଁ ଯେତେବେଳେ ରୁଷ ଯୁଦ୍ଧ କଲା, ତା' କଲା, ଜାପାନ ସହ ଯୁଦ୍ଧ କଲା ଇତ୍ୟାଦି କହୁଛି, ସେତେବେଳେ କେବଳ ଜାର ସରକାର ଛଡ଼ା ଆଉ କିଛି ତାର ଅର୍ଥ ନୁହେଁ ।

ଏହାର ଦୁର୍ଦ୍ଦଶା ସହ ଜାପାନୀ ଯୁଦ୍ଧ ଫଳରେ ସାଧାରଣ ଲୋକ ଆହୁରି ଅନେକ ଦୁଃଖ ଭୋଗିଲେ । ସରକାର ଉପରେ ଚାପ ଆଣିବା ନିମନ୍ତେ ଶ୍ରମିକମାନେ ଅନେକ ସମୟରେ ଧର୍ମଘଟ କରୁଥିଲେ । ୧୯୦୫ ଜାନୁୟାରି ୨୨ ତାରିଖରେ କେତେ ହଜାର କୃଷକ ଶ୍ରମିକ ଶାନ୍ତିପୂର୍ଣ୍ଣ ଭାବରେ ଜଣେ ପାଦ୍ରୀ ନେତୃତ୍ୱରେ ଗୋଟିଏ ଶୋଭାଯାତ୍ରା କରି ତାଙ୍କର ଦୁଃଖ ଲାଘବ ପାଇଁ ଜାରର ଶୀତକାଳୀନ ପ୍ରାସାଦକୁ ଗଲେ । ସେମାନଙ୍କ ଗୁହାରି ଶୁଣିବା ପରିବର୍ତ୍ତେ ଜାର ତାଙ୍କୁ ଗୁଳି କରି ହତ୍ୟା କଲା । ଅତି ଭୀଷଣ ନରହତ୍ୟା ହେଲା; ୨୦୦ଜଣ ଲୋକ ମଲେ ଏବଂ ପିଟର୍ସବର୍ଗର ଶୀତକାଳୀନ ବରଫ ରକ୍ତର ଲାଲ ହୋଇଗଲା । ଏହା ରବିବାର ଦିନ ହୋଇଥିଲା ଏବଂ ସେହିଦିନଠାରୁ ଏହି ଦିବସକୁ "ରକ୍ତାକ୍ତ ରବିବାର" ବୋଲି କହନ୍ତି । ସାରା ଦେଶରେ ଖୁବ୍ ବିଶୃଙ୍ଖଳା ଖେଳିଗଲା । ଶ୍ରମିକଙ୍କ ଧର୍ମଘଟ ହେଲା ଏବଂ ଏହା ଏକ ବିପ୍ଳବ ଦିଗରେ ପରିଚାଳିତ କଲା । ୧୯୦୫ରେ ଏହି ବିପ୍ଳବକୁ ଅତ୍ୟନ୍ତ ନିଷ୍ଠୁରତା

ସନ୍ଧିକାରେ ଜାର ସରକାର ଦବାଇ ଦେଲା । କେତେକ କାରଣରୁ ଆମ ପକ୍ଷରେ ଏହାର ମହତ୍ତ୍ୱ ଅଛି । ୧୨ ବର୍ଷ ପରେ ୧୯୧୭ ମସିହାରେ ଯେଉଁ ବିପ୍ଳବ ରୁଷର ରୂପ ପରିବର୍ତ୍ତନ କରିଦେଲା, ଏହା ସେଥିପାଇଁ ଏକପ୍ରକାର ଆୟୋଜନ । ୧୯୦୫ର ଏହି ଅସଫଳ ବିପ୍ଳବ ଭିତରେ ବଡ଼ ବିପ୍ଳବୀ ଶ୍ରମିକମାନେ ସୋଭିଏତ୍ ନାମକ ଏକ ନୂଆ ଅନୁଷ୍ଠାନ ସୃଷ୍ଟି କଲେ—ଏହା ହିଁ ପରେ ଏପରି ବିଖ୍ୟାତ ହେଲା ।

ତତେ ଚୀନ-ଜାପାନ ଓ ରୁଷ-ଜାପାନ ଯୁଦ୍ଧ ସମ୍ବନ୍ଧରେ କହୁଁ କହୁଁ ମୋର ସ୍ୱଭାବଗତ ଦୋଷରେ ୧୯୦୫ର ରୁଷ ବିପ୍ଳବ ସମ୍ବନ୍ଧରେ କହିଗଲି । ମାଞ୍ଚୁରିଆ ଯୁଦ୍ଧବେଳେ ରୁଷର ପୃଷ୍ଠଭୂମିକା ତୋତେ ବୁଝାଇବା ପାଇଁ ଏ ସମ୍ବନ୍ଧରେ କିଛି କହିବା ଦରକାର ପଡ଼ିଲା । ଏହି ବିପ୍ଳବ ପ୍ରଚେଷ୍ଟା ଓ ଲୋକଙ୍କର ମନୋଭାବ ଯୋଗୁଁ ଜାରକୁ ଜାପାନ ସହିତ ସନ୍ଧି କରିବାକୁ ପଡ଼ିଲା ।

୧୯୦୫ ସେପ୍‌ଟେମ୍ବର ମାସରେ ପୋର୍ଟସ୍‌ମାଉଥ୍ ସନ୍ଧି ପରେ ରୁଷ ଜାପାନ ଯୁଦ୍ଧ ଶେଷ ହେଲା । ପୋର୍ଟସମାଉଥ ଯୁକ୍ତରାଷ୍ଟ୍ରରେ । ଆମେରିକା ସଭାପତି ଦୁଇ ଶକ୍ତିଙ୍କୁ ନିମନ୍ତ୍ରଣ କଲେ ଏବଂ ଶାନ୍ତିସର୍ତ୍ତ ସେଠି ଦସ୍ତଖତ ହୋଇଗଲା । ତୋର ମନେଥିବ, ଚୀନ ଯୁଦ୍ଧ ପରେ ଯେଉଁ ପୋର୍ଟ ଆର୍ଥର ଲିଏଟୁଙ୍ଗ୍ ଅଞ୍ଚଳ ଜାପାନ ଛାଡ଼ିବାକୁ ବାଧ୍ୟ ହୋଇଥିଲା, ଏହି ସନ୍ଧି ଫଳରେ ଜାପାନ ତାହା ଫେରିପାଇଲା । ରୁଷମାନେ ମାଞ୍ଚୁରିଆରେ ଯେଉଁ ରେଳ ରାସ୍ତା ନିର୍ମାଣ କରିଥିଲେ, ସେଥିରୁ ଅନେକ ଭାଗ ଏବଂ ଜାପାନର ଉତ୍ତରରେ ଥିବା ସାଖାଲିନ ଦ୍ୱୀପର ଅର୍ଦ୍ଧେକ ଅଂଶ ବି ଜାପାନ ପାଇଲା । ଅଧିକନ୍ତୁ ମଧ୍ୟ କୋରିଆ ଉପରୁ ରୁଷ ସମସ୍ତ ଦାବୀ ଛାଡ଼ିଦେଲା ।

ଫଳେ ଜାପାନ ଜିତିଲା ଏବଂ ସେ ପ୍ରଧାନ ଶକ୍ତିମାନଙ୍କ ମୋହିନୀଚକ୍ରରେ ପଶିଲା । ଏକ ଏସିଆର ଦେଶ ଜାପାନର ବିଜୟ ଫଳରେ ଏସିଆର ଅନ୍ୟ ସବୁ ଦେଶମାନଙ୍କ ଉପରେ ଖୁବ୍ ପ୍ରଭାବ ପଡ଼ିଲା । ମୁଁ ତତେ କହିଛି, ମୁଁ ପିଲାବେଳେ କିପରି ଏଥିରେ ଉତ୍ତେଜିତ ହେଉଥିଲି । ସେହିପରି ଉତ୍ତେଜନା ସେତେବେଳେ ଏସିଆର ଅନେକ ବାଳକ ବାଳିକା ଓ ବୟସ୍କଙ୍କ ମଧ୍ୟରେ ଦେଖାଦେଇଥିଲା । ଏକ ପ୍ରଧାନ ଇଉରୋପୀୟ ଶକ୍ତି ପରାସ୍ତ ହେଲା । ଅତଏବ ଅତୀତରେ ଯେପରି ହୋଇ ଆସିଥିଲା, ଏସିଆ ଏବେ ମଧ୍ୟ ଇଉରୋପକୁ ପରାସ୍ତ କରିପାରେ । ପ୍ରାଚ୍ୟ ଦେଶମାନଙ୍କରେ ଜାତୀୟତା ଦ୍ରୁତବେଗରେ ବ୍ୟାପିଗଲା ଏବଂ "ଏସିଆ ଏସିଆବାସୀଙ୍କ ପାଇଁ" ଏ ଧ୍ୱନି ଉଠିଲା; କିନ୍ତୁ ଏ ଜାତୀୟତାର ଅର୍ଥ କେବଳ ଅତୀତକୁ ଫେରି ଆସିବା କିମ୍ବା ପୁରୁଣା ରୀତି ଓ ବିଶ୍ୱାସକୁ କାମୁଡ଼ି ଧରିବା ନୁହେଁ । ପାଶ୍ଚାତ୍ୟର ନୂତନ ଔଦ୍ୟୋଗିକ ପ୍ରଣାଳୀ ଗ୍ରହଣ କରିବାରୁ ଜାପାନର ବିଜୟ ହେଲା ଏବଂ ଏହି ଭାବଧାରା ଓ ପ୍ରଣାଳୀ ସମଗ୍ର ପ୍ରାଚ୍ୟ ଦେଶରେ ଅଧିକ ଲୋକପ୍ରିୟ ହୋଇଗଲା ।

# ୧୧୮ : ଚୀନରେ ପ୍ରଜାତନ୍ତ୍ର ସ୍ଥାପନା

ଡିସେମ୍ବର ୩୦, ୧୯୩୨

ଆମେ ଦେଖିଛେଁ ଜାପାନର ରୁଷ-ବିଜୟ ଦ୍ୱାରା ଏସିଆର ଦେଶଗୁଡ଼ିକ କିପରି ଆନନ୍ଦିତ ଓ ଉତ୍ଫୁଲ୍ଲ ହେଲେ । ଏହାର ତତ୍କ୍ଷଣାତ୍ ଫଳସ୍ୱରୂପ ଆକ୍ରମଣମୂଳକ ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ସହିତ ଆଉ ଏକ ଶକ୍ତି ମିଶିଲା । ଏହାର ପ୍ରଥମ ଫଳ କୋରିଆରେ ଦେଖାଦେଲା । ଜାପାନର ଉତ୍ଥାନ ଅର୍ଥ କୋରିଆର ପତନ । ଜାପାନ ପୃଥିବୀ ପାଇଁ ପୁନର୍ବାର ଦ୍ୱାର ମୁକ୍ତ କରିବା ଦିନଠାରୁ କୋରିଆ ଓ ମାଞ୍ଚୁରିଆର ଏକ ଅଂଶ ନିଜର କରି ନେବା ନିମନ୍ତେ ସ୍ଥିର କରିଛି । ଅବଶ୍ୟ ସେ ବାରମ୍ବାର ଘୋଷଣା କରିଥିଲା ଯେ, ସେ ଚୀନର ଅଖଣ୍ଡତା ରକ୍ଷା କରିବ ଏବଂ କୋରିଆର ସ୍ୱାଧୀନତା ବି ରକ୍ଷା କରିବ । ସାମ୍ରାଜ୍ୟବାଦୀ ଶକ୍ତିମାନେ କୌଣସି ଦେଶକୁ ଲୁଣ୍ଠନ କଲାବେଳେ ସୁଦ୍ଧା ଗୋଟାଏ ଖୋସାମଦିଆ ସଦିଚ୍ଛାଜ୍ଞାପନର ନିର୍ଭରତା ଦେଖାନ୍ତି ଏବଂ ଏପରି ହତ୍ୟା କରୁଥିବା ବେଳେ ସୁଦ୍ଧା ଜୀବନର ପବିତ୍ରତା ସମ୍ବନ୍ଧରେ କହନ୍ତି—ଏହା ସେମାନଙ୍କର ସ୍ୱଭାବ । ସେହିପରି ଜାପାନ ପବିତ୍ର ଭାବରେ ଘୋଷଣା କଲା ଯେ ସେ କୋରିଆରେ ହସ୍ତକ୍ଷେପ କରିବ ନାହିଁ ଏବଂ ସେଥି ସଙ୍ଗେ ସଙ୍ଗେ ତାହା ଦଖଲ କରିବା ନିମନ୍ତେ ନିଜର ପୁରୁଣା ନୀତି କାର୍ଯ୍ୟକାରୀ କଲା । ଚୀନ ଓ ରୁଷ ସହି ତାର ଯୁଦ୍ଧ କୋରିଆ ଓ ମାଞ୍ଚୁରିଆ ନିକଟରେ କେନ୍ଦ୍ରୀଭୂତ ହେଲା । ପାଦ ପାଦ କରି ସେ ଆଗକୁ ମାଡ଼ି ଚାଲିଲା ଏବଂ ଏବେ ଚୀନ ଓ ରୁଷର ପରାସ୍ତ ପରେ ତାର ପଥ ପରିଷ୍କାର ହୋଇଗଲା ।

ନିଜର ସାମ୍ରାଜ୍ୟ ନୀତି ଅନୁସରଣ କରିବାରେ ଜାପାନ କେବେ ସଙ୍କୋଚ ବୋଧ କରି ନାହିଁ । ସେ ପ୍ରକାଶ୍ୟ ଭାବରେ ଗ୍ରାସ କଲା—ଏପରି କି ନିଜର ଏହି ମତଲବକୁ କୌଣସି ଆବରଣରେ ଘୋଡ଼ାଇଲା ନାହିଁ । ୧୮୯୪ରେ ଠିକ୍ ଚୀନ ଯୁଦ୍ଧ ପୂର୍ବରୁ ଜାପାନୀମାନେ ବଳପୂର୍ବକ କୋରିଆ ରାଜଧାନୀ ସିଓଲରେ ଥିବା ରାଜପ୍ରାସାଦରେ ପ୍ରବେଶ କଲେ ଏବଂ ରାଣୀ ତାଙ୍କ ଆଦେଶାନୁସାରେ କାର୍ଯ୍ୟ ନ କରିବାରୁ ତାଙ୍କୁ ଅନ୍ତର କଲେ ଓ ବନ୍ଦୀ କଲେ । ୧୯୦୫ର ରୁଷ ଯୁଦ୍ଧ ପରେ ନିଜ ଦେଶର ସ୍ୱାଧୀନତାକୁ ଛାଡ଼ି ଜାପାନର ଅଧୀନତା ସ୍ୱୀକାର କରି ଦସ୍ତଖତ କରିଦେବା ନିମନ୍ତେ ଜାପାନୀ ସରକାର କୋରିଆ ରାଜ୍ୟକୁ ବାଧ୍ୟ କରାଇଲେ । କିନ୍ତୁ ଏହା ଭଲ ନୁହେଁ । ପାଞ୍ଚ ବର୍ଷ ଭିତରେ ଏହି ଅଭାଗା ରାଜାଙ୍କୁ ଏକଦମ ଗାଦୀରୁ ଅନ୍ତର କରି ଦିଆଗଲା ଏବଂ ଜାପାନ ସାମ୍ରାଜ୍ୟରେ କୋରିଆ ଅନ୍ତର୍ଭୁକ୍ତ ହେଲା । ଏହା ୧୯୧୦ରେ ହୋଇଥିଲା । ୩ ହଜାର ବର୍ଷର ଦୀର୍ଘ ଇତିହାସ ପରେ କୋରିଆ ଅଲଗା ଦେଶ ହୋଇ ରହିଲା ନାହିଁ । ଯେଉଁ ରାଜ୍ୟକୁ ଅନ୍ତର କରାଗଲା, ସେହି ବଂଶ ୫୦୦ ବର୍ଷ ପୂର୍ବେ

ମଙ୍ଗୋଲମାନଙ୍କୁ ତଡ଼ି ଦେଇଥିଲେ । କିନ୍ତୁ କୋରିଆ ତାର ବଡ଼ ଭାଇ ଚୀନ ପରି ନିର୍ଜୀବ ଓ ଶ୍ଲଥ ହୋଇଗଲା ଏବଂ ଏଥିଲାଗି ଶାସ୍ତି ଭୋଗିବାକୁ ପଡ଼ିଲା ।

କୋରିଆର ପୁଣି ପୁରାତନ ନାମକରଣ ହେଲା—ଚୋସେନ୍—ପ୍ରାତଃ ନିସ୍ତବ୍ଧତାର ଭୂମି । ଜାପାନୀମାନେ କେତେକ ଆଧୁନିକ ସଂସ୍କାର ସାଙ୍ଗରେ ଆଣିଥିଲେ; କିନ୍ତୁ ସେମାନେ ନିର୍ଦ୍ଦୟ ଭାବରେ କୋରିଆ ଲୋକଙ୍କ ଭାବକୁ ଦମନ କଲେ । ଅନେକ ବର୍ଷ ପର୍ଯ୍ୟନ୍ତ ସ୍ୱାଧୀନତା ସଂଗ୍ରାମ ଚାଲିଲା ଏବଂ ମଝିରେ ମଝିରେ ଅନେକ ସମୟରେ ବଡ଼ ଧରଣର ବିଦ୍ରୋହ ହୋଇଥିଲା । ଏଥିରୁ ୧୯୧୯ ମସିହାର ଯୁଦ୍ଧ ହେଉଛି ପ୍ରଧାନ । କୋରିଆ ଲୋକେ ବିଶେଷତଃ ଯୁବକ-ଯୁବତୀମାନେ ଅତ୍ୟନ୍ତ ଅସୁବିଧା ସତ୍ତ୍ୱେ ବୀର ଭାବରେ ସଂଗ୍ରାମ କଲେ । ଥରେ ଯେତେବେଳେ ସ୍ୱାଧୀନତା ପାଇଁ ଲଢ଼ାଇ କରୁଥିବା ଏକ କୋରିଆ ସଂଗଠନ ବିଧିବଦ୍ଧ ଭାବରେ ସ୍ୱାଧୀନତା ଘୋଷଣା କଲା ଓ ଜାପାନୀଙ୍କୁ ଅବଜ୍ଞା ଦେଖାଇଲା, ସେତେବେଳେ ଗୋଟିଏ କାହାଣୀ ଅଛି ଯେ, ସେମାନେ ସାଙ୍ଗେ ସାଙ୍ଗେ ପୁଲିସକୁ ଟେଲିଫୋନ କରି ସେମାନେ କଣ କରୁଛନ୍ତି, ତାହା ଜଣାଇଦେଲେ । ଏହିରୂପେ ଜାଣିଶୁଣି ସେମାନେ ନିଜର ଆଦର୍ଶ ସକାଶେ ଆପଣାକୁ ଉତ୍ସର୍ଗ କଲେ । ଜାପାନୀମାନଙ୍କର କୋରିଆଦମନ ଇତିହାସରେ ଏହା ଏକ ଅତ୍ୟନ୍ତ ଦୁଃଖଜନକ ଓ ଅନ୍ଧକାରମୟ ଅଧ୍ୟାୟ । ତୁ ଶୁଣି ଖୁସି ହେବୁ ଯେ, ଅନେକ କୋରିଆନ ଯୁବତୀ—କଲେଜରୁ ଅଧିକାଂଶ ଛାତ୍ରୀ ଆସିଥାନ୍ତି— ସେମାନେ ଏହି ସଂଗ୍ରାମରେ ପ୍ରଧାନ ଭାଗ ନେଇଥିଲେ ।

ଆମେ ଏବେ ଚୀନକୁ ଫେରିବା । ମଲ୍ଲ ଆନ୍ଦୋଳନର ଦମନ ଓ ୧୯୦୧ର ପେକିଙ୍ଗ୍ ସନ୍ଧିପତ୍ର ପରେ ଆମେ ହଠାତ୍ ତାକୁ ଛାଡ଼ି ଚାଲିଯାଇଥିଲେ । ଚୀନ ସମ୍ପୂର୍ଣ୍ଣରୂପେ ଅପମାନିତ ହେଲା ଏବଂ ପୁନର୍ବାର ସଂସ୍କାରର ଉଦ୍ୟମ ହେଲା । ଏପରି କି ବୁଢ଼ୀ ଡାଓଜେର ସାମ୍ରାଜ୍ଞୀ ସୁଦ୍ଧା କିଛି କରିବା ଦରକାର ବୋଲି ବିଚାରିଲେ । ରୁଷ-ଜାପାନ ଯୁଦ୍ଧବେଳେ ଚୀନ ରାଜ୍ୟ ମାଞ୍ଚୁରିଆରେ ଯୁଦ୍ଧ ଲାଗିଥିଲେ ସୁଦ୍ଧା ଚୀନ ଏକ ନିଷ୍କ୍ରିୟ ଦର୍ଶକ ହୋଇ ରହିଥିଲା । ଜାପାନର ବିଜୟ ଫଳରେ ଚୀନରେ ସଂସ୍କାରବାଦୀମାନେ ଶକ୍ତି ପାଇଲେ । ଶିକ୍ଷା ଆଧୁନିକ ଧରଣର ହେଲା ଏବଂ ଆଧୁନିକ ବିଜ୍ଞାନ ଅଧ୍ୟୟନ କରିବା ନିମନ୍ତେ ଇଉରୋପ, ଆମେରିକା ଓ ଜାପାନକୁ ଅନେକ ବିଦ୍ୟାର୍ଥୀ ପଠାହେଲେ । ଯେଉଁ ପୁରୁଣା ସାହିତ୍ୟ ପରୀକ୍ଷାଦ୍ୱାରା କର୍ମଚାରୀ ନିଯୁକ୍ତ କରାଯିବା କଥା ଥିଲା, ତାହା ଲୋପ ହେଲା । ଏହି ଅଦ୍ଭୁତ ପ୍ରଥା ଚୀନର ବିଶେଷତ୍ୱ ଏବଂ ହାନ୍ ବଂଶଧର ଅମଳରୁ ଦୁଇ ହଜାର ବର୍ଷ ହେଲା ଚାଲି ଆସୁଥିଲା । ଅନେକ କାଳରୁ ଏହାର ଏହି ପ୍ରଥାର ଉପଯୋଗିତା ଶେଷ ହୋଇଥିଲା ଏବଂ ଏହା ଚୀନକୁ ପଛରେ ପକାଉଥିଲା; ତେଣୁ ଏହା ଲୋପ ହୋଇ ଭଲ ହେଲା; ତଥାପି ନିଜ ଢଙ୍ଗରେ ଅନେକ ବର୍ଷ ଧରି ଏହା ଏକ ଅଦ୍ଭୁତ ଜିନିଷ ହୋଇ ରହିଛି । ଚୀନ ଦୃଷ୍ଟିକୋଣ ହିଁ ଜୀବନରେ ପ୍ରତିବିମ୍ବିତ କରୁଥିଲା । ଏସିଆ ଓ ଇଉରୋପର ଅଧିକାଂଶ ଦେଶ ପରି ଏହା ସାଅନ୍ତିଆ କିମ୍ବା ପୌରୋହିତ୍ୟ ଢଙ୍ଗର ନ ଥିଲା; କିନ୍ତୁ ଏହା ଯଥାର୍ଥତା

ଉପରେ ପ୍ରତିଷ୍ଠିତ ଥିଲା । ଚୀନାମାନେ ସର୍ବଦା ସର୍ବାପେକ୍ଷା କମ୍ ଧାର୍ମିକ; ଅଥଚ କୌଣସି ଧାର୍ମିକ ଲୋକଙ୍କ ଅପେକ୍ଷା ସେମାନେ ଏକ ଧାର୍ମିକ ଓ ନିୟମିତ ଜୀବନଧାରା ଅତ୍ୟନ୍ତ କଠୋର ଭାବରେ ପାଳନ କରି ଆସିଛନ୍ତି । ସେମାନେ ଏକ ହେତୁବାଦୀ ସମାଜ ସ୍ଥାପନ କରିବାକୁ ଚେଷ୍ଟା କଲେ; କିନ୍ତୁ ସେମାନେ ଏହା ପୁରାତନ ସାହିତ୍ୟ ଭିତରେ ସୀମାବଦ୍ଧ କରିବାକୁ ଚେଷ୍ଟା କରିବାରୁ ପ୍ରଗତି ଓ ଆବଶ୍ୟକ ପରିବର୍ତ୍ତନରେ ବାଧା ପଡ଼ିଥିଲା ଏବଂ ଏକ ନିଶ୍ଚଳତା ଓ ନିର୍ଜୀବତା ଦେଖାଦେଲା । ଚୀନର ଏହି ହେତୁବାଦରୁ ଆମର ବହୁତ ଶିଖିବାର ଅଛି; କାରଣ ଆମେ ଏବେ ସୁଦ୍ଧା ଜାତି, ଅନ୍ଧ ଧର୍ମ, ପୌରୋହିତ୍ୟ ଓ ସାଅନ୍ତିଆ ଧରଣର ବଶବର୍ତ୍ତୀ ହୋଇ ରହିଛୁ । ଚୀନର ମହାନ ସାଧକ କନ୍‌ଫୁସିଅସ୍ ତାଙ୍କ ନିଜ ଦେଶକୁ ଯେଉଁ ସତର୍କ-ବାଣୀ ଶୁଣାଇଥିଲେ, ତାହା ସ୍ମରଣୀୟ । ଯେଉଁମାନେ ଅତି ଦୈବୀପ୍ରକୃତି ସହିତ କାରବାର କରୁଛନ୍ତି ବୋଲି ଛଳନା କରନ୍ତି, ସେମାନଙ୍କ ସହିତ କୌଣସି ସମ୍ପର୍କ ରଖ ନାହିଁ; ତୁମେ ଯଦି ପ୍ରକୃତିର ବାହାର ଜିନିଷକୁ ଚୀନରେ ସ୍ଥାନ ଦିଅ, ତେବେ ଏହା ଫଳରେ ଭୀଷଣ ବିପଦ ଘଟିବ ।'' ଦୁର୍ଭାଗ୍ୟର କଥା, ଆମ ଦେଶରେ ଅନେକ ଲୋକ ମୁଣ୍ଡରେ ଏକ ଚୁଟି, ଜଟା, ଲମ୍ବା ଦାଢ଼ି, କପାଳରେ ଜଟିଳ ରେଖାଙ୍କନ କିମ୍ବା ଗେରୁଆ ଆବରଣ ପିନ୍ଧି ଅତି ଦୈବୀଶକ୍ତିର ପ୍ରତିନିଧି ରୂପେ ନିଜକୁ ଦେଖାଇ ହେଉଁ ଏବଂ ସାଧାରଣ ଲୋକଙ୍କୁ ପ୍ରତାରଣା କରୁ ।

କିନ୍ତୁ ତାର ସମସ୍ତ ପୁରାତନ କାଳର ହେତୁବାଦ ଓ ସଂସ୍କୃତି ସତ୍ତ୍ୱେ ଚୀନ ତାର ବର୍ତ୍ତମାନ ଉପରେ ଥିବା କର୍ତ୍ତୃତ୍ୱ ହରାଇଛି ଏବଂ ବିପଦବେଳେ ପୁରୁଣା ଅନୁଷ୍ଠାନ ସବୁ ତାକୁ କିଛି ସାହାଯ୍ୟ କରି ନାହାନ୍ତି । କାଳର ଗତି ଚୀନର ଅନେକ ସନ୍ତାନଙ୍କ ମଧ୍ୟରେ ଜୀବନୀ-ଶକ୍ତିର ପ୍ରବାହ କରିଛି ଏବଂ ଅନ୍ୟତ୍ର ଆଲୋକ ପକାଇବା ନିମନ୍ତେ ସେମାନେ ଲାଗିପଡ଼ି ଖୋଜିଛନ୍ତି । ସେମାନେ ବୃଦ୍ଧା ଡାଉଜେର ସାମ୍ରାଜ୍ଞୀଙ୍କୁ ସୁଦ୍ଧା ଅବଶ କରିଦେଲେ ଏବଂ ସେ ଶାସନ-ସଂସ୍କାର ଓ ସ୍ୱାୟତ୍ତ ଶାସନ ଦେବା କଥା କହିଲେ—ଅନ୍ୟଦେଶର ଶାସନ ବିଧାନ ଅଧ୍ୟୟନ କରିବା ନିମନ୍ତେ ବିଦେଶକୁ ଏକ କମିଶନ ପଠାଇଲେ ।

ବୃଦ୍ଧା ଡାଓଜେରଙ୍କ ଅଧୀନରେ ଶେଷରେ ଚୀନ ସରକାର ଗତି କଲା; କିନ୍ତୁ ଲୋକେ ଆହୁରି ଶୀଘ୍ର ଗତି କରୁଥିଲେ । ୧୮୯୪ରେ ଡକ୍‌ଟର ସନ୍ ୟାତ୍ ସେନ୍ ''ଚୀନ ପୁନରୁଦ୍ଧାର ସମିତି'' ସ୍ଥାପନ କରିଥିଲେ । ଯେଉଁ ସବୁ ଅନ୍ୟାୟ ଓ ଏକପାଖିଆ ଚୁକ୍ତି ସବୁ ବିଦେଶୀମାନେ ଚୀନକୁ ବାଧ୍ୟ କରି କରାଇଥିଲେ, ତାହାର ପ୍ରତିବାଦ ସ୍ୱରୂପ ଅନେକେ ଏଥିରେ ଯୋଗ ଦେଲେ । ଏହାକୁ ''ଅସମାନ ଚୁକ୍ତିସବୁ'' ବୋଲି ଚୀନାମାନେ କହନ୍ତି । ଏହି ସମିତି ବୃଦ୍ଧି ପାଇଲା ଏବଂ ଦେଶର ଯୁବକ ଏଥିପ୍ରତି ଆକୃଷ୍ଟ ହେଲେ । ୧୯୧୧ରେ ଏହାର ନାମ ବଦଳି କୋ-ମିନ୍-ଟାଙ୍ଗ୍ —''ଲୋକଙ୍କ ଜାତୀୟ ଦଳ''—ହେଲା ଏବଂ ଚୀନ ବିପ୍ଳବର କେନ୍ଦ୍ର ହେଲା । ଏହି ଆନ୍ଦୋଳନର ପ୍ରେରଣାଦାତା ଡାକ୍ତର ସନ୍ ନିଜର ଆଦର୍ଶରୂପେ ଆମେରିକା ପ୍ରତି ଦୃଷ୍ଟି ଫେରାଇଲେ । ସେ ଏକ ପ୍ରଜାତନ୍ତ୍ର ଚାହୁଁଥିଲେ, ଇଂଲଣ୍ଡ ପରି ଶାସନତାନ୍ତ୍ରିକ ରାଜା ନୁହେଁ

ଏବଂ ଛଷ୍ଟିନ୍ତରୂପେ ଜାପାନ ପରି ସମ୍ରାଟ ପୂଜା ଗ୍ରହଣ ନ ଥିଲେ । ଚୀନାମାନେ କେବେହେଲେ ସମ୍ରାଟମାନଙ୍କ ପୂଜା କରିନାହାନ୍ତି ଏବଂ ଆହୁରି ମଧ୍ୟ ଚୀନରେ ଶାସନ କରୁଥିବା ବଂଶମାନେ କେବେହେଁ ଚୀନର ଲୋକ ନ ଥିଲେ । ମଞ୍ଚୁ ବଂଶ ଥିଲା ଏବଂ ବହୁତ ମଞ୍ଚୁ ବିରୋଧୀ ଭାବ ବି ଥିଲା । ଲୋକଙ୍କ ଭିତରେ ଏହି ଆନ୍ଦୋଳନକୁ ହିଁ ଦେଖି ଡାଉଜେର ସାମ୍ରାଜ୍ଞୀ ବିଚଳିତ ହୋଇଗଲେ । କିନ୍ତୁ ଆଗାମୀ ଶାସନ ଯୋଜନା ବିଷୟ ଘୋଷଣା କରିବାର ଅଳ୍ପଦିନ ପରେ ଏହି ବୃଦ୍ଧା ନାରୀ ମରିଗଲେ । ଆଶ୍ଚର୍ଯ୍ୟ କଥା, ବୃଦ୍ଧା ଡାଉଜେର ଓ ତାଙ୍କ ପୂର୍ବରୁ ସମ୍ରାଟ ଯାହାଙ୍କୁ ସେ ସିଂହାସନଚ୍ୟୁତ କରିଥିଲେ ଦୁହେଁଯାକ ୧୯୦୮ ମସିହା ନଭେମ୍ବର ମାସରେ ୨୪ ଘଣ୍ଟା ଭିତରେ ମରିଥିଲେ । ଗୋଟିଏ ଶିଶୁ ଏବେ ନାମକୁ ମାତ୍ର ସମ୍ରାଟ ହେଲା ।

ପୁନର୍ବାର ପାର୍ଲିଆମେଣ୍ଟ ଆହ୍ୱାନ କରିବା ନିମନ୍ତେ ଉଚ୍ଚ ଚିତ୍କାର ହେଲା ଏବଂ ମଞ୍ଚୁ ବିରୋଧୀ ଓ ରାଜାବିରୋଧୀ ଭାବ ତେଜି ଉଠିଲା । ବିପ୍ଳବୀମାନେ ଶକ୍ତି ସଞ୍ଚୟ କଲେ । କେବଳ ଜଣେ ବଳବାନ୍ ଲୋକ ଏହାଙ୍କର ସମ୍ମୁଖୀନ ହୋଇ ପାରିଥାନ୍ତେ । ସେ ହେଉଛନ୍ତି ଏକ ପ୍ରଦେଶର ଭାଇସରୟ ୟୁଆନ୍ ସି କେ । ଏ ଜଣେ ପୁରୁଣା ଚତୁର ଲୋକ; କିନ୍ତୁ ଚୀନର ଏକମାତ୍ର ଆଧୁନିକ ଦକ୍ଷ ସେନା ବା "ଆଦର୍ଶ ସେନା"କୁ ସେ ଆୟତ୍ତ କରିଥିଲେ । ଅତି ନିର୍ବୋଧ ଭାବରେ ମଞ୍ଚୁ ଶାସକମାନେ ଉତ୍ତେଜିତ ହୋଇ ଯାଇ ୟୁଆନ୍‌ଙ୍କୁ ବରଖାସ୍ତ କରିଦେଲେ ଏବଂ ସେମାନଙ୍କୁ କଷ୍ଟକ୍ଷଣ ସକାଶେ ଯେଉଁ ଲୋକଟି ରକ୍ଷା କରି ପାରିଥାନ୍ତା, ତାକୁ ହରାଇଲେ । ୧୯୧୧ ଅକ୍ଟୋବରରେ ହ୍ୟାଙ୍କ୍‌ସେ ଉପତ୍ୟକାରେ ବିପ୍ଳବ ଆରମ୍ଭ ହେଲା ଏବଂ ଅଳ୍ପ ଦିନ ପରେ ମଧ୍ୟ ଓ ଦକ୍ଷିଣ ଚୀନରେ ଅନେକ ଅଞ୍ଚଳ ବିଦ୍ରୋହୀ ହୋଇଉଠିଲା । ୧୯୧୨ ବର୍ଷ ଆରମ୍ଭ ଦିନରେ ଏହିସବୁ ବିଦ୍ରୋହୀ ଦେଶଗୁଡ଼ିକ ନାନ୍‌କିଙ୍ଗ୍‌ରେ ରାଜଧାନୀ କରି ଏକ ପ୍ରଜାତନ୍ତ୍ର ଘୋଷଣା କଲେ । ଡାକ୍ତର ସନ୍‌ୟାତ୍ ସେନ୍ ଏହାର ସଭାପତି ବିଜ୍ଞ ହେଲେ ।

ଇତ୍ୟବସରେ ୟୁଆନ୍ ସି କେ ଏହି ସବୁ ନାଟକକୁ ଲକ୍ଷ୍ୟ କରି ନିଜର ସୁବିଧା ଦେଖି ପଦକ୍ଷେପ କାର୍ଯ୍ୟ କରିବାକୁ ପ୍ରସ୍ତୁତ ହୋଇ ଥାଆନ୍ତି । ରିଜେଣ୍ଟଙ୍କର (ସେ ତାଙ୍କ ପୁତ୍ର ଶିଶୁ ସମ୍ରାଟ ତରଫରୁ କାର୍ଯ୍ୟ କରୁଥାନ୍ତି ।) ୟୁଆନ୍‌ଙ୍କୁ ବରଖାସ୍ତ କରିବା ଓ ପୁଣି ତାକୁ ଫେରାଇ ଆଣିବା କାହାଣୀ ବଡ଼ ମଜାର କଥା । ପ୍ରାଚୀନ ଚୀନରେ ପ୍ରତ୍ୟେକ ଜିନିଷ ବଡ଼ ଭଦ୍ର ରୀତିରେ କରାଯାଏ । ୟୁଆନ୍‌ଙ୍କୁ ଯେତେବେଳେ ବରଖାସ୍ତ କରିବାର ହେଲା, ସେତେବେଳେ ତାଙ୍କ ଗୋଡ଼ ଖରାପ ଅଛି ବୋଲି କୁହାଗଲା । ଅବଶ୍ୟ ପ୍ରତ୍ୟେକ ଲୋକ ଜାଣନ୍ତି ଯେ ତାଙ୍କ ଗୋଡ଼ ଖୁବ୍ ଭଲ ଅବସ୍ଥାରେ ଥାଏ ଏବଂ ତାଙ୍କୁ ତଡ଼ିଦେବାର ଏହା ଏକ ସୁବିଧା ଉପାୟ; କିନ୍ତୁ ୟୁଆନ୍ ଏହାର ପ୍ରତିଶୋଧ ନେଲେ । ଦୁଇ ବର୍ଷ ପରେ ୧୯୧୦ରେ ଯେତେବେଳେ ସରକାର ବିରୁଦ୍ଧରେ ବିଦ୍ରୋହ ଜାଗି ଉଠିଲା, ସେତେବେଳେ ରିଜେଣ୍ଟ ଆତଙ୍କିତ ହୋଇ ୟୁଆନ୍‌ଙ୍କୁ ପୁଣି ଡକାଇ ପଠାଇଲା । ତାର ସର୍ତ୍ତ ପୂରଣ ନ ହେଲେ ୟୁଆନ୍‌ଙ୍କ ଯିବା ଲାଗି

ଇଚ୍ଛା ନ ଥିଲା । ସେ ଉତ୍ତରରେ ଦୁଃଖ ପ୍ରକାଶ କରି ରଜେଣ୍ଟଙ୍କୁ ଜଣାଇଲେ ଯେ ତାର ଗୋଡ଼ ଯାଆ ପାଇଁ ଉପଯୁକ୍ତ ନ ଥିବାରୁ ସେତେବେଳେ ସେ ଘର ଛାଡ଼ି ଆସିପାରିବେ ନାହିଁ । ମାସକ ପରେ ତାର ପତ୍ତି ଗ୍ରହଣ ହେଲା ପରେ ତାଙ୍କର ଗୋଡ଼ ପୁଣି ଅତି ଅପୂର୍ବ ବେଗରେ ଆରୋଗ୍ୟ ଲାଭ କରିଥିଲା ।

କିନ୍ତୁ ବିପ୍ଳବକୁ ରୋକିବା ବେଳ ବିଳମ୍ବ ହୋଇ ଯାଇଥିଲା ଏବଂ କୌଣସି ପକ୍ଷର ହୋଇ ନିଜ ଅବସ୍ଥା ଗୋଳମାଳିଆ କରିବା ନିମନ୍ତେ ୟୁଆନ୍ ଖେଳିକ ଖେଳିଲେ । ଶେଷରେ ସେ ମଞ୍ଚୁମାନଙ୍କୁ ସିଂହାସନ ଛାଡ଼ିବା ପାଇଁ ପରାମର୍ଶ ଦେଲେ । ଗୋଟାଏ ପ୍ରଜାତନ୍ତ୍ର ତାଙ୍କର ସମ୍ମୁଖୀନ ହେଉଥିଲା ବେଳେ ଏବଂ ନିଜ ସେନାପତି ତାଙ୍କୁ ଛାଡ଼ି ଚାଲିଯିବା ହେତୁ ମଞ୍ଚୁ-ଶାସକମାନଙ୍କ ପକ୍ଷରେ ଅନ୍ୟ ବାଟ ନ ଥିଲା । ୧୯୧୧ ଫେବୃୟାରୀ ୬ ତାରିଖରେ ସିଂହାସନ ତ୍ୟାଗର ଇସ୍ତାହାର ବାହାରିଲେ ଏବଂ ଅଢ଼େଇ ଶତାବ୍ଦୀର ସ୍ମରଣୀୟ ଶାସନ ପରେ ମଞ୍ଚୁ ବଂଶ ଏହିରୂପେ ଅନ୍ତର୍ଦ୍ଧାନ ହେଲା । ଚୀନ ଢଗ ଅନୁସାରେ "ସେମାନେ ବାଘ ଗର୍ଜନ କରି ଆସିଥିଲେ, ସାପ ଲାଙ୍ଗୁଡ଼ ପରି ଲୁଚିଗଲେ ।"

ସେହି ଦିନ ଫେବୃୟାରୀ ୧୨ ତାରିଖରେ ନୂତନ ପ୍ରଜାତନ୍ତ୍ରର ରାଜଧାନୀ ନାନ୍‌କିଙ୍ଗ୍‌ରେ ଓ ଯେଉଁ ସ୍ଥାନରେ ପ୍ରଥମ ମିଙ୍ଗ ଶାସକଙ୍କର କୀର୍ତ୍ତିସ୍ତମ୍ଭ ଥିଲା ସେଠାରେ ଏକ ଅଦ୍ଭୁତ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ବିରୋଧୀ ନୂତନ ଓ ପୁରାତନକୁ ଏକାଠି କରିବା ହୋଇଥିଲା । ପ୍ରଜାତନ୍ତ୍ର ସଭାପତି ସନ୍ ୟାତ୍ ସେନ୍ ନିଜର ମନ୍ତ୍ରିମଣ୍ଡଳ ନେଇ ସେହି କବର ନିକଟକୁ ଗଲେ ଓ ପୁରୁଣା ରୀତିରେ ଅର୍ଚ୍ଚନା କଲେ ଏବଂ କହିଲେ, "ପୂର୍ବ-ଏସିଆରେ ଆମେ ଏକ ପ୍ରଜାତାନ୍ତ୍ରିକ ରୀତିରେ ସରକାର ପ୍ରଚଳନ କରିବାକୁ ଯାଉଛୁ; ଯେଉଁମାନେ ଉଦ୍ୟମ କରନ୍ତି, ସେମାନେ ଶୀଘ୍ର ବା ପରେ ସଫଳ ହୁଅନ୍ତି, କିନ୍ତୁ ଯେ ଭଲ ସେ ଶେଷରେ ଅବଶ୍ୟ ପୁରସ୍କାର ପାଏ । ତେଣୁ ବିଜୟ ପାଇବା ବିଳମ୍ବ ହେଲା ବୋଲି ଆମେ ଆଜି କାହିଁକି ଦୁଃଖ କରିବା ।"

ନିର୍ବାସନ ଅବସ୍ଥାରେ ଓ ନିଜ ଦେଶରେ ଡାକ୍ତର ସନ୍ ଅନେକ ବର୍ଷ ପର୍ଯ୍ୟନ୍ତ ଚୀନର ସ୍ୱାଧୀନତା ପାଇଁ ଶ୍ରମ କରିଥିଲେ ଏବଂ ଶେଷକୁ ସଫଳତା ଅର୍ଜନ କଲା ପରି ବୋଧ ହେଲା; କିନ୍ତୁ ସ୍ୱାଧୀନତା ଏକ ଅନିଶ୍ଚିତ ବନ୍ଧୁ ଏବଂ ସଫଳତା ଆସିବା ପୂର୍ବରୁ ପୁରା ପାଉଣା ଦାବୀ କରେ; ବେଳେ ବେଳେ ଅଳୀକ ଆଶା ଦେଇ ଆମ ସହିତ ଉପହାସ କରେ ଏବଂ ଏହା ଲାଭ କରିବା ପୂର୍ବରୁ ଆମକୁ ଅନେକ ବିପଦରେ ପରୀକ୍ଷା କରେ । ଚୀନ ଓ ଡାକ୍ତର ସନ୍‌ଙ୍କ ଯାତ୍ରା, ଲକ୍ଷ୍ୟଠାରୁ ବହୁଦୂରରେ ଥିଲା । ଅନେକ ବର୍ଷ ପର୍ଯ୍ୟନ୍ତ ଏହି ଶିଶୁ ପ୍ରଜାତନ୍ତ୍ରକୁ ନିଜକୁ ବଞ୍ଚାଇ ରଖିବା ପାଇଁ ସଂଗ୍ରାମ କରିବାକୁ ପଡ଼ିଲା ଏବଂ ଆଜି ୬୧ ବର୍ଷ ପରେ ମଧ୍ୟ ଯେତେବେଳେ ଏହା ସାବାଳକ ହେବାର କଥା, ଚୀନର ଭବିଷ୍ୟତ ଦୋଳାୟମାନ ଅବସ୍ଥାରେ ରହିଛି ।

ମନ୍ତ୍ରୀମାନେ ଗାଦି ଛାଡ଼ିଲେ; କିନ୍ତୁ ତେବେ ସୁଦ୍ଧା ୟୁଆନ୍ ପ୍ରଜାତନ୍ତ୍ରକୁ ବାଧା ଦେଲେ ଏବଂ ସେ କିଣ କରିବେ କାହାକୁ ଜଣା ନ ଥିଲା । ସେ ଉତ୍ତର-ଦକ୍ଷିଣରେ ପ୍ରଜାତନ୍ତ୍ର ସବୁ ନିୟନ୍ତ୍ରଣ କଲେ । ଶାନ୍ତି ଲାଗି ଓ ଗୃହ-ବିବାଦ ଏଡ଼ିବା ପାଇଁ ଡାକ୍ତର ସନ୍ ନିଜକୁ ହଟାଇ ନେଲେ, ସଭାପତି ପଦରୁ ଅବସର ଗ୍ରହଣ କଲେ ଏବଂ ୟୁଆନ୍ ସି କେଙ୍କୁ ସଭାପତିରୂପେ ନିର୍ବାଚିତ କରାଇଲେ; କିନ୍ତୁ ୟୁଆନ୍ ପ୍ରଜାତନ୍ତ୍ରବାଦୀ ନ ଥିଲେ । ସେ ନିଜକୁ ଟେକିବା ନିମନ୍ତେ କ୍ଷମତାପ୍ରାପ୍ତିର ଆଶା ରଖିଥିଲେ । ଯେଉଁ ପ୍ରଜାତନ୍ତ୍ର ତାଙ୍କୁ ସଭାପତି କରି ସମ୍ମାନ ଦେଲା, ତାକୁ ହିଁ ଦବାଇବା ନିମନ୍ତେ ସେ ବିଦେଶୀ ଶକ୍ତିମାନଙ୍କଠାରୁ ଟଙ୍କା ଧାର କଲେ । ସେ ପାର୍ଲିଆମେଣ୍ଟକୁ ଡିସ୍‌ମିସ୍ କଲେ ଓ କୋ-ମିନ୍-ଟାଙ୍ଗକୁ ଭାଙ୍ଗି ଦେଲେ । ଏଥିରେ ବିବାଦ ହେଲା ଓ ପ୍ରତିଦ୍ୱନ୍ଦ୍ୱୀ ସରକାର ସ୍ଥାପିତ ହେଲା—ଏହା ଡାକ୍ତର ସନ୍‌ଙ୍କ ନେତୃତ୍ୱରେ ଦକ୍ଷିଣରେ ହେଲା । ଯେଉଁ ବିବାଦକୁ ନିଜର ସମସ୍ତ ଶକ୍ତି ଦେଇ ଏଡ଼ାଇବା ଲାଗି ଡାକ୍ତର ସନ୍ ଚେଷ୍ଟା କରିଥିଲେ, ଶେଷକୁ ତାହା ହିଁ ହେଲା ଏବଂ ପୃଥିବୀ-ଯୁଦ୍ଧ ଆରମ୍ଭ ବେଳକୁ ଚୀନରେ ଦୁଇଟି ସରକାର ଥିଲା । ୟୁଆନ୍ ସମ୍ରାଟ ହେବାକୁ ଇଚ୍ଛା କରିଥିଲେ; କିନ୍ତୁ ସେ ନିଷ୍ଫଳ ହେଲେ ଓ ଅଳ୍ପଦିନ ପରେ ମରିଗଲେ ।

# ୧୧୯ : ଦୂର ଭାରତ ଓ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ

ଡିସେମ୍ବର ୩୧, ୧୯୩୨

ଆମେ ସୁଦୂର ପ୍ରାଚ୍ୟ ସମ୍ବନ୍ଧରେ ଆଲୋଚନା କଲେ । ୧୯ଶ ଶତାବ୍ଦୀର ଭାରତ ଅବସ୍ଥା ବି କିଛି କିଛି ଜାଣିଲେ ଏବଂ ବର୍ତ୍ତମାନ ଆମର ଇଉରୋପ, ଆମେରିକା ଓ ଆଫ୍ରିକାକୁ ଯିବାର କଥା । କିନ୍ତୁ ଏହି ଦୀର୍ଘଯାତ୍ରାରେ ଯିବା ପୂର୍ବରୁ ଏସିଆର ଦକ୍ଷିଣ-ପୂର୍ବ କୋଣ ପ୍ରତି ଟିକିଏ ଦୃଷ୍ଟି ପକାଇବା ଏବଂ ଏ ସମ୍ବନ୍ଧରେ ଆମର ଜ୍ଞାନ ପୂରା କରିବା । ଆମେ ଅନେକ ଦିନ ପୂର୍ବେ ଏହିସବୁ ଦେଶ ସମ୍ବନ୍ଧରେ ଆଲୋଚନା କରିଥିଲେ । ପୂର୍ବ ଚିଠିମାନଙ୍କରେ ମୁଁ ଟିକିଏ ଅସ୍ପଷ୍ଟ ଭାବରେ ଓ ନାନାପ୍ରକାରେ ଏହା ଉଲ୍ଲେଖ କରିଥିଲି ଓ ସମ୍ଭବତଃ ଭୁଲବଶତଃ ମାଲୟେସିଆ, ଇଣ୍ଡୋନେସିଆ, ଇଷ୍ଟଇଣ୍ଡିଜ ଓ ସୁଦୂର ଭାରତ ବୋଲି ଲେଖିଥିଲି । ଏହିସବୁ ନାମ କହିଲେ ଯେ, ସବୁ ଅଞ୍ଚଳ ବୁଝାଉଛି କି ନାହିଁ ସେ ସମ୍ବନ୍ଧରେ ମୋର ସନ୍ଦେହ ଅଛି; କିନ୍ତୁ ଆମେ ଯଦି ପରସ୍ପର କଥା ବୁଝି ପାରୁଥିବା, ତେବେ ନାମରେ ଯାଏ ଆସେ କେତେ ?

ମାନଚିତ୍ର ଥିଲେ ଦେଖ । ଏସିଆର ଦକ୍ଷିଣ-ପୂର୍ବ ଦିଗକୁ ବର୍ମା ଓ ଶ୍ୟାମ ଅଞ୍ଚଳ ଦେଖିପାରିବୁ—ଫରାସୀ ଇଣ୍ଡୋଚାଇନା ମଧ୍ୟ ଅଛି । ବର୍ମା ଓ ଶ୍ୟାମ ଭିତରେ ପତଳା କିଭ

ପରି ଏକ ଭୂମି ବାହାରି ଯାଇଛି—ଏହା ମାଲୟ ପେନିନ୍‌ସୁଲା । ଶେଷ ଅଂଶକୁ ଏହା ମୋଟା ହୋଇଛି ଓ ଆଗକୁ ସିଙ୍ଗାପୁର ସହର ରହିଛି । ମାଲୟଠାରୁ ଅଷ୍ଟ୍ରେଲିୟା ପର୍ଯ୍ୟନ୍ତ ଗ୍ରେଟ ବଡ଼ ଅନେକ ଦ୍ୱୀପ ରହିଛି । ବିଚିତ୍ର ଆକୃତି ଏଗୁଡ଼ିକର । ଏସିଆ ଓ ଅଷ୍ଟ୍ରେଲିଆକୁ ଯୋଗ କରୁଥିବା ଏହା ଏକ ବିଶାଳ ପୋଲର ଧ୍ୱଂସାବଶେଷ ପରି ମନେ ହେବ । ଏହି ଦ୍ୱୀପପୁଞ୍ଜ ହେଉଛି, ଇଷ୍ଟଇଣ୍ଡିଜ୍ ଏବଂ ଉତ୍ତରକୁ ଅଛି ଫିଲିପାଇନ । ଆଜିକାଲିକା ମାନଚିତ୍ରରୁ ଦେଖି-ପାରିବୁ, ବର୍ମା ଓ ମାଲୟ ବ୍ରିଟିଶଙ୍କ ଅଧୀନରେ ଅଛି, ଇଣ୍ଡୋଚିନା ଫରାସୀ ଅଧୀନରେ ଏବଂ ଏହା ମଝିରେ ଶ୍ୟାମ ଏକ ସ୍ୱାଧୀନ ଦେଶ ହୋଇ ରହିଛି । ଇଷ୍ଟଇଣ୍ଡିଜ୍ ଅର୍ଥାତ୍ ସୁମାତ୍ରା, ଜାଭା ଓ ବୋର୍ଣ୍ଣିଓ ଅଧିକ ଅଞ୍ଚଳ । ଏଗୁଡ଼ିକ ସେଲିବସ୍ ଓ ମଲକ୍କା ଆଦି ମସଲା ପାଇଁ ପ୍ରସିଦ୍ଧ ଏବଂ ଇଉରୋପୀୟ ନାବିକମାନେ ହଜାର ହଜାର ମାଇଲ ବିପଦସଙ୍କୁଳ ସମୁଦ୍ର ଯାତ୍ରା କରି ଏଠିକି ଆକୃଷ୍ଟ ହୋଇ ଆସିଥିଲେ । ଏହା ଡଚ୍‌ମାନଙ୍କ ଅଧୀନରେ ଏବଂ ଫିଲିପାଇନ ଦ୍ୱୀପପୁଞ୍ଜ ଆମେରିକା ଅଧୀନରେ ଅଛି ।

ପୂର୍ବୀୟ ସାଗରରେ ଏହିସବୁ ଦେଶର ଅବସ୍ଥିତି ଏହିପରି; କିନ୍ତୁ ତୋର ମନେଥିବ, ମୁଁ କହିଛି, ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ଭାରତର ଲୋକେ ଏଠିକି ଯାଇ ଏଠାରେ ବସତି କରିଥିଲେ । ଏହିସବୁ ଦେଶରେ ଅନେକ କାଳ ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟସବୁ ରହିଲା; ଅପୂର୍ବ ପ୍ରାସାଦ ଓ ସୁନ୍ଦର ସହର ଗଢ଼ିଉଠିଲା; ବେପାର ଓ ବଣିଜ ଚାଲିଲା ଏବଂ ଭାରତୀୟ ଓ ଚୀନ ସଭ୍ୟତା ଏବଂ ସଂସ୍କୃତିର ସମ୍ମିଶ୍ରଣ ହେଲା ।

ମୋର ପୂର୍ବ ଚିଠିରେ ଏହିସବୁ ଦେଶ ସମ୍ବନ୍ଧରେ ଲେଖିଲାବେଳେ ପୂର୍ବ ପର୍ତ୍ତୁଗୀଜ ସାମ୍ରାଜ୍ୟର ପତନ ଏବଂ ବ୍ରିଟିଶ ଓ ଡଚ ଇଷ୍ଟ-ଇଣ୍ଡିଆ କମ୍ପାନୀମାନଙ୍କର ଉତ୍ଥାନ ବିଷୟରେ ମୁଁ କହିଥିଲି । ଫିଲିପାଇନରେ ତେବେ ସୁଦ୍ଧା ସ୍ପେନର ରାଜୁତି ଥିଲା ।

ବ୍ରିଟିଶ ଓ ଡଚ୍‌ମାନେ ପର୍ତ୍ତୁଗୀଜମାନଙ୍କୁ ତଡ଼ି ଦେବା ପାଇଁ ଓ ପରାସ୍ତ କରିବା ପାଇଁ ମିଳିତ ହେଲେ । ସେମାନେ କୃତକାର୍ଯ୍ୟ ହେଲେ; କିନ୍ତୁ ବିଜେତାମାନଙ୍କ ଭିତରେ ଭଲ ଭାବ ନ ଥିଲା ଓ ସେମାନେ ପରସ୍ପର ମଧ୍ୟରେ ବାରମ୍ବାର କଳହ କରୁଥିଲେ । ଥରେ ୧୬୨୩ ରେ ମଲ୍ଲୁକାସ୍ଥ ଆମ୍ବୋୟ୍ନାର ଡଚ୍ ଗଭର୍ଣ୍ଣର ଇଷ୍ଟଇଣ୍ଡିଆ କମ୍ପାନୀର ସବୁ ଇଂରେଜ କର୍ମଚାରୀଙ୍କୁ ଗିରଫ କଲେ ଏବଂ ଡଚ୍ ସରକାର ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି ବୋଲି ଫାଶୀ ଦେଲେ । ଏହି ଫାଶୀକୁ ଆମ୍ବୋୟ୍ନାର ନରହତ୍ୟା ବୋଲି କହନ୍ତି ।

ଗୋଟିଏ କଥା ତୋର ମନେରଖିବା ଦରକାର । ମୁଁ ଏ ବିଷୟରେ ଆଗ ଚିଠିମାନଙ୍କରେ କହିଛି । ଏହି ସମୟରେ ଅର୍ଥାତ୍ ୧୭ଶ ଶତାବ୍ଦୀ ଓ ତା ପରେ ଇଉରୋପ ଏକ ଶିଳ୍ପୋନ୍ନତ ଦେଶ ନ ଥିଲା । ରପ୍ତାନି ନିମନ୍ତେ ଏହା ବହୁ ପରିମାଣରେ କିଛି ମାଲ ଉତ୍ପନ୍ନ କରୁ ନ ଥିଲା । ବଡ଼ ମେସିନ ଓ ଶିଳ୍ପ ବିପ୍ଳବ ବହୁତ ଡେରି ଥିଲା । ଇଉରୋପ ଅପେକ୍ଷା ଏସିଆ ଅଧିକ ଜିନିଷ ତିଆରି କରିବା ଓ ରପ୍ତାନି କରିବା ଦେଶ ଥିଲା । ଏସିଆର

ମାଲସବୁ ଯେତେବେଳେ ଇଉରୋପକୁ ଯାଉଥିଲା, ସେତେବେଳେ ଇଉରୋପ ମାଲଦ୍ୱାରା ଓ ଆଂଶିକ ଭାବରେ ସ୍ପେନ୍ ଆମେରିକାରୁ ଯେଉଁ ସମ୍ପଦ ଆସିଲା, ସେଥିରୁ ଏହାର ମୂଲ୍ୟ ଦିଆଯାଉଥିଲା । ଇଉରୋପ ଓ ଏସିଆ ମଧ୍ୟରେ ଏହି ବେପାର ଲାଭଜନକ ଥିଲା । ପର୍ତ୍ତୁଗୀଜମାନେ ଦୀର୍ଘକାଳ ପର୍ଯ୍ୟନ୍ତ ଏହା ନିୟନ୍ତ୍ରଣ କରୁଥିଲେ ଏବଂ ଏଥିରେ ଧନୀ ପାଲଟିଲେ । ଏଥିରେ ଭାଗୀଦାର ହେବା ନିମନ୍ତେ ବ୍ରିଟିଶ ଓ ଡଚ୍ ଇଷ୍ଟଇଣ୍ଡିଆ କମ୍ପାନୀ ସବୁ ଗଢ଼ା ହେଲା; କିନ୍ତୁ ପର୍ତ୍ତୁଗୀଜମାନେ ଏହି ବେପାରକୁ ସେମାନଙ୍କର ବିଶେଷ ହାତର ପାଞ୍ଚ ବୋଲି ମନେ କରୁଥିଲେ ଏବଂ ଏଥିରେ କାହାରିକି ଭାଗ ଉଠେଇବାକୁ ଦେଉ ନ ଥିଲେ । ଫିଲିପାଇନ୍ ସ୍ପେନବାଲାଙ୍କ ସହ ତାଙ୍କର କିଛି ଅସୁବିଧା ପଡ଼ି ନ ଥିଲା । କାରଣ ସ୍ପେନବାସୀ ବେପାର ଅପେକ୍ଷା ଧର୍ମରେ ବେଶୀ ମନ ଦେଉଥିଲେ । ଦୁଇଟି ବେପାରୀ ସମିତି ତରଫରୁ ଡଚ୍ ଓ ଇଂରେଜମାନେ ଆସିଥିଲେ । ତାଙ୍କର ଧର୍ମ ସହିତ କୌଣସି ସମ୍ପର୍କ ନ ଥିଲା ଏବଂ ଅତିଶୀଘ୍ର ସଂଘର୍ଷ ଲାଗିଲା ।

ପୂର୍ବରେ ପର୍ତ୍ତୁଗୀଜମାନେ ଏକ ଶତାବ୍ଦୀ ଓ ଏକ କ୍ୱାର୍ଟରରୁ ଅଧିକ ସମୟ ଶାସନ କରୁଥିଲେ । ସେମାନେ ଲୋକଙ୍କ ଉପରେ ଶାସନ କରୁଥିଲେ, ଲୋକଙ୍କ ପାଖରେ ପ୍ରିୟ ନ ଥିଲେ ଏବଂ ସବୁଆଡ଼େ ଅସନ୍ତୋଷ ରହିଥିଲା । ଇଂଲଣ୍ଡ ଓ ହଲାଣ୍ଡର ଦୁଇ ବେପାରୀ କମ୍ପାନୀ ଏହି ଅସନ୍ତୋଷର ସୁଯୋଗ ଉଠାଇଲେ ଏବଂ ପର୍ତ୍ତୁଗୀଜମାନଙ୍କୁ ତଡ଼ିବା ନିମନ୍ତେ ସେମାନଙ୍କୁ ସାହାଯ୍ୟ କଲେ ଏବଂ ଅଳ୍ପ କେତେକ୍ଷଣ ପରେ ପର୍ତ୍ତୁଗୀଜମାନେ ଯେଉଁ ଦେଶ ଛାଡ଼ି ଆସିଲେ, ଏମାନେ ତାହା ଅଧିକାର କଲେ । ଭାରତ ଓ ଇଷ୍ଟ ଇଣ୍ଡିଜର ଶାସକରୂପେ ସେମାନେ ଅଧିକ ଟିକସ ଓ ଅନ୍ୟପ୍ରକାରେ ଲୋକଙ୍କଠାରୁ କର ଆଦାୟ କଲେ ଏବଂ ଇଉରୋପ ଉପରେ କୌଣସି ବଡ଼ ବୋଝ ନ ପକାଇ ବିଦେଶୀ ବାଣିଜ୍ୟ ଚଳାଇବାରେ ଏହା ତାଙ୍କୁ ବହୁତ ସାହାଯ୍ୟ କଲା । ପୂର୍ବ ଦେଶମାନଙ୍କରୁ ଆସୁଥିବା ଯେଉଁସବୁ ମାଲ ନିମନ୍ତେ ପୂର୍ବରୁ ଇଉରୋପକୁ ସେ ଦାମ ଦେବାରେ ହଇରାଣ ହେବାକୁ ପଡ଼ୁଥିଲା, ତାହା କମିଗଲା । ଏପରି କି ଆମେ ଦେଖିଛେ, ନିଷେଧାଜ୍ଞା ଓ ଅଧିକ ଶୁଳ୍କ ବସାଇ ଭାରତୀୟ ଜିନିଷ ଆସିବା ବନ୍ଦ କରିବା ନିମନ୍ତେ ଇଂଲଣ୍ଡ ଚେଷ୍ଟା କରିଥିଲା । ଶିଳ୍ପ-ବିପ୍ଳବ ଆଗମନ ପର୍ଯ୍ୟନ୍ତ ଏହିପରି ଅବସ୍ଥା ଥିଲା ।

ଇଷ୍ଟ ଇଣ୍ଡିଜ୍‌ରେ ଡଚ୍ ଓ ବ୍ରିଟିଶଙ୍କ ମଧ୍ୟରେ ସଂଘର୍ଷ ବେଶିଦିନ ରହି ନ ଥିଲା; କାରଣ ବ୍ରିଟିଶ ଏଠୁ ଚାଲି ଆସିଲେ । ସେମାନେ ଭାରତରେ ପ୍ରବେଶ କରିବା ଆରମ୍ଭ କରିଥାନ୍ତି ଓ ସେଥିରେ ବ୍ୟସ୍ତ ରହିଥାନ୍ତି; ତେଣୁ ଏହି ଇଷ୍ଟଇଣ୍ଡିଆ ଦ୍ୱୀପପୁଞ୍ଜ, ସମ୍ପୂର୍ଣ୍ଣରୂପେ ଡଚ୍ ଇଷ୍ଟଇଣ୍ଡିଆ କମ୍ପାନୀ ଅଧୀନରେ ରହିଲା-କେବଳ ଫିଲିପାଇନ ସ୍ପେନ ଅଧୀନରେ ଥିଲା । ସ୍ପେନୀୟମାନେ ବେପାର ପ୍ରତି ବେଶି ଦୃଷ୍ଟି ଦେଉ ନ ଥିବାରୁ ଏବଂ ଆଉ ଅନ୍ୟ ଅଞ୍ଚଳ ଦଖଲ କରିବା ନିମନ୍ତେ ଚେଷ୍ଟା ନ କରୁଥିବାରୁ ଏହି ଅଞ୍ଚଳରେ ଡଚ୍‌ମାନଙ୍କର ଆଉ କେହି ପ୍ରତିଦ୍ୱନ୍ଦ୍ୱୀ ରହିଲେ ନାହିଁ ।

ଭାରତରେ ବ୍ରିଟିଶ କମ୍ପାନୀ ପରି ଏହି ଡଚ୍ ଇଷ୍ଟ ଇଣ୍ଡିଆ କମ୍ପାନୀ ଯଥାସମ୍ଭବ ଧନ କମାଇବାରେ ଲାଗିଗଲା । ୧୫୦ ବର୍ଷ ପର୍ଯ୍ୟନ୍ତ ଏହି ବେପାରୀ କମ୍ପାନୀ ଏହି ଦ୍ୱୀପପୁଞ୍ଜରେ ରାଜୁତି କଲା । ସେମାନେ ଲୋକମାନଙ୍କ ମଙ୍ଗଳ ପ୍ରତି ଟିକିଏ ହେଲେ ଦୃଷ୍ଟି ଦେଇ ନ ଥିଲେ । ସେମାନେ ତାଙ୍କ ଉପରେ ଅତ୍ୟାଚାର କଲେ ଓ ଯେତେ ପାରନ୍ତି କର ସେମାନଙ୍କଠାରୁ ଆଦାୟ କଲେ । ଯେତେବେଳେ କର ନେଇ ଧନ କମାଇବା ସହଜ ହୋଇପଡ଼ିଲା, ସେତେବେଳେ ବେପାରକୁ ପ୍ରଥମ ସ୍ଥାନ ଦିଆଗଲା ନାହିଁ ଏବଂ ତାହା କ୍ରମେ ହ୍ରାସ ଲଭିଲା । ଏହା ସମ୍ପୂର୍ଣ୍ଣ ଭାବରେ ଅକ୍ଷମ ଥିଲା ଏବଂ ଭାରତରେ ବ୍ରିଟିଶ କମ୍ପାନୀରେ ଏଜେଣ୍ଟ ବା ଚାକର ରୂପେ କାର୍ଯ୍ୟ କରିବା ନିମନ୍ତେ ଯେପରି ଧରମଛଡ଼ା ବେପରୁଆ ଲୋକସବୁ ଆସିଥିଲେ, ସେଥିରେ ଯେଉଁ ଡଚ୍ ଲୋକେ ଚାକରି କରିବାକୁ ଆସିଲେ, ସେମାନେ ଠିକ୍ ସେହିପରି । ଖରାପ ବା ଭଲ ଯେ ପ୍ରକାରେ ହେଉ, ଧନ କମାଇବା ତାଙ୍କର ପ୍ରଧାନ କାମ ହେଲା । ଭାରତର ସମ୍ପଦ ବହୁତ ବେଶି ଥିଲା ଏବଂ ଭଲ ଭାବରେ ନ ଚଲାଇ ପାରିଲେ ତାହା ଘୋଡ଼ାଇ ହୋଇ ପଡ଼ୁଥିଲା; ଆହୁରି ମଧ୍ୟ ଭାରତରେ ଉପରେ କେତେକ ଦକ୍ଷ ବ୍ରିଟିଶ ଗଭର୍ଣ୍ଣର ଶାସନକୁ କାର୍ଯ୍ୟକ୍ଷମ କରିଦେଲେ । ଯଦିଓ ତଳେ ଲୋକେ ଦବିଗଲେ; କିନ୍ତୁ ତୋର ମନେଥିବ, '୮୫୭ର ପ୍ରବଳ ବିଦ୍ରୋହରେ ବ୍ରିଟିଶ ଇଷ୍ଟଇଣ୍ଡିଆ କମ୍ପାନୀ ଶେଷ ପାଇଗଲା ।

ଡଚ୍ ଇଷ୍ଟ ଇଣ୍ଡିଆ କମ୍ପାନୀ ଦିନକୁଦିନ ଖରାପ ହେଲା ଏବଂ ଶେଷରେ ୧୭୯୮ରେ ନେଦରଲଣ୍ଡସ୍ ସରକାର ପୂର୍ବୀୟ ଦ୍ୱୀପପୁଞ୍ଜର ପରିଚାଳନା ନିଜ ହାତକୁ ନେଲେ । ଅଳ୍ପ କେତେକ ଦିନ ପରେ ଇଉରୋପରେ ନେପୋଲିୟନ ଅମଳର ଯୁଦ୍ଧ ଲାଗିଲା ଏବଂ ନେପୋଲି-ୟନଙ୍କ ସାମ୍ରାଜ୍ୟରେ ହଲଣ୍ଡ ଅନ୍ତର୍ଭୁକ୍ତ ହେବାରୁ ଇଂରେଜ ସରକାର ଏହିସବୁ ଦ୍ୱୀପପୁଞ୍ଜ ଦଖଲ କଲା । ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଏଗୁଡ଼ିକ ବ୍ରିଟିଶ ଭାରତର ପ୍ରଦେଶରୂପେ ବିବେଚିତ ହେଲା ଏବଂ ଏହି ସମୟ ଭିତରେ ଖୁବ୍ ସଂସ୍କାର ହୋଇଥିଲା । ନେପୋଲିୟନଙ୍କ ପତନ ପରେ ଇଷ୍ଟଇଣ୍ଡିଜ୍ ହଲଣ୍ଡକୁ ଫେରାଇ ଦିଆଗଲା । ଯେଉଁ ପାଞ୍ଚ ବର୍ଷ ଜାଭା ବ୍ରିଟିଶ ଭାରତୀୟ ସରକାର ସହିତ ସଂଯୁକ୍ତ ହୋଇ ରହିଥିଲା, ସେତେବେଳେ ଜଣେ ଦକ୍ଷ ଇଂରେଜ ଥମାସ୍ ଷ୍ଟାମଫୋର୍ଡ ରାଫଲ୍ସ ଜାଭାର ଲେଫ୍ଟେନାଣ୍ଟ ଗଭର୍ଣ୍ଣର ରୂପେ କାର୍ଯ୍ୟ କରିଥିଲେ । ରାଫଲ୍ସ ଡଚ୍ ଔପନିବେଶିକ ଶାସନ ସମ୍ବନ୍ଧରେ ଲେଖି କହିଛନ୍ତି—ଏହାର ଇତିହାସ ହେଉଛି, "ଏକ ଅସାଧାରଣ ବିଶ୍ୱାସଘାତକତା, ଲାଞ୍ଚ, ନରହତ୍ୟା ଓ ନୀଚତାର କାହାଣୀ ।" ଅନେକ ଦୋଷ ଥିଲା—ସେଥିରୁ ଗୋଟିଏ ହେଉଛି ଡଚ୍ କର୍ମଚାରୀମାନେ ଜାଭାରେ ଦାସରୂପେ ବ୍ୟବହାର କରିବା ନିମନ୍ତେ ସେଲିବିସ୍ ଦ୍ୱୀପରୁ ଅଗଣିତ ବହୁସଂଖ୍ୟକ ଲୋକ ହରଣଚାଲି କରି ନେଇ ଯାଉଥିଲେ । ଏପରି ଲୁଚାଇ ନେବାବେଳେ ସାଧାରଣତଃ ଧ୍ୱଂସ ଓ ହତ୍ୟା ହେଉଥିଲା ।

ନେଦରଲଣ୍ଡସ୍‌ର ପ୍ରତ୍ୟକ୍ଷ ଶାସନ କମ୍ପାନୀ ଅପେକ୍ଷା କିଛି ଭଲ ନ ଥିଲା । କେତେକ ପରିମାଣରେ ଏହା ଲୋକଙ୍କ ପ୍ରତି ଅଧିକ ଅତ୍ୟାଚାରୀ ହୋଇଥିଲା । ବଙ୍ଗଳାରେ ନୀଳ ଚାଷ

ଫଳରେ କୃଷୀଙ୍କ ଦୁର୍ଦ୍ଦଶା ସମ୍ବନ୍ଧରେ ମୁଁ ଯାହା କହିଥିଲି, ସମ୍ଭବତଃ ତୋର ମନେଥିବ । ଏହି ପ୍ରଥା ପରି, ଏପରି କି ତାଠାରୁ ଅଧିକ ଖରାପ ପ୍ରଥା ଜାଭା ଓ ଅନ୍ୟ ସ୍ଥାନମାନଙ୍କରେ ପ୍ରଚଳନ କରାଗଲା । କମ୍ପାନୀ ଅମଳରେ ଲୋକଙ୍କୁ ଜିନିଷ ଯୋଗାଇବାକୁ ପଡୁଥିଲା । ଏବେ ଯେଉଁ ପ୍ରଥା ଚଳିଲା, ତାକୁ 'ସଂସ୍କୃତ ପ୍ରଥା' (Cultured system) କୁହାଯାଉଥିଲା । ଏହାଦ୍ୱାରା ବର୍ଷକରେ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବା ନିମନ୍ତେ ସେମାନଙ୍କୁ ବାଧ୍ୟ କରାଯାଉଥିଲା । କୃଷୀର କୃଷି କାମରେ ନିଯୁକ୍ତ ସମୟରୁ ଏକଚତୁର୍ଥାଂଶ ବା ତିନି ଭାଗରୁ ଭାଗେ ଏଥିରେ ବିତୁଥିଲା । ଅନେକ ସମୟରେ କୃଷୀର ସମସ୍ତ ସମୟ ଏଥିରେ ଖଟାଇ ଦେଉଥିଲେ । ଡଚ୍ ସରକାର କଣ୍ଟ୍ରାକ୍ଟରଙ୍କ ଦ୍ୱାରା କାର୍ଯ୍ୟ କରୁଥିଲା । ବିନା ସୁଧରେ ସରକାର ଏମାନଙ୍କୁ ଟଙ୍କା ଅଗ୍ରିମ ଦେଉଥିଲେ । ଏହି କଣ୍ଟ୍ରାକ୍ଟରମାନେ ବେଠି ସାହାଯ୍ୟରେ ଜମି ସବୁ ଉପଯୋଗୀ କଲେ । ଜମିରୁ ଉତ୍ପନ୍ନ ବଣ୍ଟାହୁଏ । କେତେକ ନିର୍ଦ୍ଦିଷ୍ଟ ପରିମାଣରେ ସରକାରଙ୍କ କଣ୍ଟ୍ରାକ୍ଟର ଓ କୃଷୀ ଭିତରେ ଏହା ବଣ୍ଟାଯାଏ । ସମ୍ଭବତଃ ସବୁଠାରୁ ଅଳ୍ପ ଅଂଶ ଯାଏ ଗରିବ କୃଷୀ । ଏହା ପ୍ରକୃତରେ କେତେ ମୋଟେ ଜଣା ନାହିଁ । ସରକାର ବି ଆହୁରି ଧାର୍ଯ୍ୟ କରିଦେଲା ଯେ ଇଉରୋପରେ ଆବଶ୍ୟକ ହେଉଥିବା କେତେକ ଜିନିଷ ମଧ୍ୟ ଏହି ଜମିରେ କେତେକାଂଶରେ ଉତ୍ପନ୍ନ କରିବାକୁ ହେବ । ଏହା ସବୁ ହେଉଛି ଚ୍ହ, କଫି, ଚିନି, ନୀଳ ଇତ୍ୟାଦି । ଅନ୍ୟ କୃଷିରେ ବେଶୀ ଲାଭ ହେଲେ ସୁଦ୍ଧା ବଙ୍ଗଳାର ନୀଳ-କୃଷୀଙ୍କ ପରି ଏମାନଙ୍କୁ ଏହିସବୁ କୃଷି କରିବା ନିମନ୍ତେ ବାଧ୍ୟ କରାଗଲା ।

ଡଚ୍ ସରକାର ପ୍ରଚୁର ଲାଭ କଲା; କଣ୍ଟ୍ରାକ୍ଟରମାନେ ଧନୀ ହେଲେ, କୃଷୀ ଖାଇବାକୁ ନ ପାଇ ତାର ଦୁର୍ଦ୍ଦଶା ବଢ଼ିଲା । ୧୯ଶ ଶତାବ୍ଦୀର ମଧ୍ୟଭାଗରେ ଭୀଷଣ ଦୁର୍ଭିକ୍ଷ ପଡ଼ିଲା ଏବଂ ବହୁସଂଖ୍ୟକ ଲୋକ ମଲେ । ସେତେବେଳେ ଯାଇ ଅଭାଗା କୃଷୀଙ୍କ ପାଇଁ କିଛି କରିସିବାର ଆବଶ୍ୟକତା ବୋଧ କରାଗଲା । କ୍ରମେ ତାର ଅବସ୍ଥା ଭଲ ଆଡ଼କୁ ଆସିଲା; କିନ୍ତୁ ଏପରି କି ୧୯୧୬ ପର୍ଯ୍ୟନ୍ତ ସେଠି ବେଠି ପ୍ରଥା ଥିଲା ।

୧୯ଶ ଶତାବ୍ଦୀର ଶେଷାର୍ଦ୍ଧକୁ ଡଚମାନେ ଶିକ୍ଷା ଓ ଅନ୍ୟାନ୍ୟ ସଂସ୍କାର ପ୍ରବର୍ତ୍ତନ କଲେ । ଏକ ନୂତନ ମଧ୍ୟବିତ୍ତ ଶ୍ରେଣୀ ଗଢ଼ି ଉଠିଲା ଏବଂ ଜାତୀୟ ଆନ୍ଦୋଳନ ହୋଇ ସ୍ୱାଧୀନତା ଦାବୀ କରାଗଲା । ଭାରତ ପରି ସେଠି ଖୁବ୍ ଆସ୍ତେ ଆସ୍ତେ ପରିବର୍ତ୍ତନ ହୋଇଛି ଏବଂ ପ୍ରାୟ କୌଣସି ପ୍ରକୃତ କ୍ଷମତା ନ ଥାଇ ଶକ୍ତିହୀନ ଆସେମ୍ବ୍ଲି ସ୍ଥାପନ କରାଯାଇଛି । ପ୍ରାୟ ପାଞ୍ଚ ବର୍ଷ ପୂର୍ବେ ଡଚ୍ ଇଷ୍ଟ ଇଣ୍ଡିଜରେ ଗୋଟିଏ ବିପ୍ଳବ ହୋଇଥିଲା; କିନ୍ତୁ ଅତି ନିଷ୍ଠୁରତା ସହ ତାହା ଦମନ କରି ଦିଆଗଲା । କିନ୍ତୁ ଜାଭା ଓ ଅନ୍ୟ ଦ୍ୱୀପମାନଙ୍କରେ ସ୍ୱାଧୀନତା ଭାବକୁ କୌଣସି ନିଷ୍ଠୁରତା ବା ଅତ୍ୟାଚାର ମାରି ପାରି ନାହିଁ ।

ଡଚ୍ ଇଷ୍ଟ ଇଣ୍ଡିଜ୍‌କୁ ନେଦର ଲାଣ୍ଡସ୍ ଇଣ୍ଡିଆ ବୋଲି କହନ୍ତି । ପ୍ରତି ୧୫ ଦିନରେ ଇଉରୋପ-ଏସିଆ ପାର ହୋଇ ଜାଭାରେ ବାଟେଭିଆ ସହରକୁ ହଲାଣ୍ଡର ଉଡ଼ାଜାହାଜ ଯାଏ ।

ମୁଁ ଇଷ୍ଟଇଣ୍ଡିଆନ୍ ଦ୍ୱୀପପୁଞ୍ଜର କାହାଣୀ ଶେଷ କରିଛି ଏବଂ ମୁଁ ଏବେ ଏସିଆ ଦେଶକୁ ପାରି ହେବାକୁ ଚାହେଁ । ବର୍ମା ସମ୍ବନ୍ଧରେ ଆଉ ଅଧିକ କହିବାର କିଛି ନାହିଁ । ଏହି ଦେଶ ପ୍ରାୟ ଉତ୍ତର ଓ ଦକ୍ଷିଣ ଦୁଇ ଭାଗରେ ବିଭକ୍ତ ହୋଇ ପରସ୍ପର ଭିତରେ ଯୁଦ୍ଧ ଲାଗିଥିଲା । ବେଳେ ବେଳେ କୌଣସି ପ୍ରଭାବଶାଳୀ ରାଜା ଏ ଦୁହିଁଙ୍କୁ ମିଶାଇ ପଡ଼ୋଶୀ ଶ୍ୟାମ ଦେଶକୁ ଜୟ କରିବା ନିମନ୍ତେ ସାହସ କରନ୍ତି । ତା'ପରେ ୧୯ଶ ଶତାବ୍ଦୀର ବ୍ରିଟିଶ ସହ ସଂଘର୍ଷ ଲାଗିଲା । ବର୍ମା ରାଜା ନିଜ ଶକ୍ତିରେ ଅଧିକ ବିଶ୍ୱାସ କରି ଆସାମ ଆକ୍ରମଣ କରି ତାହା ନିଜ ରାଜ୍ୟରେ ମିଶାଇନେଲେ । ୧୮୨୪ରେ ଭାରତରେ ବ୍ରିଟିଶଙ୍କ ସହ ପ୍ରଥମ ବର୍ମା ଯୁଦ୍ଧରେ ଆସାମ ବ୍ରିଟିଶଙ୍କ ହାତକୁ ଗଲା । ବ୍ରିଟିଶ ଏବେ ଜାଣିପାରିଲେ ଯେ ବର୍ମା ସରକାର ଓ ତାର ସୈନ୍ୟ ବଡ଼ ଦୁର୍ବଳ; ତେଣୁ ସମସ୍ତ ଦେଶ ସଂଯୋଗ କରିବାର ପ୍ରବୃତ୍ତି ଜାଗ୍ରତ ହେଲା । ଅତି ମାମୁଲି ପେଖନାସବୁ ବାହାର କରି ଦ୍ୱିତୀୟ ବର୍ମା ଯୁଦ୍ଧ ଲାଗିଲା ଏବଂ ୧୮୮୫ରେ ସମସ୍ତ ରାଜ୍ୟ ଭାରତରେ ଯୋଗ କରି ଦିଆଗଲା ଓ ବ୍ରିଟିଶ-ଭାରତ ସାମ୍ରାଜ୍ୟ ଅଂଶଭୁକ୍ତ ହେଲା । ସେହି ଦିନଠାରୁ ଭାରତ ସହିତ ବର୍ମାର ଭାଗ୍ୟ ବନ୍ଧା ହୋଇ ରହିଛି ।

ବର୍ମା ଦକ୍ଷିଣରେ ବ୍ରିଟିଶ ମଧ୍ୟ-ମାଳୟ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ସେମାନେ ୧୯ଶ ଶତାବ୍ଦୀର ପ୍ରଥମ ଭାଗରେ ସିଙ୍ଗାପୁର ଦ୍ୱୀପ ଦଖଲ କଲେ ଏବଂ ଏହାର ସୁଅବସ୍ଥିତି ନିମନ୍ତେ ଅତି ଶୀଘ୍ର ଏହା ଏକ ବାଣିଜ୍ୟ ସହର ହୋଇ ଉଠିଲା ଏବଂ ସୁଦୂର ପ୍ରାଚ୍ୟକୁ ଯାଉଥିବା ସମସ୍ତ ଜାହାଜର ଏହା ବିଶ୍ରାମ ବନ୍ଦର ହେଲା । ଏହି ଦ୍ୱୀପପୁଞ୍ଜର ଅଧିକ ଉନ୍ନତିରେ ପୁରୁଣା ମଲକ୍କା ବନ୍ଦରର ପତନ ହେଲା । ସିଙ୍ଗାପୁରରୁ ବ୍ରିଟିଶ ଉତ୍ତର ଆଡ଼େ ମାଡ଼ିବାକୁ ଲାଗିଲେ । ମାଳୟରେ ଅନେକ ଷ୍ଟେଟ ରାଜ୍ୟ ଥିଲା—ଏଥିରୁ ଅଧିକାଂଶ ଶ୍ୟାମର କରଦ ରାଜ୍ୟ । ଏହି ଶତାବ୍ଦୀ ଶେଷବେଳକୁ ଏହିସବୁ ରାଜ୍ୟ ବ୍ରିଟିଶ ସଂରକ୍ଷିତା (ପ୍ରୋଟେକ୍ଟରେଟ୍) ହେଲା ଏବଂ ସେଗୁଡ଼ିକ ଏକ ପ୍ରକାର ରାଷ୍ଟ୍ରସଂଘରେ ଏକାଠି ହେଲା । ଏହାକୁ "ସଂଯୁକ୍ତ ମାଳୟ ରାଜ୍ୟ" ବୋଲି କହନ୍ତି । ଏଥିରୁ କେତେକ ରାଜ୍ୟରେ ଶ୍ୟାମର ଯାହା ଅଧିକାର ଥିଲା, ତାହା ତାକୁ ଇଂଲଣ୍ଡକୁ ଦେଇ ଦେବାକୁ ପଡ଼ିଲା ।

ଏହିରୂପେ ଇଉରୋପୀୟ ଶକ୍ତିମାନେ ଶ୍ୟାମକୁ ଘେରି ରହିଲେ । ପଶ୍ଚିମ ଓ ଦକ୍ଷିଣରେ ବର୍ମା ଓ ମାଳୟରେ ଇଂଲଣ୍ଡ ସର୍ବେସର୍ବା ହେଲା; ପୂର୍ବରେ ଫ୍ରାନ୍ସ ଉଭା ହୋଇ ଆନାମ ଦଖଲ କରୁଥିଲା । ଆନାମ ଚୀନର କର୍ତ୍ତୃତ୍ୱ ସ୍ୱୀକାର କଲା; କିନ୍ତୁ ଚୀନ ଆପେ ଦୁଇରାଣରେ ପଡ଼ିଥିବା ଅବସ୍ଥାରେ ଏଥିରେ କିଛି ଲାଭ ହେଲା ନାହିଁ । ମୋର ଚୀନ ସମ୍ପର୍କରେ ଲେଖା ହୋଇଥିବା ଏକ ଚିଠିରେ ଆନାମ୍ ଉପରେ ଫରାସୀ ଆକ୍ରମଣ ସମ୍ବନ୍ଧରେ ଫ୍ରାନ୍ସ ଓ ଚୀନ ଭିତରେ ଲଢ଼ାଇ କଥା ମୁଁ ତତେ କହିଥିଲି, ତୋର ମନେ ଥିବ । ଫ୍ରାନ୍ସକୁ ଟିକିଏ ରୋକିଲେ; କିନ୍ତୁ ତାହା ଅଳ୍ପ କ୍ଷଣ ପାଇଁ । ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଆନାମ୍ ଓ କାମ୍ବୋଡ଼ିଆ ସମେତ ଏକ ଫରାସୀ ଇଣ୍ଡୋଚାଇନା ନାମକ ବୃହତ୍ ଉପନିବେଶ ଫ୍ରାନ୍ସ

ସ୍ଥାପନା କଲା । କାମ୍ବୋଡ଼ିଆରେ ପୂର୍ବକାଳରେ ଆଙ୍କୋରର ସମ୍ରାଟ ଧନୀ ହୋଇଥିଲେ— ଏହା ଶ୍ୟାମର ଅଧୀନ ରାଜ୍ୟ ଥିଲା । ଶ୍ୟାମକୁ ଯୁଦ୍ଧ ଧମକ ଦେଇ ଫ୍ରାନ୍‌ସ ଏହା ଉପରେ ନିଜର କର୍ତ୍ତୃତ୍ୱ ବିସ୍ତାର କଲା । ଫରାସୀ ପାଦ୍ରୀମାନଙ୍କ ଜରିଆରେ ଫରାସୀମାନେ ଏହିସବୁ ଦେଶରେ କିପରି କୁଚକ୍ର କରିଥିଲେ, ଏହା ଲକ୍ଷ୍ୟ କରିବା କଥା । କୌଣସି ଏକ କାରଣରୁ ଏହି ପାଦ୍ରୀଙ୍କ ଭିତରୁ ଜଣେ ମୃତ୍ୟୁଦଣ୍ଡ ପାଇଲା ଏବଂ ଏହାର ପ୍ରତିଶୋଧ ନେବା କ୍ରମରେ ୧୮୫୭ରେ ପ୍ରଥମ ଫରାସୀ ଅଭିଯାନ ଆରମ୍ଭ ହେଲା । ଏହି ଅଭିଯାନରେ ଦକ୍ଷିଣରେ ସାଇଗନ ବନ୍ଦର ଅଧିକାର କଲା ଏବଂ ସେଠୁ ଫରାସୀ କର୍ତ୍ତୃତ୍ୱ ଉତ୍ତରକୁ ବ୍ୟାପିଲା ।

ଏସିଆସ୍ଥ ଦେଶମାନଙ୍କରେ ସାମ୍ରାଜ୍ୟବାଦୀ ଆକ୍ରମଣର କାହାଣୀ ବାରମ୍ବାର ବର୍ଣ୍ଣିତ ହୋଇଯାଇଛି ବୋଲି ମୋର ଆଶଙ୍କା ହେଉଛି । ପ୍ରାୟ ଅଧିକେ ସବୁଠି ଏକା ବ୍ୟବହାର ହୋଇଥିଲା ଏବଂ ପ୍ରାୟ ପ୍ରତ୍ୟେକ ସ୍ଥାନରେ ସେମାନେ ସଫଳ ହେଲେ । ମୁଁ ଦେଶ ପରେ ଦେଶ ବିଷୟ ବର୍ଣ୍ଣନା କରିଛି ଏବଂ କାହାଣୀ ଶେଷ ହେଲା ବେଳକୁ ଦେଖଯାଏ ଯେ, ଦେଶ କୌଣସି ନା କୌଣସି ଇଉରୋପୀୟ ଶକ୍ତି ଅଧୀନରେ ରହିଯାଇଛି । ଦକ୍ଷିଣ-ପୂର୍ବ ଏସିଆର ଗୋଟିଏ ଦେଶ ଏଥିରୁ ରକ୍ଷା ପାଇଲା—ତାହା ହେଉଛି ଶ୍ୟାମ ।

ଶ୍ୟାମ ଦେଶର କପାଳ ଭଲ, ସେ ରକ୍ଷା ପାଇଲା । ବର୍ମାରେ ଇଂଲଣ୍ଡ ଓ ଇଣ୍ଡୋଚୀନାରେ ଫ୍ରାନ୍‌ସ ମଝିରେ ତାହା ଅବସ୍ଥିତ । ବୋଧହୁଏ ଏହି ଇଉରୋପୀୟ ପ୍ରତିଦ୍ୱନ୍ଦ୍ୱୀମାନେ ତାର ଦକ୍ଷିଣ ଓ ବାମ ଦିଗରେ ଥିବାରୁ ସେ ରକ୍ଷା ପାଇଗଲା । ତାର ଭଲ ଭାଗ୍ୟ ଯେ ତାକୁ ଗୋଟିଏ ଭଲ ସରକାର ଗ୍ରହଣ କଲା ଏବଂ ଅନ୍ୟ ଦେଶମାନଙ୍କ ପରି ଏଠି କୌଣସି ଆଭ୍ୟନ୍ତରୀଣ ଗଣ୍ଡଗୋଳ ନ ଥିଲା; କିନ୍ତୁ ଭଲ ସରକାର ହେଲେ ଯେ ବିଦେଶୀ ଆକ୍ରମଣ ହେବ ନାହିଁ, ଏପରି କିଛି କଥା ନୁହେଁ । ଏପରି ହେଲା ଯେ, ଭାରତ ଓ ବର୍ମାରେ ଇଂଲଣ୍ଡ ଏବଂ ଇଣ୍ଡୋଚୀନାରେ ଫ୍ରାନ୍‌ସ ବ୍ୟସ୍ତ ଥିଲା । ୧୯ଶ ଶତାବ୍ଦୀର ଶେଷ ବେଳକୁ ଏହି ଉଭୟ ଶକ୍ତି ଶ୍ୟାମ ସୀମାନ୍ତରେ ପହଞ୍ଚିଲା ବେଳକୁ ସୁଯୋଗ କରିବା କାଳ ଶେଷ ପାଇ ଯାଇଥିଲା । ପୂର୍ବରେ ପ୍ରତିରୋଧ ଭାବ ଉଠିଥିଲା ଏବଂ ଉପନିବେଶ ଓ ଅଧୀନ ଦେଶମାନଙ୍କରେ ଜାତୀୟତା-ଆନ୍ଦୋଳନ ଆରମ୍ଭ ହେଉଥିଲା । କାମ୍ବୋଡ଼ିଆ ନେଇ ଫ୍ରାନ୍‌ସ ଓ ଶ୍ୟାମ ଭିତରେ ଯୁଦ୍ଧ ଲାଗିବାର ବିପଦ ଥିଲା; କିନ୍ତୁ ଶ୍ୟାମ ଆତ୍ମସମର୍ପଣ କଲା ଓ ଫରାସୀ ସହିତ ବିବାଦ ଏଡ଼ାଇଲା । ପଶ୍ଚିମରେ ବର୍ମାରେ ଥିବା ବ୍ରିଟିଶଙ୍କ ଦାଉରୁ ଏକ ଦୃଢ଼ ପର୍ବତମାଳା ହିଁ ଶ୍ୟାମକୁ ରକ୍ଷା କରୁଥିଲା ।

ମୁଁ କହିଛି, ଅତୀତରେ ଅନ୍ତତଃ ଦୁଇଥର ବର୍ମା ରାଜାମାନେ ଶ୍ୟାମ ଆକ୍ରମଣ କରିଥିଲେ ଏବଂ ତାହାକୁ ଯୋଗ ବି କରିଥିଲେ । ୧୭୬୭ରେ ଶେଷ ଅଭିଯାନ ହେଲା— ଯେଉଁଥିରେ ଶ୍ୟାମ ରାଜଧାନୀ ଆୟୁଥିଆ ବା ଅଯୋଧିଆ (କିପରି ଭାରତୀୟ ନାମ ଦେଖ)କୁ ଧ୍ୱଂସ କରାଗଲା । ଯାହାହେଉ, ଶୀଘ୍ର ଏକ ଜନବିଦ୍ରୋହଦ୍ୱାରା ବର୍ମୀମାନଙ୍କୁ ତଡ଼ି ଦିଆଗଲା ଏବଂ

୧୭୮୨ରେ ରାଜା ପ୍ରଥମ ରାମଙ୍କ ରାଜତ୍ୱ ଆରମ୍ଭ ହେଲା । ଆଜିକି ୧୫୦ ବର୍ଷ ପରେ ସୁଦ୍ଧା ସେହି ବଂଶ ରାଜତ୍ୱ କରୁଛନ୍ତି ଏବଂ ସବୁ ରାଜାଙ୍କୁ "ରାମ" ବୋଲି ଡକାଯାଏ । ଏହି ନୂତନ ବଂଶଦ୍ୱାରା ଶ୍ୟାମରେ ଭଲ ସରକାର ସ୍ଥାପିତ ହେଲା ଏବଂ ବିଦେଶୀ ଶକ୍ତିମାନଙ୍କ ସହି ଭଲ ସମ୍ବନ୍ଧ ରକ୍ଷିବାର ଉଦ୍ୟମ କରାଗଲା । ବିଦେଶୀ ବେପାର ପାଇଁ ବନ୍ଦରସବୁ ଖୋଲା ହେଲା କେତେକ ବିଦେଶୀ ଶକ୍ତି ସହିତ ବାଣିଜ୍ୟ ଚୁକ୍ତି ହେଲା ଏବଂ ଶାସନରେ କେତେକ ସଂସ୍କାର ବି କରାଗଲା । ନୂତନ ରାଜଧାନୀ ହେଲା ବାଙ୍କକ୍; କିନ୍ତୁ ସାମ୍ରାଜ୍ୟବାଦୀ ବାଘମାନଙ୍କୁ ଦୂରରେ ରଖିବା ପାଇଁ ଏହା ଯଥେଷ୍ଟ ନ ଥିଲା । ଇଂଲଣ୍ଡ ମାଲୟଆଡ଼କୁ ବିସ୍ତାର କଲା ଏବଂ ଶ୍ୟାମ ରାଜ୍ୟର ଅଞ୍ଚଳ ସେଠି ନେଲା; ଫ୍ରାନ୍ସ କାମ୍ବୋଡ଼ିଆ ପାଇଲା ଏବଂ ପୂର୍ବର ଅନ୍ୟ ଶ୍ୟାମ ଅଞ୍ଚଳ ବି ତାକୁ ମିଳିଲା । ୧୮୯୬ରେ ଶ୍ୟାମ କଥା ଯେବେ ଫ୍ରାନ୍ସ ଓ ଇଂଲଣ୍ଡ ଭିତରେ ପ୍ରାୟ ମୁଷ୍ଟି ଯୁଦ୍ଧ ହୋଇଆସିଲା; କିନ୍ତୁ ସ୍ୱୀକୃତ ସାମ୍ରାଜ୍ୟବାଦୀ ପଦ୍ଧତି ଅନୁସାରେ ସେମାନେ ଅବଶିଷ୍ଟ ଶ୍ୟାମ ଅଞ୍ଚଳକୁ ରକ୍ଷା କରିବା ପାଇଁ ସମ୍ମତ ହେଲେ ଏବଂ ଏହା ସଙ୍ଗେ ସଙ୍ଗେ "ପ୍ରଭାବିତ ଅଞ୍ଚଳ" ରୂପେ ତିନି ଭାଗରେ ଏହାକୁ ବିଭାଗ କଲେ । ପୂର୍ବାଂଶ ଫରାସୀ ପ୍ରଭାବ, ପଶ୍ଚିମ ବ୍ରିଟିଶ ଓ ଏହା ମଝିରେ ଏକ ନିରପେକ୍ଷ ଅଞ୍ଚଳ ରହିଲା—ସେଠି ଉଭୟେ ଫାଇଦା ଉଠାଇ ପାରନ୍ତି । ଏହି ରୂପେ ଶ୍ୟାମକୁ ରକ୍ଷା କରିବା ନିମନ୍ତେ ପ୍ରତିଶ୍ରୁତି ହୋଇ କେତେ ବର୍ଷ ପରେ ଫ୍ରାନ୍ସ ପୂର୍ବରୁ ଅଉ କେତେକ ଅଞ୍ଚଳ ଶ୍ୟାମରୁ ନେଲା ଏବଂ ଇଂଲଣ୍ଡ ବି ସେତେବେଳେ ଦକ୍ଷିଣରେ କିଛି କ୍ଷତିପୂରଣ ଆଦାୟ କଲା ।

ଏସବୁ ସତ୍ତ୍ୱେ ଆଜି ବି ଶ୍ୟାମର ଏକାଂଶ ଇଉରୋପୀୟ କର୍ତ୍ତୃତ୍ୱରୁ ରକ୍ଷା ପାଇଛି ଏବଂ ଏସିଆର ଏ ପାଖରେ ଏହି ଏକମାତ୍ର ଦେଶ ଏପରି ଭାବରେ ରହିଛି । ଇଉରୋପ ଆକ୍ରମଣ-ଜୁଆରକୁ ବର୍ତ୍ତମାନ ରୋଧ କରାହୋଇଛି ଓ ଏସିଆରେ ଇଉରୋପ ଆଉ ଅଧିକ ଦେଶ ନେବାର କିଛି ଆଶା ନାହିଁ । ଏପରି ଦିନ ଶୀଘ୍ର ଆସୁଛି, ଯେତେବେଳେ ଇଉରୋପୀୟ ଶକ୍ତିମାନଙ୍କୁ ପୁଡ଼ାପୁଟୁଳି ବାନ୍ଧି ଘରକୁ ଫେରିଯିବାକୁ ପଡ଼ିବ ।

ଶ୍ୟାମରେ ଖୁବ୍ ନିକଟରେ ଏକଚ୍ଛତ୍ର ରାଜସତ୍ତା ଥିଲା ଏବଂ କେତେକ ସଂସ୍କାର ସତ୍ତ୍ୱେ ଏଠି ସାମନ୍ତବାଦ ଖୁବ୍ ଥିଲା । କେତେକ ମାସ ପୂର୍ବେ ସେଠାରେ ଏକ ଶାନ୍ତିପୂର୍ଣ୍ଣ ବିପ୍ଳବ ହୋଇଥିଲା ଏବଂ ଯେପରି ମନେହୁଏ, ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ଆଗୁଆ ହୋଇ ବାହାରିଲେ । ସେଠି ଏକପ୍ରକାର ପାର୍ଲିଆମେଣ୍ଟ ସ୍ଥାପିତ ହୋଇଛି । ପ୍ରଥମ ରାମଙ୍କ ବଂଶର ରାଜା ବଡ଼ ବୁଦ୍ଧିମାନର କାମ କରି ଏହି ପରିବର୍ତ୍ତନରେ ରାଜି ହେଲେ ଏବଂ ସେହି ହେତୁ ସେ ବଂଶ ରହିଛି । ଏହିରୂପେ ଶ୍ୟାମରେ ଏବେ ଏକ ଶାସନତାନ୍ତ୍ରିକ ରାଜସତ୍ତା ରହିଛି ।

ଦକ୍ଷିଣ-ପୂର୍ବ ଏସିଆରେ ଆଉ ଗୋଟିଏ ଦେଶ କଥା ବିଚାର କରିବା ଆମର ବାକି ରହିଯାଇଛି । ତାହା ହେଉଛି, ଫିଲିପାଇନ ଦ୍ୱୀପପୁଞ୍ଜ । ମୁଁ ଏହି ଚିଠିରେ ସେ ସମ୍ବନ୍ଧରେ

ମଧ୍ୟ ଲେଖିବାକୁ ଇଚ୍ଛା କରିଥିଲି, କିନ୍ତୁ ଉତ୍ତର ହୋଇଗଲାଣି ଓ ମୁଁ କ୍ଲାନ୍ତ ହୋଇପଡ଼ିଛି ଏବଂ ଚିଠିଟା ଯଥେଷ୍ଟ ଲମ୍ବା ହୋଇଯାଇଛି । ୧୯୩୨ରେ ଏହା ତୋ ପାଖକୁ ମୋର ଶେଷ ଚିଠି, କାରଣ ପୁରୁଣା ବର୍ଷର ଦିନ ପୂରିଗଲା ଏବଂ ତାର ଅଣସ୍ତ୍ରଣ ବହିଲାଣି । ଆଉ ତିନି ଘଣ୍ଟା ପରେ ଏହା ଆଉ ନ ଥିବ ଏବଂ ଅତୀତର ଏକ ସ୍ମୃତି ହୋଇପଡ଼ିବ ।

## ୧୬୦ : ପୁଣି ଏକ ନୂତନ ବର୍ଷ

ନୂତନ ବର୍ଷର ଦିନ, ୧୯୩୩

ଆଜି ନୂତନ ବର୍ଷର ଆରମ୍ଭ ଦିନ । ସୂର୍ଯ୍ୟ ଚତୁର୍ଦ୍ଦିଗରେ ପୃଥିବୀ ପୁଣି ଥରେ ବୁଲି ସାରିଛି । ଏହାର କୌଣସି ବିଶେଷ ଦିବସ ଛୁଟିଦିନ ନାହିଁ—ଅବିରାମ ଭାବରେ ଏହା ଗତି କରୁଥାଏ—ଏହା ଉପରେ ଯେଉଁ ଅସଂଖ୍ୟ କ୍ଷୁଦ୍ର କୀଟସବୁ ବୁଲବୁଲ କରନ୍ତି ଏବଂ ପରସ୍ପର ସହିତ କଜିଆ କରନ୍ତି, ଏହା ସେଥିକି ଖାତିର କରେନା ଏବଂ ନରନାରୀ ଅତି ନିର୍ବୋଧ ଅହମିକାରେ ପଡ଼ି ନିଜକୁ ପୃଥିବୀର ଶ୍ରେଷ୍ଠ ସମ୍ପଦ ଓ ବ୍ରହ୍ମାଣ୍ଡର ମୂଳପିଣ୍ଡ ବୋଲି ଅନୁମାନ କରନ୍ତି । ପୃଥିବୀ ତାର ସନ୍ତାନଙ୍କୁ ଅବହେଳା କରେ; କିନ୍ତୁ ଆମେ ନିଜକୁ ଭୁଲିପାରିବା ନାହିଁ ଏବଂ ଆଜି ନୂତନ ବର୍ଷର ଆରମ୍ଭ ଦିବସରେ ଆମର ଜୀବନଯାତ୍ରାରେ ଆମେ ଟିକିଏ ବିଶ୍ରାମ ନେବା, ପଛକୁ ଦୃଷ୍ଟି ପକାଇବା ଏବଂ ପୁରାତନ ସ୍ମୃତିକୁ ମନେ ପକାଇବା, ତା ପରେ ଆଗକୁ ଦେଖିବା ଓ ଆଶା ବାନ୍ଧିବାକୁ ଚେଷ୍ଟା କରିବା । ତେଣୁ ଆଜି ମୁଁ ପୂର୍ବ ସ୍ମୃତି କଥା ଭାବୁଛି । ଏକ ସମୟରେ ଦେଶରେ ଏହି ହେଉଛି ମୋର ତୃତୀୟ ନୂତନ ବର୍ଷର ଆରମ୍ଭ ଦିବସ— ଅବଶ୍ୟ ଏହା ମଝିରେ ମୁଁ କେତେକ ମାସ ପାଇଁ ବିସ୍ତୃତ ଦୁନିଆକୁ ଯାଇଛି । ଆହୁରି ପଛକଥା ଦେଖିଲେ ମୋର ମନେପଡ଼ୁଛି, ଗତ ୧୧ ବର୍ଷ ଭିତରେ ମୁଁ କାରାଗାରରେ ପାଞ୍ଚଟି ନୂତନ ବର୍ଷର ଆରମ୍ଭ ଦିବସ କଟାଇଛି । ସେହିପରି ଆହୁରି କେତେ ଦିନ ମତେ ଜେଲରେ କଟାଇବାକୁ ବା ନ ପଡ଼ିବ !

କିନ୍ତୁ ଜେଲଖାନା ଭାଷାରେ ମୁଁ* ହାବିଚୁଆଲ (Habitual) ହୋଇଗଲିଣି । ଅନେକ ଥର ଆସି ଜେଲ ଜୀବନରେ ଅଭ୍ୟସ୍ତ ହୋଇ ଗଲିଣି । ମୋର ବାହାର ଜୀବନ ସହିତ ଏହାର ଅଦ୍ଭୁତ ପାର୍ଥକ୍ୟ—ବାହାରର ସର୍ବଦା କାର୍ଯ୍ୟ, ପରିଶ୍ରମ, ବଡ଼ ବଡ଼ ସଭା, ସେଥିରେ ବକ୍ତୃତା ଏବଂ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଦୌଡ଼ିବା ଲାଗିଥାଏ । ଏଠି ସବୁ ଅଲଗା;

---

* ଯେଉଁ କଇଦୀ ଏକାଧିକ ଥର ଜେଲ ଆସେ, ତାକୁ ହାବିଚୁଆଲ ବା 'ବି' କ୍ଲାସ କହନ୍ତି ।

ପ୍ରତ୍ୟେକ ଜୀବନ୍ତ ପ୍ରବୃଦ୍ଧ, କିଛି ହଲଚଲ ନାହିଁ ଏବଂ ମୁଁ ଦୀର୍ଘକାଳ ପର୍ଯ୍ୟନ୍ତ ବସି ରହେ ଓ ଅନେକ ଘଣ୍ଟା ପର୍ଯ୍ୟନ୍ତ ନୀରବ ରହେ । ଗୋଟିଏ ପରେ ଗୋଟିଏ ଦିନ, ସପ୍ତାହ ଓ ମାସ ବିତିଯାଏ; ପ୍ରତ୍ୟେକ ପରସ୍ପର ଗୋଟିକରୁ ଅନ୍ୟଟିକୁ ବାରି ହୁଏ ନା । ଅତୀତ ଯେପରି ଏକ ଲୁପ୍ତ ଛବି ପରି ମନେହୁଏ, ସେଥିର ଆଉ ସତେ କି କିଛି ଚିହ୍ନ ନାହିଁ । କାଲି ବୋଇଲେ ଠିକ୍ ଗିରଫ ହେବା ଦିନ ପରି ମନେହୁଏ; କାରଣ ଏହା ଭିତରେ ଏକଦମ୍ ଶୂନ୍ୟ ଅବସ୍ଥା—ଏପରି କିଛି ଘଟିନାହିଁ ଯାହା ମନରେ ଆଙ୍କି ହୋଇ ରହିବ । ଏହି ଜୀବନ ଠିକ୍ ଏକ ପନିପରିବା ଗଛ ପରି ଗୋଟିଏ ସ୍ଥାନରେ ଏହାର ମୂଳ ରହିଛି; କୌଣସି ପ୍ରକାର ମନ୍ତବ୍ୟ ବା ଯୁକ୍ତି ନ କରି ନୀରବ, ସ୍ଥିତିଶୀଳ ଭାବରେ ଏହା ବଢ଼ି ଚାଲିଛି । ବେଳେ ବେଳେ ବାହାର ଦୁନିଆର କାର୍ଯ୍ୟକଳାପ ଅଦ୍ଭୁତ ଲାଗେ ଏବଂ ଜେଲରେ ଥିବା ଲୋକ ବହୁଲ ହୋଇଯାଏ । ଏଗୁଡ଼ିକ ଅତି ସୁଦୂର ଓ ଅବାସ୍ତବ—ଏକ ଅପଚ୍ଛାୟା ପରି ମନେହୁଏ; ତେଣୁ ଦୁଇ ପ୍ରକାର ଅଭ୍ୟାସ ହୁଏ—କ୍ରିୟାଶୀଳ ଓ ନିଷ୍କ୍ରିୟ, ଦୁଇ ପ୍ରକାର ବାସ୍ତବା, ଦୁଇଟି ବ୍ୟକ୍ତିତ୍ୱ, ଡାକ୍ତର ଜେକିଲ ଓ ମିଷ୍ଟର ହାଇଡ଼ଙ୍କ ପରି । ରବର୍ଟ ଲୁଇସ୍ ଷ୍ଟିଭେନସନ୍ଙ୍କର ଏହି ଗପ ତୁ ପଢ଼ିଛୁ କି ?

କ୍ରମେ ଲୋକ ପ୍ରତ୍ୟେକ କଥାରେ ଏପରି କି ଜେଲ କାର୍ଯ୍ୟନିର୍ଘଣ୍ଟ ଓ ଏକାଭଳିଆ କାମରେ ଅଭ୍ୟସ୍ତ ହୋଇପଡ଼େ । ଶରୀର ପକ୍ଷରେ ବିଶ୍ରାମ ଭଲ ଏବଂ ମନ ପାଇଁ ନିସ୍ତବ୍ଧତା ଭଲ; ଏହା ଏଠି ଜଣଙ୍କୁ ଚିନ୍ତା କରିବାକୁ ଦିଏ । ତୋତେ ଏସବୁ ଚିଠି ଲେଖିବାରେ ମୁଁ କିପରି ଅନୁଭବ କରୁଛି, ତୁ ବୋଧହୁଏ ବୁଝିପାରିବୁ । ଏବେ ଏଗୁଡ଼ିକ ତୋତେ ନୀରସ, ବିରକ୍ତିକର ଓ ସୁଦୀର୍ଘ ପାଠ୍ୟ ପରି ମନେ ହୋଇପାରେ; କିନ୍ତୁ ଏହା ସେଗୁଡ଼ିକ ମୋର ଜେଲ ଜୀବନକୁ ପରିପୂର୍ଣ୍ଣ କରିଛି ଏବଂ ମୋତେ ଏକ ଧନ୍ଦା ମିଳିଯାଇଛି, ଯେଉଁଥିରେ ମୁଁ ଖୁବ୍ ଆନନ୍ଦ ଲାଭ କରୁଛି । ଆଜକୁ ଠିକ୍ ଦୁଇ ବର୍ଷ ତଳେ ନୂତନ ବର୍ଷ ଆରମ୍ଭ ଦିବସରେ ନୈନି ଜେଲରେ ମୁଁ ଏହା ଆରମ୍ଭ କରିଥିଲି ଏବଂ ଜେଲକୁ ଫେରି ମୁଁ ପୁଣି ତାହା ଲେଖି ଚାଲିଲି । ବେଳେ ବେଳେ ହପ୍ତା ହପ୍ତା ମୁଁ କିଛି ଲେଖି ନାହିଁ; କେତେବେଳେ ପ୍ରତିଦିନ ଲେଖିଛି । ଯେତେବେଳେ ଲେଖିବାର ଭାବ ମନରେ ହୁଏ ଓ କଲମ କାଗଜ ଧରି ବସିଯାଏ, ସେତେବେଳେ ମୁଁ ଏକ ସ୍ୱତନ୍ତ୍ର ଦୁନିଆଁରେ ଗତି କରେ । ତୁ ମୋର ଆଦରର ସାଥୀ ହୋଇ ରହୁ ଏବଂ ଜେଲ ଓ ତାର ସମସ୍ତ କାର୍ଯ୍ୟ ମୁଁ ପାଶୋରି ପକାଏ; ତେଣୁ ଏହିସବୁ ଚିଠି ଲେଖିବା ସମୟ ବେଳେ ମୁଁ ଜେଲରୁ ପଳାଇଗଲା ପରି ଭାବନା ମନରେ ଜାତ କରିଛି ।

ଏହି ଯେଉଁ ଚିଠି ଲେଖିଛି, ତାର ସଂଖ୍ୟା ୧୬୦ ଏବଂ ନଅ ମାସ ତଳେ ବେରିଲି ଜେଲରେ ଏହି ସଂଖ୍ୟା ଦେବା ଆରମ୍ଭ ହେଲା । ମୁଁ ଏତେ ଲେଖିଲିଣି ଦେଖି ଆଶ୍ଚର୍ଯ୍ୟ ହୋଇଯାଏ ଏବଂ ତୋ ପାଖରେ ଏହିସବୁ ପଢ଼ ପାହାଡ଼ ଯେତେବେଳେ ଏକସଙ୍ଗରେ ଯାଇ ପହଞ୍ଚିବ ତୁ କଣ କହିବୁ ବା କଣ ଭାବିବୁ ? କିନ୍ତୁ ମୋର ଜେଲରୁ ଏପ୍ରକାର ପଳାୟନ

ଯାହାରେ ଅସନ୍ତୋଷ ପ୍ରକାଶ କରିବୁ ନାହିଁ । ମୁଁ ଚିଠି ଲେଖିବା ପାଞ୍ଚ ମାସରୁ ଅଧିକ ହୋଇଗଲାଣି । କେତେ ସାମ୍ବାଦନ ଗଲାଣି ।

ମୋ ଚିଠିରେ ଯେଉଁସବୁ କାହାଣୀ ରହିଛି, ତାହା ଆନନ୍ଦଦାୟକ ନୁହେଁ । ନିଜର ମହତ୍ତ୍ୱ ଓ ଗରିମାମୟ ପ୍ରଗତି ସତ୍ତ୍ୱେ ମନୁଷ୍ୟ ଏବେ ସୁଦ୍ଧା ଅତ୍ୟନ୍ତ ନିର୍ବୋଧମୟ ଓ ସ୍ୱାର୍ଥପର ପ୍ରାଣୀ ହୋଇ ରହିଛି; ତଥାପି ମନୁଷ୍ୟ ଜୀବନର ଏହି ଦୀର୍ଘ ଓ ବିଷାଦମୟ ସ୍ୱାର୍ଥପରତା, ବିବାଦଗ୍ରସ୍ତ ଓ ଅମାନୁଷିକତାର କାହାଣୀ ମଧ୍ୟରେ ହିଁ ପ୍ରଗତିର ଉଜ୍ଜ୍ୱଳ ରେଖା ସମ୍ଭବତଃ ଦେଖିବାକୁ ମିଳେ । ମୁଁ ନିଜକୁ ଆଶାବାଦୀ ଏବଂ ସବୁ ଜିନିଷର ଆଶାପ୍ରଦ ଦିଗଟା ଦେଖେ; କିନ୍ତୁ ଆଶାବାଦରେ ଆମ ଚତୁର୍ଦ୍ଦିଗରେ ଥିବା କଳା ଦାଗ ପ୍ରତି ଆମେ ଅନ୍ଧ ହେବା ଉଚିତ୍ ନୁହେଁ ଏବଂ ଚିନ୍ତାହୀନ ଆଶାବାଦୀ ବିପଦ ନ ଦେଖିଲେ ଭୁଲ ଦିଗରେ ଚାଲିଯାଏ; କାରଣ ଦୁନିଆଁ ଯେପରି ହୋଇଆସିଛି ଓ ବର୍ତ୍ତମାନ ବି ଯେପରି ଚାଲିଛି, ସେଥିରେ ଆଶାବାଦ ପାଇଁ ଯଥେଷ୍ଟ ଜିନିଷ ନାହିଁ । ଏକ ଆଦର୍ଶବାଦୀ ଏବଂ ଯେ କେବଳ ବିଶ୍ୱାସରେ ସବୁ କଥା ମାନିନିଏ ନାହିଁ, ତାହା ପକ୍ଷରେ ଏହା ଏକ କଠିନ ସ୍ଥାନ ଅଟେ । ସବୁ ପ୍ରକାର ପ୍ରଶ୍ନ ମନରେ ଉଠେ; ତାର କିଛି ସିଧା ଉତ୍ତର ମିଳେ ନା । ସକଳ ପ୍ରକାର ସନ୍ଦେହ ମନରେ ଉଠେ— ତାହା ଶୀଘ୍ର ହଟେଇ ଯାଏ ନା । ଦୁନିଆରେ ଏତେ ମୂର୍ଖତା ଓ ଦୁର୍ଦ୍ଦଶା କାହିଁକି ରହିଛି ? ଏହା ଏକ ପୁରୁଣା ପ୍ରଶ୍ନ । ୨୫୦୦ ବର୍ଷ ପୂର୍ବେ ଆମ ଦେଶରେ ଯୁବରାଜ ସିଦ୍ଧାର୍ଥଙ୍କ ମନରେ ଏହା ଘାଣ୍ଟି ହୋଇଥିଲା । କଥା ଅଛି ଯେ ଜ୍ଞାନପ୍ରାପ୍ତି ପୂର୍ବରୁ ସେ ତାଙ୍କ ମନରେ ଅନେକ ଥର ଏହି ପ୍ରଶ୍ନ ନିଜକୁ ପଚାରିଥିଲେ ଏବଂ ବୁଦ୍ଧ ହେଲେ । ଲୋକେ କହନ୍ତି, ସେ ନିଜକୁ ପଚାରିଲେ, "ଯେଉଁ ବ୍ରହ୍ମା ଦୁନିଆଁ ତିଆରି କରିଛନ୍ତି, ସେ ଏହାକୁ ଏପରି ଦୁର୍ଦ୍ଦଶାଗ୍ରସ୍ତ ରଖିଛନ୍ତି କିପରି ? ଯଦି ସର୍ବଶକ୍ତିମାନ ହୋଇ ଏପରି ଏହାକୁ ଛାଡ଼ି ଦେଇଛନ୍ତି, ତେବେ ସେ ଭଲ ନୁହନ୍ତି ଏବଂ ଯଦି ସର୍ବଶକ୍ତିମାନ ନୁହନ୍ତି, ତେବେ ସେ ଭଗବାନ ହୋଇ ନ ପାରନ୍ତି ।"

ଆମ ନିଜ ଦେଶରେ ସ୍ୱାଧୀନତା ସଂଗ୍ରାମ ଚାଲିଛି ଏବଂ ତଥାପି ଆମର ଅନେକ ଦେଶବାସୀ ଏଥିପ୍ରତି ଦୃଷ୍ଟି ପକାଉ ନାହାନ୍ତି । ସେମାନେ ଯୁଦ୍ଧ କରନ୍ତି ଓ ନିଜ ଭିତରେ ଝଗଡ଼ା କରନ୍ତି ଏବଂ ଏକ ସମ୍ପ୍ରଦାୟ ଅଥବା ଧାର୍ମିକ ଗୋଷ୍ଠୀ ବା ସଙ୍କୀର୍ଣ୍ଣ ଶ୍ରେଣୀ ଦୃଷ୍ଟିରେ ଚିନ୍ତା କରନ୍ତି ଓ ବୃହତ୍ତର ମଙ୍ଗଳ କଥା ପାଶୋରି ଯାଆନ୍ତି । କେତେକ ସ୍ୱାଧୀନତା ଦୃଷ୍ଟିକୋଣ ପ୍ରତି ଅନ୍ଧ ହୋଇ "ଅତ୍ୟାଚାରୀଙ୍କ ସହ ସନ୍ଧି କରନ୍ତି ଓ ପୋଷା ପାଳନ୍ତି ଏବଂ ଜାତି-ମୁକୁଟ ଓ ପୋଷାକ ପିନ୍ଧିବା ପାଇଁ ଏକାଠି ହୁଅନ୍ତି ଏବଂ ଜୀର୍ଣ୍ଣବସ୍ତୁ ଓ ଖପରା ଭଙ୍ଗା ଅବସ୍ଥାକୁ ଫେରି ଆସନ୍ତି ।"

ଆଇନ ଓ ଶୃଙ୍ଖଳା ନାମରେ ଅତ୍ୟାଚାର ବୃଦ୍ଧି ପାଏ ଏବଂ ଯେ ବଶତା ସ୍ୱୀକାର ନ କରେ, ତାକୁ ଦମନ କରିବା ନିମନ୍ତେ ଚେଷ୍ଟା କରାଯାଏ । ଆଶ୍ଚର୍ଯ୍ୟ କଥା, ଯେଉଁ ଜିନିଷ ଦରିଦ୍ର ଓ ଦୁର୍ବଳ ଲୋକଙ୍କ ଆଶ୍ରା ହୋଇ ଥାଆନ୍ତା, ତାହା ହିଁ ଅତ୍ୟାଚାରୀର ହାତରେ ଅସ୍ତ୍ର

ହୋଇ ପଡ଼ୁଛି । ଏହି ଚିଠିରେ ମୁଁ କେତେକ ଲେଖା ଉଦ୍ଧୃତ କରିସାରିଛି; କିନ୍ତୁ ମୋ ମନକୁ ଆଉ ଗୋଟିଏ କଥା ଖୁବ ଭଲ ଲାଗୁଛି । ସେଇଟା ଏଠି ଦେବି । ଏହା ଆମର ବର୍ତ୍ତମାନ ଅବସ୍ଥା ସହ ଖାପ ଖାଇଲା ପରି ବୋଧ ହେଉଛି । ୧୮ଶ ଶତାବ୍ଦୀର ଫରାସୀ ଦାର୍ଶନିକ ମଣ୍ଟେସ୍କୁଙ୍କ ଏକ ବହିରୁ ଏହା ଉଦ୍ଧୃତ । ଏହାଙ୍କ ବିଷୟରେ ମୁଁ ଆଗରୁ ତତେ କହି ସାରିଛି ।

"ଯେଉଁ ସିଂହାସନ ସାହାଯ୍ୟରେ ଲୋପ ପାଉଥିବା ଦୁର୍ଦ୍ଦଶାକୁ ବଞ୍ଚାଇ ରଖାହୁଏ, ତାହା ଜରିଆରେ ଦୁର୍ଦ୍ଦଶା ଲୋପ କରିବା କଥା କହି ସେଥିଲାଗି ତା ଉପରେ ଯେତେ ଆଇନ ଓ ବିଚାର ଆବରଣ ଦିଆହେଉ ପଛକେ ଏହାଠାରୁ ବଳି ନିର୍ଦ୍ଦୟ ଅତ୍ୟାଚାର ଆଉ ନାହିଁ ।" (ଫରାସୀର ହିନ୍ଦୀ ଅନୁବାଦରୁ ଗୃହୀତ) ।

ନୂତନ ବର୍ଷର ଚଠି ଦୃଷ୍ଟିରେ ଦେଖିଲେ ଏହା ଅତ୍ୟନ୍ତ ଦୁଃଖଦାୟକ; ଏହା ଅତ୍ୟନ୍ତ ଅନ୍ୟାୟ । ବାସ୍ତବିକ ମୁଁ ବିମର୍ଷ ନୁହେଁ, କାହିଁକି ବା ଆମେ ବିମର୍ଷ ହେବା ? ଏକ ମହତ୍ ଉଦ୍ଦେଶ୍ୟ ପାଇଁ ଲଢ଼ିବାର ଓ କାର୍ଯ୍ୟ କରିବାର ଆନନ୍ଦ ଆମେ ପାଉଛେ । ଆମର ଏକ ମହାନ ନେତା ଅଛନ୍ତି । ସେ ଆମର ପ୍ରିୟ ସାଥୀ ଓ ବିଶ୍ୱସ୍ତ ଚାଳକ; ତାଙ୍କ ଦୃଷ୍ଟି ହିଁ ବଳଦାନ କରେ ଓ ସ୍ପର୍ଶ ହିଁ ପ୍ରେରଣା ଦିଏ ଏବଂ ଆମେ ଯେ କୃତକାର୍ଯ୍ୟ ହେବା, ଏହା ନିଶ୍ଚିତ ଏବଂ ଶୀଘ୍ର ହେଉ ବା ବିଳମ୍ବରେ ହେଉ ଆମେ ନିଶ୍ଚୟ ଏହା ହାସଲ କରିବା । ଆମକୁ ଯେଉଁସବୁ ବାଧା ଅତିକ୍ରମ କରିବାକୁ ପଡ଼େ ଏବଂ ଯେଉଁସବୁ ଯୁଦ୍ଧରେ ଲଢ଼ି ଜୟଲାଭ କରିବାକୁ ପଡ଼େ, ତାହା ନ ଥିଲେ ଜୀବନ ନୀରସ ଓ ବିରୂପ ହୋଇପଡ଼ନ୍ତା ।

ତୁ ମୋର ସ୍ନେହର ପାତ୍ର ଜୀବନର ଆରମ୍ଭ ଦ୍ୱାରରେ, ଏହି ବିମର୍ଷ ଓ ବିଷଣ୍ଣ ଭାବ ମନରେ ଆଣିବୁ ନାହିଁ । ତୁ ଜୀବନର ସମ୍ମୁଖୀନ ହେବୁ, ତାହା ଆନନ୍ଦ ଓ ସ୍ଥିର ମୁଖରେ ଏହା ଦେଖିବୁ, ଯାହାସବୁ ଅସୁବିଧା ତୋ ପଥରେ ଆସିବ, ତାହା ଅତିକ୍ରମ କରିବାରେ ଆନନ୍ଦ ପାଇବୁ ।

ବିଦାୟ ! ମୋର ଆଶା, ଆମର ଶୀଘ୍ର ସାକ୍ଷାତ ହେବ ।

## ୧୬୧ : ଫିଲିପାଇନ ଓ ଆମେରିକା ଯୁକ୍ତରାଷ୍ଟ୍ର

ଜାନୁୟାରି ୩, ୧୯୩୩

ନୂତନ ବର୍ଷ ଆରମ୍ଭ ଅବସରେ ଟିକିଏ ପଥଭ୍ରଷ୍ଟ ହେଲା ପରେ ଆମେ ଏବେ ଆମ କାହାଣୀ ଆରମ୍ଭ କରିବା । ଆମେ ଫିଲିପାଇନ ଦ୍ୱୀପପୁଞ୍ଜ ବିଷୟ ଆଲୋଚନା କରିନେବା—

ତାହାହେଲେ ଏସିଆର ପୂର୍ବସାଗର ତଟ ପୂର୍ଣ୍ଣ ହୋଇଯିବ । ଏହି ଦ୍ୱୀପପୁଞ୍ଜ ପ୍ରତି ଆମେ ବିଶେଷ ନଜର କାହିଁକି ପକାଇବା ? ଏସିଆ ଓ ଅନ୍ୟ ସ୍ଥାନରେ ଆହୁରି ବହୁତ ଦ୍ୱୀପ ଅଛି । ସେ ସମ୍ବନ୍ଧରେ ମୁଁ ଏଠାରେ ଉଲ୍ଲେଖ କରି ନାହିଁ । ଆମେ ଏସିଆରେ ନୂତନ ସାମ୍ରାଜ୍ୟ-ବାଦର ବୃଦ୍ଧି ଏବଂ ପୁରାତନ ସଭ୍ୟତା ଉପରେ ତାର ପ୍ରତିକ୍ରିୟା ଅନୁସରଣ କରିବାର ଚେଷ୍ଟା କରୁଛେ । ଏହା ଅଧ୍ୟୟନ କରିବା ନିମନ୍ତେ ଭାରତ ହେଉଛି ଏକ ଆଦର୍ଶ ସାମ୍ରାଜ୍ୟ । ଏହି ଶିଳ୍ପଜାତ ସାମ୍ରାଜ୍ୟବାଦ ପ୍ରସାର ଅନ୍ୟ ଗୋଟିଏ ଏବଂ ସ୍ୱତନ୍ତ୍ର ଅଥଚ ଅତି ବିଶାଳ ଘଟଣା ଆମେ ଚୀନରେ ଦେଖିବାକୁ ପାଉ । ଇଷ୍ଟ ଇଣ୍ଡିଜ୍ ଓ ଇଣ୍ଡୋଚୀନ୍ ପ୍ରଭୃତିରୁ ଆମର କିଛି ଶିଖିବାର ଅଛି । ସେହିରୂପେ ଫିଲିପାଇନରେ ଆମର ଆଗ୍ରହ ରହିଛି । ଏଠି ଏକ ନୂଆ ଶକ୍ତି ଆମେରିକା ଯୁକ୍ତରାଷ୍ଟ୍ର କାର୍ଯ୍ୟ କରୁଥିବାର ଦେଖି ଆମର ଆଗ୍ରହ ଆହୁରି ବୃଦ୍ଧି ପାଏ ।

ଆମେ ଦେଖିଲେ ଚୀନରେ ଅନ୍ୟ ଶକ୍ତିମାନଙ୍କ ପରି ଯୁକ୍ତରାଷ୍ଟ୍ର ସେପରି ଆକ୍ରମଣ-ମୂଳକ ନ ଥିଲା । କେତେକ ସମୟରେ ବରଂ ଅନ୍ୟ ସାମ୍ରାଜ୍ୟବାଦୀ ସରକାରମାନଙ୍କ ସହିତ କରି ଚୀନକୁ ସାହାଯ୍ୟ କରନ୍ତି । ସାମ୍ରାଜ୍ୟବାଦ ପ୍ରତି ଘୃଣା କିମ୍ବା ଚୀନ ପ୍ରତି ପ୍ରେମ ଯୋଗୁଁ ଏହା କରି ନ ଥିଲେ, କେତେକ ଆଭ୍ୟନ୍ତରୀଣ ବିଷୟ ଯୋଗୁଁ ଏଗୁଡ଼ିକ ଅନ୍ୟ ଇଉରୋପୀୟ ଦେଶଠାରୁ ସ୍ୱତନ୍ତ୍ରରୂପେ ଗଢ଼ିଉଠିଲେ । ଇଉରୋପୀୟ ଦେଶଗୁଡ଼ିକ ଗ୍ରେଟ ମହାଦେଶରେ ଗୁଞ୍ଜି ହୋଇଥିଲେ । ବହୁ ଲୋକସଂଖ୍ୟା, ପରସ୍ପର ପାଇଁ ନିଃଶ୍ୱାସ ମାରିବାକୁ ସ୍ଥାନ ନ ଥାଏ । ସର୍ବଦା ବିବାଦ ଓ ଗଣ୍ଡଗୋଳ ଲାଗିଥାଏ । ଶିଳ୍ପୋନ୍ନତି ସଙ୍ଗେ ସଙ୍ଗେ ଲୋକସଂଖ୍ୟା ଶୀଘ୍ର ବୃଦ୍ଧି ପାଇଲା ଏବଂ ସେମାନେ ଅଧିକରୁ ଅଧିକ ମାଲ ଉତ୍ପନ୍ନ କରିବାରେ ଲାଗିଲେ—ଏହା ନିଜ ଦେଶରେ କଟାଇ ପାରିଲେ ନାହିଁ । କ୍ରମବର୍ଦ୍ଧିଷ୍ଣୁ ଲୋକସଂଖ୍ୟା ପାଇଁ ଖାଦ୍ୟ ଆବଶ୍ୟକ ହେଲା, କାରଖାନା ପାଇଁ କଞ୍ଚାମାଲ ଓ ତିଆରି ଜିନିଷ ଲାଗି ବଜାର ଲୋଡ଼ାହେଲା । ଏହିସବୁ ଅଭାବ ଦୂରୀକରଣର ଅର୍ଥନୈତିକ ଆବଶ୍ୟକତା ହିଁ ସେମାନଙ୍କୁ ଦୂର ଦେଶକୁ ଟାଣି ନେଲା ଏବଂ ନିଜ ଭିତରେ ସାମ୍ରାଜ୍ୟ ପାଇଁ ଯୁଦ୍ଧ ଲାଗିଲା ।

ଏହିସବୁ ବିଷୟର ଯୁକ୍ତରାଷ୍ଟ୍ର ପ୍ରତି ପ୍ରଯୁଜ୍ୟ ନୁହେଁ । ଏ ଦେଶ ପରି ବୃହତ୍ ଏବଂ ଲୋକସଂଖ୍ୟା କମ୍ । ପ୍ରତ୍ୟେକ ଲୋକ ପାଇଁ ଯଥେଷ୍ଟ ସ୍ଥାନ ରହିଥିଲା । ସେମାନଙ୍କର ଶକ୍ତି ନିଜର ବିଶାଳ ଓ ଅନୁନ୍ନତ ଦେଶକୁ ଉନ୍ନତ କରିବାରେ ଖଟାଇବା ଲାଗି ସୁବିଧା ଥିଲା । ରେଲବାଇ ତିଆରି ହେଲା ପରେ ସେମାନେ ପଶ୍ଚିମକୁ ବିସ୍ତାର କଲେ ଏବଂ କ୍ରମେ ଯାଇ ପ୍ରଶାନ୍ତ ମହାସାଗରରେ ପହଞ୍ଚିଲେ । ନିଜ ଦେଶର ଏହି ସବୁ କାର୍ଯ୍ୟରେ ଆମେରିକା ଲୋକେ ବ୍ୟସ୍ତ ରହିଲେ ଏବଂ ସେମାନଙ୍କ ଉପନିବେଶ ପାଇଁ ଇଚ୍ଛା ବା ସମୟ ନ ଥିଲା । ତତେ ମୁଁ କହିଛି, ବାସ୍ତବିକ୍ କାଲିଫୋର୍ଣ୍ଣିଆ କଲରେ ଶ୍ରମିକ ଏତେ ଦରକାର ହେଲେ ଯେ, ଚୀନା ଶ୍ରମିକ ସକାଶେ ସେମାନେ ଚୀନ ସରକାରଙ୍କୁ ଅନୁରୋଧ କଲେ; ତାଙ୍କ ଅନୁରୋଧ ରକ୍ଷା ହେଲା—ଏହା ହିଁ ପରେ ଏହି ଦୁଇ ଦେଶ ଭିତରେ ତିକ୍ତତା ସୃଷ୍ଟି କଲା । ନିଜ ଦେଶରେ ଆମେରିକା ଲୋକେ ଏହିପରି ନିଯୁକ୍ତ ରହିଥିବା ହେତୁ ଇଉରୋପୀୟ ସରକାରମାନେ ସାମ୍ରାଜ୍ୟ

ଜାତି ଯେଉଁ ପ୍ରତିଦ୍ୱନ୍ଦ୍ୱିତା ଚଳାଇଥିଲେ, ସେଥିରୁ ସେମାନେ ଅଲଗା ରହିଲେ । ସେମାନେ ଯେତେବେଳେ ନିହାତି ଆବଶ୍ୟକ ବୋଧ କଲେ ଓ ଜେତେବେଳେ ତାଙ୍କ ଭିତରେ ଭୟ ହେଲା ଯେ ଅନ୍ୟ ଶକ୍ତିମାନେ ନିଜ ଭିତରେ ଏ ଦେଶକୁ ବାଣ୍ଟି ନେବେ, ସେତେବେଳେ ଚୀନ ସମସ୍ୟାରେ ହସ୍ତକ୍ଷେପ କଲେ ।

ଯାହାହେଉ, ଫିଲିପାଇନ ଆମେରିକାର ପ୍ରତ୍ୟକ୍ଷ ଶାସନ ଅଧୀନରେ ଥିଲା । ଏଥିରେ ଆମେ ଆମେରିକା ସାମ୍ରାଜ୍ୟବାଦ ସମ୍ବନ୍ଧରେ ଜାଣିପାରୁ; ତେଣୁ ଏହି ଇତିହାସରେ ଆଗ୍ରହ କରୁ । ଯୁକ୍ତରାଷ୍ଟ୍ରର ସାମ୍ରାଜ୍ୟ କେବଳ ଫିଲିପାଇନରେ ସୀମାବଦ୍ଧ ବୋଲି ଭାବିବୁ ନାହିଁ । ବାହାରୁ ସେମାନେ ଏହି ଏକମାତ୍ର ସାମ୍ରାଜ୍ୟ ପାଇଛନ୍ତି; କିନ୍ତୁ ଅନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଗଣ୍ଡଗୋଳ ଓ ଅଭିଜ୍ଞତାରେ ଲାଭ ଉଠାଇ ସେମାନେ ପୁରୁଣା ପଦ୍ଧତିରେ ଉନ୍ନତି କରିଛନ୍ତି । ବ୍ରିଟେନ ଯେପରି ଭାରତକୁ ସାମ୍ରାଜ୍ୟରେ ଯୋଗ କରିନେଲା, ସେମାନେ ସେପରି ଯୋଗ କରିବା କଷ୍ଟ ଉଠାଇଲେ ନାହିଁ; ସେମାନଙ୍କର ସ୍ୱାର୍ଥ ଥିଲା ଲାଭ ଉପରେ ଏବଂ ତେଣୁ ଦେଶର ଧନ ଉପରେ କର୍ତ୍ତୃତ୍ୱ ଆଣିବା ପାଇଁ ସେମାନେ ବାଛି କଲେ । ଧନ ଆୟତ୍ତ କଲେ କୌଣସି ଦେଶର ଲୋକଙ୍କୁ ଏବଂ ବାସ୍ତବିକ୍ ଭୂମିକୁ ମଧ୍ୟ ଆୟତ୍ତ କରିବା ସହଜ, ତେଣୁ ଏକ ଉଗ୍ର ଜାତୀୟବାଦ ସହି ବିବାଦ ବା ଗୋଳମାଳ ନ କରି ସେମାନେ ଦେଶ ନିୟନ୍ତ୍ରଣ କଲେ ଓ ଧନରୁ ଭାଗ ଉଠାଇଲେ । ଏହି କୌଶଳପୂର୍ଣ୍ଣ ପଦ୍ଧତିକୁ ଅର୍ଥନୈତିକ ସାମ୍ରାଜ୍ୟବାଦ କହନ୍ତି । ମାନଚିତ୍ରରେ ଏହା ଦେଖାଯାଏ ନାହିଁ । ଗୋଟିଏ ଭୂଗୋଳ ବା ଆଟଲାସରେ ଦେଖିଲେ କୌଣସି ଦେଶ ହୁଏ ତ ମୁକ୍ତ ଓ ସ୍ୱାଧୀନ ବୋଲି ମନେ ହୋଇପାରେ; କିନ୍ତୁ ଆବରଣ ତଳେ ଦୃଷ୍ଟିପାତ କଲେ ଦେଖିବୁ, ଏହା ଆଉ ଏକ ଦେଶ କବଳରେ ଅଥବା ସେ ଦେଶର ମହାଜନ ଓ ବଡ଼ ବଡ଼ ବ୍ୟବସାୟୀଙ୍କ କବଳରେ ରହିଛି । ଯୁକ୍ତରାଷ୍ଟ୍ର ଆମେରିକା ଅଧୀନରେ ଏହି ଅଦୃଶ୍ୟ ସାମ୍ରାଜ୍ୟ ରହିଛି । ଭାରତ ଓ ଅନ୍ୟ ସ୍ଥାନରେ ବ୍ରିଟେନ ଯେତେବେଳେ ବାହ୍ୟକ ଦୃଷ୍ଟିରେ ରାଜନୀତିକ ଯନ୍ତ୍ରର ନିୟନ୍ତ୍ରଣ ସେ ଦେଶ ଲୋକଙ୍କ ହାତରେ ଦେବା ପାଇଁ କହେ, ସେତେବେଳେ ଏହି ଅଦୃଶ୍ୟ ଅଥଚ ଫଳପ୍ରଦ ସାମ୍ରାଜ୍ୟ ରଖିବା ଉଦ୍ଦେଶ୍ୟ ତାର ଥାଏ । ଏହା ବିପଜ୍ଜନକ ଜିନିଷ ଏବଂ ଆମର ସତର୍କ ରହିବା ଦରକାର ।

ବର୍ତ୍ତମାନ ଅବସ୍ଥାରେ ଏହି ଅଦୃଶ୍ୟ ଅର୍ଥନୈତିକ ସାମ୍ରାଜ୍ୟବାଦ ଭିତରକୁ ଦୃଷ୍ଟି ପକାଇବା ଆମର ଦରକାର ନାହିଁ; କାରଣ ଫିଲିପାଇନ ଦେଖାଯାଉଥିବା ସାମ୍ରାଜ୍ୟର ଏକ ଅଙ୍ଗ ।

ଅଉ ଏକ କାରଣରୁ ଫିଲିପାଇନ ବିଷୟ ପ୍ରତି ଆମର ଆଗ୍ରହ ଜାତ ହୁଏ । ଏହା ଅବଶ୍ୟ ଅପ୍ରଧାନ ଓ ଭାବପ୍ରବଣ । ଆଜି ମଧ୍ୟ ସେଠାରେ ସ୍ପେନ, ଆମେରିକା ପ୍ରଭାବର ଛାପ ରହିଛି; କିନ୍ତୁ ଏଠାକାର ପୁରାତନ ସଂସ୍କୃତିର ପୃଷ୍ଠଭୂମିକା ହେଲା ଭାରତ । ସୁମିତ୍ରା ଓ ଜାଭାରୁ

ଭାରତୀୟ ସଂସ୍କୃତି ସେଠିକି ଯାଇଛି ଏବଂ ଜୀବନର ପ୍ରାୟ ପ୍ରତ୍ୟେକ ବିଭାଗ ସାମାଜିକ, ଧାର୍ମିକ ଓ ରାଜନୈତିକ ସବୁକୁ ସ୍ପର୍ଶ କରିଛି । ପୁରାତନ ଭାରତୀୟ ପୁରାଣ, ଗପ ଏବଂ ଆମ ସାହିତ୍ୟ ମଧ୍ୟ କେତେକାଂଶରେ ସେଠି ପଢ଼ାହୁଥିଲା । ତାଙ୍କ ଭାଷାରେ ଅନେକ ସଂସ୍କୃତ ଶବ୍ଦ ରହିଛି । ସେମାନଙ୍କର କଳା, ଅଇନ ଓ ହସ୍ତଶିଳ୍ପ ଭାରତଦ୍ୱାରା ପ୍ରଭାବିତ । ଏପରିକି ପୋଷାକ ଓ ଗହଣାରେ ମଧ୍ୟ ଏହାର ଛାପ ରହିଛି । ସ୍ପେନବାସୀ ତାଙ୍କର ଦୀର୍ଘ ୩୦୦ ବର୍ଷ ଶାସନ ଭିତରେ ଏହି ପୁରାତନ ସଂସ୍କୃତିର ସମସ୍ତ ପ୍ରମାଣ ନଷ୍ଟ କରି ଦେବାକୁ ଚେଷ୍ଟା କଲେ ଏବଂ ସେହି ହେତୁ ବର୍ତ୍ତମାନ ଖୁବ୍ କମ୍ ରହିଛି ।

୧୫୬୫ରେ ସ୍ପେନ ଏହି ଦ୍ୱୀପପୁଞ୍ଜ ଦଖଲ କଲା; ତେଣୁ ଏସିଆରେ ଏହି ଦ୍ୱୀପପୁଞ୍ଜ ଉପରେ ୟୁରୋପର ପ୍ରଥମ କର୍ତ୍ତୃତ୍ୱ । ପର୍ତ୍ତୁଗୀଜ, ବ୍ରିଟିଶ ବା ଡଚ୍ ଉପନିବେଶଠାରୁ ସମ୍ପୂର୍ଣ୍ଣ ଅଲଗା ଭାବରେ ଏଗୁଡ଼ିକ ଶାସିତ ହୋଇଥିଲା । ବେପାରକୁ ଉତ୍ସାହିତ କରାଗଲା ନାହିଁ । ସରକାରର ମୂଳ ହେଲା ଧର୍ମ ଏବଂ କର୍ମଚାରୀଙ୍କ ଭିତରୁ ଅଧିକାଂଶ ଥିଲେ ପାଦ୍ରୀ ଓ ଗିର୍ଜାର ଲୋକେ । ଏହାକୁ ଏକ ପାଦ୍ରୀସାମ୍ରାଜ୍ୟ ବୋଲି କହନ୍ତି । ଲୋକଙ୍କ ଅବସ୍ଥା ଉନ୍ନତ କରିବା ନିମନ୍ତେ କୌଣସି ଉଦ୍ୟମ ହୋଇ ନ ଥିଲା । କୁଶାସନ, ଅତ୍ୟାଚାର ଓ ବହୁତ ଟିକସ ଧାର୍ଯ୍ୟ ହେଲା ଏବଂ ବାଧ୍ୟ କରି ଖ୍ରୀଷ୍ଟିୟାନ କରିବାର ଉଦ୍ୟମ ବି ହେଲା । ଏହି ଅବସ୍ଥାରେ ଅନେକ ବିଦ୍ରୋହ ଘଟିବା ସ୍ୱାଭାବିକ । ବେପାର କରିବା ନିମନ୍ତେ ଅନେକ ଚୀନା ଏହି ଦ୍ୱୀପପୁଞ୍ଜକୁ ଆସିଲେ । ସେମାନେ ଖ୍ରୀଷ୍ଟିୟାନ ହେବାକୁ ଅସ୍ୱୀକାର କରିବାରୁ ସେମାନଙ୍କୁ ହତ୍ୟା କରାଗଲା । ଇଂରେଜ ଓ ଡଚ୍ ବଣିକମାନଙ୍କୁ ଅନୁମତି ଦିଆଗଲା ନାହିଁ । ଏହାର କାରଣ ହେଉଛି, ଏକାଂଶରେ ସେମାନେ ଥିଲେ ସ୍ପେନୀୟଙ୍କ ଶତ୍ରୁ ଓ ଦ୍ୱିତୀୟରେ ସେମାନେ ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟିୟାନ ଏବଂ ରୋମାନ୍ କାଥଲିକ୍; ସ୍ପେନବାସୀଙ୍କ ଦୃଷ୍ଟିରେ ସେମାନେ ହେଲେ ଧର୍ମବିରୋଧୀ ।

ଅବସ୍ଥା ଖରାପ ହେଲା; କିନ୍ତୁ ଗୋଟିଏ ଭଲ ଫଳ ହେଲା, ଦ୍ୱୀପପୁଞ୍ଜଗୁଡ଼ିକର ବିଭିନ୍ନ ଅଂଶ ସାମୂହିକ ଭାବରେ ଏକତ୍ର ହେଲା ଏବଂ ୧୯ଶ ଶତାବ୍ଦୀରେ ଏକ ଜାତୀୟ ଚେତନା ଦେଖାଦେଲା । ଏହି ଶତାବ୍ଦୀର ମଧ୍ୟଭାଗକୁ ବିଦେଶୀ ବଣିକଙ୍କ ପାଇଁ ଦ୍ୱୀପ ଉନ୍ମୁକ୍ତ ହେବାରୁ ଶିକ୍ଷା ଓ ଅନ୍ୟ ବିଭାଗରେ ସଂସ୍କାର ହେଲା ଏବଂ ବେପାର ବଣିଜ ବଢ଼ିଲା । ଫିଲିପାଇନର ମଧ୍ୟବିତ୍ତ ଶ୍ରେଣୀ ଗଢ଼ି ଉଠିଲା । ଫିଲିପାଇନ ଓ ସ୍ପେନ ଲୋକଙ୍କ ଭିତରେ ଅନ୍ତର୍ବିବାହ ହୋଇଥିଲା ଏବଂ ଅନେକ ଫିଲିପାଇନବାସୀଙ୍କଠାରେ ସ୍ପେନ ରକ୍ତ ପ୍ରବାହିତ ହେଉଥିଲା । ସ୍ପେନକୁ ସେମାନେ ପ୍ରାୟ ଆପଣା ଦେଶ ପରି ଭାବୁଥିଲେ ଏବଂ ସ୍ପେନର ଭାବଧାରା ପ୍ରସାର ଲାଭ କଲା । ଯାହାହେଉ ଜାତୀୟତା ଭାବ ବଢ଼ିଲା ଏବଂ ଏହା ଦମନ କଲାରୁ ବିପ୍ଳବ ଆକାର ଧାରଣା କଲା । ପ୍ରଥମେ ସ୍ପେନଠାରୁ ବିଚ୍ଛିନ୍ନ ହେବା ଧାରଣା ନ ଥିଲା, ସ୍ୱାୟତ୍ତ ଶାସନ ଦାବୀ କରାହେଉଥିଲା ଏବଂ 'କୋର୍ଟ' ବୋଲି ଲିଖିତ ସ୍ପେନର ଦୁର୍ବଳ ଓ ଅକାର୍ଯ୍ୟକାରୀ ପାଲିଆ-ମେଣ୍ଟରେ କିଛି ପ୍ରତିନିଧି ପଠାଇବା ଲାଗି ଦାବୀ ହେଲା । ଅତି ବିଚିତ୍ର କଥା, ପ୍ରତ୍ୟେକ

ଦେଶରେ ଜାତୀୟ ଆନ୍ଦୋଳନ ମାମୁଲି ଧରଣର ଆରମ୍ଭ ହୁଏ ଏବଂ ପରେ ତୀବ୍ର ହୋଇଯାଏ ଓ ଶେଷକୁ ବିଚ୍ଛିନ୍ନତା ଓ ସ୍ୱାଧୀନତା ଦାବୀ କରେ । ସ୍ୱାଧୀନତାର ଦାବୀକୁ ଥରେ ଦବାଇ ଦେଇ ଚହଟିକି ସୁଧ ପରେ ଦେବାକୁ ପଡ଼େ । ଫିଲିପାଇନରେ ଏହିପରି ଦାବୀ ବଢ଼ିଲା, ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଜାତୀୟ ସଂଗଠନମାନ ଗଢ଼ାହେଲା, ଗୁପ୍ତ ସମିତି ମଧ୍ୟ ବିସ୍ତାର ଲାଭ କଲା । ଗୋଟିଏ "ଯୁବକ ଫିଲିପିନୋ ଦଳ" ଡାକ୍ତର ଯୋସେ ରାଇଜଲଙ୍କ ନେତୃତ୍ୱରେ ପ୍ରଧାନ ଭାଗ ନେଲା । ସରକାରଙ୍କୁ ତ ଗୋଟିଏ ଉପାୟ ମାଲୁମ, ତାହା ହେଉଛି ଆତଙ୍କବାଦ—ସ୍ପେନ ସରକାର ସେହି ଉପାୟରେ ଆନ୍ଦୋଳନ ଦମିବାକୁ ଚେଷ୍ଟା କଲା । ୧୮୯୬ରେ ରାଇଜଲ ଓ ଅଭି ବହୁତ ସଂଖ୍ୟକ ନେତାଙ୍କୁ ମୃତ୍ୟୁ ଦଣ୍ଡ ଦିଆଗଲା ଓ ଫାଶୀ ହେଲା ।

ଏହା ହେଉଛି ଶେଷ ବୋଝ । ତା'ପରେ ସେହି ସରକାର ବିରୁଦ୍ଧରେ ପ୍ରକାଶ୍ୟ ଆନ୍ଦୋଳନ ଚାଲିଲା ଏବଂ ଫିଲିପାଇନବାସୀ ତାଙ୍କର "ସ୍ୱାଧୀନତା ଘୋଷଣାପତ୍ର" ବାହାର କଲେ । ପୂର୍ଣ୍ଣ ଏକ ବର୍ଷ ପର୍ଯ୍ୟନ୍ତ ସଂଗ୍ରାମ ଚାଲିଲା ଏବଂ ସ୍ପେନ କର୍ତ୍ତୃପକ୍ଷ ଆନ୍ଦୋଳନକୁ ଦବାଇ ପାରିଲେ ନାହିଁ । ତା ପରେ ବହୁତ ସଂସ୍କାର ହେବାର ପ୍ରତିଶ୍ରୁତି ମିଳିବାରୁ ସ୍ଥଗିତ ରହିଥିଲା; କିନ୍ତୁ ସ୍ପେନ କିଛି କଲା ନାହିଁ ଏବଂ ପୁନର୍ବାର ୧୮୯୮ରେ ବିଦ୍ରୋହ ହେଲା ।

ଇତ୍ୟବସରେ ଅନ୍ୟ କୌଣସି ବିଷୟରୁ ଯେଉଁ ଆମେରିକା ସ୍ପେନ ସହ କଳିଆ ଲଗାଇଲା ଏବଂ ଦୁଇ ଦେଶ ଭିତରେ ଯୁଦ୍ଧ ଘୋଷଣା ହେଲା । ୧୮୯୮ ଏପ୍ରିଲ ମାସରେ ଏକ ଆମେରିକା ଜାହାଜ ଫିଲିପାଇନ ଆକ୍ରମଣ କଲା, ବୃହତ୍ତ ପ୍ରଜାତନ୍ତ୍ର ଆମେରିକା ଫିଲିପାଇନର ସ୍ୱାଧୀନତା ଦାବୀ ପଛରେ ଠିଆହେବ ଭାବି ବିଦ୍ରୋହୀ ଫିଲିପାଇନ ନେତାମାନେ ଏହି ଯୁଦ୍ଧରେ ଆମେରିକାକୁ ସାହାଯ୍ୟ କଲେ । ସେମାନେ ପୁଣି ସ୍ୱାଧୀନତା ଘୋଷଣା କଲେ ଓ ଏକ ପ୍ରଜାତନ୍ତ୍ର ସରକାର ଗଠନ କଲେ । ୧୮୯୯ ସେପ୍ଟେମ୍ବର ମାସରେ ଏକ ଫିଲିପାଇନ କଂଗ୍ରେସ ବସିଲା ଏବଂ ନଭେମ୍ବର ଶେଷ ବେଳକୁ ଏକ ଶାସନବିଧାନ ଧାର୍ଯ୍ୟ ହେଲା, କିନ୍ତୁ ଏହି ଶାସନବିଧାନ କଂଗ୍ରେସରେ ଆଲୋଚନା ହେଉଥିବେଳେ ତେଣେ ସ୍ପେନ ଯୁକ୍ତରାଷ୍ଟ୍ରଦ୍ୱାରା ପରାସ୍ତ ହେଉଥାଏ । ସ୍ପେନ ଦୁର୍ବଳ ଥିଲା ଏବଂ ବର୍ଷ ନ ପୁରୁଣୁ ପରାସ୍ତ ବୋଲି ସ୍ୱୀକାର କଲା ଏବଂ ଯୁଦ୍ଧ ଶେଷ ହେଲା । ସନ୍ଧିସର୍ତ୍ତ ଅନୁସାରେ ସ୍ପେନ ଫିଲିପାଇନ ଦ୍ୱୀପପୁଞ୍ଜକୁ ଆମେରିକା ହାତରେ ଅର୍ପଣ କଲା । ଏହି ଦୟାଶୀଳ ଦାନରେ ତାର କିଛି କ୍ଷତି ହୋଇ ନ ଥିଲା; କାରଣ ଫିଲିପାଇନର ବିଦ୍ରୋହୀମାନେ ସ୍ପେନ କର୍ତ୍ତୃତ୍ୱକୁ ଆଗରୁ ଅନ୍ତର କରି ଦେଇଥିଲେ ।

ଏହିସବୁ ଦ୍ୱୀପ ଦଖଲ କରିବା ପାଇଁ ଯୁକ୍ତରାଷ୍ଟ୍ର ସରକାର ଏବେ ଚେଷ୍ଟା କଲେ । ଫିଲିପାଇନବାସୀ ପ୍ରତିବାଦ କଲେ ଏବଂ କହିଲେ ଯେ, ଏହା ଦେଇଦେବା ସ୍ପେନର କାମ ନୁହେଁ ଏବଂ ତାର କୌଣସି କ୍ଷମତା ନାହିଁ; କାରଣ ତାର ଏଥିରେ ଦଖଲ ନାହିଁ । ସେମାନଙ୍କ ପ୍ରତିବାଦ ବୃଥା ହେଲା ଏବଂ ଠିକ୍ ଯେତେବେଳେ ନୂତନପ୍ରାପ୍ତ ସ୍ୱାଧୀନତା ପାଇ

ସେମାନେ କୃତାର୍ଥ ମଣୁଥିଲେ : ସେତେବେଳେ ପୁଣି ଯୁଦ୍ଧ କରିବାକୁ ପଡ଼ିଲା ଏବଂ ସ୍ପେନ ଅପେକ୍ଷା ଆହୁରି ଅତ୍ୟଧିକ ପ୍ରଭାବଶାଳୀ ରାଜ୍ୟ ସହିତ ଏ ଯୁଦ୍ଧ କରିବା ଦରକାର ହେଲା । ଏହି ସାହସିକ ଯୁଦ୍ଧ ସେମାନେ ସାଢ଼େ ୩ ବର୍ଷ ପର୍ଯ୍ୟନ୍ତ ଚଳାଇଲେ; କେତେ ମାସ ଏକ ସଂଗଠିତ ସରକାର ଭାବରେ ଏବଂ ପରେ ଗରିଲା ବା ଖଣ୍ଡଯୁଦ୍ଧରେ ଲଢ଼ିବାକୁ ପଡ଼ିଲା ।

ବିଦ୍ରୋହ ଦମନ କରି ଦିଆଗଲା ଏବଂ ଆମେରିକା ଶାସନ ସ୍ଥାପିତ ହେଲା । ପ୍ରଚୁର ପରିମାଣରେ ସଂସ୍କାର ବିଶେଷତଃ ଶିକ୍ଷାରେ ପ୍ରବର୍ତ୍ତିତ କରାଗଲା; କିନ୍ତୁ ସ୍ୱାଧୀନତା ଦାବୀ ଚାଲିଥାଏ । ୧୯୧୬ରେ ଯୁକ୍ତରାଷ୍ଟ୍ର କଂଗ୍ରେସ "ଜୋନ୍‌ସ ବିଲ" ନାମକ ଏକ ବିଲ୍ ପାସ୍ କଲା । ସେଥିରେ ଏକ ନିର୍ବାଚିତ ବ୍ୟବସ୍ଥାପକସଭା ହାତରେ ଲୋକେ କିଛି କ୍ଷମତା ଦେଲେ; କିନ୍ତୁ ଆମେରିକାର ଗଭର୍ଣ୍ଣର ଜେନେରାଲ ଏଥିରେ ହସ୍ତକ୍ଷେପ କରିବା ଅଧିକାର ରହିଲା ଏବଂ ସେ ଅନେକ ସମୟରେ ଏହା କରେ ।

ଏହି ଦ୍ୱୀପରେ ଯୁକ୍ତରାଷ୍ଟ୍ର ଆମେରିକା ବିରୁଦ୍ଧରେ ଜାଗରଣ ହୋଇ ନାହିଁ; କିନ୍ତୁ ବର୍ତ୍ତମାନ ଅବସ୍ଥାରେ ଫିଲିପାଇନବାସୀ ସନ୍ତୁଷ୍ଟ ରହି ନାହାନ୍ତି ଏବଂ ସ୍ୱାଧୀନତା ପାଇଁ ସେମାନଙ୍କ ଦାବୀ ଓ ଆନ୍ଦୋଳନ ଚଳାଇଛନ୍ତି । ଖାଣ୍ଟି ସାମ୍ରାଜ୍ୟବାଦୀ ଢଙ୍ଗରେ ଆମେରିକା-ବାଲା ଅନେକ ସମୟରେ ସେମାନଙ୍କୁ ନିର୍ଭର ଜବାବ ଦେଇଛନ୍ତି ଯେ, ସେମାନେ ଫିଲିପାଇନବାସୀଙ୍କ ମଙ୍ଗଳ ନିମନ୍ତେ ସେଠି ଅଛନ୍ତି ଏବଂ ଫିଲିପାଇନବାସୀ ନିଜ ଶାସନ ଚଳାଇବା ନିମନ୍ତେ ସମର୍ଥ ହେଲା ମାତ୍ରକେ ସେ ଦ୍ୱୀପ ଛାଡ଼ି ଚାଲିଆସିବେ । ଜୋନ୍‌ସ ବିଲରେ ୧୯୧୬ରେ ମଧ୍ୟ ଲେଖାଥିଲା, "ଫିଲିପାଇନରେ ଏକ ସ୍ଥାୟୀ ସରକାର ସ୍ଥାପିତ ହେବା ସଙ୍ଗେ ସଙ୍ଗେ ସେଠାରୁ ନିଜର କର୍ତ୍ତୃତ୍ୱ ହଟାଇ ଆଣିବା ସବଦା ଯୁକ୍ତରାଷ୍ଟ୍ର ଅଧିବାସୀଙ୍କର ଉଦ୍ଦେଶ୍ୟ ରହିଛି ଓ ଆଗରୁ ବି ଥିଲା ।" ଏହା ସତ୍ତ୍ୱେ ଆମେରିକାରେ ପୁଣି ଅନେକ ଲୋକ ଅଛନ୍ତି, ଯେଉଁମାନେ ଫିଲିପାଇନକୁ ସ୍ୱାଧୀନତା ଦେବାର ପ୍ରକାଶ୍ୟ ବିରୋଧୀ ।

ମୁଁ ଲେଖିଲାବେଳେ ସମ୍ବାଦପତ୍ରରେ ପ୍ରକାଶ ପାଇଛି ଯେ, ଫିଲିପାଇନକୁ ଦଶ ବର୍ଷ ଭିତରେ ସ୍ୱାଧୀନତା ଦିଆଯିବ ବୋଲି ଆମେରିକା କଂଗ୍ରେସରେ ଏକ ପ୍ରସ୍ତାବ ପାସ୍ ହୋଇଛି କିମ୍ବା ସେହିପରି ଏକ ଘୋଷଣା କରାଯାଇଛି ।

ଯୁକ୍ତରାଷ୍ଟ୍ରର ଫିଲିପାଇନରେ କେତେକ ଅର୍ଥନୈତିକ ସ୍ୱାର୍ଥ ରହିଛି—ତାହା ସେମାନେ ରକ୍ଷା କରିବା ନିମନ୍ତେ ଆକୁଳ । ସେମାନଙ୍କର ବିଶେଷରୂପେ ସେଠା ରବର ଆବାଦରେ ସ୍ୱାର୍ଥ ରହିଛି; କାରଣ ରବର ଏକ ଅତ୍ୟନ୍ତ ଆବଶ୍ୟକ ଜିନିଷ ଓ ଏହା ତାଙ୍କର ଅଭାବ; କିନ୍ତୁ ମୋର ବିଶ୍ୱାସ ତାଙ୍କର ଏହି ଦ୍ୱୀପ ଦଖଲର ପ୍ରଧାନ ସ୍ୱାର୍ଥ ହେଉଛି ଜାପାନ ଭୟ । ଜାପାନ ଫିଲିପାଇନର ଖୁବ୍ ନିକଟରେ ଏବଂ ଜାପାନ ଲୋକସଂଖ୍ୟା ବଢ଼ୁଛନ୍ତି । ଜାପାନ ସରକାର ଲୋଲୁପ ଦୃଷ୍ଟିରେ ଏହି ଦ୍ୱୀପଗୁଡ଼ିକୁ ଅନାଇବାର ସମ୍ପୂର୍ଣ୍ଣ ସମ୍ଭାବନା ରହିଛି, ଆମେରିକା ଓ

ଜାପାନୀ ସରକାର ଭିତରେ ଭଲ ଭାବ ନାହିଁ ଏବଂ ଡେଞ୍ଚ ଫିଲିପାଇନର ଭବିଷ୍ୟତ ସମସ୍ୟା ପ୍ରଶାନ୍ତ ମହାସାଗରର ଶକ୍ତିଗୁଡ଼ିକ ଓ ସେମାନଙ୍କର ପରସ୍ପରର ସମ୍ପର୍କ ରହିବାର ବୃହତ୍ତ ପ୍ରଶ୍ନର ଏକ ଅଂଶ ହୋଇ ରହିଛି ।

## ୧୬୨ : ତିନି ମହାଦେଶର ମିଳନସ୍ଥଳୀ

ଜାନୁୟାରୀ ୧୬, ୧୯୩୩

୧୫ ଦିନ ତଳେ ମୁଁ ଲେଖିଲି ବେଳେ ନୂତନ ବର୍ଷରେ ଯେପରି ଆଶା କରିଥିଲି, ତାଠାରୁ ଆହୁରି ଶୀଘ୍ର ମୋର ନୂତନ ବର୍ଷର ଏକ ଆଶା ପୂରଣ ହୋଇଗଲା । ଦୀର୍ଘଦିନ ପରେ ଶେଷରେ ଆମର ସାକ୍ଷାତ ହେଲା ଏବଂ ମୁଁ ତତେ ଦେଖିଲି । ତୋତେ ଓ ଅନ୍ୟମାନଙ୍କୁ ଦେଖିବାର ଆନନ୍ଦ ଓ ଉତ୍ତେଜନା ଅନେକ ଦିନ ପର୍ଯ୍ୟନ୍ତ ମୋ ମନରେ ପୂରି ରହିଲା, ମୋର କାର୍ଯ୍ୟପନ୍ଥା ମୋତେ ଗୋଳମାଳ କଲା ଏବଂ ସାଧାରଣ କାମରେ ମୁଁ ହେଳା କଲି । ମୁଁ ଏକ ଛୁଟି ଦିବସରେ ରହିବା ପରି ଅନୁଭବ କଲି । ଚାରି ଦିନ ତଳେ ଆମର ଦେଖା ହୋଇଥିଲା ଏବଂ ଏହା ଯେପରି ଅନେକ ଦିନ ହେଲାପରି ମନେ ହେଲାଣି । ମୁଁ ଭବିଷ୍ୟତ କଥା ଭାବୁଛି ଏବଂ ପୁଣି କେଉଁଠି ଓ କେବେ ଆମର ମୁଲାକାତ ହେବ !

ଏଥିଭିତରେ ମୋର ନିଜର ମନବୋଧ କରିବାରେ କୌଣସି ଜେଲ ନିୟମ ବାଧା ଦେଇପାରିବ ନାହିଁ, ମୁଁ ତତେ ଚିଠି ଲେଖିବା ଆରମ୍ଭ କରିବି ।

କେତେ ସମୟ ହେଲା ମୁଁ ୧୯ଶ ଶତାବ୍ଦୀ ବିଷୟରେ ତତେ ଲେଖିବା ଆରମ୍ଭ କରିଛି । ପ୍ରଥମେ ଏହି ଶତାବ୍ଦୀ ବିଷୟରେ ସାଧାରଣ ଚିତ୍ର ମୁଁ ତୋ ଆଗରେ ରଖିବାର ଚେଷ୍ଟା କରିଛି—ନେପୋଲିୟନଙ୍କ ପତନ ପରେ ମୋଟାମୋଟି ଶହେବର୍ଷିଆ ଏହି ଶତାବ୍ଦୀ । ତା ପରେ ଆମେ କେତେକ ଦେଶ ସମ୍ବନ୍ଧରେ ଟିକିଏ ବିସ୍ତୃତ ଆଲୋଚନା କଲେ । ଆମେ ଭାରତ ବିଷୟ ଭଲ ଭାବରେ ଦେଖିଛେ । ତା ପରେ ଚୀନ, ଜାପାନ, ଶେଷରେ ଦୂରସ୍ଥ ଭାରତ ଓ ଇଷ୍ଟଇଣ୍ଡିଜକୁ ଆସିଲେ । ଏ ପର୍ଯ୍ୟନ୍ତ ଅଧିକ ବିସ୍ତୃତ ଭାବରେ ଆମେ ଏସିଆର ଏକ ଅଂଶର ବିଷୟ ବିଚାର କରିଛେ, ପୃଥିବୀର ଅବଶିଷ୍ଟାଂଶ ବାକି ଅଛି । ଏହା ଏକ ଦୀର୍ଘ କାହାଣୀ ଏବଂ ଏହାକୁ ସିଧା ଓ ସ୍ପଷ୍ଟରୂପେ ଲେଖିବା ସହଜ ନୁହେଁ । ମୁଁ ଦେଶ ଓ ମହାଦେଶଗୁଡ଼ିକୁ ଗୋଟିକ ପରେ ଗୋଟିଏ ଧରି ଅଲଗା ଭାବରେ ଆଲୋଚନା କରିବି । ବାରମ୍ବାର ମୋତେ ପଛକୁ ଫେରିଯିବାକୁ ହେବ ଏବଂ ଏକା ସମୟରେ ଅନ୍ୟ ଅଞ୍ଚଳ ଅବସ୍ଥା ଲେଖିବାକୁ ହେବ ।

ଏଥିରେ ଟିକିଏ ଗୋଳମାଳିଆ ହେବ; କିନ୍ତୁ ତୋର ସ୍ମରଣ ରଖିବା ନିମନ୍ତେ ଚେଷ୍ଟା କରିବା ଦରକାର ଯେ, ୧୯ଶ ଶତାବ୍ଦୀରେ ଘଟଣାବଳୀ ବିଭିନ୍ନ ଦେଶରେ ସମସାମୟିକ ଭାବରେ ଅଳ୍ପେ ଅଧିକେ ଏକା ସମୟରେ ଘଟିଥିଲା ଏବଂ ପରସ୍ପର ଉପରେ ପ୍ରଭାବ ଓ ପ୍ରତିକ୍ରିୟା ପକାଉଥିଲା । ସେଥିହେତୁ କୌଣସି ଗୋଟିଏ ଦେଶର ଇତିହାସ ପଢ଼ିବା ଟା ପ୍ରତାରଣା ମାତ୍ର; ଘଟଣାବଳୀର ମହତ୍ତ୍ୱ ଏବଂ ଯେଉଁ ଶକ୍ତିସବୁ ଅତୀତକୁ ଗଢ଼ିଛି ଓ ବର୍ତ୍ତମାନରେ ପରିଣତ କରିଛି, ସେ ସମ୍ବନ୍ଧରେ ଠିକ୍ ଧାରଣା କରିବାକୁ ହେଲେ ପୃଥିବୀ ଇତିହାସ ପଢ଼ିବା ଦରକାର । ଏହି ଚିଠିଗୁଡ଼ିକରେ ଏପରି ଏକ ପୃଥିବୀ ଇତିହାସ ମିଳିପାରିବ ବୋଲି ମୁଁ କହୁ ନାହିଁ । ଏହା ମୋ ଶକ୍ତି ବାହାରେ ଏବଂ ଏ ସମ୍ବନ୍ଧରେ ତୋତେ ଚିଠି ଓ ବହିର ଅଭାବ ପଡ଼ିବ ନାହିଁ । ଏ ଚିଠିଗୁଡ଼ିକରେ ମୋର ପ୍ରଚେଷ୍ଟା ହେଉଛି, ପୃଥିବୀ ଇତିହାସ ପ୍ରତି ତୋର ଆଗ୍ରହ ଜନ୍ମାଇବା, ଏହାର କେତେକ ବିଭାଗ ତୋତେ ଦର୍ଶାଇବା ଏବଂ ଆଦିମ କାଳରୁ ଆଜିପର୍ଯ୍ୟନ୍ତ ମନୁଷ୍ୟର କାର୍ଯ୍ୟକଳାପର ଏକ ନିର୍ଦ୍ଦିଷ୍ଟ ସୂତ୍ର ଅନୁସରଣ କରିପାରିବା । ମୁଁ କେତେଦୂର କୃତକାର୍ଯ୍ୟ ହେବି, ଜାଣେନା । ମୋର ଆଶଙ୍କା ଯେ ମୋର ଏହି ପରିଶ୍ରମ ତୋତେ ଗୋଟାଏ ଅନ୍ଧୁଆରେ ପକାଇଦେବ—ଏହା ତୋତେ ଏକ ଠିକ୍ ସିଦ୍ଧାନ୍ତରେ ପହଞ୍ଚିବାରେ ସାହାଯ୍ୟ କରିବା ଅପେକ୍ଷା ଗୋଳମାଳରେ ପକାଇବ ।

୧୯ଶ ଶତାବ୍ଦୀରେ ଶ୍ରମଜୀବୀ ଶକ୍ତି ହେଲା ଇଉରୋପ । ସେଠି ଜାତୀୟତାବାଦ ପ୍ରଧାନ ଥିଲା ଏବଂ ଶିଳ୍ପ ଉଦ୍ୟୋଗ ବିସ୍ତାର ଲଭିଲା ଏବଂ ପୃଥିବୀର ସୁଦୂର ଦେଶ ପର୍ଯ୍ୟନ୍ତ ବ୍ୟାପିଗଲା ଏବଂ ସାମ୍ରାଜ୍ୟବାଦର ରୂପ ଧାରଣ କଲା । ପୃଥିବୀର ପ୍ରଥମ ନିଶ୍ୱାସରେ ଆମେ ଏହା ଦେଖିଛେ ଏବଂ ପୂର୍ବ ଭାରତ ଓ ଭାରତରେ ସାମ୍ରାଜ୍ୟବାଦର ଫଳାଫଳ ଟିକିଏ ବିସ୍ତୃତ ଭାବରେ ଅନୁସରଣ କରିଛେ । ପୁନର୍ବାର ଇଉରୋପକୁ ନିରେଖି ଦେଖିବା ଲାଗି ଯିବା । ପୂର୍ବରୁ ପଶ୍ଚିମ ଏସିଆକୁ କ୍ଷଣକାଳ ପାଇଁ ଯିବା । ଏହି ଅଞ୍ଚଳକୁ ମୁଁ ଅନେକ ସମୟ ହେଲା ଦୃଷ୍ଟି ଦେଇ ନାହିଁ । ଏହାର ପ୍ରଧାନ କାରଣ ହେଉଛି, ଏହାର ପରବର୍ତ୍ତୀ ଇତିହାସ ସମ୍ବନ୍ଧରେ ମୁଁ ଅଜ୍ଞ ।

ପଶ୍ଚିମ ଏସିଆର ପୂର୍ବ ଏସିଆ ଓ ଭାରତଠାରୁ ଖୁବ୍ ପାର୍ଥକ୍ୟ ଅଛି । ସୁଦୂର ଅତୀତରେ ଅବଶ୍ୟ ଅନେକ ଜାତି ଓ ସମ୍ପ୍ରଦାୟ ମଧ୍ୟ ଏସିଆ ଓ ପୂର୍ବରୁ ଆସି ଏହା ଦଖଲ କରି ଯାଇଥିଲେ । ତୁର୍କିବାସୀମାନେ ଏହିପରି ଆସିଥିଲେ । ଖ୍ରୀଷ୍ଟିୟାନ ଯୁଗ ପୂର୍ବରୁ ବୌଦ୍ଧଧର୍ମ ଏସିଆମାଇନର ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା; କିନ୍ତୁ ସେଠି ଏହା ଚେର ଧରିଥିବା ପରି ମନେ ହୁଏନା । ଏହି ସମୟରେ ପଶ୍ଚିମ ଏସିଆ, ଏସିଆ କିମ୍ବା ପୂର୍ବ ଅପେକ୍ଷା ଅଧିକଭାବରେ ଇଉରୋପ ପ୍ରତି ଅନାଇଥିଲା । ଏକ ତରଙ୍ଗରେ ଇଉରୋପ ଏହା ଏସିଆର ଦୁଆର ସ୍ୱରୂପ । ଏପରିକି ଏସିଆର ବିଭିନ୍ନ ଅଞ୍ଚଳରେ ଇସଲାମ ଧର୍ମ ବିସ୍ତାରରେ ମଧ୍ୟ ପଶ୍ଚିମ ଏସିଆରେ ବିଶେଷ କିଛି ପାର୍ଥକ୍ୟ ହୋଇ ନ ଥିଲା ।

ଭାରତ, ଚୀନ ଓ ପଡ଼ୋଶୀ ଦେଶସବୁ ଇଉରୋପ ପ୍ରତି ଏପରି ଦୃଷ୍ଟିରେ କେବେ ଦେଖି ନ ଥିଲେ । ସେମାନେ ଏସିଆରେ ବ୍ୟାପୃତ ଥିଲେ । ଭାରତ ଓ ଚୀନ ଭିତରେ ଜାତି, ଦୃଷ୍ଟିକୋଣ ଏବଂ ସଂସ୍କୃତିରେ ଅନେକ ପାର୍ଥକ୍ୟ ରହିଛି । ଚୀନ କେବେ ଧର୍ମର ଦାସ ନଥିଲା ଏବଂ ସେଠି କୌଣସି ପୁରୋହିତ ପ୍ରାଧାନ୍ୟ ନାହିଁ । ଭାରତ ସର୍ବଦା ନିଜର ଧର୍ମ ନିମନ୍ତେ ଗର୍ବବୋଧ କରେ ଏବଂ ଏହି ଦୋଷରୁ ଭାରତକୁ ମୁକ୍ତ କରିବା ନିମନ୍ତେ ବୁଦ୍ଧଙ୍କର ଉଦ୍ୟମ ସତ୍ତ୍ୱେ ସମାଜରେ ପୌରୋହିତ୍ୟ ପ୍ରାଧାନ୍ୟ ରହିଛି । ଚୀନ ଓ ଭାରତ ଭିତରେ ଆହୁରି ଅନେକ ପାର୍ଥକ୍ୟ ରହିଛି ଏବଂ ତଥାପି ଭାରତ ଏବଂ ପୂର୍ବ ଓ ଦକ୍ଷିଣ-ପୂର୍ବ-ଏସିଆ ଭିତରେ ଅଦ୍ଭୁତ ଏକତା ରହିଛି । ଯେଉଁ ବୁଦ୍ଧଧର୍ମର ସୂତ୍ର ଏଠାରେ ଲାଗିଛି, ତାହାହିଁ ଏହି ଏକତା ଆଣି ଦେଇଛି—ଏହା ଏଠା ଅଧିବାସୀଙ୍କୁ ଏକତ୍ର ବାନ୍ଧି ରଖିଛି ଏବଂ କଳା, ସାହିତ୍ୟ, ସଙ୍ଗୀତ ଓ ଜ୍ଞାନରେ ଅନେକ ସାଧାରଣ କଥା ଗୁନ୍ଥି ଦେଇଛି ।

ଇସ୍‌ଲାମ ପଶ୍ଚିମ-ଏସିଆର କିଛି ଜିନିଷ ଭାରତକୁ ଆଣିଲା । ଏହା ଏକ ସ୍ୱତନ୍ତ୍ର ସଂସ୍କୃତି; ଜୀବନର ଦୃଷ୍ଟିକୋଣ ଅଲଗା; କିନ୍ତୁ ଆରବମାନେ ଭାରତ ବିଜୟ କରିଥିଲେ, ଯେପରି ପ୍ରତ୍ୟକ୍ଷ ଓ ପ୍ରାକୃତିକ ଢଙ୍ଗରେ ପଶ୍ଚିମ-ଏସିଆର ଦୃଷ୍ଟିକୋଣ ଭାରତକୁ ଆସିଥାନ୍ତା, ସେପରି ଆସି ନ ଥିଲା । ଅନେକ ଦିନ ପରେ ମଧ୍ୟ-ଏସିଆର ଜାତିମାନଙ୍କ ଜରିଆରେ ଏହା ଆସିଲା—ସେମାନେ ଏହାର ସୁଯୋଗ୍ୟ ପ୍ରତିନିଧି ନ ଥିଲେ । ଯାହାହେଉ ଇସଲାମ ପଶ୍ଚିମ-ଏସିଆ ସହିତ ଭାରତର ସମ୍ପର୍କ କରାଇଲା ଏବଂ ଏହିରୂପେ ଏହି ଦୁଇ ବୃହତ୍ ସଂସ୍କୃତିର ମିଳନସ୍ଥଳୀ ହେଲା ଭାରତ । ଇସଲାମ ଚୀନରେ ମଧ୍ୟ ପ୍ରବେଶ କଲା ଓ ଅନେକ ସଂଖ୍ୟାରେ ଲୋକେ ଏହି ଧର୍ମ ଗ୍ରହଣ କଲେ ଏବଂ ଚୀନର ପୁରାତନ ସଂସ୍କୃତିରେ ଏହା ଆଞ୍ଚ ବଜାଇ ନ ଥିଲା । ଭାରତରେ ଏପରି ହେବାର କାରଣ ହେଉଛି, ଇସଲାମ ଅନେକ ଦିନ ପର୍ଯ୍ୟନ୍ତ ଏଠି ଶାସକ ଶ୍ରେଣୀ ହୋଇ ରହିଲା । ଏହିରୂପେ ଭାରତଭୂମିରେ ଦୁଇଟି ସଂସ୍କୃତି ପରସ୍ପରର ସମ୍ମୁଖୀନ ହେଲେ ଏବଂ ଏହି ଦୁରୂହ ସମସ୍ୟା ସମାଧାନ ଲାଗି ଠିକ୍ ସମନ୍ୱୟ ଆଣିବାରେ ଯେ ଅନେକ ପ୍ରଚେଷ୍ଟା ହୋଇଛି, ସେ ସମ୍ବନ୍ଧରେ ମୁଁ ତତେ ଲେଖିଛି । ବ୍ରିଟିଶ ଆକ୍ରମଣ ଫଳରେ ଯେତେବେଳେ ନୂତନ ଅନ୍ତରାୟ, ନୂତନ ବିପଦ ଆସି ପହଞ୍ଚିଛି ସେତେବେଳେ ଏହି ପ୍ରଚେଷ୍ଟା ଅନେକ ପରିମାଣରେ ସଫଳ ହୋଇଛି । ଆଜି ଉଭୟ ସଂସ୍କୃତି ତାର ପୁରାତନ ରୂପ ହରାଇଛି । ଜାତୀୟତା ଓ ଶିଳ୍ପୋଦ୍ୟୋଗ ପୃଥିବୀକୁ ପରିବର୍ତ୍ତନ କରିଦେଇଛି ଏବଂ ନୂତନ ଆର୍ଥିକ ଅବସ୍ଥା ସହି ଯେଉଁ ପରିମାଣରେ ଖାପ ଖାଇପାରିବ, ସେହି ପରିମାଣରେ ପୁରାତନ ସଂସ୍କୃତି ବଞ୍ଚି ରହିପାରିବ । ଏହାର ଫମ୍ପା ଖୋପ ରହିଛି; ଅସଲ ଅର୍ଥ ଚାଲିଯାଇଛି । ପଶ୍ଚିମ-ଏସିଆରେ ଇସଲାମର ଜନ୍ମସ୍ଥଳୀରେ ବିରାଟ ପରିବର୍ତ୍ତନ ଚାଲିଛି । ଚୀନ ଓ ସୁଦୂର ପ୍ରାଚ୍ୟରେ ବାରମ୍ବାର ଉତ୍‌ଥାନ ପତନ ଚାଲିଛି । ଭାରତରେ କଣ ଘଟୁଛି, ଆମେ ନିଜେ ଦେଖିପାରୁଛେ ।

ଏତେଦିନ ହେଲା ମୁଁ ପଶ୍ଚିମ ଏସିଆ ବିଷୟରେ ଲେଖି ନାହିଁ; ତେଣୁ କେଉଁଠୁ ଆରମ୍ଭ କରିବି ମୁସ୍କିଲରେ ପଡ଼ିଛି । ବାଗଦାଦର ବିଶାଳ ଆରବ ସାମ୍ରାଜ୍ୟ ଓ ଏହାର ଉପରି ତୁର୍କୀ ସମକ୍ଷରେ ପତନ ହେଲା; (ଏମାନେ ସେଲ୍ଯୁକ୍ ଅଟୋମାନ, ତୁର୍କୀବାସୀ ନୁହନ୍ତି) ଏବଂ ଶେଷରେ ଚେଙ୍ଗିଜ୍‌ଖାଁଙ୍କର ମଙ୍ଗୋଲ୍‌ମାନଙ୍କଦ୍ୱାରା ଏହା ଉପରି ଧ୍ୱଂସ ହେଲା, ତତେ କହିଛି । ଇରାନ୍ ସମେତ ମଧ୍ୟ ଏସିଆ ପର୍ଯ୍ୟନ୍ତ ଯେଉଁ ଖ୍ୱାରି ସାମ୍ରାଜ୍ୟ ବ୍ୟାପିଥିଲା, ମଙ୍ଗୋଲମାନେ ତାକୁ ମଧ୍ୟ ଶେଷ କରିଦେଲେ । ତିମୁର ପରେ ଆସିଲେ ଏବଂ କିଛି ଦିନ ସାମରିକ କୁଶଳତା ଅର୍ଜନ ଓ ନରହତ୍ୟା କଲାପରେ ସେ ବି ଚାଲିଗଲେ । ଯାହାହେଉ, ପଶ୍ଚିମରେ ଏକ ନୂତନ ସାମ୍ରାଜ୍ୟ ଗଢ଼ି ଉଠିଲା ଏବଂ ତିମୁରଙ୍କଦ୍ୱାରା ପରାସ୍ତ ହୋଇ ସୁଦ୍ଧା ଏହା ବ୍ୟାପିବାକୁ ଲାଗିଲା । ଏହା ହେଉଛି ଅଟୋମାନ ତୁର୍କୀ ସାମ୍ରାଜ୍ୟ । ଏହା ଏସିଆର ପଶ୍ଚିମାଞ୍ଚଳ, ଇଜିପ୍ଟ ଏବଂ ଦକ୍ଷିଣ ପୂର୍ବ ଇଉରୋପରେ ଅନେକ ଅଞ୍ଚଳ ଦଖଲ କରିଥିଲା । ଅନେକ ଦିନ ପର୍ଯ୍ୟନ୍ତ ଇଉରୋପ ଆତଙ୍କିତ ହୋଇ ରହିଲା ଏବଂ ମଧ୍ୟଯୁଗରୁ ବାହାରିଥିବା ଇଉରୋପର ଧାର୍ମିକ ଓ କୁସଂସ୍କାରପୂର୍ଣ୍ଣ ଲୋକଙ୍କ ମନରେ ପାପୀମାନଙ୍କୁ ଶାସ୍ତି ଦେବା ନିମନ୍ତେ ଭଗବାନଙ୍କର ଏହା ଅଭିଶାପ ପରି ମନେ ହେଲା ।

ଅଟୋମାନ ଶାସନ ଅଧୀନରେ ପଶ୍ଚିମ-ଏସିଆ ଏକପ୍ରକାର ଇତିହାସରୁ ଉଭେଇଗଲା । ପୃଥିବୀ ଜୀବନର ପ୍ରଧାନ ସ୍ରୋତରୁ ବିଚ୍ଛିନ୍ନ ହୋଇ ପଚା ପାଣି ହୋଇ ରହିଗଲା । ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ବାସ୍ତବିକ ହଜାର ହଜାର ବର୍ଷ ପର୍ଯ୍ୟନ୍ତ ଇଉରୋପ ଓ ଏସିଆ ଭିତରେ ଏହା ରାସ୍ତା ହୋଇ ରହିଥିଲା ଏବଂ ଏକ ଦେଶରୁ ଅନ୍ୟ ମହାଦେଶକୁ ଜନସ୍ରୋତ ବୋହି ଅସଂଖ୍ୟ ଓଟ ଏହି ସହର ଓ ମରୁଭୂମି ପାର ହୋଇ ଯାଇଥିଲେ । କିନ୍ତୁ ତୁର୍କିବାସୀ ବେପାରକୁ ଉତ୍ସାହିତ କରି ନ ଥିଲେ ଏବଂ ତାହା କରିଥିଲେ ସୁଦ୍ଧା ସେମାନେ ନୂତନ ଅବସ୍ଥାରେ ଶକ୍ତିହୀନ ହୋଇ ରହିଥାନ୍ତେ । ଏସିଆ ଓ ଇଉରୋପ ମଧ୍ୟରେ ଜଳପଥର ଉନ୍ନତି ହୋଇଥିଲା । ସମୁଦ୍ର ହିଁ ନୂତନ ପଥ ହେଲା ଏବଂ ମରୁଭୂମିର ଓଟ ଜାହାଜର କାମ କଲା । ଏହି ପରିବର୍ତ୍ତନ ଫଳରେ ପୃଥିବୀରେ ପଶ୍ଚିମ ଏସିଆର ବହୁତ ମହତ୍ତ୍ୱ କମିଗଲା । ଏହା ଏକ ସ୍ୱତନ୍ତ୍ର ଜୀବନ କଟାଇଥିଲା । ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସୁଏଜ କେନାଲ ଖୋଲା ହେବାପରେ ସମୁଦ୍ରପଥ ଆହୁରି ପ୍ରଧାନ ହୋଇ ପଡ଼ିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ଏହି କେନାଲ ପ୍ରଧାନ ରାସ୍ତା ହେଲା ଏବଂ ଦୂର ଦୁନିଆକୁ ଖୁବ୍ ନିକଟତର କରି ପକାଇଲା ।

ବର୍ତ୍ତମାନ ବିଂଶ ଶତାବ୍ଦୀରେ ଆମ ଆଖି ଆଗରେ ଆଉ ଏକ ପରିବର୍ତ୍ତନ ହେଉଛି । ଜଳ ଓ ସ୍ଥଳର ପୁରାତନ ପ୍ରତିଦ୍ୱନ୍ଦ୍ୱିତାରେ ସ୍ଥଳ ହିଁ ଜୟ କରିଛି ଏବଂ ସମୁଦ୍ର ଆଉ ପ୍ରଧାନ ପଥ ହୋଇ ରହି ନାହିଁ । ମଟର ଆସିବା ଦ୍ୱାରା ପାର୍ଥକ୍ୟ ହେଲା ଏବଂ ଉଡ଼ାଜାହାଜ ଯୋଗୁଁ ଏହା ଆହୁରି ବଢ଼ିଛି । ସେଉଁ ପୁରୁଣା ବାଣିଜ୍ୟପଥ ସବୁ ଅନେକ ଦିନ ହେଲା ଗୁଡ଼ ଦିଆ

ହୋଇଥିଲା, ଏବେ ସେଥିରେ ଉଡ଼; କିନ୍ତୁ ଧୀମା ଓଟ ପରିବର୍ତ୍ତେ ମରୁଭୂମି ମଧ୍ୟ ଦେଇ ମଟର ଦୌଡ଼ୁଛି ଏବଂ ମସ୍ତକ ଉପରେ ଉଡ଼ାଜାହାଜ ଉଡ଼ୁଛି ।

ଅଟୋମାନ ସାମ୍ରାଜ୍ୟ ତିନୋଟି ମହାଦେଶ ଏସିଆ, ଆଫ୍ରିକା ଓ ଇଉରୋପକୁ ଏକତ୍ର କରୁଥିଲା; କିନ୍ତୁ ୧୯ଶ ଶତାବ୍ଦୀର ବହୁ ପୂର୍ବରୁ ଏହା ଦୁର୍ବଳ ହୋଇ ପଡ଼ିଥିଲା ଏବଂ ଏହି ଶତାବ୍ଦୀରେ ଏହା ଖଣ୍ଡ ଖଣ୍ଡ ହୋଇଗଲା । "ଭଗବାନଙ୍କର ସହର"ରୁ ଏହା ଏବେ "ଇଉରୋପର ପୀଡ଼ିତ ଲୋକ" ହେଲା । ୧୯୧୪-୧୮ର ପୃଥିବୀ ଯୁଦ୍ଧ ଏହା ଶେଷ କଲା ଏବଂ ଏହାର ପାଉଁଶରୁ ଆତ୍ମବିଶ୍ୱାସୀ, ବଳବାନ ଓ ପ୍ରଗତିଶୀଳ ନୂତନ ତୁର୍କୀ ଓ କେତେ ନୂତନ ଦେଶ ବାହାରିଲା ।

ମୁଁ ଉପରେ କହିଛି, ପଶ୍ଚିମ ଏସିଆ ଇଉରୋପ ପାଇଁ ଏସିଆର ଦୁଆରମୁହଁ । ଏହାକୁ ଭୂମଧ୍ୟସାଗର ଘେରି ରହିଛି—ଭୂମଧ୍ୟସାଗର ଏସିଆ, ଇଉରୋପ ଓ ଆଫ୍ରିକାକୁ ବିଭକ୍ତ କରିଛି ଏବଂ ଏକାଠି କରି ଦେଇଛି । ଅତୀତରେ ଏହି ସମ୍ବନ୍ଧ ଅତ୍ୟନ୍ତ ଶକ୍ତିଶାଳୀ ଥିଲା ଏବଂ ଭୂମଧ୍ୟସାଗର କୂଳରେ ଥିବା ଦେଶମାନଙ୍କରେ ଅନେକ ବିଷୟ ସମାନ ଥିଲା । ଭୂମଧ୍ୟସାଗରରେ ଇଉରୋପୀୟ ସଭ୍ୟତାର ଆରମ୍ଭ ଏବଂ ତିନି ମହାଦେଶର ସମୁଦ୍ର ଉପକୂଳବର୍ତ୍ତୀ ସ୍ଥାନ-ମାନଙ୍କରେ ଏଠି ସେଠି ପୁରାତନ ଗ୍ରୀସ ବା ହେଲାସର ଉପନିବେଶ ସବୁ ଥିଲା । ରୋମ ସାମ୍ରାଜ୍ୟ ଏହାର ଚତୁର୍ଦ୍ଦିଗରେ ବ୍ୟାପିଥିଲା । ଭୂମଧ୍ୟସାଗର ଚାରିକଡ଼େ ଖ୍ରୀଷ୍ଟିୟାନ ଧର୍ମର ଘର । ପୂର୍ବ ଉପକୂଳରୁ ସିସିଲିକୁ ଏବଂ ପଶ୍ଚିମରେ ଦକ୍ଷିଣ ଆଫ୍ରିକା ଉପକୂଳ ପାର ହୋଇ ସ୍ପେନକୁ ଆରବମାନେ ସଂସ୍କୃତି ନେଇଗଲେ ଏବଂ ସେଠି ୭୦୦ ବର୍ଷ ପର୍ଯ୍ୟନ୍ତ ରହିଥିଲେ ।

ଭୂମଧ୍ୟସାଗରସ୍ଥ ଏସିଆ ଦେଶମାନଙ୍କର ଦକ୍ଷିଣ ଇଉରୋପ ଓ ଉତ୍ତର ଆଫ୍ରିକା ସହିତ କିପରି ଘନିଷ୍ଠ ସମ୍ବନ୍ଧ ଆମେ ଦେଖିଲେ । ଏହିରୂପେ ଏସିଆ ଓ ଅନ୍ୟ ଦୁଇ ମହାଦେଶ ଭିତରେ ପଶ୍ଚିମ ଏସିଆ ଅତୀତରେ ସମ୍ପର୍କିତ ହେଲା । କିନ୍ତୁ ଆମେ ଯଦି ଖୋଜୁ ତାହାହେଲେ ପୃଥିବୀ ସାରା ଏପରି ସମ୍ବନ୍ଧ ପାଇ ପାରିବୁ । ଆମର ସଙ୍କୀର୍ଣ୍ଣ ଜାତୀୟତା ଦୃଷ୍ଟିକୋଣ ହେତୁ ଆମେ ପୃଥିବୀର ଐକ୍ୟ ଓ ବିଭିନ୍ନ ଦେଶର ସମାନ ସ୍ୱାର୍ଥ କଥା ନ ଭାବି ଅଲଗା ଅଲଗା ଦେଶ ସମ୍ବନ୍ଧରେ ଅଧିକ ଭାବୁ ।

## ୧୬୩ : ଏକ ପଶ୍ଚାତଦୃଷ୍ଟି

ଜାନୁୟାରି ୧୯, ୧୯୩୩

ନିକଟରେ ଦୁଇଟି ବହି ପଢ଼ି ମୁଁ ଭାରି ଆନନ୍ଦ ପାଇଛି ଏବଂ ତୁ ଏହାର ଭାଗୀ-ଦାର ହେବାକୁ ମୋର ଇଚ୍ଛା । ସେ ବହି ଦୁଇଟି ଏମ୍ ଗ୍ରାଉସେଟ ନାମକ ଜଣେ ଫରାସୀ

ଲେଖକଙ୍କ ଦ୍ୱାରା ଲିଖିତ । ସେ ପାରିସର ମୁସି ଗୁଇମେଟ୍‌ର ଡିରେକ୍‌ଟର ବା ରକ୍ଷକ । ପୂର୍ବର ଏହି ସୁନ୍ଦର ଯାଦୁଘର, ବିଶେଷ ଭାବରେ ବୌଦ୍ଧକଳା ତୁ ଦେଖିଛୁ କି ? ତୁ ମୋ ସହିତ ଯିବା ପରି ମୋର ମନେ ହେଉ ନାହିଁ । ଏମ୍ ଗ୍ରାଉସେଟ୍ ପ୍ରାଚ୍ୟର ଏକ ସର୍ଭେ କରିଛନ୍ତି ଅର୍ଥାତ୍ ଏସିଆ ଦେଶର ଭାରତ, ମଧ୍ୟପ୍ରାଚ୍ୟ (ପଶ୍ଚିମ ଏସିଆ ଓ ପର୍ସିଆ), ଚୀନ ଓ ଜାପାନ ସଭ୍ୟତା ସମ୍ବନ୍ଧରେ ଅଲଗା ଅଲଗା ଚାରିଟି ଗ୍ରନ୍ଥ ଲେଖିଛନ୍ତି । ସେ ନିଜେ କଳା-ପ୍ରେମୀ ଥିବାରୁ ବିଭିନ୍ନ ପ୍ରକାର କଳା କାର୍ଯ୍ୟର ଉନ୍ନତି ସମ୍ବନ୍ଧରେ ଲେଖିଛନ୍ତି ଏବଂ ସେ ବହୁ ସଂଖ୍ୟକ ସୁନ୍ଦର ଛବି ଦେଇଛନ୍ତି । ଯୁଦ୍ଧ, ରାଜାଙ୍କ କୁଚକ୍ର ଆଦି ଶିଖିବା ଅପେକ୍ଷା ଏପରି ଭାବରେ ଇତିହାସ ପଢ଼ିବା ଅତ୍ୟନ୍ତ ଭଲ ଓ ଆନନ୍ଦପ୍ରଦ ।

ଏପର୍ଯ୍ୟନ୍ତ ଏମ୍ ଗ୍ରାଉସେଟଙ୍କ ଲେଖାରୁ ଦୁଇଟି ବହି ଭାରତ ଓ ମଧ୍ୟପ୍ରାଚ୍ୟ ସମ୍ବନ୍ଧରେ ମୁଁ ପଢ଼ିଛି ଏବଂ ଏହା ମୋତେ ଆନନ୍ଦ ଦେଇଛି । ସୁନ୍ଦର କୋଠା, ଖାଣ୍ଟି ଭାସ୍କର୍ଯ୍ୟ, ଅଦ୍ଭୁତ କାରୁ ପ୍ରଭୃତିର ଛବି ଦେଖି ଡେରାଡ଼ୁନ ଜେଲରୁ ମୋ ମନ କେଉଁ ସୁଦୂର ଦେଶକୁ ଓ ସୁଦୂର ଅତୀତକୁ ଚାଲିଯାଇଛି ।

ଉତ୍ତର ପଶ୍ଚିମ ଭାରତରେ ସିନ୍ଧୁ ଉପତ୍ୟକାରେ ୫୦୦୦ ବର୍ଷ ପୂର୍ବେ ମହେଞ୍ଜୋ-ଦାରୋ ଓ ହରପ୍ପାରେ ଯେଉଁ ପ୍ରାଚୀନ ସଭ୍ୟତାର ବିକାଶ ହୋଇଥିଲା, ତାହାର ଧ୍ୱଂସାବଶେଷ ସମ୍ବନ୍ଧରେ ମୁଁ ତତେ ଆଗରୁ ଲେଖିଛି । ଏହି ଅତୀତ କାଳରେ ଯେତେବେଳେ ଲୋକେ ମହେଞ୍ଜୋଦାରୋରେ ବାସ କରୁଥିଲେ, କାର୍ଯ୍ୟ କରୁଥିଲେ ଓ କ୍ରୀଡ଼ା କରୁଥିଲେ, ସେତେବେଳେ ଆହୁରି ଅନେକ ସଭ୍ୟତାର କେନ୍ଦ୍ର ଥିଲା । ଆମେ ଖୁବ୍ କମ୍ ଖବର ପାଇଛେ । ଏସିଆ ଓ ଇଜିପ୍ଟର ବିଭିନ୍ନ ଅଞ୍ଚଳରେ ଯେଉଁ କେତେକ ଧ୍ୱଂସାବଶେଷ ଆବିଷ୍କାର ହୋଇଛି, ସେତିକରେ ଏହା ସୀମାବଦ୍ଧ । ବୋଧହୁଏ ଆମେ ଯଦି ଆହୁରି କଠିନ ଓ ବିସ୍ତୃତ ଆକାରରେ ଖୋଳିବା, ତେବେ ଆହୁରି ଅନେକ ଧ୍ୱଂସାବଶେଷ ମିଳିବ; କିନ୍ତୁ ଆମେ ତ ଜାଣୁ, ସେହିକାଳରେ ଇଜିପ୍ଟରେ, ନୀଳ ଉପତ୍ୟକାରେ, କାଲଡିଆରେ (ମେସୋପଟାମିଆ), ଯେଉଁଠି ଏଲାମ ରାଜ୍ୟର ରାଜଧାନୀ ସୁସା ଥିଲା, ପୂର୍ବେ ଏସିଆର ପର୍ସେପଲିସ୍, ମଧ୍ୟ ଏସିଆରେ ତୁର୍କୀସ୍ଥାନ ଏବଂ ପୀତ ନଦୀ ବା ଚୀନରେ ହୋୟାଙ୍ଗ ହୋରେ ଉଚ୍ଚ ସଭ୍ୟତା ଥିଲା ।

ଏହି ଯୁଗରେ ତମ୍ବା ପ୍ରଚଳନ ଆରମ୍ଭ ହୋଇଥାଏ, ଚକ୍‌କଣ ପଥର ବ୍ୟବହାରର ଧନ ଗତ ହୋଇ ଆସୁଥାଏ । ଇଜିପ୍ଟରୁ ଚୀନ ପର୍ଯ୍ୟନ୍ତ ସମଗ୍ର ବିସ୍ତୃତ ଅଞ୍ଚଳରେ ଏକା ପରିମାଣରେ ଉନ୍ନତି ହୋଇଥିବା ପରି ମନେହୁଏ । ବାସ୍ତବିକ୍ ଏସିଆବ୍ୟାପୀ ଏକପ୍ରକାର ସଭ୍ୟତା ପ୍ରଚଳନ ଥିବାର କେତେକ ପ୍ରମାଣ ମିଳେ; ଏଥିରୁ ଦେଖାଯାଏ ବିଭିନ୍ନ କେନ୍ଦ୍ର ସବୁ ବିଚ୍ଛିନ୍ନ ହୋଇ ନ ଥିଲା; କିନ୍ତୁ ପରସ୍ପର ସହିତ ସମ୍ବନ୍ଧ ଥିଲା । କୃଷି ଉନ୍ନତି ହେଲା ଏବଂ ଗୃହପାଳିତ ପଶୁ ରଖିଲେ ଓ ବେପାର ବି ହେଲା । ଲେଖନ ବିଦ୍ୟା ବି ଦେଖାଦେଲା; କିନ୍ତୁ ଏହି ପୁରାତନ ଚିହ୍ନଲେଖାରୁ ଏପର୍ଯ୍ୟନ୍ତ ବାହାର କରାଯାଇ ପାରି ନାହିଁ । ଏକାପରି ଜିନିଷ

ବ୍ୟାପକ ଅଥଚ ବିଭିନ୍ନ ଅଞ୍ଚଳରେ ଦେଖିବାକୁ ମିଳେ ଏବଂ କଳାକାନ୍ତ ଜିନିଷସବୁର ଅପୂର୍ବ ପ୍ରକାରରେ ସମାନତା ଦେଖାଯାଏ । ଚର୍ଚ୍ଚିତ ମାଟିବାସନ ଓ ସୁନ୍ଦର ଅଳଙ୍କାରଯୁକ୍ତ ପାଥର ଛବିର ଶୈଳୀ ପ୍ରତି ଆଜି ବିଶେଷ ଦୃଷ୍ଟି ଦେବାର କଥା । ଏହି ସମୟରେ ମାଟି ବାସନ ପ୍ରଚଳନ ଏତେ ବେଶୀ ଦେଖାଯାଇଥିଲା ଯେ ଏହାକୁ "ଚର୍ଚ୍ଚିତ ପାତ୍ର ସଭ୍ୟତା" ବୋଲି ନାମକରଣ କରାଯାଇଛି । ସେତେବେଳେ ସୁନାରୁପାର ଅଳଙ୍କାର, ଶ୍ୱେତ ପ୍ରସ୍ତର ଓ ମାର୍ବଲ ତିଆରି ପାତ୍ର ଏବଂ ଏପରିକି କପା ସୂତା ବି ଦେଖାଯାଏ । ଆଦିମ ସଭ୍ୟତାର ପ୍ରତ୍ୟେକ କେନ୍ଦ୍ରରେ ଇଜିପ୍ଟଠୁ ସିନ୍ଧୁ ଉପତ୍ୟକା ଏବଂ ଚୀନ ପର୍ଯ୍ୟନ୍ତ କିଛି କିଛି ବିଶେଷତ୍ୱ ଥିଲା ଏବଂ ସ୍ୱତନ୍ତ୍ରତା ସବୁଠାରେ ଥିଲା । ତଥାପି ଏକ ସାଧାରଣ ଓ ସମ୍ପୃକ୍ତ ସଭ୍ୟତାର ସୂତ୍ର ଏସବୁ ଭିତରେ ଥିଲା ପରି ଦେଖାଯାଏ ।

ମୋଟାମୋଟି ଏହା ୫୦୦୦ ବର୍ଷ ପୂର୍ବର କଥା; କିନ୍ତୁ ଏକଥା ପରିଷ୍କାର ଯେ ଏହି ସଭ୍ୟତା ଅପେକ୍ଷାକୃତ ଉନ୍ନତ ଏବଂ ଏହାର ପ୍ରଗତି ପାଇଁ ହଜାର ହଜାର ବର୍ଷ ଲାଗିଥିବ । ନାଇଲ ଉପତ୍ୟକା ଓ ଗ୍ଲଲଦିଆରେ ଏହା ଅନ୍ତତଃ ଦୁଇ ହଜାର ବର୍ଷ ପୂର୍ବେ ଥିଲା ପରି ଦେଖାଯାଏ ଏବଂ ଅନ୍ୟ କେନ୍ଦ୍ରଗୁଡ଼ିକରେ ମଧ୍ୟ ସେହିପରି ସମୟରେ ବୋଧହୁଏ ଥିଲା ।

ଆଦିମ ତାମ୍ରଯୁଗର ସେହି ସାଧାରଣ ଓ ବିସ୍ତୃତ ସଭ୍ୟତା ମଧ୍ୟରୁ ୩୦୦୦ ଖ୍ରୀଷ୍ଟପୂର୍ବର ମହେଞ୍ଜୋଦାରୋ ଅମଳ ଅନ୍ୟତମ । ଏଥିରେ ଗ୍ରୀସ୍‌ରେଟି ପ୍ରାଚ୍ୟ ସଭ୍ୟତାର ପ୍ରଭେଦ ଥିଲା । ଏଥିରେ ପ୍ରଭେଦ ଦେଖାଯାଏ ଏବଂ ଅଲଗା ଭାବରେ ଏହା ବଢ଼ି ଉଠିଥିଲା । ଏହି ସମୟରେ ଇଜିପ୍ଟରେ ବଡ଼ ପିରାମିଡ଼ ଓ ଗିଜେରେ ସ୍ଫିନ୍‌କ୍ସ ତିଆରି ହୋଇଥିଲା । ଏହାର ବହୁତ ପରେ ଇଜିପ୍ଟର ଥେବାନ୍ ଯୁଗ ଆସିଲା । ପ୍ରାୟ ୨୦୦୦ ଖ୍ରୀ : ପୂର୍ବରେ ଥେବାନ ସାମ୍ରାଜ୍ୟ ଉନ୍ନତି କରିଥିଲା ଏବଂ ଅଦ୍ଭୁତ ମୂର୍ତ୍ତି କାଠରେ ତିଆରି କରିବା ପ୍ରଣାଳୀ ବାହାରିଲା । କଳାର ପୁନର୍ଜନ୍ମ ହେବା ଯୁଗ ଏଇଟା । ଏହି ସମୟରେ ବିଶାଳ ଲୁକ୍‌ସର ମନ୍ଦିର ତିଆରି ହୋଇଥିଲା । ଭୁତାଙ୍ଖାମେନ ସମ୍ବନ୍ଧରେ ଆଉ ଅଧିକ କେହି କିଛି ଜାଣନ୍ତି ନାହିଁ । କେବଳ ତାର ନାମ ଜାଣନ୍ତି—ସେ ଥେବାନ୍ ଫାରୋଆମାନଙ୍କ ଭିତରୁ ଜଣେ ଥିଲା ।

ଗ୍ଲଲଦିଆର ସୁମେର ଓ ଆକ୍‌କଡ଼ ଏହି ଦୁଇ ଅଞ୍ଚଳରେ ଦୁଇଟି ଶକ୍ତିଶାଳୀ ରାଜ୍ୟ ତିଆରି ହେଲା । ମହେଞ୍ଜୋଦାରୋ ଅମଳରେ ଗ୍ଲଲଦିଆମାନଙ୍କର ଉର ସହରରେ କଳା-ଖଚିତ ଜିନିଷମାନ ତିଆରି ହେଲା । ପ୍ରାୟ ୬୦୦ ବର୍ଷ ପ୍ରାଧାନ୍ୟ କଲାପରେ ଉରର ପତନ ହେଲା । ବାବିଲୋନିୟାନମାନେ (ଆରବ ଓ ଇହୁଦିଙ୍କର) ସେମିଟିକ୍ ଜାତି । ସେମାନେ ସିରିଆରୁ ଆସିଥିଲେ ଓ ନୂତନ ଶାସକ ହେଲେ । ବାବିଲୋନ ସହର ଏହି ନୂତନ ସାମ୍ରାଜ୍ୟର କେନ୍ଦ୍ର ହେଲା । ଏ ସମ୍ବନ୍ଧରେ ବାଇବଲ (ଖ୍ରୀଷ୍ଟିୟାନ ଧର୍ମଗ୍ରନ୍ଥ)ରେ ବହୁ ଉଲ୍ଲେଖ ରହିଛି । ଏହି ସମୟରେ ସାହିତ୍ୟର ପୁନରୁଦ୍ଧାର ହୋଇଥିଲା ଏବଂ ପୌରାଣିକ କବିତା ସବୁ ଲେଖା ହେଲା ଓ ବୋଲାଗଲା । ପୃଥିବୀର ଆରମ୍ଭ ଓ ମହା ପ୍ରଳୟ ସବୁର ଯେ ବର୍ଣ୍ଣନା ଏହି ପୌରାଣିକ କବିତାରେ ଥିଲା, ସେଇଥିରୁ ବାଇବେଲର ପ୍ରଥମ ଅଧ୍ୟାୟ ଆଦି ଲିଖିତ ହୋଇଛି ବୋଲି ଧରାଯାଏ ।

ତାପରେ ବାବିଲୋନର ପତନ ହେଲା ଏବଂ ଅନେକ ଶତାବ୍ଦୀ ପରେ (ପ୍ରାୟ ଖ୍ରୀଷ୍ଟପୂର୍ବ ୧୦୦୦ ଓ ତାପରେ) ଆସିରୀୟାନମାନେ ଆସିଲେ ଏବଂ ନିନେଭକୁ ରାଜଧାନୀ କରି ଏକ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ଏହି ଲୋକମାନେ ଅତି ଅସାଧାରଣ । ସେମାନେ ଅତ୍ୟନ୍ତ ପାଶବିକ ଓ ନିଷ୍ଠୁର । ତାଙ୍କର ସରକାରୀ ବ୍ୟବସ୍ଥା ଆତଙ୍କବାଦ ଉପରେ ପ୍ରତିଷ୍ଠିତ ଥିଲା ଏବଂ ନରହତ୍ୟା ଓ ଧ୍ୱଂସରେ ହିଁ ସେମାନେ ସମସ୍ତ ମଧ୍ୟପ୍ରାଚ୍ୟରେ ଏକ ବିଶାଳ ସାମ୍ରାଜ୍ୟ ଗଢ଼ିଲେ । ସେ କାଳରେ ଏମାନେ ଥିଲେ ସାମ୍ରାଜ୍ୟବାଦୀ । ଅଥଚ ଏହି ଲୋକମାନେ କେତେକ ପ୍ରକାରରେ ଉଚ୍ଚ ସଂସ୍କୃତିସମ୍ପନ୍ନ ଥିଲେ । ଜ୍ଞାନସ୍ରୋତର ପ୍ରତ୍ୟେକ ଦିଗ ଦର୍ଶାଇ ଏକ ପ୍ରକାଣ୍ଡ ଲାଇବ୍ରେରୀ ନିନେଭରେ ସଂଗୃହୀତ ହେଲା । ଲାଇବ୍ରେରୀ ଯେ କାଗଜର ନ ଥିଲା କିମ୍ବା ଆଧୁନିକ ଧରଣର ବହିପତ୍ର ସେପରି କେଉଁଠି ଯେ କିଛି ନ ଥିଲା, ଏକଥା ବୋଧହୁଏ କହିବା ଦରକାର ପଡ଼ିବ ନାହିଁ । ସେକାଳର ବହିସବୁ (Tablets) ଖୋଦିତ ପ୍ରସ୍ତରରେ ଥିଲା । ଲଣ୍ଡନର ବ୍ରିଟିଶ ଯାଦୁଘରଠାରେ ଏବେ ନିନେଭର ସେହି ପୁରୁଣା ଲାଇବ୍ରେରୀର ହଜାର ହଜାର ଖୋଦିତ ପ୍ରସ୍ତର ରହିଛି । କେତେକ ବଡ଼ ଭଦ୍ରାନୀ ସମ୍ରାଟ କିପରି ତାର ଶତ୍ରୁମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରନ୍ତି, ତାର ବର୍ଣ୍ଣନା ଏବଂ ସେ ତାହା କିପରି ଉପଭୋଗ କରନ୍ତି ଇତ୍ୟାଦି ବର୍ଣ୍ଣନା ହୋଇଛି ।

ମହେଞ୍ଜୋଦାରୋ ଯୁଗ ପରେ ଆର୍ଯ୍ୟମାନେ ଭାରତକୁ ଆସିଲେ । ଆଦିମ କାଳର କୌଣସି ଧ୍ୱଂସାବଶେଷ ବା ପ୍ରତିମୂର୍ତ୍ତି ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ; କିନ୍ତୁ ତାଙ୍କର ସବୁଠାରୁ ବଡ଼ ସ୍ମୃତିସ୍ତମ୍ଭ ହେଉଛି ପୁରାତନ ପୁସ୍ତକସବୁ ବେଦ ଇତ୍ୟାଦି । ଏହି ସୁଖୀ ଯୋଦ୍ଧାମାନେ ଭାରତଭୂମିକୁ ଆସିଲାବେଳେ ସେମାନଙ୍କ ମନର ଅବସ୍ଥା ସମ୍ବନ୍ଧରେ ଏଥିରୁ ଆମେ ଜାଣିପାରୁଁ । ଏହି ପୁସ୍ତକଗୁଡ଼ିକରେ ପ୍ରାକୃତିକ ପଦ୍ୟ ପୂର୍ଣ୍ଣ ହୋଇଛି । ଏଥିରେ ବର୍ଣ୍ଣିତ ଦେବତାସବୁ ହେଉଛନ୍ତି ପ୍ରକୃତି ଦେବତା । କଳା ଉନ୍ନତି ସଙ୍ଗେ ସଙ୍ଗେ ପ୍ରକୃତି ପ୍ରତି ଶ୍ରଦ୍ଧା ଏଥିରେ ବଡ଼ ଭାଗ ନେବା ସ୍ୱାଭାବିକ । ଭୋପାଳ ନିକଟରେ ଅବସ୍ଥିତ ସାଞ୍ଚିଦ୍ୱାର ଆଦିମ କାଳର କାରୁକାର୍ଯ୍ୟ । ଏହା ଆବିଷ୍କାର କରାଯାଇଛି । ଆଦିମ ବୌଦ୍ଧ ଯୁଗରୁ ଏହା ଆରମ୍ଭ ଏବଂ ଏହି ଦ୍ୱାରରେ ଫୁଲ, ପତ୍ର, ଆକୃତି ସବୁ ଯେପରି ସୁନ୍ଦର ରୂପେ ଖୋଦିତ ହୋଇଛି, ସେଥିରୁ ଯେଉଁ ଶିଳ୍ପୀମାନେ ଏହା ତିଆରି କରିଥିଲେ ସେମାନେ କିପରି ପ୍ରକୃତିକୁ ବୁଝିପାରିଥିଲେ ଓ ଶ୍ରଦ୍ଧା କରୁଥିଲେ, ତାହା ଜଣାପଡ଼େ ।

ତା ପରେ ଉତ୍ତର ପଶ୍ଚିମରୁ ଗ୍ରୀକ୍ ପ୍ରଭାବ ଆସିଲା; କାରଣ ତୋର ମନେଥିବ, ଆଲେକ୍‌ଜାଣ୍ଡାରଙ୍କ ପରେ ହେଲେନ୍ ସାମାଜ୍ୟ ଭାରତ ସୀମାନ୍ତକୁ ଆସିଲା । ପରେ କୁଶାନମାନଙ୍କର ସୀମାନ୍ତ ରାଜ୍ୟ ଥିଲା ଓ ଏହା ହେଲେନ ସାମ୍ରାଜ୍ୟ ପ୍ରଭାବରେ ଆସିଲା । ବୁଦ୍ଧ ମୂର୍ତ୍ତିପୂଜା ବିରୁଦ୍ଧରେ ଥିଲେ । ସେ ନିଜକୁ ଦେବତା ବୋଲି କହୁ ନ ଥିଲେ କିମ୍ବା ପୂଜା ପାଇବାକୁ ଚାହୁଁ ନ ଥିଲେ । ପୌରୋହିତ୍ୟପ୍ରଥା ସମାଜରେ ଯେଉଁ ଦୋଷ ଭର୍ତ୍ତି

କରିଥିଲା, ତାହା ସେ ଦୂର କରିବାକୁ ଚାହୁଁଥିଲେ । ସେ ଜଣେ ସଂସ୍କାରକ—ପତିତ ଓ ଅଭାଗାଙ୍କୁ ଉଦ୍ଧାର କରିବାକୁ ଚାହୁଁଥିଲେ । ସେ ବନାରସ ନିକଟରେ ଇସିପାଟନା ବା ସାରନାଥଠାରେ ତାଙ୍କର ପ୍ରଥମ ବାଣୀରେ କହିଥିଲେ, "ମୁଁ ଅଜ୍ଞଙ୍କୁ ଜ୍ଞାନ ଦାନକରି ସନ୍ତୁଷ୍ଟ କରିବାକୁ ଆସିଛି । ପୂର୍ଣ୍ଣତା ପ୍ରାପ୍ତ ଲୋକ ଯଦି ନିଜ ପ୍ରାଣୀର ମଙ୍ଗଳ ନିମନ୍ତେ ନିଜର କାଳ ଅତିବାହିତ ନ କରେ, ପତିତ ଲୋକଙ୍କୁ ସାନ୍ତ୍ୱନା ନ ଦିଏ, ତାହାହେଲେ ସେ କିଛି ନୁହେଁ । ମୋର ଉପଦେଶ ହେଉଛି ଦୟାମନ୍ତ୍ର; ତେଣୁ ଦୁନିଆଁର ସୁଖୀ ଲୋକଙ୍କୁ ଏହା ଏପରି କଠିନ ମନେ ହେଉଛି । ମୁକ୍ତିଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ବ୍ରାହ୍ମଣ ଆଜି ଯେଉଁ ଚଣ୍ଡାଳ ପାଇଁ ମୋକ୍ଷଦ୍ୱାର ବନ୍ଦ କରିଦେଇଛି, ସେହି ବ୍ରାହ୍ମଣ ଯେପରି ଗୋଟିଏ ସ୍ତ୍ରୀଲୋକ ପେଟରୁ ବାହାରିଛି, ଚଣ୍ଡାଳ ବି ସେପରି । ଆସ, ଏକ ବାଉଁଶ କୁଡ଼ିଆ ଓଲଟାଇ ଦେଲାପରି ତମର ଇନ୍ଦ୍ରିୟ ପ୍ରବୃତ୍ତି ଧ୍ୱଂସ କର···ଅନ୍ୟାନ୍ୟ ବସ୍ତୁରେ ପ୍ରତିକାରର ଏକମାତ୍ର ବାଟ ହେଉଛି ବୁଦ୍ଧିସମ୍ମତ ବାସ୍ତବତା । ତେଣୁ ବୁଦ୍ଧ ଭଲ ଆଚରଣ ଓ ଜୀବନଧାରଣ ପ୍ରଣାଳୀ ଶିଖାଉଥିଲେ; କିନ୍ତୁ ନିର୍ବୋଧ ଶିଷ୍ୟ ସବୁ ଯେପରି ଗୁରୁଙ୍କ କଥାର ଭିତରି ଅର୍ଥ ବୁଝି ନ ଥାନ୍ତି, ସେହିପରି ବୁଦ୍ଧଙ୍କର ଅନେକ ଅନୁଚର ବୁଦ୍ଧଙ୍କ ଦ୍ୱାରା ନିର୍ଦ୍ଧାରିତ ଚରିତ୍ରର ବାହାର ନିୟମମାନ କେବଳ ପାଳନ କଲେ ଏବଂ ଏହାର ଅନ୍ତର୍ନିହିତ ମହତ୍ତ୍ୱକୁ ଉପଲବ୍ଧି କରିପାରିଲେ ନାହିଁ । ସେମାନେ ତାଙ୍କର ଉପଦେଶ ପାଳନ କରିବା ପରିବର୍ତ୍ତେ ତାଙ୍କୁ ପୂଜା କଲେ; ତଥାପି ବୁଦ୍ଧଙ୍କର କୌଣସି ପ୍ରତିମୂର୍ତ୍ତି ନ ଥିଲା ବା ମୂର୍ତ୍ତି ତିଆରି ହୋଇ ନ ଥିଲା ।

ତା ପରେ ଗ୍ରୀସ୍ ଓ ଅନ୍ୟ ହେଲେନିକ୍ ଦେଶରୁ ଭାବଧାରା ଆସିଲା । ଏହିସବୁ ଦେଶରେ ଦେବତାମାନଙ୍କର ସୁନ୍ଦର ପ୍ରତିମୂର୍ତ୍ତି ସବୁ ତିଆରି ହେଉଥିଲା ଏବଂ ପୂଜା ହେଉଥିଲା । ଭାରତର ଉତ୍ତର ପଶ୍ଚିମରେ ଗାନ୍ଧାରରେ ଏହାର ସବୁଠୁଁ ବଡ଼ ପ୍ରଭାବ ଥିଲା ଏବଂ ବୁଦ୍ଧଶିଶୁ ଏଠି ମୂର୍ତ୍ତି ଆକାରରେ ଦେଖା ଦେଲା । ଏହା ଠିକ୍ ତାଙ୍କର ଗ୍ରୀକ ଓ ମୋହିନୀ ଦେବତା କ୍ୟୁପିଡ଼ (Cupid) ପରି ହୋଇଥିଲା, ଅଥବା ପରେ ଗ୍ରୀକ ଖ୍ରୀଷ୍ଟ ପରି—ଲାଟାନ୍ ଭାଷାରେ "ସାନ୍ତୋ ବମ୍ବିନୋ" । ଏହିରୂପେ ବୌଦ୍ଧଧର୍ମରେ ମୂର୍ତ୍ତି ପୂଜା ପଶିଲା ଏବଂ ଶେଷକୁ ଏହା ବଢ଼ି ବଢ଼ି ପ୍ରତ୍ୟେକ ବୌଦ୍ଧ-ମନ୍ଦିରରେ ବୁଦ୍ଧମୂର୍ତ୍ତି ରଖାହେଲା ।

ଇରାନୀୟାନ୍ ବା ପର୍ସିଅନ୍ ପ୍ରଭାବ ମଧ୍ୟ ଭାରତୀୟ କଳାକୁ ସ୍ପର୍ଶ କରିଥିଲା । ବୌଦ୍ଧଶାସ୍ତ୍ର ଓ ହିନ୍ଦୁଧର୍ମର ପୁରାଣ ଗ୍ରନ୍ଥମାନଙ୍କରୁ ଭାରତର ଶିଳ୍ପୀମାନଙ୍କୁ ଅସରନ୍ତି ଉପାଦାନ ମିଳିଲା ଏବଂ ଆନ୍ଧ୍ର ଦେଶର ଅମରାବତୀ, ବମ୍ବେ ନିକଟସ୍ଥ ଏଲିଫାଣ୍ଟା ଗୁହା, ଅଜନ୍ତା, ଏଲୋରା ଓ ଅନ୍ୟାନ୍ୟ ଅନେକ ସ୍ଥାନରେ ଏହି ପୁରାତନ ଶାସ୍ତ୍ର ଓ ପୁରାଣବର୍ଣ୍ଣିତ କାହାଣୀସବୁ ପଥର ଓ ଚିତ୍ରରେ ଲେଖା ହୋଇଥିବାର ଦେଖିବାକୁ ମିଳେ । ଏହିସବୁ ସ୍ଥାନ ଦେଖିବା ନିତାନ୍ତ ଦରକାର ଏବଂ ମୋର ଇଚ୍ଛା ଅନ୍ତତଃ ଏଥିରୁ କେତୋଟି ସ୍ଥାନ ପ୍ରତ୍ୟେକ ସ୍କୁଲ ବାଳକ ଓ ବାଳିକାର ଅବଶ୍ୟ ଦେଖିବା ଦରକାର ।

ଭାରତୀୟ ପୁରାଣ ସମୁଦ୍ର ପାର ହୋଇ ଭାରତରୁ ସୁଦୂରକୁ ବି ଗଲା । ଜାଭା, ବୋର୍ଣ୍ଣିଓରୁ ଦୂରରେ ଅନେକ ଅପୂର୍ବ ପଥର କାନ୍ଥ ଖୋଦିତ ଚିତ୍ରରେ ସମଗ୍ର ବୁଦ୍ଧକାହାଣୀ ଲିପିବଦ୍ଧ ହୋଇ ରହିଛି । ଆଙ୍କୋର ଭାଟରେ ଏବେ ସୁଦ୍ଧା ଅନେକ ସୁନ୍ଦର ମୂର୍ତ୍ତି ରହିଛି । ଆଜିକି ୮୦୦ ବର୍ଷ ପୂର୍ବେ ପୂର୍ବ ଏସିଆରେ ଏହି ସହରକୁ ଯେତେବେଳେ "ଆଡ଼ମ୍ବରପୂର୍ଣ୍ଣ ଆଙ୍କୋର" ବୋଲି କହୁଥିଲେ, ଏହା ତାହା ସ୍ମରଣ କରାଇ ଦିଏ । ଏହି ମୂର୍ତ୍ତିଗୁଡ଼ିକର ମୁଖ ବଡ଼ ଭଦ୍ର ଓ ଜୀବନ୍ତ ଏବଂ ଅଧିକାଂଶ ଉପରେ ବିଚିତ୍ର ଓ ପ୍ରତାରଣାପୂର୍ଣ୍ଣ ହାସ୍ୟରେଖା ସବୁ ଫୁଟି ଉଠେଛି । ଏହା "ଆଙ୍କୋରହାସ୍ୟ" ନାମରେ ପରିଚିତ । ଏହାର ଜାତିଗତ ପରିବର୍ତ୍ତନ ହେଲେ ସୁଦ୍ଧା ତଥାପି ହାସ୍ୟ ରହିଛି ଏବଂ ଏହା କେବେ ବିରକ୍ତିକର ମନେ ହୁଏ ନା ।

କୌଣସି ଯୁଗର ସଭ୍ୟତା ଓ ଜୀବନର ପ୍ରତିବିମ୍ବ ହେଉଛି କଳା । ଯେତେବେଳେ ଭାରତ ସଭ୍ୟତା ଜୀବନପୂର୍ଣ୍ଣ ଥିଲା, ସେତେବେଳେ ଏହା ସୌନ୍ଦର୍ଯ୍ୟକର ଜିନିଷସବୁ ସୃଷ୍ଟି କଲା, କଳାର ଉନ୍ନତି ହେଲା ଏବଂ ଏହାର ପ୍ରତିଧ୍ୱନି ସୁଦୂର ଦେଶମାନଙ୍କରେ ଶୁଣାଗଲା; କିନ୍ତୁ ତୁ ତ ଜାଣୁ କ୍ଲାନ୍ତିଲତା ଓ ପତନ ଆସିଗଲା ଏବଂ ଦେଶ ଖଣ୍ଡ ଖଣ୍ଡ ହେବା ସଙ୍ଗେ ସଙ୍ଗେ କଳାର ବି ପତନ ହେଲା । ଏଗୁଡ଼ିକ ଶାନ୍ତି ଓ ଜୀବନ ହରାଇଲା, ଶ୍ରେଷ୍ଠ ଶ୍ରେଷ୍ଠ ବୋଝରେ ମଥା ନଇଁ ପଡ଼ିଲା ଏବଂ ବେଳେ ବେଳେ ଅନ୍ଧକାରାଚ୍ଛନ୍ନ ହୋଇଗଲା । ମୁସଲମାନମାନଙ୍କ ଆଗମନ ଏହାକୁ ଏକ ଧକ୍କା ଦେଲା ଏବଂ ନୂତନ ପ୍ରଭାବ ଆଣିଦେଲା । ଏଥିରେ ଅତିଶୟ ଆଲଙ୍କାରିକ ଭାରତୀୟ କଳାର ଅଧୋଗତି ଦୂର କଲା । ପଶ୍ଚାତରେ ପୁରାତନ ଭାରତୀୟ ଆଦର୍ଶ ରହିଲା; କିନ୍ତୁ ଏସବୁ ସରଳ ଭାବରେ ଓ ଭଦ୍ର ଭାବରେ ଆରବ ଓ ପର୍ସିଆରୁ ଆସିଥିବା ନୂତନ ପୋଷାକରେ ସଜ୍ଜିତ ହେଲା । ଅତୀତରେ ହଜାର ହଜାର ନିପୁଣ ଭାରତୀୟ ଶିଳ୍ପୀ ଭାରତରୁ ମଧ୍ୟଏସିଆକୁ ଯାଇଥିଲେ । ବର୍ତ୍ତମାନ ଶିଳ୍ପୀ ଓ ଚିତ୍ରକର ପଶ୍ଚିମ ଏସିଆରୁ ଭାରତକୁ ଆସିଲେ । ପର୍ସିଆ ଓ ମଧ୍ୟଏସିଆରେ ଶିଳ୍ପକଳାର ପୁନରୁତ୍ଥାନ ହୋଇଥିଲା । କନ୍‌ଷ୍ଟାଣ୍ଟି-ନୋପଲରେ ମହାନ୍ କାରିଗରମାନେ ବୃହତ୍ ପ୍ରାସାଦମାନ ଠିଆ କରି ଦେଇଥିଲେ । ଏହା ମଧ୍ୟ ଇଟାଲୀର ପୁନରୁତ୍ଥାନ କାଳ; ମହାନ୍ ଶିଳ୍ପୀ ସବୁ ସୁନ୍ଦର ଚିତ୍ର ଓ ମୂର୍ତ୍ତି ଠିଆ କରି ଦେଇଥିଲେ ।

ସେ କାଳରେ ଏକ ପ୍ରସିଦ୍ଧ ତୁର୍କୀ ସ୍ଥାପତ୍ୟ ବିଦ୍ୟାବିତ୍ ସିନାଦ୍ ଥିଲେ ଏବଂ ବାବର ତାଙ୍କର ପ୍ରିୟ ଶିଷ୍ୟ ୟୁସୁଫଙ୍କୁ ଡକାଇ ଆଣିଥିଲେ । ଇରାନ୍‌ରେ ବିହଜାଦ ପ୍ରଧାନ ଚିତ୍ରକର ଥିଲେ ଏବଂ ଆକବର ତାଙ୍କର କେତେକ ଶିଷ୍ୟଙ୍କୁ ଆଣାଇ ନିଜ ଦରବାରରେ ଚିତ୍ରକର କରି ରଖିଲେ । କାରୁକାର୍ଯ୍ୟ ଓ ଚିତ୍ରରେ ପର୍ସିଆ ପ୍ରଭାବ ପ୍ରଧାନ ହୋଇଉଠିଲା । ମୋଗଲ ଭାରତରେ ଏହି ଭାରତ ମୁସଲମାନ କଳାର କେତେକ ବରିଷ୍ଠ ପ୍ରାସାଦ କଥା ମୁଁ ତତେ କହୁଛି ଏବଂ ତୁ ବି କେତେକ ଦେଖିଛୁ । ଏହି ଭାରତ ପର୍ସିଆ କଳାର ବଡ଼ କାମ ହେଉଛି ତାଜମହଲ ।

ଅନେକ ବଡ଼ ଶିଳ୍ପୀ ଏହା ଗଢ଼ିବାରେ ସାହାଯ୍ୟ କରିଥିଲେ । କହନ୍ତି ଯେ ପ୍ରଧାନ କାରିଗର ଥିଲେ ଜଣେ ତୁର୍କୀର ଲୋକ ଅଥବା ଉସ୍ତାଦ ଇସା ନାମକ ଜଣେ ପର୍ସିଆବାସୀ ଏବଂ ଭାରତୀୟ କାରିଗର ତାଙ୍କୁ ସାହାଯ୍ୟ କରିଥିଲେ । ଭିତର ସାଜସଜ୍ଜା କେତେକ ଇଉରୋପୀୟ ଶିଳ୍ପୀ ବିଶେଷତଃ ଇଟାଲୀବାସୀଙ୍କ ଦ୍ୱାରା ହୋଇଛି ବୋଲି ଧରାଯାଏ । ଏତେ ବିଭିନ୍ନ ଦେଶର କାରିଗର କାମ କରିଥିବା ସତ୍ତ୍ୱେ ଏଠାରେ କୌଣସି ପ୍ରକାର ପରସ୍ପରକୁ ଖଣ୍ଡନ କରି ପରି କମ୍ପା ଉପରେ ପଡ଼ିଗଲା ପରି ଶିଳ୍ପ ଦେଖାଯାଏ ନାହିଁ । ସବୁ ବିଭିନ୍ନ ପ୍ରଭାବ ଏକ ସଙ୍ଗରେ ଗୋଟାଏ ଅଦ୍ଭୁତ ପ୍ରକାର ମେଳ ଖାଇଛି । ଅନେକ ଲୋକ ତାଜରେ କାମ କରିଥିଲେ ଏବଂ ପର୍ସିଆ ଓ ଭାରତୀୟ ପ୍ରଭାବ ହିଁ ଶ୍ରେଷ୍ଠ ଥିଲା । ଏମ୍ ଗ୍ରାଉସେଟ୍ ଠିକ୍ କହିଛନ୍ତି, "ଇରାନର ଆତ୍ମା ଭାରତ ଶରୀରରେ ଅବତାର ହୋଇଛି ।"

## ୧୬୪ : ଇରାନରେ ପୁରାତନ ପ୍ରଥାର ଅବିଚ୍ଛିନ୍ନ ଧାରା

ଜାନୁୟାରୀ ୨୦, ୧୯୩୩

ଏବେ ପର୍ସିଆକୁ ଯିବା—ଏହାର ଆତ୍ମା ଭିତରକୁ ଆସି ତାଜଠାରେ ଶରୀର ରୂପେ ପ୍ରକାଶ ପାଇଛି । ପର୍ସିଆ କାଳର ଏକ ଅପୂର୍ବ ନାମ ଅଛି । ଆସିରୀୟାନ୍‌ମାନଙ୍କ ଅମଳରୁ ପ୍ରାୟ ଦୁଇ ହଜାରରୁ ଅଧିକ ବର୍ଷ ହେବ ଏହା ଚାଲି ଆସିଛି । ସରକାର, ରାଜବଂଶ ଓ ଧର୍ମର ପରିବର୍ତ୍ତନ ହୋଇଛି । ଏହି ଦେଶ ବିଦେଶୀ ଶାସନ ଓ ନିଜ ରାଜାଙ୍କ ଅଧୀନରେ ରହିଛି, ଇସଲାମ ଆସି ବହୁତ ପରିବର୍ତ୍ତନ କରିଛି; କିନ୍ତୁ ସଂସ୍କାର ସେହିପରି ରହିଛି । ଅବଶ୍ୟ ପ୍ରତ୍ୟେକ ଯୁଗରେ ଏହାର ପରିବର୍ତ୍ତନ ହୋଇଛି ଓ ଉନ୍ନତି ଲଭିଛି । କଥିତ ଅଛି ଯେ ପର୍ସିଆର ଦୃଶ୍ୟ ଓ ମୃତ୍ତିକା ସହ ପରସ୍ପର କଳାର ସମ୍ପର୍କ ଥିବାରୁ ଏହା ଅବିଚ୍ଛିନ୍ନ ଭାବରେ ରହିପାରିଛି ।

ପୂର୍ବ ଚିଠିରେ ମୁଁ ନିଜେ ଆସିରୀୟାନ ସାମ୍ରାଜ୍ୟ ସମ୍ବନ୍ଧରେ ତୋତେ କହିଛି । ପର୍ସିଆ ଏହାର ଅନ୍ତର୍ଭୁକ୍ତ ଥିଲା । ଖ୍ରୀଷ୍ଟପୂର୍ବ ୫୦୦ କି ୬୦୦ ବର୍ଷରେ ଇରାନୀ ଆର୍ଯ୍ୟମାନେ ନିନେଭ ଦଖଲ କଲେ ଏବଂ ଆସିରୀୟାନ ସାମ୍ରାଜ୍ୟର ଅନ୍ତ ହେଲା । ପର୍ସିଆର ଆର୍ଯ୍ୟମାନେ ତା ପରେ ସିନ୍ଧୁନଦୀ କୂଳଠାରୁ ଇଜିପ୍ଟ ପର୍ଯ୍ୟନ୍ତ ଏକ ବୃହତ୍ ସାମ୍ରାଜ୍ୟ ଗଢ଼ିଲେ । ସେମାନେ ପୁରାକାଳର ଦୁନିଆରେ ପ୍ରାଧାନ୍ୟ ବିସ୍ତାର କରିଥିଲେ ଏବଂ ଗ୍ରୀକ୍ ପୁରାଣମାନଙ୍କରେ ଏହାର ଶାସକମାନଙ୍କୁ "ମହାନ୍ ରାଜା" ବୋଲି ଡକାଯାଇଛି । ଏହି "ମହାନ ରାଜା"ଙ୍କ ଭିତରେ ସାଇରସ୍, ଡାରିୟସ୍, ଜେରିକସ ପ୍ରଧାନ । ତୋର ମନେଥିବ ଡାରିୟସ୍ ଓ ଜେରିକ୍ସ ଗ୍ରୀସ୍

ଜୟକରିବାକୁ ଚେଷ୍ଟାକରି ପରାସ୍ତ ହୋଇଥିଲେ । ଏହାକୁ ଅଚେମେନିଜ ବଂଶ କହନ୍ତି । ୨୨୦ବର୍ଷ ପର୍ଯ୍ୟନ୍ତ ଏମାନେ ଏକ ବିଶାଳ ସାମ୍ରାଜ୍ୟରେ ରାଜୁତି କରିଥିଲେ । ଶେଷରେ ମାସିଡ଼ୋନିର ଆଲେକ୍‌ଜାଣ୍ଡାର ଏହାକୁ ଶେଷ କରିଥିଲେ ।

ଆସିରିୟାନ୍ ଓ ବାବିଲୋନିୟାନମାନଙ୍କ ପରେ ପର୍ସିଆବାସୀଙ୍କ ଆଗମନ ସ୍ୱାଗତ ହୋଇଥିଲା । ସେମାନେ ସଭ୍ୟ ଓ ସହିଷ୍ଣୁ ଥିଲେ ଏବଂ ବିଭିନ୍ନ ଧର୍ମ ଓ ସଂସ୍କୃତିକୁ ଉନ୍ନତ କରିବା ନିମନ୍ତେ ସ୍ୱାଧୀନତା ଦେଉଥିଲେ । ଏହି ପ୍ରକାଣ୍ଡ ସାମ୍ରାଜ୍ୟ ଭଲ ଭାବରେ ଶାସିତ ହେଉଥିଲା ଏବଂ ସବୁ ଅଞ୍ଚଳରେ ଯାତାୟାତ ପଥ ସୁଗମ କରିବା ନିମନ୍ତେ ଅନେକ ଭଲ ରାସ୍ତା ତିଆରି ହେଲା । ଭାରତକୁ ଯେଉଁ ଆର୍ଯ୍ୟମାନେ ଆସିଥିଲେ, ଏହି ପର୍ସିଆନମାନଙ୍କର ତାଙ୍କ ସେହି ଘନିଷ୍ଠ ସମ୍ପର୍କ ଥିଲା । ତାଙ୍କ ଧର୍ମ ଜୋରେଷ୍ଟାର ବା ଜାରଥୁଷ୍ଟ୍ରାର ଆଦିମ ବୈଦିକ ଧର୍ମ ସହିତ ସମ୍ବନ୍ଧ ଥିଲା । ଆର୍ଯ୍ୟମାନଙ୍କର ଆଦିମ ବାସସ୍ଥାନ ଯେଉଁଠି ହୋଇଥାଉ ପଛକେ, ଉଭୟେ ଏକା ସ୍ଥାନରୁ ଆସିଥିଲା ପରି ମନେହୁଏ ।

ଆକେମେନିଜ ରାଜାମାନେ ବଡ଼ ନିର୍ମାତା ଥିଲେ । ସେମାନଙ୍କ ରାଜଧାନୀ ପର୍ସିପଲିସରେ ସେମାନେ ପ୍ରକାଣ୍ଡ ପ୍ରାସାଦମାନ ତିଆରି କରିଥିଲେ । ଏଥିରେ ବଡ଼ ବଡ଼ ଲମ୍ବା ଘରସବୁ ଥିଲା । ଏମାନେ ମନ୍ଦିର ନିର୍ମାଣ କରି ନ ଥିଲେ । ଏହି ବିଶାଳ ଆକାର ସମ୍ବନ୍ଧରେ ଭଗ୍ନାବଶେଷ ଦେଖିଲେ ଠିକ୍‌ଏ ଧାରଣା ଜନ୍ମେ । ଭାରତରେ ମୌର୍ଯ୍ୟବଂଶ ଅମଳର କଳା ସହିତ ଆଚେମେନିକ କଳାର ସମ୍ବନ୍ଧ ଥିବା ପରି ମନେହୁଏ ଏବଂ ଏଥିରେ ମଧ୍ୟ ଭାରତୀୟ କଳା ପ୍ରଭାବିତ ହୋଇଥିଲା ।

ଆଲେକ୍‌ଜାଣ୍ଡାର "ମହାନ୍ ରାଜା" ଡାରିୟୁସଙ୍କୁ ପରାସ୍ତ କଲେ ଏବଂ ଏହି ରୂପେ ଆକେମେନିଜ ବଂଶ ଶେଷ ପାଇଲା । ସେଲୁକସ୍ (ଅଲେକ୍‌ଜାଣ୍ଡାରଙ୍କ ସେନାପତି) ଓ ତାଙ୍କ ଉତ୍ତରାଧିକାରୀଙ୍କର ରାଜୁତି କିଛି ଦିନ ଚାଲିଲା ଏବଂ ଅଧାବିଦେଶୀ ଶାସନ ଅଧୀନରେ ହେଲେନଙ୍କ ପ୍ରଭାବ କିଛିଦିନ ରହିଥିଲା । ଭାରତର ସୀମାନ୍ତରେ କୁଶାନମାନେ ଥିଲେ ଏବଂ ସେମାନେ ବେନାରସର ଦକ୍ଷିଣ ଓ ମଧ୍ୟ ଏସିଆ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ସେମାନେ ଏହାର ସମସାମୟିକ ଏବଂ ହେଲେନିକ ପ୍ରଭାବ ଏମାନଙ୍କ ଉପରେ ବି ପଡ଼ିଥିଲା । ଖ୍ରୀଷ୍ଟ ପର ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଆଲେକଜାଣ୍ଡାର ପରେ ୬୦୦ ବର୍ଷ ପର୍ଯ୍ୟନ୍ତ ଭାରତର ପଶ୍ଚିମାଞ୍ଚଳ ଓ ସମଗ୍ର ଏସିଆ ଗ୍ରୀକ୍ ପ୍ରଭାବରେ ଆସିଲା । କଳାବିଦ୍ୟାର ପ୍ରଭାବ ହିଁ ବେଶି ଥିଲା । ପର୍ସିଆର ଧର୍ମରେ ଏହା ହସ୍ତକ୍ଷେପ କଲା ନାହିଁ—ଜୋରେଷ୍ଟ୍ରିୟାନିଜମ ଏମାନଙ୍କର ଧର୍ମ ।

ତୃତୀୟ ଶତାବ୍ଦୀରେ ପର୍ସିଆରେ ଜାତୀୟତାର ପୁନରୁତ୍‌ଥାନ ହେଲା ଏବଂ ଏକ ନୂତନ ବଂଶ କ୍ଷମତାକୁ ଆସିଲା । ଏହା ସସାନିଜ ବଂଶ । ଏହା ଉଗ୍ର ଜାତୀୟବାଦୀ ଥିଲା ଏବଂ ପୁରାତନ ଆଚେମେନିଜ୍ ରାଜାମାନଙ୍କର ଉତ୍ତରାଧିକାରୀ ବୋଲି ଦାବୀ କରୁଥିଲେ । ଉଗ୍ର ଜାତୀୟତାରେ

ଯାହା ସାଧାରଣତଃ ହୋଇଥାଏ, ସେହିପରି ଏମାନେ ସଙ୍କୀର୍ଣ୍ଣମନା ଓ ଅସହିଷ୍ଣୁ ଥିଲେ । ଏହା ଏପରି ହେବାର ଆଉ ଏକ କାରଣ ହେଉଛି, ରୋମାନ ସାମ୍ରାଜ୍ୟ ଓ ପଶ୍ଚିମରେ କନ୍‌ଷ୍ଟାଣ୍ଟିନୋପଲର ବିଜାଣ୍ଟାଇନ୍ ସାମ୍ରାଜ୍ୟ ମଝିରେ ଏହା ଅବସ୍ଥିତ ଥିଲା ଏବଂ ପୂର୍ବରେ ତୁର୍କୀ ଦେଶ ମାଡ଼ି ଆସୁଥିଲା । ତଥାପି ଇସଲାମର ଆଗମନ ପର୍ଯ୍ୟନ୍ତ ୪୦୦ ବର୍ଷରୁ ଅଧିକ କାଳ ଏହା ଚାଲିଲା । ସସାନିଡମାନଙ୍କ ଅମଳରେ ଜୋରୋଷ୍ଟ୍ରିୟାନ ଧର୍ମଯାଜକମାନେ ସର୍ବଶକ୍ତିମାନ ଥିଲେ, ସେମାନଙ୍କ ଗୀର୍ଜାହିଁ ସରକାରକୁ ଆୟତ୍ତ କରୁଥିଲା ଏବଂ କୌଣସି ପ୍ରକାର ବିରୋଧ ସହ୍ୟ କରିପାରୁ ନ ଥିଲା । ଏତିକବେଳେ ସେମାନଙ୍କର ପୁଣ୍ୟ ଗ୍ରନ୍ଥ ଆଭେସ୍ତାର ଶେଷ ସଂସ୍କରଣ ତିଆରି ହୋଇଥିଲା ବୋଲି କୁହାଯାଏ ।

ଏହି ସମୟରେ ଭାରତରେ ବି ଗୁପ୍ତ ସାମ୍ରାଜ୍ୟର ରାଜତ୍ୱ ଥିଲା । କୁଶାନ ଓ ବୌଦ୍ଧ ଅମଳ ପରେ ଏହା ଏକ ଜାତୀୟତାର ପୁନରୁଦ୍ଧାର କରିବା ଲାଗି ବାହାରିଲା । କଳା ଓ ସାହିତ୍ୟର ପୁନର୍ଜନ୍ମ ହେଲା ଏବଂ କାଳିଦାସଙ୍କ ପରି ବଡ଼ ବଡ଼ ସଂସ୍କୃତ ପଣ୍ଡିତମାନେ ଏହି ସମୟରେ ବାସ କରୁଥିଲେ । ଗୁପ୍ତ ଅମଳର ଭାରତ ସହିତ ସସାନିଡ୍ ଅମଳର ପର୍ସିଆର କଳାସଂଯୋଗ ଥିବାର ବହୁ ସୂଚନା ମିଳେ । ସସାନିଡ ଅମଳର ଖୁବ୍ ଅଳ୍ପ ଚିତ୍ର ବା ସ୍ଥାପତ୍ୟର ଚିହ୍ନ ଆଜି ପର୍ଯ୍ୟନ୍ତ ରହିଛି; ଯାହା ବା ଅଛି ତାହା ଜୀବନ ଓ ସ୍ପନ୍ଦନଭରା । ପଶୁ ଚିତ୍ରଗୁଡ଼ିକ ଠିକ୍ ଅଜନ୍ତା ଚିତ୍ର ପରି । ସସାନିଡ୍ କଳାର ପ୍ରଭାବ ଚୀନ ଓ ଗୋବି ମରୁଭୂମି ପର୍ଯ୍ୟନ୍ତ ବିସ୍ତାର ଲଭିଥିଲା ପରି ମନେହୁଏ ।

ସସାନିଡଙ୍କ ଦୀର୍ଘ ରାଜତ୍ୱର ଶେଷ ବେଳକୁ ସେମାନେ ଦୁର୍ବଳ ହୋଇପଡ଼ିଲେ ଏବଂ ପର୍ସିଆ ଅବସ୍ଥା ଖରାପ ଥିଲା । ବିଜାଣ୍ଟାଇନ୍ ସାମ୍ରାଜ୍ୟ ସହ ଦୀର୍ଘକାଳ ପର୍ଯ୍ୟନ୍ତ ଯୁଦ୍ଧ କରି ଏମାନଙ୍କର ଶକ୍ତି ପୂରାପୂରି କ୍ଷୟ ହୋଇଗଲା । ଆରବ ସୈନ୍ୟମାନେ ନୂତନ ଧର୍ମବିଶ୍ୱାସରେ ମାତିଥିଲେ ଏବଂ ପର୍ସିଆ ଦଖଲ କରିବା ସେମାନଙ୍କ ପକ୍ଷେ କଷ୍ଟକର ହେଲା ନାହିଁ । ମହମ୍ମଦଙ୍କ ମୃତ୍ୟୁର ୧୦ ବର୍ଷ ଭିତରେ ୭ମ ଶତାବ୍ଦୀର ମଧ୍ୟଭାଗରେ ପର୍ସିଆ ଖଲିଫା ଅଧୀନକୁ ଆସିଗଲା । ଅରବ ସୈନ୍ୟ ମଧ୍ୟଏସିଆ ଓ ଉତ୍ତର ଆଫ୍ରିକାରେ ପ୍ରସାର ଲଭିବା ସଙ୍ଗେ ସଙ୍ଗେ ସେମାନଙ୍କ ଧର୍ମ ସହ ଏକ ବର୍ଦ୍ଧିଷ୍ଣୁ ସଭ୍ୟତା ବି ନେଇଥିଲେ । ସିରିଆ, ମେସୋପଟାମିଆ ଓ ଇଜିପ୍ଟ ସବୁ ଅରବ ସଂସ୍କୃତି ଅଧୀନରେ ଆସିଲା । ଆରବ ଭାଷା ହିଁ ତାଙ୍କର ଭାଷା ହେଲା ଏବଂ ଜାତିରେ ବି ମିଶିଗଲେ । ବାଗ୍‌ଦାଦ୍, ଡାମସ୍କସ୍ ଓ କାଏରୋ ଆରବ ସଂସ୍କୃତିର ପ୍ରଧାନ କେନ୍ଦ୍ର ହେଲା ଏବଂ ନୂତନ ସଭ୍ୟତାର ପ୍ରେରଣାରେ ଅନେକ ସୁନ୍ଦର ସୁନ୍ଦର କୋଠା ବି ସେଠି ତିଆରି ହେଲା । ଆଜି ସୁଦ୍ଧା ଏହିସବୁ ଦେଶ ଆରବୀୟ ଦେଶ ରୂପେ ପରିଚିତ ଏବଂ ପରସ୍ପରଠାରୁ ଅଲଗା ହୋଇ ସୁଦ୍ଧା ସେମାନେ ଏକତାର ସ୍ୱପ୍ନ ଦେଖୁଛନ୍ତି ।

ପର୍ସିଆ ମଧ୍ୟ ସେହିପରି ଆରବମାନେ ଦଖଲ କଲେ; କିନ୍ତୁ ସିରିଆ ବା ଇଜିପ୍ଟରେ ଯେପରି ସେମାନେ ଲୋକଙ୍କୁ ନିଜ ସହ ମିଶାଇ ନେଲେ, ସେପରି କରିପାରି ନ ଥିଲେ ।

ଇରାନୀୟମାନେ ଜାତି ପୁରାତନ ଆର୍ଯ୍ୟବଂଶରୁ ଜାତ, ସେମାନେ ସେମିଟିକ୍ ଆରବମାନଙ୍କଠାରୁ ଆହୁରି ଅନ୍ତର ହୋଇଗଲେ । ସେମାନଙ୍କର ଭାଷା ବି ଆର୍ଯ୍ୟଭାଷା ଥିଲା । ତେଣୁ ଜାତି ବିଚ୍ଛିନ୍ନ ହୋଇ ରହିଲା ଓ ଭାଷାର ଉନ୍ନତି ହେଲା । ଇସଲାମ ଦ୍ରୁତ ବେଗରେ ବିସ୍ତାର ଲାଭ କଲା ଓ ଜୋରୋଷ୍ଟ୍ରିୟାନିଜମ୍‌କୁ ସ୍ଥାନାନ୍ତରିତ କଲା । ଏହି ଧର୍ମ ଆସି ଭାରତରେ ଆଶ୍ରୟ ନେଲା । କିନ୍ତୁ ଇସଲାମ ଅଧୀନରେ ମୁଦ୍ଧା ପର୍ସିଆନମାନେ ନିଜ ବାଟ ଧରିଥିଲେ । ବିବାଦ ହେଲା ଏବଂ ଦୁଇ ଦଳ ବାହାରିଲେ । ଇସଲାମ ଭିତରେ ସିଆ ଓ ସୁନ୍ନୀ ଦୁଇଟି ଶାଖା ଦେଖାଦେଲା । ପର୍ସିଆ ମୁଖ୍ୟ ଭାବରେ ଗୋଟିଏ ସିଆ ଦେଶ ହୋଇ ରହିଲା ଏବଂ ଏବେ ବି ସେପରି ଅଛି; କିନ୍ତୁ ଇସଲାମ ଜଗତର ଅବଶିଷ୍ଟ ଅଂଶ ଅଧିକାଂଶ ସୁନ୍ନୀ ସମ୍ପ୍ରଦାୟର ।

ପର୍ସିଆକୁ ମିଶାଇ ନ ପାରିଲେ ମୁଦ୍ଧା ଏହା ଉପରେ ଆରବ ସଭ୍ୟତାର ଖୁବ୍ ପ୍ରଭାବ ପଡ଼ିଥିଲା ଏବଂ ଭାରତ ପରି ସେଠି ଇସଲାମ ମଧ୍ୟ କାର୍ଯ୍ୟରେ ନୂତନ ଜୀବନ ସଞ୍ଚାର କଲା । ପର୍ସିଆନମାନଙ୍କ ଦ୍ୱାରା ଆରବ କଳା ଓ ସଂସ୍କୃତି ମଧ୍ୟ ସମାନ ରୂପେ ପ୍ରଭାବିତ ହେଲା । ମରୁଭ୍ରମଣର ଏହି ସରଳ ଅଧିବାସୀଙ୍କ ଗୃହରେ ପର୍ସିଆନ ବିଳାସ ପ୍ରବେଶ କଲା ଏବଂ ଯେ କୌଣସି ସାମ୍ରାଜ୍ୟ ଦରବାର ପରି ଆରବ ଖଲିଫାଙ୍କ ଦରବାର ଆଡ଼ମ୍ବରପୂର୍ଣ୍ଣ ହୋଇଗଲା । ବାଗଦାଦ୍ ସେ କାଳର ସବୁଠାରୁ ବଡ଼ ସହର ହେଲା । ଏହାର ଉତ୍ତରରେ ଟାଇଗ୍ରିସ ଉପରେ ସାମାରାଠାରେ ଖଲିଫାମାନେ ନିଜ ଲାଗି ଏକ ବିଶାଳ ମସଜିଦ୍ ଓ ପ୍ରାସାଦ ତୋଳିଲେ । ଏହାର ଭଗ୍ନାବଶେଷ ଏବେ ମୁଦ୍ଧା ରହିଛି । ମସଜିଦ୍ ଭିତରେ ବଡ଼ ବଡ଼ ବଙ୍ଗଳାସବୁ ଥିଲା ଓ ଅଗଣାରେ ଝରଣା ଥିଲା । ପ୍ରାସାଦ ଚତୁଷ୍କୋଣବିଶିଷ୍ଟ ଥିଲା ଏବଂ ଏହାର ଗୋଟିଏ ପାଖ ଏକ ମାଇଲ ପଞ୍ଚଅଷ୍ଟମାଂଶରୁ ବେଶି ଲମ୍ବ ଥିଲା ।

ନବମ ଶତାବ୍ଦୀରେ ବାଗଦାଦ ସାମ୍ରାଜ୍ୟ ଧ୍ୱଂସ ହେଲା ଏବଂ ଅନେକଗୁଡ଼ିଏ ରାଜ୍ୟରେ ବିଭକ୍ତ ହୋଇଗଲା । ପର୍ସିଆ ସ୍ୱାଧୀନ ହେଲା ଏବଂ ପୂର୍ବରୁ ତୁର୍କି ଜାତି ଅନେକ ରାଜ୍ୟ ସୃଷ୍ଟି କରିଥିଲେ । ଶେଷରେ ପର୍ସିଆ ଅଧିକାର କଲେ ଏବଂ ବାଗଦାଦ୍‌ର ନାମକୁ ମାତ୍ର ଥିବା ଖଲିଫା ଉପରେ ବି କର୍ତ୍ତୃତ୍ୱ କଲେ । ଏକାଦଶ ଶତାବ୍ଦୀର ଆରମ୍ଭରେ ଗଜନୀର ମାମୁଦ ଦେଖାଦେଲେ । ସେ ଭାରତ ଆକ୍ରମଣ କଲେ, ଖଲିଫାଙ୍କୁ ଭୟ ଚକିତ କଲେ, ଏକ ସାମ୍ରାଜ୍ୟ ସ୍ଥାପନ କଲେ ଯାହା ଅଳ୍ପକ୍ଷଣ ସ୍ଥାୟୀ ହେଲା ଏବଂ ପରେ ସେଲ୍‌ଜୁକ୍ ନାମକ ଆଉ ଏକ ତୁର୍କୀ ଜାତିଙ୍କଦ୍ୱାରା ଏହା ଲୋପ ହେଲା । ଖ୍ରୀଷ୍ଟିୟାନ କ୍ରୁଜେଡ଼ରମାନଙ୍କ ସମ୍ମୁଖୀନ ହୋଇ ସେଲଜୁକ୍-ମାନେ ଅନେକ ଦିନ ଲଢ଼ାଇ କଲେ, ସଫଳତା ଅର୍ଜନ କଲେ ଏବଂ ତାଙ୍କ ସାମ୍ରାଜ୍ୟ ୧୫୦ ବର୍ଷ ପର୍ଯ୍ୟନ୍ତ ରହିଥିଲା । ଦ୍ୱାଦଶ ଶତାବ୍ଦୀର ଶେଷ ବେଳକୁ ଆଉ ଏକ ତୁର୍କୀ ଜାତି ପର୍ସିଆରୁ ସେଲଜୁକ୍‌ମାନଙ୍କୁ ତଡ଼ିଦେଲେ ଏବଂ ଖ୍ୱାରା ବା ଖିବା ସାମ୍ରାଜ୍ୟ ସ୍ଥାପନ କଲେ । କିନ୍ତୁ ଏହାର ଜୀବନ ଅଳ୍ପକ୍ଷଣ ସ୍ଥାୟୀ ହୋଇଥିଲା; କାରଣ ଚେଙ୍ଗିଜ୍‌ଖାଁଙ୍କ ଦୂତଙ୍କୁ ଖ୍ୱାରାଜ ସାହା ଅପମାନ ଦେଇଥିବାରୁ ସେ କ୍ରୋଧାନ୍ୱିତ ହୋଇ ମଙ୍ଗୋଲମାନଙ୍କୁ ସଙ୍ଗରେ ଘେନି ଆସିଲେ ଓ ଏହି ଦେଶ ଏବଂ ତାର ଅଧିବାସୀଙ୍କୁ ଦମନ କଲେ ।

ଗୋଟିଏ ଚିଠିରେ ମୁଁ ଅନେକ ପରିବର୍ତ୍ତନ ଓ ସାମ୍ରାଜ୍ୟ କଥା ବର୍ଣ୍ଣନା କରିଗଲି । ଏହା ତୋତେ ଖୁବ୍ ଗୋଳମାଳିଆ ଲାଗିଥିବ । ବଂଶ ଓ ଜାତିମାନଙ୍କର ଉତ୍ଥାନ ଓ ପତନ ବିଷୟ ଲେଖି ତୋର ମନ ଉପରେ ବୋଝ ଲଦିଦେବାକୁ ମୁଁ ଚାହେଁନା; କିନ୍ତୁ ଏସବୁ ସତ୍ତ୍ୱେ ପର୍ସିଆର ଜୀବନରେ ଶାନ୍ତି ଓ ସଂସ୍କାର କିପରି ଚାଲି ଆସିଥିଲା, ଏହା ହିଁ ଦର୍ଶାଇ-ଦେବା ମୋର ଇଚ୍ଛା । ପୂର୍ବରୁ ଜାତି ପରେ ଜାତି ଆସିଲେ ଏବଂ ବୋଖାରାଠାରୁ ଇରାକ୍ ପର୍ଯ୍ୟନ୍ତ ଯେଉଁ ମିଶ୍ରିତ ପାର୍ସି ଆରବ ସଭ୍ୟତା ଥିଲା, ସେଥିରେ ସେମାନେ ମିଶିଗଲେ । ଯେଉଁ ତୁର୍କୀମାନେ ପର୍ସିଆର ବହୁ ଦୂରରେ ଏସିଆମାଇନରରେ ଆସି ପହଞ୍ଚିଗଲେ, ସେମାନେ ନିଜ ସଂସ୍କାର ରକ୍ଷା କଲେ ଏବଂ ଆରବ ସଂସ୍କୃତି ଗ୍ରହଣ କରିବାକୁ ଅସ୍ୱୀକାର କଲେ । ସେମାନେ ଏସିଆ ମାଇନରକୁ ସେମାନଙ୍କ ନିଜ ଦେଶ ତୁର୍କିସ୍ଥାନର ଏକ ଅଂଶ କରି କରିଦେଲେ; କିନ୍ତୁ ପର୍ସିଆ ଓ ତତ୍‌ସଂଲଗ୍ନ ଦେଶମାନଙ୍କର ପୁରାତନ ଇରାନୀ ସଂସ୍କୃତିର ଏପରି ଶକ୍ତି ଥିଲା ଯେ ସେମାନେ ଏହା ଗ୍ରହଣ କଲେ ଏବଂ ନିଜେ ସେଥିରେ ଚାଲିଲେ । ଯେଉଁସବୁ ବିଭିନ୍ନ ତୁର୍କୀ ବଂଶ ରାଜୁତି କରିଥିଲେ, ତାହା ଅଧୀନରେ ପର୍ସିଆନ୍ କଳା ଓ ସାହିତ୍ୟ ଉନ୍ନତି ଲାଭ କଲା । ଗଜନୀର ସୁଲତାନ ମାମୁଦଙ୍କ ଅମଳରେ ପାର୍ସି କବି ଫିର୍‌ଦୁଶୀଙ୍କ କଥା ତୋତେ ମୁଁ କହିଥିବା ପରି ମନେ ହେଉଛି । ମାମୁଦଙ୍କ ଅନୁରୋଧରେ ସେ ପ୍ରସିଦ୍ଧ ଫାରସୀ ଜାତୀୟ ଶାସ୍ତ୍ର ସାହନାମା ଲେଖିଥିଲେ ଏବଂ ପ୍ରାଗ୍ ଇସଲାମ୍ କାଳର ଦୃଶ୍ୟ ଏଥିରେ ବର୍ଣ୍ଣିତ ଅଛି ଏବଂ ଏଥିର ପ୍ରଧାନ ବୀର ହେଉଛନ୍ତି ରୁସ୍ତମ୍ । ପୁରାତନ ଜାତୀୟତା ଓ ଅତୀତ ସଂସ୍କାରରେ ପର୍ସିଆନ କଳା ଓ ସାହିତ୍ୟ ସହ ଏହା କିପରି ଘନିଷ୍ଠରୂପେ ସଂପୃକ୍ତ, ତାହା ଏହିଥିରୁ ଦେଖାଯାଏ । ପର୍ସିଆନ୍ ଚିତ୍ର ଓ ସୁନ୍ଦର ଦୃଶ୍ୟସବୁ ଏହି ସାହନାମାରୁ ନିଆଯାଇଛି ।

ଫିରଦୁଶୀ ୯୩୨ରୁ ୧୦୨୧ ପର୍ଯ୍ୟନ୍ତ ଥିଲେ । ତାଙ୍କର ଅଳ୍ପ ଦିନ ପରେ ପର୍ସିଆର ନୈଶାପୁରର ଆଉଜଣେ ଜ୍ୟୋତିଷ କବି ଓମରଖୈୟାମ ଜାହାରିଲେ । ସେ ଇରାନୀ ଓ ଫାର୍ସୀ ଉଭୟ ଭାଷାରେ ବିଖ୍ୟାତ ଥିଲେ । ଓମରଙ୍କ ପରେ ଆଉ ଜଣେ ପ୍ରସିଦ୍ଧ ଫାରସୀ କବି ବାହାରିଲେ ସିରାଜର ସେଖ୍ ସାଦୀ । ଯୁଗ ଯୁଗ ଧରି ଭାରତର ମକ୍ତବମାନଙ୍କରେ ତାଙ୍କ ଲିଖିତ ଗଲିସ୍ତାଁ ଓ ବୋସ୍ତାଁ ସ୍କୁଲ ପିଲାମାନଙ୍କୁ ମୁଖସ୍ଥ କରିବାକୁ ପଡ଼େ ।

ପ୍ରସିଦ୍ଧ ଲୋକଙ୍କ ଭିତରୁ ମୁଁ କେତେକଙ୍କ ନାମ ଦେଲି । ତୋତେ ଗୋଟିଏ ଲମ୍ବା ନାମ ତାଲିକା ଦେବାର କୌଣସି ଅର୍ଥ ନାହିଁ, କିନ୍ତୁ ତୋର ବୁଝିବା ଦରକାର ଯେ ଏହି ଶତାବ୍ଦୀରେ ପର୍ସିଆଠାରୁ ମଧ୍ୟଏସିଆର ଟ୍ରାନ୍‌ସ୍‌କକେସିୟାନ ପର୍ଯ୍ୟନ୍ତ ସବୁଠାରେ ପର୍ସିଆନ କଳା ଓ ସଂସ୍କୃତିର ଦୀପ ଉଜ୍ଜ୍ୱଳଭାବରେ ଜଳୁ ଥିଲା । ଟ୍ରାନ୍‌ସକକେସିୟାନର ବୋଖାରା ଓ ବାଲ୍‌ଖ ପରି ବଡ଼ ସହରମାନଙ୍କରେ କଳା ଓ ସାହିତ୍ୟ ପର୍ସିଆର ଯେକୌଣସି ସହର ସଙ୍ଗେ ପ୍ରତିଯୋଗିତା କରିପାରିବ । ବାଖରାରେ ୧୦ମ ଶତାବ୍ଦୀର ଶେଷ ବେଳକୁ ପ୍ରସିଦ୍ଧ ଆରବ ଦାର୍ଶନିକ ଇବନ୍‌ସିନା ବା ଆଭିସେନ୍ନା ଜନ୍ମ ଗ୍ରହଣ କରିଥିଲେ । ୨୦୦ ବର୍ଷ ପରେ

ବାଲ୍‌ଖରେ ଜଲାଲଉଦ୍ଦିନ ରୁମି ନାମକ ଆଉ ଜଣେ ବଡ଼ ପର୍ସିଆନ୍ କବି ଜାତ ହୋଇଥିଲେ । ସେ ଜଣେ ବଡ଼ ରହସ୍ୟବାଦୀ ଥିଲେ ଏବଂ ନର୍ତ୍ତକ ସନ୍ନ୍ୟାସୀ ଦଳ ସେ ସୃଷ୍ଟି କରିଥିଲେ ।

ତେଣୁ ଯୁଦ୍ଧ, ସଂଘର୍ଷ ଓ ରାଜନୈତିକ ପରିବର୍ତ୍ତନ ସତ୍ତ୍ୱେ ପର୍ସିଆ ଆରବ କଳା ଓ ସଂସ୍କୃତି ବରାବର ଜୀବନ୍ତ ହୋଇ ରହିଥିଲା ଏବଂ ସାହିତ୍ୟ, ଚିତ୍ର ଓ କାରିଗରୀରେ ଉତ୍କୃଷ୍ଟ ଜିନିଷସବୁ ପ୍ରସ୍ତୁତ ହେଲା । ଏହା ପରେ ବିପତ୍ତି ଆସି ପହଞ୍ଚିଥିଲା । ୧୩ଶ ଶତାବ୍ଦୀରେ (ପ୍ରାୟ ୧୨୦୦ରେ) ଚେଙ୍ଗିଜ୍ ଖାଁ ମାଡ଼ିଗଲେ ଓ ଖାଓ୍ୱାରିଜ ଇରାନକୁ ଧ୍ୱଂସ କରିଦେଲେ ଏବଂ କେତେକବର୍ଷ ପରେ ହୁଲାଗୁ ବାଗଦାଦ୍ ଧ୍ୱଂସ କଲେ ଏବଂ ଦୀର୍ଘ ଶତାବ୍ଦୀର ପୁଞ୍ଜିଭୂତ ଉଚ୍ଚ ସଂସ୍କୃତି ଲୋପ ହୋଇଗଲା । ମୁଁ ପୂର୍ବରୁ ଏକ ଜାଗାରେ ତୋତେ କହିଛି, କିପରି ମଙ୍ଗୋଲମାନେ ମଧ୍ୟଏସିଆକୁ ଏକପ୍ରକାର ମରୁଭୂମିରେ ପରିଣତ କଲେ ଏବଂ କିପରି ଏହାର ବଡ଼ ସହରମାନ ଗୁଣ୍ଡ଼ ସବୁ ଖସିଗଲେ ଓ ଏଠାରେ ଗୋଟିଏହେଲେ ମାନବ-ଜୀବନ ଦେଖାଯାଉ ନ ଥିଲା ।

ଏହି ବିପତ୍ତିରୁ ମଧ୍ୟ-ଏସିଆ କେବେ ସଂପୂର୍ଣ୍ଣରୂପେ ଉଦ୍ଧାର ପାଇ ନ ଥିଲା, ତଥାପି ତାହା ଯେ ହୋଇଥିଲା, ତାହା ଦେଖିଲେ ଆଶ୍ଚର୍ଯ୍ୟ ବୋଧହୁଏ । ତୋର ମନେଥିବ, ଚେଙ୍ଗିଜ୍ ଖାଁଙ୍କ ମୃତ୍ୟୁ ପରେ ତାଙ୍କ ବିଶାଳ ସାମ୍ରାଜ୍ୟ ବିଭକ୍ତ ହୋଇଗଲା । ପର୍ସିଆ ଓ ତାର ଚତୁର୍ଦ୍ଦିଗରେ ଏହି ସାମ୍ରାଜ୍ୟର ଯେଉଁସବୁ ଅଂଶ ଥିଲା, ତାହା ହୁଲାଗୁ ହାତରେ ପଡ଼ିଲା । ସେ ଧ୍ୱଂସ ପୂର୍ଣ୍ଣମାତ୍ରାରେ କରିସାରିବା ପରେ ଏକ ଶାନ୍ତ ଓ ସହିଷ୍ଣୁ ଶାସକରୂପେ କାର୍ଯ୍ୟ କଲେ ଏବଂ ଦ୍ୱିତୀୟ ଖାଁ ବଂଶ ସ୍ଥାପନ କଲେ । ଏହି ଦ୍ୱିତୀୟ ଖାଁ ବଂଶ କିଛି ଦିନ ମଙ୍ଗୋଲମାନଙ୍କର ପୁରାତନ ଧର୍ମ ଗ୍ରହଣ କଲେ । ପରେ ସେମାନେ ଇସ୍‌ଲାମ ଧର୍ମରେ ଦୀକ୍ଷିତ ହେଲେ । ଏହି ଧର୍ମ ଗ୍ରହଣ ପରେ ଓ ପୂର୍ବରୁ ସେମାନେ ଅନ୍ୟ ଧର୍ମ ପ୍ରତି ସହିଷ୍ଣୁ ଭାବ ଦେଖାଉଥିଲେ । ଚୀନରେ ତାଙ୍କ ଭାଇବିରାଦର ବଡ଼ ଖାଁ ଓ ତାଙ୍କ ପରିବାର ବୌଦ୍ଧଧର୍ମ ଗ୍ରହଣ କଲେ ଏବଂ ସେମାନଙ୍କ ସହ ଏମାନଙ୍କର ଘନିଷ୍ଠ ସମ୍ପର୍କ ଥିଲା । ଏପରି କି ଚୀନରୁ ଏତେ ଦୂରରେ ଥାଇ ମଧ୍ୟ ସେମାନେ କନ୍ୟାପାତ୍ର ମଗାଇ ପଠାଇଥିଲେ ।

ଚୀନ ଓ ପର୍ସିଆରେ ଥିବା ମଙ୍ଗୋଲମାନଙ୍କର ଏହି ଦୁଇ ଶାଖା ଭିତରେ ସମ୍ପର୍କରୁ କଳାଉପରେ ଯଥେଷ୍ଟ ପ୍ରଭାବ ପଡ଼ିଲା । ଚୀନ ପ୍ରଭାବ ପାର୍ସିରେ ପ୍ରବେଶ କଲା ଏବଂ ଚିତ୍ରମାନଙ୍କରେ ବିଚିତ୍ର ଧରଣର ଆରବୀ, ପାର୍ସି ଓ ଚୀନ ପ୍ରଭାବ ଦୃଷ୍ଟିଗୋଚର ହୁଏ; କିନ୍ତୁ ପୁନର୍ବାର ଏତେ ବିପତ୍ତି ସତ୍ତ୍ୱେ ପର୍ସିଆନ୍ ଅଂଶ ହିଁ ଜୟଲାଭ କଲା । ୧୪ଶ ଶତାବ୍ଦୀର ମଧ୍ୟଭାଗରେ ପର୍ସିଆରେ ହାଫିଜ୍ ନାମକ ଆଉ ଏକ ବିଖ୍ୟାତ କବି ଜାତ ହେଲେ; ସେ ଏବେ ସୁଦ୍ଧା ଭାରତରେ ଲୋକପ୍ରିୟ ହୋଇ ରହିଛନ୍ତି ।

ମଙ୍ଗୋଲ ଦ୍ୱିତୀୟ ଥର ବେଶୀଦିନ ତିଷ୍ଠିଲା ନାହିଁ । ଟ୍ରାନ୍ସକକେସିୟାନରେ ସମରକନ୍ଦର ଅଉ ଜଣେ ବିଖ୍ୟାତ ଯୋଦ୍ଧା ତିମୁର ଏହାର ଶେଷ ଚିହ୍ନ ବି ଲୋପ କରିଦେଲେ । ଏହାଙ୍କ ସମ୍ବନ୍ଧରେ ମୁଁ ତୋତେ ଲେଖିଛି—ଏହି ଶୋଷଣ ଓ ଅତ୍ୟନ୍ତ ବର୍ବର ଜଣେ କଳାର ପୃଷ୍ଠପୋଷକ ଥିଲେ ଏବଂ ଜଣେ ପଣ୍ଡିତ ଲୋକ ବୋଲି ଗଣ୍ୟ ହେଉଥିଲେ । ଦିଲ୍ଲୀ, ଶିରାଜ, ବାଗ୍‌ଦାଦ ଓ ଡାମସ୍କସ୍ ପରି ପ୍ରଧାନ ସହରମାନଙ୍କୁ ଲୁଟ କରି ନିଜର ରାଜଧାନୀ ସମରକନ୍ଦକୁ ସଜାଇବା ପାଇଁ ଏହି ଲୁଣ୍ଠିତ ଧନ ନେଇ ଯିବାଟା ହିଁ ତାଙ୍କର କଳାପ୍ରେମର ମୁଖ୍ୟ କାମ ହୋଇଥିଲା; କିନ୍ତୁ ସମରକନ୍ଦରେ ଅତି ଆଶ୍ଚର୍ଯ୍ୟଜନକ ଓ ଚିତ୍ତାକର୍ଷକ ନିର୍ମାଣ କାର୍ଯ୍ୟ ହେଉଛି ତିମୁରଙ୍କ କବର ଗୁର୍‌ଅମୀର । ଏହା ତାଙ୍କର ଉପଯୁକ୍ତ କବର; କାରଣ ଏହାର ଗଠନରେ ତାର ଦୃଢ଼ତା ଉପସ୍ଥିତି, ବଳ ଓ ନିଷ୍ଠୁର ସ୍ୱଭାବର ଇଙ୍ଗିତ ମିଳେ ।

ତିମୁର ଯେଉଁ ବିଶାଳ ଦେଶ ଜୟ କରିଥିଲେ, ତାଙ୍କର ମୃତ୍ୟୁ ପରେ ତାହାର ପତନ ହେଲା; କିନ୍ତୁ ଟ୍ରାନ୍ସକକେସିୟାନ ଓ ପର୍ସିଆ ସମେତ ଅପେକ୍ଷାକୃତ ଶ୍ରେଷ୍ଠ ରାଜ୍ୟ ତାର ଉତ୍ତରାଧିକାରୀଙ୍କ ହାତରେ ରହିଲା । ପୁରା ୧୦୦ ବର୍ଷ ପର୍ଯ୍ୟନ୍ତ ସମସ୍ତ ୧୫ଶ ଶତାବ୍ଦୀ ଏହି "ତିମୁରିଦମାନେ" (ଏହି ନାମରେ ପରିଚିତ) ଇରାନ୍, ବୋଖାରା ଓ ହେରାଟରେ ପ୍ରାଧାନ୍ୟ ବିସ୍ତାର କଲେ ଏବଂ ଅତି ଆଶ୍ଚର୍ଯ୍ୟ କଥା ହେଉଛି, ଏହି ନିର୍ମମ ବିଜେତାର ବଂଶଧରମାନେ ସେମାନଙ୍କ ଉଦାରତା, ମାନବିକତା ଓ କଳା ପ୍ରତି ଉତ୍ସାହ ନିମନ୍ତେ ପ୍ରସିଦ୍ଧ ଥିଲେ । ଏହାଙ୍କ ଭିତରେ ଶ୍ରେଷ୍ଠ ଥିଲେ ତିମୁରଙ୍କ ନିଜ ପୁଅ ଶାହରୁଖ୍ । ସେ ତାଙ୍କ ରାଜଧାନୀ ହେରାଟରେ ଏକ ବିଖ୍ୟାତ ଲାଇବ୍ରେରୀ ସ୍ଥାପନ କରିଥିଲେ ଏବଂ ଅନେକ ଶିକ୍ଷିତ ଲୋକ ଏଠାକୁ ଆକୃଷ୍ଟ ହୋଇ ଯାଉଥିଲେ ।

ଶହେ ବର୍ଷ କାଳ ଏହି ତିମୁରିଦ୍ ଯୁଗ ତାର କଳା ସମ୍ବନ୍ଧୀୟ ଓ ସାହିତ୍ୟିକ କାର୍ଯ୍ୟ ନିମନ୍ତେ ଏପରି ଉଲ୍ଲେଖଯୋଗ୍ୟ ଯେ ଏହାକୁ "ତିମୁର ପୁନରୁତ୍ଥାନ" ବୋଲି କହନ୍ତି । ପର୍ସିଆନ୍ ସାହିତ୍ୟ ଖୁବ ଉନ୍ନତି ଲାଭ କରିଥିଲା ଏବଂ ଅନେକ ସଂଖ୍ୟକ ସୁନ୍ଦର ଚିତ୍ର ରଙ୍ଗ କରା ହୋଇଥିଲା । ପ୍ରସିଦ୍ଧ ଚିତ୍ରକର ବିହଜାଦ୍ ଏକ ଚିତ୍ର ସ୍କୁଲର ଅଧ୍ୟକ୍ଷ ଥିଲେ । ଆହୁରି ମଜାର କଥା ହେଉଛି, ପର୍ସିଆନ ସାହିତ୍ୟ ସଙ୍ଗେ ସଙ୍ଗେ ତିମୁରିଦ୍ ସାହିତ୍ୟିକଙ୍କ ମଧ୍ୟରେ ତୁର୍କୀ ସାହିତ୍ୟ ବି ପ୍ରଗତି କରିଥିଲା । ତୋତେ ଆଉ ଥରେ ସ୍ମରଣ କରାଇ ଦିଏ, ଏହା ହେଉଛି ଇଟାଲୀର ପୁନରୁତ୍ଥାନ ବେଳ ।

ତିମୁରିଦ୍‌ମାନେ ତୁର୍କୀବାସୀ ଥିଲେ; କିନ୍ତୁ ସେମାନେ ପର୍ସିଆର ସଂସ୍କୃତିରେ ମିଶାଇଗଲେ । ତୁର୍କୀ ଓ ମଙ୍ଗୋଲମାନଙ୍କର ଇରାନରେ କର୍ତ୍ତୃତ୍ୱ ଥିଲା; କିନ୍ତୁ ବିଜେତାଙ୍କ ଉପରେ ଇରାନ୍ ତାର ନିଜର ସଂସ୍କୃତି ଲଦି ଦେଇଥିଲା । ସେହି ସମୟରେ ପର୍ସିଆ ରାଜନୈତିକ ଭାବରେ ନିଜକୁ ମୁକ୍ତ କରିବା ନିମନ୍ତେ ସଂଗ୍ରାମ କଲା ଏବଂ କ୍ରମେ କ୍ରମେ ତିମୁରିଦ୍‌ମାନେ ଅଧିକ ପୂର୍ବ ଆଡ଼କୁ ତଡ଼ି ହୋଇଗଲେ ଏବଂ ଟ୍ରାନ୍ସକୋସିୟାନର ପାଖଆଖରେ ଖୁବ୍ ଅଳ୍ପ

ଅଞ୍ଚଳରେ ସେମାନଙ୍କର ପ୍ରାଧାନ୍ୟ ଥିଲା । ୧୬ଶ ଶତାବ୍ଦୀର ଆରମ୍ଭରେ ରହି ଇରାନ୍ ଜାତୀୟତା ବଳବତୀ ହେଲା ଏବଂ ଶେଷଥର ପାଇଁ ତିମୁରିଦ୍‌ମାନେ ପର୍ସିଆରୁ ବାହାରିଗଲେ । ସଫାଭି ବା ସଫାଭିଦ୍ ନାମକ ଏକ ଜାତୀୟତାବାଦୀ ବଂଶ ପର୍ସିଆ ସିଂହାସନ ଆରୋହଣ କଲେ । ଶେର ଖାଁ ଦ୍ୱାରା ପରାସ୍ତ ହୋଇ ଭାରତରୁ ହୁମାୟୁନ ପଳାଇ ଯାଇ ଏହି ବଂଶର ଦ୍ୱିତୀୟ ରାଜା, ତାହାମାସ୍ପ ପ୍ରଥମଙ୍କ ପାଖରେ ଆଶ୍ରୟ ଗ୍ରହଣ କରିଥିଲେ ।

୧୫୦୨ରୁ ୧୭୨୨ ପର୍ଯ୍ୟନ୍ତ ୨୨୦ ବର୍ଷ ସଫାଭି ଅମଳ ରହିଲା । ଏହାକୁ ପର୍ସିଆନ୍ କଳାର 'ସୁବର୍ଣ୍ଣ ଯୁଗ' କହନ୍ତି । ଏହାର ରାଜଧାନୀ ଇସ୍‌ଫାହାନ ପ୍ରସିଦ୍ଧ କୋଠାବାଡ଼ିରେ ପୂର୍ଣ୍ଣ ହୋଇଗଲା ଏବଂ କଳାକେନ୍ଦ୍ର, ବିଶେଷତଃ ଚିତ୍ର ସକାଶେ ପ୍ରସିଦ୍ଧ ହେଲା । ଶାହା ଆବ୍‌ବାସ୍ ୧୫୮୭ରୁ ୧୬୨୯ ପର୍ଯ୍ୟନ୍ତ ଶାସନ କରିଥିଲେ ଏବଂ ଏହି ବଂଶର ନାମଜାଦା ଶାସକ ଥିଲେ; ପର୍ସିଆର ବଡ଼ ଶାସକଙ୍କ ଭିତରୁ ସେ ଜଣେ । ଏକପକ୍ଷରେ ଉଦ୍‌ବେଗ ଓ ଅନ୍ୟ ପକ୍ଷରେ ଅଟୋମାନ୍ ତୁର୍କୀମାନଙ୍କଦ୍ୱାରା ସେ ବେଷ୍ଟିତ ହୋଇଥିଲା । ସେ ଦୁହିଁଙ୍କୁ ତଡ଼ି ଦେଇ ଏକ ଶକ୍ତିଶାଳୀ ରାଜ୍ୟ ସ୍ଥାପନ କଲା, ପଶ୍ଚିମ ଓ ଅନ୍ୟତ୍ର ଥିବା ସୁଦୂର ରାଜ୍ୟମାନଙ୍କ ସହ ସମ୍ବନ୍ଧ ସ୍ଥାପନ କଲା ଏବଂ ନିଜ ରାଜଧାନୀକୁ ସୌନ୍ଦର୍ଯ୍ୟମଣ୍ଡିତ କରିବାରେ ଲାଗିଲା । ଇସ୍‌ଫାହାନ୍‌ରେ ସାହା ଅବ୍‌ବାସଙ୍କ ସହର ନିର୍ମାଣ ଯୋଜନାକୁ "ସର୍ବୋତ୍କୃଷ୍ଟ ଖାଣ୍ଟି ରୁଚିର ଶ୍ରେଷ୍ଠତ୍ୱ" ବୋଲି କୁହାଯାଏ । ଯେଉଁସବୁ ପ୍ରାସାଦ ତିଆରି ହୋଇଥିଲା, ସେଗୁଡ଼ିକ ଖାଲି ସୁନ୍ଦର ନ ଥିଲା, ସୁନ୍ଦରରୂପେ ସଜ୍ଜିତ ହୋଇଥିଲା; କିନ୍ତୁ ଏହାକୁ ବସାଇବାର ଭଙ୍ଗୀ ହିଁ ଆହୁରି ସୌନ୍ଦର୍ଯ୍ୟ ବଢ଼ାଉଥିଲା । ସେ ସମୟରେ ଯେଉଁ ୟୁରୋପୀୟ ପରିବ୍ରାଜକମାନେ ପର୍ସିଆ ଯାଇଥିଲେ, ସେମାନେ ଏହାର ଖୁବ୍ ବର୍ଣ୍ଣନା କରିଛନ୍ତି ।

କାଗଜରେ, ସାହିତ୍ୟ, ଚିତ୍ରକଳା, କାନ୍ଥରେ ଓ ଗ୍ରନ୍ଥ ଆକାରରେ, ସୁନ୍ଦର ଗାଲିଚା, ସୁନ୍ଦର ମାଟି ବାସନ ତିଆରି ଓ କାରୁକାର୍ଯ୍ୟ ଏସବୁ ପର୍ସିଆନ କଳାର ଏହି ସୁବର୍ଣ୍ଣ ଯୁଗରେ ଉନ୍ନତି ଲାଭ କରିଥିଲା । କାନ୍ଥରେ ବିସ୍ତୃତ ଭାବରେ ହୋଇଥିବା ରଙ୍ଗିନ୍ ଚିତ୍ର ଓ ଗ୍ରନ୍ଥ ଗ୍ରନ୍ଥ ଚିତ୍ରସବୁ ଅତୀବ ସୁନ୍ଦର । କଳାର ଜାତୀୟ ସୀମା ନାହିଁ, ନ ରହିବାର କଥା ଏବଂ ୧୬ଶ ଓ ୧୭ଶ ଶତାବ୍ଦୀର ଏହି ପର୍ସିଆନ କଳା ଉପରେ ଅବଶ୍ୟ ଅନେକ ପ୍ରଭାବ ପଡ଼ି ତାକୁ ସମୃଦ୍ଧିଶାଳୀ କରିଥିବ । ଇଟାଲୀର ପ୍ରଭାବର ପ୍ରମାଣ ମିଳେ; କିନ୍ତୁ ଏସବୁ ପାଖରେ ଇରାନର ପୁରାତନ କଳାର ସଂସ୍କାର ରହିଛି । ଏହା ୨୦୦ ବର୍ଷ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ରହିଥିଲା । ଇରାନୀ ସଂସ୍କୃତିର ପ୍ରଭାବ କେବଳ ପର୍ସିଆରେ ସୀମାବଦ୍ଧ ନ ଥିଲା । ଏହା ପଶ୍ଚିମରେ ତୁର୍କୀ ଦେଶଠାରୁ ପୂର୍ବରେ ଭାରତ ପର୍ଯ୍ୟନ୍ତ ବ୍ୟାପିଥିଲା । ଇଉରୋପର ଫରାସୀ ଭାଷା ପରି ଭାରତର ମୋଗଲ ବାଦଶାହଙ୍କ ଦରବାର ଓ ସାଧାରଣତଃ ପଶ୍ଚିମ-ଏସିଆରେ ପର୍ସିଆନ ଭାଷା ହିଁ ସଂସ୍କୃତିମୂଳକ ଭାଷା ଥିଲା । ଆଗ୍ରାର ତାଜମହଲଠାରେ ପର୍ସିଆନ କଳାର ପୁରାତନ ଭାବ ଏକ ଅମଳ ସ୍ମୃତି ରଖିଦେଇ ଯାଇଛି । ସେହିପରି ଭାବରେ ସୁଦୂର ପଶ୍ଚିମରେ କନ୍‌ଷ୍ଟାଣ୍ଟିନୋପଲରେ

ଅଟୋମାନ୍ କାରିଗରୀରେ ଏହି କଳାର ପ୍ରଭାବ ଦେଖାଯାଏ ଏବଂ ପର୍ସିଆନ୍ ପ୍ରଭାବର ଛୁପସହି ଅନେକ ପ୍ରସିଦ୍ଧ କୋଠାସବୁ ସେଠି ତିଆରି ହୋଇଛି ।

ପର୍ସିଆରେ ସଫାଭିମାନେ ଅଳ୍ପେ ଅଧିକେ ଭାରତର ମୋଗଲମାନଙ୍କର ସମସାମୟିକ । ଭାରତୀୟ ମୋଗଲ ବଂଶର ପ୍ରଥମ ରାଜା ବାବର ସମରକନ୍ଦର ଜଣେ ତିମୁରିଦ୍ ଯୁବରାଜ ଥିଲେ । ପର୍ସିଆନମାନେ ଶକ୍ତି ଅର୍ଜନ କଲାମାତେ ତିମୁରିଦ୍‌ମାନଙ୍କୁ ତଡ଼ିଦେଲେ ଏବଂ ବିଭିନ୍ନ ତିମୁରିଦ୍ ରାଜାମାନଙ୍କ ଅଧୀନରେ କେବଳ ଟ୍ରାନ୍ସକକୋସିସ୍ଥାନ ଓ ଆଫଗାନିସ୍ଥାନ ଅଞ୍ଚଳ ରହିଥିଲା । ଏହି ଛୋଟ ଛୋଟ ରାଜାମାନଙ୍କ ସହ ୧୬ ବର୍ଷ ବେଳୁ ବାବରଙ୍କୁ ଲଢ଼ିବାକୁ ପଡ଼ିଥିଲା । ସେ କୃତକାର୍ଯ୍ୟ ହେଲେ, କାବୁଲର ଶାସକ ହେଲେ ଏବଂ ତାପରେ ଭାରତକୁ ଆସିଲେ । ବାବରଙ୍କ ସ୍ମୃତିରୁ କେତେ ଲେଖା ଉଦ୍ଧୃତ କରି ମୁଁ ଗୋଟିଏ ଚିଠି ଲେଖି-ଥିଲି । ସେଥିରୁ ସେତେବେଳେ ତିମୁରିଦ୍‌ମାନଙ୍କ ଉଚ୍ଚ ସଂସ୍କୃତିର ପରିଚୟ ମିଳେ । ସଫାଭି ଶାସକଙ୍କ ଭିତରେ ଜଣେ ପ୍ରଧାନ ରାଜା ସାହା ଆବ୍‌ବାସ ଆକବର ଓ ଜାହାଙ୍ଗୀରଙ୍କ ସମସାମୟିକ ଥିଲେ । ଏହି ଦୁଇ ଦେଶ ମଧ୍ୟରେ ସବଦା ଖୁବ୍ ଘନିଷ୍ଠ ସମ୍ପର୍କ ରହିଥିଲା । ଅନେକ ଦିନ ପର୍ଯ୍ୟନ୍ତ ସେମାନଙ୍କର ସୀମାନ୍ତ ଏକା ଥିଲା; କାରଣ ଭାରତୀୟ ମୋଗଲ ସାମ୍ରାଜ୍ୟରେ ଆଫଗାନିସ୍ଥାନ ଅନ୍ତର୍ଭୁକ୍ତ ଥିଲା ।

## ୧୨୪ : ଇରାନ୍‌ରେ ସାମ୍ରାଜ୍ୟବାଦ ଓ ଜାତୀୟତାବାଦ

ଜାନୁୟାରୀ ୨୧, ୧୯୩୩

ମୋ ଉପରେ ତୁ ଅଭିଯୋଗ ଆଣିପାରୁ । ଇତିହାସର ବିଭିନ୍ନ ସ୍ତରରେ ମୁଁ ବାରମ୍ବାର ଆଗକୁ ଓ ପଛକୁ ମାଡ଼ଯାଇ ତୋତେ ଯଥେଷ୍ଟ ଉତ୍ତେଜନା ଦେଇଛି । ବହୁ ବିଭିନ୍ନ ପଥ ଦେଇ ୧୯ଶ ଶତାବ୍ଦୀରେ ପହଞ୍ଚିଲା ପରେ ମୁଁ ହଠାତ୍ ତତେ ପୁଣି ହଜାର ବର୍ଷ ପଛକୁ ନେଇଯାଇଛି ଏବଂ ଇଜିପ୍ଟରୁ ଭାରତ, ଚୀନ ଓ ପର୍ସିଆକୁ ଡେଇଁ ପଡ଼ୁଛି । ଏହା ଅତିଶୟ କଥା ଓ ଗୋଳମାଳିଆ ବି ଏବଂ ତୁ ଯଦି ପ୍ରତିବାଦ କରୁ, ତେବେ ମୋର ସେଥିକି କିଛି ଜବାବ ନାହିଁ । ଏମ୍. ରେନେ ଗ୍ରାଉସେଟ୍‌ଙ୍କ ବହି ପଢ଼ି ମୋ ମସ୍ତକରେ କେତେକ ଚିନ୍ତାଧାରା ପଶିଗଲା ଏବଂ ସେଥିରୁ କେତେକାଂଶ ତୋତେ ନ ଲେଖି ରହିପାରିଲି ନାହିଁ । ମୁଁ ବୋଧକରୁଛି ଯେ ଏହି ଚିଠିରେ ମୁଁ ପର୍ସିଆ ପ୍ରତି ଅବହେଳା ଦେଖାଉଛି ଏବଂ ଏହି ଭୁଲ ପୂରଣ କରିବା ପାଇଁ ମୁଁ ବ୍ୟଗ୍ର ଥିଲି । ଏବେ ଆମେ ପର୍ସିଆ ବିଷୟ ଯେତେବେଳେ

ଆଲୋଚନା କରୁଥାଉଁ, ସେତେବେଳେ ଏ ଦେଶର କାହାଣୀ ଆଧୁନିକ କାଳପର୍ଯ୍ୟନ୍ତ ଆମେ ବର୍ଣ୍ଣନା କରିପାରିବା ।

ପର୍ସିଆନ୍ ସଂସ୍କୃତିର ପୁରାତନ ସମ୍ଭାର ଓ ଉନ୍ନତ କାର୍ଯ୍ୟ, ପର୍ସିଆନ୍ କଳାର ସୁବର୍ଣ୍ଣ-ଯୁଗ ଇତ୍ୟାଦି ବିଷୟରେ ମୁଁ କିଛି କହିଛି । ଏହାଠାରୁ ଲେଖାପ୍ରତି ପୁଣି ଦୃଷ୍ଟି ପକାଇଲେ ଭାଷା ବଡ଼ ଆଡ଼ମ୍ବରପୂର୍ଣ୍ଣ ଓ ବେଳେ ବେଳେ ଭ୍ରମାତ୍ମକ ମନେହେବ । ଜଣେ ଭାବିପାରେ ଯେ ପର୍ସିଆ ଲୋକଙ୍କର ପ୍ରକୃତରେ ସୁବର୍ଣ୍ଣ ଯୁଗ ଆସି ପହଞ୍ଚିଥିଲା । ସେମାନଙ୍କ ଦୁର୍ଦ୍ଦଶା ଦୂର ହୋଇଥିଲା ଏବଂ ସେମାନେ ସୁଖରେ ବାସ କରୁଥିଲେ । ଠିକ୍ ପରୀ ଇତ୍ୟାଦି ବର୍ଣ୍ଣିତ କାହାଣୀରେ ବର୍ଣ୍ଣିତ ଲୋକଙ୍କ ପରି ଏ କଥା ହେବ । ସେପରି କିଛି ଘଟି ନ ଥିଲା । ଆଜି-କାଲି ପରି ସେତେବେଳେ କଳା ଓ ସଂସ୍କୃତି ମୁଷ୍ଟିମେୟ ଲୋକଙ୍କର ଏକଚାଟିଆ ଥିଲା; ଜନସାଧାରଣଙ୍କର ଏହା ସହିତ କିଛି ସମ୍ପର୍କ ନ ଥିଲା । ଆଦିମ କାଳରୁ ବାସ୍ତବିକ ଜନ-ସାଧାରଣଙ୍କ ଜୀବନ, ଖାଦ୍ୟ ଓ ଜୀବନର ଅନ୍ୟାନ୍ୟ ଆବଶ୍ୟକୀୟ ପଦାର୍ଥ ନିମନ୍ତେ ନିରନ୍ତର ସଂଗ୍ରାମ କରିବାରେ ହିଁ କଟିଛି । ପଶୁ ଜୀବନରୁ ଏଥିରେ ବିଶେଷ ପ୍ରଭେଦ ନାହିଁ । ଅନ୍ୟ କୌଣସି କାର୍ଯ୍ୟ ପାଇଁ ସେମାନଙ୍କର ବେଳ ବା ଅବକାଶ ନ ଥାଏ; ଦିନଯାକର ଅନ୍ନାୟ ବୋଝ ତାଙ୍କ ପକ୍ଷରେ ଯଥେଷ୍ଟ; ତେଣୁ ସେମାନେ କଳା ଓ ସଂସ୍କୃତିକୁ ପସନ୍ଦ କରନ୍ତେ ବା ସେ ସମ୍ବନ୍ଧରେ ଚିନ୍ତା ବି କରନ୍ତେ କିପରି ? ପର୍ସିଆ, ଭାରତ, ଚୀନ, ଇଟାଲୀ ଓ ଇଉରୋପର ଅନ୍ୟ ଦେଶମାନଙ୍କରେ ରାଜସଭା, ଧନ ଓ ଅବକାଶଭୋଗୀ ଶ୍ରେଣୀର ପ୍ରମୋଦ ପାଇଁ କଳାର ବୃଦ୍ଧି ହେଲା । କେତେକ ପରିମାଣରେ ଧର୍ମକଳାହିଁ ଲୋକଙ୍କୁ ସ୍ପର୍ଶ କରିଥିଲା ।

କିନ୍ତୁ ଏକ କଳାପ୍ରେମୀ ରାଜା ହେଲେ ଯେ ଭଲ ଶାସକ ହେବ, ଏପରି କିଛି କଥା ନୁହେଁ । ଯେଉଁ ଶାସକମାନେ କଳା ଓ ସାହିତ୍ୟର ପୃଷ୍ଠପୋଷକ ବୋଲି ଗର୍ବ କରନ୍ତି, ଶାସକ ଭାବରେ ସେମାନେ ଅନେକ ସମୟରେ ଅତ୍ୟନ୍ତ ଅପାରଗ ଓ ନିଷ୍ଠୁର ଦେଖାଯାନ୍ତି । ସେତେବେଳେ ଅଧିକାଂଶ ଦେଶ ପରି ପର୍ସିଆରେ ସମାଜ ବ୍ୟବସ୍ଥା ଅଳ୍ପ ଅଧିକେ ସାମନ୍ତିଆ ଢଙ୍ଗର ଥିଲା । ସାମନ୍ତ ଭୂସ୍ୱାମୀମାନଙ୍କର ଶ୍ରେଷ୍ଟ ଶ୍ରେଷ୍ଟ ଆବୁଆବ ଆଦାୟ ସବୁ ବନ୍ଦ କରିଦେବାରୁ ବଳୁଆ ରାଜା ସବୁ ଲୋକପ୍ରିୟ ହୋଇ ପାରିଥିଲେ । କୌଣସି କୌଣସି ଅମଳରେ ଅପେକ୍ଷାକୃତ ସୁଶାସନ ଏବଂ କେଉଁଠି ନିତାନ୍ତ ଖରାପ ଶାସନ ଥିଲା ।

୧୭୨୫ ବେଳକୁ ଯେତେବେଳେ ଭାରତରେ ମୋଗଲ ରାଜତ୍ୱ ତାର ଶେଷ ଅବସ୍ଥାରେ ପହଞ୍ଚି ଥିଲା, ଠିକ୍ ସେତିକବେଳେ ସଫାଭି ବଂଶ ବି ଶେଷ ପାଇଲା । ସାଧାରଣତଃ ଯେପରି ହୋଇଥାଏ, ସେହିପରି ଏହି ବଂଶର କାଳ ପୂରିଥିଲା । ସାମନ୍ତବାଦ କ୍ରମେ ଭାଙ୍ଗିଯାଇ-ଥିଲା ଏବଂ ପୁରାତନ ସମାଜକୁ ଓଲଟପାଲଟ କରିଦେଇ ଦେଶରେ ଆର୍ଥିକ ପରିବର୍ତ୍ତନ ହେଉଥାଏ । ବହୁ ଟିକସ ଧାର୍ଯ୍ୟ ଦ୍ୱାରା ଅବସ୍ଥା ଖରାପ ଆଡ଼କୁ ଗଲା ଏବଂ ଲୋକଙ୍କ ଭିତରେ ଅସନ୍ତୋଷ ବ୍ୟାପିଲା । ସଫାଭିଙ୍କ ଅଧୀନରେ ସେତେବେଳେ ଆଫଗାନମାନେ ଥିଲେ;

ସେମାନେ ବିଦ୍ରୋହ କରି ଉଠିଲେ ଏବଂ ସେମାନେ କେବଳ ନିଜ ଦେଶରେ ଯେ କୃତିତ୍ୱ ଲାଭ କଲେ ତାହା ନୁହେଁ, ଆଫଗାନିସ୍ଥାନ ଅଧିକାର କରି ଶାହାଙ୍କୁ ଗାଦିଚ୍ୟୁତ କଲେ । ଅଳ୍ପ ଦିନ ପରେ ଏକ ପର୍ସିଆନ ରାଜା ନାଦିର ଶାହ ଆଫଗାନ୍‌ମାନଙ୍କୁ ତଡ଼ିଦେଇ ନିଜେ ରାଜା ହେଲେ । ଅକର୍ମଣ୍ୟ ମୋଗଲଙ୍କ ଅନ୍ତିମ କାଳ ବେଳକୁ ଏହି ନାଦିରଶାହ ଭାରତ ଆକ୍ରମଣ କରିଥିଲେ ଏବଂ ଦିଲ୍ଲୀ ଲୋକଙ୍କୁ ହତ୍ୟା କରିଥିଲେ ଏବଂ ସାହାଜାହାନଙ୍କ ମୟୂର ସିଂହାସନ ସମେତ ଅଜସ୍ର ଧନସମ୍ପଦ ନେଇ ଯାଇଥିଲେ । ୧୮ଶ ଶତାବ୍ଦୀରେ ପର୍ସିଆନ୍ ଇତିହାସ ଏକ ଦୁଃଖଦାୟକ ଗୃହଯୁଦ୍ଧବାଦର କାହାଣୀ; ଶାସନ ପରିବର୍ତ୍ତନ ହୋଇଛି, କୁଶାସନ ଚାଲିଛି ଇତ୍ୟାଦି ।

୧୯ଶ ଶତାବ୍ଦୀରେ ନୂତନ ଗଣ୍ଡଗୋଳ ଉପୁଜିଲା । ଇଉରୋପରେ ବିସ୍ତାର ଲଭୁଥିବା ଓ ଆକ୍ରମଣଶୀଳ ସାମ୍ରାଜ୍ୟବାଦ ସହ ପର୍ସିଆର ସଂଘର୍ଷ ହେଲା । ଉତ୍ତରରେ ରୁଷ ଅବିରାମ ଭାବରେ ଚାପ ଦେଉଥିଲା ଏବଂ ବ୍ରିଟିଶ ପଶ୍ଚିମ ଆଡ଼ୁ ଭାରତରୁ ଅଗ୍ରସର ହେଉଥିଲେ । ପର୍ସିଆ ଭାରତରୁ ବେଶି ଦୂରରେ ନୁହେଁ, ଦୁଇ ଦେଶର ସୀମାନ୍ତ କ୍ରମେ ନିକଟତର ହେଉଥିଲା ଏବଂ ବାସ୍ତବିକ ଆଜି ଏକା ସୀମାନ୍ତ ଅଞ୍ଚଳ ଦୁହିଁଙ୍କର ରହିଛି । ସ୍ଥଳପଥରେ ଭାରତ ଆସିବା ବାଟରେ ପର୍ସିଆ ପଡ଼େ ଏବଂ ଭାରତ ଆସିବାକୁ ଜଳପଥ ଦରକାର କରେ ନାହିଁ । ଭାରତ ସାମ୍ରାଜ୍ୟ ଓ ସେଥିକୁ ଯାଇଥିବା ରାସ୍ତାମାନଙ୍କୁ ରକ୍ଷା କରିବା ଉପରେ ହିଁ ସମଗ୍ର ବ୍ରିଟିଶ ନୀତି ପ୍ରତିଷ୍ଠିତ । ତାଙ୍କର ବଡ଼ ପ୍ରତିଦ୍ୱନ୍ଦ୍ୱୀ ରୁଷ ଏହି ରାସ୍ତାରେ ଦୁଇ ଗୋଡ଼ ଲମ୍ବାଇ ବସି ଭାରତ ପ୍ରତି ଲୋଲୁପ ଦୃଷ୍ଟି ପକାଇବାଟା ଦେଖିବା ପାଇଁ ସେମାନେ କଦାପି ପ୍ରସ୍ତୁତ ନ ଥିଲେ । ତେଣୁ ରୁଷ ଓ ଇଂଲଣ୍ଡ ଉଭୟେ ପର୍ସିଆରେ ଖୁବ୍ ଆଗ୍ରହ ଦେଖାଇଲେ ଓ ସେ ଦେଶର ଗରିବ ଲୋକଙ୍କୁ କଷ୍ଟ ଦେଲେ । ସାହାମାନେ ଅତ୍ୟନ୍ତ ଅପାରଗ ଓ ନିର୍ବୋଧ ଥିଲେ ଏବଂ ସାଧାରଣତଃ ଏକ ଅଶୁଭ ମୁହୂର୍ତ୍ତରେ ସେମାନଙ୍କ ସହ ଲଢ଼ିବା ପାଇଁ ଚେଷ୍ଟା କରି କିମ୍ବା ନିଜ ଲୋକଙ୍କ ସହିତ ଲଢ଼ାଇ କରିବା ଦ୍ୱାରା ସେମାନଙ୍କ ପାଲରେ ପଡ଼ୁଥିଲେ । ରୁଷ ଓ ଇଂଲଣ୍ଡ ଭିତରେ ପ୍ରତିଦ୍ୱନ୍ଦ୍ୱିତା ନ ଥିଲେ ପର୍ସିଆ ସମ୍ପୂର୍ଣ୍ଣ ଭାବରେ ଏହି ଦୁଇ ଶତ୍ରୁଙ୍କ ଭିତରୁ କାହାଦ୍ୱାରା ଦଖଲ ହୋଇ ସେଥିରେ ସଂଯୋଗ ହୋଇ ସାରନ୍ତାଣି କିମ୍ବା ଇଜିପ୍ଟ ପରି ଏକ ପ୍ରୋଟେକ୍ଟରେଟ ବା ଅଧୀନସ୍ଥ ରାଜ୍ୟ ହୋଇ ରହି ସାରିଥାନ୍ତା ।

ଆଉ ଏକ କାରବାରରୁ ବିଂଶ ଶତାବ୍ଦୀର ଆରମ୍ଭରେ ପର୍ସିଆ ପ୍ରତି ଲୋଭନୀୟ ଦୃଷ୍ଟି ପଡ଼ିଲା । କିରାସିନ ତେଲ ବା ପେଟ୍ରୋଲ ଆବିଷ୍କାର ହେଲା ଏବଂ ଏହା ଅତ୍ୟନ୍ତ ମୂଲ୍ୟବାନ । ୧୯୦୧ ରେ ଦୀର୍ଘ ୬୦ ବର୍ଷ ପର୍ଯ୍ୟନ୍ତ ପର୍ସିଆରେ ତେଲଖଣିମାନ ଅତି ସୁବିଧାରେ ବ୍ୟବହାର କରିବା ନିମନ୍ତେ ଜଣେ ବ୍ରିଟିଶ ପ୍ରଜା ଡି'ଆର୍ସିକୁ ଦେବା ପାଇଁ ପର୍ସିଆର ବୃଦ୍ଧ ଶାହାଙ୍କୁ ପ୍ରବର୍ତ୍ତାଇଲେ । ତେଲ ଖଣିରେ କାମ କରିବା ପାଇଁ କେତେକ ବର୍ଷ ପରେ ଆଙ୍ଗ୍ଲୋ ପର୍ସିଆନ୍ ଅଏଲ କମ୍ପାନୀ ନାମକ ଏକ ବ୍ରିଟିଶ କମ୍ପାନୀ ଗଢ଼ାହେଲା । ସେହିଦିନଠାରୁ ସେଠି

ଏହି କମ୍ପାନୀ କାର୍ଯ୍ୟ କରୁଛି ଏବଂ ଏହି ତେଲ ବେପାରରେ ଅଜସ୍ର ଲାଭ କରୁଛି । ଲାଭର ଅଳ୍ପ ଭାଗ ପର୍ସିଆ ସରକାର ପାଇଲେ; କିନ୍ତୁ ଅଧିକ ଭାଗ ଦେଶ ବାହାରକୁ କମ୍ପାନୀର ଅଂଶୀଦାରମାନଙ୍କ ହାତକୁ ଗଲା ଏବଂ ସବୁଠାରୁ ବେଶୀ ଅଂଶୀଦାର ହେଉଛି ବ୍ରିଟିଶ ସରକାର । ବର୍ତ୍ତମାନ ପର୍ସିଆ ସରକାର ଖୁବ୍ ଜାତୀୟତାବାଦୀ ଏବଂ ବିଦେଶୀଙ୍କଦ୍ୱାରା ଶୋଷିତ ହେବାରେ ଖୁବ୍ ଆପତ୍ତି ଉଠାନ୍ତି । ୧୯୦୧ ତ'ଆରି ସହ ଷାଠିଏ ବର୍ଷ ପାଇଁ ଯେଉଁ ପୁରୁଣା ଚୁକ୍ତି ଥିଲା ଏବଂ ଯାହା ବଳରେ ଆଙ୍ଗ୍ଲୋ। ପର୍ସିଆନ ଅଏଲ କମ୍ପାନୀ କାର୍ଯ୍ୟ କରୁଥିଲା, ଏ ସରକାର ତାହା କାଟିଦେଲା । ଏଥିରେ ବ୍ରିଟିଶ ସରକାର ଭାରି ଚିଡ଼ିଗଲା ଏବଂ ପର୍ସିଆ ସରକାରଙ୍କୁ ଧମକ ଚମକ ଦେଖାଇବାକୁ ଲାଗିଲା । ସେ ଭୁଲିଗଲା ଯେ କାଳ ବଦଳି ଗଲାଣି ଏବଂ ପର୍ସିଆ ଲୋକଙ୍କୁ ତର୍ଜନ ଗର୍ଜନ ଦେଖାଇ ଅପମାନ ଦେବା ଆଉ ସହଜ ନୁହେଁ । (ଶେଷରେ ଇରାନ୍ ସରକାରକୁ ଅଧିକ ସୁବିଧା ଦେଇ ଗୋଟିଏ ନୂଆ ଚୁକ୍ତି ବ୍ରିଟିଶ ସରକାର ଓ ଅଏଲ କମ୍ପାନୀକୁ ଗ୍ରହଣ କରିବାକୁ ପଡ଼ିଲା । )

କିନ୍ତୁ ମୁଁ ଭବିଷ୍ୟତ ଇତିହାସ କଥା ଅନୁମାନ କରି କହିଯାଉଛି । ସାମ୍ରାଜ୍ୟବାଦର ଭୟ ପର୍ସିଆରେ ହେବା ସଙ୍ଗେ ସଙ୍ଗେ ଶାହା ତାହାର ଅଧିକରୁ ଅଧିକ ଖେଳନା ହେବାକୁ ଲାଗିଲା; ତେଣୁ ଅନିବାର୍ଯ୍ୟରୂପେ ଜାତୀୟତା ବୃଦ୍ଧି ପାଇଲା । ଏକ ଜାତୀୟତାବାଦୀ ଦଳ ଗଢ଼ା ହେଲା । ଏହି ଦଳ ବିଦେଶୀ ହସ୍ତକ୍ଷେପରେ ଅସନ୍ତୋଷ ପ୍ରକାଶ କଲା ଏବଂ ସମାନରୂପେ ଶାହାଙ୍କ ଏକଚ୍ଛତ୍ର ଶାସନରେ ମଧ୍ୟ ଆପତ୍ତି ଦର୍ଶାଇଲା । ସେମାନେ ଏକ ଗଣତନ୍ତ୍ର ଶାସନ ବିଧାନ ଓ ଆଧୁନିକ ସଂସ୍କାର ସବୁ ଦାବୀ କଲେ । ଦେଶ ଖରାପ ଭାବରେ ଶାସିତ ହେଲା ଏବଂ ବହୁତ ଟିକସ ବସିଲା ଓ ବ୍ରିଟିଶ ଏବଂ ରୁଷ ବାରମ୍ବାର ସହଯୋଗ କରୁଥାଆନ୍ତି । ନିଜର ଯେଉଁ ଲୋକେ କେତେକ ପରିମାଣରେ ସ୍ୱାଧୀନତା ଦାବୀ କରୁଥିଲେ, ତାଙ୍କ ଅପେକ୍ଷା ଏହି ବିଦେଶୀ ସରକାରଙ୍କ ସାଙ୍ଗରେ ରହିବାଟା ପ୍ରତିଗାମୀ ଶାହା ଅଧିକ ସୁବିଧା ବୋଲି ବିଚାରିଲେ । ନୂତନ ମଧ୍ୟବିତ୍ତ ଶ୍ରେଣୀ ଓ ଶିକ୍ଷିତଙ୍କ ଭିତରୁ ହିଁ ମୁଖ୍ୟତଃ ଏହି ଗଣତନ୍ତ୍ରମୂଳକ ଶାସନବିଧାନ ଦାବୀ ହୋଇଥିଲା । ୧୯୦୪ରେ ଜାପାନର ଜାର୍ ଶାସିତ ରୁଷ ଉପରେ ବିଜୟ, ପର୍ସିଆର ଜାତୀୟତାବାଦୀଙ୍କ ଉପରେ ପ୍ରଭାବ ପକାଇଥିଲା ଏବଂ ସେମାନେ ଖୁବ୍ ଉତ୍ତେଜିତ ହୋଇଥିଲେ; କାରଣ ପ୍ରଥମରେ ଏକ ୟୁରୋପୀୟ ଜାତି ଉପରେ ଏସିଆ ଶକ୍ତିର ବିଜୟ, ଦ୍ୱିତୀୟରେ ଏହି ଜାର ଶାସିତ ରୁଷ ହିଁ ତାଙ୍କର ପଡ଼ୋଶୀ ହୋଇ ସର୍ବଦା କଷ୍ଟ ଦେଉଥିଲା ଓ ଆକ୍ରମଣ କରୁଥିଲା । ୧୯୦୫ରେ ରୁଷ ବିପ୍ଳବ ନିଷ୍ଫଳ ହେଲା ଏବଂ ଅତ୍ୟନ୍ତ ନିଷ୍ଠୁର ଭାବରେ ଦମନ କରି ଦିଆଗଲା; କିନ୍ତୁ ପର୍ସିଆର ଜାତୀୟତାବାଦୀଙ୍କ ଭିତରେ କାର୍ଯ୍ୟ କରିବା ଲାଗି ଆକାଂକ୍ଷା ଓ ଆଗ୍ରହ ଏହା ବଢ଼ାଇଲା । ଶାହାଙ୍କ ଉପରେ ଏପରି ଚାପ ପଡ଼ିଲା ଯେ ସେ ଅନିଚ୍ଛାସତ୍ତ୍ୱେ ଏକ ଗଣତନ୍ତ୍ରମୂଳକ ଶାସନ ବିଧାନ ଲାଗି ୧୯୦୬ରେ ସ୍ୱୀକୃତ ହୋଇଗଲେ । ଜାତୀୟ ବ୍ୟବସ୍ଥା ସଭା ସ୍ଥାପିତ ହେଲା । ଏହାକୁ "ମଜଲିସ" କହନ୍ତି ଏବଂ ପର୍ସିଆ ବିପ୍ଳବ ସଫଳ ହେଲା ପରି ବୋଧହେଲା ।

କିନ୍ତୁ ଆଗକୁ ଅନେକ ଗୋଳମାଳ ଥିଲା । ନିଜକୁ ସଂପୂର୍ଣ୍ଣରୂପେ ବିଲୋପ କରି ଦେବାର ମତଲବ ଶାହାର ନ ଥିଲା ଏବଂ ବ୍ରିଟିଶ ଓ ରୁଷ ଏକ ଗଣତନ୍ତ୍ର ପର୍ସିଆ ଚାହୁଁ ନ ଥିଲେ; କାରଣ ଏହା ଶକ୍ତିଶାଳୀ ହୋଇ କଷ୍ଟଦାୟକ ହୋଇପାରେ । ଶାହା ଓ ମେଜଲିସ ଭିତରେ ସଂଘର୍ଷ ହେଲା ଏବଂ ପ୍ରକୃତରେ ଶାହା ନିଜ ପାର୍ଲିମେଣ୍ଟ ନିଜେ ଭାଙ୍ଗିଲେ; କିନ୍ତୁ ଲୋକେ ଓ ସୈନ୍ୟମାନେ ମଜଲିସ ଓ ଜାତୀୟବାଦୀଙ୍କ ସହିତ ଥିଲେ ଏବଂ କେବଳ ରୁଷ ସୈନ୍ୟଙ୍କ ଯୋଗୁଁ ଶାହା ରକ୍ଷା ପାଇଲା । କିଛି ନା କିଛି ପେଖନା କାଢ଼ି ସାଧାରଣତଃ ନିଜ ପ୍ରଜାଙ୍କୁ ରକ୍ଷା କିଂବା ବାହାନାରେ ରୁଷ ଓ ଇଂଲଣ୍ଡ ନିଜର ସୈନ୍ୟ ଆଣି ସେଠାରେ ରଖିଥିଲେ । ହାତରେ କୋସାକ୍‌ମାନେ ଥିଲେ ଏବଂ ବ୍ରିଟିଶ ପର୍ସିଆନମାନଙ୍କୁ ଚମକାଇବା ପାଇଁ ଭାରତୀୟ ସୈନ୍ୟର ଉପଯୋଗ କରାଗଲା ଅଥଚ ଏମାନଙ୍କ ସହ ଆମର କୌଣସି ବିବାଦ ନ ଥିଲା ।

ପର୍ସିଆ ମହା ଅସୁବିଧାରେ ପଡ଼ିଲା । ତା ପାଖରେ ଧନ ନ ଥିଲା ଏବଂ ଲୋକଙ୍କ ଅବସ୍ଥା ଖରାପ ଥିଲା । ଅବସ୍ଥା ଭଲ ଅଡ଼କୁ ଆଣିବା ନିମନ୍ତେ ମଜଲିସ କଠିନ ଉଦ୍ୟମ କଲା; କିନ୍ତୁ ରୁଷ ବା ବ୍ରିଟିଶ ଅଥବା ଉଭୟଙ୍କ ବିରୋଧ ହେତୁ ତାଙ୍କର ଅଧିକାଂଶ ଉଦ୍ୟମ ପଣ୍ଡ ହୋଇଗଲା । ଶେଷରେ ସେମାନେ ଆମେରିକାକୁ ସାହାଯ୍ୟ ମାଗିଲେ ଏବଂ ତାଙ୍କ ଆର୍ଥିକ ଅବସ୍ଥାର ଉନ୍ନତି କିଂବା ନିମନ୍ତେ ବାଟ କଢ଼ାଇବା ଲାଗି ଜଣେ ଦକ୍ଷ ଆମେରିକାର ଅର୍ଥନୀତିଜ୍ଞଙ୍କୁ ନିଯୁକ୍ତ କଲେ । ଏହି ଆମେରିକାବାସୀଙ୍କ ନାମ ମର୍ଗାନ ସୁଷ୍ଟର—ସେ ତାହା କରିବା ନିମନ୍ତେ ଯଥାପରୋନାସ୍ତି ଚେଷ୍ଟା କଲେ; କିନ୍ତୁ ସର୍ବଦା ତାଙ୍କୁ ରୁଷ ବା ବ୍ରିଟିଶ ବିରୋଧର କଠିନ ପାଚେରୀର ସମ୍ମୁଖୀନ ହେବାକୁ ପଡ଼ିଲା । ବିରକ୍ତ ହୋଇ ଓ ଆଶା ହରାଇ ସେ ଏ ଦେଶ ଛାଡ଼ି ନିଜ ରାଜ୍ୟକୁ ଫେରିଗଲେ । ବ୍ରିଟିଶ ଓ ରୁଷ ସାମ୍ରାଜ୍ୟବାଦ କିପରି ପର୍ସିଆ ଦେଶର ଜୀବନ ଘାଣ୍ଟି ଖାଉଛନ୍ତି, ତାହା ପରେ ଏକ ପୁସ୍ତକ ଲେଖି ସୁଷ୍ଟର ବର୍ଣ୍ଣନା କରିଥିଲେ । ଏହି ବହିର ନାମ ହିଁ ଅର୍ଥ ସୂଚକ ନାମ ହେଉଛି—"ପର୍ସିଆର ଫାସୀ ।"

ସ୍ୱାଧୀନ ଦେଶ ରୂପେ ଲୋପ ପାଇବା ପର୍ସିଆ ଭାଗ୍ୟରେ ଲେଖା ଥିଲା । ଏହି ଦେଶକୁ ପରସ୍ପରର "ପ୍ରଭାବିତ ଅଞ୍ଚଳ" (Spheres of influence) ଅନୁସାରେ ଇଂଲଣ୍ଡ ଓ ରୁଷ ଦୁଇ ଭାଗରେ ବିଭକ୍ତ ହୋଇ ଏ ଦିଗରେ ପ୍ରଥମ ପାଦ ଅଗ୍ରସର ହୋଇଥିଲେ । ସେମାନଙ୍କ ସୈନ୍ୟ ପ୍ରଧାନ କେନ୍ଦ୍ର ସବୁ ଦଖଲ କଲେ, ଗୋଟିଏ ବ୍ରିଟିଶ କମ୍ପାନୀ ତୈଳସମ୍ପଦ ଲୁଟ୍ କଲା । ପର୍ସିଆ ସମ୍ପୂର୍ଣ୍ଣ ଭାବରେ ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥାରେ ରହିଲା । କୌଣସି ବିଦେଶୀ ଶତ୍ରୁ ସହିତ ସମ୍ପୂର୍ଣ୍ଣରୂପେ ସଂଯୋଗ ହୋଇଥିଲେ ଭଲ ହୋଇଥାଆନ୍ତା । କାରଣ ଏଥିରେ କିଛି ଦାୟିତ୍ୱ ଥାଆନ୍ତା । ଏହାପରେ ୧୯୧୪ ସାଲର ପୃଥିବୀ ଯୁଦ୍ଧ ଆସିଗଲା ।

ଏହି ଯୁଦ୍ଧରେ ପର୍ସିଆ ନିରପେକ୍ଷ ରହିବ ବୋଲି ଘୋଷଣା କଲା; କିନ୍ତୁ ଦୁର୍ବଳର ଘୋଷଣା ବଳବାନ୍ ଉପରେ କିଛି ପ୍ରଭାବ ପକାଏ ନାହିଁ । ସବୁ ସମ୍ପୃକ୍ତ ଦଳ ପର୍ସିଆର ନିରପେକ୍ଷତାକୁ ବେଖାତିର କଲେ ଓ ବିଦେଶୀ ସୈନ୍ୟ ଆସିଲେ ଏବଂ ଅଭାଗା ପର୍ସିଆ ସରକାର କଣ କରୁଛି, ସେଥିପ୍ରତି ଦୃଷ୍ଟି ନ ଦେଇ ପରସ୍ପର ଭିତରେ ଯୁଦ୍ଧ କଲେ । ପର୍ସିଆର

ଚତୁର୍ଦ୍ଦିଗସ୍ଥ ଦେଶମାନେ ଯୁଦ୍ଧରତ ହେଲେ । ଏକ ପାଖରେ ଇଂଲଣ୍ଡ ଓ ରୁଷ ମିତ୍ର ହେଲେ; ତୁର୍କୀ ରାଜ୍ୟରେ ସେତେବେଳେ ଇରାକ୍ ଓ ଆରବ ଦେଶସବୁ ଅନ୍ତର୍ଗତ ଥିଲା, ଏହା ଜର୍ମାନୀର ମିତ୍ର ହେଲା । ଯୁଦ୍ଧରେ ୧୯୧୮ରେ ଇଂଲଣ୍ଡ, ଫ୍ରାନ୍ସ ଓ ତାର ମିତ୍ରଶକ୍ତିଙ୍କର ବିଜୟ ହେଲା ଏବଂ ସେତେବେଳେ ବ୍ରିଟିଶ ସୈନ୍ୟ ପୁରାପୁରି ପର୍ସିଆ ଦଖଲ କରିଗଲେ । ଇଂଲଣ୍ଡ ପର୍ସିଆ ଉପରେ ଏକ ପ୍ରୋଟେକ୍‌ଟରେଟ୍ (ଟିକିଏ କୋମଳ ଭାବରେ ସଂଯୋଗ) ଘୋଷଣା କରିବାକୁ ବସିଥିଲା ଏବଂ ଭୂମଧ୍ୟସାଗରଠାରୁ ଆରମ୍ଭ କରି ବେଲୁଚିସ୍ଥାନ ଓ ଭାରତ ପର୍ଯ୍ୟନ୍ତ ଏକ ବିଶାଳ ବ୍ରିଟିଶ ମଧ୍ୟପ୍ରାଚ୍ୟ ସାମ୍ରାଜ୍ୟ ଗଢ଼ିବାର ମଧ୍ୟ ସ୍ୱପ୍ନ ଦେଖିଥିଲା; କିନ୍ତୁ ଏହି ସ୍ୱପ୍ନ ସତ୍ୟ ହେଲା ନାହିଁ । ବ୍ରିଟେନର ଦୁର୍ଭାଗ୍ୟକୁ ତାର ଶାସିତ ରୁଷ ଲୋପ ହୋଇଗଲା ଏବଂ ଏବେ ସୋଭିଏଟ ରୁଷ ତାର ସ୍ଥାନ ନେଲା । ଆହୁରି ବ୍ରିଟିଶ ଦୁର୍ଭାଗ୍ୟକୁ ତୁର୍କୀରେ ସେମାନଙ୍କର ଆଶା ପଣ୍ଡହେବା ହେଲା ଏବଂ ମିତ୍ରଶକ୍ତିର ମୁହଁରୁ କେମାଲପାଶା ନିଜ ଦେଶକୁ ଉଦ୍ଧାର କଲେ ।

ଏହିସବୁ ପର୍ସିଆର ଜାତୀୟତାବାଦୀମାନଙ୍କୁ ସାହାଯ୍ୟ କଲା ଏବଂ ନାମକୁମାତ୍ର ସ୍ୱାଧୀନ ରହିବାରେ ପର୍ସିଆ ସଫଳ ହେଲା । ଗୋଟାଏ କୌଶଳପୂର୍ବକ ବିଦ୍ରୋହ କରି ୧୯୨୧ରେ ରିଜା ଖାଁ ନାମକ ଏକ ପର୍ସିଆନ୍ ସୈନ୍ୟ ପ୍ରାଧାନ୍ୟ ଲଭିଲା । ସେ ସୈନ୍ୟଙ୍କୁ କବଳରେ ରଖିଲା ଏବଂ ପରେ ପ୍ରଧାନମନ୍ତ୍ରୀ ହେଲା । ୧୯୨୫ରେ ବୃଦ୍ଧ ଶାହା ଗାଦୀଚ୍ୟୁତ ହେଲା ଏବଂ ଏକ ଗଣପରିଷଦ (Constituent Assembly)ର ଭୋଟଦ୍ୱାରା ରିଜା ଖାଁ ନୂତନ ଶାହାରୂପେ ନିର୍ବାଚିତ ହେଲା । ତାର ନାମ ଓ ଉପାଧି ହେଲା ରିଜା ଶାହା ପାହ୍‌ଲଭି ।

ରିଜା ଶାହା ଶାନ୍ତିପୂର୍ଣ୍ଣ ଭାବରେ ସିଂହାସନ ପାଇଲା । ସେ ଯେଉଁ ପନ୍ଥା ଧରିଲେ, ତାହା ବାହାରକୁ ଗଣତନ୍ତ୍ରମୂଳକ ଥିଲା । ମଜଲିସ୍ ଏବେ ସୁଦ୍ଧା ଚାଲୁ ଅଛି ଏବଂ ନୂତନ ଶାହା ଜଣେ ଏକଚ୍ଛତ୍ର ସମ୍ରାଟ ବୋଲି ଗଣ୍ୟ ହୁଏ ନା । କିନ୍ତୁ ଯାହାହେଉ, ଏ କଥା ସ୍ପଷ୍ଟ ଯେ, ପର୍ସିଆ ସରକାରରେ ସେ ଜଣେ ବଳବାନ ଲୋକ । ଗତ କେତେ ବର୍ଷ ଭିତରେ ପର୍ସିଆରେ ବହୁତ ପରିବର୍ତ୍ତନ ହୋଇଛି ଏବଂ ଦେଶକୁ ଆଧୁନିକ କରିବା ନିମନ୍ତେ ରିଜା ଶାହା ଅନେକ ସଂସ୍କାର କରିବାରେ ଲାଗି ପଡ଼ିଛି । ସେଠାରେ ଏକ ଶକ୍ତିଶାଳୀ ଜାତୀୟ ଭାବର ପୁନରୁତ୍ଥାନ ହୋଇଛି । ଏହା ଦେଶରେ ନୂତନ ପ୍ରାଣ ସଞ୍ଚାର କରିଛି ଏବଂ ପର୍ସିଆରେ ବିଦେଶୀ ସ୍ୱାର୍ଥ କଥାରେ ଏମାନେ ଉଚ୍ଚ ଜାତୀୟତାର ମନୋଭାବ ଦେଖାଇଛନ୍ତି ।

ମଜାର କଥା ହେଉଛି, ଦୁଇ ହଜାର ବର୍ଷର ଠିକ୍ ଇରାନୀ ପ୍ରଥା ଅନୁସାରେ ଏହି ଜାତିର ପୁନରୁତ୍ଥାନ ହୋଇଛି । ଏହା ମୁସଲମାନମାନଙ୍କ ପୂର୍ବ ଆମଳରେ ଇରାନର ବିଶାଳତା ପ୍ରତି ନଜର ପକାଇ ସେଥିରୁ ପ୍ରେରଣା ପାଇବା ନିମନ୍ତେ ଚେଷ୍ଟା କରେ । ରିଜା ଶାହା ଯେଉଁ ନୂଆ ନାମ ଗ୍ରହଣ କଲା, ତାହା ଏକ ବଂଶର ନାମ—ପେହ୍‌ଲଭୀ । ଏହା ବହୁତ ପୁରୁଣା ସ୍ମୃତି

ମନରେ ଉଠାଏ । ଅବଶ୍ୟ ପର୍ସିଆର ଲୋକେ ମୁସଲମାନ ଶିଆ ସଂପ୍ରଦାୟଭୁକ୍ତ; କିନ୍ତୁ ନିଜ ଦେଶ କଥାରେ ଜାତୀୟତା ହିଁ ଶକ୍ତିଶାଳୀ ହୋଇ ରହିଛି । ସମସ୍ତ ଏସିଆରେ ଏହା ଘଟୁଛି । ଇଉରୋପରେ ୧୦୦ ବର୍ଷ ପୂର୍ବରୁ ୧୯ଶ ଶତାବ୍ଦୀରେ ଏହା ଘଟିଥିଲା; କିନ୍ତୁ ଅନେକ ଲୋକ ଜାତୀୟତାକୁ ଏକ ଶକ୍ତିହୀନ ମତ ବୋଲି ବିଚାରୁଛନ୍ତି ଏବଂ ପ୍ରଚଳିତ ଅବସ୍ଥା ସହ ଖାପ ଖାଇଲା ଭଳି ନୂତନ ମତ ଓ କାର୍ଯ୍ୟପନ୍ଥା ଖୋଜି ବୁଲୁଛନ୍ତି ।

ପର୍ସିଆର ସରକାରୀ ନାମ ହେଉଛି ଇରାନ୍ । ରିଜା ଶାହା ଆଦେଶ କରିଛନ୍ତି ଯେ, ପର୍ସିଆ ନାମ ଆଉ ବ୍ୟବହୃତ ହେବ ନାହିଁ ।

---